# କବି-ମନୀଷୀ

● ସଂପାଦନା—ଡକ୍ଟର ନରେନ୍ଦ୍ରନାଥ ମିଶ୍ର
ଡକ୍ଟର ନିତ୍ୟାନନ୍ଦ ଶତପଥୀ



ଓଡ଼ିଶା ବୁକ୍ ଷ୍ଟୋର

# କବି-ମନୀଷୀ

● ସମ୍ପାଦନା :

ଡକ୍ଟର ନରେନ୍ଦ୍ରନାଥ ମିଶ୍ର

ଡକ୍ଟର ନିତ୍ୟାନନ୍ଦ ଶତପଥୀ

● ପ୍ରକାଶକ :

ଶ୍ରୀ ଗୋବିନ୍ଦଚରଣ ପାତ୍ର

ଓଡ଼ିଶା ବୁକ୍ ଷ୍ଟୋର

ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ-୧୫୦୦

● ଡିସେମ୍ବର, ୧୯୮୩

● ପ୍ରଚ୍ଛଦ ଅଙ୍କନ-କ୍ଷୀରୋଦ କୁମାର ପରିଡ଼ା

● ମୂଲ୍ୟ :

ପଞ୍ଚତିରିଶ ଟଙ୍କା

**Kavi Manishi**

(Evaluation & Memoirs
on Dr K. B. Dash)

Edited by

**Dr. N. Mishra & Dr. N. Satpathy**

Published by

**Sri Gobind Charan Patra**

Orisssa Book Store

Cuttack-2

Cover Design

**Khirod Parida**

**Price-Rs 35.00**

# କୃତଜ୍ଞତା ଜ୍ଞାପନ

କବି, ମନୀଷୀ, ଶିଳ୍ପୀ ଓ ଦ୍ରଷ୍ଟା ଜଣେ ଜଣେ ମହାନ୍ ପୁରୁଷ । ସେମାନଙ୍କ ମହତ୍ତ୍ୱ କୌଣସି ଶ୍ରଦ୍ଧା, ସମୀକ୍ଷା, ପ୍ରଶସ୍ତି ବା ସ୍ତୁତିବାଦରେ ନୁହେଁ, ଅଗଣିତ ମଣିଷଙ୍କ ହୃଦୟରେ ସେମାନଙ୍କ ଆସନ ସ୍ୱତଃ ସେମାନଙ୍କ ପ୍ରଭାବ ଓ ପ୍ରତିଷ୍ଠା ବଳରେ ନିର୍ଣ୍ଣୀତ ହୋଇଥାଏ । ଏହି ମାପକାଠିରେ ମାପିଲେ ଓଡ଼ିଶାର ସାହିତ୍ୟ, ସଂସ୍କୃତି, ଭାଷା ଓ ଜାତୀୟ ସ୍ୱାଭିମାନ ସବୁକ୍ଷେତ୍ରରେ କବି-ମନୀଷୀ କୁଞ୍ଜବିହାରୀ ଜଣେ ଇତିହାସ ପୁରୁଷ, ଉଜ୍ଜ୍ୱଳ ନକ୍ଷତ୍ର, ନିଜସ୍ୱ ଦୀପ୍ତିରେ ଚିରଭାସ୍ୱର । 'କବି-ମନୀଷୀ' ସ୍ମାରକୀ ଗ୍ରନ୍ଥ ଏହି ଦୃଷ୍ଟିରୁ ଏକ ଅତି ସାମାନ୍ୟ ପ୍ରୟାସ, ଜ୍ୟୋତିରିଙ୍ଗଣଦଳର ଜ୍ୟୋତିଷ୍ମାନ୍‌କୁ ଅଳଙ୍କୃତ କରିବାର ଏକ କ୍ଷୀଣ ହାସ୍ୟକର ଆସ୍ପର୍ଦ୍ଧାମାତ୍ର । ଯଦି କିଛି ସାଫଲ୍ୟ ଏପରି ଏକ ପ୍ରୟାସରେ ଥାଏ, ତାହା ମୂଳରେ ଅଛି ବର୍ଷୀୟାନ୍ ମହାନ୍ ସ୍ରଷ୍ଟାମାନଙ୍କର ଅମୂଲ୍ୟ ଆଶୀର୍ବାଦ, ତରୁଣ ପ୍ରତିଭାଧରମାନଙ୍କର ଆନ୍ତରିକ ଉଦ୍ୟମ ଓ ଚିରାପରି ଆମ ସାଂସ୍କୃତିକ ଚେତନାରେ ପୂଜ୍ୟପୂଜାର ପରଂପରା । ଏହି ଉଜ୍ଜ୍ୱଳ ପରଂପରାକୁ ସଜୀବିତ ରଖିବାରେ ଯେଉଁମାନେ ଆମକୁ ମାନସିକ, ବାଚିକ ଓ ମୂଳକ ସାହାଯ୍ୟ କରିଛନ୍ତି, ସେମାନେ ଆମର କୃତଜ୍ଞତାଭାଜନ ।

କବି କୁଞ୍ଜବିହାରୀଙ୍କୁ ଆଶୀର୍ବାଦ ଜଣାଇ ତାଙ୍କ ସାଧନାର ସାଫଲ୍ୟ ଓ ଦୀର୍ଘ ଜୀବନ କାମନା କରିଛନ୍ତି ସବୁଜ କବି ଅନ୍ନଦାଶଙ୍କର, କାଳିନ୍ଦୀଚରଣ, ହରିହର; ସମାଜସେବୀ ସୁରେନ୍ଦ୍ର ଦ୍ୱିବେଦୀ, ବାଲ୍ୟବନ୍ଧୁ ହରେକୃଷ୍ଣ ମହାନ୍ତି ଓ ତାଙ୍କ ସହକର୍ମୀ ବନ୍ଧୁ ବିଶିଷ୍ଟ ସାହିତ୍ୟିକ ସଜ୍ଜନ ବ୍ୟକ୍ତିଏ । ବହୁ ବର୍ଷୀୟାନ୍ ଓ ତରୁଣ ସାହିତ୍ୟିକ/ସାହିତ୍ୟିକାଙ୍କ ଲେଖନୀରେ ତାଙ୍କ ସୃଷ୍ଟିର ଏକ ସାମଗ୍ରିକ ଆକଳନ ପାଇଁ ଏ ପୁସ୍ତକରେ ଉଦ୍ୟମ କରାଯାଇଛି । କବିଙ୍କ ବନ୍ଧୁ ସହକର୍ମୀମାନେ ସ୍ମୃତିଚାରଣ କରିଛନ୍ତି, ଶିଷ୍ୟ ପରଂପରାରେ ପୁତ୍ର ପ୍ରପୌତ୍ର ସ୍ଥାନୀୟ ଅନେକ ତାଙ୍କ ସାହିତ୍ୟଜଗତ ଉପରେ ଆଲୋକପାତ କରିଛନ୍ତି । ଖଣ୍ଡିତ ସ୍ମୃତିକୁ ସନ୍ତର୍ପଣରେ ସାଉଁଟି କେତୋଟି ଫୁଲମାଳ ଗୁନ୍ଥିଛନ୍ତି ତାଙ୍କ ପ୍ରିୟ ଅନୁଜ ଡାକ୍ତର ଉଦୟନାଥ, ଜୀବନସାଥୀ ପରିଣୀତା ପ୍ରେମଲତା ଓ ସ୍ନେହର ପୁତ୍ର ପ୍ରିୟଦର୍ଶୀ, ଏ ସମସ୍ତଙ୍କଠାରେ ଆମେ କୃତଜ୍ଞ ରହିବୁ ।

ମନୀଷୀ' ପାଇଁ ଇଂରାଜୀ, ବଙ୍ଗଳା ଓ ହିନ୍ଦୀ ଏ ତିନିଭାଷାରେ ଆସିଥିବା ଲେଖା ଏଥିରେ ଓଡ଼ିଆରେ ଅନୁବାଦିତ ହୋଇଛି । କିନ୍ତୁ

ଏସବୁ ଲେଖା ସହିତ ଓଡ଼ିଆ ଲେଖାର ଇଂରେଜୀ ଓ ହିନ୍ଦୀରେ ଅନୁବାଦ ମିଶାଇ ଏକ ସ୍ମାରକୀଗ୍ରନ୍ଥ ପ୍ରକାଶ ପାଇଁ ବାରାଣସୀର ଲୋକସାହିତ୍ୟବିତ୍ ଡକ୍ଟର କୃଷ୍ଣଦେବ ଉପାଧ୍ୟାୟ ଯେଉଁ ପ୍ରସ୍ତାବ ଦେଇଥିଲେ, ତାହା ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ହେଲେ ବି ସମୟାନ୍-ସ୍ୱଳ୍ପତା ଓ ସାଂଗଠନିକ ଦୁର୍ବଳତା ଦୃଷ୍ଟିରୁ ସମ୍ପ୍ରତି ଏହା ସମ୍ଭବ ହେଉ ନାହିଁ । ଏପରି ଉଦ୍ୟମ ଭବିଷ୍ୟତରେ ହୋଇପାରିଲେ ଆମ କବିବରଙ୍କୁ ଆମେ ଦେଶ-ବିଦେଶରେ ଅଧିକ ବିଜ୍ଞାପିତ କରିପାରନ୍ତେ; ଏଥିପାଇଁ ଏକ ବୃହତ୍ତର ଉଦାର ସାହିତ୍ୟିକ ଗୋଷ୍ଠୀର ଅକୁଣ୍ଠ ସାହାଯ୍ୟ ଓ ସମର୍ଥନ ଆବଶ୍ୟକ । ଏହି ସଂକଳନରେ ରହିଯାଇଥିବା ଅଭାବ ଓ ତ୍ରୁଟି ସେତେବେଳେ ଦୂର କରାଯାଇପାରିବ । ପୁନଶ୍ଚ ଡକ୍ଟର କୁଞ୍ଜବିହାରୀ ଦାଶ ମୂଳତଃ ଓଡ଼ିଆରେ ଲେଖିଥିଲେ ବି ତାଙ୍କର ଇଂରେଜୀ ରଚନା, କେତୋଟି କବିତାର ଇଂରାଜୀ ଓ ହିନ୍ଦୀ ଅନୁବାଦ ବିକ୍ଷିପ୍ତ ଭାବେ ପ୍ରକାଶିତ । ସେ ସବୁକୁ ସାଉଁଟି ମଧ୍ୟ ଏହିପରି ଏକ ଇଂରାଜୀ ବା ହିନ୍ଦୀ ସଙ୍କଳନରେ ସୁବିନ୍ୟସ୍ତ କରାଯାଇପାରିବ ତା'ହେଲେ କବିଙ୍କ ସୃଷ୍ଟିର ଉଦାର ବିଶ୍ୱଜନୀନ ଭାବ ଆମ ଭାଷାର ସୀମାବଦ୍ଧତାକୁ ଅତିକ୍ରମ କରି ସବୁଦେଶର ଓ ଚିରକାଳର ମାନବ ମନରେ ସଂକ୍ରମିତ ହେବ— ଏହି ଆମର ଦୃଢ଼ ବିଶ୍ୱାସ ।

'କବି-ମନୀଷୀ' ଗ୍ରନ୍ଥ ସଂକଳନରେ କବିପତ୍ନୀ ଶ୍ରୀମତୀ ପ୍ରେମଲତା ଦାଶଙ୍କ ଉତ୍ସାହ ଓ ସହଯୋଗ ଆମର ଭୁଲିବାର ନୁହେଁ । କି ଗଭୀର ପ୍ରାଣିତ ଆବେଗରେ ସେ 'ପ୍ରିୟପରମ' ଅଧ୍ୟାୟଟି ରଚନା କରିଛନ୍ତି— ତାହା ପାଠକେ ବୁଝିପାରିବେ । ଅନୁଜ ଶ୍ରୀ ହୃଦୟନାଥ ଯଥା ସମୟରେ ତାଙ୍କ ପାଣ୍ଡୁଲିପିଟି ସୁଦୂର ଆମେରିକାରୁ ପଠାଇ-ସାରିଛନ୍ତି । ଏହା ସହିତ ଏକ ପଚିଶ ଡ଼ଲାର୍ ଚେକ୍ ମଧ୍ୟ । ଏହି ଅର୍ଥ 'କବି-ମନୀଷୀ' ବିକ୍ରୟଲବ୍ଧ ରୟାଲ୍‌ଟି ଅର୍ଥ ଏଣିକି କବି କୁଞ୍ଜବିହାରୀଙ୍କ ସାହିତ୍ୟସୃଷ୍ଟି ଆକଳନ ଦିଗରେ ସାମଗ୍ରିକ ଗ୍ରନ୍ଥ ପ୍ରସ୍ତୁତିରେ ବିନିଯୁକ୍ତ ହେବ । ଏ ଗ୍ରନ୍ଥର ବ୍ୟୟବହୁଳ ପ୍ରକାଶ ପାଇଁ ଆମେ ବହୁ ପ୍ରକାଶକଙ୍କ ଦ୍ୱାରସ୍ଥ ହୋଇଥିଲେ ବି ଓଡ଼ିଶା ବୁକ୍ ଷ୍ଟୋରର ସହୃଦୟ ପ୍ରକାଶକ ଶ୍ରୀ ଗୋବିନ୍ଦ ପାଢ଼ୀଙ୍କ ସାଗ୍ରହ ସହଯୋଗ ପାଇଁ ଆମେ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଛୁ ।

ନରେନ୍ଦ୍ରନାଥ ମିଶ୍ର
ନିତ୍ୟାନନ୍ଦ ଶତପଥୀ
[illegible]

# ॥ 'କବି-ମନୀଷୀ' ବିଷୟ ବିକ୍ଷେପ ॥

## ● ସାହିତ୍ୟସମାଲୋଚନା



## ● ପୁସ୍ତକ ସମୀକ୍ଷା



This book Kavi Manishi is Partly P··ted at the Virgoan Press, Acharya Vihar, Bhubaneswar a.. Partly a the Kuntala Printing Works, Bajrakabati Road, Cu..ack.

# ॥ କୁଞ୍ଜବିହାରୀଙ୍କ କବିତା ଜଗତ ॥

● ଡକ୍ଟର ନରେନ୍ଦ୍ରନାଥ ମିଶ୍ର

"ମୁଁ ଯେତିକିର, ସେତିକି ନିଜକୁ ପ୍ରତିପନ୍ନ କରିଛି। କେଉଁଠି ଅଧିକ କରି ଦେଖାଇ ନାହିଁ। ଦରିଦ୍ର ଦେଖାଗଲେ ବି ସେ ବେଶ ମୋ ନିଜର; ଏଥିରେ ଅଗୌରବର କିଛି ନାହିଁ।"

—କୁଞ୍ଜବିହାରୀ

ପଶ୍ଚିମରେ ପୁରାଣ ପବିତ୍ର ଭୁବନେଶ୍ୱର। ପୂର୍ବରେ ଚାରୁକଳା ମନ୍ଦିର କୋଣାର୍କ, ମଧ୍ୟବର୍ତ୍ତୀ ଓ ଭାର୍ଗବୀ ନଦୀର ଅବବାହିକାରେ ଏକ କ୍ଷୁଦ୍ର ବ୍ରହ୍ମ ଶାସନରେ କୁଞ୍ଜବିହାରୀଙ୍କର ଜନ୍ମ ୧୯୧୯ ମାର୍ଚ୍ଚ ୭ ତାରିଖ। ଏକ କୃଷିଜୀବୀ ମଧ୍ୟବିତ୍ତ ଗ୍ରାମ, ପାରଂପରିକ ବ୍ରାହ୍ମଣଶାସିତ ସମାଜ—ଏହି ସମାଜରେ ସ୍ୱଳ୍ପଶିକ୍ଷିତ, ଗୁରୁ ଓ ବୈଦ୍ୟଥିଲେ କବିଙ୍କର ପିତା ଚନ୍ଦ୍ରାମଣି ଦାଶ। କବିଙ୍କ ଭାଷାରେ—"ଘରେ ପଢି ପଢି ସେ ପଣ୍ଡିତ। ଦୈହିକ ଓ ମାନସିକ ଶକ୍ତି, କୃଷି ଓ କୃଷ୍ଟି—ଉଭୟର ସମନ୍ୱୟ ଥିଲେ ସେ। ଢେଙ୍ଗାରେ ସାତଫୁଟ। ଭରି ପସନ୍ଦଆ ଚଉଖୁଣ୍ଟିଆ ମଣିଷ। ଶାଳଗଣ୍ଡି ପରି ନିଦା ଓ ସିଧା।" ପ୍ରାୟ କୋଡ଼ିଏ ବର୍ଷ ବୟସରେ କବି ହୋଇଥିଲେ ପିତୃହୀନ ଓ ତାଙ୍କର ମାତା ହୋଇଥିଲେ ପରିବାରର ଚାଳିକା। କବିଙ୍କ ଭାଷାରେ, "ଚାଳକ ବିହୀନ ନୌକାପରି ଆମଘର ଅଶ୍ରୁର ସ୍ରୋତରେ ସତେ ଯେପରି ଭାସିଲା।" କବିଙ୍କ ଉପରେ ନିଜମାତାଙ୍କର ପ୍ରଭାବ ଥିଲା ଅପରିସୀମ। 'ମୋ କାହାଣୀ'ର ଭାଷାରେ "ବୋଉ ଓଷାବ୍ରତ ପର୍ବପର୍ବାଣିର ପବିତ୍ର ବାତାବରଣରେ ଦିଶୁଥିଲେ ଦେବୀ ପ୍ରତିମା ପରି। ଶ୍ରଦ୍ଧା ଯୁଗର ମଣିଷ, ନିରକ୍ଷରା, ମାତ୍ର ସ୍ମୃତି ଶକ୍ତି ତୀକ୍ଷ୍ଣ। ସତେ ଯେପରି ଚିର ସଙ୍ଗୀତମୟୀ ସରସ୍ୱତୀ। ବୋଉର କାନ୍ଦଣାରୁ ମୋ କବିତ୍ୱର ଆଦ୍ୟ ଓଁକାର ସ୍ଫୁରିଥିଲା।"

ଏହି ଗ୍ରାମୀଣ ବାତାବରଣରେ କବିଙ୍କର ଶୈଶବ ଏବଂ କୈଶୋର ବିତିଥିଲା। ମାମୁଁଘର ଗାଁଆଁର ନଦୀ ଭାର୍ଗବୀ ଓ ନିଜଗାଆଁର ଅଦୂରବର୍ତ୍ତୀ ନଦୀ କୁଶଭଦ୍ରା କବିଙ୍କ ମନଉପରେ ଗଭୀର ପ୍ରଭାବ ବିସ୍ତାର କରିଥିଲା। ଶୈଶବର ବ୍ୟବହାରରେ କିଞ୍ଚିତ୍ ଅବୋଧ ଓ ଅପଟୁ—ଏଇ ବଳିଷ୍ଠ ବପୁମନ୍ତ ମଧ୍ୟମପୁତ୍ରଙ୍କୁ ପିତା ଜଣେ ଆଦର୍ଶ କୃଷକ ଭାବରେ ଗଢିବାକୁ ଚାହିଁଥିଲେ। କିନ୍ତୁ ଆକସ୍ମିକ ଏକ ସ୍ୱପ୍ନଦ୍ୱାରା ଚାଳିତ ହୋଇ ପିତା ତାଙ୍କୁ ଏକ ନବପ୍ରତିଷ୍ଠିତ ବିଦ୍ୟାଳୟରେ ଛାଡ଼ି ଆସିଥିଲେ। ଭୁବନେଶ୍ୱରର ଐତିହାସିକ ବାତାବରଣରେ କବିଙ୍କର ମଧ୍ୟଇଂରାଜୀ ବିଦ୍ୟାଳୟର ଶିକ୍ଷା; ରେଭେନ୍ସା କଲେଜରେ

ସ୍ନାତକଶିକ୍ଷା; ପରିଶେଷରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଆରମ୍ଭକାଳରେ କଲିକତାରେ ସ୍ନାତକୋତ୍ତର ଶିକ୍ଷା ଲାଭ କରିଥିଲେ । ଏକ ସ୍ୱତଃସ୍ଫୂର୍ତ୍ତି କବିତ୍ୱର ସ୍ଫୁରଣ ଯେପରି କି କବି ଆଦ୍ୟ ଯୌବନରେ ଉଚ୍ଚବିଦ୍ୟାଳୟର ଛାତ୍ରଥିବା ସମୟରେ ଅନୁଭବ କରିଥିଲେ; ରଚନା କରିଥିଲେ ଏକ ପାରଂପରିକ କାବ୍ୟ 'ଲାବଣ୍ୟ କୁସୁମ' । ୧୭ । ୧୮ ବର୍ଷର ଏଇ କିଶୋର ନିଜସୃଷ୍ଟିରେ ଯେପରି କି ନିଜେ ମୁଗ୍ଧ ହୋଇ ପଡ଼ିଥିଲେ । କବିଙ୍କ ନିଜ ଭାଷାରେ, "ନିଜକୁ ନୂଆଭାବେ ଆବିଷ୍କାର କଲାପରି ଲାଗିଲା । ନିଜପାଖେ ନିଜର ମୂଲ୍ୟବଢ଼ିଲା । ଆନନ୍ଦର ଏକ ମହୁଫେଣା ଯେପରିକି ଝୁଲିବାକୁ ଲାଗିଲା ମୋର ମନରେ ।"

ଏକ ଦିଗରେ ଗ୍ରାମୀଣ, ପାରଂପରିକ ସମାଜର ଗଭୀର ସ୍ପର୍ଶ ଓ ଅନ୍ୟଦିଗରେ ଆଧୁନିକ ଜୀବନର ଗତିଶୃଙ୍ଖଳା ଓ ବିଶ୍ୱତୋମୁଖୀନତା କବିଙ୍କ ସୃଷ୍ଟିଶୀଳ ବ୍ୟକ୍ତିତ୍ୱକୁ ବହୁବର୍ଣ୍ଣ ରଞ୍ଜିତ କରିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପ୍ରମାଣ କରିଦେଇଥିଲା—ନଦୀ, ସମୁଦ୍ର, ଅରଣ୍ୟ, ପର୍ବତ, ଜାତି, ଉପଜାତି ମଧ୍ୟରେ ବିଚ୍ଛିନ୍ନ ହେଲେ ବି ସମଗ୍ରମାନବ ଜାତି ଏକ ଓ ତାର ସମସ୍ୟା ଅଭିନ୍ନ । ଏଇ ପରିବେଶରେ କବି ନିଜର ଆଦ୍ୟଯୌବନ ବିଶ୍ୱବିଦ୍ୟାଳୟର ଛାତ୍ରଭାବରେ କଲିକତାରେ ଓ ଗୃହଶିକ୍ଷକ ଭାବରେ ଗାଁରେ କଟାଇଥିଲେ । ଏକ ଦିଗରେ ଜାତିସ୍ମୃତା ଓ ଅନ୍ୟଦିଗରେ ବିଶ୍ୱଜନୀନ ମାନବତା, ଏକ ଦିଗରେ ଉତ୍କଳପ୍ରୀତି, ଅନ୍ୟଦିଗରେ ମହାଭାରତୀୟ ଭାବଧାରା ତଥା ସ୍ୱାଧୀନତା ଆନ୍ଦୋଳନର ଆହ୍ୱାନ କବିଙ୍କର କ୍ଷୁବ୍ଧଚିତ୍ତକୁ ସୃଷ୍ଟିଶୀଳ କରିଥିଲା । କର୍ମଅନୁରୋଧରେ ସେ ପ୍ରାକୃତିକ ସୌନ୍ଦର୍ଯ୍ୟମଣ୍ଡିତ ଓଡ଼ିଶାର ପ୍ରାୟ ସମସ୍ତ ଅଞ୍ଚଳ ବୁଲିବାର ସୁଯୋଗ ପାଇଥିଲେ । ପଲ୍ଲୀଜୀବନର ରସଧାରା ସହିତ, ଲୋକଗୀତ ସଂଗ୍ରାହକଭାବେ ସେ ଏକାନ୍ତ ଆତ୍ମୀୟତା ସ୍ଥାପନ କରିଥିଲେ । ଅନ୍ୟଭାବରେ ସମଗ୍ର ଭାରତବର୍ଷରେ ଉତ୍କଳର ଏକ ଗୌରବମୟ ସ୍ଥାନଲାଭ ପାଇଁ ଯେଉଁ ଆନ୍ଦୋଳନ ଗଢ଼ିଉଠିଥିଲା, ଉତ୍କଳ ସମ୍ମିଳନୀ ଓ ବାହିନୀ ଜରିଆରେ ତାହା ସହିତ ମଧ୍ୟ ସେ ନିବିଡ଼ ସଂପର୍କ ସ୍ଥାପନ କରିଥିଲେ । ଓଡ଼ିଶାର ଶିକ୍ଷା ବିଭାଗରେ ଛ' ବର୍ଷ କାର୍ଯ୍ୟକରି ୧୯୫୦ରେ କବି ଆସିଥିଲେ ବିଶ୍ୱଭାରତୀ । ଏକଦା ସ୍ୱତଃସ୍ଫୂର୍ତ୍ତି, ସହଜବୋଧ୍ୟ କବିତାର କବି, ଜଣେ ବିଦଗ୍ଧ ଓ ପ୍ରବୁଦ୍ଧମନା ଶିକ୍ଷାବିତ୍ ଓ ଗବେଷକ ଭାବେ ସ୍ୱଦେଶର କୌଳିକ ଭାବଭୂମିରେ ନିଜକୁ ପ୍ରତିଷ୍ଠା କରିଥିଲେ । ହିମାଳୟଠୁ କନ୍ୟାକୁମାରୀ ଓ ସିଂହଳର ଛନ୍ଦ ଭୂଗୋଳ, ଇତିହାସ ପୃଷ୍ଠାରେ ନୁହେଁ, ନିଜ ଚକ୍ଷୁରେ ଦେଖିବାର ସୁଯୋଗ ସେ ପାଇଥିଲେ । ଏକଦା ଧୂଳି ଧୂସରିତ ଶିଶିରସିକ୍ତ ଉତ୍କଳର ଗ୍ରାମପଥର ପଥିକ ହୋଇଥିଲେ ଭାରତଯାତ୍ରୀ, ପୁଣି ପ୍ରବୀଣ ବୟସରେ ଆମେରିକା, ୟୁରୋପ ଓ ଆଫ୍ରିକା ହୋଇଥିଲା କବିଙ୍କର ଭ୍ରମଣ ପରିଧିର ଅନ୍ତର୍ଭୁକ୍ତ । ଦୂର ଓ ନିକଟରେ ଅଜସ୍ର ଭ୍ରମଣ ଓ ଭ୍ରମଣ ସାହିତ୍ୟ ରଚନା ମଧ୍ୟରେ କବିଙ୍କୁ କେବଳ ଜଣେ କୂପ । ଗନ୍ତାଘିଲା ଭାବରେ ଦେଖିବାକୁ ପାଉଁ ତା ନୁହେଁ, ତାଙ୍କର ଅନ୍ତରଷ୍କନ୍ଦନରେ ଏକ ସଂଚରଣଶୀଳ, ବିଶ୍ୱତୋମୁଖୀ, ମାନବବାଦରିଭୀ କବିଭାବର ପ୍ରତିଷ୍ଠା ଦେଖିବାକୁ ମିଳେ ।

କୁଞ୍ଜବିହାରୀଙ୍କ ସମସ୍ତ ସାହିତ୍ୟ ଜଗତ ଭିତରେ କବିତାର ସ୍ଥାନ ଅସପତ୍ନ ଓ ମହତ୍ତ୍ୱପୂର୍ଣ୍ଣ । ଲୋକଗୀତ ସଂଗ୍ରହ ଓ ଲୋକଗଳ୍ପର ସଂକଳନ କୁଞ୍ଜବିହାରୀଙ୍କ ସାଧନାର ଏକ ବଡ଼ଅଙ୍ଗ । ଦ୍ୱିତୀୟ ଅଂଶଟି ବିଦଗ୍ଧ ସମୀକ୍ଷା, ଭ୍ରମଣ କାହାଣୀ ଓ ଜୀବନୀ ମୂଳକ ଗଦ୍ୟରଚନା । ଏହି ଉଭୟଧାରାର ମଧ୍ୟମଣିରୂପେ ତାଙ୍କର କବିତାଜଗତ ପ୍ରତିଭାତ । ସମକାଳୀନ ଓଡ଼ିଆ ସାହିତ୍ୟରେ କୁଞ୍ଜବିହାରୀଙ୍କ କାବ୍ୟଜଗତର ପରିଧି ବିପୁଳ ଓ ଏହାର ଭାବଭୂମି ସୁଦୂରପ୍ରସାରୀ । ଆକୃତିଗତ ବୈଚିତ୍ର୍ୟ ଓ ନିତ୍ୟନୂତନ ପ୍ରୟୋଗ ଓ ପରୀକ୍ଷା ମଧ୍ୟଦେଇ ପରଂପରା, ପ୍ରଜ୍ଞା ଓ ପୂର୍ବୋଦ୍ଦୃଷ୍ଟିର କବି ରୂପେ କୁଞ୍ଜବିହାରୀ ପ୍ରତିଷ୍ଠିତ । ଏକ ଦିଗରେ ଭାବପ୍ରଧାନ ପ୍ରଗୀତ ଓ ଅନ୍ୟ ଦିଗରେ ଚରିତ୍ର ମୂଳକ ଆଖ୍ୟାନଧର୍ମୀ ଗାଥା ଓ କାବ୍ୟରଚନାର ମହାସ୍ନାନ ପରଂପରାର ସେ ଯେପରି ଜଣେ ଅନ୍ୟ ଉତ୍ତରାଧିକାରୀ । ଆଧୁନିକ ମଣିଷର ଆତ୍ମିକ ଚିନ୍ତାର ନାନା ଘାତପ୍ରତିଘାତର ପ୍ରତିଫଳନ, ବୌଦ୍ଧିକତାର ଉଜ୍ଜ୍ୱଳ ଆଲୋକର ଆଭାସ ସତ୍ତ୍ୱେ ଏକ ଗଭୀର ସ୍ୱତଃସ୍ଫୂର୍ତ୍ତି ଅନୁଭୂତିର ସହଜ ପ୍ରକାଶ ତାଙ୍କର କାବ୍ୟଜଗତକୁ ଆମର ଦୈନନ୍ଦିନ ଜୀବନର ଏକାନ୍ତ ନିକଟବର୍ତ୍ତୀ କରିପାରିଅଛି ।

ସମକାଳୀନ ଯୁଗରେ ଦୁର୍ଲଭପ୍ରାୟ ବର୍ଣ୍ଣନାତ୍ମକ ଖଣ୍ଡକାବ୍ୟ ଓ ନାଟକୀୟ ସଂହିତ ତଥା ପ୍ରାଣପୂର୍ଣ୍ଣ କର୍ମଚଞ୍ଚଳ କ୍ରିୟାତ୍ମକ ଆଖ୍ୟାନକାବ୍ୟର ସ୍ରଷ୍ଟାଭାବରେ କୁଞ୍ଜବିହାରୀ ଏକ ଅନନ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ସତେ ଯେପରି କବି ଏକ ଏକ ମହାକାବ୍ୟ ରଚନାର ବିରଳ ପ୍ରବଣତାକୁ ଦମିତକରି ଗାଥାକାବ୍ୟ ଓ ଖଣ୍ଡକାବ୍ୟ ଲେଖିଛନ୍ତି । କୁଞ୍ଜବିହାରୀ କୌଣସି ମହାକାବ୍ୟ ଲେଖିନାହାନ୍ତି । କାରଣ ଆଧୁନିକ ଯୁଗରୁଚି ଏହାର ସଂପୂର୍ଣ୍ଣ ବିରୋଧୀ । ତଥାପି ତାଙ୍କର କାବ୍ୟ ମହାକାବ୍ୟିକ ଉପାଦାନରେ ଋଦ୍ଧିମନ୍ତ । ମହାକାବ୍ୟର ମହାନ୍ ନାୟକ-ନାୟିକାମାନଙ୍କ ସଂଗ୍ରାମ ଓ ସଂଭୋଗମୟ, ଜୀବନାଲେଖ୍ୟ, ଅଗଣିତ ସାଧାରଣଜନଙ୍କୁ ଜୀବନ-ସଂଗ୍ରାମରେ ଅନୁପ୍ରାଣିତ କରିଥାଏ । କୁଞ୍ଜବିହାରୀଙ୍କ କାବ୍ୟରେ ଏପରି ଚରିତ୍ରର ଅଭାବ ନାହିଁ । କୁଞ୍ଜବିହାରୀଙ୍କ ଗାଥା ଓ ଖଣ୍ଡକାବ୍ୟମଧ୍ୟରେ ସମକାଳୀନ କିମ୍ବଦନ୍ତୀ ତଥା ଇତିହାସର ବହୁଚରିତ୍ରର ବିବରଣ ଦେଖିବାକୁ ମିଳେ । ସତେ ଯେପରିକି ଆପଣାର ତୁଙ୍ଗ ବ୍ୟକ୍ତିତ୍ୱ ଓ ନିର୍ମଳ ଚରିତ୍ରର ଏକ ପ୍ରସ୍ତରରେ ଛଟା ନିଜର ଅଂକିତ ବହୁ ଚରିତ୍ର ମଧ୍ୟରେ ଫୁଟିପଡ଼ିଅଛି । ଗୋଟିଏ କଥାରେ କହିଲେ କବି କୁଞ୍ଜବିହାରୀ ବହୁ ବିଚିତ୍ର ଚରିତ୍ର ପ୍ରଧାନ କାବ୍ୟର କବି । ଆପାତତଃ ଏକ ନିର୍ଦ୍ଦିଷ୍ଟ କାଳ ବା ଦେଶର ହେଲେ ବି ଏହି ଚରିତ୍ର ସବୁ ଆଦର୍ଶ ଆକାଂକ୍ଷାରେ ଚିରନ୍ତନ ଓ ସାର୍ବଜନୀନ । ଦୂର ଇତିହାସର ନେତା, ବୀର, ବିଦ୍ରୋହୀ ଓ ସନ୍ନ୍ୟାସୀଙ୍କ ସହିତ ଆମ ନିକଟ ସମାଜରେ ଆତଯାତ ହେଉଥିବା କୃଷୀ, ଶିକ୍ଷକ, ଶିକ୍ଷୟିତ୍ରୀ, ନଗର ଓ ଗ୍ରାମଜୀବନର ନାନାସ୍ତରର ନର-ନାରୀଙ୍କୁ ଦେଖିହୁଏ । କବିଙ୍କର ଲୋକପ୍ରେମୀ ଓ ଦରଦୀ ହୃଦୟର ସ୍ପର୍ଶରେ ଏହି ଚରିତ୍ର

ଗୁଡ଼ିକ ପ୍ରାଣୋଜ୍ଜ୍ୱଳ । ଗାଆଁର ଅତିସାଧାରଣ ଆତ୍ମୀୟତାଭରା ଜୀବନ ଓ ନଗରର ବିଚ୍ଛିନ୍ନ, ଅନାସକ୍ତ ଜୀବନର ହଳାହଳ ଓ କୋଳାହଳ ସହିତ କବି ଯେପରି କି ଆତ୍ମୀୟତା ସ୍ଥାପନ କରିଛନ୍ତି । ଏହିସବୁ ଚରିତ୍ରମାନଙ୍କରେ ଅନୁଭୂତିର ଗଭୀରତା, ଉପଲବ୍-ଧିର ବୈଚିତ୍ର୍ୟ ତଥା ଭାବାବେଗର ଶୃଙ୍ଖଳା ପ୍ରକାଶିତ । ଅନୁରୂପ ଭାବରେ ଏହି ଚରିତ୍ର ଗୁଡ଼ିକ ପାଠକ ହୃଦୟରେ ସମବେଦନା, କାରୁଣ୍ୟ ଓ ଉତ୍ସାହ ଉଦ୍ଦୀପନା ସୃଷ୍ଟିରେ ସକ୍ଷମ । ଏହି ଚରିତ୍ରଗୁଡ଼ି ଆମକୁ ଆନନ୍ଦ ଦିଅନ୍ତି, ଦୁଃଖ ଓ ଦୈନ୍ୟରେ ସମବ୍ୟଥୀ ଭାବରେ ସାନ୍ତ୍ୱନା ଦିଅନ୍ତି ଓ ଜୀବନ ସଂଗ୍ରାମରେ ଅଟଳ ହୋଇ ଠିଆ ହେବାକୁ ସାହାସ ଦିଅନ୍ତି ।

"ପାଷାଣ ଚରଣେ ରକ୍ତ, ଗୃହିଣୀ (୧୯୩୫ ଓ ୧୯୩୮) ପ୍ରଥମ ପର୍ଯ୍ୟାୟର ଓ 'ମାଟିଓ ଲୁଠି' ଶେଷ ପର୍ଯ୍ୟାୟର ଆଖ୍ୟାନକାବ୍ୟ । ପ୍ରଥମ ପର୍ଯ୍ୟାୟର ଭିତ୍ତିଭୂମି ଐତିହାସିକ । ସୁଦୂର ଅତୀତର କଳିଙ୍ଗର ଭାବମୂର୍ତ୍ତି, ଅଶୋକଙ୍କ କଳିଙ୍ଗ ଯୁଦ୍ଧର ପୃଷ୍ଠଭୂମିରେ ଅଂକିତ । ଅପରଟି ସମକାଳୀନ ସମାଜର ନଗର ଓ ଗ୍ରାମ ତଥା କୃଷି-ସଭ୍ୟତା ଓ ଆଧୁନିକ ଯନ୍ତ୍ରଶିଳ୍ପର ସଂଘାତମୟ ପଟ୍ଟଭୂମିରେ ରଚିତ । 'ପାଷାଣ ଚରଣେ ରକ୍ତ,' 'ଗୃହିଣୀ' ଓ 'ମାଟି ଓ ଲୁଠି' କାବ୍ୟମଧ୍ୟରେ କବିଙ୍କ ଜୀବନବୋଧ ଓ ସାହିତ୍ୟିକ ରୁଚିର ଯେପରିକି ଆଦ୍ୟବିକାଶ ଓ ପରିଣତିର ଏକ ପୂର୍ଣ୍ଣସ୍ୱାକ୍ଷର ବିଦ୍ୟମାନ । ଏହି ଆଖ୍ୟାନକାବ୍ୟଗୁଡ଼ିକର ପରିପୂରକ ଭାବରେ ରଚିତ ଖଣ୍ଡକାବ୍ୟ 'ତୁଡୁମା', 'ବାଗ୍ରା', 'ମଙ୍ଗୋଲର ଲୁହ' ଓ ଗାଥାଗୀତ 'ବୀରଶ୍ରୀ' ଓ 'ନବମାଳିକା'ର ଅଧ୍ୟୟନ ମଧ୍ୟରେ କବିଙ୍କ ଅନୁଭବର ଗଭୀର ଓ ସୁଦୂରପ୍ରସାରୀ ଆଦର୍ଶବୋଧର ସଂଧାନ କରାଯାଇପାରେ ।

### ପାଷାଣ ଚରଣେ ରକ୍ତ :

'ପାଷାଣ ଚରଣେ ରକ୍ତ' ଦ୍ୱିତୀୟ ମହାଯୁଦ୍ଧର ପୃଷ୍ଠପଟରେ କବିଙ୍କ ଛାତ୍ର ଜୀବନରେ ରଚିତ ଏକ ସଂଳାପଧର୍ମୀ ଆଖ୍ୟାନ କାବ୍ୟ ଅଥବା କାବ୍ୟନାଟିକା । ଆକୃତିଗତ ଭାବରେ ଏହା ନାଟକ ନୁହେଁ, ବସ୍ତୁତଃ ଏକ ପାଠ୍ୟକାବ୍ୟ । ଏହା କବିଙ୍କର ପ୍ରକାଶିତ ଦ୍ୱିତୀୟ ପୁସ୍ତକ । ବ୍ରହ୍ମପୁରର କର୍ମଜୀବନକାଳରେ ବଡ଼ଖେମୁଣ୍ଡିର ରାଜା ଶ୍ରୀରାମଚନ୍ଦ୍ର ଅନଂଗଭୀମ ଦେବ କେଶରୀ ଗଜପତିଙ୍କ ଦାନରେ କାବ୍ୟଟି ପ୍ରକାଶିତ । ତରୁଣକବି ନିଜ ସୃଷ୍ଟିର ସାର୍ଥକତା ପ୍ରତି ଆସ୍ଥାଶୀଳ ନଥିବା ସ୍ୱାଭାବିକ । ମାତ୍ର ପ୍ରବୀଣ ସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଅନନ୍ତ ପ୍ରସାଦ ପଣ୍ଡାଙ୍କର ସୂଚନାକ୍ରମେ ପରିମାର୍ଜନା ଓ କବି ରାଧାମୋହନ ଗଡ଼ନାୟକଙ୍କ ଦ୍ୱାରା ପ୍ରଦତ୍ତ ଏକ ନାଟକୀୟ ଶିରୋନାମା—ଏ ସବୁ ଯେପରି କି କାବ୍ୟଟିର ସାଫଲ୍ୟ ବିଷୟରେ କବିଙ୍କ ମନରେ ଆସ୍ଥା ଆଣି ଦେଇଥିଲା । କୌଣସି କାବ୍ୟ-ନାଟିକାରେ ସଂଳାପର ତୀବ୍ରତା, ପରିବେଶ

ଉପଯୋଗୀ ସ୍ୱଳ୍ପଭାଷପ୍ର ଉପରେ ନିର୍ଭର କରେ । ଖୁବ୍ ସମ୍ଭବତଃ ଏହି ଦାଗରେ କବିତାଟି ଅପଚ୍ଛନ୍ଦ କବିଙ୍କର ପ୍ରକାଶ ପାଇଥିଲା । ତେଣୁ ୧୯୬୦ରେ ସଂଚୟନର ଦ୍ୱିତୀୟ ଭାଗ ପ୍ରକାଶ କାଳରେ ଏହାର ପୁନଃ ସମାର୍ଜନ କବି ଆବଶ୍ୟକ ମନେ କରିଥିଲେ । ଏହି ପୁନଃ ପୁନଃ ମାର୍ଜିତ ରଚନାଟି ଏକ ସୁଖ ପାଠ୍ୟ ପ୍ରଭାବଶାଳୀ କାବ୍ୟରୂପେ ଆତ୍ମପ୍ରକାଶ କରିଅଛି । ସମଗ୍ରଭାବରେ ଦେଖିଲେ ମନେ ହୁଏ କାବ୍ୟଟିରେ ଆଖ୍ୟାନ ଗୌଣ, ବର୍ଣ୍ଣନା ଓ ଭାବଗୀତ ମୁଖ୍ୟସ୍ଥାନ ଅଧିକାର କରିଅଛି । ସମୟର ପ୍ରତିଲୋମ ସ୍ରୋତରେ ଯେପରିକି ଏକ କାଳଜୟୀମନ ବର୍ତ୍ତମାନର ଅସ୍ଥିର, ଅଶାନ୍ତ, ଯୁଦ୍ଧରତ ଜଗତର ଭାବଭୂମିରେ ଦଣ୍ଡାୟମାନ ହୋଇ ଅତୀତ ସଙ୍ଗେ ଭବିତବ୍ୟର ଯୋଗସୂତ୍ର ସ୍ଥାପନ କରିଅଛି । ତରୁଣ କବି ଏକ ସୁପ୍ରୋତ୍ଥିତ ନବପ୍ରଭାତର ଅରୁଣାଲୋକରେ ବିଭୋର । ଏହି କାବ୍ୟରେ ମୂକ ପ୍ରତିମା ମୁଖର ହୋଇଅଛି ଯୁଗଶିଳ୍ପୀର ସ୍ୱପ୍ନ-ପ୍ରବଣ ଆବେଗୋଷ୍ଣ ହୃଦୟର ସ୍ପର୍ଶରେ । ଏକଦା ଜୀବନ୍ତ ମଣିଷର ସୁଖ ଦୁଃଖର ସାଥୀ ସତ୍ୟଯୁଗର ଦେବତାଙ୍କୁ ଲୋକମନ କଳ୍ପନା କରେ ପାଷାଣମୂର୍ତ୍ତି ରୂପରେ । ଏହି ଭାବରେ ଇତିହାସ ରୂପାନ୍ତରିତ ହୁଏ ପୁରାଣରେ । ଇତିହାସର ଗୌରବ ଯେତେବେଳେ ଜନସାଧାରଣଙ୍କର ସ୍ମୃତିରୁ ଲୁପ୍ତ ହୋଇଯାଏ, ସେତେବେଳେ ଜାତି ପ୍ରାଣରେ ଆସେ ଅବସାଦ । ପରାଧୀନତାର ଏକ ମ୍ଳାନମୟ ଯୁଗରେ କବି କଳ୍ପନା କରିଛନ୍ତି ଇତିହାସର ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ—କଳିଙ୍ଗ ଯୁଦ୍ଧରେ ସ୍ୱାଧୀନତାଲିପ୍ସୁ କଳିଙ୍ଗ ସେନାର ଅକାତର ଆତ୍ମଦାନ । କବିଂକ ନାୟକ ବୀର ବର୍ଷର କିଶୋର 'ଚନ୍ଦ୍ର' । ଶିଳ୍ପୀ 'ଶ୍ରୀମୁଖ'ର ପୁତ୍ର । ଅଭିମନ୍ୟୁ ପରି ବୀର । ପ୍ରଳୟଙ୍କର ରଣ ତାଣ୍ଡବରେ ସେ ହୋଇଛି କଳିଙ୍ଗ ସେନାବାହିନୀର କାଣ୍ଡାରୀ । ପ୍ରତିପକ୍ଷର ସେନାପତି ତାର ବାଳୁତ ମୁଖକୁ ଗୃହି ବାତ୍ସଲ୍ୟ ମମତାରେ ଆତ୍ମବିସ୍ମୃତ ହୋଇପଡ଼ିଛନ୍ତି । କିନ୍ତୁ ସଂଗ୍ରାମରେ ଚନ୍ଦ୍ରଦ୍ୱାରା ନିହତ ସେନାନୀର ମାୟା ଏଡାଇ ନ ପାରି ସେ ନିଜେ ହୋଇଛନ୍ତି ତା ସହିତ ଯୁଦ୍ଧରତ । ଯୁଦ୍ଧରେ ଅପରାହତ ଚନ୍ଦ୍ର ନିଜ ଅସ୍ତ୍ରରେ ହୋଇଛି ଆହତ । ସନ୍ଧ୍ୟା ଆଗମନରେ ଯୁଦ୍ଧ ବନ୍ଦ ହୋଇଛି । ଯୁଦ୍ଧକ୍ଷେତ୍ର ପରିଦର୍ଶନରତ ଚଣ୍ଡାଶୋକ ଆହତ, ମୁମୂର୍ଷୁ ଚନ୍ଦ୍ରର ପରିଚର୍ଯ୍ୟା କରିଛନ୍ତି । ଏହି ଆହତ ଶିଶୁର ମୁଖ ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ପରିଣତ କରିଅଛି । ଗଭୀର ଅନୁତାପ ମଧ୍ୟ ଦେଇ ଚଣ୍ଡାଶୋକଂକ ଧର୍ମାଶୋକରେ ପରିଣତି କାବ୍ୟର ପରିସମାପ୍ତି ଘଟାଇଛି । ଯୁଗଶିଳ୍ପୀର ଭୂମିକାରେ ଅବତୀର୍ଣ୍ଣ ହୋଇ ଧଉଳିର ପାଦଦେଶରେ ନୀରବ, ନିକାଞ୍ଚନରେ ଦଣ୍ଡାୟମାନ କବି ସତେ ଯେପରି ଚନ୍ଦ୍ର ପ୍ରତିମା-ଠାରୁ ଏକ ନବ ଜୀବନର ଶପଥ ନେଇ ବିଦାୟ ନେଉଛନ୍ତି ।

"ନବୀନ ଜୀବନେ ଆଜି ଯୋଡ଼ି ସ୍ୱର୍ଣ୍ଣ ଆଶା
ପ୍ରତିମା, ବିଦାୟ ମାଗେଁ ! କଳକଣ୍ଠ ଭାଷା
ଫଳାଇବ କର୍ମେ କର୍ମେ ସାଧନା ଜୀବନେ
ଆତ୍ମବଳି ଦେବ ମମ ଜାତି ଜାଗରଣେ ।"

ଏହି ସ୍ଥୂଳ ବିବରଣୀ ଭିତରେ 'ପାଷାଣ ଚରଣେ ରକ୍ତ' କାବ୍ୟର ଯଥାର୍ଥ ମର୍ମଭେଦ କରିବା ସମ୍ଭବ ନୁହେଁ । ଏହା କାବ୍ୟଗତ ପରିପୂର୍ଣ୍ଣତା ସୁପରିକଳ୍ପିତ କାହାଣୀ ଅଥବା କାହାଣୀରେ ଆବେଗଧର୍ମିତା ଉତ୍କଣ୍ଠା ସୃଷ୍ଟିର ପ୍ରୟାସରେ ନୁହେଁ; ମାତ୍ର ସ୍ଥଳ ବିଶେଷରେ ନାୟକ ନାୟିକାଙ୍କ କଣ୍ଠରେ ନାଟକୀୟ ସଂଳାପ ସଂଯୋଜନା ପ୍ରାକୃତିକ ଦୃଶ୍ୟର ଅବତାରଣା ଲାଗି ଉଦ୍ଦିଷ୍ଟ । ବାତ୍ସଲ୍ୟ, କରୁଣ ଅଥବା ବୀରରସ ବ୍ୟଂଜକ ଚିତ୍ର ଅଙ୍କନରେ କବିଙ୍କ ସୃଷ୍ଟି କ୍ଷମତା ଓ ମୌଳିକତା ପ୍ରସ୍ଫୁଟିତ । ବହୁ ସ୍ଥଳରେ ଆଦର୍ଶର ପ୍ରଶ୍ନର ସଙ୍ଗେ ଯେପରି କି କବିଙ୍କ ଭାବଚିନ୍ତାକୁ ଖଣ୍ଡନ କରୁଅଛି । ଶିଶୁ ଚନ୍ଦ୍ରକୁ କଳିଙ୍ଗ ଯୁଦ୍ଧର କାରଣ ବୁଝାଇବାକୁ ଯାଇ ଶାମୁକ ମୁଖରେ କବି ଯେଉଁ ଉକ୍ତିମାନ ଦେଇ-ଅଛନ୍ତି, ତାହା ମଧ୍ୟରେ ଯେପରି କି ଭାରତବର୍ଷର ଅହିଂସା ସ୍ୱାଧୀନତା ସଂଗ୍ରାମର ଆଦର୍ଶ ମୂର୍ତ୍ତିମନ୍ତ ହୋଇଅଛି ।

"ବିଶ୍ୱମାନବ ଜାତି ଆତ୍ମା ପରେ ନାହିଁ
କ୍ଷୁଦ୍ର, ନୀଚ, ଖଣ୍ଡ, ପଶୁ, ପାଷାଣ ହୁଅଇ
ରଣେ ମାତି, ଅନ୍ତରର ଦେବ ଭାବ ମାନ
ଦେଇ ବଳି, କରେ କ୍ଷୁଣ୍ଣ ମାନବ ସମ୍ମାନ ।"

( କୁଂଜବିହାରୀ ସଞ୍ଚୟନ ୨ୟ ଭାଗ ପୃ ୧୯ )

ଜାତୀୟତାର ଆଦର୍ଶ ପଦେ ପଦେ କବିଂକୁ ଉଦ୍‌ବୁଦ୍ଧ କରିଛି । 'ପ୍ରାଣଠାରୁ ମୂଲ୍ୟବାନ ଜାତୀୟ ସମ୍ମାନ', 'ଜାତିର ଗୌରବ ଧନ ପ୍ରିୟ ସ୍ୱାଧୀନତା' ଭଳି ଉକ୍ତିରେ ଅଥବା କଳିଙ୍ଗର ଜୟଗାନ ଗାଇବାକୁ ଯାଇ କବି ଯେପରି କି ରାଧାନାଥ ଓ ସତ୍ୟବାଦୀ ଯୁଗର ଜାତୀୟତାବୋଧକୁ ପୁନଃପ୍ରତିଷ୍ଠା ଦେଇଛନ୍ତି ।

"ପୁଣ୍ୟମୟୀ କଳିଙ୍ଗ-ଜନନୀ
ସ୍ୱର୍ଗସମ ମନୋରମ, ବନ୍ଦେ ସନସନୀ
ଦେବତାର ଶ୍ୱାସସମ ସୁରଭି ସମୀର,
ପୀୟୂଷରୁ ବଳି ଯହିଁ ନଦୀହ୍ରଦ ନୀର,"

( କୁ. ବି. ସ. ୨ୟ ଭାଗ ପୃ.୧୦୪ )

ସ୍ଥାନେ ସ୍ଥାନେ ଭାବର ଆବେଗରେ ଭାଷା ଯେପରି କି ପ୍ରକାଶର ଧାରା ଖୋଜି ପାଇନାହିଁ ଅଥବା ଗ୍ରାମୀଣ ଯାତ୍ରା ସଙ୍ଗୀତର ଲୟ ଅନୁସରଣ କରିଅଛି । ଯେପରି କି—

"ମହାବଳୀ ଶିଶୁ ବଜ୍ରଗର୍ଭୁଁ ଜନ୍ମ କରି
ଗଢିବ କି ତାରେ ଖାରୁ ଶୃଗାଳ ଯେପରି ?" ( ପୃ ୧୧୧ )

ଯଥା— "ବୀର ମୁହଁ ଯୁଝିନାମେ ଉଠେ ଆସ୍ଫାଳୁଥି
ସିଂହସମ, ଇତ୍ୟାଦି ।

କାବ୍ୟଟିର ଛନ୍ଦେ ଛନ୍ଦେ ଯେପରି କି ଗ୍ରାମ୍ୟଜୀବନର କେତେ ସରସ ଚିତ୍ର ଫୁଟି ଉଠିଅଛି । ସଜଡୀପୁରର ଝଟକ 'ଦୟା' ଓ 'ଭାର୍ଗବୀ' ନଦୀର ପୁଳିନରେ କବିଙ୍କର କେତେ ଶୈଶବ ସ୍ମୃତି ଯେପରି କି କବିଙ୍କର ସ୍ୱପ୍ନମୟ ଭାଷାରେ ଆତ୍ମପ୍ରକାଶ କରିଅଛି । ସେହି ଅତି ପରିଚିତ ଗୋଧୂଳି ଚଳଚଞ୍ଚଳ ସାନ୍ଧ୍ୟ କୃଷ୍ଣ ମେଘର କୋଳାରୁ ଯେପରିକି ସନ୍ଧ୍ୟାସ୍ନାନ ପାଇଁ ପୃଥିବୀକୁ ଅବତରଣ କରିଆସେ । ପ୍ରକୃତିର ରୂପମୟ ଚିତ୍ର ଦେଖାଇବାକୁ ଯାଇ କବି କଳ୍ପନାର ଇନ୍ଦ୍ରଜାଲ ସୃଷ୍ଟିର ପ୍ରୟାସ କରିଛନ୍ତି । ଏହି ସବୁ ବର୍ଣ୍ଣନା ଯେତେ ମନୋଜ୍ଞ ହେଲେ ବି ସ୍ଥାନେ ସ୍ଥାନେ ଆଖ୍ୟାନ କାବ୍ୟର ପ୍ରବହମାନତାରେ ବାଧକ ହୋଇଅଛି । ଦୟାକୂଳରେ ଧଉଳି ପାଦଦେଶରେ ପ୍ରତିମା ଚରଣରେ ଭକ୍ତ ବିନ୍ଦୁର ଆବିର୍ଭାବର ପୂର୍ବରୁ ପୁରଶିଳ୍ପୀ ମୁଖରେ ସନ୍ଧ୍ୟା ବର୍ଣ୍ଣନା ବା କାବ୍ୟର ଆରମ୍ଭରେ ସୁଦୀର୍ଘ ଉଷାର ବର୍ଣ୍ଣନା ଅଥବା ପ୍ରତିହାମୁଖରେ ଜ୍ୟୋତ୍ସ୍ନାସ୍ନାତ ନିଶୀଥ ପ୍ରକୃତିର ଉଦାତ୍ତ ବର୍ଣ୍ଣନା, କାବ୍ୟଟିକୁ ଆଖ୍ୟାନ କାବ୍ୟ ସ୍ତରରୁ ଗୀତିଧର୍ମୀ ପ୍ରକୃତିକାବ୍ୟ ସ୍ତରକୁ ନେଇ ଆସିଅଛି । ସେହି ମନୋଜ୍ଞ କୁମାର-ପୂର୍ଣ୍ଣିମା ରାତ୍ରିର ବର୍ଣ୍ଣନାଟି ସ୍ମରଣ କରାଯାଇ ପାରେ—

"ପୁଷ୍ପପତ୍ର ମର୍ମରରେ ନଦୀ କଳସ୍ୱରେ
ଝିଲ୍ଲୀ ଝଂକାରିତ ଚିର ଗମ୍ଭୀର ଗହ୍ୱରେ
ବସିଲା ପ୍ରକୃତି ସବ ସମ୍ମିଳିତ ତାନେ
ସ୍ତୁତି କରେ ସନ୍ନ୍ୟାସିନୀ ଉମା ସମ ଧ୍ୟାନେ
ବାଧାତୀରେ କି ଆଜି ସର୍ବ ଶିଳ୍ପ-ଶୋଭା ସୀମା
ଦେଖାଏ ଧରଣୀ ରଙ୍ଗେ କୁମାର-ପୂର୍ଣ୍ଣିମା ।" (ପୃ ୧୭)

ଚରିତ୍ର ଚିତ୍ରଣରେ ସ୍ୱାଭାବିକତା ଅପେକ୍ଷା କବିଂକ ଆଦର୍ଶବାଦୀ ମନର ପରିଚୟ ଅଧିକ ମିଳିଥାଏ । ମନେହୁଏ ଏହା ଯେପରି କି ଶିଳ୍ପ ସୃଷ୍ଟିର ଅନନ୍ୟ ଏକ କବିକର୍ମ । କାବ୍ୟର ପ୍ରଧାନ ନାୟକ ଚିତ୍ର । ସେ ଶିଶୁ ହୋଇବି ଋଷିଭଳି ବିଜ୍ଞ, ପ୍ରୌଢ଼ ଭଳି ପ୍ରବୀଣ ଓ କବି ଭଳି ଭାବ ବିଭୋର ।

### ଚୂରଣିକା :

ଉତ୍କଳର ପ୍ରାଚୀନ ଐତିହ୍ୟ ଓ ଆଧୁନିକ ଆଦର୍ଶବାଦ ଭିତ୍ତିରେ ରଚିତ ଦ୍ୱିତୀୟ କାବ୍ୟ 'ଚୂରଣିକା' । ୧୯୪୧ରେ 'ଧର୍ମ' ନାମରେ ଏହି କାବ୍ୟଟି ରଚିତ ହୋଇଥିଲା । ପ୍ରକାଶ ପୂର୍ବରୁ କାବ୍ୟଟିର ପରିବର୍ତ୍ତିତ ନାମ ରଖାଯାଇଥିଲା 'ଚୂରଣିକା' । ଏହି କାବ୍ୟଟିର ଏକ ବିସ୍ତୃତ ମୁଖବନ୍ଧ ଲେଖିଥିଲେ କବିଙ୍କ ବନ୍ଧୁ ରାଧାମୋହନ ଗଡ଼ନାୟକ । ଏହାର ବିଷୟବସ୍ତୁର ସୂଚନା ଦେବାକୁ ଯାଇ ସେ ଲେଖିଥିଲେ, "ସନ୍ଧ୍ୟାରେ

ଏହାର ଆରମ୍ଭ, ପ୍ରଭାତରେ ଶେଷ । ସତେ ଯେମିତ ଗୋଟିଏ 'ମିଡ୍ ସମର୍ ନାଇଟ୍ସ ଡ୍ରିମ୍' । ସାଗର ସୈକତରେ ଉର୍ବଶୀ, ରମ୍ଭା, ଚନ୍ଦ୍ରଲେଖା, ମେନକା ରଚିଛନ୍ତି ଜ୍ୟୋତ୍ସ୍ନା ବିହାର । ଧରଣୀରେ ଆସି ସେମାନଙ୍କ ସହିତ ଦେଖା ଦେଇଛି ସାଗର-ସମ୍ଭବା ସାଗରିକା । ହାତରେ ଧର୍ମପଦର ମୂର୍ତ୍ତି । ଅପ୍ସରୀମାନଙ୍କ ଲୀଳାଲୋଳ ଦୃଷ୍ଟିରେ ଖୋଲି ଦେଇଛି ଏକ ଯୁଗର ରହସ୍ୟ ଯବନୀ, ବସ୍ତୁସ୍ପୃକର ଆଲେଖ୍ୟାବଳି । ଟେମ୍ପେଷ୍ଟ୍ର ପ୍ରସ୍‌ପେରୋ ପରି ଦୃଶ୍ୟକାବ୍ୟର ସୂତ୍ରଧାରିଣୀ ସାଗରିକା, ଶେଷରେ ହୋଇଛି ସ୍ମରଣିକା । ପଣ୍ଡିତ ନୀଳକଣ୍ଠଙ୍କ 'କୋଣାର୍କ'ର ସ୍ମରଣ କହିଛି ନରସିଂହ ଓ ମାୟାଦେବୀଙ୍କର ପ୍ରଣୟ କାହାଣୀ । କୁନ୍ତବିହାରୀଙ୍କ ସ୍ମରଣିକା ଦେଖାଇଛି କୋଣାର୍କର ଦୃଶ୍ୟକାବ୍ୟ ।

'ସ୍ମରଣିକା' ଏକ କାବ୍ୟନାଟିକା ଭାବରେ କଳ୍ପିତ ହେଲେ ହେଁ ନାଟ୍ୟଧର୍ମ ଏଥିରେ ସୁରକ୍ଷିତ ହୋଇନାହିଁ । ଅଧିକନ୍ତୁ ଏକ ବର୍ଣ୍ଣନାତ୍ମକ କାବ୍ୟପ୍ରକୃତ, ପରମ୍ପରା, କିମ୍ବଦନ୍ତୀ ଓ ଗ୍ରାମୀଣ ଆଲେଖ୍ୟ ଅଙ୍କନରେ ଏହା ବିଶେଷ ସାର୍ଥକତା ଲାଭ କରିଅଛି । ବହି ରଙ୍ଗରେ ଏକ ପଞ୍ଚାଙ୍କ ନାଟକଭଳି ଏହାର ପାଞ୍ଚଟି ସର୍ଗ ହିଲ୍ଲୋଳିକା, କୁସୁମିକା, ଉଲ୍ଲାସିକା, ମଞ୍ଚିକା ଓ ସ୍ମରଣିକା ନାମରେ ନାମିତ । ସମୁଦ୍ରର ପୃଷ୍ଠପଟ ମଧ୍ୟରେ ପୂର୍ଣ୍ଣୋଦିତ ଚନ୍ଦ୍ରର ଜ୍ୟୋତ୍ସ୍ନାର ପ୍ଲାବନରେ ଅପ୍ସରୀମାନଙ୍କର ନୃତ୍ୟରାସ, ସାଗରିକାର ଆଗମନରେ କାବ୍ୟକାହାଣୀର ଅବତାରଣା ହିଲ୍ଲୋଳିକାରେ ସ୍ଥାନ ପାଇଅଛି । ସ୍ଥାନେ ସ୍ଥାନେ ବର୍ଣ୍ଣନା ପୌରାଣିକ ଅତିରଞ୍ଜନ ଓ ପୁନରାବୃତ୍ତିବହୁଳ ହୋଇଅଛି ! ଯଥା—

"ପବନେ ଜୋଛନା ମିଶେ ସାଗରେ ଜୋଛନା
ଜୋଛନାରେ କେ କରିଛି ଆକାଶ ରଚନା ?
ଜୋଛନାର ଫୁଲ ଦେଖ, ଜୋଛନାର ଫଳ
ଜୋଛନାର ପଦ୍ମଦାମେ ଦ୍ରୁମ ମନୋହର ।

× × × ×

ଜୋଛନାର ସପନ ଏ କ୍ଷୀରଭରା ସିନ୍ଧୁ
ଆମେ ଏହି ଜୋଛନାର ଝରିଥିବା ବିନ୍ଦୁ ବିନ୍ଦୁ ।"

ଦ୍ୱିତୀୟ ପର୍ବ 'କୁସୁମିକା'ରେ ସାଗରିକା ଅପ୍ସରୀମାନଙ୍କ ସମ୍ମୁଖରେ ଉନ୍ମୋଚିତ କରିଛି ଅସମାପ୍ତ କୋଣାର୍କ ମନ୍ଦିର ଓ ମନୋଜ୍ଞ କୋଣାର୍କନଗରର ଚିତ୍ର । ଶିଳ୍ପୀର କଳ୍ପନାରେ ଫୁଟି ପଡ଼ିଥିବା ଅଜସ୍ର ଚିତ୍ର—ସଂଘର୍ଷ ଓ ସଂଗ୍ରାମର ତଥା ଉତ୍ଥାନ-ପତନର ଚିତ୍ର ଜୀବନ୍ତରୂପ ଧାରଣ କରିଅଛି । ଏହି ଚିତ୍ରର ଭିତ୍ତିଭୂମି ଉପରେ ଅଙ୍କିତ ହୋଇଛି କୋଣାର୍କ ନିର୍ମାଣ ସମ୍ପର୍କିତ ଧରମା ଓ ବିଶୁ ମହାରଣା-କିମ୍ବଦନ୍ତୀ । ତୃତୀୟ ପର୍ବ 'ଉଲ୍ଲାସିକା'ରେ ସମଗ୍ରଭାବରେ ଚିତ୍ରର ପଟ୍ଟପରିବର୍ତ୍ତନ ଘଟିଅଛି । ଏଥିରେ

କାବ୍ୟର ଗତି ଗୁରୁଗମ୍ଭୀର । ଧରମା ଓ ବିଶୁର ସଂଲାପ ମଧ୍ୟରେ ଶିଳ୍ପୀ ପ୍ରବର ବିଶୁ ମହାରଣାର ଅହମିକା ଓ ଧର୍ମପଦର ପ୍ରତିଭା-ଶାଣିତ ବଚନୋକ୍ତି ମଧ୍ୟରେ କୋଣାର୍କର ମୃତ୍ତିମଗ୍ନ ରହସ୍ୟ ଉଦ୍‌ଘାଟିତ ହୋଇଅଛି । ଚତୁର୍ଥ ପର୍ବ 'ମହୁଡିକା'ରେ ଏକ ବିୟୋଗାନ୍ତ ନାଟକର ସତେ ଯେପରି କି ଅଭିନୟ ଘଟିଅଛି । ଧରମା ବିଦାୟ ନେଇଛି ବିଶୁଠାରୁ; ସମୁଦ୍ରର ଅତଳରେ ସ୍ଥାନ ପାଇଛି ପାତାଳପୁରର ଦେବତାରୂପେ । ଏହି ଦେବତାର ମହତ୍ତ୍ୱ ବର୍ଣ୍ଣନା କରିଛି ସାଗରିକା ଶେଷ ପର୍ବ 'ଗୃରଣିକା'ରେ । ଏହି ରହସ୍ୟ ଉନ୍ମୋଚନ କରିଛି ସେ । ସେ ପୁଣି ପାତାଳକୁ ଫେରି ନ ଯାଇ ଉତ୍କଳକୁ ଫେରି ଆସିଛି 'ଗୃରଣିକା'ରୂପେ । ଗୃରଣିକା ମୁଖର ଭାଷା ଏକ ସ୍ୱପ୍ନୋତ୍ଥିତ ଜାଗରଣ-କାମୀ କବି ପ୍ରାଣର ଭାଷା । ଏକ ପରାଧୀନ ଜାତି ଆଗରେ ଭବିଷ୍ୟତର କନକସ୍ୱପ୍ନ ଏଥିରେ ପ୍ରକାଶିତ । ଏହି ଜାଗରଣର ମନ୍ତ୍ର ଉଦାତ୍ତ ଓ ଗମ୍ଭୀର । ମାତ୍ର ଗଦ୍ୟମୟ ଓ ପ୍ରଚାରଧର୍ମୀ ।

"ଭ୍ରମିବ ଉତ୍କଳ ଏବେ ଗୃରଣିକା ପରି
ଗାଉଥିବ ତୂର୍ଯ୍ୟନାଦେ ଜାଗରଣ ଗୀତି
ହୃଦେ ହୃଦେ ଜଗାଇବ ଜାତି-ଦେଶ ପ୍ରୀତି ।

× × ×

ନ ପାରଇ ସହି ଦେବ ଦେଶର ପତନ
ଭୀରୁତା ହେଉ ଗୋ ମୋର କଳଯାଏ ମନ ।"

ଅଥବା— "ଉତ୍କଳେ ଜାଗ୍ରତ ଆଣି ଭ୍ରମିବ ଭାରତେ
ଭାରତୁ ବ୍ୟାପିବ ଏମେ ନିଖିଳ ଜଗତେ ।

× × ×

ଇହଲୋକ ପରଲୋକେ ମିଳାଇବେ ହାତ
ଜଗତ କୁଟୁମ୍ବ ପିତା ପ୍ରଭୁ ଜଗନ୍ନାଥ ।"

ଏହି ସବୁ ସମ୍ବୋଧ- ରଚନା ମଧ୍ୟରେ ଗାଥାକାବ୍ୟର ତରଳ କଳ୍ପନା ଯେପରିକି ମ୍ଳାନ ହୋଇଯାଇଛି । ଏକ ସମୃଦ୍ଧ ଆଦର୍ଶ ଭବିଷ୍ୟତର କଳ୍ପନାରେ ଏକ ଗ୍ରାମୀଣ ମନର ସହଜ ପ୍ରାର୍ଥନା ଗୀତ ମଧ୍ୟରେ କାବ୍ୟଟି ଶେଷ ହୋଇଛି—

"ଧେନୁ ହେବ ଦୁଗ୍ଧବତୀ କାଳେ ହେବ ବୃଷ୍ଟି
ଧ୍ୱଂସର କବରେ ହେବ ନବତମ ସୃଷ୍ଟି ।"

## ମାଟି ଓ ଲଠି :

ଇତିହାସ, କାମ୍ୟତନ୍ତ୍ରୀ, ଅଖାଡର ସ୍ମୃତିଗ୍ରନ୍ଥ ମଧ୍ୟରେ କାବ୍ୟରଚନାରେ କବି ଯେଉଁ ଅଭ୍ୟାସରମ୍ଭ କରିଥିଲେ ତାହାର ଏକ ପରିଣତ ରୂପ ଦେଖିହୁଏ 'ମାଟି ଓ ଲଠି' କାବ୍ୟରେ । ଏହା ଏକ ସାମାଜିକ କାବ୍ୟ । ଗ୍ରାମୀଣ କୃଷି ସଭ୍ୟତା ଓ ନଗର-ମୁଖୀ ଯନ୍ତ୍ର ସଭ୍ୟତା ମଧ୍ୟରେ ଏକ ସଂଘର୍ଷ ଓ ସମନ୍ୱୟର ଭୂମିକାରେ କାବ୍ୟଟି କଳ୍ପିତ । ଏହି କାବ୍ୟର ନାୟକ ସତବାଜ । ଗ୍ରାମର ଜମିଦାର ଓ କାରଖାନାର ମାଲିକଙ୍କ ସଂଳାପ ମଧ୍ୟରେ ପ୍ରଥମ ସ୍ତରରେ ରଚିତ କାବ୍ୟସୂକ୍ତିକର ନାଟ୍ୟଧର୍ମ ରକ୍ଷିତ ହୋଇଅଛି । ମାତ୍ର ଗତିଶୀଳତା ଏହି କାବ୍ୟର ପ୍ରଧାନ ଧର୍ମ । ଏଥିରେ ବାକ୍‌ପଲ୍ଲବନ ସ୍ୱଳ୍ପ । ବର୍ଣ୍ଣନା ସଂଯତ ଓ ବସ୍ତ୍ୱାନୁସାରୀ । କାବ୍ୟର ନାୟକ ନିଜେ ହିଁ ରଙ୍ଗମଞ୍ଚକୁ ଆସି କାବ୍ୟର ଉପକ୍ରମଣିକା ରଚନା କରିଅଛନ୍ତି ।

"ଓଡ଼ିଚଷା ମୁହିଁ ମାଟି ଚେଲା ସାଥେ ଲଢ଼ାଇ କରି
ଦେହେ ଦେହେ ଲୁହା ଶାବଳର ବଳ ରଖିଚି ଭରି ।
ସେହି ବଳେ ମୁହିଁ କରେ ରୋଜଗାର ଯେତେକ ଧନ
ଧନ ନୁହେଁ ସେତ କଲିଜା ତଳର ରକ୍ତକଣ ।"

ଆଠଟି ପର୍ଯ୍ୟାୟରେ ଏହି କାବ୍ୟଟି ରଚିତ । ପ୍ରତ୍ୟେକଟି ପର୍ବରେ ସଂଯତ ବର୍ଣ୍ଣନାର ଗୌଣ ତୀକ୍ଷ୍ଣ ଭାଷା ମଧ୍ୟରେ କାବ୍ୟର କାହାଣୀ ସ୍ତରେ ସ୍ତରେ ଉନ୍ମୋଚିତ ହୋଇଅଛି । ପ୍ରଥମ ପର୍ବଟି ଏକ ସମ୍ବୋଧଗୀତ ଅନୁରୂପ । ସରଳ କୃଷକ ସତବାଜର ଚରିତ ତଥା ଗ୍ରାମ୍ୟ ପରିବେଶରେ ସ୍ନେହ ମମତା ଭରି ଏକ ଅନ୍ତରଙ୍ଗ ଦରିଦ୍ର କୃଷକ ପରିବାରର ଚିତ୍ର କମନୀୟ ଭାଷାରେ ଅଙ୍କିତ ହୋଇଅଛି । ଦ୍ୱିତୀୟ ସର୍ଗରେ ସତବାଜ ମୁଖରେ ଗ୍ରାମଜୀବନର ବିପର୍ଯ୍ୟୟର ଚିତ୍ର ଅଂକିତ । ଏହି ଗ୍ରାମ ସତେ ଯେପରି ଏକ ମରୁମୟ, ଦାରିଦ୍ର୍ୟ ଅଭିଶପ୍ତ, ପ୍ରାଣହୀନ ଗ୍ରାମ, ଏକ ବର୍ଣ୍ଣାଢ୍ୟ କାରୁଶିଳ୍ପର ଭଗ୍ନସ୍ତୂପ । ସତବାଜ ମୁଖରେ ଗୋଟିଏ ଭଜନଭିତରେ ଏହି ସର୍ଗର ଭାବମୂର୍ତ୍ତି ରୂପ ପାଇଅଛି ।

"ଗରିବ ଆଖିରେ ଲୁହ ଦେଲ ତୁମେ କାହିଁକି ?
ତୁମ ଅବସ୍ଥର କଳଂକ ଧୋଇବା ପାଇଁକି
ବେଢ଼ିର ଉପରେ କୋରଡ଼ା ମାରୁଚ ଶକତ
ଏ କାଂଗାଳ ମଲ ହେବେ ବୋଲି ତୁମ ଭକତ ।"

କବିଙ୍କର ମାନବ ଦରଦୀପ୍ରାଣ କାଲ୍ପନିକ ଧର୍ମବିଶ୍ୱାସ ଉପରେ ଆଘାତ ହାଣି ଏକ ପ୍ରଥାରହିତ ସମାଜର ଅଦର୍ଶ ଅଙ୍କନ କରିବାକୁ ଗୃହିଁଛି । ତୃତୀୟ ସର୍ଗ ଅଙ୍କନ କରିଛି ଏକ କମନୀୟ, ପ୍ରଶାନ୍ତମୟ ସଂଧ୍ୟାର । ଅଗାଧୁ ଦଲେଇ ଓ ସତବାଜର ସଂଳାପ ମଧ୍ୟରେ ଗ୍ରାମସଭା ଶପଥ ନେଇଛି—

"ଆମର ଭାଗ୍ୟ ଗଢ଼ିବା ଆମରି ହାତରେ
ଆପେ ନକରିଲେ କରେ ନାହିଁ ନିଜ ବାପରେ ।"

ସୁନାପଦା ଗାଆଁ ସୁନାରେ ପରିଣତ ହୋଇଛି । ମୁଖେ ମୁଖେ ଉତ୍ସାହର ବାଣୀ, ବୃଦ୍ଧ ପ୍ରାଣରେ ତରୁଣ ଉନ୍ମାଦନା—

"ଅଶୀ ବରଷର ବୁଢ଼ା ଯେ ହୋଇଲା ଯୁଆନ
ଲାଗିଗଲା ଗାଆଁ କାମେ ହୋଇ ଲହୁଲୁହାଣ ।"

ଗଢ଼ାଗଲା ପାଠାଗାର, ଖୋଲା ହେଲା ବିଦ୍ୟାଳୟ । ଏକ ନୂତନ ଜୀବନର ସ୍ୱନାଦ ପଡ଼ିଲା । ଅଗ୍ରଗାମୀ ମଣିଷର ସମାଜ ମୌସୁମୀ ଭଳି ଗତିଶୀଳ ଓ ସୃଷ୍ଟିଶୀଳ—

"ଅଗ୍ରସର ହୋଇ ଧାଇଁଲା ନୂତନ ଜୀବନ
ମୌସୁମୀ ସମ ସୃଷ୍ଟିଶୀଳ ସେ / ସୁନ୍ଦର କରେ ଭୁବନ ।"

ଚତୁର୍ଥ ଓ ପଞ୍ଚମ ସର୍ଗରେ ଜମିଦାର, ଜମିଦାରଙ୍କ ପାଖଲୋକ ନିଧିମିଶ୍ର, ଜମିଦାରଙ୍କ ପାଇକ, କେଳେ କନ୍ଦଳ ଓ ବିଶ୍ୱାସ ଘାତକତାର ଚିତ୍ର, ମିଥ୍ୟା ବର୍ଗ୍ଗର ଚିତ୍ର ଓ ପରିଶେଷରେ ପିତୃଋଣ ପରିଶୋଧ ପାଇଁ ସତବାଳି ଗ୍ରାମ ଛାଡ଼ି ଯିବାର ଅଙ୍ଗୀକାର ପ୍ରସଙ୍ଗ ବର୍ଣ୍ଣିତ । ତୃତୀୟ ସର୍ଗରେ "ଯୋଡ଼ଶ ଫୁଲିଆ ପୂରୁଷ କରଣ" ଝଲକ ମଧ୍ୟରେ ଯେପରି ଏକ ପଲ୍ଲୀ ଗୋଧୂଳିର ଅନୁପମ ଚିତ୍ର ଦେଖିବାକୁ ମିଳିଥିଲା, ଷଷ୍ଠସର୍ଗରେ "କୁଆଁ ତରା ଦପ ଦପ ପାହିଆସେ ରାତି / ବାଟୁଆଙ୍କୁ ଅନୁକୂଳ ବୁଝେଇ ପାହାନ୍ତି" ମଧ୍ୟରେ ସତବାଳିର ବିଦେଶଯାତ୍ରାର ଚିତ୍ର ପ୍ରଦତ୍ତ । ଶତଦୀର୍ଘଶ୍ୱାସ ଅକୁହା ବେଦନାର କାହାଣୀ; ସତେ ଯେପରିକି ଅଶ୍ରୁ ଓ ଇଙ୍ଗିତରେ ପଲ୍ଲୀବାଳା ଜନନୀ ଓ ବଧୂର ଆଖିରେ ଫୁଟି ଉଠିଅଛି । ସତବାଳି ଏକ ଅପରିଚ୍ଛନ୍ନ କ୍ଲାନ୍ତିମୟ ଦୀର୍ଘଯାତ୍ରା ପରେ ଲୌହ ସହରର 'କୁଲ୍ଟି'ରେ ପହଞ୍ଚିଅଛି । ଏଠାରେ ଶ୍ରମିକବସ୍ତିର ଚିତ୍ର ଗ୍ରାମହରା ସତବାଳିର ବିଷାଦର ଚିତ୍ର ହୃଦୟସ୍ପର୍ଶୀ ଭାଷାରେ ଅଙ୍କିତ । ସତବାଳି ଝୁରିହେଉଛି—"ଏଠି ଖାଲି ଦୁଃଖକଲା କୁହୁଡ଼ିଆ ଦୁଃଖ
ପ୍ରାଣରେ ଅଲଙ୍ଘ୍ୟ ଭରେ / କାହିଁ ସ୍ନିଗ୍ଧଧାର
ନଦୀସ୍ରୋତ ? ଧୂଆଁ ଧୂସ୍ର ପାଉଁଶ ଅଙ୍ଗାର
ଉଆଁସ ଅନ୍ଧାର ଖାଲି, କାହିଁ ଶସ୍ୟ କ୍ଷେତ ।"

ଗ୍ରାମ ଜୀବନର ଆଶା ଓ ଆନନ୍ଦ, ପ୍ରକୃତି ଓ ସଙ୍ଗୀତ ସବୁକିଛି ସତବାଳିକୁ ଉଦାସ ଅବସନ୍ନ କରି ଦେଇଅଛି । ଏଇ ଶିଳ୍ପନଗରୀରେ ମଣିଷ ହରାଇଛି ତାର ସମସ୍ତ ମନୁଷ୍ୟତ୍ୱ । ସେ ଯେପରିକି ଏକାନ୍ତ ବ୍ୟକ୍ତିତ୍ୱହୀନ ଯନ୍ତ୍ରର ଅଂଶ ବିଶେଷ ।

"ନାରୀର ନାରୀତ୍ୱ ନାହିଁ, ପୁରୁଷ ପୌରୁଷ
କଳର କୁଲି ସେ ଜଣେ ଚୁଲିର ପାଉଁଶ ।
କଳକୁଲି, କୁଲିକଳ, ତଫାତ କେବଳ
ଅଚଳ ହୋଇଲେ ଫଳ ଜାଳେ ଚନ୍ଦ୍ରାନଳ ।
କୁଲି ମଲେ ମାଲିକର ନ ଥାଏ ଭାବନା
ପଡ଼ନର ପଛେ ପଛେ ଆସଇ ମଦନା ।"

ମାତ୍ର ମାନବଧର୍ମୀ ସତବାଜ ଶୁଣିବାକୁ ପାଇଛନ୍ତି ଅଗଣିତ ମଣିଷର ବ୍ୟଥାର କାହାଣୀ ।-ତାହାର ନେତୃତ୍ୱରେ ଗଢ଼ି ଉଠିଛି ଶ୍ରମିକ ସଂଘ, ଭାଗବତଘର, ପ୍ରତିଷ୍ଠା ହୋଇଛନ୍ତି ଜଗନ୍ନାଥ ମୂର୍ତ୍ତି । ନୈଶ ବିଦ୍ୟାଳୟ ଓ ପାଠାଗାର ଖୋଲାଇଛି ନୂତନ ଚେତନାର ଆଲୋକ । ସହସ୍ର କଣ୍ଠରେ ଫୁଟି ଉଠନ୍ତି ସାମ୍ୟ ଓ ଐକ୍ୟର ମହାମନ୍ତ୍ର । ସତବାଜର କଣ୍ଠରେ ଧ୍ୱନିତ ହୋଇଛି ନବଜୀବନର ଗାନ ।

"ଯେଉଁ ଦେଶ ଲୋକେ ଶ୍ରମର ତାକତେ
ଦିଲ୍ଲୀ କଲିକତା ଅଛନ୍ତି ଗଢ଼ି
× × × ସେହି ଦେଶ କବି ବିଜୁଳି ନାଲି ବି
ଦେହେ ଦେହେ ଦେବ ନବ ଜୀବନ
ମୋ ଦେଶର ଲୋକେ ଜାଗିବେ ଆଲୋକେ
ଜଗାଇବେ ଦେହି ଦୀନ ପୀଡ଼ନ ।
ହେ ଦୁଃଖ ବେଳକୁ
ଗୃହୁଁ ଥିବେ ନିଜ ଭୁଜବଳକୁ ।"

ସପ୍ତମ ସର୍ଗରେ ଶ୍ରମିକ ଓ ମାଲିକଙ୍କର ସଂଘର୍ଷ ଓ ଅଷ୍ଟମ ସର୍ଗରେ ଏକ ଗତିଶୀଳ ଭବିତବ୍ୟର ଚିତ୍ର ମଧ୍ୟରେ ସତବାଜର ଗ୍ରାମବାହୁଡ଼ା ପ୍ରାଣସ୍ପର୍ଶୀ ହୋଇଅଛି । ନଗରରେ ସଂଘର୍ଷ, ଗ୍ରାମରେ ମଧ୍ୟ ସଂଘର୍ଷ । ଏହି ସଂଘର୍ଷ ମଝିରେ ଧାବମାନ ଅଗ୍ରଗାମୀ ଜନତାର ସମ୍ମୁଖରେ ସତବାଜର ଅସହାୟତା ମଧ୍ୟରେ କାବ୍ୟର ଶେଷ ।

"ଧାଉଁଛି ଜନତା ଧାଉଁ ଅଛି ସତବାଜ
ଧାଉଁଛି ଆକାଶ ବକ୍ଷେ ତାରକାରାଜି
ଅଗ୍ରଣୀ ପଦ ପଟୁଆରେ ଦେଇ ତାଳ
ଧାଉଁଛି କାନନ ପର୍ବତ ନଦୀଧାର ।
ଧାଉଁଛି ଧରଣୀ ନବଜାଗରଣୀ ଗାଇ
ଆଗାମୀ ଯୁଗର ବାର୍ତ୍ତା ଆଣିବା ପାଇଁ ।"

### ଡୁଡୁମା, ବାଗ୍ରା ଓ କଂକାଳର ଲୁହ :

'ଚିଲିକା' ରଚନା କରି ରାଧାନାଥ ପ୍ରକୃତି ବର୍ଣ୍ଣନାମୂଳକ ଖଣ୍ଡକାବ୍ୟ ରଚନାର ପରମ୍ପରା ସୃଷ୍ଟି କରିଥିଲେ । ପରବର୍ତ୍ତୀ କାଳରେ ଗଂଗାଧର ଓ ଚନ୍ଦ୍ରମଣି ତାହାର ସ୍ୱାଦ ଓ ସୌନ୍ଦର୍ଯ୍ୟ ଅନୁସରଣ କରିଥିଲେ । କିନ୍ତୁ କବି କୃତ୍ତିବାସଙ୍କର 'ଡୁଡୁମା,' 'ବାଗ୍ରା' (ଫେରିଲି ଲକ୍ଷେ ରୁଧିର ପ୍ରପାତ ଯେଉଁ ମୋ ହୃଦୟୁ କଣେ), 'କଙ୍କାଳର ଲୁହ' ଆକୃତି ଓ ପ୍ରକୃତିରେ ସ୍ୱାତନ୍ତ୍ର୍ୟ ଓ ସାଫଲ୍ୟର ମୁଦ୍ରା ବହନ କରନ୍ତି । ଦୁଇଟି ଜଳପ୍ରପାତ ଡୁଡୁମା ଓ ବାଗ୍ରା ସତେ ଯେପରି କେଉଁ ଏକ ଆଦିମ ନିର୍ଝରର ସ୍ୱପ୍ନଭଙ୍ଗ ଭଳି ଜାତୀୟତା ଓ ମାନବିକତାର ନୂତନ ମନ୍ତ୍ର ଉଚ୍ଚାରଣକାରୀ ପୃଷ୍ଠଭୂମି ରଚନା କରିଅଛି । 'କଙ୍କାଳର ଲୁହ'ରେ ଏକ ପ୍ରାକୃତିକ ବିପର୍ଯ୍ୟୟ, ପ୍ରଳୟଙ୍କରୀ ବନ୍ୟାର ତାଣ୍ଡବ, ଶବମୟ ଚିତ୍ର ଫୁଟିଅଛି । ବ୍ୟକ୍ତିଗତ ଅନୁଭୂତିର ରସରେ ବର୍ଣ୍ଣନାଧର୍ମୀ ଖଣ୍ଡ-କାବ୍ୟ ଗୁଡ଼ିକ ପ୍ରଗୀତିର ସ୍ପର୍ଶ ଚେତନା ଲାଭ କରିଅଛି ।

( ୧୯୪୮ ଡିସେମ୍ବର ମାସରେ ଡୁଡୁମା ପ୍ରପାତ ଉପରେ ଓଡ଼ିଶାର ଜାତୀୟ ଦାବୀ ପ୍ରମାଣିତ କରିବାକୁ ଜୟପୁରଠାରେ 'ଉତ୍କଳ ସମ୍ମିଳନୀ' ଆହୂତ ହୋଇଥିଲା । ଏଥିରେ ଯୋଗ ଦେବାକୁ ଯାଇ କବି ସମ୍ମିଳନୀର ସଭାପତି ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ସହିତ ପ୍ରପାତ ଦେଖିବାର ସୁଯୋଗ ପାଇଥିଲେ ଏବଂ 'ଡୁଡୁମା' ରଚନା କରିଥିଲେ । ୧୯୪୯ରେ ଏହା ଉତ୍କଳ ସମ୍ମିଳନୀ ପକ୍ଷରୁ ପ୍ରକାଶ ପାଇଥିଲା )

'ଡୁଡୁମା' କାବ୍ୟର ଅଥମାରମ୍ଭ ହୋଇଛି ଶାନ୍ତ, ସମାହିତ, ପ୍ରକୃତିର ନିର୍ଜନତା କୋଳରେ ଭବ ତଟଭୂର ଏକ କବିପ୍ରାଣର ଆତ୍ମିକ ଅଭିବ୍ୟକ୍ତି ଭିତରେ । ଦ୍ରଷ୍ଟାର ଅମାସ୍ତିକ ଦୃଷ୍ଟିରେ ପ୍ରକୃତିର ପ୍ରାଣପୂର୍ଣ୍ଣ ପ୍ରକାଶ ଜୀବନ୍ତ ହୋଇ ଉଠିଛି । ପ୍ରକୃତିର ଏକ ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ ଅବଶ୍ୟ ବିଦ୍ୟମାନ । କିନ୍ତୁ କବିଙ୍କ ବୈୟକ୍ତିକ ଦୃଷ୍ଟି ମନୁଷ୍ୟ ଭାବଲୀନତା, ତାହାକୁ ସ୍ୱତନ୍ତ୍ର ରୂପ, ରସରେ ରଞ୍ଜିତ କରେ । ଏକ କ୍ଲାସିକ ଉପମା ଭିତରେ କବି ଡୁଡୁମାର ମଞ୍ଜୁଳ ପ୍ରକୃତି ଭିତରେ ନିଜକୁ ନିମଜ୍ଜିତ କରିଛନ୍ତି ।

"ଅଭାବ ନୀରସ ମୁଖେ ଅଂଗେ ମୋର ହୁଏ ନାହିଁ ଛିଡ଼ା
ହୃଦୟ ଶଶକ ସମ କରେ ଆଜି ଗିରିବନେ କ୍ରୀଡ଼ା ।
ନିର୍ମଳ ମୋ ଚିତ୍ତ ତଳ ଶିବ ଶିର ଗଙ୍ଗାଜଳ ସମ
ବସିଛି ପ୍ରକୃତି କୋଳେ ସଚପଳା ବାଳିକା ଯେସନ ।'

ଏକ ଦିଗରେ ଏକ ବାଧାହୀନ ନିର୍ଲିପ୍ତ ହୃଦୟର ବିସ୍ତାର ଓ ଅନ୍ୟଦିଗରେ ଏକ ସ୍ୱଚ୍ଛମନା ଶିଶୁର କୌତୂହଳ-ପ୍ରକୃତି ଚିତ୍ରକୁ ଯେପରି ପ୍ରାଣପୂର୍ଣ୍ଣ କରିଅଛି, ଅନ୍ୟ ପକ୍ଷରେ ଏକ ବିଦଗ୍ଧ ଆଧୁନିକ ରୁଗ୍ଣ ନଗର-ଜୀବନରେ ପଙ୍କିଳ ଓ ବିକ୍ଷୁବ୍ଧ ଚିତ୍ତର

ଶିରମୁକ୍ତ ସ୍ତରେ ସ୍ତରେ ଝୁଲୁନ୍ତା ଝଣ୍ଡ୍ରକାବ୍ୟଟିରେ ଛଅଗୋଟି ପର୍ଯ୍ୟାୟରେ ଉନ୍ମୋଚିତ ହୋଇଅଛି । ପ୍ରକୃତି ଦେଇଛି ନବନବ ମୁକ୍ତିର ସ୍ୱାଦ, ସ୍ୱାଧୀନତାର ପିପାସା, ଅନୁରାଗର ଉଦ୍ଦୀପନା, ପାରିବାରିକ ସ୍ନେହର ସ୍ପର୍ଶ । କେତେବେଳେ କାନନଜନନୀ କୋଳରେ କର୍ବ ହୋଇଛନ୍ତି ମନ୍ତ୍ରମୁଗ୍ଧ ଶିଶୁ, ପ୍ରିୟତମ ବନ୍ଧୁଗୃହରେ ଦୂରାଗତ ଅତିଥି, ଏକ ସଞ୍ଚାରିତା ଲତା ହୋଇଛି ରସକୌତୁକମୟୀ କିଶୋରୀ ସଂଗିନୀ ।

ନଦୀ ଓ ତାଙ୍କ କେଉଁ ସୁଦୂର ଅତୀତରୁ କବିକଳ୍ପନାରେ ଏକାତ୍ମିକତା ଲାଭ କରି ଆସି ଅଛନ୍ତି । ଦ୍ୱିତୀୟ ପର୍ଯ୍ୟାୟରେ ମାଛକୁଣ୍ଡ ନଦୀର ବର୍ଣ୍ଣନାରେ କବି ଏହି କ୍ଲାସିକ ଉପମାର ବିନିଯୋଗ କରିଅଛନ୍ତି । ସଦାହାସ୍ୟମୟୀ, ଆନନ୍ଦ ମୁଖରା, କେତେ-ବେଳେ ବା ବିରହ-ବିଧୁରା, ଯୌବନୋନ୍ମତ୍ତା ପୁଣି ସାଲଂକାରା ବ୍ରୀଡ଼ାବତୀ ବଧୂ । ପୁଣି ବାବଦୁକା, ଅନୁରାଗିଣୀ, ହାସ କୌତୁକରତା ଅଥବା ଚଣ୍ଡୀ, ପୁଣି କେତେବେଳେ ରୋଗଶୀର୍ଣ୍ଣା, ଜରାଜୀର୍ଣ୍ଣା ନଦୀ ପ୍ରବହମାନା । ବର୍ଣ୍ଣନାର ସ୍ତରେ ସ୍ତରେ ଅଜସ୍ର ଚଳଚ୍ଚଳ ଚିତ୍ର, ଶବ୍ଦର ମୋହନ ଗୁଂଫନ ଓ ଛନ୍ଦର ଦୋଳନରେ ଉଦ୍ଭିନ୍ନ ହୋଇ ପଡ଼ିଅଛି । ଏହି ବେଗବତୀ, ଶୀର୍ଣ୍ଣଶରୀରା, ଉପଳଶାୟିକା, କଳ ନାଦିନୀ, କଲ୍ଲୋଳିନୀ ନଦୀ ସହିତ କବି ଯେପରି କି ଏକ ପ୍ରାଣ ଚଞ୍ଚଳ ଆତ୍ମୀୟତା ସ୍ଥାପନ କରିଛନ୍ତି ।

"ମାଛକୁଣ୍ଡ ଝରଣରେ ବୁଲେ ମନ ହରିଣ ଯେସନ
ମୋ ଜୀବନ ବାର୍ତ୍ତାବହ ଚଳେ ଯେହ୍ନେ ନଦୀର ଜୀବନ
କେତେ ଶିଳା ସାଙ୍ଗେ ରଣ ରଙ୍ଗେ ମାଡ଼ ପେଶଲ ମୋ ଅଙ୍ଗ
କାହିଁ ଦୁଃଖ-ଧୂଳି କାହିଁ ସୁଖଶାନ୍ତ ଜୁଆର ତରଙ୍ଗ ।

ଜୀବନର ଉତ୍‌ଥାନ ପତନ ମଧ୍ୟରେ ଚିର ଆଶାବାଦୀ ଏକ ସାରଳ ଯୁବକର ଅକ୍ଳାନ୍ତ ଯାତ୍ରାର ପ୍ରତୀକ ଯେପରି କି ସାଗରମୁଖୀ ଏହି ପାର୍ବତ୍ୟ ନଦୀ ।

ତୃତୀୟ ପର୍ଯ୍ୟାୟରେ କବି ଅଙ୍କନ କରିଛନ୍ତି ଶତଶୃଙ୍ଗିତ ମେଘମେଦୁରିତ ପର୍ବତ, ପାଣ୍ଡୁର ଆକାଶ ଓ ଲତା ପଲ୍ଲବରେ ଚିର ସବୁଜ ଉପତ୍ୟକାର ଚିତ୍ର । ଏକ ମନୋଜ୍ଞ ଶରତ ଗୋଧୂଳିର ଚିତ୍ର କବିଙ୍କ ଅନ୍ତରକୁ ସ୍ପର୍ଶ କରିଅଛି । ଏକ ଦିଗରେ ଅସ୍ତସୂର୍ଯ୍ୟର ଲୋହିତ ଆଭା ଓ ଅନ୍ୟ ଦିଗରେ ଉଦୟଚନ୍ଦ୍ରର ରଜତଧାରା ପାର୍ବତ୍ୟ ଉପତ୍ୟକାକୁ ବର୍ଣ୍ଣବୈଚିତ୍ର୍ୟରେ ବିଭୂଷିତ କରିଅଛି । ଦୂର ଦିଗ୍‌ବଳୟରେ ପର୍ବତର ମେହେରବ ଓ ନିକଟ ଉପତ୍ୟକାରେ ଛାୟାଘନ ଅନ୍ଧକାରର ଚିତ୍ର ଏହି ବର୍ଣ୍ଣନା ଭିତରେ ଫୁଟିଉଠେ । କବି ନିଜ କଳ୍ପନାରେ ଷଡ଼ଋତୁର ଚିତ୍ର ଦେଖିଛନ୍ତି । ଶୀତାର୍ତ୍ତ ମୁହୂର୍ତ୍ତରେ ବସନ୍ତର ଉଷ୍ଣସ୍ପର୍ଶ ପୁଣି ଗ୍ରୀଷ୍ମର ଦାବଦହନରେ ବର୍ଷଣମୁଖର ଝଞ୍ଜାର ସଲିଳସିକ୍ତ ମୂର୍ତ୍ତି ଅଙ୍କନ କରୁ କରୁ ରୂପଜଗତର ରାଣୀ ପ୍ରକୃତି ସୁନ୍ଦରୀଙ୍କୁ ଏକ କାଶ-ହାସମୟୀ ଅଜସ୍ର ଆଶିଷଧାରା ବହନକାରିଣୀ ଦେବୀରୂପେ କଳ୍ପନା କରିଛନ୍ତି ।

‘ନନ୍ଦିକେଶ୍ୱରୀ’ରେ ଚୋଡ଼ଗଙ୍ଗଙ୍କ ସମ୍ମୁଖରେ ଗଙ୍ଗାଙ୍କ ଆବିର୍ଭାବ ଭଳି କବିଙ୍କ ସମ୍ମୁଖରେ ଉପସ୍ଥିତ ହୋଇଛନ୍ତି ଜୁଡ଼ୁମାର ଅଧିଷ୍ଠାତ୍ରୀ ଦେବୀ । ଏହି ଦେବୀଙ୍କ ମୁଖରେ ଅଭିବ୍ୟକ୍ତ ହୋଇଛି ଭବିଷ୍ୟତ ଉତ୍କଳର ଏକ ମନୋଜ୍ଞ ଭାବମୂର୍ତ୍ତି ।

“ଆଲୋକିତ ଉତ୍କଳ ମୁଁ କୋଟି କୋଟି ବିଦ୍ୟୁତ୍ ତାରାମାନେ
ଦୀପାଳିର ମହୋତ୍ସବ ରଚୁଥିବ ଏଠି କାଳେ କାଳେ ।
ବିଜ୍ଞାନ ଶିଳ୍ପର ମନ୍ତ୍ର ଶାଣିବି ମୁଁ ଉତ୍କଳୀ ଅନ୍ତରେ
ଶତ ଶତ କାରଖାନା ରଚୁଥିବ କାନ୍ତାରେ ପ୍ରାନ୍ତରେ ।
ବର୍ତ୍ତିବ ଏ ଦେଶେ ମୋଢ଼ ମାଣ୍ଡିଙ୍କେ ଯେ ଶିଶୁ ଖେଳୁଥିବେ
ମାଟି ଗୁଳ ତେଜ ମଣିଷିଲା ଘରେ କୃଷକ ହସିବେ ।”

ସତେ ଯେପରିକି ଏକ ସ୍ୱପ୍ନକଳ୍ପନାର ସମୃଦ୍ଧି ଓ ସୌନ୍ଦର୍ଯ୍ୟର ରୂପଚିତ୍ର ମଧ୍ୟରୁ କବି ଧରାବତରଣ କରିଛନ୍ତି ଆତ୍ମ ଜୀବନର ସୌନ୍ଦର୍ଯ୍ୟ, ସମକାଳୀନ ଜାତୀୟ ଜୀବନର ସଙ୍କଟ ସଂକୁଳ ଭାବଭୂମିକୁ ଆଶ୍ରୟକରି । ପାର୍ବତ୍ୟପ୍ରକୃତିର ସ୍ୱପ୍ନମୟ ଚିତ୍ର ଅଙ୍କନ ଭିତରେ କବି ନିଜର ପ୍ରାଣର ଆରାଧ୍ୟା କାବ୍ୟଦେବୀର ମୂର୍ତ୍ତିମନ୍ତରୂପ ଦର୍ଶନ କରିଛନ୍ତି ।

“କବିତା ଦେବତା ମୋର ସୁଖଦୁଃଖ ପ୍ରିୟ ସହଚରୀ
ବିପଦେ ମନ୍ତ୍ରୀ ସଂପଦେ ପ୍ରିୟତମା ତରୁଣୀ ସୁନ୍ଦରୀ ।”

ଜୁଡ଼ୁମା କବିଙ୍କ ଅନୁଭବରେ ଜାତୀୟ ଜାଗରଣର ଏକ ମେରୁଦଣ୍ଡ । ଉତ୍କଳର ଧାତ୍ରୀ ରୂପରେ ବିଦ୍ୟମାନ । ସତେ ଯେପରି ଏକ ବରେଣ୍ୟ ପ୍ରିୟଜନ ମୁଖରୁ ବିଦାୟକାଳୀନ ଉପଦେଶ ବାଣୀ ଶୁଣି କବି ଜୁଡ଼ୁମାଠାରୁ ବିଦାୟ ନେଇଛନ୍ତି—

“ବାଧାବିଘ୍ନ ଗିରିଶୃଙ୍ଗେ ନଦୀଧାର ସମ ଯିବୁ ଝରି
ବିପଦେ ଧରିବୁ ଧୈର୍ଯ୍ୟ ସନ୍ତୁଷ୍ଟତା ପରବତ ପରି,
ଜୀବନ ଦୁର୍ଦ୍ଦିନେ ଚିର ନିରେଖିବୁ ଆଶା-ବିଦ୍ୟୁଲତା
ଭୀମକାନ୍ତ ଶାନ୍ତ ଧ୍ୱାନ୍ତ ମଣିଷର ଜୀବନ ସର୍ବଥା ।”

‘ଫେରିଲି ଲକ୍ଷେ ରୁଧିର ପ୍ରପାତ ଘେନି ମୋ ହୃଦୟ କଣେ’ ( ଚାଗ୍ରା ) ‘ଜୁଡ଼ୁମା’ ପରି ପ୍ରକୃତି ବର୍ଣ୍ଣନାତ୍ମକ ଏକ ଖଣ୍ଡକାବ୍ୟ ହେଲେହେଁ ଏହା ଅଧିକ ଶିଳ୍ପ ସୌନ୍ଦର୍ଯ୍ୟ ମଣ୍ଡିତ, ମାନବିକ ଆବେଦନମୟ, ଭାବଗତଐକ୍ୟ ଓ ଛନ୍ଦବୈଚିତ୍ର୍ୟ ମଧ୍ୟରେ ସମଧିକ ସାଫଲ୍ୟର ଅଧିକାରୀ । ବର୍ଷାର ଚିତ୍ରର ପୃଷ୍ଠପଟରେ କବି ପାର୍ବତ୍ୟ ପ୍ରକୃତିର ଚିତ୍ରଣ କରିଛନ୍ତି ଆଠଗୋଟି ପର୍ଯ୍ୟାୟରେ । ବର୍ଷା, ନୀଳମେଘ, ସବୁଜ ଉପତ୍ୟକା ପାର୍ବତ୍ୟ ପ୍ରକୃତିର ଚିତ୍ରକୁ ଜୀବନ୍ତ କରିବାରେ ସାହାଯ୍ୟ କରିଅଛି । କବି ଗିରି

କାନନକନ୍ଦରରେ ବର୍ଷାନଟିନୀର ଲୀଳା ଦେଖିଛନ୍ତି ଓ ବାରାପ୍ରପାତରେ ଦୁର୍ମଦ ଗତିପଥ ଅନୁସରଣ କରୁ କରୁ କୃଷିରତ ପାର୍ବତ୍ୟ ଅଧିବାସୀଙ୍କର ଜୀବନଚିତ୍ର ଅଙ୍କନ କରିଛନ୍ତି ।

ଦ୍ୱିତୀୟ ସର୍ଗଟି ଏହି ପାର୍ବତ୍ୟଅଧିବାସୀଙ୍କରସୁଖମୟ ଜୀବନ, ଅତ୍ୟାଚାରିତ ସମାଜର ଚିତ୍ର, ସେହି ସମାଜର ଆଶା ଓ ନିରାଶା, ଆଗ୍ରହ ଓ ଧର୍ମ ବିଶ୍ୱାସ - ସବୁକିଛି କାବ୍ୟିକ ଭାଷାରେ ବର୍ଣ୍ଣନା କରିଛନ୍ତି । କିନ୍ତୁ ବାସ୍ତବତାର ମ୍ଳାନଚିତ୍ର କବିଙ୍କ ସୌନ୍ଦର୍ଯ୍ୟଦୃଷ୍ଟିକୁ ଅଚ୍ଛନ୍ନ କରିନାହିଁ । 'ପରଜା' ଗ୍ରାମର ଏହି ଚିତ୍ର ଭିତରୁ ତାହା ଦେଖାଯାଇପାରେ —

"ଭିଜା ପରଜା ପଲ୍ଲୀ / ଡ଼ାଅଣିଆ ଖରା
ସାଗରେ ଉଠିଲା ଭାସି / ଓଦା ଗୃହେ ଗୃହେ
ଫୁଟିଗଲା ମାଲେମାଳେ / ହାରାମାଳା ମଣି ମୋତି
ପାଣି ଟୋପେ ଟେ ପି ହୋଇ" ।

ତୃତୀୟ ସର୍ଗରେ ଅତ୍ୟାଚାରିତ ପରଜା ଜୀବନର ଚିତ୍ର, ଚତୁର୍ଥ ପର୍ଯ୍ୟାୟରେ ଦାରିଦ୍ର୍ୟ ପୀଡ଼ିତ ଗ୍ରାମ୍ୟ ଜୀବନର ଚିତ୍ର ମଧ୍ୟରେ କବି ସମକାଳୀନ ଜୀବନର ଦୁଃଖ ଦୁର୍ଦ୍ଦଶାପ୍ରତି ଇଙ୍ଗିତ କରିଛନ୍ତି । ପଞ୍ଚମ ପର୍ଯ୍ୟାୟରେ ଉତ୍କଳୀୟ ଜାତୀୟ ଜୀବନର ସଙ୍କଟ ଓ ସମସ୍ୟା, ଏହାର ଐତିହ୍ୟ ଓ ଭବିଷ୍ୟତ କବିଙ୍କୁ ଭାବନା ବିଭୋର କରିଅଛି । ଷଷ୍ଠ ସର୍ଗରେ ପରଜା ରୂପସୀର ଚିତ୍ର ରୂପମୟୀ ବାଣୀର ପୃଷ୍ଠପଟରେ ଅଙ୍କିତ । ସପ୍ତମ ସର୍ଗରେ କବି ଭବିଷ୍ୟତ ବିକାଶର ଚିତ୍ର ଅଙ୍କନ କରିଛନ୍ତି । ଅଷ୍ଟମ ସର୍ଗରେ ଏକ ମନୋଜ୍ଞ ପ୍ରଭାତର ଚିତ୍ର ଓ ଯୁଦ୍ଧରତ ପୃଥିବୀର ସମସ୍ୟା କବିଙ୍କୁ ବିପର୍ଯ୍ୟସ୍ତ କରିଅଛି । ପ୍ରକୃତି କୋଳରେ ଶାନ୍ତିର ସନ୍ଧାନ ନ ପାଇ ବିଷାଦ ଅଶ୍ରୁଭରା ଜଗତର ଚିତ୍ର କବି ହୃଦୟକୁ ବିଚଳିତ କରିଅଛି ।

"ଗିରି ଦୁଲାଲୀ ରୂପସୀ ବାଣୀ ଦେଖିବି
ଯାଇଥିଲି ସୁଖ ମନେ,
ଆହା, ଫେରିଲି ଲକ୍ଷେ ରୁଧିର ପ୍ରପାତ
ଘେନି ମୋ ହୃଦୟ କଣେ ।"

କିଶୋର ସ୍ମୃତି ଜଡ଼ିତ 'କଙ୍କାଳର ଲୁହ' ଖଣ୍ଡ କାବ୍ୟଟି ଉତ୍କଳୀୟ ଗ୍ରାମୀଣ ଜୀବନର ଅଶ୍ରୁ ସଜଳ ଚିତ୍ର ପ୍ରଦାନ କରେ । କବି ଛାତ୍ର ଜୀବନରେ ୧୯୩୩ ଖ୍ରୀଷ୍ଟାବ୍ଦରେ ଲୁଣିଭଦ୍ରା ବନ୍ୟାରେ ସ୍ୱେଚ୍ଛାସେବକ କାର୍ଯ୍ୟ କରିଥିଲେ । ସେହି ସ୍ମୃତି ବର୍ଣ୍ଣନା କରି ମୁଖବନ୍ଧରେ ଲେଖିଛନ୍ତି—"ନିମାପଡା ହାଇସ୍କୁଲର ତଳ ଶ୍ରେଣୀର

ରୁଦ୍ର ଆମେ, କିଶୋର ବୟସ । ସବୁଜ ସଜଳ ମନ । ନବୀନ ଜୀବନ ଆସ୍ୱାଦନ ଲାଗି ହୃଦୟରେ ଅଦମ୍ୟ ଉତ୍ସାହ । ବାଧା, ବିଘ୍ନ ବିପଦେ ବିରୁଦ୍ଧରେ ସଂଗ୍ରାମ କରିବା ଲାଗି ଅପୂର୍ବ ଉନ୍ମାଦନା ।'' ଓଡ଼ିଶାର ପଲ୍ଲୀ ଚିତ୍ର ପ୍ରଦାନରେ କବି କୃଷ୍ଣଚନ୍ଦ୍ରଙ୍କର ଯେ ଏକ ବିଶିଷ୍ଟଭୂମିକା ରହିଛି ତାହା 'କଙ୍କାଳର ଲୁହ' କାବ୍ୟଟି ପାଠକଲେ ଉପଲବ୍ଧି ହୁଏ । ପଲ୍ଲୀର ଦାରିଦ୍ର୍ୟ, ପଲ୍ଲୀର ଜୀବନଧାରା, ପଲ୍ଲୀ ଜୀବନର ଆନନ୍ଦ, ମମତ୍ୱବୋଧ ଓ କୈଶୋର୍ମିକ ଭାବ ଏ ସବୁର ଏକ ଦରଦୀ ଅନୁଭୂତି ରଞ୍ଜିତ ଚିତ୍ର କବି ପ୍ରଦାନ କରିଛନ୍ତି । ଅନ୍ୟ ଦୁଇଟି କାବ୍ୟ ଭଳି କୂଳ ପ୍ଲାବନୀ କୁଶଭଦ୍ରା ଏଠି ଜୀବନ୍ତ ଚରିତ୍ରରେ ପରିଣତ ହୋଇଅଛି । ସତେ ଯେପରି ଏଇ ନଦୀ ଜନମାର ଅଭିଶାପ ଯାଚୁଛି ବନ୍ୟାର୍ତ୍ତିଙ୍କ ଉପରେ । ଏକ ଦିଗରେ ନିଜ ସାଥୀମାନଙ୍କ ଚିତ୍ର ଓ ଅନ୍ୟ ଦିଗରେ ସ୍ରୋତ ଓ ନାଉରୀର ଉତ୍ସାହଭରା ସଙ୍ଗୀତ ମଧ୍ୟରେ କବି ବର୍ଣ୍ଣନାତ୍ମକ କାବ୍ୟଟି ପାଇଁ ପୃଷ୍ଠଭୂମି ରଚନା କରିଛନ୍ତି । ଏକ ବର୍ଷଣ ମୁଖର ସନ୍ଧ୍ୟାର ଚିତ୍ର ମଧ୍ୟରେ ବନ୍ୟାର୍ତ୍ତ ପଲ୍ଲୀ-ବାସୀଙ୍କର ଜୀବନର ଦୁଃସହ ଚିତ୍ର ଅଙ୍କନ କରିଛନ୍ତି । କୁଶଭଦ୍ରାର ସ୍ଫୀତ ବୁକୁରେ ନୌକାର ଶଙ୍କିତ ଗତି, ଯାତ୍ରୀମାନଙ୍କର ଉତ୍ସାହ ଓ ଆଶା, ସବୁକିଛି ଜୀବନ୍ତଭାବେ ଚିତ୍ରିତ ହୋଇଛି । ବନ୍ୟାର୍ତ୍ତଙ୍କ ପାଇଁ ମୁଣ୍ଡରେ କରି ଖାଦ୍ୟ ବୋହି ନେବା ଓ ପାଣିରେ ଗୋଡ଼ ଖସି ବୁଡ଼ି ଯିବାର ଚିତ୍ର ଭିତରେ ନିଜସ୍ୱ ଅନୁଭୂତିର ଜୀବନ୍ତ ପ୍ରକାଶ ଘଟିଅଛି । ଏହି ଗ୍ରାମର ଏକ ଜୀବନ୍ତ ଚିତ୍ର ଦେବାକୁ ଯାଇ କବି ଏକ ସ୍ୱପ୍ନୋତ୍ଥିତ ପ୍ରାଣର କଳ୍ପନାମୟ ବାଣୀ ଶୁଣାଇ ଅଛନ୍ତି । କବିଙ୍କ ଭାଷାରେ—

> ''ସଜଳେ ସୁପ୍ତ ଜାଗ୍ରତ ଏକା ମୋହର ହୃଦୟ କବି,
> ଚିତ୍ର କରଇ ହୃଦୟ ପଟେ ପଲ୍ଲୀ ଜୀବନ ଛବି ।''

ଏହି ଚିତ୍ର ମଧ୍ୟରେ ପଲ୍ଲୀର ଅନ୍ତରଙ୍ଗ ରୂପଟି ଦେଖି ହୁଏ । ବନ୍ୟାର ଅତଳ ଜଳରେ ବୁଡ଼ି ରହିଥିବା ଏକ ଧ୍ୱଂସ ପ୍ରାୟ ପଲ୍ଲୀ ଉପରେ ଭ୍ରମଣ କରୁ କରୁ କବି ଯେଉଁ ଗ୍ରାମର ଚିତ୍ର ଅଙ୍କନ କରିଛନ୍ତି, ତାହା ତାଙ୍କର ଅତି ପରିଚିତ ଗ୍ରାମ । ଏଠାରେ ବର୍ଣ୍ଣିତ ବୀର ମହାନ୍ତି, ଭଗି ମକଦମ, ନିଶାଖୋର ରଘୁ, ଗ୍ରାମ ଚୌପଟସିଂହ ବା ମଣି ଦାସ ଗୁଣିଆ, କାଲସୀ କେଳା, ମଦୁଷିଅଳ ବନା, ଶ୍ରେଷ୍ଠି ଗୁନ୍ତିଆଣୀ ଓ ଗ୍ରାମର ପାଠଶାଳା, ଏ ସବୁ ଭିତରେ ଏକ ପ୍ରାଣଚଞ୍ଚଳ ପଲ୍ଲୀର ଚିତ୍ର ଅଙ୍କିତ ହୋଇଅଛି । କେତେ ମର୍ମ-ଭେଦୀ ବେଦନାର କାହାଣୀ କବି ଅନୁପମ କବିତାର ଭାଷାରେ ପଲ୍ଲୀ ଜୀବନର ଦୁଃଖ ଦୁର୍ଦ୍ଦଶାର ଚିତ୍ର ଫୁଟାଇ ଅଛନ୍ତି । ଏକ ସକାଳରେ ଯାତ୍ରାର ଆରମ୍ଭ, ବନ୍ୟା ପୀଡ଼ିତ ଗ୍ରାମରେ ଗୋଟିଏ ରାତ୍ରି ଯାପନ ଓ ପରଦିନ ସନ୍ଧ୍ୟାରେ ପ୍ରତ୍ୟାବର୍ତ୍ତନ— ଏହାରି ମଧ୍ୟରେ ଲାଭ କରିଥିବା କବି ନିଜର ଅନୁପମ ଅନୁଭୂତିର ସଞ୍ଚିତ ରସଧାରା 'କଙ୍କାଳର ଲୁହ' କାବ୍ୟରେ ସାର୍ଥକ ଭାବରେ ବିତରଣ କରିଛନ୍ତି । ସଦ୍ୟ ପ୍ରାପ୍ତ ସ୍ୱାଧୀନତା ଯଦି ଦୁଃଖୀ ଦରିଦ୍ରର ଦୁଃଖ ନିବାରଣରେ ସାମାଜିକ ନ୍ୟାୟ ପ୍ରତିଷ୍ଠାରେ ସମର୍ଥ ନ ହୁଏ,

ତେବେ ତାହା ମୂଲ୍ୟହୀନ । ନବ୍ୟ ଯୁଗର ସଭ୍ୟ ମଣିଷ ଆଗରେ କଂକାଳମୟୀ ପଲ୍ଲୀ ଜନନୀର ପ୍ରତିନିଧିଭାବରେ କବି ଯେପରି ଅତ୍ୟାଗୃହୀତ ଦୁର୍ଦ୍ଦଶାଗ୍ରସ୍ତ ପଲ୍ଲୀର ଆଶା ଓ ଆକାଙ୍କ୍ଷାକୁ ରୂପ ଦେଇ ଅଛନ୍ତି ।

"ଦୁଃଖ ବେଦନା ଲୋତକ ଆମର ନୁହେଁ କି ତୁମର ନୁହେଁ
ତୁମେ ହସୁଥିବ କ୍ଷୀର ମଧୁଧାରେ ଆମେ ଖସୁଥିବୁ ଲୁହେ
ଚନ୍ଦ୍ର ଅଲୋକେ ତୁମେ
ପୋଡ଼ି ପରି ଆମେ ସଢ଼ୁଥିବୁ ଧୂଇ ଶୋକ ଅନ୍ଧାର ଧୂମେ ।"

ଏହିଭଳି ଅଜସ୍ର ଛନ୍ଦ ଭିତରେ କବିଙ୍କ ଉଦାର ସାମ୍ୟବାଦୀ ମାନବପ୍ରେମୀ ଦରଦୀ ହୃଦୟର ପ୍ରାଣବାଣୀ ଉଚ୍ଚାରିତ ହୋଇଅଛି ।

## ଗାଥାଗୀତି (ବୀରଶ୍ରୀ ଓ ନବମାଳିକା) :

'ବୀରଶ୍ରୀ' ୧୯୪୯ ଓ 'ନବ ମାଳିକା' ୧୯୫୧ ରେ ପ୍ରଥମେ ପ୍ରକାଶିତ । ଏହି ଦୁଇଟି କବିଙ୍କର ଗାଥା କବିତାର ସମାହାର । ଗାଥାର ଏକ ନିଜସ୍ୱ ଶୈଳୀ ବିଦ୍ୟମାନ । ବସ୍ତୁତଃ ମହାକାବ୍ୟିକ ପରମ୍ପରାର ଏହା ଅନୁସାରୀ । ଏକ ଦିଗରେ ଲୋକଗାଥା, ଅନ୍ୟ ଦିଗରେ ମହାକାବ୍ୟ ଓ ବିୟୋଗାନ୍ତ ନାଟକର ପରମ୍ପରା, ଏ ଉଭୟର ଏକ ସମନ୍ୱୟ ଗାଥାକୁ ସାର୍ଥକତା ପ୍ରଦାନ କରିଥାଏ । ଆଙ୍ଗିକ ଦିଗରୁ ଗାଥା ଏକ ସଂହତ, ପରିପୂର୍ଣ୍ଣ ଆକୃତିର ରଚନା । ପ୍ରାଚୀନ ବୀର ଗାଥାର ଛବିଭୂମି ଗାଥାର ଚରିତ୍ର ମଧ୍ୟରେ ଦେଖିବାକୁ ମିଳେ । କ୍ୱଚିତ୍ ଗାଥାର ସମାପ୍ତି ମିଳନାନ୍ତ ହୋଇଥାଏ । ଅଧିକାଂଶ ଗାଥାରେ ଏହା ହୋଇଥାଏ ବିୟୋଗାନ୍ତକ । ବସ୍ତୁତଃ ଶ୍ରେଷ୍ଠ ଗାଥାଗୀତିରେ ଏକ ପ୍ରଗୀତିମୟ ବିୟୋଗାନ୍ତ କାହିଁାଣି ଆତ୍ମା ପ୍ରତିଫଳିତ ହୋଇଥାଏ । ଏହି ଭାବରେ ଦେଖିଲେ ଶ୍ରେଷ୍ଠ ଗାଥାଗୁଡ଼ିକ ଲିରିକାଲ୍ ଟ୍ରାଜେଡି । ଗାଥାର ବିଷୟବସ୍ତୁ ତାର ଆତ୍ମିକ ଭାବଭୂମିର ଅନୁରୂପ ହେବା ବାଞ୍ଛନୀୟ । କୌଣସି ଜଟିଳ ବା ଦୁର୍ବୋଧ ବିଷୟ ଗାଥା କବିତାର ଅନୁପଯୋଗୀ । ଗାଥାର ନାୟକ ଅବଶ୍ୟ ଦୁଃସାହସିକ କର୍ମର ସାଧନ ମଧ୍ୟରେ ଆଦର୍ଶର ପ୍ରତିଷ୍ଠା କରି ଥାଆନ୍ତି । ମାତ୍ର ଏହା ପୌରାଣିକ ବୀର ନାୟକଙ୍କ ଭଳି ଅତି-ମାନୁଷିକ କଳ୍ପନା ସ୍ତରରେ ରହିବା ଅନୁଚିତ । ଅଧିକନ୍ତୁ ସାଧାରଣ ଜୀବନର ସ୍ପର୍ଶ, ମହତ୍ ଆଦର୍ଶ ପାଇଁ ଆତ୍ମବଳି ଦାନର ଭାବନା, ଏକ ସମୃଦ୍ଧ ମାନବୀୟ ଆବେଗ— ଏହି ସବୁ ମହତ୍ତ୍ୱ କାବ୍ୟିକ ପରମ୍ପରା ଗାଥାରେ ଦେଖିବାକୁ ମିଳେ । ଆଧୁନିକ ଯୁଗରେ ଅତିକାବ୍ୟ କାବ୍ୟର ଅଭାବ କେବଳ ଗାଥାହିଁ ପୂରଣ କରିବାକୁ ସକ୍ଷମ । ଗାଥା ଏକ ସୂକ୍ଷ୍ମ କାବ୍ୟିକ ସୃଷ୍ଟି । କେବଳ ପ୍ରକାଶିତ ଶବ୍ଦ ସମ୍ଭାର ଅଥବା ପ୍ରବହମାନ ଛନ୍ଦୋଧାରା ମଧ୍ୟରେ ଏହାର ସମ୍ପୂର୍ଣ୍ଣ ସୌନ୍ଦର୍ଯ୍ୟ ପ୍ରକାଶିତ ହୋଇ ନ ଥାଏ । ଗାଥାର ସୌନ୍ଦର୍ଯ୍ୟ

ହବାତ୍ମକ କଳା ସୃଷ୍ଟିରେ ନିହିତ । ଏକ ସୁନିର୍ଦ୍ଦିଷ୍ଟ କାହାଣୀର ଗଠନ ପାଟବତା ମଧ୍ୟରେ ଭାବର ଜୀବନ୍ତ ଅଭିବ୍ୟକ୍ତି, ପୂର୍ବାଗ୍ରହ୍ମୁଖୀ ସୌମ୍ୟପ୍ରକାଶ, ବର୍ଣ୍ଣନରେ ସୂକ୍ଷ୍ମ-ସଂଯମ ଓ ସର୍ବତୋମୁଖୀ ଅଭିଭକ୍ତି ଲକ୍ଷ୍ୟ ସାଧନର ଅଭିପ୍ରାୟରେହିଁ ଗାଥାର ସାର୍ଥକତା । ଏହି ଦୃଷ୍ଟିରୁ ଦେଖିବାକୁ ଗଲେ ସ୍ୱାଧୀନତାୋତ୍ତର ଓଡ଼ିଆ କାବ୍ୟ ସାହିତ୍ୟରେ ନନ୍ଦ-କିଶୋର ଓ ଗୋଦାବରୀଶ ଗାଥା ରଚନାର ବଳିଷ୍ଠ ଭୂମିକା ପ୍ରତିଷ୍ଠା କରିଥିଲେ । କୁନ୍ତଳକୁମାରୀ ଏହି ପରମ୍ପରାର ଦୃଢ଼ ଉତ୍ତରାଧିକାର ରକ୍ଷା କରିଛନ୍ତି । ଇତିହାସ, ପୁରାଣ ଓ ଲୌକିକ କିମ୍ବଦନ୍ତୀ ଆଦି ବହୁ ସୂତ୍ରରୁ ସେ ଗାଥାପାଇଁ କାହାଣୀ ବା ଉପାଦାନ ସଂଗ୍ରହ କରିଛନ୍ତି । କିନ୍ତୁ ତାଙ୍କର ଗାଥାଗୁଡ଼ିକ ସରଳତାରେ ଏକ ଦିଗରେ ଯେପରି କିଶୋର ସାହିତ୍ୟର ଅଙ୍ଗୀଭୂତ ହୋଇ ଯାଇଛି; ଅନ୍ୟ ଦିଗରେ ଗାଥାର କାହାଣୀ ଭିତରେ କବି ହୃଦୟର ଏକ ମନୁଷ୍ୟ ତଲ୍ଲୀନତା ଏହି ଗାଥାଗୁଡ଼ିକୁ ଏକ ଗୀତି କବିତାର ଦ୍ୟୋତନା ଦେଇଅଛି । ରାଇବଣିଆର ଗାଥାଟିରେ କବି ନିଜକୁ ଅବତୀର୍ଣ୍ଣ କରାଇଛନ୍ତି ।

> "ଆସିନାହିଁ ସଭାକବି ରୂପେ ଯେନି କାବ୍ୟ ମନୋହର
> ଆସିଛି ମୁଁ ବର୍ତ୍ତମାନ ଅତୀତର ମନ୍ତ୍ରଦାତା
> କୀର୍ତ୍ତିପୂତ ବୀର ବଂଶଧର ।"

ଏହି ବ୍ୟକ୍ତିତ୍ୱ ବିକାଶର ସାମଗ୍ରିକ ଆଦର୍ଶଟି ସାଧକ ପ୍ରାଣରେ ସ୍ୱତଃଉତ୍ସାରିତ ବିଶ୍ୱଜୟୀ ଆତ୍ମବିଶ୍ୱାସ ରୂପରେ ଅଭିବ୍ୟକ୍ତି ଲାଭ କରିଅଛି ।

> "ମହା କବି ଅବତାର, ହେ ସାରଳା ଦାସ ।
> ନିଖିଳ ଭୁବନ-ଜୟୀ ଯେ ଆତ୍ମ ବିଶ୍ୱାସ
> ସେହି ଭଳି ହୁଅ ବଳୀ,
> ଖଣ୍ଡି କ୍ଷୁଦ୍ରକରି ନିଜରେ ଦେଖାଇ ଯେହ୍ନି ନିଜର ସେ ଅରି ।"

କୁନ୍ତଳକୁମାରୀଙ୍କ ଗାଥା କାବ୍ୟଗୁଡ଼ିକର ଆଉ ଏକ ବିଶେଷତ୍ୱ—ଆଦର୍ଶର ଉଦାତ୍ତ ଅବତାରଣା ସଙ୍ଗେ ସଙ୍ଗେ ପ୍ରକୃତିର ଏକ ମନୋଜ୍ଞ ଚିତ୍ରଶାଳାରେ ସେ ନିଜ ଗାଥାର ନାୟକମାନଙ୍କୁ ଅବତୀର୍ଣ୍ଣ କରାଇ ଅଛନ୍ତି । ବୀର ନାୟକଙ୍କ ଦୃପ୍ତ ପଦଧ୍ୱନି ଭୈରବ ରବରେ ଅଶନି ପ୍ରଚୁର କରେ । ବେଦନାହତ ନାୟକର ଚିତ୍ତଭୂମିରେ ଚମ୍ପ ଫୁଟାଇବା ଲାଗି ଆଷାଢ଼ ରାତିର ନିବିଡ଼ ନିର୍ଜନତା ମଧ୍ୟରେ ଅନ୍ଧକାର ଢ଼େଉ ଖେଳେ । ଦେଶ ଜନନୀର ଅଶ୍ରୁ ସିକ୍ତ ହୋଇ ବର୍ଷାର ବାରିଧାରା ରୂପେ ଝରିପଡ଼େ । ଆତ୍ମଦାନ ଉନ୍ମୁଖ ଦଧୀଚିଙ୍କୁ ଉପସ୍ଥାପନ କରିବା ପୂର୍ବରୁ ଆଶ୍ରମ ପ୍ରାନ୍ତରରେ କବି ଛନ୍ଦମୟ ବର୍ଣ୍ଣୋଜ୍ଜ୍ୱଳ ଚମ୍ପ ଫୁଟାଇଛନ୍ତି ।

> "କୁହୁ କେକା କଳ କାକଳି ଚହଟେ ଉଚ୍ଛୁଳେ କାନନ ବୀଥିକା
> ପତ୍ରେ ପତ୍ରେ ସ୍ୱର୍ଣ୍ଣ ବର୍ଣ୍ଣେ ଅରୁଣ କିରଣ ଦୀପିକା

ଭ୍ରମର ଭ୍ରମିତ କୁସୁମେ କୁସୁମେ
ହୋମାନଳ ଧୂମ୍ର ବିମଳିନ ଦ୍ରୁମେ
ପ୍ରକୃତି ଶୋଭା ଲୁପିତା
କରଣ ଅରୁଣା ଦଧୀଚି କରୁଣା ଦୟା କୁଳୁକୁଳୁ ଗୀତିକା"

ପୁଣି ଦଧୀଚିଙ୍କୁ ଉପସ୍ଥାପନ କରିଛନ୍ତି ବିଶ୍ୱ ସୁଷମା ଓ ଶକ୍ତିର ଏକ ସମନ୍ୱିତ ସତ୍ତାରୂପେ ।

"ରତ୍ନାକର ସମ ଗଭୀର ଅଙ୍ଗ ସାଧନାର ତେଜେ ଝଲସେ
ବିଶ୍ୱର ଯେତେ ସୁଷମା ଯେସନ ଶ୍ରୀମୁଖ ମୟୂଖେ ବିକଶେ
ଶକ୍ତିର ଏ ଯେ ମହା ହିମାଚଳ
ଭକ୍ତିର ଅତି ଅତଳ ସାଗର
ତ୍ୟାଗର ମହିମା ବିକାଶେ
ଲୋମକୂପ ଝରେ ଉଦୟ କିରଣ ହୃଦୟର ଚିର ହରଷେ ।"

ଏକ ସ୍ୱତନ୍ତ୍ର ଚିତ୍ର ଭାବରେ ଏହି ସମସ୍ତର ମୂଲ୍ୟ ହୁଏତ ଅନେକ ବେଶୀ । ମାତ୍ର ଗାଥାର ଆଖ୍ୟାନଧର୍ମିତା କିଞ୍ଚିତ୍ ଦୁର୍ବଳ ହୋଇ ପଡ଼ିଛି । କିନ୍ତୁ ବର୍ଣ୍ଣନାରେ ରୂପାଙ୍କନର କାରୁଶିଳ୍ପ ମଧ୍ୟରେ ଯେପରି ଏକ ବର୍ଣ୍ଣୋଜ୍ଜ୍ୱଳ ପାଦ ପ୍ରଦୀପ ଆଲୋକିତ ଚିତ୍ର ଶୋଭି ମଣ୍ଡିତ ନାଟ୍ୟମଞ୍ଚର ଅବତାରଣା କରାଯାଇଛି । ଏହି ମଞ୍ଚରେ ଉଚ୍ଚାରିତ ସଂଳାପ, ଅଭିନୀତ କ୍ରିୟା ଅଥବା ନାୟକ ନାୟିକାଙ୍କର ଭାବ ଭଙ୍ଗୀର ସଜୀବ କ୍ରିୟାଶୀଳତାର ପୂର୍ବାଭାସ ଯେଉଁଭଳି ସମଗ୍ର ଗାଥାକୁ ପୂର୍ଣ୍ଣତା ଦାନ କରିଅଛି । କେତେବେଳେ ଏକ ଧ୍ୟାନ ଗମ୍ଭୀର ନିସ୍ତବ୍ଧତାର ଭାବ ମୂର୍ତ୍ତି ଅଥବା ଏକ ଘଟିକାକ୍ରାନ୍ତ ଚଳଚଞ୍ଚଳ ଗତିଛନ୍ଦ ବିଭିନ୍ନ ଗାଥାଗୁଡ଼ିକରେ ବୈଚିତ୍ର୍ୟ ଆଣିଅଛି । 'ଖାରବେଳଙ୍କ ଦିଗ୍‌ବିଜୟ' କବିତାଟିର ଆଖ୍ୟାନ ଗୌଣ । ମାତ୍ର ଏକ କ୍ରିୟାଶୀଳ ଆଖ୍ୟାନର ଗତିଛନ୍ଦ ଏକ ଦୁର୍ଜୟ ବାହିନୀର ପଦ ଛନ୍ଦରେ ଯେପରିକି ଧ୍ୱନିତ ହୋଇଅଛି ।

'ନବ ମାଳିକା'ର କବିତାଗୁଡ଼ିକରେ ସ୍ଥାନେସ୍ଥାନେ ଆଦର୍ଶୋନ୍ମୁଖ ନାୟକମାନଙ୍କର ଚିତ୍ର ନାଟକୀୟ ଭାବେ ସେମାନଙ୍କ ମୁଖରେ ସ୍ୱଗତ ସଂଳାପ ଭାବରେ ପ୍ରଦତ୍ତ ।

"ଆପଣା ପାଦେ ହୋଇବି ଛିଡ଼ା ହୃଦୟେ ଅଛି ଶକ୍ତି,
ମରମ ତଳେ ବିଶ୍ୱାସ ମୋ କରମେ ଅନୁରକ୍ତି ।"
ଅଥବା—"ବିଜୟ ମନେ ବିଜୟୀ ତେଜ ଆଶାର ନାହିଁ ଅନ୍ତ,
ସୂର୍ଯ୍ୟପରି ଉଦିତ ହେବା ସୂର୍ଯ୍ୟପରି ଅସ୍ତ ।"
ଅଥବା—"ସକଳ ତୀର୍ଥ ମଣିଷର ସରଜିତ
ମାନ ସରୋବରେ ଗଢ଼ିତ ମଣିଷ ମନ ।"

ଦୁର୍ଦ୍ଦମ୍ୟ ରାଜଶକ୍ତି ବିରୁଦ୍ଧରେ ଦଣ୍ଡାୟମାନ ହୋଇ ବିପ୍ଳବୀମାନଙ୍କର ଦୁଃଖ ବରଣ ବିଚିତ୍ର ନାଟକୀୟ ଛଟାରେ 'ନବମାଲିକା'ର ବନ୍ଧୁ ଗାଥା ଗୀତରେ ପ୍ରଦତ୍ତ । କୁନ୍ତଳାକୁମାରୀଙ୍କ ଗାଥା କବିତାର ସର୍ବତୋମୁଖୀ ଭାବଭୂମିରେ ନିକଟ ଅତୀତରେ ବିପ୍ଳବୀ ବୀର, କେବେ ଇତିହାସର ନାୟକ, ପୁରାଣ ବା ବୌଦ୍ଧ ଗାଥାର ନାୟକ-ମାନଙ୍କୁ ଦେଖିବାକୁ ମିଳେ । ଏହି ନାୟକଗଣ କେତେବେଳେ ଆତ୍ମୋପଲବ୍ଧିର ଆଲୋକରେ ଅଥବା ବୀର ହୃଦୟର ପ୍ରେରଣାରେ ସାଧନା ପଥରେ ଅଗ୍ରସର ହୋଇ ଅଛନ୍ତି । ତ୍ୟାଗ ଓ ଅପ୍ରୋତ୍ସର୍ଗର ଆଦର୍ଶରେ ଉଦ୍‌ବୁଦ୍ଧ ହୋଇଛନ୍ତି । ରାଜଦଣ୍ଡ ବିଳାସ ଓ ସମ୍ଭୋଗ ପରିହାର କରି ବୈରାଗ୍ୟର ପଥ ଚିରନ୍ତନ ଗତିର ପଥ ବାଛି ନେଇଛନ୍ତି ଏହି ଯୁଗଜନ୍ମା ନାୟକଗଣ । କବିଙ୍କ ହୃଦୟାଂଙ୍କ ଉକ୍ତିରେ ପ୍ରକାଶ ପାଇଛି—

"ଲୋଡ଼ା ନାହିଁ ତବ ରାଜପ୍ରାସାଦର ଶ୍ରେଷ୍ଠ ଉପହାର
ଦରିଦ୍ର କୁଟୀର ତଳୁ ପାଇଛି ମୁଁ ସର୍ବ ପୁରସ୍କାର ।

× × ×

ଅନନ୍ତ ପ୍ରକୃତି ପ୍ରାଣେ ଢାଳିଦେଇ ପ୍ରେମଲୋଲ ପ୍ରାଣ
ବକ୍ଷେ ଧରି କୋଟି ସ୍ନେହ ସୁଧାଧାର ଲଭିବି ନିର୍ବାଣ ।"

ଉଆଁସ କର୍ଣ୍ଣ, ଲକ୍ଷ୍ମୀ ଓ ଲୋହିତ ପର୍ଯ୍ୟାୟରେ ସମକାଳୀନ ସମସ୍ୟାର, ଏକାନ୍ତ ପରିଚିତ ପାରିବାରିକ ଓ ଗ୍ରାମୀଣ ସମାଜରୁ କବି ନାୟକ ନାୟିକାଙ୍କୁ ଆହରଣ କରିଛନ୍ତି । ଏହିସବୁ ଗାଥା ବସ୍ତୁତଃ ଲୋକମୁଖୀ ଲୌକିକ ଭାଷାରେ ରଚିତ ଓ ବହୁ ପରିମାଣରେ ପଲ୍ଲୀ କବିତା ରସରେ ସଞ୍ଜୀବିତ । ସୃଷ୍ଟିର ମୂଳଉତ୍ସ କବିଙ୍କ ମାନବପ୍ରେମୀ ହୃଦୟ । ତେଣୁ ଆଖ୍ୟାନ ବା ବର୍ଣ୍ଣନାରେ ବିଦଗ୍ଧ କୃତ୍ରିମତା ଅଥବା ପୁସ୍ତକ ବିଶେଷରୁ ଭାବ ଆହରଣର ପ୍ରବଣତା କ୍ୱଚିତ୍ ପ୍ରକାଶ ପାଇଅଛି । ପଲ୍ଲୀର ରସ ଧାରାରେ ସମାହିତ କବି ଚିତ୍ତ ସହଜ ସ୍ୱତଃସ୍ଫୂର୍ତ୍ତି ଭାବରେ ନୂତନ ସୌନ୍ଦର୍ଯ୍ୟମୟ ଜଗତ ସୃଷ୍ଟି କରିଅଛି । ଏଠାରେ ସବୁ କିଛି ସ୍ୱାଭାବିକ । ଏପରିକି ପୁରାଣ ପ୍ରାଚୀନ ଉପମା ତିର ନବୀନ ଓ ଜୀବନ୍ତ ବୋଧ ହେଉଅଛି । ସ୍ୱତଃଉଚ୍ଛ୍ୱସିତ ଏହି କବିତାର ଜଗତରେ ସୌନ୍ଦର୍ଯ୍ୟ ମନକୁମନ ଫୁଟି ପଡ଼ୁଅଛି ।

"ତାପାତ ନିଦା ବିନ୍ଧୁ ମଉନେ ବସେ
ଦୁଖିଆ ଭାରିଯାକୁ କଥାନେ ରସେ,
ଏମିତି କଥା କହେ ତମୁହିଁ ଗୃହିଁ,
ପାପ ମନରେ ବାଡ଼ି ଭାଳଇ ନାହିଁ ।"

ଲକ୍ଷ୍ମୀ – "ଲୁହ ସିନ୍ଧୁର ଥିଲୁ ଜନମି ରମା
ତୋ ଲୁହ ଉଛୁଳିକି ମୋ ନେବେ ଜମା,

ତାହାର ନୋହୁ ବୋଲି ଅଛି ମୋ ମନେ
ମୋ ମନୁ ଯିବୁ କଲେ ବିଶ୍ୱ ଜୀବନେ ।"

ପ୍ରଥମ ଉଦ୍ଧୃତିର ସ୍ୱାଭାବିକ ଗ୍ରାମୀଣ ଭାଷା ଓ ଦ୍ୱିତୀୟ ଉଦ୍ଧୃତିରେ ଭାବମୟ, କଳ୍ପନା-ପ୍ରବଣତା ଉଦ୍ଭାସିତ ଭାଷାର ଗତି କେଉଁଠାରେ ଶିଥିଳ ହୋଇନାହିଁ । କବି ସ୍ୱତନ୍ତ୍ର ଭାବରେ ଶୋକ ଗୀତି ଲେଖି ନାହାନ୍ତି । ନିଜର ଆତ୍ମୀୟ ସ୍ୱଜନଙ୍କ ବିୟୋଗରେ ଯେଉଁ ସବୁ କବିତା ରଚନା କରିଛନ୍ତି ତାହା ଆପାତ ଦୃଷ୍ଟିରେ ମନେହୁଏ ଯେପରିକି ଶୋକ କବିତା । ସେ ଶୋକ ଏକାନ୍ତ ବ୍ୟକ୍ତିଗତ । କିନ୍ତୁ ଏହି ବ୍ୟକ୍ତିଗତ ଶୋକ ସଙ୍ଗୀତ ଭିତରେ ଚିରସତ୍ୟାନ୍ୱେଷଣର ଏକ ବଳିଷ୍ଠ ପ୍ରୟାସ ଶୋକଗୀତିଗୁଡ଼ିକୁ କରୁଣ ଆବେଗମୟ ସାର୍ବଜନୀନ ଗାଥା ଗୀତିରେ ପରିଣତ କରିଅଛି । ଏକ ସମୟରେ ବଡ଼ ବଡ ଉପନ୍ୟାସ ମଧ୍ୟ ପଦ୍ୟ ଆକାରରେ ଲିଖିତ ହେଉଥିଲା । 'ନଣ୍ଡାର ଚଟି' ଭଳି କବିତାରେ ନାୟିକର ଚରିତ୍ରରେ ଗାଥା ଗୀତିର ସ୍ୱରୂପ ପରିଲକ୍ଷିତ । କବିଙ୍କ ଜୀବନବୋଧ ଯେତେ ବେଶୀ ଗଭୀର ହୋଇଛି, କବିତାର ରସଧାରା ଓ ଗଠନ ପାଟବ, ଦୃଶ୍ୟମାନ ଛନ୍ଦର ପରିଧି ଅତିକ୍ରମ କରି ଅପାତତଃ ଗଦ୍ୟ ଶୈଳୀରେ ଆବଦ୍ଧ କବିତା ଆଡକୁ ଗତି କରିଅଛି । କ୍ରମଶଃ କବି ସ୍ଥିତିସ୍ଥାପକ ପୟାର ଛନ୍ଦ ଓ ପରିଶେଷରେ ବାଗ୍‌ଭଙ୍ଗୀ ମୂଳକ ଛନ୍ଦ ଘେନି ଗାଥା ରଚନାରେ ନାନା ପରୀକ୍ଷା କରିଛନ୍ତି । କରୁଣ ଗାଥା ଗୀତି ରଚନାରେ ଦୁଃଖ ଦରିଦ୍ର ଭରା ନାରୀ ଜୀବନର ବହୁ ଅକୁହା କାହାଣୀକୁ ରୂପ ଦେଇ ଅଛନ୍ତି । ଦାରିଦ୍ର୍ୟ, ସାମାଜିକ ପୀଡ଼ନ, ପ୍ରଣୟଭଂଗର ଅପମାନ ଓ କଳଙ୍କର ବୋଝ ବହନ କରି କେତେ ନାରୀ ଶୋଚନୀୟ ମୁହୂର୍ତ୍ତିର ଅନ୍ଧକାର ମଧ୍ୟରେ ବିଲୀନ ହୋଇ ଯାଇଛନ୍ତି । କବି ସେହିସବୁ ଚରିତ୍ର ନିଜର ସାମାଜିକ ଗାଥା ଗୀତିଗୁଡ଼ିକରେ ଅତି ସୁନ୍ଦର ଭାବରେ ଫୁଟାଇଛନ୍ତି । କେଉଁ ବାଉଁଶ ଝିଅ ଚିତ୍ରା, ଦୁର୍ଭିକ୍ଷ ପୀଡ଼ିତ ଗାଆଁର ସତୀ, ଆଧୁନିକ ସମାଜର ବିପ୍ଳବିନୀ ନୀଳ, ଅପମୃତ୍ୟୁଗ୍ରସ୍ତା ଗ୍ରାମ୍ୟ ବିଧବାର କରୁଣ ଚିତ୍ର—ଏହିସବୁ ଗାଥା ଗୀତିଗୁଡ଼ିକୁ ଅନୁପମ ଜୀବନର ସୁରରେ ସଞ୍ଜୀବିତ କରିଅଛି ।

## ପ୍ରଶସ୍ତି:

କବିଙ୍କ ଚିରସତ୍ୟାନ୍ୱେଷଣରେ ଆଉ ଏକ ଧାରା ସମକାଳୀନ ଜାତୀୟ ଜୀବନର ଶ୍ରେଷ୍ଠ ପୁରୁଷମାନଙ୍କ ଜୀବନାଲେଖ୍ୟ ଅଙ୍କନରେ ଦେଖିବାକୁ ମିଳେ । ମାନବିକତାର ମର୍ମବାଣୀ ଓ ଉଦାର ଆଦର୍ଶକୁ କବିତାରେ ରୂପଦେବା ଏଠାରେ କବିଙ୍କର ଲକ୍ଷ୍ୟ । ଏଠାରେ ବ୍ୟକ୍ତି ଗୌଣ, ସମଷ୍ଟି ମୁଖ୍ୟ । ଏକ ମହତ୍ତ୍ୱଜୀବନର ଆଦର୍ଶ ମୂର୍ତ୍ତିମନ୍ତ ହୋଇ ପ୍ରକାଶପାଏ । ଆଦିମ ଓ ପ୍ରାଚୀନ ମଣିଷଥିଲା ଦେବପୂଜକ । ଆଧୁନିକମନା ମଣିଷ ହୁଏଁ ଶ୍ରେଷ୍ଠ ମଣିଷର ଉପାସକ । 'ଯେଉଁମାନେ ବଞ୍ଚିଛନ୍ତି' ଶିରୋନାମାରେ ସଂକଳିତ କବିତା ଗୁଡ଼ିକର ଆମୁଖରୂପେ କଳ୍ପିତ 'ଦେବତା ଓ ମଣିଷ' କବିତାରେ ଏହି ଭାବନାକୁ କବି ରୂପ ଦେଇଅଛନ୍ତି ।

"ଦେବତା କି ଦେଲା ବର ?
ଅନ୍ୟପକ୍ଷରେ — ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଅନ୍ଧକାରେ ଘନ ଅଶ୍ରୁଜଳ ।"
"ମଣିଷ ମୋ ପାଶେ ଦୂରେ / ଗିରିବନେ ଗ୍ରାମେ ବା ନଗରେ
ଜନ୍ମେ ମରେ ଭଲପାଏ / ଯୁଦ୍ଧ କରେ

ଧରଣୀର ସକଳ ବେଦନା ବକ୍ଷେ ଅନୁଭବିଲେ ।" ଜାତିର ଜନକ ମହାତ୍ମା-ଗାନ୍ଧୀଙ୍କ ଅକସ୍ମାତ୍ ବିୟୋଗରେ ରଚିତ ଏକ କ୍ଷୁଦ୍ର ଭାବଗୀତରେ ଅପରାହତ, ଶାଶ୍ୱତ, କାଳଜୟୀ ମାନବୀୟ ଆଦର୍ଶ ଉପରେ କବି ନିଜର ଗଭୀର ଆସ୍ଥା ପ୍ରକାଶ କରିଅଛନ୍ତି । "ତେବେ ମଣିନାହିଁ ବାପୁଜୀ, ମରିନ ମଣିଷ ନିଜେ/ଥିଲେ ଏକ ଏବେ ବହୁ ହୋଇଁ ପ୍ରତି ହୃଦୟେ ବିଜେ ।/ଯହିଁ ଝରିଥିଲ ବାପୁଜୀ ରକତ/ତହିଁ ମହାତ୍ମା ଜାତ ଶତ ଶତ, ହୃଦେ ହୃଦେ ରାମ ରାଜ୍ୟ ସପନ ସତ୍ୟ ବିଜେ ।"

ଉତ୍କଳମଣି ଗୋପବନ୍ଧୁ, ଶଶିଭୂଷଣ ରାୟ, ଏହିସବୁ ମହାମନା ବ୍ୟକ୍ତିଙ୍କ ସାଙ୍ଗେ ଆଫ୍ରିକାର ବିପ୍ଳବୀ, ଓ ଓଡ଼ିଶାର ଶ୍ରମିକଙ୍କର ସାମୂହିକଜୀବନାଲେଖ୍ୟ ପ୍ରକାଶିତ । ଗଣର ଦେବତା ଯେପରି ଜଣେ ଜଣେ ମହାପୁରୁଷଙ୍କ ମଧ୍ୟରେ ଆତ୍ମପ୍ରକାଶ କରନ୍ତି, ଠିକ୍ ସେହିପରି ଜଣେ ଜଣେ ମହାତ୍ମାଙ୍କ ଆଦର୍ଶ ଓ ଅହ୍ୱାନ ଅଗଣିତ ଗଣ ଜୀବନରେ ପ୍ରତିଫଳିତ ହୋଇ ଶକ୍ତି ଓ ସୌନ୍ଦର୍ଯ୍ୟର ସାମ୍ୟ ଓ ପ୍ରଶାନ୍ତିର ମହତ୍ତର ଆଦର୍ଶ ଆଡ଼କୁ ମାନବ ଜାତିକୁ ଘେନିଯାଏ । ଏହା ହିଁ ସଭ୍ୟତାର ବିଗ୍‌ବିଜୟର ଇତିହାସ । ଏହି ଇତିହାସ ସତେ ଯେପରିକି ମୂର୍ତ୍ତିମନ୍ତ ହୋଇଛି କୃଷ୍ଣବିହାରୀଙ୍କ ଚରିତ୍ରାୟଣମୂଳକ କବିତାରାଜିରେ ।

## ଭାବଗୀତ : ବିଚିତ୍ର ପ୍ରୟୋଗ ଓ ପରୀକ୍ଷାର ଜଗତ :

ଆଧୁନିକ କବିତା ଏକଦିଗରେ ଯେପରି ଭାବ ପ୍ରଧାନ ଅନ୍ୟଦିଗରେ ସେହିପରି ବ୍ୟଞ୍ଜନା ପ୍ରଧାନ । କାହାଣୀ ଓ ଚରିତ୍ରର ନିଦାଉଦାହାନ ପରିବର୍ତ୍ତେ ସ୍ମୃତି ଓ ସ୍ୱପ୍ନର ଲଘୁପକ୍ଷରେ ସଂଚରଣ କରି ଆଧୁନିକ କବିମାନେ ବିଚିତ୍ର କାବ୍ୟଜଗତ ସୃଷ୍ଟିରେ ସଦାପ୍ରୟାସୀ । ଏକ ଏକ ମୁହୂର୍ତ୍ତିରେ ଭାବନାରାଶି କେତେବେଳେ ଖଣ୍ଡିତ, ରେଖାୟିତ ଅଥବା ବର୍ତ୍ତୁଳ ଚିତ୍ରକଳ୍ପ ମଧ୍ୟରେ ଆଭାସିତ । ଏହିସବୁ କବିତା କବିଙ୍କ କାଂସର ନୈରାଜ୍ୟମନର ଆକାଶରୁ କ୍ୱଚିତ୍ ଆଭାସିତ ତାରକା ସଦୃଶ ଆଧୁନିକ ଯୁଗର ପାଠକମାନଙ୍କୁ ଏକ ରହସ୍ୟମୟ ଦୁର୍ବୋଧ ଜଗତ ଆଡ଼କୁ ଘେନିଯାଏ । ନାନା ବିଚିତ୍ର ଭାବର ପ୍ରକାଶପାଇଁ ନବ ନବ କବିତାର ଆଙ୍ଗିକ ଓ ଆକୃତି ରଚନାର ପ୍ରୟୋଗ ଓ ପରୀକ୍ଷା ନିଜର ପ୍ରାଥମିକ ଜୀବନରେ ରଚିତ 'ପ୍ରଭାତୀ'ଠାରୁ ପରିଣତଜୀବନରେ ରଚିତ 'ସେ ଏକ ଲେମଣିସାଲହିତ', ଆଲବମ, ଅଶ୍ରୁ, ଚଇତାଳି, 'ଫସଲ ଓ ଫସଲି', 'ନର୍ମଦା ଆଦି ଚନ୍ଦ୍ର କବିତାର ଛନ୍ଦରେ ଦେଖିବାକୁ ମିଳେ ।

‘ପ୍ରଭାତୀ’ରେ ମୁଦ୍ରିତ କବି ଚତୁର୍ଦ୍ଦଶପଦୀକୁ ନିଜ ଚିନ୍ତିତ ଭାବାଭିବ୍ୟକ୍ତିର ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି । ସତେଯେପରିକି ଏକ ସ୍ୱପ୍ନଦୂତର କନକକଙ୍କଣରେ ସୁଦୂର ଓ ନିକଟ, ତାରାଭରା ରଜନୀ, ପ୍ରଶାନ୍ତ ସକାଳ, କେତେ ନିଃସଙ୍ଗ ନିର୍ଜନ ମୁହୂର୍ତ୍ତର ଏକ ଏକ ମୁକ୍ତ ଓ ଅନୁଭବକୁ ଏହିସବୁ ଚତୁର୍ଦ୍ଦଶପଦୀ ମଧ୍ୟରେ ରୂପ ଦେବାକୁ ଚେଷ୍ଟା କରିଛନ୍ତି । ଗୁରୁଗମ୍ଭୀର ଭାଷା କ୍ୱଚିତ୍ ପ୍ରବହମାନ ଓ ବେଳେବେଳେ ଏକ ଦୀର୍ଘଶ୍ୱାସ ଆର୍ତ୍ତିର ଆବେଗ ଏଥିରେ ପ୍ରକାଶିତ ହୋଇଅଛି । ଏକ ତରୁ ମଧ୍ୟରେ ସାରା ବିଶ୍ୱକୁ ଦେଖିବା ଅଥବା ଅମାର ଅନ୍ଧକାର ମଧ୍ୟରେ ଜୀବନର ରହସ୍ୟ ସନ୍ଧାନ କରିବା ଅଥବା ନିଜକୁ ମହୋଜ୍ଜ୍ୱଳ ସୂର୍ଯ୍ୟ ଅଥବା ମହୋଦାର ମନୋରାଜ୍ୟର ସମ୍ରାଟ-ରୂପେ ଅଭିଷିକ୍ତ କରିବାର ସ୍ତୋତ୍ର-ଗୀତ, ପ୍ରଭାତୀର ବହୁ ଚତୁର୍ଦ୍ଦଶପଦୀରେ ଦେଖିବାକୁ ମିଳେ । ମହାତ୍ମାଗାନ୍ଧୀ, ରବୀନ୍ଦ୍ରନାଥ, ଫକୀରମୋହନ, ମଧୁସୂଦନ, ସାମନ୍ତ ଚନ୍ଦ୍ରଶେଖର, ଉତ୍କଳଭାରତୀ କୁନ୍ତଳାକୁମାରୀଙ୍କ ଉଦ୍ଦେଶ୍ୟରେ ରଚିତ ସନେଟ୍-ଗୁଡ଼ିକରେ ଏହି ମହାପୁରୁଷମାନଙ୍କ ସାଧନା ଓ ସିଦ୍ଧିର ବିଚିତ୍ର ବିନ୍ୟାସ ଏକ ମନୋଜ୍ଞ ଅସାମାନ୍ୟ ଭାଷାରେ ପ୍ରକାଶ ପାଇଛି । ଗାନ୍ଧୀଜୀଙ୍କୁ ଭାରତ ନନ୍ଦନର ଚନ୍ଦନତରୁ, ରବୀନ୍ଦ୍ରଙ୍କୁ ବିଶ୍ୱ ଗଗନ ଅଙ୍ଗନର ପ୍ରଚଣ୍ଡ ଭାସ୍ୱରରୂପେ କବି ବର୍ଣ୍ଣନା କରିଛନ୍ତି । ଏହି ଚତୁର୍ଦ୍ଦଶପଦୀଗୁଡ଼ିକ ବହୁସ୍ଥଳରେ ପ୍ରଶସ୍ତିମୂଳକ ଓ ଉପଦେଶାତ୍ମକ । ଏଥିରେ ଏକ ତରୁଣ କବିପ୍ରାଣର ଆଦର୍ଶଗତ ଉଦ୍ଦୀପନା ଯେଉଁ ପରିମାଣରେ ପ୍ରକାଶିତ, ଶିଳ୍ପ ପାଟବ ଓ କବିତାର ଗଠନ ସୌଷ୍ଠବ ସେହି ପରିମାଣରେ ରକ୍ଷିତ ହୋଇନାହିଁ । ମାତ୍ର ସମସ୍ତ ଅପୂର୍ଣ୍ଣତା ସତ୍ତ୍ୱେ କଳ୍ପନାର ପୁଷ୍ପିତ ଶିଖରରେ ଆରୋହଣ ଏକ ଉଦୀୟମାନ କାବ୍ୟ ପୁରୁଷର ଉଜ୍ଜ୍ୱଳ ସ୍ୱାକ୍ଷର ରଖିଯାଇଛି ।

ପ୍ରାଥମିକ ପର୍ଯ୍ୟାୟରେ କବିଙ୍କ ରୂପାଙ୍କନ ପ୍ରବଣତା ଓ ପାରମ୍ପରିକ ପ୍ରାଚୀନ ଓଡ଼ିଆ କବିତାର ଶୃଙ୍ଗାରିକ ପରମ୍ପରା ପ୍ରତି ଗଭୀର ମମତା ଓ ପ୍ରକୃତିର ସୌନ୍ଦର୍ଯ୍ୟ ଜଗତରେ ବିଚରଣର ଏକ ଉଦଗ୍ର ଆବେଗ ‘କଳ କଲ୍ଲୋଳ’ର କବିତାବଳୀ ମଧ୍ୟରେ ଦେଖିବାକୁ ମିଳେ । ଏହିସବୁ କବିତା ସ୍ଥାନେ ସ୍ଥାନେ ଆପାତ ଦୃଷ୍ଟିରେ ମନେହୁଏ ରବି ପ୍ରଧାନ ।

“ଝର ଝର ଝର ବନ ମରମର କାକଳିମୁଖର ମଧୁର ସନ୍ତ
ରଙ୍ଗ ରଭରତ ଶରୀଲ ସୀମନ୍ତ ଦଶେ ଶିରୀମନ୍ତ ମହିଲେ ବସନ୍ତ ।”

ଏହିଭଳି ବହୁ ପଙ୍କ୍ତିର ଭାବ ଓ ଭାଷା-ଉଭୟ ଗତାନୁଗତିକ । ଆଧୁନିକ କବିତାର ପରିଭୂମିରେ ଏହିସବୁ କବିତାର ସାର୍ଥକତା ହୁଏତ ଖୋଜି ପାଇବା ଦୁଷ୍କର ମନେ ହୋଇ ପାରେ; କିନ୍ତୁ ଏଥିରେ କବିଙ୍କ ବିଶ୍ୱସ୍ତତାର ଅଭାବ ନାହିଁ । ବିଚିତ୍ର ପ୍ରକୃତି କୋଳରେ କବି ଭ୍ରମଣ କରିଛନ୍ତି, ନାନା ମୁହୂର୍ତ୍ତରେ ପ୍ରକୃତିର ସୌନ୍ଦର୍ଯ୍ୟ ଓ ପ୍ରଶାନ୍ତି ମଧ୍ୟରେ ଧ୍ୟାନସ୍ଥ ହୋଇଛନ୍ତି । ଧ୍ୟାନଗମ୍ଭୀର କବି ହୃଦୟର ଉଦାତ୍ତ ଉଦ୍‌ଗୀରଣ ଏହି କବିତାଗୁଡ଼ିକୁ ନବ ନବ ଛନ୍ଦ ଲୟ ଓ ସାଙ୍ଗୀତିକ ଆବହର

ବିଚିତ୍ର ସ୍ୱର ସଂପାତରେ ହୃଦୟସ୍ପର୍ଶୀ କରିଅଛି । କେଉଁ ଏକ ଅନାମିକା ଗିରି-ନିର୍ଝରକୁ କବି ନିଜର ପ୍ରାଣସଙ୍ଗିନୀରୂପେ ବରଣ କରି ନେବାର ମନୋଜ୍ଞ ଚିତ୍ରଟିକୁ ଦେଖାଯାଇ ପାରେ ।

"ଶଇଳକନ୍ୟା ଦେଖିରେ ଗିରିକୁ ସବୁଜଲତା ଶେଯ/ବସିଲି ଧୀରେ ଅନାଇଁ ଦୂରେ ଅସ୍ତ-ରବି ତେଜ/ଗଣ୍ଡେ ତୁମ ସନ୍ଧ୍ୟା ଚୁମ୍ବ ଦେଖି ମୁଁ ହେଲି ଭୋଳା/ବୁଦ୍‌ବୁଦର ଗ୍ରୀବାଣୀ ଗ୍ରୀବା ଡ଼ୋଳା/ବନ୍ଧି ମୋର ମୁଖେ/ନିର୍ଝରିଣୀ, ବୁଡ଼ିଲି ମୁହିଁ ସରଗପ୍ରେମ ସୁଖେ ।"

କବିଙ୍କ ପ୍ରକୃତି କବିତା ମୁଖ୍ୟତଃ ରୂପପ୍ରଧାନ । ନଦୀ, ପର୍ବତ, ସମୁଦ୍ର, ହ୍ରଦ,, ପଲ୍ଲୀର ବିଜନପଥ, କ୍ଷେତ ଅଥବା ନଗରର ଜନାକୀର୍ଣ୍ଣ ସାଧାରଣ ଉଦ୍ୟାନ ଓ ବାଣିଜ୍ୟପର୍ଯ୍ୟନ୍ତ ସର୍ବତ୍ର କବିଙ୍କ ଦୃଷ୍ଟି ରୂପସୃଷ୍ଟିର ପ୍ରୟାସ କରିଅଛି । ଏ ସବୁ ଚିତ୍ର କବିଙ୍କ ବ୍ୟକ୍ତିଗତ ଅନୁଭବରେ ରସାଣିତ । ପଲ୍ଲୀ ଗ୍ରାମରେ ବିଜନବାସ ଅଥବା ଦୂର ଭ୍ରମଣ ଚିତ୍ତ ବିନୋଦନ ଲାଗି ଅଥବା ଅଦମ୍ୟ କୌତୂହଳର ଚରିତାର୍ଥତା ଲାଗି ପାହାଡ଼ ପର୍ବତରେ ଭ୍ରମଣ, କାର୍ଯ୍ୟୋପଲକ୍ଷରେ ବିଭିନ୍ନ ସ୍ଥାନ ଭ୍ରମଣ ଓ ବାସ କବିଙ୍କର ଶିଳ୍ପୀଦୃଷ୍ଟିକୁ ଶାଣିତ କରିଅଛି । ଦୃଶ୍ୟମାନ ପ୍ରକୃତିର ଅନ୍ତରାଳରେ ଏକ ମହତ୍ତର ସ୍ମରଣୀୟ ସୌନ୍ଦର୍ଯ୍ୟ ଲୋକର ସନ୍ଧାନ ଓ କବିତାରେ ତାହାର ଚିତ୍ରାୟନ ଘଟିଅଛି ।

'ଚିତାଚିତ୍ର' ପର୍ଯ୍ୟାୟର ପ୍ରକୃତି କବିତାରେ 'କଳକଲ୍ଲୋଳର' ପାରମ୍ପରିକ ଛନ୍ଦବଦ୍ଧ ପରିବର୍ତ୍ତେ ପରିଚ୍ଛନ୍ନ ବାକ୍‌ବନ୍ଧ କବି ଗ୍ରହଣ କରିଛନ୍ତି । କବିଙ୍କର କେତେଗୋଟି ଶ୍ରେଷ୍ଠ କବିତା ଏହି ପର୍ଯ୍ୟାୟରେ ରଚିତ । ପ୍ରକୃତିର ଏକ ସାମଗ୍ରିକ ସତ୍ତା, ବିପୁଳ ବିସ୍ତାର ଓ ନିତ୍ୟ ପରିବର୍ତ୍ତିମାନ ରୂପ କବିଙ୍କୁ ଆତ୍ମହରା କରି ତୋଳାଛି । ସତେ ଯେପରି ପ୍ରକୃତିର ଅନ୍ତରାଳରେ ଏକ ଅନନ୍ତଭୂମାର ଚିତ୍ର ଆଭାସିତ ହୋଇ ଉଠିଛି । ଏକାନ୍ତ ନିଃସଙ୍ଗ ମୁହୂର୍ତ୍ତରେ କବି ପ୍ରକୃତିର ଉଦାର ଅଙ୍ଗନରେ ଭ୍ରମଣରେ ସ୍ଫୂର୍ତ୍ତି ସନ୍ଧାନ କରିଛନ୍ତି । ବିରାଟ ପ୍ରକୃତି, କବିଙ୍କ ଅନୁଭବରେ ଏକାନ୍ତ ନିକଟ ଆତ୍ମୀୟ ପରି ପ୍ରତିଭାତ ।

"ପର୍ବତର ଦେହ ତବ ଅରଣ୍ୟର କେଶ/ଗଳେ ଝରଣାର ମାଳ"/"ଦିନେ ଆସିଥିଲ ମୋର ବାତାୟନ ପାଶେ/ଝଡ଼ ଉପହାସେ; କରି ଅଭିସାର"

ପ୍ରକୃତି ମଧ୍ୟରେ କବି ଜୀବନର ସମସ୍ତ ଶୂନ୍ୟତାକୁ ପୂର୍ଣ୍ଣ କରିବା ପାଇଁ ପ୍ରୟାସୀ । ଜ୍ୟୋତ୍ସ୍ନାର ପ୍ରଲେପବୋଳା ପୃଥିବୀର ପୁଷ୍ପିତ ବେଶ । ବର୍ଷାର ତାଣ୍ଡବ ମଧ୍ୟରେ ନନ୍ଦନଶୀଳା ପୃଥିବୀର ବିପୁଳ ଜୀବନ ପ୍ରୀତି । ଧୂଆଁ ଧାରର ପ୍ରବାହ ମଧ୍ୟରେ ସଭ୍ୟତାର ବିବର୍ତ୍ତନର ବିପୁଳ ଧାରା କବି ଲକ୍ଷ୍ୟ କରିଅଛନ୍ତି । ଉତ୍କଳର ହ୍ରଦରେ ଭ୍ରମଣ କାଳରେ କବି ମାନସରେ ପ୍ରକୃତିର ଯେଉଁ ଚିତ୍ର ଫୁଟି ଉଠିଛି ତା ଭିତରେ ପଶୁ-ପକ୍ଷୀ ଅରଣ୍ୟ-ପର୍ବତ ଓ ଚଳମାନ ମାନବଜୀବନର ଏକ ଐକ୍ୟତାନ ଧ୍ୱନିତ ହେଉଅଛି ।

ସଙ୍ଗୀତିକତା କୁଞ୍ଜବିହାରୀଙ୍କ କବିତାର ଏକ ପ୍ରଧାନ ଧର୍ମ । ଆଖ୍ୟାନଧର୍ମୀ କବିତା, କାବ୍ୟ ଓ ଗାଥାଗୀତିକା ମଧ୍ୟରେ ଏହା ପ୍ରଚ୍ଛନ୍ନ ଭାବରେ ପ୍ରବାହିତ । ମାତ୍ର କବିଙ୍କ ରଚିତ ଅଳ୍ପ କେତୋଟି ସଙ୍ଗୀତ ଓ ଶିଶୁ କବିତା ମଧ୍ୟରେ ଏହାର ପରିସ୍ଫୁଟ ରୂପଟି ଦେଖିହୁଏ । ରାଗିଣୀ ନାମରେ କବିଙ୍କ ଗୀତିକବିତା ସଙ୍କଳିତ ହୋଇଅଛି । ଏହି ସଙ୍ଗୀତ ଗୁଡ଼ିକର ଭାଷା ସୁବୋଧ୍ୟ ଓ ଭାବ ସ୍ୱତଃସ୍ଫୂର୍ତ୍ତ । ଏକ ବ୍ୟଥାଭରା ସରସ କବି-ହୃଦୟର ଧାରା ଏହି ସଙ୍ଗୀତରେ ପ୍ରବାହିତ ।

"ତୁମକୁ ପାଇବି ବେଦନାର ଦାହେ କପୋତ ଯେ ଗୀତ ଗାଏ
ତପତ ବାଲିରେ ମରୁଭୂମି ଝର
ସରିଗଲେ ଶେଷ ବିନ୍ଦୁ ସଲିଳ
ଶୂନ୍ୟରେ ଯେବେ ଚାହେଁ ।"

କେତେକ ସଙ୍ଗୀତରେ ସ୍ତୋତ୍ର-ଗୀତିର ସ୍ପର୍ଶ ମିଳେ । ପ୍ରେମ, ବିଭୁପ୍ରୀତି, ପ୍ରକୃତିର ସୌନ୍ଦର୍ଯ୍ୟାନୁଭୂତି ଓ ପରିଶେଷରେ ଜାତୀୟତାର ଉଦାତ୍ତବାଣୀ ଏହି ସଙ୍ଗୀତ ଗୁଡ଼ିକୁ ଭାବମୟ କରିଅଛି ।

"ଓଡ଼ିଆ ପରାଣ ପ୍ରତିଭାଭରା
ଦେଉଳ ଚୁମଇ ସରଗ ତରା
ସୁ ପ୍ରକେଶରୀ ଉଠିବେ ଯେବେ
ଗଙ୍ଗା କାବେରୀ ମିଶାଇ ଦେବେ ।"

ଶିଶୁର ଭାଷାରେ ଭାବପ୍ରକାଶର ସାମର୍ଥ୍ୟ ଉପରେ ଶିଶୁ କବିତାର ସାର୍ଥକତା ନିର୍ଭର କରେ । କଳ୍ପନା ଭିତର ଦେଇ ବାସ୍ତବତାର ଅବବୋଧ ପାଇଁ ଶିଶୁମନ ସଦା ପ୍ରୟାସୀ । ସାର୍ଥକ ଶିଶୁ କବିତା ଏଇ ଶିଶୁମନ ସହିତ ଆତ୍ମୀୟତା ସୂତ୍ରରେ ଗ୍ରଥିତ ହୁଏ । ଛନ୍ଦପ୍ରତି ଶିଶୁମନର ଏକ ସହଜ ଆକର୍ଷଣ ଥାଏ । ଇଟିକିଲି ମିଟିକିଲି, ଡାକ୍ ଡମାଡମ୍, ଖେଳସାଥୀ ଆଦି ଏକାଧିକ ସଙ୍କଳନରେ କବିଙ୍କ ଶିଶୁ କବିତାଗୁଡ଼ିକ ପ୍ରକାଶିତ । ଶିଶୁ କବିତାର ସହଜସ୍ଫୂର୍ତ୍ତି ଧାରାଟି ଲୋକସାହିତ୍ୟରେ ବିଦ୍ୟମାନ । କବି ଏହା ସହିତ ଏକାନ୍ତ ପରିଚିତ । ଅତିରଞ୍ଜନ, ଅଲୌକିକତା, ନିରର୍ଥକ ଅଥଚ ଶ୍ରୁତିମଧୁର ଧ୍ୱନିର ଆକର୍ଷଣ ଭିତରେ ଶିଶୁ କବିତାଜଗତର ଏକ ସ୍ୱାଭାବିକ ଚିତ୍ର ଫୁଟି ଉଠେ । ଶିଶୁର ପରିଚିତ ପରିବେଶ ମଧ୍ୟରେ ହିଁ ଶିଶୁର ମନୋଭାବର ଯଥାର୍ଥ ପ୍ରକାଶ ସମ୍ଭବ । ଗୃହପାଳିତ ପଶୁ, ଅତି ପରିଚିତ ପକ୍ଷୀ ଶିଶୁ କବିତା ଜଗତରେ ବିଶେଷ ସ୍ଥାନ ଲାଭ କରିଥାଆନ୍ତି । ସଜୀବ ପ୍ରକୃତି ଶିଶୁର ଖେଳନା ଭିତରେ ନବ ନବ ରୂପରେ ପ୍ରକାଶିତ ହୁଏ । ଶିଶୁ ମନର କଳ୍ପନା ପ୍ରବଣତା ଅତି ସାଧାରଣ ବସ୍ତୁ ଭିତରେ ଏକ ଅଲୌକିକ ଜଗତର ଛବି ବିଶେଷିଭାବରେ ସାର୍ଥକ ହୋଇଛି ।

ଅଙ୍ଗନରେ ଦେଖାଯାଏ । ଅସରନ୍ତି ପ୍ରଶ୍ନର ଭଣ୍ଡାର ଭିତରେ ଶିଶୁମନ ନିତ ପରିଚିତ ଭିତରେ ଏକ ଅପରିଚିତ ଜଗତର ସନ୍ଧାନ କରିବାକୁ ଚାହେଁ ।

"ଯେବେ ବହେ ସୁଲୁ ସୁଲୁ ବାଆ/କିଏ ଭସାଏ ବଉଦ ନାଆ,
ଏଇ ନେଳି ଆକାଶର କଣେ/କିଏ ବସିଛି କି ପିଲା ଜଣେ
ଯିଏ ଫୁଙ୍କିଲେ ପବନ ବହେ/ଯିଏ ଚାହିଁଲେ ସୂରୁଯ ଉଏଁ
ମୋତେ ଦେଖାଇ ପାରିବ ଭାଇ/ସେଇ ଜଣକ ବସିଛି କାହିଁ ।"

ଉଦୁଉଦୁମା, ଇସ୍ ମିସ୍ କିଛି ନାହିଁ, କାଠଘୋଡ଼ା ପାଣି ପି, ଆଦି କବିତ୍ୱା ଗୁଡ଼ିକ ବିଶେଷ ଶବ୍ଦଧର୍ମୀ । ଛନ୍ଦର ଦୋଳନ ଓ ଛନ୍ଦମୟ ଶବ୍ଦର ଗୁମ୍ଫନ ଭିତରେ ସତେ ଯେପରିକି ଏକ ଅବୋଧ, ଚିର ରହସ୍ୟମୟ ପୁଣି ଏକାନ୍ତ ପରିଚିତ ଚିତ୍ର ଭାସି ଉଠେ । ସେହିଭଳି ଗୋଟିଏ ଚିତ୍ର ଉଦୁଉଦୁମା । କେତେବେଳେ ସେ ହୁଏ ବଉଦଖୁଡ଼ୀ କୁହୁଡ଼ି ବୁଢ଼ୀ, ପୁଣି କେତେବେଳେ ଭୂତର ଭାଇ । ତା'ର ଚଇତନ ଚୁଟି ଓ ହୋଷ୍ଟ ଭଳି ଦାଢି ଓ ମେଘଭଳି କେଶ ତାକୁ ଯେପରି କି କ୍ଷୁଦ୍ରରୁ ସୁବୃହତ୍‌ରୂପରେ ପ୍ରକାଶିତ କରେ । ବେଦରେ ଭାତରେ ତାର ପେଟ ପୁରେନାହିଁ, ନଈଏ ଡାଲିରେ ତାର ପତର ଭିଜେନାହିଁ, ତାକୁ ଶୋଷ ଲାଗିଲେ ଦରିଆଯାକର ପାଣି ଅଭାବ ହୁଏ । କିନ୍ତୁ ଏହି ବିଚିତ୍ର ଜୀବକୁ ଡରିବାର କିଛି ନାହିଁ । କାରଣ ହୁଏତ ସେ ଶିଶୁର ଅତି ନିକଟରେ ଥିବା "ତାଲ ଗୋଟମା/ପିତଳ ସମା/ଝମଝମ ଝୁମା/ଉଦୁ ଉଦୁମା ।"

ଶିଶୁ କବିତାରେ ହାସ୍ୟରସ ପରିବେଷଣର ସାର୍ଥକ ପ୍ରୟାସ ଦେଖିବାକୁ ମିଳେ । 'ହଟିଆର ଚୁଟି', 'ବଗ ସାଉଁଟିର ପଞ୍ଚକ ଓଷା', 'କପି'—ଏହିସବୁ କବିତାରେ ହାସ୍ୟରସ ସୃଷ୍ଟି ସାର୍ଥକତା ଲାଭ କରିଅଛି । ପ୍ରକୃତିର ବିଚିତ୍ର ଜଗତ, ସତେ ଯେପରି କି ଶିଶୁରୂପ ଧରି ଶିଶୁ କବିତାରେ ଅବତରଣ କରେ । କାକର ଟୋପାଟି ନିଜ ଘୋଷଣା କରେ—

"ମୋ ନାଆଁଟି କାକର/ଫୁଟାଏ ମୁଁ ଟାକର
ଗଛଡାଳେ ଶୀତ କାଳେ/ନୁହେଁ କାର ଚାକର
ମିଠ ମୋର ଆକାଶେ/ଖେଳା ବୁଲା ବତାସେ
କୁହୁଡ଼ିରେ ଚଢି ଆସେ/ଫୁଲ କେମା ଉଆସେ ।"

## କବିଙ୍କ କବିତାର ଆକୃତି ଓ ପ୍ରକୃତି

ସାଧାରଣ ଦୃଷ୍ଟିରେ କୁଞ୍ଜବିହାରୀ ହୁଏତ ଜଣେ ଜନପ୍ରିୟ କବି । ଏହି ଜନପ୍ରିୟତା ଶିଶୁ ଓ କିଶୋର କବିତାରେ ବହୁଳାଂଶରେ ସୁପ୍ରଦର୍ଶିତ । ପ୍ରକୃତି କବିତାରେ

କବି ମାନସର ପ୍ରସାର ଓ କବିହୃଦୟର ସ୍ପନ୍ଦନ ବିଶେଷରୂପେ ଅନୁଭୂତ ହୁଏ । ମାତ୍ର ଅଜସ୍ର ଗାଥା-ଗୀତି ଓ ଆଖ୍ୟାୟିକା, ଗାଥାକାବ୍ୟ ଓ ବର୍ଣ୍ଣନାତ୍ମକ ଖଣ୍ଡକବିତା ମଧ୍ୟରେ କବିଙ୍କ ସାଫଲ୍ୟର ଅଜସ୍ର ସ୍ୱାକ୍ଷର ଥିଲେ ହେଁ ବିଫଳତାର ବହୁମୁଦ୍ରା ଅଙ୍କିତ । ଏହି ବିଫଳତାର ପ୍ରଧାନ କାରଣ ଗଦ୍ୟ ଉପନ୍ୟାସ ଯୁଗରେ କବି କୁଞ୍ଜବିହାରୀ କବିତାର ମାଧ୍ୟମରେ ଗଳ୍ପକଥନର ପ୍ରୟାସ କରିଛନ୍ତି । ଊନବିଂଶ ଶତକରେ ସ୍ୱଦେଶ ଓ ବିଦେଶର ବହୁ କବି ଔପନ୍ୟାସିକଙ୍କ ସହିତ ସତେ ଯେପରି କି ପ୍ରତିଦ୍ୱନ୍ଦ୍ୱିତା କରି ଆଖ୍ୟାନକାବ୍ୟ ରଚନା କରିଛନ୍ତି । ମାତ୍ର ଔପନ୍ୟାସିକଙ୍କ ଭଳି ସେମାନେ କ୍ୱଚିତ୍ ସାର୍ଥକତାଲାଭର ଅଧିକାରୀ ହୋଇଛନ୍ତି । ଏହିସବୁ କଥାକାବ୍ୟର ସାର୍ଥକତା କବିଙ୍କ ଅନୁଭୂତିର ଗଭୀରତା ଉପରେ ନିର୍ଭର କରେ । କିନ୍ତୁ ଯେତେ ସ୍ୱପ୍ନମୟ, ଭାବମୟ ଭାଷାରେ ରଚିତ ହେଲେହେଁ ପୁରାଣର ଜଗତଭଳି ଆଧୁନିକ କାବ୍ୟ ଏକ ଅଲୌକିକ ସ୍ୱପ୍ନମୟ ଜଗତକୁ ପାଠକକୁ ଘେନି ଯାଇପାରେ ନାହିଁ । ଅନ୍ୟ ପକ୍ଷରେ କାବ୍ୟଭାଷାର କୃତ୍ରିମ ଶୃଙ୍ଖଳମଧ୍ୟରେ ଲୌକିକତାର ଜୀବନ୍ତ ଦୀପ୍ତି ଫୁଟାଇବାକୁ ଏହା ସକ୍ଷମ ହୁଏନାହିଁ । ଏହି ସବୁ କାବ୍ୟ ପଢିଲାବେଳେ ମନେ ହୁଏ ସତେ ଯେପରି ନିଦ୍ରାହୀନର ନୟନରେ ସ୍ୱପ୍ନମୟ ଚିତ୍ରର ଆଭାସ ଅଙ୍କିତ । ଏହା ସମ୍ପୂର୍ଣ୍ଣ ଅବାସ୍ତବ । ଏହିସବୁ ଆଖ୍ୟାନ କାବ୍ୟର ଚରିତ୍ରଗୁଡ଼ିକ ସତେ ଯେପରି କବିଙ୍କ ଭାବନା ଅନୁସାରେ ଚଳପ୍ରଚଳ ହୁଅନ୍ତି । ସେଥିରେ ବ୍ୟକ୍ତିତ୍ୱର ସ୍ୱାଭାବିକତା ଓ ସ୍ୱାତନ୍ତ୍ର୍ୟ ଫୁଟି ପାରେନାହିଁ । ଗଦ୍ୟ ରଚନାରେ ଚରିତ୍ରାୟଣର ଯେଉଁ ସୁଯୋଗ ମିଳେ, କବିତାରେ ତାହା କ୍ୱଚିତ୍ ମିଳିଥାଏ । ସଂଳାପ ମଧ୍ୟରେ ଚରିତ୍ରର ଯଥାଯଥ ଚିତ୍ରଣ ଓ ଅବତାରଣା ପାଇଁ ନାଟକରେ ମଧ୍ୟ ଗଦ୍ୟର ବିନିଯୋଗ କରାଯାଇ-ଥାଏ । ଗଦ୍ୟର ସହଜ ସ୍ୱତଃସ୍ଫୂର୍ତ୍ତି ପ୍ରାଣପ୍ରାଚୁର୍ଯ୍ୟ ଅଭାବରୁ ଆଧୁନିକ ଯୁଗରେ ଯେତେ ଉତ୍କୃଷ୍ଟ ଭାବରେ ରଚିତ ହେଲେହେଁ କୌଣସି ଆଖ୍ୟାନ କାବ୍ୟ ପୂର୍ଣ୍ଣ ସାର୍ଥକତାର ଅଧିକାରୀ ହୋଇ ପାରେ ନାହିଁ । କବିତାରେ କବି ପରୀ ରାଇଜର କାହାଣୀ ଶୁଣାଇ ପାରନ୍ତି, ଅସାଧାରଣ ବୀର ଚରିତ୍ରର କ୍ରିୟାକଳାପ ବର୍ଣ୍ଣନା କରିପାରନ୍ତି, ଏକ ମୋହ-ମୟ ଭାବଭୂମିରେ ବିଚରଣ କରି ସୌନ୍ଦର୍ଯ୍ୟ ଲୋକର ସଂଧାନ କରି ପାରନ୍ତି; ମାତ୍ର ଜୀବନର ବାସ୍ତବ ସହଜ ଓ ସ୍ୱତଃସ୍ଫୂର୍ତ୍ତି ପ୍ରାଣବନ୍ୟାରେ କାବ୍ୟଚିତ୍ରକୁ ଋଦ୍ଧିଦୀପ୍ତ, କାରୁଣ୍ୟକୋମଳ କରିବାରେ କ୍ୱଚିତ୍ ସମର୍ଥ ହୁଅନ୍ତି । ସ୍ଥଳ ବିଶେଷରେ ଯଦିବା ସଂଳାପ ବା ନାଟକୀୟ ଉପସ୍ଥାପନା ରୀତିର ସାହାଯ୍ୟ ନିଅନ୍ତି ତାହା ପ୍ରକୃତ ବାକ୍‌ରୀତି ଓ ପ୍ରକୃତ ଜୀବନର ଏକ ଝଲକା ବା ପରିହାସକର ଚିତ୍ରଭଳି ବୋଧ ହୋଇଥାଏ । ଏହି ସମସ୍ତ ଦୋଷରୁ କୁଞ୍ଜବିହାରୀଙ୍କର ଗାଥାକାବ୍ୟ ଗୁଡ଼ିକ ସଂପୂର୍ଣ୍ଣ ମୁକ୍ତ ବୋଲି କହିବା ସଂଗତ ନୁହେଁ । ତଥାପି ତାଙ୍କର ସାଫଲ୍ୟର ମୁଦ୍ରା ଏହି ସବୁ ଗାଥା କାବ୍ୟ ଭିତରେ କ୍ୱଚିତ୍ ବିକୀର୍ଣ୍ଣ ପ୍ରଗୀତିର ସ୍ପନ୍ଦନ ମଧ୍ୟରେ ଖୋଜାଯାଇପାରେ । 'କଙ୍କାଳର ଲୁହ' 'ମାଟି ଓ ଲଟି' ତଥା 'ବାଗ୍ରା' ଓ 'ଡ଼ୁଡ଼ୁମା' ଭଳି ବର୍ଣ୍ଣନାତ୍ମକ ପ୍ରକୃତି-କାବ୍ୟମଧ୍ୟରେ କବିଙ୍କ ପ୍ରତ୍ୟୟ ଉଦାର କଳ୍ପନା ପ୍ରବୀଣମନ ଓ ସଂବେଦନଶୀଳ ହୃଦୟର ନିବିଡ଼ ସ୍ପର୍ଶ ବିଶେଷଭାବେ ସାର୍ଥକ ହୋଇଛି ।

କବିଙ୍କ କବିତା ଗଦ୍ୟାତ୍ମକ ନୁହେଁ ଯଦିବା ତାଙ୍କ କବିତାରେ ଏକ ପରିଚ୍ଛନ୍ନ ଗଦ୍ୟର ଶୈଳୀ ଆମୂଳାନ୍ତ ବିଦ୍ୟମାନ । ତାଙ୍କ କବିତାର ଶକ୍ତି ଏକ ଦିଗରେ ଗଦ୍ୟର ସ୍ଥୈର୍ଯ୍ୟ, ସ୍ପଷ୍ଟତା ଓ ବୈଚିତ୍ର୍ୟରୁ ତଥା ଅନ୍ୟଦିଗରେ ଛନ୍ଦର ପ୍ରବାହ, ଗତି ଓ ବୈଚିତ୍ର୍ୟର ଆନନ୍ଦ । ଛନ୍ଦ ଭିତରେ ସେ କବିତାର ଅନ୍ତର୍ନିହିତ ସ୍ୱରଟିକୁ ବହୁ ସ୍ଥଳରେ ଧରି ଦେବାକୁ ଚେଷ୍ଟା କରିଥାଆନ୍ତି । କବିତାର ରୂପ ବୈଚିତ୍ର୍ୟ ଓ ଭାବାନୁଭୂତିର ଅବବୋଧରେ ତାଙ୍କର ଛନ୍ଦ ସହାୟକ ହୋଇଥାଏ । ଏହି ଛନ୍ଦର ଦ୍ୟୋତନା ତାଙ୍କର ଗଦ୍ୟ କବିତାକୁ କରିଥାଏ ଛନ୍ଦ କବିତାର ସମଧର୍ମୀ । ପୁଣି ଏହି ଛନ୍ଦରଚନାଲାଗି କବି ଯତିପାତ, ପ୍ରାନ୍ତିକମେଳ, ପଦବିନ୍ୟାସ ଆଦି ପରମ୍ପରାନୁବନ୍ଧିତାକୁ କେଉଁଠି ମାନିଛନ୍ତି ତ କେଉଁଠି ମାନିନାହାନ୍ତି । ମାତ୍ର ପାରମ୍ପରିକ ନିୟମର ଲଙ୍ଘନ କୁତ୍ରାପି ବିଶୃଙ୍ଖଳା ସୃଷ୍ଟି କରିନାହିଁ । ଅଥବା ଏହି ପାରମ୍ପରିକ ନିୟମର ବନ୍ଧନ ଛନ୍ଦର ପ୍ରବାହକୁ କେଉଁଠି ଶିଥିଳ କରିଦେଇ ନାହିଁ । ଏହି ଛନ୍ଦର ଚଳନ ମଧ୍ୟରେ କବି ନିଜ ଅଙ୍କିତ ଦୃଶ୍ୟ, ଭାବ ଓ ଚରିତ୍ରଗୁଡ଼ିକୁ ଅଭିବ୍ୟକ୍ତି ଦେଇଥାନ୍ତି । ପାଠକ ଛନ୍ଦ ମଧ୍ୟରେ ହିଁ ମୃଦୁ ଦୋଳନ, ଝଞ୍ଜାର ଘୂର୍ଣ୍ଣି, ତରଙ୍ଗର କମ୍ପନ, ପତ୍ରର ମର୍ମର, ଆଲୋକର ଉଜ୍ଜ୍ୱଳତା, ଅନ୍ଧକାରର ସୂଚୀଭେଦ୍ୟ ଘନତା ଅନୁଭବ କରିପାରେ । ଏହା ଗୋଟିଏ ଦୃଷ୍ଟାନ୍ତରୁ ଦେଖା ଯାଇପାରେ ।

"ନାଉରୀ, ନାଆରଙ୍ଗ, ଶରଇଲ ନୀଳଗୁହି
ଚିଲିକା ନୀଳଜଳେ ପଡେଇ ଆସେ ଧୀରେ
ତନ୍ଦ୍ରାସମ ମନେ, କୁହୁଡ଼ି ସପିସୃପ
ଅଦ୍ଭୁତ ପାଦେ ଚାଲେ, ଅନ୍ତମେଘ ତଳୁ
ରଶ୍ମି ଧାରେ ଝରେ, ଲୋହିତ ତରବାରି
ଅସୀମ ପୁରେ କେଉଁ ଅଜଣା ହାତ ଧରେ ?
ଶରଇଲ ଶିଳ୍ପୀର ଛବିଟି ସମଭାସେ
ସଲିଲ ନୀଳ ରସେ, ରକ୍ତ ରବି କରେ
ଉଠଇ ଜଳ ଦ୍ୱୀପ, ଦୋଳଇ ଧୂପସମ
ଚିଲିକା ସୁନ୍ଦରୀ ଲକ୍ଷ ନୀଳ ହାତେ ।"

କବିଙ୍କ ଭାଷା ଅନୁଭୂତି ପ୍ରଧାନ । ଏହା ବୌଦ୍ଧିକତା ସର୍ବସ୍ୱ ନୁହେଁ । ଲୋକୋକ୍ତି, ପୌରାଣିକ ଅନ୍ତରଞ୍ଜନ ଏହି ଭାଷାକୁ ଶକ୍ତି ଓ ସୌନ୍ଦର୍ଯ୍ୟ ଯୋଗାଇ ଅଛି । ଗ୍ରାମ୍ୟ ଜୀବନ ସହିତ ନିବିଡ ସମ୍ପର୍କ କବିଙ୍କର ଭାଷା ବିନ୍ୟାସରୁ ଦେଖିହୁଏ । 'ମାଟି ଓ ଲଟି', 'କଙ୍କାଳର ଲୁହ' ଭଳି ଦୀର୍ଘ କବିତା ତଥା 'ଲୁହ ଲହରି' ଭଳି ଗାଥା ଗୁଡ଼ିକର ସୌନ୍ଦର୍ଯ୍ୟ ଏହି ସ୍ୱାଭାବିକ ଅକୃତ୍ରିମ ଭାଷାଦ୍ୱାରା ବୃଦ୍ଧି ପାଇଅଛି । ଏହିସବୁ କବିତାରେ ଗ୍ରାମୀଣ ଭାଷାରେ ଗ୍ରାମ୍ୟଜୀବନର ଚିତ୍ର ଅଙ୍କିତ ହୋଇଅଛି । କବିଙ୍କର ଭାଷା ରୂଢିବଦ୍ଧ

ନୁହେଁ । ଏଥିରେ କବିଚିତ୍ତ ବିରହିକର ପୁନରାବୃତ୍ତି ଅନୁଭୂତ । ଭିନ୍ନ ଭିନ୍ନ ପରିବେଶ, ରୂପଚିତ୍ର ଓ ଭାବବିନ୍ୟାସ ଲାଗି ଭିନ୍ନଭିନ୍ନ ଭାଷା ଶୈଳୀ ନିୟୋଜିତ ହୋଇଅଛି । ଭାଷା କବିଙ୍କ କବିତାର ଏକ ଯୋଗ୍ୟ ପରିଚ୍ଛଦ । ସ୍ଥାନେ ସ୍ଥାନେ ଏହା ଅଭିଜାତ ରାଜରାଣୀର ପୋଷାକ ପିନ୍ଧିଅଛି । ପ୍ରାଥମିକ ସ୍ତରର କବିତାରେ କେତେକାଂଶରେ ବାକ୍‌ପଲ୍ଲବନ ପରିଲକ୍ଷିତ, ମାତ୍ର ଏ ତ୍ରୁଟିକୁ କବି କ୍ରମଶଃ ପରିହାର କରିଅଛନ୍ତି । ପରିଣତ ବୟସର ଲେଖାରେ କବି ମିତବାକ୍ । ବର୍ଣ୍ଣନା ବାହୁଲ୍ୟ ଓ କଥକତାର ସେ ହୋଇ ଉଠିଛନ୍ତି ଏକାନ୍ତ ବିରୋଧୀ । 'ଅଶ୍ରୁ' ପର୍ଯ୍ୟାୟର କବିତାଗୁଡ଼ିକ ଏହି ପରୀକ୍ଷାର ସାର୍ଥକ ନିଦର୍ଶନ । ସଂସ୍କୃତ କବିମାନେ ଗୋଟିଏ ଗୋଟିଏ ଶ୍ଳୋକ ମଧ୍ୟରେ ମହାକାବ୍ୟର ଭାବପର୍ଯ୍ୟନ୍ତ ଫୁଟାଇ ଦେଇ ପାରୁଥିଲେ । କବିଙ୍କର କ୍ଷୁଦ୍ରାତିକ୍ଷୁଦ୍ର କବିତାଗୁଡ଼ିକରେ ଏହି ପରମ୍ପରାର ବିକାଶ ଦେଖିବାକୁ ମିଳେ । ଚମତ୍କାରିତା ଓ ନାଟକୀୟତା କବିଙ୍କ ଭାଷାର ବିଶେଷ ଲକ୍ଷଣ । ସହଜ ଭାଷା ଲେଖିବାକୁ ବସି କବି ନିଜର ବିଶେଷତ୍ୱ ହରାଇ ନାହାନ୍ତି । ଅତି ସହଜ ଓ ସାଧାରଣ ଭାଷାରେ ରଚିତ କବିତା ମଧ୍ୟ ଏଥିଲାଗି ବିଶେଷ ଆକର୍ଷଣୀୟ ହୋଇଥାଏ । କବିତାରେ ଯେଉଁଠି ବିଲକ୍ଷଣ ସୌନ୍ଦର୍ଯ୍ୟ ସୃଷ୍ଟିରେ କବି ପ୍ରୟାସୀ ସେଠାରେ ଭାଷାଶୈଳୀ ଆତ୍ମକେନ୍ଦ୍ରିକ ନ ହୋଇ ନିରାସକ୍ତ । ଶ୍ରୁତି ମାଧୁର୍ଯ୍ୟ ଲାଗି ଯତି, ଯମକ ଅନୁରୋଧରେ କବି ପ୍ରୟାସନିଷ୍ଠ ଭାବରେ ସଂସ୍କୃତର ଲଳିତ ଓ ସୁଶ୍ରାବ୍ୟ ଶବ୍ଦ ପୁଞ୍ଜି ବ୍ୟବହାର କରି ଅଛନ୍ତି । ବିଶେଷତଃ 'କଳକଲ୍ଲୋଳ' ପର୍ଯ୍ୟାୟର କବିତା ଗୁଡ଼ିକର ଭାଷା ବହୁ ସ୍ଥାନରେ ଅସ୍ୱାଭାବିକ । ଏଠାରେ କୃତ୍ରିମ ଶବ୍ଦ ଚୟନ ଓ ବିନ୍ୟାସର ପ୍ରୟାସ ସ୍ପଷ୍ଟ ।

ଏହି ସବୁ ବିଦ୍ଧାଭାଷା ରଚନାରେ ଆମର ପୁରାତନ କ୍ଲାସିକ୍ କବିମାନଙ୍କର ପ୍ରଭାବ ଲକ୍ଷ୍ୟ କରାଯାଇ ପାରେ । ମାତ୍ର କବିଙ୍କର ଲୋକମୁଖୀ, ସୃଷ୍ଟିଶୀଳମନ ଗ୍ରାମୀଣ ସମାଜ ସହିତ ସତତ ପ୍ରାଣ ବିନିମୟ କରିବାକୁ ଚାହିଁଅଛି । କର୍ଣ୍ଣରସାୟନ କରିବା ଲାଗି ସେ ନିଜ କବିତାର ଚରଣରେ କନକ ଶୃଙ୍ଖଳ ବାନ୍ଧି ସନ୍ତୁଷ୍ଟ ହୋଇ ନାହାନ୍ତି । ପଲ୍ଲୀ ଜୀବନର ଚିତ୍ର ଦେବା ପାଇଁ କବି ପଲ୍ଲୀର ରସଧାରାରେ ଅବଗାହନ କରିଛନ୍ତି । ତାଙ୍କ ଭାଷାରେ ଏକ ନୂତନ ସୌନ୍ଦର୍ଯ୍ୟର ଜଗତ ଉଦ୍‌ଭାସିତ ହୋଇଛି । ସବୁ କିଛି ସ୍ୱାଭାବିକ, ସହଜ ଓ ସ୍ୱତଃସ୍ଫୂର୍ତ୍ତି । ଭାଷା ପୁରାଣ ପରି ପ୍ରାଚୀନ ଓ ଜୀବନଭଳି ଚିର ନବୀନ । ଏଠାରେ ସୌନ୍ଦର୍ଯ୍ୟ ସ୍ୱତଃ ପରିସ୍ଫୁଟ ।

କବିତାରେ କଳ୍ପନା ଓ ସୌନ୍ଦର୍ଯ୍ୟର ପ୍ରାଚୁର୍ଯ୍ୟ ସତ୍ତ୍ୱେ ଭାଷାର ସ୍ୱାଭାବିକ ଗତି କେଉଁଠାରେ ଶିଥିଳ ହୋଇନାହିଁ । କବିତାଗୁଡ଼ିକ ଯେପରିକି ପୁରାଣ ଭାଷାରେ ଲିଖିତ । ଯଥାର୍ଥରେ ଏହାହିଁ କବିତାର ଭାଷା । ବିଜ୍ଞାନ ଯେପରି ଗଣିତ ଭାଷାରେ ପ୍ରକାଶିତ ହୁଏ, ଯଥାର୍ଥ କବିତା ସେହିପରି ପୁରାଣ ଭାଷାରେ ହିଁ ପ୍ରକାଶିତ ହୋଇଥାଏ । ପୁରାଣରେ ରୂପକ, ପୁରାଣରେ ଆଖ୍ୟାୟିକା, ପୁରାଣରେ ଆଶୀର୍ବଚନ, ପୌରାଣିକ ଜଗତର କୌତୂହଳ

ପ୍ରବଣତା ଓ ଆନନ୍ଦ ଉଚ୍ଛଳ ଆତ୍ମାର ମୁକ୍ତପକ୍ଷ କ୍ରୀଡ଼ା, ସବୁକିଛି ଏହି ଭାଷା ଭିତରେ ଉପଲବ୍ଧ । କେଉଁ ସୁଦୂର ଅତୀତରେ ଏହି ଭାବକଳ୍ପମୟ ଭାଷାବନ୍ଧର ଜନ୍ମ । ମାତ୍ର ତାହାର ଉଜ୍ଜ୍ୱଳତା, ଦୀପ୍ତି ଓ ସୁରଭି ସମୟର ଦୀର୍ଘପଥ ଲଂଘନ କରି ମୁକ୍ତ ପକ୍ଷରେ ସଞ୍ଚରଣ କରି ଦୂର ଭବିଷ୍ୟତର ସଙ୍କେତ ଦେଇଯାଏ ।

ଭାଷାର ବୈଚିତ୍ର୍ୟରୁ ହିଁ କବିଙ୍କ ମନର ବୈଚିତ୍ର୍ୟ ଗମ୍ଭୀରତା, ଭାବପ୍ରବଣତାର ବହୁ ସୂଚନା ମିଳିଥାଏ । ଅନେକ ସମାଲୋଚକ କାବ୍ୟିକ ମାନସ (Poetic mind)ର ଦୁଇଟି ରୂପାନ୍ତର ଲକ୍ଷ୍ୟ କରିଥାଆନ୍ତି । ଗୋଟିଏ ଶୁଦ୍ଧ, ପବିତ୍ର, ସଚେତନ, ନିରାସକ୍ତ ଓ ନିର୍ବିକଳ୍ପ ଚେତନା ରାଜ୍ୟରେ ସଞ୍ଚରଣଶୀଳ ମନ; ଅନ୍ୟଟି ଅନୁରଞ୍ଜିତ, ଭାବପ୍ରବଣ, ବିକ୍ଷୁବ୍ଧ, ଦ୍ୱନ୍ଦ୍ୱଜଡ଼ିତ, ସଂଶୟାଚ୍ଛନ୍ନ, ବିସ୍ମୃତ ରାଜ୍ୟରେ, ଚେତନାର ପରପାରିରେ ଉଡ଼ନ୍ତପକ୍ଷୀରେ ଭ୍ରାମ୍ୟମାଣ ମନ । ମାତ୍ର ମନର ଏଇ ଦୁଇ ରୂପାନ୍ତର ଜୀବନ ଭଳି କବିତାରେ ନିର୍ବିଶେଷରୂପେ ଲକ୍ଷ୍ୟ କରାଯାଇ ପାରେନାହିଁ । ଦୁଇଟି ସମାନ୍ତରାଳରେଖା ପରିବର୍ତ୍ତେ ଏଇ ଦୁଇ ଧାରା ଯେପରି କି ଔର୍ଯ୍ୟିକ ଗତିପଥରେ ଅବସ୍ଥାନ୍ତରରେ ପରସ୍ପରକୁ ସ୍ପର୍ଶ କରି ଯାଇଥାଆନ୍ତି । କୁନ୍ତଳକୁମାରୀଙ୍କର କବିମାନସର ଏହି ଦିଗଟି ବିଶେଷ ଲକ୍ଷଣୀୟ । ଯେଉଁଠି ଦାର୍ଶନିକର ନିରାସକ୍ତ, ଧ୍ୟାନ ଗମ୍ଭୀର ଅବିଚଳିତ ଚରିତ୍ର ପରିଚୟ, ସେଠିମଧ୍ୟ ଭାବପ୍ରବଣତା ସମ୍ପୂର୍ଣ୍ଣ ଲୁଚି ଯାଇପାରେ ନାହିଁ । ତାଙ୍କର ଅନୁଭବ ଗମ୍ଭୀର ଓ ଆବେଗ-ପୂର୍ଣ୍ଣ ଅଶ୍ରୁସ୍ନାନ ଚକ୍ଷୁରେ ବିଦାୟ ବା ପୁଲକିତମ୍ନାନ ଗାତରେ ମିଳନ ତାଙ୍କ କବିତାର ଧର୍ମ ନୁହେଁ । ସେ ନିର୍ବିକଳ୍ପ ଯୋଗୀ ନୁହନ୍ତି । ଘୃଣା, ପ୍ରେମ, ଆସକ୍ତି, ଅନୁକମ୍ପା ଆଦି ସମସ୍ତ ମାନବୀୟ ବୃତ୍ତିର ସ୍ୱତଃସ୍ଫୂର୍ତ୍ତି ତାଙ୍କଠାରେ ନିହିତ । ଜୀବନର ସୁସ୍ଥ ଓ ସ୍ୱଚ୍ଛ ପ୍ରକାଶରେ ମାନବ ଯେଉଁଠି ତାର ଅତି ଆଦିମ ପ୍ରବୃତ୍ତି ସକଳର ସାର୍ଥକତା ଅନୁଭବ କରେ, କବି ସେଠାରୁ ଭୀରୁ ଭାବରେ ପଳାୟନ କରିବାକୁ ଚାହିଁନାହାନ୍ତି । ଅନୁଭୂତ ରାଜ୍ୟରେ ପ୍ରବେଶ ମନୁଷ୍ୟର ଏକ ନିର୍ବିଶେଷ ଅଧିକାର । ବସ୍ତୁତଃ ଆମେ ଯେତେବେଳେ ଭାବିବସୁ, ସେତେବେଳେ ଜ୍ଞାନର ଆଲୋକରେ ଆମ ହୃଦୟ ଆଲୋକିତ ହୁଏ । ମାତ୍ର ସବୁବେଳେ ଆମର କ୍ରିୟା ସକଳ ଏହି ଆଲୋକଠାରୁ ପ୍ରେରଣା ଲାଭ କରେ ନାହିଁ । ଅନେକ ସମୟରେ ଆମେ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହେଲାବେଳେ ଗମ୍ଭୀରଭାବେ ଚିନ୍ତା କରି ପାରୁନାହୁଁ, ଚିନ୍ତାକରି ବସିଲା ବେଳକୁ ନିଷ୍କ୍ରିୟ ହୋଇ ପଡ଼ୁଥାଉଁ । ଏହି ନିଷ୍କ୍ରିୟତା ବିରୁଦ୍ଧରେ କବିଙ୍କର ଭାବପ୍ରବଣ କର୍ମଚଞ୍ଚଳତା ବିଦ୍ରୋହ ଘୋଷଣା କରିଅଛି । ତାଙ୍କ କବିତାରେ ଅଳ୍ପଜ୍ଞାନରେ ଅଧିକ ଅନୁଭବର ସମାବେଶ ଘଟିଅଛି । ଶିଶୁ ଓ ସାଧାରଣ ପଲ୍ଲୀ ରମଣୀଙ୍କ ଚିନ୍ତା ସହିତ କବିଙ୍କର ଆତ୍ମୀୟତାର ଏହି ଦିଗଟି ଲକ୍ଷ୍ୟ କରାଯାଇପାରେ । (ଜଣେ ପାଶ୍ଚାତ୍ୟ ସମାଲୋଚକଙ୍କ ମତରେ ଅଳ୍ପ ସଭ୍ୟ, ଅଳ୍ପ ଆଲୋକିତ, ମାତ୍ର ଜୀବନରସରେ ପୁଷ୍ଟ ଓ ପ୍ରାଣ ପ୍ରାଚୁର୍ଯ୍ୟମୟ ପୁରାତନ ସମାଜ ଓ ଜୀବନ-ଧାରା କବିତାର ଅଧିକ ଅନୁକୂଳ ।) ଯେଉଁ ମନରେ ପ୍ରାଣର ପ୍ରାଚୁର୍ଯ୍ୟ, ଜୀବନରସର

ସମ୍ପୃକ୍ତି ଯେତେ ବେଶୀ, ତାହା ତଥ୍ୟ, ଯୁକ୍ତି ଓ ଜ୍ଞାନଭାରରୁ ସେତିକି ମୁକ୍ତ । ସେହିମନ ସେତିକି ଅଧିକ ସୃଷ୍ଟିକ୍ଷମ ଓ କବିତାର ଅନୁକୂଳ । କବି କୁଞ୍ଜବିହାରୀଙ୍କ ମାନସିକ ଜଗତର ଏହି ଦିଗଟି ବିଶେଷ ଲକ୍ଷଣୀୟ । ଏହା ସଞ୍ଚରଣଶୀଳ, ବିସ୍ତରଣଶୀଳ । ସମସ୍ତ ଆଲୋକ ପଥ ରୁଦ୍ଧ କରି ଏହା ଅବଚେତନର ଅନ୍ଧକାରରେ ରୁଦ୍ଧ ହେବାକୁ ଚାହେଁନା । ପ୍ରବୃଦ୍ଧ ମାନସିକତାର ଗୁରୁଭାରରେ ମେଲାପି କଥକତା ଆତ୍ମଗୋପନ କରେ ନାହିଁ । ଏହା ବିନ୍ଦୁ ନୂତନ ପରିବେଶ, ବ୍ୟକ୍ତି ଓ ସ୍ଥିତି ସହିତ ଭାବ ଜନ୍ମାଇବାକୁ ଚାହେଁ । ସେହି ଭାବ ବୈଚିତ୍ର୍ୟରେ ସମସ୍ତଙ୍କୁ ଅନୁଭାବିତ କରିବାକୁ ଚାହେଁ ।

ଆଧୁନିକ ଯୁଗର ଅବସନ୍ନ, ସଦା ବିକ୍ଷୁବ୍ଧ ଓ ରୁଗ୍ଣମନ-ନାଗରିକ ପକ୍ଷରେ କୁଞ୍ଜବିହାରୀଙ୍କ କାବ୍ୟଜଗତ ହେଉଛି ଏକ ସ୍ୱାସ୍ଥ୍ୟପ୍ରଦ ମରୁଉଦ୍ୟାନ । ଏଥିରେ ଆଧୁନିକତା ଓ କ୍ଷଣିକତା ପରିବର୍ତ୍ତେ ଶାଶ୍ୱତଭାବ ଓ ସାମଗ୍ରିକ ଜୀବନବୋଧ ପ୍ରତିଷ୍ଠିତ । ଗଭୀର ଅଶାନ୍ତି ଓ ଅପୂର୍ଣ୍ଣତା ମଧ୍ୟରେ ଏହା ସ୍ଫୂର୍ତ୍ତି, ଶାନ୍ତି ଓ ପୂର୍ଣ୍ଣତାର ସ୍ୱାଦ ଆଣିଦିଏ । ଏହା ଆମର ଚିତ୍ତବୃତ୍ତିକୁ ନବ ନବ ବିକାଶର ସମ୍ଭାବନା ଓ ନବ ନବ ପରୀକ୍ଷାର କୌତୂହଳ ପଥରେ ଚିର ଜାଗ୍ରତ କରାଏ । ବହୁଭାବ ଓ ଅନୁଭବ ଧାରାର ବିଚିତ୍ର ସମନ୍ୱୟ ସୂତ୍ରରେ ଏଠାରେ ଏକ ମହାନ୍ ତୀର୍ଥର ସୃଷ୍ଟି । ଏହି ତୀର୍ଥୋଦକ ଜୀବନର ସଂଗ୍ରାମ ମୁଖରେ ଅବସନ୍ନ ଓ କ୍ଲାନ୍ତ ପ୍ରାଣର ତୃଷ୍ଣା ନିବାରଣରେ ସମର୍ଥ । ଏହା ଏକାଧାରରେ ଆମର ନିକଟରୁ ନିକଟତର ଓ ଦୂରରୁ ଦୂରତର ଜଗତକୁ ଦେଖିବାରେ ସହାୟକ । ନିଜକୁ ସୁଖ ପାଇବା ସଙ୍ଗେ ସଙ୍ଗେ ଜଗତକୁ ସୁଖ ପାଇବା ପାଇଁ ଏହା ଅନୁପ୍ରେରିତ କରାଏ । ଯୁଗଯାତ୍ରୀର ଭୂମିକାରେ—

"ଏ ଯୁଗର ଯାତ୍ରୀ/ଚାହେଁ ଦୁଃଖ ଚାହେଁ ମୁଁ ଅଶାନ୍ତି
ନରକର କ୍ଲେଶ ଶୋକ ହୀନ ଅପମାନ/ନେବି ବକ୍ଷ ପାତି ।
ଚାହେଁ ମୁଁ ନିରାଶା/ସର୍ବ ବୋଧ ସର୍ବହରା ଭାଷା ।"

✳ **ନରେନ୍ଦ୍ରନାଥ ମିଶ୍ର**
୧୮, ରତନପଲ୍ଲୀ
ଶାନ୍ତିନିକେତନ—୭୩୧୨୩୫
ପଶ୍ଚିମବଙ୍ଗ

# ॥ କବି କୁଞ୍ଜବିହାରୀ : ଏକ ଅନୁଧ୍ୟାନ ॥

**ଡକ୍ଟର ନିତ୍ୟାନନ୍ଦ ଶତପଥୀ**

ଆଧୁନିକ ଓଡ଼ିଆ କବିତାର ପ୍ରତିବାଦୀ ଆଭିମୁଖ୍ୟଠାରୁ ଯଥାସମ୍ଭବ ଦୂରତା ରକ୍ଷାକରି ପ୍ରାୟ ଚାରିଦଶକବ୍ୟାପୀ ନିରୁତା କାବ୍ୟସାଧନାରେ କବି କୁଞ୍ଜବିହାରୀଙ୍କ କବିତା ଯଥାର୍ଥରେ ଜାତୀୟତା, ପ୍ରକୃତିପ୍ରାଣତା ଓ ମାନବିକତାବୋଧର ଏକ ଅବ୍ୟାହତି ନିଜସ୍ୱ ଧାରାରେ ଗରିମାବନ୍ତ । ପ୍ରାୟ ୧୯୩୨-୩୩ଠାରୁ ୧୯୭୪-୭୫ ପର୍ଯ୍ୟନ୍ତ ଲେଖକ କାବ୍ୟଚେତନାର ବିଭିନ୍ନ ବିଭାବକୁ ସ୍ପର୍ଶକରି ଲେଖନୀଚାଳନା କରିଆସିଛନ୍ତି; କେବେ କ୍ଲାନ୍ତ ଅନୁଭବ କରିନାହାନ୍ତି । ସେ ସ୍ପଷ୍ଟତଃ କହିଛନ୍ତି—ଏଇ କବିତାରଚନା ସହିତ ତାଙ୍କର ପ୍ରଣୟ ଅତି ନିବିଡ ଓ ନିଷ୍ଠିକ୍ତ । ବୟସର ବୃଦ୍ଧି ସହିତ ତାଙ୍କ କାବ୍ୟଶିଳ୍ପର ମାନ, ଶିଳ୍ପୀର ଧର୍ମ ଓ ବିଶ୍ୱାସ ବଦଳିଥିଲେ ମଧ୍ୟ ତାଙ୍କ କବିତା ଅଯଥା ବୁଦ୍ଧିବାଦ ଦ୍ୱାରା ଆକ୍ରାନ୍ତ ହୋଇନାହିଁ; ମନ ଓ ହୃଦୟର ଅନୁଭୂତି ତଥା ଆବେଗ ହିଁ ତାଙ୍କ କାବ୍ୟରଚନାର ମୁଖ୍ୟ ରହସ୍ୟ । ତେଣୁ ନିଜସ୍ୱ ଶୈଳୀରେ ଏହା ସମୃଦ୍ଧ । ଏକାନ୍ତ ସ୍ୱକୀୟ ଭାବାବେଗରେ ଏହା ଉଚ୍ଛ୍ୱସିତ । ଏହାର ମୁଖ୍ୟ କାରଣ ସ୍ୱରୂପ ତାଙ୍କ କାବ୍ୟଧାରାରେ ଲୋକସାହିତ୍ୟ ଓ ସଂସ୍କୃତ ସାହିତ୍ୟର ପ୍ରଭାବ ଲକ୍ଷ୍ୟ କରାଯିବ । ଗୋଟିଏ ପଟେ ମହାନ୍ ପ୍ରାଚ୍ୟ ସଂସ୍କୃତି, ସଂସ୍କୃତ ସାହିତ୍ୟର ରୁଚି ଓ ପରମ୍ପରା; ଅପରପକ୍ଷରେ ଅତୀତ ଓଡ଼ିଶାର ଗ୍ରାମ୍ୟଜୀବନ ଭିତରେ ଇତସ୍ତତଃ ବିଚ୍ଛୁରିତ ଅନାବିଳ ଅସଂଖ୍ୟ ପଲ୍ଲୀକବିତା—ଯାହା ଓଡ଼ିଆ ପ୍ରାଣର ମୁଖର ବାଙ୍ମୟ ଆତ୍ମପ୍ରକାଶ—ଏଇ ଦୁଇଟିରୁ ସେ ଆହରଣ କରିଛନ୍ତି ଅଜସ୍ର ସମ୍ପଦ ଓ ତଦନୁଯାୟୀ ତାଙ୍କ ଶୈଳୀ ନିୟନ୍ତ୍ରିତ ମଧ୍ୟ । ଏହି ଅନୁକ୍ରମରେ ତେଣୁ ବିଦେଶୀ ଭାବଧାରା ଓ ଆଙ୍ଗିକ ଚେତନାଦ୍ୱାରା ତାଙ୍କ କବିତା ସଂକମିତ ନହେବା ଅତ୍ୟନ୍ତ ସ୍ୱାଭାବିକ । କବି ନିଜ ସମ୍ପର୍କରେ ସ୍ପଷ୍ଟ କହିଛନ୍ତି—"ପ୍ରଗତି ବା ପରମ୍ପରା, କେଉଁଟି ମୋର ଅବହେଳାର ବସ୍ତୁ ହୋଇନାହିଁ । ନୂତନକୁ ଭଲପାଏ; କିନ୍ତୁ ତା' ନିକଟରେ କେବେ ଆତ୍ମସମର୍ପଣ କରିନାହିଁ । ସେହିପରି ପ୍ରାଚୀନ କେବେ ମୋର ଆରାଧ୍ୟ ହୋଇନାହିଁ, ଯଦିବା ନମସ୍ୟ । ତେଣୁ ନିଭିବ ନିଚିନ୍ତ କେବଳ ନୂତନତାର ମୋହରେ ଯେ କୌଣସି ଅପାଙ୍କ୍ତେୟ ଶବ୍ଦ ବା ଦୁର୍ବୋଧ ଚିତ୍ରକଳ୍ପ ବ୍ୟବହାର କରିବାର ସାହସ କରିନାହିଁ" ।୧। ଏହି କାବ୍ୟ-ମନନ ତେଣୁ ଦୀର୍ଘ ଚାଳିଶ ବର୍ଷର କାବ୍ୟ କବିତା ରଚନା ମଧ୍ୟରେ ଯେ ବାହାରର ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ ରହିପାରିଛି—ଏହା ବାସ୍ତବରେ ପ୍ରଣିଧାନଯୋଗ୍ୟ । ତାଙ୍କ

---

୧ । 'କୁଞ୍ଜବିହାରୀ ସଞ୍ଚୟନ'—୧ମ ଭାଗ, ପ୍ରଥମ ପ୍ରକାଶ, ଜୁଲାଇ ୧୯୬୭-ମୁଖବନ୍ଧ ପୃ-ଖ ।

କବିତାରେ ତେଣୁ ବିଦଗ୍ଧ ଭାବଚେତନା ସହିତ ଗଣଜୀବନର ଘନିଷ୍ଠ ବଡ ଅସଂଖ୍ୟ ଶବ୍ଦର କଳାଗତ ଯୋଗାଯୋଗ ସ୍ଥାପିତ ହୋଇପାରିଛି । ନିକଟତମ ଅନୁଭୂତି ଯେତେ ତୁଚ୍ଛ ବା ଅପାଙ୍‌କ୍ତେୟ ହେଲେ ବି ତାକୁ କବିସୁଲଭ ଦରଦ, ସହାନୁଭୂତି ଓ ଆତ୍ମ-ମଗ୍ନତାରେ ତାଙ୍କ କବିତାର ଉତ୍ସଭାବେ ସାଉଣ୍ଟି ନେଇଛନ୍ତି । ସେଠି ତେଣୁ ବିଶ୍ୱଜନୀନ ସ୍ରୋତସମ୍ଭାରରେ ଭାସିଯିବାର ପ୍ରଲୋଭନ ନାହିଁ ବା ଅତ୍ୟାଧୁନିକ କାବ୍ୟଚମତ୍କାର ଦୃଷ୍ଟିରୁ ସେହି ଉତ୍ଥିତ ଭାବକୁ ବାଛିବିଗିଡ଼ି କରିବାର ପ୍ରଶ୍ନ ଉଠିନାହିଁ । ଏହି କ୍ରମରେ ତାଙ୍କ କବିତାରେ ମନନଶୀଳତା ଅପେକ୍ଷା ସମ୍ବେଦନାର ସ୍ୱର ଉଚ୍ଚତର ବୋଲି ସହଜରେ କୁହାଯାଇପାରିବ । ଅନୁଭୂତି ହିଁ କବି କୁଞ୍ଜବିହାରୀଙ୍କ କାବ୍ୟର ମୁଖ୍ୟ ସମ୍ପଦ ବା ମୂଳଉତ୍ସ—ଏଥିରେ ମତଭେଦର ପ୍ରଶ୍ନ ନାହିଁ ।

ଏହି ପରିପ୍ରେକ୍ଷୀରେ ତାଙ୍କ ପ୍ରଥମ ମାନସସୃଷ୍ଟି 'ପ୍ରଭାତୀ' (୧୯୪୩)ର ଶତାଧିକ ସନେଟ୍ ଉପରେ ଦୃଷ୍ଟିପାତ କରାଯାଇପାରେ । ଏହି ସନେଟ୍ ସଙ୍କଳନର ମୁଖବନ୍ଧରେ 'ସହକାର' ସମ୍ପାଦକ ଶ୍ରୀଯୁକ୍ତ ବାଳକୃଷ୍ଣ କର ଯେଉଁ ମତାମତ ଦେଇଛନ୍ତି ତାହା ଉଲ୍ଲେଖଯୋଗ୍ୟ : "କବିତାର ବିଷୟବସ୍ତୁ କଳ୍ପନାର ବିସ୍ତୀର୍ଣ୍ଣ କ୍ଷେତ୍ରରୁ ସଂଗୃହୀତ ହୋଇ-ଥିବା ଯୋଗୁଁ ସକଳଶ୍ରେଣୀର ପାଠକପାଠିକାମାନଙ୍କର ସମଧିକ ଚିତ୍ତାକର୍ଷଣରେ ଏହା ସାହାଯ୍ୟ କରିବାର ଆଶା କରାଯାଏ । ଏଥିରେ ତୂର୍ଯ୍ୟଭେରୀର ଉନ୍ମାଦନା ନାହିଁ, ଅଛି ଶଙ୍ଖର ଶାନ୍ତିମନ୍ତ୍ର; ପାଠକପ୍ରାଣରେ ଭୟ-ବିସ୍ମୟର ରୋମାଞ୍ଚ ଜନ୍ମାଏ ନାହିଁ, ଜନ୍ମାଏ ଭକ୍ତି ପ୍ରୀତିର ପୁଲକ ।" ୬ । ଶ୍ରୀଯୁକ୍ତ କରଙ୍କ ଏହି ମନ୍ତବ୍ୟ ଅନୁସାରେ କବି କୁଞ୍ଜବିହାରୀଙ୍କ ଆଦ୍ୟ କାବ୍ୟଚେତନାର ବିପ୍ଳବରହିତ ପାରମ୍ପରିକ ସ୍ୱର ସ୍ପଷ୍ଟ । କାରଣ ଶ୍ରୀଯୁକ୍ତ କର ତାଙ୍କ ମନ୍ତବ୍ୟରେ ଯେଉଁ 'ତୂର୍ଯ୍ୟଭେରୀର ଉନ୍ମାଦନା' ବା 'ଭୟବିସ୍ମୟର ରୋମାଞ୍ଚ' କଥା ଉଲ୍ଲେଖ କରିଛନ୍ତି, ତାହା ଯେ ତତ୍କାଳୀନ ମାର୍କସୀୟ ବୈପ୍ଳବିକ କାବ୍ୟସ୍ୱର ପ୍ରତି ଅଭିବ୍ୟଞ୍ଜିତ, ଏଥିରେ ସନ୍ଦେହ ନାହିଁ । କବି କୁଞ୍ଜବିହାରୀ ତାଙ୍କ ଆଦ୍ୟରଚନାରେ ଏହି ବୈପ୍ଳବିକ ଚେତନା ବା ସାମ୍ୟବାଦୀ କାବ୍ୟଭାବନାଠାରୁ ଦୂରତା ରକ୍ଷାକରିଛନ୍ତି । ତାଙ୍କ ପ୍ରାରମ୍ଭିକ କାବ୍ୟସ୍ୱରରେ ଭଗବତ୍ ଅନୁଚିନ୍ତା, ସ୍ୱପ୍ନବିଳାସ ଓ ରୋମାଣ୍ଟିକ୍ ଚେତନା, ପ୍ରକୃତି ଉପାସନା, ଦରଦୀ ମାନବବାଦୀ ସ୍ୱର ତଥା ସ୍ୱଦେଶପ୍ରୀତିର ମାତ୍ରା ଅଧିକ । ଭକ୍ତକବି ମଧୁସୂଦନଙ୍କ ପରି ପ୍ରକୃତିର ବିପୁଳ ବୈଭବ ମଧ୍ୟରେ କବି ବେଳେ ବେଳେ ଏକ ଅଦୃଶ୍ୟ ହାତର ଛନ୍ଦ କରାମତି ଉପଲବ୍ଧି କରିଛନ୍ତି ଏବଂ ଏକ ଶିଶୁସୁଲଭ ଭୀତବିହ୍ୱଳତାରେ ତା' ପାଖରେ ଆତ୍ମସମର୍ପଣ କରିଛନ୍ତି । ଏହି ଭାବନାରୁ ବେଳେବେଳେ

୬ । ୧୬୬ଟି ସନେଟ୍ ସମ୍ବଳିତ 'ପ୍ରଭାତୀ'ର ୧ମ ସଂସ୍କରଣ (୧୯୪୩)ର ମୁଖବନ୍ଧରେ ଶ୍ରୀଯୁକ୍ତ ବାଳକୃଷ୍ଣ କର; ପରେ 'କୁଞ୍ଜବିହାରୀ ସଞ୍ଚୟନ' (୩ୟ ଭାଗ)ରେ ମାତ୍ର ୭୯ଟି ସନେଟ୍‌କୁ ସ୍ଥାନ ଦିଆଯାଇଛି ।

ସେ ରହସ୍ୟବାଦୀ ବି ହୋଇଉଠିଛନ୍ତି । କିନ୍ତୁ ପରେ ପରେ ପ୍ରକୃତିର ବିପୁଳ ସୌନ୍ଦର୍ଯ୍ୟକୁ ସମଗ୍ର ଇନ୍ଦ୍ରିୟ ଦେଇ ଉପଭୋଗ କରିବାକୁ ଆଗ୍ରହ ପ୍ରକାଶ କରିଛନ୍ତି । ୩ । ଏଇ ଅନୁଭବରୁ ତାଙ୍କ କବିତାରେ ପ୍ରକୃତି ପ୍ରତି ଅନୁରକ୍ତି ଓ ତଦୁର୍ଦ୍ଧରୁ ମଣିଷ ପ୍ରତି ଗଭୀର ମାନବିକତାର ସ୍ୱର ଉଚ୍ଚକିତ ହୋଇଅଛି । ସମସାମୟିକ ଆଧୁନିକ ଓଡ଼ିଆ କବିତା ପ୍ରକୃତି ଓ ପରମେଶ୍ୱରଙ୍କଠାରୁ ଦୂରତାରକ୍ଷାରେ ବଳିଷ୍ଠ ଆଗ୍ରହ ପ୍ରକାଶ କରୁଥିଲାବେଳେ ଶ୍ରୀ ଦାଶଙ୍କ ସ୍ୱରରେ ଏହା ପ୍ରତି ପ୍ରବଳ ସମ୍ମୋହ ପୁଣି ବେଳେବେଳେ ନୂତନ କାବ୍ୟ-ଚେତନା ପ୍ରତି ଆନ୍ତରିକ ନିଷ୍ଠା ତାଙ୍କୁ ଯଥାର୍ଥରେ ପାରମ୍ପରିକ ଓ ଅଗ୍ରଗାମୀ କାବ୍ୟ-ଚିନ୍ତାର ମଧ୍ୟବର୍ତ୍ତୀ ସ୍ଥାନରେ ଏକ ସଂଯୋଗସେତୁ ଭାବରେ ଠିଆ କରିଛି । ଏ ସେତୁ ଏତେ ଦୃଢ଼ ଯେ ତାହା କାହାର ଆଘାତ ବା ବିଦ୍ରୂପରେ ଟଳିଯିବାର ନୁହେଁ । 'ପ୍ରଭାତୀ'ର ସନେଟ୍‌ଗୁଡ଼ିକର କାବ୍ୟସ୍ୱରରେ ତେଣୁ ଅତି ନିଭୃତ ଲଭିବେ ତାଙ୍କ ପରବର୍ତ୍ତୀ କାବ୍ୟବିଳାସ ଓ କାବ୍ୟ ପ୍ରକ୍ରିୟାର ମୌଳିକ ଉପାଦାନଗୁଡ଼ିକୁ ସନ୍ଧାନ କରିହୋଇ ପାରିବ । ଭାବନାର ସ୍ୱଚ୍ଛତା ଓ ସହଜତାରେ ଏହି ସନେଟ୍‌ଗୁଡ଼ିକର ଆତ୍ମା ଓ ଅଙ୍ଗ ପରିପୁଷ୍ଟ । ଶ୍ରୀ ଚନ୍ଦ୍ରଶେଖର ମିଶ୍ରଙ୍କ ମନ୍ତବ୍ୟ ଅନୁସାରେ "ତାଙ୍କ ଭାବନାତ୍ମକ କବିତା-ଗୁଡ଼ିକରେ ଉଚ୍ଛୃଙ୍ଖଳତା ବା ବନ୍ଧନହୀନ ଉନ୍ମାଦନା ନାହିଁ, ଭାଷା ପ୍ରାଞ୍ଜଳ ଓ କବିତ୍ୱପୂର୍ଣ୍ଣ, ମାତ୍ର କେତେକ ସ୍ଥାନରେ ଟାଣ ଓ ସ୍ରୋତସ୍ୱିତାର ଅଭାବ ପରିଲକ୍ଷିତ ହୁଏ । କବି ହୁଏତ ନିଜେ ସ୍ପନ୍ଦିତ ହୋଇଛନ୍ତି; ମାତ୍ର ପାଠକ ପ୍ରାଣରେ ସେଇ ସ୍ପନ୍ଦନ ସୃଷ୍ଟି କରି ପାରିଥିଲେ ଯଶସ୍ୱୀ ହୋଇଥାନ୍ତେ । ସମଗ୍ର କବିତା ମଧ୍ୟରେ ଏକପ୍ରକାର ଚିନ୍ତାର ଧାରା ଚାଲିଥିବାର ଦେଖାଗଲା । ସେ ହେଉଚି କବିଙ୍କର ଅସ୍ପଷ୍ଟ ନିରାଶାବାଦ କିମ୍ବା କୌଣସି ପ୍ରାକୃତିକ ଶକ୍ତିଠାରୁ ଉତ୍ସାହ ବା ଆନନ୍ଦ ପ୍ରାର୍ଥନା । ଅଧିକାଂଶ ଭାବାତ୍ମକ ବା ବର୍ଣ୍ଣନାତ୍ମକ କବିତାରେ ନୀତିଶିକ୍ଷାର ଏକ ପ୍ରଚ୍ଛନ୍ନ ସ୍ରୋତ ପ୍ରବାହିତ ହୋଇଚାଲିଚି ଏବଂ ସେହି ନୀତି-ଶିକ୍ଷାର ମୋହ କବିତାର ସ୍ୱଚ୍ଛଳ (Spontaneity) ବିକାଶରେ କିଛି ବାଧା ଦେଇଥିଲା ପରି ମନେହୁଏ । ୪ । ସମଗ୍ର ପ୍ରକୃତିକୁ ନୀତି ଓ ରୂପର ଉତ୍ସଭାବେ ଅନୁଭବ କରିଥିବା ଏହି କବି ଏହାଠାରୁ ବିଚ୍ଛିନ୍ନ ହୋଇ ଏକ ଭିନ୍ନ ଆଭିମୁଖ୍ୟ ପ୍ରକାଶ କରିବା ଅସମ୍ଭବ । ତାଙ୍କର ଆଦ୍ୟ କାବ୍ୟଜୀବନର ଅର୍ଘ୍ୟରୂପେ ପ୍ରକାଶିତ 'ଜୋହ୍ନା', 'ବିଶ୍ୱକବି' ଏହାର ପ୍ରମାଣ । ୫ । ପୁଣି ଏଇ ପ୍ରକୃତି ସହିତ ସେ କେତେ ଏକାତ୍ମ ଓ ତାଙ୍କ ଚିନ୍ତାରେ ଜୀବନ ସହିତ ରହିଚି କେତେ ସାମଞ୍ଜସ୍ୟ, ତାହା ପରବର୍ତ୍ତୀ ପୃଷ୍ଠାରେ ପ୍ରଦତ୍ତ ପଂକ୍ତିମାନଙ୍କରୁ ସ୍ପଷ୍ଟ ହୁଏ

୩ । 'ବିଶ୍ୱପ୍ରେମ'—'କୁଞ୍ଜବିହାରୀ ସଞ୍ଚୟନ' ୩ୟ ଭାଗ—ପୃ. ୩୦୧ ।
"ମଳୟ ସୁରଭିଶ୍ୱାସେ ତୁମର ହୃଦୟ/ଆଘ୍ରାଣିଛି ବହୁବାର; ତୁମର ପ୍ରଣୟ/ପ୍ରାଣରୂପେ ଦେହେ ଦେହେ ଫୁଟେ ଫୁଲଫଳେ/ତୁମ କୃପାଧାର ବହେ ସରିତେ ସାଗରେ ।"

୪ । 'ପ୍ରଭାତୀ'ର ସମାଲୋଚନା—ସହକାର ୧୪/୨ୟ ସଂଖ୍ୟା ।

୫ । 'ଜୋହ୍ନା—'ସହକାର' ୧୩/୨ୟ ସଂଖ୍ୟା, ମେ ୧୯୪୨ ।
'ବିଶ୍ୱକବି'—'ସହକାର' ୧୩/୪ର୍ଥ ସଂଖ୍ୟା, ଜୁଲାଇ ୧୯୪୨ ।

"ବେଳେବେଳେ ଦଗତଳେ ଜଳାଇ କୁହୁଳି
ଯୋଗୀ ହାସ୍ୟସମ ଚଳ ବାଦଲେ ବିଜୁଳି ।" —'ଦୁର୍ଦ୍ଦିନ ପ୍ରକୃତି'

ମୋର ଯେପରି ମନେହୁଏ ପ୍ରାଚୀନ ମଧ୍ୟଯୁଗୀୟ କବିତାଠାରୁ ଅଧୁନାତନ କବିତା ପର୍ଯ୍ୟନ୍ତ ଚଳବାଦଲ କୋଳରେ ବିଜୁଳିର ନୃତ୍ୟ ପ୍ରତି ଏପରି ବାସ୍ତବବାଦୀ ଚେତନା କୌଣସି କବି ପ୍ରକାଶ କରିନାହାନ୍ତି । ସମସ୍ତଙ୍କ ଆଖିରେ କେବଳ ଏହାର ରୂପବନ୍ତ ରୋମାଣ୍ଟିକ୍ ଚିତ୍ରଟି ହିଁ ଧରା ଦେଇଛି । ପାରମ୍ପରିକ ଉପମାକୁ ପରିହାର କରି ଏପରି ଚିତ୍ର ଦେବାରେ କବି ଦାଶଙ୍କ ଚମତ୍କାର ଏକ ଭିନ୍ନ ଦୃଗ ଅନୁଭବ କରିହୁଏ । ପୁଣି ଜଣେ ରୋମାଣ୍ଟିକ୍ କବି ପରି ସେ ଯେ କେତେ ସ୍ୱପ୍ନପ୍ରବଣ ତାହାର ଚିହ୍ନ ତାଙ୍କ ସନେଟ୍-ଗୁଡ଼ିକରେ ଅତ୍ୟନ୍ତ ସୁଲଭ । ଏଗୁଡ଼ିକ ଏତେ ରୋମାଣ୍ଟିକ୍ ଯେ କାଳିଦାସଙ୍କ ମେଘଦୂତର ମିଳନ ଓ ବିରହଭାବନା ସହିତ ବେଳେବେଳେ ସାମ୍ୟ ସ୍ଥାପନ କରିବସେ ।୭। ପୁଣି ବେଳେବେଳେ ବ୍ୟକ୍ତିଗତ ପ୍ରେମ-ପ୍ରଣୟର ଉଚ୍ଛଳ ସ୍ୱରରେ କେତୋଟି ସନେଟ୍ ଅତ୍ୟନ୍ତ ଆତ୍ମନିଷ୍ଠ । ଆଶା ଓ ନୈରାଶ୍ୟର ସ୍ୱାଭାବିକ ମାନବସୁଲଭ ଚେତନାରେ ବହୁ ସନେଟ୍‌ର ଭାବଧାରା ନିର୍ମିତ । ମୋଟଉପରେ 'ପ୍ରଭାତୀ' ହିଁ କବି କୁନ୍ତଳାକୁମାରୀଙ୍କ ପରବର୍ତ୍ତୀ କାବ୍ୟ-ଚେତନାର ଏକ ନିର୍ଭୁଲ ମାନଚିତ୍ର, ଏଥିରେ ସନ୍ଦେହର ଅବକାଶ ଥାଇ ନ ପାରେ ।

### ଜାତୀୟତାବାଦୀ ସ୍ୱର :

କୁନ୍ତଳକୁମାରୀଙ୍କ କବିତାର ଆଦ୍ୟସ୍ୱର ଜାତୀୟ ଅଭିମାନରେ ଝଙ୍କୃତ । ସତ୍ୟବାଦୀର ଜାତୀୟଚେତନାବୋଧ ସହିତ ଏହି ମର୍ମରେ ତାଙ୍କ ସ୍ୱରର ଆନ୍ତରିକତା ଅନୁଭବ କରିହୁଏ । 'ପ୍ରଭାତୀ' ସନେଟ୍ ସଙ୍କଳନରେ ପ୍ରକାଶିତ 'ଜାତୀୟ ସମ୍ମାନ' ଓ 'ଗୁହାରି' ପରି କେତୋଟି ସ୍ୱଦେଶାନୁରାଗମୂଳକ ସନେଟ୍ ସହିତ ଏ ଦେଶର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସମ୍ପର୍କରେ ରଚିତ କେତୋଟି କବିତାରେ ଶ୍ରଦ୍ଧାନିବେଦନର ସ୍ୱରରୁ ତାଙ୍କ ଉଗ୍ରଜାତୀୟ ଚେତନା ପ୍ରତିଭାତ ହୁଏ । କିନ୍ତୁ ଏହିସବୁ ରଚନାର ବହୁ ପୂର୍ବରୁ ତାଙ୍କ ରଚିତ ଓ ପ୍ରଥମ ପ୍ରକାଶିତ କବିତା 'କଏଦୀ'ହିଁ ଏହି ଆଭିମୁଖ୍ୟର ପ୍ରଥମ ଘୋଷିତ

---

୭। 'ସ୍ୱପ୍ନଦୂତ'—'ପ୍ରଭାତୀ'—'କୁନ୍ତଳକୁମାରୀ ସଞ୍ଚୟନ'-ତୃତୀୟଭାଗ-ପୃ. ୨୭୩ ।
"ହେ ସ୍ୱପ୍ନ, ତୋ ସୁନାଡ଼େଣା ନଭେ ଝାଡ଼ି ଝାଡ଼ି/ଯିବୁ ଉଡ଼ି ଛୁଇଁ ତାରା, ଆଲୋକ ଅନ୍ଧାର/ପିଇବୁ ଗ୍ରହନକ୍ଷତ୍ରସୁଧା କ୍ଷୁଧା ତୃଷା ମାରି/ଶୋଷିବୁ କୁସୁମରସ ନାଶି କ୍ଳାନ୍ତିଭାର ।× × ଶୋଇଥିବ ପ୍ରିୟା ଦୂର କୁଟୀରେ, ତା ବେଣୀ/ଲୋଟୁଥିବ କଳାମେଘ ସମ ତଳପରେ/ଜବାଧର ଦଳ ତଳେ ମୁକ୍ତାଦନ୍ତଶ୍ରେଣୀ/ଜଳୁଥିବ ପ୍ରେମ କଥା ଅତି ସୋହାଗରେ/ନୟନ କମଳ ମେଲି ଧୀରେ ଯିବୁ ପଶି/ମିଳନ ସଙ୍ଗୀତ ଶବ୍ଦେ କୂଜିବୁ ତୁ ବସି ।"

ଅଭିବ୍ୟକ୍ତଭାବେ ଚିହ୍ନିତ ହେବ । ୭ । ସମସାମୟିକଭାବେ ଗ୍ରନ୍ଥଜୀବନରେ ରଚିତ 'ପାଷାଣ ଚରଣେ ରକ୍ତ' (୧୯୪୫ରେ ଅବଶ୍ୟ ପ୍ରକାଶିତ) ଏହି ସ୍ୱଦେଶାନୁରାଗର ଏକ ଭାବବିଭୋର ପରିଣତି । ଏହି କାବ୍ୟ ପରିକଳ୍ପନାରେ ଓଡ଼ିଶା ଇତିହାସର ଏକ ଅନ୍ତର୍ନିହିତ ଅଥଚ ଗରିମାଦୀପ୍ତ ଅଧ୍ୟାୟ ପ୍ରତି କବି ଦୃଷ୍ଟିପାତ କରିଛନ୍ତି । ଅଶୋକଙ୍କୁ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ କରି ତାଙ୍କ ଅନ୍ତରରେ ବିଶ୍ୱଜନୀନ ଦୟା ଓ ମାନବୋଚିତ ଶ୍ରଦ୍ଧା ସୃଷ୍ଟି କରିବାରେ ଓଡ଼ିଶାର ଅବଦାନ ଇତିହାସର ଏକ ପ୍ରମାଣିତ ବୃତ୍ତାନ୍ତ । ତାହାର ଉପରେ କାଳ୍ପନିକ ଚରିତ୍ର ଶୀମୁକ ଓ ଚନ୍ଦ୍ରର ସୃଷ୍ଟି । ଓଡ଼ିଶାର ନିଃଶଙ୍କ ବୀରପୁତ୍ରମାନେ ଦୟାନଦୀ ତୀରରେ ଯେଉଁଦିନ ଅଶୋକଙ୍କ ରକ୍ତଲୋଲୁପ ଜିଘାଂସାକୁ ପ୍ରତିରୋଧ କରିବାକୁଯାଇ ପ୍ରାଣପାତ କରିଥିଲେ ସତ; କିନ୍ତୁ ଏହି ପ୍ରାଣପାତର ପରିଣତିରେ ଅଶୋକଙ୍କ ହୃଦୟରେ ଯେଉଁ ପରିବର୍ତ୍ତନ ଆସିଥିଲା, ତାହାର ଆବହ ବାର୍ତ୍ତା କଳିଙ୍ଗର ବୀରପୁତ୍ର ଚନ୍ଦ୍ରଙ୍କ ଅନ୍ତରରେ ସ୍ପନ୍ଦିତ ହୋଇଛି । ଏ କାବ୍ୟରେ ତେଣୁ ଆଗନ୍ତୁକ ଅଶୋକ ନୁହନ୍ତି, ଓଡ଼ିଆ ସନ୍ତାନ ଶୀମୁକପୁତ୍ର ଚନ୍ଦ୍ର ହିଁ ଅଧିକ ଆକର୍ଷଣୀୟ । ସେ ଜାତୀୟ ସମ୍ମାନ ପାଇଁ ଯୁଦ୍ଧକ୍ଷେତ୍ରରେ ପ୍ରାଣବଳି ଦେଇଛି ସତ, କିନ୍ତୁ ନିଜର ଆଦର୍ଶରେ ସେ ମଣିଷଜାତିର ଚିରନ୍ତନ କାମ୍ୟ ସ୍ୱାଧୀନତା ସମ୍ପର୍କରେ ଯେଉଁ ନିଷ୍ଠା ପ୍ରଦର୍ଶନ କରିଛି—ତାହାହିଁ ତତ୍କାଳୀନ ଏକ ପରାଧୀନ ଜାତିପାଇଁ ପରୋକ୍ଷରେ କବିଙ୍କର ଏକ ତୀବ୍ର ଆହ୍ୱାନ ପରି ମନେହୁଏ । ଶୀମୁକ ମୁହଁରେ ତାଙ୍କର ବକ୍ତବ୍ୟ—

"ପ୍ରାଣଠାରୁ ମୂଲ୍ୟବାନ ଜାତୀୟ ସମ୍ମାନ
ଜାତିର ଗୌରବ ଧନ ପ୍ରିୟ ସ୍ୱାଧୀନତା
ଭର୍ତ୍ସି କଳିଙ୍ଗ, କେବେ ନୁଆଁଇନି ମଥା
ପରପଦେ ପ୍ରାଣଲାଗି ।"                ପା. ଚ. ରକ୍ତ—ପୃ. ୧୪

କିମ୍ବା ଶୀମୁକପତ୍ନୀ ପଦ୍ମା ମୁହଁରେ—

"ଦେଶଲାଗି ଜାତିଲାଗି ଅମୂଲ୍ୟ ଜୀବନ
ଢାଳେ ଯେହୁ ମରି ନୁହେଁ ଅମର ସେ ଜନ ।"   (ପୃ. ୨୫)ରେ

ଆମେ ଏକ ଅତି ନିଷ୍ଠାପର ଉଦ୍ଦେଶ୍ୟମୂଳକ କାବ୍ୟସ୍ୱର ଶୁଣୁ । ଏହି ସ୍ୱର ପରାଧୀନ ଭାରତୀୟ ଜୀବନର ଗ୍ଳାନି ଓ ସଂଗ୍ରାମର ଉନ୍ମାଦନାକୁ ନେଇ ସଙ୍ଗଠିତ । ପୁଣି ଉଚ୍ଚାଙ୍ଗ ମାନବିକତାବୋଧରେ ଏହି କାବ୍ୟର ସ୍ୱର ଉଚ୍ଚକିତ । ଏହା ଚଣ୍ଡାଶୋକଙ୍କ କାତର ଆର୍ତ୍ତି ଓ ଅନଳଦଗ୍ଧ ଅନୁତାପ ତଥା ଆସନ୍ନ ମୃତ୍ୟୁମୁଖୀ ଯୁଦ୍ଧ ଆହତ ବୀର ସନ୍ତାନ

---

୭ । 'ବନ୍ଦୀ'—ଏହା କବିଙ୍କର ସର୍ବପ୍ରଥମ ପ୍ରକାଶିତ କବିତା—ସହକାର ୧୯/୨ୟ ଜ୍ୟେଷ୍ଠ ୧୩୪୫ (ମେ' ୧୯୩୮) । ଏ କବିତାଟିରେ ସ୍ୱାଧୀନତାସଂଗ୍ରାମୀ ବନ୍ଦୀମାନଙ୍କୁ ହିଁ ଲକ୍ଷ୍ୟ କରାଯାଇଛି ।

ଚନ୍ଦର ଶେଷ ପରାମର୍ଶରେ ସୂଚିତ । ଏହି କାବ୍ୟରେ ଉତ୍କଳର ଅତୀତର ସ୍ପର୍ଦ୍ଧା ସହିତ ବର୍ତ୍ତମାନର ଦୁର୍ଦ୍ଦଶାର ଅସହାୟ ଚନ୍ଦ, ଭାରତୀୟ ମୁକ୍ତି ଆନ୍ଦୋଳନର ଉଦ୍ଦୀପନା ପୁଣି ଭବିଷ୍ୟତ ପାଇଁ ଆଶାବାଦର ଉଜ୍ଜ୍ୱଳତା ଏହାକୁ ସର୍ବତୋଭାବେ ଏକ ଜାତୀୟବାଦୀ ନାଟ୍ୟକାବ୍ୟର ମର୍ଯ୍ୟାଦା ପ୍ରଦାନ କରିଛି । ସଂଳାପ ବା କଥୋପକଥନ ଛଳରେ ରଚିତ ଏହି କାବ୍ୟଟିର ଉଗ୍ର ଆଭିମୁଖ୍ୟ ପରେ ରଚିତ 'ଗୃହିଣିକା' (୧୯୪୮), 'କଙ୍କାଳର ଲୁହ' (୧୯୪୯)ରେ ଏହି କାବ୍ୟମାନଙ୍କର ଗୁରୁତ୍ୱପୂର୍ଣ୍ଣ ଚନ୍ଦ ଉପସ୍ଥାପିତ କରିଅଛି । ଜାତୀୟ ଦୁର୍ଗତିର ଦଂଶନରେ ଜର୍ଜରିତ ତାଙ୍କ କବିହୃଦୟ ଜାତିର ଏକଦା ଗୌରବା-ବହ ଜୀବନ ଚିହ୍ନ ଖୋଜିବାରେ ବ୍ୟାକୁଳ ହୋଇଉଠିଛି ଏବଂ କବିର ଦୃଷ୍ଟି ସ୍ୱତଃ ନିପତିତ ହୋଇଛି ନିଜ ଜନ୍ମ ଗ୍ରାମର ଅଦୂରବର୍ତ୍ତୀ ଯୁଗ-ଯୁଗର କାବ୍ୟଗ୍ରନ୍ଥ କୋଣାର୍କ ମନ୍ଦିର ଉପରେ ।

ଏହି କୋଣାର୍କକୁ ଭିତ୍ତିକରି ରଚିତ 'ଗୃହିଣିକା' କବିଙ୍କର ଦ୍ୱିତୀୟ ନାଟ୍ୟ-କାବ୍ୟ; କିନ୍ତୁ ଏହା 'ପାଷାଣ ଚରଣେ ରକ୍ତ' ପରି ସେହି ଗ୍ରନ୍ଥଜୀବନର ଏକ ଚରମ ଶ୍ରଦ୍ଧାଶୀଳ ରଚନା ଯେଉଁଥିରେ ଜାତୀୟ ବେଦନାବୋଧ ଓ ଗୌରବର ଯୁଗପତ୍ ବାକ୍-ବିଳାସ ଅନୁସୃତ । ଏ କାବ୍ୟର ବିଷୟବସ୍ତୁ ବହୁକଥିତ ଓ ବହୁବର୍ଣ୍ଣିତ ଓଡ଼ିଶାର ଜାତୀୟ ଅଧ୍ୟାୟର ସେଇ ଗରିମାବନ୍ତ ଭାସ୍ୱର୍ଯ୍ୟ କୋଣାର୍କ ଓ ଏହାର ନିର୍ମାଣ ଶିଳ୍ପୀ ବାରଶହ ବଢେଇ ତଥା କିଶୋର ଧର୍ମପଦ । ବିଶୁ ଓ ଧର୍ମପଦ ହିଁ ସବୁଠାରୁ ବଳି ଅଧିକ ଆକର୍ଷଣୀୟ ଚରିତ—ଯେଉଁମାନଙ୍କ ଚରିତ୍ରରେ ପିତୃତ୍ୱର ସ୍ୱାଭାବିକ ଚିରନ୍ତନ ଆବେଗ ପୁଣି ଜାତିପାଇଁ ତ୍ୟାଗର ଚରମ ପରୀକ୍ଷା ପ୍ରକଟିତ । 'ପାଷାଣ ଚରଣେ ରକ୍ତ' ପରି ପିତା ଓ ପୁତ୍ର ମଧ୍ୟରେ ସ୍ନେହ ଓ ଜାତୀୟ କର୍ତ୍ତବ୍ୟର ଦ୍ୱନ୍ଦ୍ୱ ଏ କାବ୍ୟଟିର ଆତ୍ମାକୁ ପରିପୁଷ୍ଟ କରିଛି । ପୁଣି ଶେଷରେ ବାରଶହ ବଢ଼େଇଙ୍କ ଯଶ ଓ ମୁଣ୍ଡରକ୍ଷା ପାଇଁ ଧର୍ମପଦ ନିର୍ଭୀକ ଭାବରେ ମୃତ୍ୟୁ ବରଣ କରିନେଇଛି । କବିଙ୍କ ଭାବନାରେ ସେ ବିଦାୟ ମିଳନ ଠାରୁ ଆହୁରି ମହୀୟାନ୍, ସେ ମୃତ୍ୟୁ ଜୀବନଠାରୁ ଆହୁରି ଗରୀୟାନ୍ । ପିତୃହୃଦୟ ଆନ୍ଦୋଳିତ ହୋଇଛି ଯଶ ଓ ସ୍ନେହ ମଧ୍ୟରେ; ମାତ୍ର ଶେଷରେ ଲୋଟିପଡ଼ିଛି ସ୍ନେହରେ । ଧର୍ମପଦର ଶେଷ ବକ୍ତବ୍ୟ ଶିଳ୍ପୀମୁକ ପୁତ୍ର ଚନ୍ଦର ବକ୍ତବ୍ୟ ପରି ତ୍ରୟୋଦଶ ଶତାବ୍ଦୀର ଉତ୍କଳ ଇତିହାସର ଏକ କାଳଜୟୀ ଉଦ୍ଭଟ କାହାଣୀ କୁନ୍ତଳବିହାରୀଙ୍କ ତୂଳୀରେ ସୁଷ୍ଠୁ ଓ ଶୋଭନୀୟ ରୂପ ଗ୍ରହଣ କରିଛି; କିନ୍ତୁ ଏହି ଜାତୀୟ ଜୀବନାଲେଖ୍ୟକୁ ପ୍ରକାଶ କରିବାକୁ ଯାଇ କୁନ୍ତଳବିହାରୀ ସେକ୍ସପିୟର ଓ ମାନସିଂହଙ୍କ ପରି ଅତି ରୋମାଣ୍ଟିକ୍ କାବ୍ୟମାନଙ୍କର ପରିଚୟ ଦେଇଛନ୍ତି । ସେକ୍ସପିଅରଙ୍କ ବିଖ୍ୟାତ ନାଟକ 'Mid Summer Night's Dream'ରେ ଓବେରନ୍, ଟିଟାନିଆ ଓ ପରୀମାନଙ୍କ ଲୀଳାବିଳାସପରି ବା କବି ମାନସିଂହଙ୍କ 'କୋଣାର୍କ' କବିତାବଳୀର ଲାସ୍ୟମୟୀ ନୃତ୍ୟରତା ଅପ୍ସରୀ-ମାନଙ୍କ ପରିକଳ୍ପନା ପରି କବି କୁନ୍ତଳବିହାରୀ ସାଗର ସୈକତରେ ଉର୍ବଶୀ, ରମ୍ଭା,

ଚନ୍ଦ୍ରଲେଖା, ମେନକାଙ୍କ ଜ୍ୟୋତ୍ସ୍ନାବିହାରର ଚିତ୍ର ଖଞ୍ଜି ଦେଇଛନ୍ତି । ତରଣୀରେ ଆସି ସେମାନଙ୍କ ସହିତ ଯୋଗ ଦେଇଛି ଏକ ସାଗରଦୁହିତା-ସାଗରିକା । ହାତରେ ତା'ର ଧର୍ମପଦର ମୂର୍ତ୍ତି । ସେହି ଅପ୍‌ସରୀମାନଙ୍କ ଲୀଳାଲୋଲ ଦୃଷ୍ଟିରେ ଖୋଲିଯାଇଛି ଅତୀତର ଏକ ରହସ୍ୟ ଯବନିକା ଏବଂ ସେହି ବିସ୍ମୟକର ଅତିମାନବିକ ପରିକଳ୍ପନା ମଧ୍ୟରେ ଅଦୂରରେ ଦେଖାଦେଇଛି କୋଣାର୍କ ମନ୍ଦିର । ଏହାରି ମଧ୍ୟରେ ମନ୍ଦିରଗଠନରେ ବାର-ଶହ ଶିଳ୍ପୀଙ୍କ ନିର୍ମାଣତତ୍ପରତା ଓ ମୁଖ୍ୟଶିଳ୍ପୀ ବିଶୁ ସହିତ ପୁତ୍ର ଧର୍ମପଦର ମିଳନ ଚିତ୍ର ପ୍ରଦତ୍ତ । ତେଣୁ ପରିକଳ୍ପନାରେ କବି ଏହି ଜାତୀୟ ଚିତ୍ର ସହିତ ଅନେକ ଅଲୌକିକ ଚିତ୍ରକୁ ଯୋଡିଦେଇ ରାଧାନାଥ ବା ନୀଳକଣ୍ଠଙ୍କ ରୋମାଣ୍ଟିକ୍ କାବ୍ୟଶିଳ୍ପ ପରି ଇତିହାସ ଓ ଅତିକଳ୍ପନାର ସମନ୍ୱୟ ରକ୍ଷା କରିଛନ୍ତି । ଶେଷରେ ପୁଣି ଏହି ନାଟ୍ୟକାବ୍ୟର ସଂଯୋଜିକା ସାଗରିକା ହୋଇଛି ସ୍ୱରଣିକା । "ଜାତୀୟତାର ଓ ବିଶ୍ୱ-ମାନବିକତାର ସେ ପ୍ରତୀକ । Swinburneଙ୍କ Aphrodite'a flower without stem ପରି ବା ରବୀନ୍ଦ୍ରନାଥଙ୍କ ବୃନ୍ତହୀନ ପୁଷ୍ପ ଉର୍ବଶୀ ପରି ମଥିତ ସାଗରରୁ ତା'ର ଜନ୍ମ । ଶ୍ରୀ ବନ୍ଧୁଙ୍କରେ ସାଧନାରେ ତା'ର ଆତ୍ମପ୍ରକାଶ—ତା'ର ଲକ୍ଷ୍ୟ ବିଶ୍ୱମାନବିକତାର ପ୍ରସାର ଓ ପ୍ରଚାର, ଭେଦ ନାହିଁ, ଦ୍ୱନ୍ଦ୍ୱ ନାହିଁ ।" ୮ । 'ସ୍ୱରଣିକା'ର ଚରିତ୍ରରେ ମାନବସୁଲଭ ମୌଳିକ ଆଚରଣର ଅଭାବ ପରିଲକ୍ଷିତ ହେଲେବି କବିଙ୍କ ଜାତୀୟ ପରିକଳ୍ପନା ଓ ମାନବିକ ସହନଶୀଳତାର ଏହା ଏକ ରୂପମୟ ସୃଷ୍ଟି । ପଣ୍ଡିତ ନୀଳକଣ୍ଠଙ୍କ 'ମାୟାଦେବୀ' କାବ୍ୟ ଏକ ସ୍ୱରଣ ମୁଖର ସ୍ମୃତି ନରସିଂହ ଓ ମାୟାଦେବୀଙ୍କ ପ୍ରଣୟ କାହାଣୀ; କିନ୍ତୁ କୁଞ୍ଜବିହାରୀଙ୍କ ସ୍ୱରଣିକା 'ସ୍ୱରଣିକା' କାବ୍ୟନାଟିକାର ମୁଖ୍ୟ ସୂତ୍ରଧର । ତଥାପି ଏହି ଉଭୟ କବିଙ୍କ ଚେତନ୍ୟରେ ଓଡ଼ିଶାର ଜାତୀୟ ସମୃଦ୍ଧି ପ୍ରତି ଏକ ସ୍ପର୍ଦ୍ଧିତ ସ୍ୱାଭିମାନର ଭାବ ଉପଲବ୍ଧି କରାଯିବ । ଏହି ସ୍ୱାଭିମାନରୁ ସଞ୍ଜାତ ତାଙ୍କ କାବ୍ୟସମ୍ଭାରରେ ବହୁ ଗୌରବପୂର୍ଣ୍ଣ ଜାତୀୟ ଚିତ୍ର ପ୍ରତିଫଳିତ ହୋଇଛି । ତହିଁରେ ୧୮୧୭ ମସିହାରେ ଆକ୍ରମଣକାରୀ ଇଂରେଜମାନଙ୍କ ବିରୁଦ୍ଧରେ ଖୋର୍ଦ୍ଧା ପାଇକମାନଙ୍କ ଜାଗରଣ ଓ ବୀର ବକ୍ସି ଜଗବନ୍ଧୁ ଓ ଜୟୀ ରାଜଗୁରୁଙ୍କ ଆତ୍ମାହୁତିର କାହାଣୀ, ଏକଦା ଉତ୍ତର ଓଡ଼ିଶାର ବିଖ୍ୟାତ ପ୍ରଜାକୁଶଳ ମାନଧାତାଙ୍କ ଭଗ୍ନଦୁର୍ଗ ରାଇବଣିଆର କରୁଣ ପରିଣତି, ଦୂର ଅତୀତରେ ବୀର ଖାରବେଳଙ୍କ ଦିଗ୍‌ବିଜୟର କାହାଣୀଠାରୁ ଏହି ଜାତୀୟ କବି ଜଗନ୍ନାଥ ଦାସ ଓ ସାରଳା ଦାସ, ବୈଶିଷ୍ଟତାର୍କିକ ପୁରୀବାସୀ ଚନ୍ଦ୍ରଶେଖର ରାୟ-ଗୁରୁଙ୍କ ପର୍ଯ୍ୟନ୍ତ ବହୁ ଘଟଣା ଓ ଦୁର୍ଘଟଣାର ଚିତ୍ରରେ 'ବାରଣୀ'ର କବିତାଗୁଡ଼ିକରେ ତାଙ୍କ ସ୍ୱଦେଶାନୁରାଗ ଉଦ୍‌ବୁଦ୍ଧ ହୋଇଅଛି । ପୁଣି ଖାଲି ମାତୃଭୂମି ଓଡ଼ିଶାର ଜାତୀୟ ବୀରମାନଙ୍କ ସ୍ତୁତିରେ ନୁହେଁ, ପ୍ରିୟ ଜନ୍ମଭୂମି ଭାରତର ବହୁ ଗରିମାବନ୍ତ ଅତୀତ ଚିତ୍ରରେ ତାଙ୍କ ଜାତୀୟ ଭାବଚେତନାର ଦ୍ୱେଷହୀନ ବିଶାଳ ହୃଦୟବତ୍ତା ପ୍ରକାଶ ପାଇଛି । ସେଠି ସଙ୍କୀର୍ଣ୍ଣତାର ସୀମା ନାହିଁ, ଅଛି ଏକ କ୍ଷୁବ୍ଧ ମହୋଦଧିର ଅଜସ୍ର ଉଦ୍‌ବେଳନ,

୮ । 'ସ୍ୱରଣିକା' (୧୯୫୪)—ମୁଖବନ୍ଧରେ ଶ୍ରୀ ରାଧାମୋହନ ଗଡ଼ନାୟକଙ୍କ ମନ୍ତବ୍ୟ ।

ଏକ ପ୍ରଶାନ୍ତ ଆକାଶର ଅସୀମ ପରିବ୍ୟାପ୍ତି । ଏହି ଦୃଷ୍ଟିଭଙ୍ଗୀ ତେଣୁ କେଉଁ ପୁରାଣ-ଯୁଗର ପ୍ରଜାପ୍ରପୀଡ଼କ ସ୍ୱୈରତ ସମ୍ରାଟ୍ ବେଣ ଓ ପୁରାଣର ମହାମନୀଷୀ ତ୍ୟାଗବୀର ଦଧୀଚିଙ୍କଠାରୁ ସିପାହୀ-ବିଦ୍ରୋହର ଶହୀଦ ପୀରଅଲ୍ଲୀଙ୍କ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏ ଜାତିର ଜାତୀୟ ପୁନରୁତ୍‌ଥାନ ପ୍ରତି ଦୃଷ୍ଟି ରଖି ଏ କବିତାଗୁଡ଼ିକ ପ୍ରାୟ ୧୯୪୭-୪୮ ମଧ୍ୟରେ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଓ ପରେ ରଚିତ । ବିଶେଷତଃ ଯେଉଁ ବୀରପୁରୁଷମାନେ ଜାତିର ଟେକ ରଖିବା ପାଇଁ ଜୀବନ ଆହୁତି ଦେଇଛନ୍ତି, ତାଙ୍କୁ ହିଁ ପରବର୍ତ୍ତୀ ପୁରୁଷ (generation) ପାଖରେ ପହଞ୍ଚେଇବା ଇତିହାସଦୃଷ୍ଟିରୁ ଏକ ଜାତୀୟ କର୍ତ୍ତବ୍ୟ-ବୋଧ, ଏହାହିଁ କବିଙ୍କ ପାଇଁ ଥିଲା ଏକ ଅନୁପ୍ରେରଣା ।

ଏଇ ଅନୁପ୍ରେରଣାରେ ୧୯୪୮-୫୦ ମଧ୍ୟରେ ରଚିତ ତାଙ୍କର ପରବର୍ତ୍ତୀ କବିତାଗୁଚ୍ଛ 'ନବମାଲ୍ଲିକା' (୧୯୫୧) ଏହି ଜାତୀୟତାବାଦୀ ଅଭିମୁଖ୍ୟର ଚୂଡ଼ାନ୍ତ ପରିଚୟ ବହନ କରିପାରିଛି । ସ୍ୱାଧୀନତା ପରବର୍ତ୍ତୀ କାଳରେ ଜାତୀୟ ବିପର୍ଯ୍ୟୟ ଓ ଦୁର୍ଗତିର ପୀଠିକା ଉପରେ ରଚିତ ଏଇ କବିତାଗୁଡ଼ିକ ବୀରତ୍ୱର ଦୀପ୍ତିରେ ଓ ଦେଶପ୍ରେମର ଅଗ୍ନିଶିଖାରେ ଦେଦୀପ୍ୟମାନ । ବୀରତ୍ୱ, ମହତ୍ତ୍ୱ ଓ ମନୀଷାରେ ବିରାଟ ଏ ଜାତିର ଅତୀତ ଗୌରବର ପୃଷ୍ଠାଙ୍କରୁ ସେ ଅତି ଉଦ୍ଦେଶ୍ୟମୂଳକ ଭାବେ ଯେଉଁ କେତୋଟି ଚରିତ୍ର ବା ବିବରଣୀକୁ ଏ ପର୍ଯ୍ୟାୟରେ ଲିପିବଦ୍ଧ କରିଛନ୍ତି—ସେ ସବୁ 'ବୀରଶ୍ରୀ' ପରି ଉଗ୍ରଚେତନା ଓ ଜାତୀୟ ଉଦ୍ଦୀପନାର ଶକ୍ତି ବହନ କରିଛି । ଏ ବୀରତ୍ୱର କାହାଣୀ ଓଡ଼ିଶାର ସୀମା-ସରହଦ ଡେଇଁ ଭାରତରେ ପ୍ରକଟିତ ହୋଇଛି । ତାଙ୍କ ଜାତୀୟତାବାଦୀ କାବ୍ୟମାନସରେ ତେଣୁ ଲଙ୍କାବିଜୟୀ ସିଂହପୁରର ରାଜା ସୀହବାହୁଙ୍କ ପୁତ୍ର ବିଜୟସିଂ, ଦ୍ୱିତୀୟ ଅନଙ୍ଗ-ଭୀମଙ୍କ ମନ୍ତ୍ରୀ ସେନାପତି ବିଷ୍ଣୁଶର୍ମା, ଓଡ଼ିଶାରେ ବହୁ ମନ୍ଦିର ନିର୍ମାତା ଯଯାତିକେଶରୀ, ଗୁରୁ ଗୋବିନ୍ଦ ସିଂହଙ୍କ ନିକଟରେ ଆତ୍ମପରୀକ୍ଷାରେ ଉତ୍ତୀର୍ଣ୍ଣ ବୀର ଦୁର୍ଜୟ ସିଂ, ସିପାହି ବିଦ୍ରୋହର ପ୍ରଥମ ଶହୀଦ ବୀର ମଙ୍ଗଳ ସିଂ, ବୀର ଜନନୀ ମହାଭାରତୀୟ ନାରୀ ବିଦୁଳା ଏକ ଏକ ନୂତନ ଅର୍ଥ ନେଇ ପ୍ରକଟିତ ହୋଇଛନ୍ତି । ଖାଲି ଯୁଦ୍ଧକ୍ଷେତ୍ରରେ ବୀରତ୍ୱରେ ନୁହେଁ, ପ୍ରାଣର ବେଗବାନ୍ ଶକ୍ତି, ସାମର୍ଥ୍ୟ ଓ ବିଶ୍ୱାସରେ ତଥା ସତୀତ୍ୱର ନିଷ୍ଠାରେ ଯେଉଁମାନେ ଚିର ପ୍ରୋଜ୍ଜ୍ୱଳ, ସେହିପରି ବ୍ୟକ୍ତିତ୍ୱମାନଙ୍କ ମଧ୍ୟରେ ବୁଦ୍ଧଦେବ, ସନ୍ନ୍ୟାସୀ ଉପଗୁପ୍ତ, ଚୀନ ପରିବ୍ରାଜକ ହୁଏନ୍‌ସାଂ ଓ ଉତ୍କଳ କବି ଦୀନକୃଷ୍ଣଙ୍କ ଜୀବନର ଗୌରବ-ପୂର୍ଣ୍ଣ ତଥ୍ୟକୁ ମଧ୍ୟ ଏହି ଗାଥାକବିତା ସଙ୍କଳନରେ ଅଂଶୀଭୂତ କରାଯାଇଛି । ଯେପରି ମନେହୁଏ 'ବୀରଶ୍ରୀ' ଠାରୁ 'ନବମାଲ୍ଲିକା' ଏକ ଅଖଣ୍ଡ କାବ୍ୟ-ଆବେଗରେ ସଙ୍ଗଠିତ—ଯେଉଁ ଆବେଗ ଜାତୀୟ ଜୀବନ ଓ ସ୍ୱଦେଶାନୁବ୍ରତର ନିଷ୍ଠାକୁ ଉଦ୍ବେଳିତ କରିବାରେ ଭାବ ଓ କଳା ଉଭୟ ଦୃଷ୍ଟିରୁ ଚମତ୍କାର ସହଯୋଗିତା ରକ୍ଷାକରିପାରିଛି । ଏହାରି ଅନ୍ତରାଳରୁ ଏକ ଦୁରନ୍ତ ଜାତୀୟ ଅଭିମାନର ଉଦ୍ଧତ ସ୍ୱର ଶୁଣାଯାଏ—ସେ ସ୍ୱର କବି କୁଞ୍ଜବିହାରୀଙ୍କର । ଚଳିତ ଶତାବ୍ଦୀର ଜାତୀୟ ଦୁର୍ବଳତାର ଦୁର୍ବହ ଗ୍ଲାନିକୁ ସେ

ସତ୍ୟବାଦୀଯୁଗର କବିମାନଙ୍କ ପରି ତାଙ୍କର ଏହି ଉଚ୍ଚାଟିତ ସ୍ୱରରେ ନିଭେଇଦେବାକୁ ଚାହାନ୍ତି ।

କିନ୍ତୁ ଲକ୍ଷ୍ୟ କରିବାର କଥା, ଏହି ଉଚ୍ଚାଟିତ କାବ୍ୟସ୍ୱର ଏ ଜାତିର ଅଜସ୍ର ଦୁର୍ଗତି ଓ ବିପର୍ଯ୍ୟୟର କାହାଣୀ ଦେଖି ବେଳେବେଳେ ଅତ୍ୟନ୍ତ ମ୍ରିୟମାଣ ହୋଇ-ପଡ଼ିଛି । ଶିଲ୍ପୀ ମନର ନିର୍ଜନ ପରିଖାରେ ଏଇ ଉଦ୍‌ବେଳିତ କାରୁଣ୍ୟର ଚିତ୍ର ଯେ କେତେ ସତ୍ୟ ଓ ପ୍ରାଣିତ ତାହା ତାଙ୍କର ପରବର୍ତ୍ତୀ କାବ୍ୟ 'କଙ୍କାଳର ଲୁହ'ରେ ଜାତୀୟ ଦୁର୍ଗତିର ବହୁ ଅସହାୟ ମୁହୂର୍ତ୍ତ ଓ ଚିତ୍ରକୁ ପ୍ରକଟିତ କରି ଅଶ୍ରୁସଜଳ ହୋଇ-ଉଠିଛି । ଏହା ନୈରାଶ୍ୟର ସ୍ୱର ନୁହେଁ; ବରଂ ଜାତୀୟ ଜୀବନର ଏକ ଯଥାର୍ଥ ରୂପାୟନ—ଏକ ଆସକ୍ତ ଆତ୍ମବାଣୀ—ଯାହା ଗ୍ରାମ୍ୟଜୀବନରୁ ହିଁ ତାଙ୍କ ଚେତନାକୁ ଆକ୍ରାନ୍ତ କରିବସିଛି ।

ଏହି ଚୈତନ୍ୟର ଅନ୍ୟ ଏକ ଦିଗ ଜାତୀୟ ଦୁର୍ଗତିର ମର୍ମଭେଦ କରିବାକୁ ଉଦ୍ୟମ କରିଛି ସେଇ ଗ୍ରାମ୍ୟଜୀବନର ସ୍ମୃତି ଉପରେ ଆଧାରିତ 'କଙ୍କାଳର ଲୁହ' (ପ୍ରକାଶ ସମୟ ୧୯୪୯) କାବ୍ୟରେ । ବନ୍ୟା ଦୁର୍ଭିକ୍ଷ ଯୁଗେ ଯୁଗେ ନଦୀମାତୃକ ଓଡ଼ିଶାର ଆର୍ଥ-ନୀତିକ ମେରୁଦଣ୍ଡକୁ ଭାଙ୍ଗି ଦେଇଛି । ଫଳରେ ପ୍ରକୃତିର କୁଟିଳ କଟାକ୍ଷରେ ଏ ଜାତି ଚିରଦିନ ଦୁର୍ଭାଗ୍ୟ ଓ ଦାରିଦ୍ର୍ୟରେ ପ୍ରପୀଡ଼ିତ । ସେଇ ଅଶ୍ରୁଳ କାହାଣୀର ବିକ୍ଷୁବ୍ଧ ସ୍ମୃତିରେ ଏହି କାବ୍ୟ-ଆତ୍ମା ନିର୍ମିତ । ୧୯୩୭ର ବନ୍ୟାରେ ପ୍ରପୀଡ଼ିତ ଏଇ ଦରିଦ୍ର ଦୁଃସ୍ଥ କଙ୍କାଳମାନଙ୍କ ଜୀବନର ବାସ୍ତବ ଚିତ୍ରରେ ଏ କାବ୍ୟଟି କବି କୁଞ୍ଜବିହାରୀଙ୍କ କବିପ୍ରାଣର ଏକ ଚିରନ୍ତନ ମାନବବାଦୀ ବ୍ୟଥାସ୍ନିଗ୍ଧ ସ୍ୱର ବହନ କରିଛି । ଏ ଚିତ୍ରରେ ଭାବଉଚ୍ଛ୍ୱାସ ବା ସ୍ୱପ୍ନବିଳାସ ନାହିଁ; ଅଛି ଏକ ଅଙ୍ଗେ ନିଭେଇଥିବା ଅନୁଭୂତିର କାବ୍ୟରୂପ । ପୁନଶ୍ଚ ଅନୁଭୂତିର ସହସା-ଉଚ୍ଛ୍ୱାସରେ ଏ କାବ୍ୟ ଲେଖା ହୋଇନାହିଁ; ବରଂ ବହୁଦିନ ପରେ ସ୍ମୃତିର ଅବତଳରୁ ଏଇ କରୁଣ ମାର୍ମିକ ଚିତ୍ରକୁ ସାଉଁଟି କବି କାବ୍ୟହର୍ମ୍ୟ ନିର୍ମାଣ କରିଛନ୍ତି । ତେଣୁ ଏ କାବ୍ୟରେ ଭାବାବେଗ ଓ ଯୁକ୍ତିକ୍ରମତାର ଆତ୍ମିକ ସମନ୍ୱୟ ଅତି କଳାତ୍ମକଭାବେ ସାଧିତ ହୋଇପାରିଛି । ଓଡ଼ିଶାର ଏକ ଚିରନ୍ତନ ଅଶ୍ରୁଳ କାହାଣୀର ଯଥାର୍ଥ ଚିତ୍ର ଦେବାରେ କବିଙ୍କ ଦୃଷ୍ଟିବଳୟକୁ ସର୍ବପ୍ରଥମେ ହିଁ ଏଇ ଜାତିର ଅସହାୟ ମଣିଷମାନେ ଆସିଛନ୍ତି ଏବଂ ସେମାନଙ୍କ ପ୍ରତି ଗଭୀର ସମବେଦନା ଓ ଶ୍ରଦ୍ଧାରେ ଏ ମରମୀ କାବ୍ୟମାନସ ସଙ୍ଗଠିତ ହୋଇ 'କଙ୍କାଳର ଲୁହ'ରେ ଏକ ପରିଣତ କାବ୍ୟ-ଜିଜ୍ଞାସାର ପରିଚୟ ଦେଇଛି । ଜାତୀୟ ଦୁର୍ଗତିର ସନ୍ଦର୍ଶନରେ ଏ ସ୍ୱର କେତେବେଳେ ଅତିରିକ୍ତ ସମ୍ବେଦନଶୀଳତା ପ୍ରକାଶ କରିଛି ତ' କେତେବେଳେ ସ୍ୱାର୍ଥପର ମଣିଷ ଓ ସମାଜ-ଆର୍ଥନୀତିକ ବୈଷମ୍ୟରେ ପ୍ରତିକ୍ରିୟାଶୀଳ ହୋଇଉଠିଛି । ୯ । ଏ ପ୍ରତିକ୍ରିୟାରେ

୯ । "ସେତେବେଳେ ଆରେ ଆରେ କଙ୍କାଳ, ବିଶ୍ୱାସ ମୋର ମନେ/ଜାଗିବ ଦୟାଳୁ ଉଦାର ଦେବତା ମଣିଷ ହୃଦୟକଣେ/ଭାଙ୍ଗି ବିଶ୍ୱଭେଦର ପାଚେରି କରିଦେବ ସମତୁଲ ଅଶ୍ରୁଧାର ମୋ ଫୁଟିବ ସେକାଳେ ଫୁଟିବ ପଦୁଅଁ ଫୁଲ ।" —'କଙ୍କାଳର ଲୁହ'

ବିପ୍ଲବର ସ୍ୱର ଅବିନାହୂତ । ଏ ସ୍ୱର କେବଳ ସାମାଜିକ ମଣିଷ ବିରୁଦ୍ଧରେ ନୁହେଁ, ଭଗବାନଙ୍କ ସୃଷ୍ଟି ବିରୁଦ୍ଧରେ ମଧ୍ୟ ଉଚ୍ଚାରିତ ।

"ଜଗତର ପିତା, ସୁତ କ୍ରନ୍ଦନ ପଡ଼େନାହିଁ କି ହେ କାନେ ?
ରଖିବାର ଯଦି ନଥିଲା ଶକତି ଜନମ ଦେଲ କି ଝାପେ ?
ଗୀତା ଭାଗବତେ କରିଅଛ ବନ୍ଧୁ ଆତ୍ମ-ବିଜ୍ଞାପନ,
ପତିତ ଆରତ ଉଦ୍ଧାରେ ତଳେ ଦେଖେନାହିଁ ପ୍ରଭୁପଣ ।
ସାବଧାନ କରେଁ, ଦୁଃଖ-ବିପଦେ ନ ମିଳିଲେ ଦରଶନ,
ଅନ୍ତରତଳୁ ଚିରକାଳ ଦେବୁଁ, ଦେବୁଁ ହେ ନିର୍ବାସନ
ତରଳେ ମଣିଷ ଗ୍ଳାତ
ପ୍ରଭୁମନ ଯଦି ନ ତଟିଲା ତହିଁ କି ଲାଭ ପୂଜାରେ ମାତ ?"

( 'କଂକାଳର ଲୁହ'—କୁଞ୍ଜବିହାରୀ ସଂଚୟନ—୧ମ ଭାଗ ପୃ. ୬୫ )

ଯେଉଁ ଜାତି ତା'ର ଗୁଣଗାରୁ ଠେଲି ବିଶ୍ୱ-ଦୁଆରରେ ମହାଗୌରବରେ ଗ୍ଭଲିବାକୁ ଚେଷ୍ଟା କରୁଥିଲା, ସେହି ଜାତି ଯେ ଆଜି ମୃତ୍ୟୁର ମଳିନ ଗ୍ରାସରେ ଜୀବନ୍ମୃତ, ଏଇ ଚିନ୍ତା ବାସ୍ତବ-ଦୃଶ୍ୟର ସନ୍ଦର୍ଶନରେ ତାଙ୍କୁ ବିବ୍ରତ କରିଛି । ସତେ ଯେପରି ବନ୍ୟା ପ୍ରପୀଡ଼ିତ, ଉପାସୀ ପ୍ରତ୍ୟେକ କଂକାଳ କହିଉଠନ୍ତି—ସେମାନଙ୍କ ଦୁଃଖବେଦନା ଓ ଲୋତକ କ'ଣ୍ଣ ସମଗ୍ରର ନୁହେଁ ? କେବେ କାହିଁକି ଧନୀବାଳୀମାନେ କ୍ଷୀର ଓ ମହୁରେ, ଭୋଗ ଓ ଭାଗ୍ୟରେ ଭାସୁଥିଲାବେଳେ ଏଇ ଦରିଦ୍ର ଅମୃତର ସନ୍ତାନମାନେ ଲୁହରେ ଭାସିଯିବେ ? ଧନୀବାଳୀମାନେ ଉପଭୋଗରେ ପ୍ରମତ୍ତ ହେଉଥିଲାବେଳେ ଏମାନେ ମାଟି କାମୁଡ଼ି ଜୀବନର ସକଳ ଦୁର୍ଦ୍ଦଶା ଓ ତମିସ୍ରାରେ ଯନ୍ତ୍ର ହେଉଥିବେ ? ଏ ସ୍ୱର କଂକାଳର ନୁହେଁ, ମରମୀ କବି କୁଞ୍ଜବିହାରୀଙ୍କର । ଏହି କାବ୍ୟମନନରେ ସେ ଯେଉଁ ସମାଜ ଆଭିମୁଖ୍ୟ ସହିତ ଯୋଗସୂତ୍ର ସ୍ଥାପନ କରନ୍ତି ତାହା ଉଗ୍ର ନ ହେଲେ ବି ସମାଜର ବୈଷମ୍ୟ ବିରୁଦ୍ଧରେ ହାତୁଡ଼ି ପିଟି ଏକ ସମତୁଲ ସମାଜ ପ୍ରତିଷ୍ଠାର ଦାବୀ ଉପସ୍ଥାପିତ କରେ । ଏହି ଦାବୀ ତାଙ୍କର ପରବର୍ତ୍ତୀ କାବ୍ୟ 'ମାଟି ଓ ଲଟି' (୧୯୫୬)ରେ ଅତି ଉଗ୍ର ଓ ସତେଜ ।

## ବେଦନା ଓ ବିପ୍ଳବ :

ତାଙ୍କ ପ୍ରାକ୍-ସ୍ୱାଧୀନତାକାଳୀନ କାବ୍ୟମନନରେ ସମାଜର ଆର୍ଥନୀତିକ ବୈଷମ୍ୟ ପ୍ରତି ଯେଉଁ ବିକ୍ଷୁବ୍ଧ ବେଦନାର ସ୍ୱର ଗୁଞ୍ଜରି ଉଠିଥିଲା, ସ୍ୱାଧୀନତାର ଉତ୍ତରକାଳୀନ କାବ୍ୟପ୍ରତିଭାରେ ତାହା ଅଧିକ ଭାବରେ ସଙ୍ଗଠିତ ଓ ଲକ୍ଷ୍ୟନିଷ୍ଠ ହୋଇଥିବା ଉପଲବ୍ଧି କରାଯିବ । 'ମାଟି ଓ ଲଟି'ର ମୁଖବନ୍ଧରେ କବି ସେଇ ସ୍ୱରର ଉଦ୍‌ଘୋଷଣା କରିଛନ୍ତି—"ପଲ୍ଲୀ ଓ ନଗରର ଆର୍ଥନୀତିକ ବୈଷମ୍ୟ ଏ ଯୁଗର

ସଂଗ୍ରାମୀ ଜନତା ଭିତରେ ବିକ୍ଷୋଭ ସୃଷ୍ଟି କରି ତାକୁ ସୁଦୂରପରିଣତିକୁ ନେଇଯାଇଛି । କୃଷୀ ମଜୁରିଆର ଯୁଗ-ଯୁଗବ୍ୟାପୀ ଜଟିଳତମ ସମସ୍ୟାର ସମାଧାନ କରିବ କିଏ ? ଶାନ୍ତିର କପୋତ ନା ଶାଣିତ ଖଡ୍‌ଗ ? ଏହି ପ୍ରଶ୍ନର ସମାଧାନ ଆଣିବା ଦିଗରେ ତାଙ୍କ ଉତ୍ତର-ପର୍ବର ପରିଣତ କାବ୍ୟମାନସ ଖୁବ୍ ଉଦ୍ୟମଶୀଳ ପରି ମନେହୁଏ । ଏହି ଉଦ୍ୟମ କେବଳ 'ମାଟି ଓ ଲାଠି'ର କଥା-କାବ୍ୟରେ ସୀମିତ ନୁହେଁ, ଏକ ଲୋମଶ ନୀଳହାତର ଭୀତିରେ ଆତଙ୍କିତ ମଧ୍ୟ । ଏହି ପର୍ଯ୍ୟାୟରେ ତେଣୁ ତାଙ୍କ କାବ୍ୟମନନ ଆଉ ଇତିହାସର କଙ୍କାଳରେ କଳ୍ପନାର ମେଦରକ୍ତର ପ୍ରଲେପ ବୋଲି ଜାତୀୟ ଅଭି-ମାନର ସ୍ୱପ୍ନରେ ଉଚ୍ଛ୍ୱସିତ ନୁହେଁ; ବରଂ ଜାତୀୟ ଜୀବନର ଦୁଃଖକଷ୍ଟ, ବିଭେଦ ଓ ବୈଷମ୍ୟର ବ୍ୟୂହ ଭେଦ କରିବାରେ ଉଦ୍ୟମଶୀଳ । ସାରା ଦୁନିଆଁରେ ମାନବର ସମସ୍ୟା ଏକ ଓ ଅଖଣ୍ଡ, ଯଦିଓ ତା'ର ସାଂସ୍କୃତିକ, ସାମାଜିକ ଓ ଆର୍ଥିକ ଜୀବନର ବିକାଶଧାରା ବିଭିନ୍ନ । ଅଗ୍ରଗାମୀ ମାନବଚିନ୍ତାଧାରାର ଏହି ସତ୍ୟୋପଲବ୍ଧି କବି କୁଞ୍ଜବିହାରୀଙ୍କ ପରବର୍ତ୍ତୀ କାବ୍ୟସ୍ୱରକୁ ଉଜ୍ଜ୍ୱଳ ଓ ସମୃଦ୍ଧ କରିଅଛି । ପ୍ରକୃତ, ପରମାତ୍ମା ବା ପରଲୋକ ଚିନ୍ତା ନୁହେଁ, ଇହଲୋକରେ ଦେହଧାରଣ ଲାଗି ଯେଉଁ ସ୍ୱାଚ୍ଛନ୍ଦ୍ୟର ଅଭାବ ଚିନ୍ତାକୁ ବିବ୍ରତ କରେ, ଯେଉଁ ଅଯାଚିତ ଦୈନ୍ୟ, ଅନାକାଙ୍‌କ୍ଷିତ ତୁଚ୍ଛାତିତୁଚ୍ଛ ଘଟଣା ଜନସାଧାରଣଙ୍କ ସାରା ଜୀବନକୁ ଆଚ୍ଛନ୍ନ କରିରଖେ, ତାହାରି ଯଥାର୍ଥ ବାସ୍ତବବାଦୀ କାବ୍ୟଚେତନାରେ 'ସେ ଏକ ଲୋମଶ ନୀଳହାତ' ଏବଂ 'ମାଟି ଓ ଲାଠି' କଥା-କାବ୍ୟର ସ୍ୱର ସଙ୍ଗଠିତ । ଏଇ ଲୋମଶ ନୀଳହାତକୁ ତେଣୁ ଏକ ଆତତାୟୀ ସାମ୍ରାଜ୍ୟବାଦୀ, ଫାସିଷ୍ଟ ବା ପୁଞ୍ଜି-ବାଦୀର ହିଂସ୍ର ବର୍ବରତା ନାମରେ ନାମିତ କରାଯାଇପାରିବ । କାରଣ ଯୁଗେଯୁଗେ ଏହା ନିରୀହ ଓ ଶାନ୍ତିକାମୀ ମଣିଷର ବେକ ଆଡ଼କୁ ପ୍ରସାରିତ ହୋଇଆସିଛି । ତା'ର ରକ୍ତରେ ପୁଞ୍ଜିର ଅଟ୍ଟାଳ ଗଢ଼ାହୋଇଛି । ତା'ର ଲୁହ ଓ ଲହୁରେ ଯେତେ ସୌଖୀନ ସ୍ୱପ୍ନର ମୀନାର ମୁଣ୍ଡ ଟେକିଛି । ୧୦ । କିନ୍ତୁ ଯୁଗ ଯୁଗର ରୋଗବ୍ୟାଧି, ଅଶ୍ରୁ ହାହାକାର, ହତାଶା ଓ ଅପମାନ, ଅବସାଦ ଓ ଅବହେଳାରେ ମଣିଷସମାଜର ଏକ ସଂଖ୍ୟାବହୁଳ ଗୋଷ୍ଠୀ ଯେ ପଙ୍କନର୍ଦ୍ଦମା ଓ ଗଳିରେ ଜୀବନର ସମସ୍ତ ସୁଖସ୍ୱପ୍ନକୁ ଉଜାଡ଼ି ଦେଇଛନ୍ତି, ସେଇ ରାସ୍ତାର ମଣିଷମାନଙ୍କ ପାଇଁ ସତେ ଯେପରି ସୌଭାଗ୍ୟବନ୍ତ ମଣିଷ ଓ ତା'ର

---

୧୦ । 'ସେ ଏକ ଲୋମଶ ନୀଳହାତ'—ରଚନା ସମୟ ତା ୨୦ । ୪ । ୫୧ (କୁଞ୍ଜବିହାରୀ ସଞ୍ଚୟନ—୧ମ ଭାଗ ପୃ. ୪୩) ।

"ସେଇ ହାତ/କୃଷକ ଆଉ କୁଲି ଦେହରୁ କାଢିନିଏ ବସ୍ତ୍ର/ଉଦରରୁ ଅନ୍ନ/ହାତରୁ ହତିଆର/ନିଏ ଦ୍ରୌପଦୀର ଇଜ୍ଜତ/ପଠାଏ ଦୁର୍ଭିକ୍ଷ ଆଉ ମହାମାରୀ/ଯୁଦ୍ଧ ଆଉ ବିଭୀଷିକା/ଇନ୍ଦ୍ରଜିତସମ/ପୃଥିବୀକୁ ନାଗଫାଶରେ ରଖିଛି ବାନ୍ଧି/ଯେତେକ ଆଇନକାନୁନ୍ ଦୁର୍ବୃତ୍ତ କଳ୍ପନାରୁ ଫାନ୍ଦ/ସେ ଏକ ଲୋମଶ ନୀଳହାତ/ଶାନ୍ତ ଏ ଧରଣୀ ପରେ ସୃଷ୍ଟିକରେ ଯୁଗେ ଯୁଗେ ରକ୍ତାକ୍ତ ଉତ୍ପାତ ।"

ରକ୍ଷାକବଚ ଭଗବାନଙ୍କ ଦୃଷ୍ଟି ତଳେଲହେଲେ ଚହଲି ନାହିଁ । ଯେ ମଣିଷ ଭାଗ୍ୟକୁ ଆଦର ଅନନ୍ତ ଆକାଶତଳେ ପଶୁର ଜୀବନ ମେଲିଦେଇଛି । ସେ ବାସ୍ତୁହରା । ଏହାହିଁ ସ୍ୱାଧୀନତା ପରେ ଭାରତର ଏକ ବାସ୍ତବ ବିଷାଦବାଦୀ ଚେହେରାକୁ ପାଠକ ସମକ୍ଷରେ ଉପସ୍ଥାପିତ କରେ । କବି କୁଞ୍ଜବିହାରୀଙ୍କ ଦରଦୀ କାବ୍ୟଆତ୍ମା ଏକ ନିଷ୍କପଟ କାରୁଣ୍ୟ ପ୍ରକାଶ କରେ—

"ରାସ୍ତାର ମଣିଷ ଆଖି/ଗୁଡ଼ଫଟା ତୋର ଅଶ୍ରୁଧାରେ/ଦେଖେ ମୁହିଁ ମୋ ଦେଶର ସ୍ୱାଧୀନ ସ୍ୱରୂପ / କଙ୍କାଳର ମେଦଗୁଚ୍ଛେ ମନ୍ଦରେ ମନ୍ଦରେ / ଜଳେ ଯଙ୍କ ଜଳେ ଗନ୍ଧ ଧୂପ/ନେତାର ଯେ ବାକ୍‌ଗୃଭୁରା/ଶୁଣେ ତୋର ମୁମୂର୍ଷୁ ପ୍ରଳାପେ/ଏଇ ଏକ ଦୀର୍ଘ ଶ୍ୱାସେ/ଧରଣୀର ଶୋକଘନ ଅନ୍ଧକାର ମାପେ ।" ୧୧ ।

ଏହି ପର୍ଯ୍ୟାୟରେ କବି ସାମାଜିକ ସମସ୍ୟାର ବାସ୍ତବବାଦୀ ସ୍ୱର ଉତ୍ତୋଳନ କରିବା ସଙ୍ଗେ ସଙ୍ଗେ ନିଜର ପୂର୍ବତନ କାବ୍ୟମନନକୁ ପରିହାର କରି ଏକ ନୂତନ ନିହିବର୍ତ୍ତ ଶୁଣାଇଛନ୍ତି । ସେଥିରେ ଆଉ ପ୍ରକୃତିର ରମଣୀୟ ବିଭୂତି ନାହିଁ ବା ଜୀବନର ଆଟୋପ ନାହିଁ—ଅଛି କେତେ ଟି ଧୂସର ଚିତ୍ରଲିପି । ସେଠି ରିକ୍‌ସାବାଲାର ଆଖିରେ ମଳିନ ସନ୍ଧ୍ୟାର ନୈରାଶ୍ୟଘନ କଳାଗୁଡ଼ି, ସର୍ବହରାର କ୍ଳାନ୍ତ ମୁହଁରେ ବହଳ କଳା ଚିମିନି ଧୂଆଁ, କରଣିର ଘରଫେରନ୍ତା ମନରେ ଅନ୍ନଚିନ୍ତାର ଘୁଣ, ଚିହ୍ନଣୀର ଶୁଖିଲା ମୁହଁ, ଆଉ ଶ୍ରମିକର ଘର୍ମକ୍ଳାନ୍ତ ଦେହର ଚିତ୍ର ଅଧିକ ପ୍ରାଞ୍ଜଳ । କବି କୁଞ୍ଜବିହାରୀଙ୍କ କାବ୍ୟ-ଚେତନାର ଏହି ବିକାଶ ପର୍ବରେ ତାଙ୍କ ଦରଦୀ ମାନବବାଦୀ କାବ୍ୟସ୍ୱରର ଯେଉଁ ବୈପ୍ଲବିକ ବାଣୀ ଶୁଣିବାକୁ ମିଳେ, ତାହା ସାମାଜିକ ସଙ୍କଟର ଏକ ପ୍ରତିଧ୍ୱନି ମାତ୍ର । ୧୨ । ତେଣୁ ଏହି ପର୍ଯ୍ୟାୟରେ ତାଙ୍କ କବିତାରେ ନିଖିଳର ଅଶ୍ରୁ ଓ ଆର୍ତ୍ତି, ବେଦନା ଓ ହାହାକାର ସହିତ ଆତ୍ମିକ ଯୋଗସୂତ୍ର ଅତ୍ୟନ୍ତ ନିବିଡ଼ ଓ ଶାଣିତ । କବି ନିର୍ଦ୍ଦିଷ୍ଟ ଭାବରେ ତାଙ୍କ କବିତାରେ ଏ ଯେଉଁ ଅଙ୍ଗୀକାର (Commitment) ପ୍ରକାଶ କରିଛନ୍ତି ତାହା 'ଧନୀ ଦରିଦ୍ର', 'ଏ କ ନୁହେଁ ତୁମର ପ୍ରାର୍ଥନା', 'ଲକ୍ଷ୍ମୀନା', 'ରିକ୍‌ସାବାଲା', 'କୋଇଲାଖଣିର କୁଲି', 'ବାଉରି ସାଇରେ ସନ୍ଧ୍ୟା', ଝଡ଼ର ସହସ୍ର ପଦଧ୍ୱନି' ଆଦି ଏହି ପର୍ଯ୍ୟାୟରେ ରଚିତ ସମସ୍ତ କବିତାରେ (୧୩) ଅତି ପ୍ରାଞ୍ଜଳ ଭାବେ

୧୧ । 'ରାସ୍ତାର ମଣିଷ'–ତା ୨୨ । ୧ । ୫୧, – କୁଞ୍ଜବିହାରୀ ସଞ୍ଚୟନ-୧ମ ଭାଗ,ପୃ.୪୮ ।
୧୨ । 'ହେ ମୋର କବିତା' (୨୧ । ୪ । ୫୦.—କୁଞ୍ଜବିହାରୀ ସଞ୍ଚୟନ—ପୃ. ୫୧ ।
୧୩ । 'ଧନୀ ଦରିଦ୍ର' (୧୫ । ୩ । ୫୧), 'ଏ କ ନୁହେଁ ତୁମର ପ୍ରାର୍ଥନା' (୨୮।୭।୫୦), ଲକ୍ଷ୍ମୀନା (୨୨ । ୮ । ୫୦), ରିକ୍‌ସାବାଲା (୧୯୪୮), 'କୋଇଲା ଖଣିର କୁଲି' (୧୦ । ୧୦ । ୫୦) 'ବାଉରି ସାଇରେ ସନ୍ଧ୍ୟା' (୩୧ । ୧ । ୫୧, 'ଝଡ଼ର ସହସ୍ର ପଦଧ୍ୱନି' (୨୨ । ୨ । ୫୩) ।

ପ୍ରକାଶିତ । ଏ ସମସ୍ତ କବିତାରେ ସେଇ ଏକମାତ୍ର ସମସ୍ୟା—ସମାଜ-ଆର୍ଥନୀତିକ ବୈଷମ୍ୟ ଓ ଶୋଷଣର ସ୍ୱର ଅତି କଳାତ୍ମକ ଭାବେ ପ୍ରକାଶ ଲାଭ କରିଛି । ଏ ଉପଲବ୍ଧିରେ ମାନସିକ ଦ୍ୱନ୍ଦ୍ୱ ବା କୌଣସି ବାହ୍ୟ ଚେତନା ସହିତ ମୁକାବିଲାର ଶିଥିଳ ଅନୁଚିନ୍ତା ନାହିଁ, କିମ୍ବା ଖାଲି ଭାଙ୍ଗିଦେବା ବା ଧ୍ୱଂସ କରିବାର ସ୍ଲୋଗାନ୍ ନାହିଁ; ଅଛି ଏକ ସମମର୍ମିତା—ଯାହା ଏକ ଦୃଢ଼ ଅବବୋଧ ଉପରେ ନିର୍ମିତ । ଏହି କାବ୍ୟ-ସନନ୍ଦରେ ଶ୍ରେଷ୍ଠ ଧନୀ କୃପଣ ହରିଦାସଠାରୁ ଦରିଦ୍ର ଦୁଲାନାନୀ ଶ୍ରେଷ୍ଠତର ହୋଇଉଠେ—କାରଣ ସେ କୋଣାର୍କ ବା ତାଜ ହୁଏତ ଗଢ଼ିନାହିଁ; କିନ୍ତୁ ମନର ଅନାବିଳ ନିଷ୍ଠାରେ ଦୁଇଟି ଅନାଥ ଶିଶୁଙ୍କୁ ଧରିଆଣି ସେ ପାଳିପୋଷି ମଣିଷ କରିପାରିଛି ('ଧନୀ ଦରିଦ୍ର') । ଏହା ଏକ ଅତୁଳନୀୟ ସାଧନା ନୁହେଁ କି ? ତାଙ୍କ କାବ୍ୟସ୍ୱରରେ ଏ ଯେଉଁ ସାମାଜିକ ବିରୋଧାଭାସ ଓ ବିପ୍ଳବର ସ୍ୱର ପ୍ରକାଶିତ, ତାହା ପାରମ୍ପରିକ ମୂଲ୍ୟବୋଧ ଓ ଭଗବତ୍‌ବିଶ୍ୱାସ ପ୍ରତି କ୍ରମେ ବିଦ୍ରୋହୀ ହୋଇଉଠିଛି । ପୂଜା, ପ୍ରାର୍ଥନା, ଆରାଧନା—ଏସବୁ କେବଳ ଧନିକର ବିଳାସ; ତେଣୁ କବିଙ୍କ କଣ୍ଠରେ ବିଦ୍ରୂପର ବାଣୀ—"ବୁଝିଚ କି ମର୍ମ ? ଧନ ଚାହେଁ କିଣିବାକୁ ଧର୍ମ/ସାବଧାନ ହୁଅ ସାବଧାନ/କିଣିବାକୁ ଚାହେଁ ଭଗବାନ୍ ?" ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ (ଲକ୍ଷ୍ମୀନା) । କେଉଁଠି ଏ ସ୍ୱର କ୍ଳାନ୍ତ ଶ୍ରମିକ ପ୍ରତି ସମ୍ବେଦନଶୀଳ ତ କେଉଁଠି ଏକ ସାମାଜିକ କ୍ରାନ୍ତିର ଡାକରାରେ ଅଗ୍ନିଦୀପ୍ତ । ରିକ୍ସାବାଲା, କୋଇଲାଖଣିର ଶ୍ରମିକ, ସମାଜର ଅର୍ଦ୍ଧପତିତ ଶ୍ରେଣୀ—ସମସ୍ତଙ୍କ ଧୂସର ମଳିନ ଚିତ୍ରରେ ଏହି ପର୍ଯ୍ୟାୟର କାବ୍ୟସ୍ୱରରେ ରହିଛି ସମାଜର ବାସ୍ତବଚେତନା ଓ ତଦୁତ୍ତରୁ ଏକ ସାମାଜିକ ଝଡ଼ର ପୂର୍ବାଭାସ । ପୃଥିବୀର ଚିର ଅଗ୍ରଗାମୀ ସମାଜ ଓ ସଭ୍ୟତାର ନଭଶ୍ଚୁମ୍ବୀ ପିରାମିଡ୍ କେବେ ପୁଞ୍ଜିର ବିଳାସରେ ଗଢ଼ାହୋଇନାହିଁ । ମାନବିକ ମମତା ଓ ସହାବସ୍ଥାନର ସମ୍ଭାବନା ଭିତରେହିଁ ଗଢ଼ାହୋଇଛି । ତେଣୁ ଧନ ଓ ପୁଞ୍ଜି ଅପେକ୍ଷା ମାଟି ସହିତ ମାଟି ହେଉଥିବା ନିରୀହ ମଣିଷ ପ୍ରତି ଚରମ ବୈପ୍ଳବିକ ସ୍ୱରରେ ତାଙ୍କ ପରବର୍ତ୍ତୀ ସୃଷ୍ଟି 'ମାଟି ଓ ଲାଠି' କଥାକାବ୍ୟଟି ଯେ ଏକ ସମୟୋଚିତ ବିସ୍ଫୋରଣ, ଏଥିରେ ସନ୍ଦେହ ନାହିଁ ।୧୪। ଯେଉଁ କବି ଦରଦୀ ଓ ମାନବବାଦୀ ସେ ମଧ୍ୟ ବିପ୍ଳବୀ । ବସ୍ତୁତଃ ଏଇ ମଣିଷ-ସମାଜର କଲ୍ୟାଣମୟ ସ୍ଥିତି ଓ ସମୃଦ୍ଧି ପାଇଁ ବିପ୍ଳବକୁ ଏକ ଶେଷ ଅସ୍ତ୍ରଭାବେ ଶ୍ରୀ ଦାଶ ପ୍ରୟୋଗ କରିବାକୁ ଚାହାନ୍ତି; କିନ୍ତୁ ଏ ବିପ୍ଳବରେ ମହାତ୍ମା ଗାନ୍ଧିଙ୍କ ପ୍ରବର୍ତ୍ତିତ ଅହିଂସା ସଂଗ୍ରାମର ସ୍ୱର ସହିତ ମାର୍କସ୍ ପ୍ରବର୍ତ୍ତିତ ହିଂସାତ୍ମକ ପନ୍ଥାର ଏକ ସମୀକରଣ ସଂଘଟିତ ହୋଇଛି । କାବ୍ୟନାୟକ ସତବାଜି ଏହିପରି ଅହିଂସା ସଂଗ୍ରାମର ପ୍ରବକ୍ତା; କିନ୍ତୁ ଯୁଗ ଯୁଗର ଶୋଷଣ ଓ ଅତ୍ୟାଚାରରେ ଅବନତ ସାଧାରଣ ଜନତା ବେଳେବେଳେ ଏହି ଅହିଂସ ମାର୍ଗର ସମସ୍ତ ଆଦର୍ଶକୁ ଭୁଲି

୧୪ । 'ମାଟି ଓ ଲାଠି'—ଏହି କାବ୍ୟଟିର କେତେକାଂଶ ୧୯୫୩-୫୪ରେ ଧାରାବାହିକ-ଭାବେ 'ଝଙ୍କାର' ପତ୍ରିକାରେ ପ୍ରକାଶିତ ହୋଇଛି । ପରେ ୧୯୫୫ରେ ପୁସ୍ତକାକାରରେ ପ୍ରକାଶିତ ।

ହିଂସା-ମାର୍ଗରେ ଅନୁରକ୍ତ ହେବା ଅତ୍ୟନ୍ତ ସ୍ୱାଭାବିକ । ବିଶେଷତଃ ଅତ୍ୟାଚାରୀ ଜମିଦାରଙ୍କୁ ମୂଳପୋଛ କରିଦେବା ପାଇଁ ସେମାନେ ଶେଷରେ ରକ୍ତାକ୍ତ ଯୁଦ୍ଧରେ ପ୍ରମତ୍ତ ହୋଇଛନ୍ତି । କିନ୍ତୁ ସତ୍ୟବାଦୀ ତା'ର ନିଜସ୍ୱ ଆଦର୍ଶରେ ଅଟଳ । ବିପ୍ଳବକୁ ସେ ସମ୍ପୂର୍ଣ୍ଣରୂପେ ନିରୁପ-ଦ୍ରବ କରିବାକୁ ଚାହେଁ । କେବଳ କୃଷି କ୍ଷେତ୍ରର ଶ୍ରମିକ ସଙ୍ଗଠନରେ ନୁହେଁ, କଳ-କାରଖାନାର ଶ୍ରମିକଙ୍କୁ ମଧ୍ୟ ସେ ଏହି ଆଦର୍ଶରେ ସଙ୍ଗଠିତ କରିଛି ଓ ତା'ର ଆଦର୍ଶର ବିଜୟ ମଧ୍ୟ ହୋଇଛି; କିନ୍ତୁ କାରଖାନା କ୍ଷେତ୍ରରୁ ଗ୍ରାମକୁ ଫେରି ସତ୍ୟବାଦୀ ଦେଖିଛି ଯେ ଲୋକେ ଧୈର୍ଯ୍ୟ ଓ ସହନଶୀଳତାର ସମସ୍ତ ବନ୍ଧ ଭାଙ୍ଗି ଜମିଦାରଙ୍କ ପ୍ରତି ପ୍ରତିଶୋଧ ପରାୟଣ ହୋଇଉଠିଛନ୍ତି । ରକ୍ତର ବଦଳରେ ରକ୍ତ ନେବାକୁ ସେମାନେ ଆଗଭର ! ସମଗ୍ର ଗ୍ରାମର ବିକ୍ଷୁବ୍ଧ ଲୋକମାନେ ଏହିପରି ଏକ ଖଣ୍ଡଯୁଦ୍ଧରେ ମାତିଥିଲାବେଳେ ସତ୍ୟବାଦୀ ପ୍ରାଣପଣେ ସେମାନଙ୍କୁ ସେ ପଥରୁ ନିବୃତ୍ତ କରିବାକୁ ଚାହେଁ । କାବ୍ୟର ପରିଣତିରେ ଶ୍ରୀ ଦାସ ଅତି ସୂଚନାତ୍ମକ ଭାବେ କହିଛନ୍ତି—

"ଧାଇଁଛି ଧରଣୀ ନବ ଜାଗରଣୀ ଗାଇ
ଆଗାମୀ ଯୁଗର ବାର୍ତ୍ତା ଆଣିବା ପାଇଁ ।" ୧୫ ।

ଏହି ନବଜାଗରଣୀର ଧାରାରେ ମାର୍କସ୍ ବା ଗାନ୍ଧି—କାହାର ନୀତି ଜୟଯୁକ୍ତ ହେବ, ତାହା ଏ କାବ୍ୟରେ ଅନିର୍ଦ୍ଧାରିତ କିନ୍ତୁ ଅତି ବ୍ୟଞ୍ଜନାତ୍ମକ ଭାବେ ସୂଚିତ । ନିଶ୍ଚିତ ଭାବେ ସମାଜରୁ କାଳକାଳର ବୈଷମ୍ୟ ଓ ବିଭେଦର ଦୂର ପାଇଁ ଏହି ଦୁଇଟି ମାର୍ଗ ହିଁ ଉନ୍ମୁକ୍ତ ରହିଛି । ଯଦି ଶୋଷକ ଗୋଷ୍ଠୀର ଚରିତ୍ରରେ ପରିବର୍ତ୍ତନ ନ ଆସେ ତେବେ ନିର୍ଭୀକ ଜନତା ଯେ କୌଣସି ସମୟରେ ହିଂସ୍ର ହୋଇ ଉଠିବେ—ଏଥିରେ ସନ୍ଦେହ ନାହିଁ । ସେଠି ଗାନ୍ଧିବାଦର ପ୍ରତିନିଧି ସତ୍ୟବାଦୀର ସମସ୍ତ ଉଦ୍ୟମ ହୁଏତ ପଣ୍ଡ ହେବ କିମ୍ବା ଉପଯୁକ୍ତ ନେତୃତ୍ୱବିହୀନ ଜନତା ସେମାନଙ୍କ ଦୁଃଖ ଦୂରୀକରଣର ପନ୍ଥା ନିଜେ ହିଁ ବାଛି ନେବେ । ସତ୍ୟ ଓ ଅହିଂସାର ସମସ୍ତ ଡାକରା ସତ୍ତ୍ୱେ ମଣିଷ ସର୍ବନାଶର ବାଟରେ ଉଦ୍‌ଭ୍ରାନ୍ତ ହୋଇ ଆଗେଇ ଚାଲିବ । ତେଣୁ ସତ୍ୟବାଦୀର ମୁହଁରେ ଶ୍ରୀ ଦାସ ଯେଉଁ ଉଚ୍ଚମାନବିକ ଆଦର୍ଶର ସ୍ୱର ଶୁଣାଇଛନ୍ତି, ତାହା ଅତ୍ୟନ୍ତ ଶ୍ଳାଘ୍ୟ ଓ ବରଣୀୟ ହେଲେ ବି ଉନ୍ମତ୍ତ ଜନତା ହୁଏତ ସେ ପଥରୁ ବିଚ୍ୟୁତ ହୋଇଯିବା ଅସମ୍ଭବ ନୁହେଁ

**ଏ କାବ୍ୟଟିରେ ତେଣୁ ତାଙ୍କ ବୈପ୍ଳବିକ କାବ୍ୟମାନସର ଦ୍ୱନ୍ଦ୍ୱ ଅତି-ନାଟକୀୟ ଭାବେ ଚିତ୍ରୋନ୍ମୀତ । ସେ କେବଳ ଘଟଣାର ସମ୍ଭାବନାର ସୂତ୍ରଟିକୁ ହିଁ ଖୋଜିଛନ୍ତି—ନିଜେ କୌଣସି ସମାଧାନରେ ପହଞ୍ଚିବାକୁ ଚାହିଁନାହାନ୍ତି । ତେଣୁ ଏହା ଅତ୍ୟନ୍ତ ଆତ୍ମୀୟ ଓ ସ୍ୱାଭାବିକ ହୋଇପାରିଛି । ବସ୍ତୁତଃ ଭାରତୀୟ ସ୍ୱାଧୀନତା-ପରବର୍ତ୍ତୀକାଳରେ ସମଗ୍ର ବିଶ୍ୱର ଭାବରାଜ୍ୟରେ ବିପ୍ଳବର ଯେଉଁ ଦୁଇଟି ଅପାତବିରୋଧୀ**

---

୧୫ । 'ମାଟି ଓ ଲୁଟି'—କୁଞ୍ଜବିହାରୀ ସଞ୍ଚୟନ—୩ୟ ଭାଗ, ପୃ. ୫୬ ।

ମାନଚଣ ପ୍ରକାଶପାଇଛି, ତାହାର କାବ୍ୟ ରୂପରେ 'ମାଟି ଓ ଲତି' କାବ୍ୟଟି ଏକ କାଳଜୟୀ ସୃଷ୍ଟି—ଏଥିରେ ସନ୍ଦେହ ନାହିଁ । ପରିକଳ୍ପନାର ମୌଳିକତାରେ, ବର୍ଣ୍ଣନର ସ୍ୱାଭାବିକତାରେ ଓ ଉପସ୍ଥାପନାର ଚମତ୍କାରିତାରେ ହୃଦୟ-ପରିଶକ୍ତାଳରେ ଏହା ଯେ ଏକ ଅନବଦ୍ୟ କାବ୍ୟ, ଏ କଥା ବିନା ଦ୍ୱିଧାରେ କୁହାଯାଇପାରେ ।

ପଲ୍ଲୀ-ଜୀବନର ନଟୋଳ ଚଣ ଏକ ପଲ୍ଲୀ-ଅଭିମୁଖୀ ଭାଷାରେ ପ୍ରକାଶ କରିବା ଯେତେ କଷ୍ଟକର ହେଲେ ବି କୃଷ୍ଣଚନ୍ଦ୍ରଙ୍କର ତାହା ଅତି ଆପଣାର ଏକ ସମୃଦ୍ଧି ଆଙ୍ଗିକ । ଭାବକୁ ଅତି ନିଷ୍ପଟ, ସ୍ୱଚ୍ଛ ଓ ସରଳ ଗାରେ ପ୍ରକାଶ କରିବାରେ ତାଙ୍କ କାବ୍ୟରେ ଅଛି ଅନନ୍ୟ ସଫଳତା । ସେ ତେଣୁ ଏହି ପର୍ଯ୍ୟାୟରେ ଉତ୍କଟ ଆଧୁନିକତା ନା ବୁଦ୍ଧିବାଦ ଦ୍ୱାରା ଆକ୍ରାନ୍ତ ହେବାକୁ ଯିବାନ୍ତ ନାହିଁ । ଫଳରେ ଅନେକ ଚିରନ୍ତନ ଭାବକୁ ପ୍ରକାଶ କରିବାବେଳେ ତାଙ୍କ ଭାଷା ଅତି ସ୍ୱତଃସ୍ଫୂର୍ତ୍ତି ଭାବେ ତାଙ୍କ ବୋଲ ମାନିଥାଏ । ଉଦାହରଣ ସ୍ୱରୂପ—

"ସଜବାଜ କହେ ସିଧା ଅଙ୍ଗୁଠିରେ କି ଘିଅ ବାହାରେ?
କଂସାରି ଘରର ପାରି କୁଲିବଢେ କେବେ କାନପାଟରେ?" (ପୃ.୪୦)

କମ୍ବା "କୁଅଁ ତାରା ଦପଦପ ପାହୁ ଥିବେ ରାତି
ବାଟୁଅଙ୍କୁ ଅନୁକୂଳ ବୁଝେଇ ପାହାନ୍ତି ।
ଅଗତ୍ୟା କି ଅକୁହା ଗୋଟିକ ମିଁ ଘୁମାଣ
କାଟନ୍ତି କାନ୍ଦଇ 'ପୂତା, ପୂଟଲି ଯେ ମାଣ ।'" (ପୃ.୬୨)

କମ୍ବା "ବଣ୍ଟା ଯ ଜର ମଣିଚର ଭଲପଣେ
ମଣିଷ ପ୍ରେମିକ ଉଦାର ଅଗ୍ରଗଣେ ।
ଏ ନରମଗତ କରମ ଲୁହର ବାଣୀ
କୁଟୀର ଦୁଆରେ ଆଣେ ଦେବତାରେ ଟାଣି ।" (ପୃ. ୦)

ଏପରି ପଲ୍ଲୀ ଅଭିମୁଖୀ ଶୈଳୀ ସହିତ ବୈଦଗ୍ଧ ଶୈଳୀର ସମାହାର କୃଷ୍ଣଚନ୍ଦ୍ରଙ୍କ ଏକ ନିଜସ୍ୱ ପ୍ରକାଶଗତ । ଏଥିରେ ଅକ୍ଷେପ ନଥାଇପାରେ; କିନ୍ତୁ କଣ୍ଟିଡଭାବେ ପ୍ରାଣମୟ ଆବେଗ ରହିଛି । 'ସଞ୍ଚୟନ'ର ପ୍ରକାଶକଙ୍କ ମନ୍ତବ୍ୟ ଏ ଦିଗରୁ ପ୍ରଣିଧାନଯୋଗ୍ୟ — "ଅତିମାତ୍ରାରେ ଆଧୁନିକ ହେବାକୁ ଯାଇ ଅନେକ କବି ଅନୁକରଣସର୍ବସ୍ୱ ଅଥବା ଦୁର୍ବୋଧ ହୋଇପଡୁଛନ୍ତି । ଏହାମାନଙ୍କ ଲେଖାରେ ଆମ କବିତା ପରମ୍ପରାଚ୍ୟୁତ ହେଉଛି; ପୁଣି ଜନପ୍ରିୟତା ହରାଉଛି । ଏହା କାବ୍ୟଧାରାର ସୁସ୍ଥ ଓ ସ୍ୱାଭାବିକ ବିକାଶର ସୂଚନା ନୁହେଁ । ଏହି ଦୁର୍ଦ୍ଦିନରେ ଯେଉଁମାନେ ନୂତନ ପଥ ଖୋଜିବାରେ ଆଗ୍ରହୀ, ସେମାନଙ୍କ ମଧ୍ୟରେ କବି କୃଷ୍ଣଚନ୍ଦ୍ର ଜଣେ । ତାଙ୍କ

ବିଦଗ୍ଧ ମନ ସଂସ୍କୃତ ରୁଚିରେ ମାର୍ଜିତ, ଓ ସରସ; ହୃଦୟସ୍ଥ ପଲ୍ଲୀର ଗୀତରସରେ ସମୃଦ୍ଧ ।" ୧୫ । ଛନ୍ଦର-ପରୀକ୍ଷଣ ଓଡ଼ିଆ ସାହିତ୍ୟରେ ନୂତନ ବାକ୍ୟ ଅର୍ଗାନିକ ନାମରେ ଯେଉଁ ଜଟିଳ ପରୀକ୍ଷା ଓ ଅବୋଧ ପରିପାଟୀ ଅଯଥା ଓଡ଼ିଆ କବିତାର ସ୍ୱଚ୍ଛନ୍ଦ ଗତିକୁ ଖଣ୍ଡିତ କରିଅଛି ସେଥିରେ ପ୍ରଲୋଭିତ ନହୋଇ ଶ୍ରୀ ଦାଶ ଯେ ନିଜ ସ୍ଥିତିର ଅପରିବର୍ତ୍ତନୀୟତା ସାବ୍ୟସ୍ତ କରିଛନ୍ତି ଓ ପାଠକପାଇଁ ବୁଝାମଣାର ଦ୍ୱାର ଉନ୍ମୁକ୍ତ ରଖିଛନ୍ତି— ତାହା ଏ ସାହିତ୍ୟ ପାଇଁ ଏକ ଆଶ୍ୱାସନାର ବିଷୟ ନୁହେଁ କି ? ପୁନଶ୍ଚ ତାଙ୍କ କାବ୍ୟସ୍ୱର କେବଳ ପଲ୍ଲୀ-ବିଚ୍ଛିନ୍ନ-କୃତ୍ରିମ-ସହରଜୀବନ-ସମ୍ପୃକ୍ତ ମଣିଷର ମନରେ ନୁହେଁ, ପ୍ରତ୍ୟେକ ରସଗ୍ରାହୀ ହୃଦୟର ଅନୁରୂପ କାରୁଣ୍ୟ ଓ ଆଲୋଡ଼ନ ସୃଷ୍ଟି କରିବାରେ ଯେ ସକ୍ଷମ ଏହା 'ମାଟି ଓ ଲଟି'ରେ ପ୍ରମାଣିତ ହୋଇପାରିଛି । ୧୬ ।

## ପ୍ରକୃତି ଓ ପରମେଶ୍ୱର :

କବି କୃଷ୍ଣବିହାରୀଙ୍କ ଆଦ୍ୟ କାବ୍ୟପ୍ରୟାସର ଏକମୁଖ୍ୟଭାଗ ପ୍ରକୃତିକୁ ଅବଲମ୍ବନ କରି ପ୍ରକାଶିତ । ଏହା ମାନସିକ ସଙ୍କଟ ଭିତରୁ ପ୍ରକୃତିକୋଳକୁ ଏକ ଭାବବାଦୀ ପଳାୟନ ନୁହେଁ; ବରଂ ପାରଂପରିକ ଭାବେ ପ୍ରକୃତି ସହିତ କବିଚିତ୍ତର ଏକ ସାଙ୍ଗୀକରଣ (identification) କହିଲେ ଠିକ୍ ହେବ । ଘଟଣାକ୍ରମେ ଦ୍ୱିତୀୟ ପୃଥିବୀ ମହାଯୁଦ୍ଧ କାଳରେ (୧୯୩୯-୪୫) ରଚିତ ତାଙ୍କର ଅଧିକାଂଶ କବିତାରେ ପ୍ରକୃତି ସହିତ ଏହି ଏକାତ୍ମଭାବ ସ୍ପଷ୍ଟହେଲେ ମଧ୍ୟ ଏହା ଯୁଦ୍ଧଭୀରୁ ମନର ଏକ ପଳାୟନର ସୂଚକ ସ୍ୱର ନୁହେଁ । ପ୍ରକୃତି ଚେତନାରେ ସେ ସ୍ଥିର ପ୍ରକୃତିର ରୂପରେ ଯେତିକି ମୋହାବିଷ୍ଟ, ତା' ରୁଦ୍ର ଓ ଭୀଷଣ ରୂପରେ ମଧ୍ୟ ସେତିକି ଆକୃଷ୍ଟ । ପ୍ରକୃତିକୁ ଅନ୍ତରଙ୍ଗତାର ସହିତ ଭଲପାଇବା ପାଇଁ ଦୁର୍ଭିକ୍ଷ ବିବର୍ତ୍ତିତ ମଣିଷର ସମୟ ନଥିଲବେଳେ ଶ୍ରୀ ଦାଶ ଯେ କିପରି ଦୀର୍ଘକାଳବ୍ୟାପୀ ଏହି ପ୍ରକୃତିକୁ ନିଜର କରିପାରିଲେ ତାହା ରହସ୍ୟାତ୍ମକ । ଯେ କୌଣସି ଅବସ୍ଥାର ଯେତେ ଭୀତିପ୍ରଦ ହେଲେବି ସେ ପ୍ରକୃତିକୁ କେତେ ଭଲ ପାଉଥିଲେ, ତାହା 'କବି ଓ ପ୍ରକୃତି' ଶୀର୍ଷକ ଏକ ଅଗ୍ରଲେଖରେ ସ୍ପଷ୍ଟ ସୂଚିତ ହୋଇଅଛି । ୧୮ ।

---

୧୬ । 'କୃଷ୍ଣବିହାରୀ ସଞ୍ଚୟନ'—(୨ୟ ଭାଗ) ସେପ୍ଟେମ୍ବର ୧୯୬୦, ମୁଖବନ୍ଧ 'ପଦେ' ପ୍ରକାଶକ ।

୧୭ । କବି ମାନସିଂହଙ୍କ ମନ୍ତବ୍ୟ—ତା ୧୫।୧।୫୪—'କୃଷ୍ଣବିହାରୀ ସଞ୍ଚୟନ' (୩ୟ ଭାଗ) ମୁଖବନ୍ଧ- ପୃ. ଖ ଓ ଗ ।

୧୮ । 'କବି ଓ ପ୍ରକୃତି'—"ମୋ ଗ୍ରାମ ନିକଟରେ ପର୍ବତ ନାହିଁ; କିନ୍ତୁ ପର୍ବତ ଦେଖିବାର ମୋହ କାହିଁକି ଯେ ଏତେ ବେଶି ମୁଁ ବୁଝିପାରେ ନାହିଁ । ପର୍ବତ ଆରୋହଣ ଅତି ସୁଖପ୍ରଦ ବୋଧହୁଏ । ସେଥିପାଇଁ ମହେନ୍ଦ୍ରର ଗଗନସ୍ପର୍ଶୀ ଶୃଙ୍ଗ······ଇତ୍ୟାଦି ।

ତାଙ୍କର ଏକାଧିକ ଭ୍ରମଣ କାହାଣୀରେ ଏହି ପ୍ରକୃତିର ମନୋରମ, ବିଚିତ୍ର ଓ ଭୟଙ୍କର ରୂପର ବିଚ୍ଛୁରିତ ବର୍ଣ୍ଣାଳୀ ଅତି ଚିତ୍ରମୟ ହୋଇଉଠିଛି । ୧୯ । ଏସବୁ ପରିଣତ ସୃଷ୍ଟିରେ ପ୍ରକୃତି ପ୍ରତି ତାଙ୍କ ଦୃଷ୍ଟିଭଙ୍ଗୀ ଅନୁପାତିକ ଓ ଯଥୋଚିତ; କିନ୍ତୁ ଆଦ୍ୟ କାବ୍ୟଚେତନାରେ ତାଙ୍କ ପ୍ରକୃତି ଯେତିକି ମୁଖର, ସେତିକି ଚପଳ । ମୋଟ ଉପରେ ଏ ଦୃଷ୍ଟିଭଙ୍ଗୀରେ ରୋମାଣ୍ଟିକ୍ କାବ୍ୟଭାବନା ଯେତିକି ସୁଲଭ, ବାସ୍ତବବାଦୀ କାବ୍ୟଚେତନା ମଧ୍ୟ ସେତିକି ପ୍ରକଟିତ । ସ୍ୱପ୍ନମୟତା ଓ ବାସ୍ତବବାଦିତା ମଧ୍ୟରେ ଏହି ପ୍ରକୃତି ଚେତନାରେ ଏକ ଚମତ୍କାର ଖରସାମ୍ୟ ସ୍ଥାପିତ ହୋଇଥିବା ଲକ୍ଷ୍ୟ କରାଯିବ । ୧୯ (କ) । ୧୯୩୯ ଠାରୁ ୧୯୪୭ ମଧ୍ୟରେ ରଚିତ ଏହିପରି ଅନେକ ପ୍ରକୃତି ଚିତ୍ରମୂଳକ କବିତା ତାଙ୍କର 'କଳକଲ୍ଲୋଳ' (୧୯୪୭), 'ଝୁଞ୍ଜୁମା' (୧୯୪୬), ଓ 'ନର୍ମଦା'ରେ ସ୍ଥାନ ପାଇଛି; କିନ୍ତୁ ଏସବୁ ଚିତ୍ରରେ କେବଳ ପ୍ରକୃତିର ଫଟୋଗ୍ରାଫିକ୍ ଚିତ୍ର ନାହିଁ; ବରଂ ରହିଛି କବି ହୃଦୟର ଏକ ଅନୁରଣିତ ଆବେଗ— ଯାହା ମୂକ ପ୍ରକୃତିକୁ କରିଛି ମୁଖର । ଶ୍ରୀ ଦାଶଙ୍କ ପାଇଁ ଏ ଦୃଷ୍ଟିରୁ ପ୍ରକୃତି ଏକ ବିରାଟ କାବ୍ୟଗ୍ରନ୍ଥ । ତାଙ୍କର 'କେଦାର ଲକ୍ଷ୍ମୀ', 'ଶାତକୋଣ୍ଡିଆରେ ସନ୍ଧ୍ୟା,' 'ଗୃହିଣୀ', 'ମାର୍ଗଶିର' ଓ 'ଗଛତଳର ଫୁଲ' ଏ ଦୃଷ୍ଟିରୁ ଗୋଟିଏ ଗୋଟିଏ ଚମତ୍କାର ସୃଷ୍ଟି । ଆଜି ବି ମୋ ସ୍ମୃତିରେ ତାଙ୍କ 'ମାର୍ଗଶିର' କବିତାର ପ୍ରକୃତି ସ୍ପନ୍ଦନ ସୃଷ୍ଟି କରେ--

"ସୁନା ଝଲମଲ ହିମ ଛଳଛଳ ଆଜି ଏ ମଧୁର ଉଷାରେ
ମାର୍ଗଶିରଷ ଜନନୀ ଆସିବେ ଶିଶିର ଧବଳ ଭୂଷାରେ

---

୧୯ । 'ମୋ ସ୍ୱପ୍ନର କାଶ୍ମୀର', 'ଲଙ୍କାଯାତ୍ରୀ', 'ଆମେରିକାରୁ ୟୁରୋପ ଆଫ୍ରିକା,' 'ଦୁଇ ଦିଗନ୍ତର ଆକାଶ' ଆଦିରେ ପ୍ରକୃତିଚିତ୍ରଣରେ କବି ଅତ୍ୟନ୍ତ ମୁଖର ।

୧୯ । (କ) 'କଳକଲ୍ଲୋଳ', 'ଆଲୋଚନା'—'ସହକାର' ୨୭/୫ମ ସଂଖ୍ୟା—ଲେଖକ ଅଧ୍ୟାପକ ବିଲୋଚନ ମିଶ୍ର ।

"କିନ୍ତୁ ଆଧୁନିକ କବି ପ୍ରକୃତିର ସନ୍ଧାନ ପାଇଛନ୍ତି ବିଭିନ୍ନ ରୂପରେ । କେତେବେଳେ ସେ ହାସ୍ୟ ଲାସ୍ୟମୟୀ ରହସ୍ୟ ପ୍ରତିମା, ମିଳନର ଆଲୋକ ନିର୍ଝର ତୀରରେ କବି ସହିତ ଲୀଳାରତା; କେବେ ଅତି ପ୍ରଗଳ୍ଭ ଶିଶୁ ଚଞ୍ଚଳ ଓ ଚପଳ । ପୁଣି କେତେବେଳେ ଧ୍ୱଂସସଂହାରିଣୀ ଭୈରବୀ-ପ୍ରଳୟଙ୍କରୀ ସଂହାର-କର୍ମନିରତା । ସେ ସୀମା ମଧ୍ୟରେ ଅସୀମ । ଅନ୍ଧକାର ଭେଦକରି ବାଣୀର ବିଦ୍ୟୁତ୍ ଦୀପ୍ତି ବାଜିଲା ଯାହାର ବକ୍ଷରେ, ସେହି ତ ଅସୀମର ପୂଜାରୀ । ବାଣୀବିଦ ସେହି କବିର ଆବେଗ ଅସୀମକୁ ଦେଲା ରୂପ, ରୂପସୀକୁ ଦେଲା ବାଣୀ, ବାଣୀ ପାଇଲା କଳାକାର ଗତି, ମସୃଣର ଛନ୍ଦ । କବିତା ଏହି ଛନ୍ଦର ସ୍ପନ୍ଦନ, ଅଲିଖିତ ଜଗତର ଅନୁଭୂତି ।"

ସଜଳ ଉଜଳ କୁସୁମ ନୟନେ
ଅନାଇ ବିଶ୍ୱ ଅୟନେ ଅୟନେ
ଭରିବେ ଶାନ୍ତି ଭବନେ ଭବନେ, ହରିବେ ନିଖିଳ ତୃଷାରେ
ଆରତି କରିବେ ସରଜୀ ସରିତେ ରସିବେ ଶୀତଳ ତୁଷାରେ ।''[୨୦] ।

କେବଳ ଛନ୍ଦର କଳଧ୍ୱନିରେ ନୁହେଁ, ପଲ୍ଲୀ ପ୍ରକୃତିର ଜୀବନ୍ତ ଆଲେଖ୍ୟରେ ଏ କବିତାଟି କେତେ ଚିତ୍ତମୟ ତାହା ପଲ୍ଲୀ-ପ୍ରକୃତିକୁ ଚିହ୍ନିଥିବା ପାଠକ ମାନେହିଁ ଅନୁଭବ କରି ପାରିବେ । ମାର୍ଗଶିର ପ୍ରକୃତିର ଏହି ବର୍ଣ୍ଣାଢ଼୍ୟ ବିଭୂତି ତାଙ୍କ କବିତାରେ ଯେଉଁପରି ଏକ ଅଭିଜାତ ଆଟୋପ ସୃଷ୍ଟି କରିଛି, ଗୁହାଳତଳର ଅନାମିତ ଛୋଟ ଫୁଲଟି ମଧ୍ୟ ତାଙ୍କ ଶ୍ରଦ୍ଧାପୂର୍ଣ୍ଣ ଦୃଷ୍ଟିକୁ ଏଡ଼େଇଦେଇ ପାରିନି । ଛୋଟ ଫୁଲଟି ମନରେ କେତେ ସୁନାସ୍ୱପ୍ନର ବଳୟ, କେତେ ଜ୍ୟୋତ୍ସ୍ନାର ଆସକ୍ତି, କେତେ ଆଶାର ଆଲୋକ ଦେଖାଦେଉଛି । ଛୋଟ ଫୁଲଟି ହେଲେ ବି ସେ ମନରେ ଆଶାବାନ୍ଧେ ଯେ ତା'ର ସାମୟିକ ସ୍ଥିତିରେ ମଧ୍ୟ ସେ ମରୁରେ ଅମୃତ ଝରଣା ସୃଷ୍ଟି କରିପାରିବ; ବିଶ୍ୱଜନତାର ସେବାରେ ଜୀବନ କ୍ଷୁଧା ମେଣ୍ଟେଇପାରିବ; ପୁଣି ପ୍ରଜ୍ୱଳର ଦଳନରେ ସେ ସମରଘୋଷଣା ମଧ୍ୟ କରିପାରିବ ।[୨୧] । ଗୁହାଳତଳର ଏ ଫୁଲ ସହିତ ଯେପରି କବିର କାବ୍ୟ ଆଭିମୁଖ୍ୟ ସହିତ ଅତି ନିବିଡ଼ଭାବରେ ସଂପୃକ୍ତ ହୋଇପଡ଼ିଛି । ଏହାହିଁ ତାଙ୍କ କବିତାରେ ଯଥାର୍ଥରେ ପ୍ରକୃତି ସହିତ ଏକ ଆତ୍ମୀକରଣର ସ୍ୱରବିଭବ । ତାଙ୍କ କବିତାରେ ତେଣୁ ପଲ୍ଲୀର ଅସଂଖ୍ୟ ନିତିଦିନିଆ ଚିତ୍ର, ରୂପବିଭବ ଏକ ଚମତ୍କାର ମନନଶୀଳ ରୂପାନ୍ତର ଲାଭକରିଛି । ଯାହାଥିଲା ନିତିଦିନିଆ ତା'ରି ଭିତରେ ଶ୍ରୀ ଦାଶ ନନ୍ଦକିଶୋରଙ୍କ ପରି ପ୍ରାଣ ଓ ଆତ୍ମା ଖୋଜିଛନ୍ତି । ଫଳରେ ଏ କବିତାଗୁଡ଼ିକ ଏତେ ରସାଳ ଓ ଉପଭୋଗ୍ୟ ହୋଇଛି । କବି ଚିନ୍ତାମଣି ମହାନ୍ତିଙ୍କ ପ୍ରକୃତି ପରି ଏହା ପରିଦୃଶ୍ୟମାନ ଯଥାଯଥ ଚିତ୍ର ନୁହେଁ । ଏ ଚିତ୍ର ଅନ୍ତରାଳରେ ଯଥାର୍ଥତଃ ଏକ କାବ୍ୟପୁରୁଷର ଗଭୀର ଅନୁରାଗ ବିଜଡ଼ିତ । ଏଇ ମର୍ମରେ ପଲ୍ଲୀର ପାଟ, ପଲ୍ଲୀର ସଞ୍ଜ ଓ ଗୋଧୂଳି, ପଲ୍ଲୀର ବର୍ଷା ଓ ଶରତଠାରୁ ରୁପର ଉଷ୍ର ପାହାଡ଼, ସମୁଦ୍ର, କେଦାର, ବନ୍ଦିନ—ସବୁ ତାଙ୍କ କବିତାରେ ଜୀବନ୍ତ ହୋଇଉଠିଛନ୍ତି । ଏହି ଚେତନାରେ ପୁଣି ରାଧାନାଥଙ୍କ ପ୍ରକୃତି ବା ରୋମାଣ୍ଟିକ୍ ଯୁଗର କବିମାନଙ୍କ ପ୍ରକୃତି ପରି କେତେ ଇତିହାସ ଓ କାବ୍ୟର ଗନ୍ଧାଧର ଏଇ ପ୍ରକୃତି । 'ଗୌତମ ଧାରା', 'କବିତାଘର' ଆଦି କେତୋଟି କବିତାରୁ ଏହି ଇତିହାସ ଓ

୨୦ । 'ମାର୍ଗଶିର'—ସହକାର ୨୦/୧୦ମ ସଂଖ୍ୟା, ମାଘ ୧୩୪୬ (ଜାନୁଆରୀ ୧୯୪୦) —'କଲକଲ୍ଲୋଳ'ରେ ପରେ ପ୍ରକାଶିତ ।

୨୧ । 'ଗୁହାଳ ତଳ ଫୁଲ' — ସହକାର ୨୧ ଭାଗ/୫ମ ସଂଖ୍ୟା, ଭାଦ୍ର ୧୩୦୮ (ସେପଟେମ୍ବର-୧୯୪୧) ।

ପୌରାଣିକ ଦୃଷ୍ଟି ସଂପନ୍ନତା ବେଶ୍ ଅବବୋଧ କରିହୁଏ । ୧୨ । ପୁଣି ବେଳେବେଳେ ଗଙ୍ଗାଧରଙ୍କ ପ୍ରକୃତ ପରି ତାଙ୍କ ପ୍ରକୃତରେ ମାନବୀକରଣର ସ୍ୱର ବାରିହୋଇପଡ଼େ । ଶ୍ରୀ ଦାଶଙ୍କ 'ଆସ ହେ ବସନ୍ତ' ପଢ଼ିଲାବେଳେ ସଚେତନ ପାଠକ ଗଙ୍ଗାଧରଙ୍କ 'ମଳୟ ଅବାହନ'ଠାରୁ ଦୂରେଇ ରହିପାରେ ନାହିଁ । ୧୩ । ଉଭୟ କାବ୍ୟଚିନ୍ତାରେ ଅଭୁତ ସ୍ୱରସାମ୍ୟ ଲକ୍ଷ୍ୟ କରିଯାଇପାରେ । ପୁଣି କବି ଯେଉଁଠି ଏକ ସୀମିତ ଜଳାଧାରର ରୂପରେ ମୁଗ୍ଧହୋଇ କହନ୍ତି—"ତୁମେ ଏକାକିନୀ ବିଜନ ଯାମିନୀ/ ହେ ଜଳରୂପିଣୀ ପ୍ରଧାନପାଟ, ଆସିଛି ମୁଁ ଏକା ଆଗୋ କାନନକା/ଖୋଲ ଯବନିକା, କରିବା ନାଟ ।" ସେତେବେଳେ ରାଧାନାଥଙ୍କ 'ଚିଲିକା'ର ଆରୋପିତ ପ୍ରିୟାସୁଲଭ ରମଣୀୟ ରୋମାଣ୍ଟିକ୍ ରୂପବିଭବ ପ୍ରତିଭାତ ହୁଏ । ଏ ପରିକଳ୍ପନାରେ ଅଗ୍ରସୂରି ରାଧାନାଥହିଁ କବିଙ୍କ ଦୃଷ୍ଟି-ବଳୟକୁ ଉଦ୍‌ବୁଦ୍ଧ କରିଥିବା ସ୍ପଷ୍ଟ ।୧୪। ସେହିପରି ପଲ୍ଲୀର ସଜ, ପଲ୍ଲୀର ବର୍ଷା, ପଲ୍ଲୀର ଦୋଳପୂର୍ଣ୍ଣିମା ଆଦିର ଚିତ୍ର ଭିତରେ କବି ନନ୍ଦକିଶୋରଙ୍କ କାବ୍ୟଚେତନାକୁ ଅତି ସହଜରେ ସନ୍ଧାନ କରିଯାଇପାରେ । ସଂଧ୍ୟା ଆକାଶରେ ବାଦଲର ଧାରେ ଧାରେ ବିଜୁଳିରେଖା; କୌଣସି ପଲ୍ଲୀବଧୂ ବସି ବିଦେଶରେ ଥିବା ତାର ପତିକଥା ହିଁ ଭାବୁଛି, ନିଜର ଅଙ୍ଗ ଆଭରଣ ତାକୁ ଅଗ୍ନିଠାରୁ ଅଧିକ ଦହନ ଦେଉଛି । କିଏ ପୁଣି ବଉଳମୂଳେ ସଂଜବତୀ ଦେଉ ଦେଉ ତା'ର କେତେ ବାଞ୍ଛିତ କାମନା ମନାସି ବସୁଛି, ବିଧବାର ଆଖିରେ ଲୁହର ଧାର ଶୁଖି ଚକ୍ ଚକ୍ କରୁଛି, ପୁଣି କେଉଁଠି ନୂପୁର ରୁଣୁଝୁଣୁ ନାଦରେ ପଲ୍ଲୀବାଳା ପାଣିମାଠିଆ ଧରି ଫେରୁଛି, ହଳିଆ ଟାକରାମାଣ ଫେରୁଛି ଘରକୁ । ଏ ସବୁ ଚିତ୍ରରେ ଆମେ କବି ନନ୍ଦକିଶୋର ବଳଙ୍କ ପଲ୍ଲୀଭାବନାର ଅବିକଳ ଚିତ୍ର ପାଇବା । କିନ୍ତୁ ପାର୍ଥକ୍ୟ ଏଇଠି—କବି ନନ୍ଦକିଶୋର ପଲ୍ଲୀର ଏକ ଐଶ୍ୱର୍ଯ୍ୟମୟ ବିଭୂତିର ଚିତ୍ର ଦେଖିଥିଲାବେଳେ ଶ୍ରୀ ଦାଶ ପରବର୍ତ୍ତୀ ପରିସ୍ଥିତିରେ ମଣିଷ ମଧ୍ୟରେ ଏକ ବିପର୍ଯ୍ୟସ୍ତର ଚିତ୍ର ସଂଧାନ କରିଛନ୍ତି । ତାଙ୍କ ଦୃଷ୍ଟିରେ ଭାଗବତ ଟୁଙ୍ଗୀରେ ଆଉ ଗୀତାର ଦୁହା ଉଠୁନାହିଁ, ପିଣ୍ଡାରେ ଟାଉଟରମାନେ ବସି ମାମଲାମକଦ୍ଦମା କଥା ଅତି

---

୧୨ । 'ଗୌତମ ଧାରା' (୧୯୪୨ରେ ରଚିତ)—'ନର୍ମଦା'ରେ ଅବସ୍ଥାପିତ—'କୁଞ୍ଜବିହାରୀ ସଂଚୟନ' (୩ୟଭାଗ ପୃ. ୯୭),'କବିତାର୍ଥିର'(୧୯୪୬ରେ ରଚିତ)—ବୁଢ଼ୀଖୋଲର ପ୍ରକୃତ 'ନର୍ମଦା'—'କୁଞ୍ଜବିହାରୀ ସଂଚୟନ',୩ୟ ପୃ.୧୦୬) ।

୧୩ । 'ଆସ ହେ ବସନ୍ତ' (ରଚନା ସମୟ ୧୯୫୧)—'ନର୍ମଦା' ('କୁଞ୍ଜବିହାରୀ ସଂଚୟନ',ପୃ.୧୧୨ ) । "ତବ ଅଭିନନ୍ଦନେ ହସେ ନାଗ କେଶର ଧରି ରେଣୁ ଅଞ୍ଜଳି / ହଂକଳି ମଂଜରୀ / ଡ଼ାକେ ସ୍ୱନେ ମଧୁମୟକର ପ୍ରୀତି ଦୋହର / ପୁଷ୍ପରଦୀପ ଜାଳି ଅଶୋକ ଆନନ୍ଦ. ପଲ୍ଲବ ମରମରେ / ଡ଼ାକେ ଲବେ ଆସ ଘରେ / ଅଳି ଗୁଂଜନେ କହେ ପେନ ମକରନ୍ଦ ।

୧୪ । 'ପ୍ରଧାନ ପାଟ' .(୨୦ । ୨୪୭)—'କଳ କଲ୍ଲୋଳ' )'କୁ,ସଂଚୟନ', ପୃ.୨୫୨) ।

ଗୋପନୀୟସ୍ୱଭାବେ ଆଲୋଚନା କରୁଛନ୍ତି—ଏହାର ବାସ୍ତବତାକୁ ଆଜି ପଲ୍ଲୀଜୀବନରେ ଉପଲବ୍ଧି କରାଯାଇପାରେ । ତେଣୁ ଏହା ନିର୍ଭୁଲଭାବେ କୁହାଯାଇ ପାରେ ଯେ ପଲ୍ଲୀବିଭବର ସ୍ଥିର ରୂପ ବର୍ଣ୍ଣନାରେ କବି ପରମ୍ପରା ସହିତ ଯୋଗସୂତ୍ର ରକ୍ଷାକରିଛନ୍ତି । ପୁଣି ତା'ସହିତ ପଲ୍ଲୀଜୀବନର ଅଧୁନାତନ ଚିତ୍ର ଦେବାରେ ସେ ସ୍ୱାଭାବିକତାକୁ ବାଦ ଦେଇନାହାନ୍ତି । ପ୍ରକୃତି ତାଙ୍କ ପାଇଁ କେତେବେଳେ ଦେବୀ, କେତେବେଳେ ଦାନବୀ, କେତେବେଳେ ସୃଷ୍ଟିର ଅଫୁରନ୍ତ ଉତ୍ସ, ପୁଣି କେତେବେଳେ ପ୍ରଳୟର ପ୍ଲାବନ । "ପ୍ରକୃତି ରାକ୍ଷସୀ, ଧ୍ୱଂସର ଶ୍ମଶାନେ ଉଠେ ବଜ୍ରନାଦେ ହସି । କେବେ ଦେବୀ ଜନନୀ ସେ/କେବେ ସେ ଦାନବୀ / ଧୂମକେତୁ ପୁଚ୍ଛରୁ ବସି ବଜାଏ ଭୈରବୀ" । ୧୫ । ଏହି ପ୍ରକୃତି ପୁଣି ବିଶ୍ୱ ଜନନୀର ସ୍ନେହାଶିଷରେ ସମଗ୍ର ପୃଥିବୀକୁ ପ୍ଲାବିତ କରିଦିଏ । ସୂର୍ଯ୍ୟ ଓ ଚନ୍ଦ୍ରର କିରଣ ତା'ର ଦୁଇଟି ସ୍ନେହକୋମଳ ହାତ—ଉଷ୍ଣ ଓ ଶୀତଳ ।

"ଅମ୍ବର କିରଣେ ଝର ପ୍ଲାବେ ବିଶ୍ୱ ସାରା
ବିଶ୍ୱଜନନୀର ସ୍ନେହେ ସ୍ନେହାଶିଷ ଧାରା ।" ୧୬ ।

ପ୍ରକୃତି ଚେତନାରେ ଏହିପରି ବିଶ୍ୱଜନୀନ ପ୍ରଶସ୍ତ ଭାବଧାରା ତାଙ୍କ କବିତାରେ ସର୍ବତ୍ର ଉଦ୍ଭାସିତ ଏବଂ ଏହି ପ୍ରକୃତି ସମ୍ପର୍କିତ କବିତାଗୁଡ଼ିକ ପାଠକର ଚିନ୍ତାକୁ ଊର୍ଦ୍ଧ୍ୱମୁଖୀ କରିନେବାରେ ସମର୍ଥ । ତାଙ୍କ ପ୍ରକୃତିରେ ନୈରାଶ୍ୟବାଦୀ ଭାବଚେତନା ନାହିଁ । ସବୁଠାରେ ଅଛି ଆନନ୍ଦର ଓ ଆଶାର ବାଣୀ—ଏକ ଅତି ଆସକ୍ତ ଉଚ୍ଛ୍ୱସିତ ସ୍ୱର ।

ଏଇ ପ୍ରକୃତିଚେତନାମୂଳକ କବିତାଗୁଡ଼ିକରେ କେତେବେଳେ ମଧ୍ୟଯୁଗୀୟ ରୀତିକବିମାନଙ୍କ ଅଳଙ୍କାରିତାକୁ ସେ ଅନୁସରଣ କରିଛନ୍ତି । ଅବଶ୍ୟ ଏପରି ଅନୁସରଣରେ ପାରମ୍ପରିକ ଉପମା ଓ ରୂପକକୁ ପରିତ୍ୟାଗ କରିବାକୁ ତାଙ୍କର ଉଦ୍ୟମ ସ୍ପଷ୍ଟ । କିନ୍ତୁ କବିତାର ସ୍ୱଚ୍ଛନ୍ଦ ଗତିଶୀଳତାରେ ଏହା କେତେବେଳେ ବାଧା ସୃଷ୍ଟି କରିଛି । ଉଦାହରଣ ସ୍ୱରୂପ ତାଙ୍କର 'କେଦାରଲକ୍ଷ୍ମୀ' କବିତାରେ ମାଳମାଳ ଉତ୍ପ୍ରେକ୍ଷା ପାଠକ ମନରେ କ୍ଳାନ୍ତି ଆଣେ । ଶ୍ରୀ ଧାନ ଯେଉଁଠି ବର୍ଣ୍ଣନା କରନ୍ତି—

"ବନ୍ଧିଦ ତୂଣୀରେ ସହସା ଭରିଲେ ସ୍ୱର୍ଣ୍ଣ ଶର
ଦଶଦିଗୁଁ ଟାଣି ରବି ବୀରମଣି ଧନୁର୍ଦ୍ଧର ।" ୧୭ (କ) ।

କିମ୍ବା "ରବି ତନ୍ତୁବାୟ/କିରଣ ବାସ ଗୁଡ଼ାଇ ରଙ୍ଗ ଘନ ତନ୍ତ୍ରେ
ତରଙ୍ଗ ତଳପ ପରେ ଢ଼ାଳେ ଦନ ଅନ୍ତେ ।" ୧୭ (ଖ)

୧୫ । 'ଦେବୀ ଓ ଦାନବୀ' —'କଳ କଲ୍ଲୋଳ' ('କୁଂ ସଂ ପୃ.୧୯୬)

୧୬ । 'ଗୋଧୂଳି ଓ ଆତ୍ମା'—୨୮।୧୨।୪୨—'ନର୍ମଦା' ('କୁ ସଂ', ପୃ ୧୧୦)
ଏବଂ 'ଖୋଲ ହୃଦଦ୍ୱାର ଆସିବେ ବିଶ୍ୱଜନନୀ'—'ସହକାର', ୨୨ ଭାଗ, ପୃ. ୩୮୩ ।

୧୭ । (କ) 'କେଦାର ଲକ୍ଷ୍ମୀ'—'ସହକାର' ୨୦ଭାଗ, ପୃ ୭୩୯: 'କଳକଲ୍ଲୋଳ'—
'କୁନ୍ତଳକୁମାରୀ ସଞ୍ଚୟନ', ପୃ: ୨୨୦ (ଖ) 'ଅର୍ଘ୍ୟ'—'କଳକଲ୍ଲୋଳ'

ଏପରି ଆଳଂକାରିକ ମଧ୍ୟଯୁଗୀୟ ରୀତି ଏ ଯୁଗରେ ବିଶେଷ ପ୍ରଭାବ ସୃଷ୍ଟି କରିବାରେ ଅସମର୍ଥ ହୁଏ; କିନ୍ତୁ ପ୍ରକୃତିର ରୂପବର୍ଣ୍ଣନାରେ ତାଙ୍କ କାବ୍ୟ ମାନସର ନିରାଲମ୍ବ କଳ୍ପନା ବେଳେବେଳେ ମଧ୍ୟଯୁଗୀୟ କବିକୁ ବି ଅତିକ୍ରମ କରି ଅତି ଆଧୁନିକ କାବ୍ୟ ଚେତନା ସହିତ ସଂଯୋଗ ସେତୁ ସ୍ଥାପନ କରେ । ଏହିପରି କେତୋଟି କବିତା ମଧ୍ୟରୁ କେବଳ 'ଆଶୀର୍ବାଦ'କୁ ଏଠାରେ ଉଲ୍ଲେଖ କରାଯାଇ ପାରେ । "ଗୁଳୁଗୁଳି ଥିଲି ଓ ତା'ର ପ୍ରକୋପରେ ତରୁଲତାର ଶ୍ୟାମଳଶ୍ରୀ ଝାଉଁଳି ପଡ଼ୁଥିଲା ; ତା'ପରେ ଅକସ୍ମାତ୍ ଆକାଶରେ ଦେଖାଦେଲା ଗମ୍ଭୀର ଓ ମୌନ ଖଣ୍ଡେ ମେଘ । ଗୃହୁଁ ଗୃହୁଁ ସେ ମେଘ ନବ ବର୍ଷାର ଗର୍ଭସନ୍ତାନରେ ନାଭିଦୈତ୍ୟ ପରି ଖ୍ୟାପିତ ଆଉ ରୁଦ୍ରବେଶ ଧାରଣ କରି ନିଜ ବିଦ୍ୟୁତ୍ ଇରମ୍ମଦମୟ ହୋଇ ଉଠିଲା ଓ ଆନନ୍ଦାଶ୍ରୁ ରୂପେ ଅଜାଡ଼ି ଦେଲା ବାରି-ଧାରା । ଗୁଳୁଗୁଳିର ମୃତ୍ୟୁ ହେଲା ।" ଏଇ ସଚରାଚର ଅନୁଭୂତ ପ୍ରାକୃତିକ ବିଷୟକୁ କବି ପ୍ରକାଶ କରିବାରେ ଯେଉଁ ଉନ୍ମୁକ୍ତ କଳ୍ପନାର ଆଶ୍ରୟ ନେଇଛନ୍ତି, ତାହା ଏତେ ଦୂରଗାମୀ ଓ ବ୍ୟାପକ ଯେ କେବଳ ରବୀନ୍ଦ୍ରନାଥଙ୍କ ବୈଶାଖର ଋଦ୍ରଙ୍କର ଚିତ୍ର ସହିତ ତା'ର ସଂଯୋଗସୂତ୍ର ସ୍ଥାପନ କରାଯାଇ ପାରେ ।୬୮। ଏଇ ସ୍ନିଗ୍ଧ ଓ ରୁଦ୍ର ପ୍ରକୃତି ସହିତ ତାଙ୍କ କବି ପ୍ରାଣର ଯେଉଁ ମିଳ ପାଇବା ନିବିଡ଼ ହୋଇ ଉଠିଥିଲା, ତାହାର ଯୋଗସୂତ୍ର ପ୍ରାୟ ୧୯୪୭ ଶେଷ ବେଳକୁ ଛିନ୍ନ ହୋଇଯାଇଛି । ପୁରୀ ସମୁଦ୍ରକୂଳରେ ଦୀର୍ଘଦିନର ଅବସ୍ଥାନ ଓ ଭ୍ରମଣଜନିତ ସ୍ମୃତିକୁ ମନେ ପକେଇ ସେ 'ସାଗର ବିଦାୟ' କବିତାରେ ଘୋର ମାନସିକ ମନ୍ତ୍ରଣା ପ୍ରକାଶ କରିଛନ୍ତି । ପ୍ରକୃତି ସହିତ ସେତିକି ମନର ମେଳ ସ୍ଥାପିତ ହୋଇ ନଥିଲେ, ଏପରି କରୁଣ କାବ୍ୟସ୍ୱର ଉଚ୍ଚାରିତ ହେବା ସମ୍ଭବ ହୋଇନାହିଁ ।୬୯ । ଏହି ବିଦାୟ ବସ୍ତୁତଃ ତାଙ୍କ କର୍ମମୟ ଜୀବନରେ ଅନ୍ୟ ଏକ ସୋପାନ ଅବରୋହଣ ମାତ୍ର; କିନ୍ତୁ ଏହି ସମୟରେ ରଚିତ ତାଙ୍କର ଦୁଇଟି ଖଣ୍ଡକାବ୍ୟ 'ଉତ୍ତୁମା' (୧୯୪୭) ଓ 'ବାରୀ' (୧୯୪୮) ରେ ପ୍ରକୃତି ଚେତନାର ଏକ ପରିପୂର୍ଣ୍ଣ ବିଭବ ପ୍ରକଟିତ ହୁଏ । ଗତ ଶତାବ୍ଦୀରେ ରଚିତ ରାଧାନାଥଙ୍କ 'ଚିଲିକା' ପରି ଏ ଖଣ୍ଡକାବ୍ୟ ଦୁଇଟି ସ୍ୱାଧୀନୋତ୍ତର କାଳରେ ଶ୍ରୀ ଦାଶଙ୍କ କାବ୍ୟ ଚେତନାର ବହୁଦିଗକୁ ସ୍ପର୍ଶ କରି ଗତିଶୀଳ ହୋଇ ଉଠିଛି । ତଥାପି ଖଣ୍ଡକବିତାଗୁଡ଼ିକର ଚୈତନିକ ଦୃଷ୍ଟିଭଙ୍ଗୀ ଏହି ଖଣ୍ଡକାବ୍ୟରେ ସର୍ବଦା ପରିବ୍ୟାପ୍ତ ।

---

୬୮ । 'ଆଶୀର୍ବାଦ'—'କଳକଲ୍ଲୋଳ'—କୁନ୍ତଳା ଦ୍ୱିତୀୟ ସଂସ୍କରଣ ପୃ ୬୯ ।

"ଗୁଳୁଗୁଳି / ଗୁଳାପରି ରୁଦ୍ର ଅତି ସୁନ୍ଦର / ତାର ଚେହେରା; ଅଗ୍ନିର ତୋଳା ତମ୍ବଲୌହ ଗୋଳକପରି / ଦୀପ୍ତ ଓ ଦୃପ୍ତ / ତର୍ଜନ୍ତ ଭ୍ରୂକୁଟିର ଅଙ୍କିତ ତାର ଭ୍ରୂଲତା / ଆଗ୍ନେୟ କେଶରାଶି / ସୁବର୍ଣ୍ଣ ଶସ୍ୟପରି / ହସୁଛି ନୀଳ ଆକାଶରେ / ବଜ୍ର ଅଧରର ହାସ୍ୟେ ହାସ୍ୟେ / ପୁଣି ହୋଇଯାଉଛି / ଅଗ୍ନିରେଣୁ / ଫୁତ୍କାରେ ଫୁତ୍କାରେ ଧୂଳିର ଧବଳ କୁହୁଡ଼ି / ଟାଣିଦେଉଛି ଇନ୍ଦ୍ରଜାଲ ଚନ୍ଦ୍ରାତପ ।"

୬୯ । 'ସାଗରବିଦାୟ' (୧।୧୧।୪୭)—'କଳକଲ୍ଲୋଳ', କୁ, ଦ୍ୱି, ସଂ ପୃ.୬୮

ମାଛକୁଣ୍ଡ ନଦୀର ପ୍ରପାତ ଡୁଡୁମାର ପ୍ରକୃତି ଭୀମ ଓ ଭୟଙ୍କର । କବି ଏହାର ଆକାଶକୁ ପିତା, କାନନକୁ ଜନନୀ ଓ ମାଛକୁଣ୍ଡ ନଦୀକୁ ଏକ ଛଳଛଳ ରୂପମୟୀ କିଶୋରୀ ଭାବରେ କଳ୍ପନା କରିଛନ୍ତି । ପୁଣି ଏହି ନଦୀର ଆରଣ୍ୟ ପ୍ରକୃତି କେଉଁଠି ସାପପରି ଉଦ୍ଧତଫଣା, କେଉଁଠି କେଶରୀ ପରି ଗର୍ଜନଶୀଳା, କେଉଁଠି ମୃଦୁ ତ କେଉଁଠି ପ୍ରଗଳ୍ଭା, କେଉଁଠି ଗେଲ୍ କରି ଗୋଲଗାଲ ଉପଲକୁ ଚୁମ୍ବନ ଦିଏ, ପୁଣି କେଉଁଠି ପ୍ରିୟ-ଦୟିତ କୃଷ୍ଣଶିଳାକୁ ବାହୁବେଷ୍ଟନ କରି ଆଲିଙ୍ଗନ କରେ । ଜନନୀର ବାତ୍ସଲ୍ୟ ପରି କେଉଁଠି 'ତା'ର ଗର୍ଭ ସୁଗମ୍ଭୀର ଏବଂ ବିମାତାର ଦେଖାଣିଆ ସ୍ନେହ ପରି କେଉଁଠି ତାର ଶଯ୍ୟା ସିକତତଳ । ଡୁଡୁମାର ବିପୁଳ ପ୍ରକୃତି ସନ୍ଦର୍ଶନରେ ଆସକ୍ତ କବି ଏକ ଭିନ୍ନ ମାନସ-ରାଜ୍ୟରେ ପଦଚାଳନ କରିଛନ୍ତି—ସେ ରାଜ୍ୟ କେତେବେଳେ ଅତ୍ୟନ୍ତ ପାର୍ଥିବ ତ କେତେବେଳେ ଏକ ଅତୀନ୍ଦ୍ରିୟ ନୈରାଜ୍ୟ । ଏହାରି ମଧ୍ୟରେ ପୁଣି ଏକ ଜାତୀୟ ବେଦନାବୋଧଦ୍ୱାରା କବି ଆକ୍ରାନ୍ତ ହୋଇଛନ୍ତି । ଡୁଡୁମା ଏ ଦେଶ ପାଇଁ ଏକ ଗରୀୟାନ୍ ସମ୍ପଦର ଭାବୀ ଆଭାସ—କିନ୍ତୁ ସେ ସମ୍ପଦର ସନ୍ଧାନ ୧୯୪୬ ଯାଏ ହୋଇନାହିଁ । ଡୁଡୁମାର ଅଧିଷ୍ଠାତ୍ରୀ ଦେବୀ ଧୁହାଇ ଧୁହାଇ କବିଙ୍କ କାନରେ କହିଛନ୍ତି—"ସବୁ ସମ୍ପଦ ସତ୍ତ୍ୱେ ଏ ଦେଶକୁ ଦରିଦ୍ରତା ଆବୋରି ବସିଛି । ଉତ୍କଳରେ କାହିଁକି ବୈଜ୍ଞାନିକ ଦୃଷ୍ଟି ଫିଟୁନାହିଁ, ଯାହାକି ଡୁଡୁମାର ଜଳାଧାରକୁ ଏକ ବିପୁଳ ସମ୍ପଦରେ ରୂପାନ୍ତରିତ କରିପାରିବ ?" ୩୦ । ଏହି ଜାତୀୟ ବେଦନାବୋଧରୁ କବି ଏକ ଅତୀନ୍ଦ୍ରିୟ ରାଜ୍ୟରେ ପହଞ୍ଚିଲାବେଳେ ଡୁଡୁମା ପ୍ରକୃତିରେ ସତ୍ୟ-ଶିବ-ସୁନ୍ଦରର କମନୀୟ ମୂର୍ତ୍ତି ସନ୍ଧାନ କରିଛନ୍ତି । ସେଠି ଜଡ ଓ ଚେତନ ମଧ୍ୟରେ ପ୍ରଭେଦ ନାହିଁ । ସମସ୍ତ ଦୁଃଖ ଓ କ୍ଷୋଭ ଅସୀମରେ ନିମଜ୍ଜିତ । ଏଠି ଆଉ ପାର୍ଥିବ ଜୀବନର ଜଞ୍ଜାଳ, ଦୁଃଖ ବା ଅଶ୍ରୁ ନାହିଁ; ଅଛି ଏକ ଅନିର୍ବଚନୀୟ ଅନୁଭୂତି । ଏହି କାବ୍ୟସ୍ୱରରେ ଶ୍ରୀ ଦାଶ, ମଧୁସୂଦନଙ୍କ ରାଶିରାଶି କବିତା ସହିତ ସ୍ୱରସାମ୍ୟ ସ୍ଥାପନ କରନ୍ତି । ପ୍ରକୃତିର ଅନନ୍ତ ବିଶାଳତା ମଧ୍ୟରେ ମଣିଷର ସମସ୍ତ କ୍ଷୁଦ୍ରତା, ସମସ୍ତ ନୈରାଶ୍ୟ ଓ ଦୁର୍ଭାବନା ସେଠି ହଜିଯାଏ । ଏପରିକି ସହର ଓ କର୍ମଭୂମି ଛାଡ଼ି ଏଇ ପ୍ରକୃତି ଭିତରେ ମିଶିଯିବାକୁ କବିମନ ସ୍ୱାଭାବିକ ବ୍ୟାକୁଳ ହୋଇ ଉଠେ । ପୁଣି ପର ମୁହୂର୍ତ୍ତରେ ବାସ୍ତବତାର ଧକ୍କାରେ ତାଙ୍କର ସମସ୍ତ ବିଭୋର କଳ୍ପନା (ecstatic imagination) ଅନ୍ତର୍ହିତ ହୋଇଯାଏ । ପ୍ରଦେଶଠାରୁ ଦେଶ ପର୍ଯ୍ୟନ୍ତ ତାଙ୍କ ଚିନ୍ତାଧାରା ସ୍ୱତଃ ଗତିଶୀଳ ହୁଏ ଓ ଏହି କ୍ରମରେ ଭାରତର ସ୍ୱାଧୀନତାର ସ୍ୱପ୍ନ ତାଙ୍କ ମନରେ ଉଦାତ୍ତ ହୋଇଉଠେ । ଏହି ଖଣ୍ଡକାବ୍ୟର ଶେଷ ସ୍ତରରେ ତାଙ୍କର ଖେଦ ରାଧାନାଥଙ୍କ 'ଚିଲିକା'ରେ ପ୍ରକାଶିତ ଖେଦପରି ସରସ ଓ ଉପଭୋଗ୍ୟ—

---

୩୦ । 'ଡୁଡୁମା'—

"ଏ ଦେଶର ଦରିଦ୍ରତା ଆଖିତଳେ ଝରାଏ ରକତ
ଦେବତାର ଦେଶେ କିମ୍ପା ରୋଗ ଶୋକ ରାଜୁତି ସତତ ।"

('କୁଞ୍ଜବିହାରୀ ସଞ୍ଚୟନ', ପୃ. ୧୮୪)

"ଫେରିବାକୁ ହେବ ଏବେ ସଂସାରର ସ୍ୱାର୍ଥ କୋଲାହଲେ
ତଣ୍ଡୁଳ, ଲବଣ, ତୈଳ ଇନ୍ଧନର ଜଞ୍ଜାଳ ଗହଳେ ।"
'ଡ଼ୁଡ଼ୁମା' କୁଞ୍ଜବିହାରୀ ସଞ୍ଚୟନ ପୃ. ୧୯୧

ଡ଼ୁଡ଼ୁମା ଏଠାରେ ଚିଲିକା ପରି ସଖା, ବନ୍ଧୁ, ଜାତୀୟ ତୀର୍ଥ, ଏକ ଆଧ୍ୟାତ୍ମିକ-ସତ୍ତା, ବିପଦରେ ଧୈର୍ଯ୍ୟ ଓ ଦୁର୍ଦ୍ଦିନରେ ଆଶ୍ୱାସନା ଭାବରେ ଠିଆହୁଏ । ତା'ର ସ୍ମୃତିରେ କବି ଅନ୍ତରରୁ ସମସ୍ତ ଆଧି, ବ୍ୟାଧି, ଦୁଃଖ, ଶୋକ, ମୋହ ଓ ମୃତ୍ୟୁର ଆଶଙ୍କା ଦୂରେଇ ଯାଏ । 'ଡ଼ୁଡ଼ୁମା' ଖଣ୍ଡ-କାବ୍ୟରେ ତେଣୁ ଏହି କବିଙ୍କ କାବ୍ୟମନନର ଉଚ୍ଚାରଣ ରାଧାନାଥୀ କାବ୍ୟବିଳାସ ସହିତ ଏକ ପକ୍ଷରେ ଚମତ୍କାର ଯୋଗସୂତ୍ର ସ୍ଥାପନକରି ପାରିଛି ଓ ଅପର ପକ୍ଷରେ ଏକ ପ୍ରାଣବାନ୍ ଆବେଗରେ ସମସାମୟିକ ସ୍ୱରକୁ ଧ୍ୱନିତ କରିଅଛି । ତଥାପି ରାଧାନାଥଙ୍କ 'ଚିଲିକା' ଯେ ଏହାର ଅନୁପ୍ରେରଣା, ଏଥିରେ ସନ୍ଦେହ ନାହିଁ ।

ଏହି ପ୍ରାଣିତ ଆବେଗ 'ବାଣୀ' (୧୯୪୮) ଖଣ୍ଡକାବ୍ୟରେ ଏକ ଭିନ୍ନ ବେଦନା-ବୋଧର ପରିଚୟ ବହନ କରେ । 'ବାଣୀ' 'ଡ଼ୁଡ଼ୁମା' ପରି ଉପଭୋଗ୍ୟ ନୁହେଁ; ବରଂ ବ୍ୟଥାର ଓ ଅନୁଶୋଚନାର । ବାଣୀ ପ୍ରପାତ ପରେ ଆସିଛି ଘୋର ବର୍ଷା । ଏ ବର୍ଷା ସହିତ କବି ଅନ୍ତରରୁ ପ୍ରକୃତି ଉପଭୋଗର ସମସ୍ତ ସ୍ପୃହା ଅନ୍ତର୍ହିତ ହୋଇଯାଇଛି ଓ ତା' ସ୍ଥାନରେ ଦେଖାଦେଇଛି ନଦୀମାତୃକ ଓଡ଼ିଶାର ଅଗଣିତ ଦୁର୍ଗତ ଓ ବିପର୍ଯ୍ୟସ୍ତର ଚିତ୍ର । ଏହି ଚିତ୍ରରେ ବନ୍ୟାର ପ୍ରକୋପ, ଦରିଦ୍ର ପଲ୍ଲୀବାସୀର ଦୁରବସ୍ଥା, ଏହିପରି ଅଜସ୍ର ଭାବନା କବି ଅନ୍ତରକୁ ମଥିତ କରିଛି । ତେଣୁ 'ଡ଼ୁଡ଼ୁମା' ପରି ଏ ଖଣ୍ଡକାବ୍ୟରେ ପ୍ରକୃତି ଉପଭୋଗର ଚିତ୍ର ନାହିଁ—ଅଛି ଏକ ବ୍ୟଥିତ ବିଷାଦଗ୍ରସ୍ତ ଚିତ୍ର; ଏହି ପରିସ୍ଥିତିରେ ଯାହା ଅତ୍ୟନ୍ତ କରୁଣ ଓ ଅଶ୍ରୁସଜଳ; କିନ୍ତୁ ପରେପରେ ସେ ଏକ ମାନସିକ ସମାଧାନରେ ପହଞ୍ଚିଛନ୍ତି । ଏ ସମାଧାନ ପୁନଶ୍ଚ 'ଡ଼ୁଡ଼ୁମା' ପ୍ରକୃତି ସନ୍ଦର୍ଶନରେ ଉଦ୍ଭାବିତ ଏକ ଜାତୀୟ ଖେଦର ଅନୁପୂରକ—ଆଶାନନ୍ଦ ଆହ୍ୱାନରେ ଉତ୍କର୍ଣ୍ଣ । କବି ମେଘର ଭୌଗୋଳିକ ପରିକ୍ରମାରେ କବି କାଳିଦାସଙ୍କୁ ଅନୁସରଣ କରିଛନ୍ତି । ଡ଼ୁଡ଼ୁମାର ଦେଖି ଯେଉଁ ଜାତୀୟ ବେଦନା ପ୍ରକାଶ କରିଥିଲେ—ଏ କାବ୍ୟରେ ତା'ର ଏକ ପ୍ରତିଫଳନ ରହିଛି । ବାଣୀର ଏହି ବର୍ଷଣମୁଖର ଭଙ୍ଗୀରେ ପ୍ରକୃତି ଉତ୍କଳୀମାନଙ୍କୁ ସତେ ଯେପରି ଆହ୍ୱାନ କରି କହେ—

"ସୁପ୍ତ ଜାତି ମୋ ଜାଗୁ /ଆଜ କରମେ ବୀର ଧରମର ଦୀପ୍ତ ପରଶ ଲାଗୁ ।
ଫୁଟୁ କଳାଦର୍ଶନେ, ଜ୍ଞାନ ବିଜ୍ଞାନେ ମୋ ଜାତିର ମହାପ୍ରାଣ/ମିଶୁ ବିଶ୍ୱ ହୃଦୟ ସଙ୍ଗୀତଧାରେ/ମୋ ଜାତି ଜୁଆର ତାନେ" । ୩୧ ।

୩୧ । "ଫେରିଲି ଲକ୍ଷେ ରୁଧିର ପ୍ରପାତ ଯେବେ ମୋ ହୃଦୟ କଣେ"—'କୁଞ୍ଜବିହାରୀ ସଞ୍ଚୟନ' ପୃ. ୧୬ ।

ବର୍ଷା-ପ୍ରକୃତିକୁ ଏକ ବୈପ୍ଲବିକ ଜାଗରଣରେ ସଙ୍କେତ ଭାବେ ଗ୍ରହଣ କରି କବି ଜାତୀୟ ଗୌରବର ଅତୀତ ଚିହ୍ନମାନଙ୍କୁ ସ୍ମରଣ କରିଛନ୍ତି । ନିର୍ଜନ ବନରେ ବାଗ୍ରାର ରୂପ ଦେଖୁଦେଖୁ ବର୍ଷାର ଘନଘୋର ଗର୍ଜନ ମଧ୍ୟରେ ସେ ଏକ ବିପ୍ଳବିଣୀ ପ୍ରକୃତିକୁ ସନ୍ଧାନ କରିଛନ୍ତି । ଏହାରି ମଧ୍ୟରେ ସ୍ୱାଭାବିକ ଭାବରେ କେତେ ଦୁଃଖ ଓ ଦୁର୍ଗତିର ଚିତ୍ର ତାଙ୍କ ଅନ୍ତରକୁ କବଳିତ କରିଛି । ତାଙ୍କ କାବ୍ୟର ଅନ୍ତିମ ସ୍ୱର ହେଉଛି—ଚିର ଦୁଲାଳୀ ରୂପସୀ ବାଗ୍ରାକୁ ସେ ଦେଖିବାକୁ ଯାଇଥିଲେ, କିନ୍ତୁ ହୃଦୟରେ ଲକ୍ଷେ ରୁଧିର ପ୍ରପାତ ନେଇ ଫେରିଆସିଲେ ।[୩୨] ତାଙ୍କ ପ୍ରକୃତି ଚେତନାରେ ଏହି କ୍ଷତାକ୍ତ ବେଦନା ସହିତ ତାଙ୍କ କାବ୍ୟସନନ୍ଦ ବେଶ୍ ପ୍ରତିଭାତ ହୁଏ ।

### ଜନଜୀବନ ଓ ପଲ୍ଲୀଚେତନା :

ଶ୍ରୀ ଦାଶଙ୍କ ସ୍ୱାଧୀନତା ପରବର୍ତ୍ତୀ କାବ୍ୟଚେତନାରେ ଯେଉଁ ପରିବର୍ତ୍ତନ ଆସିଛି, ତାହା 'ସେହି ମୋର ପ୍ରେୟସୀ', 'ଲହୁ ଲୋହିତ' ଓ 'ଯେଉଁମାନେ ବଞ୍ଚିଛନ୍ତି' ଶୀର୍ଷକ କବିତା ପର୍ଯ୍ୟାୟରେ ସ୍ପଷ୍ଟ ହୋଇଯାଇଛି । ଏହି ସ୍ପଷ୍ଟତା ୧୯୫୦ ପରେ ଅଧିକ ଭାବରେ ପ୍ରତିପନ୍ନ । ଏଣିକି ତାଙ୍କ କାବ୍ୟସ୍ୱରରେ ବ୍ୟକ୍ତିଗତ ପ୍ରେମପ୍ରଣୟ, କ୍ଷୟକ୍ଷତି, ଖେଦ ଓ କ୍ଷୋଭର ସୁଖକର ପୁଣି ବିଷାଦବିଷଣ୍ଣ ଦ୍ୱୈତସ୍ୱର ଅଧିକ ଶୁଣିବାକୁ ମିଳେ । ୧୯୪୯ରୁ ୧୯୫୨ ମଧ୍ୟରେ ରଚିତ କେତୋଟି କବିତାରେ ପ୍ରେମ ଓ ପ୍ରଣୟର ଚିତ୍ର ବ୍ୟକ୍ତିଗତ ତୃପ୍ତି ଓ ସାର୍ଥକତା ବହନ କରି 'ସେହି ମୋର ପ୍ରେୟସୀ'ର କବିତାଗୁଡ଼ିକରେ ଯେପରି ମନୋଜ୍ଞ ଓ ରସପୂର୍ଣ୍ଣ, ସେହିପରି ୧୯୪୮ରୁ ୧୯୫୫ ମଧ୍ୟରେ ରଚିତ ପାରିବାରିକ ଓ ପଲ୍ଲୀଜୀବନର ବହୁ ବିଷଣ୍ଣ ଓ ଧୂସର ଚିତ୍ରରେ 'ଲହୁ ଲୋହିତ'ର କବିତାଗୁଡ଼ିକ ଅତୁଳ । ଏହି ପର୍ଯ୍ୟାୟରେ ବହୁ କବିତା ତାଙ୍କ ପିତା, ଜନନୀ, ଭ୍ରାତା ଓ ଭଗ୍ନୀଙ୍କ ବିୟୋଗର କରୁଣ ସ୍ୱର ବହନ କରିଛି । ଏ ସ୍ୱର ସହିତ ପୁଣି ପଲ୍ଲୀମଣିଷର ଅଗଣିତ ଦୁଃଖ ଓ ଦୁର୍ଦ୍ଦଶାର ବିଧୁର ଚିତ୍ର ମିଶିଯାଇଛି । ସାଧାରଣ ମଣିଷର ପାହାଡ଼ପରି ଦୁଃଖରାଶିକୁ ସେ ଯେପରି ସହାନୁଭୂତିର ସ୍ୱରରେ ଟେଳେଇ ଦେବାକୁ ଚାହାନ୍ତି । ଲକ୍ଷ୍ୟ କରିବାର କଥା, ସାଧାରଣ ମଣିଷ ସହିତ କବି ମାନସର ଏଇ ଯେନାଯେନର ଭାବ (identification) କେତେ ଅକପଟ ଓ ଜୀବନ୍ତ । 'ନଣ୍ଡାର ଚଟି', 'ହଳିଆ ଗୀତ', 'ବାଇଆଣୀ', 'ଦୁଇଟି ଜୀବନ' ଆଦି କବିତାରେ ଏକ ସର୍ତ୍ତହୀନ ସମବେଦନାର ଉଚ୍ଛଳ ସ୍ରୋତ ପ୍ରତ୍ୟେକ ପାଠକ ମନର ବେଳାରେ ବାଡେଇହୁଏ । ସେ ଯେଉଁଠି ସଦ୍ୟ ବାଲ୍ୟବିଧବା ତାଙ୍କ ନାନୀଙ୍କ ହାତରୁ କାଚ ଭଙ୍ଗାରୁ ଦୃଶ୍ୟ ବର୍ଣ୍ଣନା କରିଛନ୍ତି, ସେଠି ଗାଁଗହଳର ଅଗଣିତ

---

୩୨ । ୧୯୪୮ରେ ପ୍ରକାଶିତ ଏହି କାବ୍ୟର ପ୍ରଥମ ଶୀର୍ଷକ 'ବାଗ୍ରା' ଥିଲେ ବି ପରେ ସଞ୍ଚୟନରେ ଏହାର ଶୀର୍ଷକ 'ଫେରିଲି ଲକ୍ଷେ ରୁଧିର ପ୍ରପାତ ଘେନି ମୋ ହୃଦୟ କଣେ' ଦିଆଯାଇଛି ।

ସମଦଶାପନ୍ନ ନୀରବ, ନିଃସ୍ୱ, ଶୋକକାତର କଣୋଇମାନଙ୍କର ଦାରୁଣ ଯନ୍ତ୍ରଣାର ସ୍ୱର ଶୁଣାଯାଏ । ଏମିତି କେତେ ଝିଅ 'ନୂଆ ଯଉବନରେ ଦୁଃଖ ସାଥେ ଲଢି ଲଢି ପୋକ କଟା କଡିପରି ଝଡ଼ିପଡ଼ୁଛନ୍ତି ।' ୩୩ । ଆମେ ଗାଁଗହଳର ଏଇ ସବୁ ସୀତାମାନଙ୍କର ଖବର ରଖୁନାହେଁ । ଏହିପରି ଧ୍ୱନି ଧ୍ୱନି ଛନ୍ଦରେ ତାଙ୍କ କବିତାରେ ଜନଜୀବନର ଭାଷା ଓ ଭାବ ଜୀବନ୍ତ ହୋଇଉଠିଛି । ପୁଣି 'ନଣ୍ଡାର ଛଟି' କବିତା ଯେପରି ସରଳ ଭାଷାର ଏକ ସଚେତନ ପରୀକ୍ଷା, 'ହଳିଆ ଗୀତ' ସେହିପରି ପଲ୍ଲୀଗୀତ-ଭଙ୍ଗୀରେ ଏକ ଆଧୁନିକ ରଚନା—ଯାହା ଅତି ମାତ୍ରାରେ ସଫଳ ଓ ଉତ୍ତୀର୍ଣ୍ଣ । ପାଦଟୀକାର ଉଦାହରଣମାନଙ୍କରୁ ଏହି ଭାଷାପ୍ରୟୋଗର ସଚେତନ ସଫଳଶୈଳୀ ଲକ୍ଷ୍ୟ କରାଯାଇ ପାରିବ । ୩୪ । ଏହି ଦୃଷ୍ଟିଭଙ୍ଗୀ ବ୍ୟଷ୍ଟି ଓ ସମଷ୍ଟି ଜୀବନର ଅନେକ ଚୂର୍ଣ୍ଣ ଧୂସର କାହାଣୀରେ ଉଚ୍ଛଳ ଓ ଲହୁ ଲୋତକ; ଏଇ ଦୁଃଖ ଓ ବେଦନା ଭିତରେ ଯେଉଁମାନେ ବଞ୍ଚିଛନ୍ତି, ସେମାନଙ୍କ ଆବିଷ୍କାରରେ ସନ୍ଧାନରତ । ଏଇ ଅନୁସନ୍ଧାନରେ ତାଙ୍କ ପରବର୍ତ୍ତୀ ସୃଷ୍ଟି ମୁଖ୍ୟତଃ ୧୯୫୨ଠାରୁ ୫୫ ମଧ୍ୟରେ ରଚିତ କେତୋଟି କବିତା 'ଯେଉଁମାନେ ବଞ୍ଚିଛନ୍ତି'ରେ ସ୍ଥାନିତ ହୋଇଛି । ଏଠି ଓଡ଼ିଶାର ଜନଜୀବନଠାରୁ

---

୩୩ । 'ଗାଁଗହଳର ସୀତା' (୨୧ । ୧ । ୫୧)—'କୁଞ୍ଜବିହାରୀ ସଞ୍ଚୟନ', ୧ମ ଭାଗ, ପୃ. ୧୦୪ ।

୩୪ । ଶ୍ରୀ ଦାଶଙ୍କ 'ନଣ୍ଡାର ଛଟି' ପ୍ରକାଶ ପାଇବା ପରେ ଧାରାବାହିକ ଭାବେ ଏହି ଶିରୋନାମାରେ କେତୋଟି କବିତା 'ଆସନ୍ତାକାଲି'ରେ ପ୍ରକାଶପାଇଥିଲା

(କ) 'ବାଇଆଣୀ' (୨୩।୧୨।୫୧)—"ଯାହାର ଖଟି ଖଟି ଝଡାଇଦେଲି ଯଉବନ/ରକତ ଢାଳିଦେଲି କୋଠିକି କୋଠି ଭରି ଧନ । ଆଉଆଖିରେ ସିଏ ଚୁହୁଁଡ ନାହିଁ / ଯମର ସତେ କେତେ ଅହନ୍ତା ଦେଖି ନେଉନାହିଁ ।" (କୁଞ୍ଜବିହାରୀ ସଞ୍ଚୟନ-ପୃ. ୧୨୩)

(ଖ) 'ହଳିଆଗୀତ' (୧୦।୮।୫୨)—"ସୁନାର ପରବତେ ହୋ ବସିଛୁ ଶାଗୁଣା/ ମଣିଷ ବୋଲି କହେ ଲଗିଛୁ ଦୁଇଡେଣା,/ ହାଡରୁ ରେକେଟି ଖାଉଛୁ ମାଉଁସ/ଧାନ ବୋଲି ଦେଇଥିଲି ଅଗାଡ଼ି ଆଉ ଧୂସ,/କଟାସ ଆଖିରେ ରକତ ଟୋପା ଟୋପା, ଦାନ୍ତ ଯେ କଡ଼ମଡ ହୋ ।"

(ଗ) 'ଦୁଇଟି ଜୀବନ' (୨୮।୮।୫୪)—ପୋଶିହାଁ ଗାମୁଛିର ଚିରା ମେଲି ମେଲି ହୋଇଯାଏ / ତାର ଲଙ୍ଗଳା ଲୋତରା ପିଲାର ପେଟରେ ପିଲେହି ଯେମିତି ବଢୁଥାଏ,"

(ଘ) 'ନଣ୍ଡାର ଛଟି' (୨୧।୨।୫୨)—'ଆସନ୍ତା କାଲି'ରେ ଏ କବିତାଟି ପ୍ରକାଶ ପାଇବା ପରେ ବେଶ୍ ଚାଞ୍ଚଲ୍ୟ ସୃଷ୍ଟି ହୋଇଥିଲା । ପରେ ଧାରାବାହିକ ଭାବେ ଏହି ଶିରୋନାମାରେ କେତେକ କବିତା ପ୍ରକାଶିତ ।

ବିଶ୍ୱର ଦଳିତ ଜନସଂଘର ମୁକ୍ତି ଆକାଙ୍‌କ୍ଷା ଓ ଜୀବନଯୁଦ୍ଧ ପର୍ଯ୍ୟନ୍ତ କବିତାର ବାର୍ତ୍ତା ସମ୍ପ୍ରସାରିତ । କେନିଆର ମୁକ୍ତି ସଂଗ୍ରାମକୁ ଲକ୍ଷ୍ୟକରି ରଚିତ 'ତୁମେ କେବେ ଆଫ୍ରିକା ଦେଖିଛ ?' କିମ୍ବା ଓଡ଼ିଶାର ଦୁର୍ଗତ ଶ୍ରମିକମାନଙ୍କୁ ଲକ୍ଷ୍ୟକରି ରଚିତ 'ଏମାନେ କୋଣାର୍କ ଦେଶର ଲୋକ ନୁହନ୍ତି' କବିତା ଦୁଇଟିରେ ସବୁ ଯୁଗର ଓ ସବୁ କାଳର ମାନବିକ ବେଦନାବୋଧର ସ୍ୱର ଉଚ୍ଚକିତ । ଯେଉଁଠି ସେ ଦେଖିଛନ୍ତି ରକ୍ତାକ୍ତ ଦୁର୍ଦ୍ଦିନ ବା ଯେଉଁଠି ଶାନ୍ତିର କପୋତ ଶ୍ୱେନର ସମ୍ମୁଖୀନ ହୋଇଛି, ସେଠାରେ ତାଙ୍କ ସ୍ୱର ଥରିଉଠିଛି । ପୁଣି ଲକ୍ଷ୍ୟ କରିବାର କଥା, ଏଣିକି କବି ବାକ୍‌ସ୍ପନ୍ଦିତ ଓ ଗଦ୍ୟ କବିତାର ଶୈଳୀକୁ ସଫଳତାର ସହିତ ଆୟତ୍ତ କରିଛନ୍ତି ଏବଂ ତାଙ୍କ କବିତା ଏକ ଭାବଗତ ସିଦ୍ଧି ଆଡ଼କୁ ମୁହାଁଇଯାଇଚି, ଗତିରେ ଅଛି ଅଧିକତର ସ୍ୱାଚ୍ଛନ୍ଦ୍ୟ ଓ ସାବଲୀଳତା ।୩୫ ଏହି ପର୍ଯ୍ୟାୟରେ ତାଙ୍କ କବିତା ସଙ୍ଗୀତ ଓ ଛନ୍ଦର ଆଙ୍ଗିକ ତଥା ଅତୀତର କବିମନକୁ ଛାଡ଼ି ଏକ ନୂତନ ସନ୍ଧାନ ପ୍ରତି ହୋଇଚି ଧାବମାନ । ପ୍ରକୃତିର ଅସଂଖ୍ୟ ବିଭବ ଭିତରେ ଆଉ ସ୍ୱପ୍ନର ଆକର୍ଷଣ ନାହିଁ । ସେହି ନଦୀ ଓ ପ୍ରପାତ ଅଛି କିନ୍ତୁ କବିଙ୍କ ମନ ଧୂମାଚ୍ଛନ୍ନ । ଯୁଗଯନ୍ତ୍ରଣା ଓ ହତାଶା କବିର ମରମୀ ଅନ୍ତରକୁ କବର ଦେଇଛି । ଘୋର ଅନ୍ଧକାରରେ ନିମଗ୍ନ ଏକ ପଥହରା ପକ୍ଷୀ ଯେପରି ଡାକି ଡାକି ଶୂନ୍ୟରେ ଉଡ଼ୁଥାଏ, ସେହିପରି ସେ ଯନ୍ତ୍ରଣାକାତର ଜୀବନ ନେଇ ସ୍ଥିତିର ମୁଗ୍‌ଚିଳିକା ଲୋଡ଼ିଛନ୍ତି । ସେଠି ତେଣୁ ସ୍ୱାଭାବିକ ଭାବେ ରସାଳ କାବ୍ୟ-ମାନସର ସମାଧି ଘଟିଛି ।୩୬। ପରବର୍ତ୍ତୀ କାବ୍ୟଚେତନା ତେଣୁ ଜୀବନଯନ୍ତ୍ରଣାର ସ୍ୱରରେ ଶାଣିତ, ସ୍ଥିତିବାଦୀ ଭାବଧାରାରେ ଉଚ୍ଚକିତ । ଏ ସ୍ୱର ୧୯୫୫ଠାରୁ ୧୯୬୦ ମଧ୍ୟରେ ରଚିତ 'ସନନ୍ଦ', 'ଲୁହଲିପି' ଓ 'ଚିତାଚନ୍ଦ୍ର'ର କବିତାଗୁଡ଼ିକରେ ତୀବ୍ରତର ଜୀବନ ଜିଜ୍ଞାସା ପ୍ରକାଶ କରିଛି ।

'ସନନ୍ଦ'ର କବିତାଗୁଡ଼ିକରେ ଏକ ସ୍ଥିତିବାଦୀ ଘୋଷଣା ଜୀବନର ଶ୍ରେଷ୍ଠ ସନନ୍ଦ ଭାବେ ପ୍ରକାଶିତ । ବୈଷମ୍ୟପିଷ୍ଟ ସମାଜରେ ତଥାପି ମଣିଷ ବଞ୍ଚି ରହିବାକୁ ଚାହେଁ, ଏହାହିଁ ତା'ର ସନନ୍ଦ । ସାମାଜିକ ଆର୍ଥନୀତିକ ବୈଷମ୍ୟର ଚିତ୍ର 'ଦୁଇଟି ଶିଶୁ ଜଣେ ନାରୀ', 'ଏ ଯେ ଆପଣ, ଆପଣଙ୍କ ଛବି', 'କାଶ୍ମୀର ସ୍ୱପ୍ନର ନୁହେଁ ମାଟିର' ଆଦି

---

୩୫ । 'ତୁମେ କେବେ ଆଫ୍ରିକା ଦେଖିଚ' ? (୧୦।୧୨।୫୫), 'ଏମାନେ କୋଣାର୍କ ଦେଶର ଲୋକ ନୁହନ୍ତି' (୨୬।୧୧।୫୪) 'ମୁଁ ଆଉ ଲେଖିବି ନାହିଁ' (୩୧।୮।୫୪) ଯେଉଁମାନେ ବଞ୍ଚିଛନ୍ତି, (କୁ: ବି: ସ: ୧ମ ଭାଗ ପୃ. ୧୬୧ ।

୩୬ । "ବାଦଲର ହାଲୁକା ଡେଣାରେ/ବତାସର ଆବେଗ ହ୍ରଦରେ ଗୋଧୂଳିର ଛୁଇ ମଇଳା ଭେଲ୍‌ଭେଟ୍ ଶେଯରେ ପଡ଼ିଛି ଘୁମାଇ/ଏହିକି ମୋର ଅତୀତର କବିମନ ? × × × ଏକ ପଥହରା ପକ୍ଷୀ/ଏବେ ଡାକି ଡାକି ଶୂନ୍ୟେ ଉଡେ ।"

କେତୋଟି କବିତାରେ ବେଶ୍ ଉଦ୍ଦେଶ୍ୟନିଷ୍ଠ ଭାବରେ ପ୍ରତିପନ୍ନ । ୩୭ । ଏ ସମାଜର ଦୁଇଟି ଶିଶୁ ମଧ୍ୟରୁ ଜଣେ ଡ଼ଲୀଡ଼ଲରେ ତ ଜଣେ ରାସ୍ତା-ଧାରରେ ଶୟନ କରୁଛି, ଲୋକେ ଦୁର୍ଭିକ୍ଷର ଆତଙ୍କରେ ପ୍ରପୀଡ଼ିତ ଅଥଚ ଶେଠ୍ଜୀ ମାଟିତଳ ଘରେ ଶସ୍ୟ ମହଜୁଦ୍ କରି ଏଇ ଦୁରବସ୍ଥାର ସୁଯୋଗ ନେଉଛନ୍ତି; କେଉଁ କାଶ୍ମୀର କୁମାରୀ ଦେହର ଅଫୁରନ୍ତ ସୌନ୍ଦର୍ଯ୍ୟକୁ ତାର ଦାରିଦ୍ର୍ୟ ଉପହାସ କରୁଚି—ସେ ଅନ୍ଧ ରୁଗ୍ଣ ପିତାଙ୍କପାଇଁ ଖୁଦ-କଣିକା ମାଗି ବୁଲୁଚି—ଏହିପରି ସମାଜର ଅଗଣିତ ଉତ୍କଟ ବୈଷମ୍ୟରେ ତାଙ୍କ କାବ୍ୟ-ସନନ୍ଦ ( Poetic Commitment ) ପ୍ରତିଷ୍ଠିତ ହୋଇଛି । କେବଳ ଓଡ଼ିଶା ବା ଭାରତର ଏଇ ଗ୍ଲାନିକର ଆର୍ଥନୀତିକ ବୈଷମ୍ୟରେ ନୁହେଁ, ସମଗ୍ର ମାନବ ଜାତିର ଏଇ ଦୁରବସ୍ଥା ଓ ଦୁର୍ଗତି ତାଙ୍କ କାବ୍ୟ-ଆତ୍ମାକୁ ଆନ୍ଦୋଳିତ କରିଛି । ଏହିପରି ଗୋଟିଏ କବିତା 'ଏ କି ବେନି ଅଗ୍ନିଗିରି ଜ୍ୱଳନ୍ତ ବିଦ୍ରୋହ' ଜାପାନର ଏକ ଦରିଦ୍ର ନାଗରିକ ମସ୍ତିଷ୍କରେ ଜୀବନର କରୁଣ ପରିଣତିର ଚିତ୍ର ବହନ କରିଛି । ନିଜ ପରିବାରର ଉତ୍କଟ ଦାରିଦ୍ର୍ୟରେ ମ୍ରିୟମାଣ ମସ୍ତିଷ୍କରେ ଶେଷରେ ଚରମ ଦୁଃଖ ଓ ବ୍ୟର୍ଥତାରେ ନିଜର ଆଖି ଦୁଇଟିକୁ ତାଡ଼ି ପତ୍ନୀପାଖକୁ ପଠାଇଦେଇଛି—ହୁଏତ ବିକ୍ରୀଲବ୍ଧ ଅର୍ଥରେ ପରିବାର କିଛିଦିନ ଚଳିଯାଇ ପାରିବ । ୩୮ । ଏପରି ଦୁର୍ଲଭ ଚିନ୍ତା ଓ ସତ୍ୟନିଷ୍ଠ ବକ୍ତବ୍ୟ ପ୍ରକାଶ ସଙ୍ଗେ ସଙ୍ଗେ ସମାଜର ସମସ୍ତ ତଥାକଥିତ ଅନ୍ୟାୟ ଓ ଅସମାନତା ବିରୁଦ୍ଧରେ ସେ ବିଦ୍ରୋହର ସ୍ୱର ଉତ୍ତୋଳନ କରିଛନ୍ତି । ଏ ଦେଶର କଳାକାରର ସମାଜ-ଆର୍ଥନୀତିକ ସ୍ଥିତି ଯେ କେତେ ଦୁର୍ବଳ, ପୁଣି କଳା-ସେବକ ପାଇଁ ପ୍ରଶଂସାର ଜୟମାଲ୍ୟ ପରିବର୍ତ୍ତେ ନିନ୍ଦାର ଭ୍ରୂକୁଟୀ ସବୁବେଳେ ଉଦ୍ୟତ ତା'ର ଏକ ବ୍ୟକ୍ତିଗତ ଚିତ୍ର କବି ରାଧାମୋହନ ଗଡ଼ନାୟକଙ୍କ କବିତା 'କଳଙ୍କିତ ମୁହିଁ କଳାକାର'ର ପ୍ରତିବାଦରେ ଶ୍ରୀ ଦାଶଙ୍କ ରଚିତ 'ବନ୍ଦନା ଲାଗି ଜଳୁଚି ଦୀପାଳି' କାବ୍ୟସ୍ୱର ନିର୍ମିତ । ୩୯ । 'ସନନ୍ଦ'ର ସ୍ୱର ସମସାମୟିକ ଭାବେ ରଚିତ 'ଲୁହଲିପି' କବିତାଗୁଡ଼ିକରେ ଆହୁରି ଘନିଷ୍ଠ ହୋଇପାରିଛି । 'ଲୁହଲିପି'ର ମୁଖ୍ୟସ୍ୱର ଏହିପରି ଉତ୍କଟ ଦାରିଦ୍ର୍ୟ ଓ ଆର୍ଥନୀତିକ ଅସମାନତାରେ ପିଷ୍ଟ ଦରିଦ୍ର ଜନତାର ଲୁହ ଓ ଲହୁର କରୁଣ କାହାଣୀ । ଏଇ ଅସମାନତାର କାନ୍ଭାସ୍‌ରେ କେତେ ମହନା, ହାଡ଼ିଆ, ଅଗଣି, ବାନା, ମଲ୍ଲୀ, ନୀଳ, ଭଜନ ଓ ସାଉସୀଙ୍କ ଛବି ନାଚଉଠେ । କାହାର ସ୍ୱାମୀ ବିଦେଶରେ, ଏଣେ ଅସହାୟା ନାରୀଟି ଅଭାବର ଜଅଁର ଭିତରେ ଛଟପଟ ହେଉ ହେଉ ପ୍ରାଣର ସନ୍ତାନଟିକୁ ରୋଗଶଯ୍ୟାରେ ଔଷଧ ଟୋପାଏ ଦେଇପାରୁନି, ସେ ଅସହାୟଭାବେ ଆଖିବୁଜୁଚି; କେଉଁ ବିପତ୍ନୀକ ଉପାସୀ ମୂଲିଆ ପୁତ୍ରାଏ ଛୁଆଙ୍କ ଜଞ୍ଜାଳ

୩୭ । 'ଦୁଇଟି ଶିଶୁ ଜଣେ ନାରୀ' (୧୫।୧୨।୫୫), 'ଏ ଯେ ଆପଣ ଆପଣଙ୍କ ଛବି' (୨୩।୩।୫୫), 'କାଶ୍ମୀର ସ୍ୱପ୍ନର ନୁହେଁ ମାଟିର' (୧୯୫୫) ।

୩୮ । 'ଏ କି ବେନି ଅଗ୍ନିଗିରି ଜ୍ୱଳନ୍ତ ବିଦ୍ରୋହ' (୧୭।୧୨।୫୭) ।

୩୯ । 'ବନ୍ଦନା ଲାଗି ଜଳୁଚି ଦୀପାଳି' (୨୫।୧୨।୫୭)—ଝଙ୍କାର ଫେବୃଆରୀ ୧୯୫୮ ।

ଭିତରେ ସେମାନଙ୍କ ଶୁଣ୍ଡରେ ଆହାର ଦେଇ ନ ପାରି ଜଳକା ହୋଇ ଗୁହିଁରହିଛି, ସେ ଶକ୍ତି ବେମାଣ୍ଟିର ଆଘାତରେ ମୃତ୍ୟୁଶଯ୍ୟାରେ ଉପନୀତ—ଏହିପରି ଦୈବ ଓ ମଣିଷ-କୃତ ବିପଦର ଘୂର୍ଣ୍ଣିରେ ଛଟପଟ ହେଉହେଉ କେତେ ଲୁହ ଓ ଲହୁର ଧାର ଶୁଖି-ଯାଉଛି । ପ୍ରାଣର ବେଳାରେ ଖାଲି ଅସଂଖ୍ୟ ଫେଣର ଦାଗ, ଫମ୍ପାଗୋଟମା ଓ ପୋଡ଼ା କାଠର ଚିହ୍ନ—ଏହାହିଁ ମଣିଷ ଜାତିର ଅସଂଖ୍ୟ ଯୁଗ୍ରପ ମହାଳଚିନ୍ନ—ଯାହାର ଯଥାର୍ଥ କଳାଗତ ଚିତ୍ରରେ ଓ ଆଭିମୁଖ୍ୟଗତ ବଳିଷ୍ଠତାରେ ଶ୍ରୀ ଦାଶଙ୍କ ପୂର୍ବବର୍ତ୍ତୀ ରଚନା 'କଙ୍କାଳର ଲୁହ' ବା 'ମାଟି ଓ ଲଟି' କାବ୍ୟ ସହିତ ଯୋଗସୂତ୍ର ରକ୍ଷାରେ ସମର୍ଥ ହୋଇଛି । ଏଇ ପରିପ୍ରେକ୍ଷୀରେ ସେ ଆଉ ପ୍ରକୃତିର ସୌନ୍ଦର୍ଯ୍ୟଦ୍ରଷ୍ଟା ନୁହନ୍ତି, ବରଂ ପ୍ରକୃତି ମଧ୍ୟରେ ସେ ଏକ ମାନସିକ ଜ୍ୱଳନର ପ୍ରତିରୂପ ଖୋଜିଛନ୍ତି, ଖୋଜିଛନ୍ତି ଜୀବନ ପାଇଁ ଅନୁରାଗ ଓ ଆଶ୍ୱାସନା; କିନ୍ତୁ ମଣିଷର ଅବିଗ୍ରରରେ ସେଇ ବରଦା ପ୍ରକୃତି ମଧ୍ୟ ଅତ୍ୟନ୍ତ ନିଷ୍ଠୁର । ଶ୍ରାବଣର ବାରିପାତ ବା ହେମନ୍ତର ଶିଶିର ଯେଉଁ ପୃଥିବୀକୁ କରେ ଶସ୍ୟ-ଶ୍ୟାମଳ, ସୁନ୍ଦର ଓ ରମଣୀୟ, ସେ ପ୍ରକୃତି ମଧ୍ୟ ବେଳେବେଳେ କୁଟିଳତାରେ ସବୁଜ ଧରଣୀରୁ ଜୀବନରସ ଶୁଷ୍କ କରିଦିଏ, ଶସ୍ୟର ଲାସ୍ୟ ମରିଯାଏ । ତାଙ୍କ ଚିନ୍ତାରେ ସନ୍ଧ୍ୟାର ଗୋଧୂଳି ଓ ମେଘ—ଦୁର୍ଭିକ୍ଷ ଓ ଚିତାଗ୍ନିର ପ୍ରତିଫଳନ; ଶୁକ୍ରତାରା ଯେପରି ମୃତ୍ୟୁର ଅମଙ୍ଗଳଚକ୍ଷୁ—ମଣିଷର ଦୁଃଖରେ ସମଗ୍ର ଆକାଶ ରକ୍ତାକ୍ତ । ୪୦ । ତେଣୁ ମଣିଷଜୀବନ ଓ ପ୍ରକୃତିର ସେ ଆଉ ରୂପଦ୍ରଷ୍ଟା କବି ନୁହନ୍ତି ବରଂ ଅଜସ୍ର ଅଶ୍ରୁ ଓ ଜୀବନର ଧୂସର ଚିତ୍ରରେ ତାଙ୍କ କବିତା 'ଚିତାଚିହ୍ନ', 'ସନନ୍ଦ' ଓ 'ଲୁହଲିପି' ପରି ତାଙ୍କ ଅନ୍ତରର ଅବିରତ ଦହନର ବ୍ୟଥିତ ରୂପଟିକୁ ପ୍ରମୂର୍ତ୍ତି କରିଛି । ସେ ଯାହା ଆଗରୁ କହିଛନ୍ତି— 'ଏକ ପଥହରା ପକ୍ଷୀ ଯେପରି ରାତିର ନିରନ୍ଧ୍ର ତମିସ୍ରାକୁ ଚିରି ତାର ଏକକ କ୍ଷୀଣ ସ୍ୱରକୁ ଶୁଣାଉଛି, ତାର ସେଇ ପ୍ରତିବାଦର ସତ୍ତାକୁ ଘୋଷଣାକରି ଗ୍ଲଲିଛି ।' କିନ୍ତୁ 'ଜଟାୟୁ'ର ଏଇ ପ୍ରଶ୍ନାତ୍ମକ ପ୍ରତିରୋଧକୁ ସମାଜ-ରାକ୍ଷସ ରାବଣ ଶୁଣିନାହିଁ । ସେଇ ଗ୍ଲାନିରେ ଦଗ୍ଧ ହେଲେ ବି ରକ୍ତାକ୍ତ ଜଟାୟୁ ଆଗାମୀର ଆଶ୍ୱାସନାରେ ବଞ୍ଚିରହିଛି ।

ଉତ୍ତର ଷାଠିଏର ରଚନାରେ ଏହି ମାନସିକ ଦହନ ଏକ ଅଦୃଶ୍ୟ ଶକୁନର ଶ୍ୟେନ ଚକ୍ଷୁରେ ଅତ୍ୟନ୍ତ ମ୍ରିୟମାଣ ହୋଇ ବଞ୍ଚିବାର ସ୍ୱରଲିପି ଶୁଣାଇଛି । ମଣିଷ ସଭ୍ୟତା ପାଇଁ ଯେତେ ଆଦର୍ଶର ଆଶୀର୍ବାଣୀ ଯୁଗେ ଯୁଗେ ପ୍ରଚ୍ରରିତ ହୋଇଛି—ସବୁ ଯେପରି ମଣିଷର ସର୍ବଗ୍ରାସୀ ପଶୁ ପ୍ରବୃତ୍ତି ପାଖରେ ଅକାରଣ ହୋଇଯାଇଛି । ତେଣୁ ସେ ଗଠନ ଅପେକ୍ଷା ଧ୍ୱଂସରେ ହୋଇଛି ଅଧିକ ପ୍ରମତ୍ତ । କବିର ଏହି କ୍ଷୋଭ କେବଳ ନିଜ ଦେଶର ପରିସ୍ଥିତିକୁ ଭିତ୍ତିକରି ଗଠିତ ନୁହେଁ ବରଂ ଆନ୍ତର୍ଜାତିକ ଭାବ-ଚେତନାରେ ବେଦନାବିଧୁର ହୋଇଉଠିଛି । ଅତୀତର ନିଷ୍ଠୁର ବିସ୍ମୃତି ଭିତରେ ସେ ଦେଖୁଛନ୍ତି ଏକ

---

୪୦ । 'ସେ ରକ୍ତରେ ରଙ୍ଗୀନ ଏଇ ଆକାଶ'—(୩।୧।୫୪) ('ଚିତାଚିହ୍ନ'—ଲୁ.ବି.ସ. ୨ୟ ଭାଗ ପୃ. ୮୮) ।

କବିନ୍ଧ—ଯେଉଁ କଙ୍କାଳମାଂସ ଓ ଭାଜାରକ୍ତ ପାଇଁ ତା'ର ଲୋମଶ ହାତ ବଢେଇ ଦେଇଛୁ, ଏ ପ୍ରଶ୍ନର ସମାଧାନ ନାହିଁ ଏହା ଏକ ନବାବ ପ୍ରଶ୍ନ ଯାହା ପାଠକ ଶୁଣୁଛରେ ମଣିଷ ସଭ୍ୟତାର ଏକ ଅନ୍ଧାରିତ ଅମାବାସ୍ୟାର ବହୁରୂପ ନେଇ ଠିଆହୁଏ । ଆଜିର ମଣିଷ ଶକୁନ ପରି ମଡାକୁ ଛୁଏଁ ନାହିଁ, କିନ୍ତୁ ଇଗଲ୍‌ର ସମସ୍ତ ହିଂସ୍ର ପକ୍ଷୀ ବ୍ୟବହାର କରି ସଭ୍ୟତାକୁ ଓ ନିରୀହ ମଣିଷମାନଙ୍କୁ ନିର୍ବିକାର ଭାବରେ ଧ୍ୱଂସ କରେ । ଦ୍ୱିତୀୟ ପୃଥିବୀ ମହାଯୁଦ୍ଧବେଳେ ହିରୋସିମା ଉପରେ ଆମେରିକାର ପରମାଣୁ ବୋମା ନିକ୍ଷେପକୁ ଲକ୍ଷ୍ୟ କରି ରଚିତ ଏ କବିତାଟିରେ ଯୁଗ ଯୁଗର ଶାନ୍ତିପ୍ରିୟ କାବ୍ୟମାନସର ଆତଙ୍କିତ ଜୁଗୁପ୍ସା ତଥା ବଳିଷ୍ଠ କାବ୍ୟ ପ୍ରତିକ୍ରିୟା ପ୍ରକାଶ ପାଇଛି । ୪୧ । ଯେଉଁ କାବ୍ୟ ମାନସ ଶ୍ରେଷ୍ଠ ବାସନ୍ତୀତ ଚଢେଇଟିର ବୃନ୍ଧଂଶାରେ ଘୋର ବ୍ୟଥାରେ ଉତ୍କଣ୍ଠିତ ହୁଏ, ସେ ମଣିଷର କୃଷ୍ଟି ଓ ସଭ୍ୟତା ଧ୍ୱଂସକାରୀ ସର୍ବଗ୍ରାସୀ ଏଇ ଯୁଦ୍ଧକୁ ଯେ ସମସ୍ତ ମାନସିକ ବିଶ୍ୱାସ ଓ ଶକ୍ତି ଦେଇ ପ୍ରତିରୋଧ କରିବ, ଏଥିରେ ସନ୍ଦେହ ନାହିଁ । ୪୨ । ମଣିଷ ସଭ୍ୟତାର ଗ୍ଲାନିକର ସମସ୍ତ ଅପରିଣାମଦର୍ଶିତାକୁ ସେ ଅତ୍ୟନ୍ତ ଘୃଣାଚକ୍ଷୁରେ ଦେଖିଛନ୍ତି । ଏଇ ପୁଞ୍ଜୀଭୂତ ଘୃଣା ଓ କାରୁଣ୍ୟର ସୃଷ୍ଟି ତାଙ୍କର ପୂର୍ବବର୍ତ୍ତୀ କବିତା 'ପତନ ନଗର' ଏହି ପ୍ରତିକ୍ରିୟାର ଏକ ଅଗ୍ନିଦୀପ୍ତ ପ୍ରକାଶ । ପତନ ନଗର ଆଜି ସତେ ଯେପରି ନର-ମୁଣ୍ଡର ମାଳୀ ପିନ୍ଧି ସେଇ ମଣିଷ-ଗଢା ସଭ୍ୟତାକୁ ଅପମାନ ଦେବାକୁ ପଶୁତ୍ୱର ଦର୍ପରେ ଠିଆହୋଇଛି । ୪୩ । ମଣିଷ ଏବେ ସମୁଦ୍ର ମନ୍ଥନ କରୁଛି ଏବଂ ଏହି ମନ୍ଥନରେ ସେ ନିଜର କୃଷ୍ଟି ଓ ସଭ୍ୟତାକୁ ଧ୍ୱଂସ କରିବାକୁ ବ୍ୟଗ୍ର ହୋଇପଡୁଛି । ଜୀବନ ଓ ମୃତ୍ୟୁ ଏତେ ପାଖାପାଖି ଯେ କବି ଏକ ଆଟମିକ୍ ମେଘର ଆଶଙ୍କାରେ ଜଡସଡ ହୋଇଛନ୍ତି । ତେଣୁ ପ୍ରୀତି, ମୈତ୍ରୀ ଓ ସୌହାର୍ଦ୍ଦ୍ୟ ଏଇ ସମୁଦ୍ରମନ୍ଥନର ବିଷଜ୍ୱାଳାରେ ଆଜି ଗ୍ରସ୍ତ । ଶ୍ରୀ ଦାସ ଅତି ବ୍ୟାକୁଳ ଭାବରେ ଶେଷକୁ କହୁଛନ୍ତି—'ଏପରି ଜଣେ ମହାତ୍ମା କ'ଣ ଜନ୍ମ ହେବନି, ଯେ କି ଏଇ ବିଷକୁ ଆତ୍ମସାତ୍ କରି ସୃଷ୍ଟିକି ନୂଆ ଗତିଛନ୍ଦ ଦେଇ-

---

୪୧ । 'ଗୋଟାଏ ପ୍ରଶ୍ନ ନବାବ୍ ନିର୍ଦ୍ଦୟ ଅମାବାସ୍ୟାର' (୨୧।୧।୬୧)—'ଫସିଲ୍ ଓ ଫସଲ୍' (ସଞ୍ଚୟନ, ୩ୟ ଭାଗ ପୃ. ୭୫) ।

୪୨ । 'ସହର' (୫।୮।୫୧)—'ଫସିଲ ଓ ଫସଲ'—(ସଞ୍ଚୟନ, ୩ୟ ଭାଗ ପୃ. ୮୦) ।

୪୩ । 'ପତନ ନଗର' (୫।୧୨।୫୧)—'ଝଙ୍କାର' ଫେବ୍ରୁୟାରୀ ୧୯୫୨ରେ ପ୍ରକାଶିତ । "କଙ୍କାଳକୁ କଙ୍କରେ ମିଶାଇ ଲିପିଛି ପ୍ରାସାଦେ/ସ୍ୱେଦକୁ କରିଛି ଅଶ୍ରୁ, ଅଶ୍ରୁକୁ କରିଛି ରକ୍ତଧାର/ସୁଖଶାନ୍ତ ମଣ୍ଡପରେ ଗଦାଇ ଦେଇଛି ହାହାକାର, ହରିଛି ଯେ ସହସ୍ର ଇଙ୍ଗିତ ସୃଜିଛି ବିପ୍ଳବ/ପାଷାଣେ ପାଷାଣେ ହସେ ସେ ଇସ୍ପାତ ହାତ ?"

ପାରିବ ? ଏ ଧରଣୀକୁ ସୁନ୍ଦର ଓ ଅମର କରିପାରିବ ?' ୪୪ । ଏହି ଚିରନ୍ତନ ବାଣୀ ତାଙ୍କ ମାନବବାଦୀ ବିଶ୍ୱତୋମୁଖୀ କାବ୍ୟସ୍ୱରର ଏକ ବଳିଷ୍ଠ ଘୋଷଣା—

"ହେ ନାରୀ, ହେ କାମଧେନୁ/ବସୁନ୍ଧରା ଝରୁଅ ତୋ କରୁଣା ନିର୍ଝର,
କୋଟିକୋଟି ମୃତ ଅମୃତର/ଗୋଟିଏ ଜନନୀ ପୃଥ୍ୱୀ/ଯୁଗେ ଯୁଗେ ରହୁଗୋ ଅମର ।"୪୫

କବି ଶ୍ରୀ ଦାସଙ୍କର ଏହାହିଁ ଯେପରି କାନ୍ତଦର୍ଶୀ କାବ୍ୟସ୍ୱରର ଶେଷ ସୁସ୍ପଷ୍ଟ ଘୋଷଣା ପରି ମନେହୁଏ । ଧୂସର, ମଳିନ ଓ ବିଷାଦଗ୍ରସ୍ତ ପୃଥିବୀ ମଧ୍ୟରେ ତଥାପି କବି 'ବଞ୍ଚିବାର ସ୍ୱରଲିପି' ସନ୍ଧାନ କରେ । ଏହି ସନ୍ଧାନ କେତେ ଚିରନ୍ତନ ଓ କାମ୍ୟ ତାହା ଅଗଣିତ ସୃଷ୍ଟିବାଦୀ ଲେଖକଙ୍କ କଥା ଓ କାବ୍ୟସ୍ୱରରେ ଯୁଦ୍ଧପରବର୍ତ୍ତୀ କାଳରେ ଉଚ୍ଚରିତ ହୋଇଅଛି । ୪୬ ।

କବି ଶ୍ରୀ ଦାଶଙ୍କ ଉତ୍ତର ଷାଠିଏର ଅନେକ ବିକ୍ଷିପ୍ତ ରଚନା 'ଆଲବମ୍'ରେ ସଙ୍କଳିତ ହୋଇଛି । ଏଇ ପର୍ଯ୍ୟାୟରେ ତାଙ୍କ କାବ୍ୟମନନ ଅଗଣିତ ଚିନ୍ତା ଓ ଚେତନାର ଉଦ୍‌ବର୍ତ୍ତନ ଭିତରେ ଯେପରି ବାଟଖୋଜି ପାଇଛି । ଏକ ଚମତ୍କାର ଭାବଗତ ସଫଳତା ସହିତ କଳାଗତ କୃଷ୍ଟିର ସମବାୟରେ ଗଠିତ ଉତ୍ତର ଷାଠିଏର କାବ୍ୟ ସ୍ୱାକ୍ଷର ଏଇ 'ଆଲବମ୍'ରେ କବି କହିଛନ୍ତିଯେ କାଳର କଳଙ୍କି ଲାଗି ତାଙ୍କ ମନ-ଆଲବମ୍‌ରୁ ସବୁ ଅତୀତ ଛବିର ପାହାଚ ଭାଙ୍ଗି ପଡ଼ୁଛି । ସମସ୍ତ ସବୁଜ ଓ ଲୋହିତ ଯେପରି ପାଣ୍ଡୁର ଆଉ ପୀତ ହୋଇଯାଉଚି । ଏଇ ପନ୍ଦରଟିତାର ଇତିହାସ—ଏଇ ଶୁଖିଲା ପାଖୁଡ଼ା ସବୁକୁ ସେ କ'ଣ ତାଙ୍କ ମନର ଯାଦୁଘରେ ସାଇତି ରଖିପାରିବେ ? ତାଙ୍କ କାବ୍ୟମାନସ ସମସ୍ୟୋଚିତ ଏକ ବଳିଷ୍ଠ ଦ୍ୱନ୍ଦ୍ୱର ସମ୍ମୁଖୀନ ହେଲାବେଳେ ସ୍ୱାଭାବିକ ଭାବେ ଅତୀତର ସମସ୍ତ ସବୁଜ ଓ ଲୋହିତ ସୃଷ୍ଟି ପ୍ରତି ତାଙ୍କ ଚିନ୍ତାରେ ଏକ ଅମାପ ଆକର୍ଷଣ ଆସିଚି । ସେ କବି— କଢିଟିଏ ଫୁଟି ଉଠିଲେ, ପରଦୁଃଖରେ ଆଖିରୁ ଟୋପିଏ ଅଶ୍ରୁ ବହିଗଲେ, ଅପନ୍ତରା ଗହୀର କାନ୍ତାରରେ ପ୍ରାଣଲାଗି ପ୍ରାଣ ବୋହିଗଲେ କବି ଦୁନିଆର ସମସ୍ତ ବିଷାକ୍ତ ପରିବେଶ ଓ ସମସ୍ୟାର ଅଭିକ୍ଷେପ ମଧ୍ୟରେ ଯେଉଁ ବିଶ୍ୱାସ ଫେରିପାଏ, ତାହା ତାର ଚିରନ୍ତନ ଭାବଉତ୍ସ ଓ ସମ୍ବଳ । ତାହାହିଁ ସମସ୍ତ ମରୁଭୂମି ଓ ଶ୍ମଶାନର ଯନ୍ତ୍ରଣାକୁ ମୁହୂର୍ତ୍ତିକେ ଭୁଲେଇ ଦେଇ ଜୀବନର କଲମକୁ ଜୀବନ୍ତ ଓ ଜାଗ୍ରତ କରେ । ୪୭ । ଏଇ କଲ୍ୟାଣକାମୀ କାବ୍ୟମାନସ ଜନଶୂନ୍ୟ ନେଭେଦା ଦ୍ୱୀପରେ ଆମେରିକାର ହାଇ-ଡ୍ରୋଜେନ ବୋମା ବିସ୍ଫୋରଣରେ ଆହତ ଓ ରକ୍ତାକ୍ତ ହୋଇପଡେ । ସେ ଯେପରି

୪୪ । 'ସମୁଦ୍ର ମନ୍ଥନ' (୮।୧୨।୬୦)—'ଫସିଲ୍ ଓ ଫସଲ'—କୁ. ସ.—ପୃ. ୭୨ ।
୪୫ । 'ଏ ଧରଣୀ ରହୁ ଗୋ ଅମର'-'ଫସିଲ୍ ଓ ଫସଲ'-କୁ. ସ.-ତୃତୀୟ ଭାଗ ପୃ.୮୩)
୪୬ । 'ବଞ୍ଚିବାର ସ୍ୱରଲିପି ମୋର' 'ନର୍ମଦା' (କୁ. ସ.—ତୃତୀୟ ଭାଗ ପୃ. ୧୩) ।
୪୭ । 'ଆଲବମ୍' (୨୧।୪।୬୪)—କୁନ୍ତଳକୁମାରୀ ସଞ୍ଚୟନ ପୃ. ୨୭୩ ।

ଅନୁଭବ କରେ ତା'ର ଭ୍ରାମ୍ୟମାଣ ଯାଯାବରୀ କୁଢ଼ଆଖଣ୍ଡି ଅଗ୍ନିଶିଖାରେ ଜଳଯାଉଚି ।୪୮। ପୁଣି ସମସ୍ତକମେ 'ରାଜବାଳା'କୁ ମେଘନାଦ ପାଚେରୀ ଭିତରୁ ଉନ୍ମୁକ୍ତ ରାଜରାସ୍ତା ଓ ପ୍ରକୃତ କୋଳକୁ ଟାଣିଆଣି ତା'ର 'ମାଟି ଓ ଲାଟି'ର କ୍ଷୋଭ ଭୁଲଯାଏ—

ମୁହିଁ ରାଜବାଳା/କଣ୍ଠେ ମୋର ନାହିଁ ମାଳା/କଣ୍ଠେ ନାହିଁ ସୁନା/ଘାସଫୁଲମାଳା ।୪୯।

ଏକ ସମତୁଲ ସମାଜ ପ୍ରତିଷ୍ଠାର ଯେଉଁ ଆଶାସ୍ଥିତ ସ୍ୱପ୍ନ ସେ ୧୯୫୫ରେ ଦେଖିଥିଲେ, ଉତ୍ତର-ଷାଠିଏରେ ତାହା ଅନେକ ପରିମାଣରେ ସାର୍ଥକ ହୋଇଛି—ତାହାର ସ୍ୱୀକୃତି ବାଚ 'ରାଜକନ୍ୟା' । ମୋଟଉପରେ ଚିନ୍ତାର ମୌଳିକତାରେ ଭାବର ପ୍ରାଞ୍ଜଳତାରେ ତଥା ପରିଣତ ଶୈଳୀରେ ଉତ୍ତର-ଷାଠିଏର ଏହି କବିତାଗୁଡ଼ିକ ଅତ୍ୟନ୍ତ ସଫଳ । ପୁଣି ଅତ୍ୟାଧୁନିକ କାବ୍ୟ ଆଙ୍ଗିକ ଚିତ୍ରକଳ୍ପ ଓ ପ୍ରତୀକ ପ୍ରୟୋଗରେ ଏ ସମୟର କବିତାରେ ବେଶ ମୌଳିକ ସିଦ୍ଧି ଲକ୍ଷ୍ୟକରାଯିବ । ଭାବସାନ୍ଦ୍ରତାରେ ମଧ୍ୟ ଏ ସମୟର କବିତାଗୁଡ଼ିକ ଖୁବ୍ ସମ୍ପନ୍ନ । ବିଶେଷତଃ ୧୯୬୭—୭୨ ମଧ୍ୟରେ ରଚିତ 'ଚଇତାଳି' ପର୍ଯ୍ୟାୟର ପ୍ରେମକବିତା ଗୁଡ଼ିକରେ ଭାବାବେଗର ଏକକତା ଉପଭୋଗ କରାଯାଇପାରିବ; କିନ୍ତୁ ଏକଦା ଏହି କବିଙ୍କ 'ମାଟି ଓ ଲାଟି' କବିତାର ଗ୍ରାମ୍ୟ ଜୀବନାଲେଖ୍ୟରେ ମୁଗ୍ଧ ହୋଇ ମାନସିଂହ ଯେଉଁ କବିସୁଲଭ ଉଚ୍ଛ୍ୱସିତ ମନ୍ତବ୍ୟ ଦେଇଥିଲେ ତାହା ତାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' (୧୯୬୫)ରେ ପରିବର୍ତ୍ତିତ ହେବାର କୌଣସି କାରଣ ନ ଥିଲେ ମଧ୍ୟ ତାହା କବି କୁଞ୍ଜବିହାରୀଙ୍କ ପରବର୍ତ୍ତୀ ସୃଷ୍ଟିର କଳନାରେ ମାନସିଂହଙ୍କ ଭ୍ରମ ଲାଘବଜନିତ ଏକଦେଶଦର୍ଶୀ ଚିନ୍ତାଧାରାର ପରିଚୟ ବହନ କରେ । ଅନ୍ତତଃ ପାରମ୍ପରିକ କାବ୍ୟଧାରା ସହିତ ଯୋଗସୂତ୍ର ରକ୍ଷାକରି ତାଙ୍କ କାବ୍ୟଚେତନା ଯେ କେତେ ଅତ୍ୟାଧୁନିକ ତାହା ତାଙ୍କର ଉତ୍ତର-ଷାଠିଏର ସୃଷ୍ଟି ପ୍ରତି ନିବିଡ ଦୃଷ୍ଟିପାତ ନକଲେ ଜାଣିହେବନାହିଁ । ଏଇ କାବ୍ୟମାନସରେ ପଲ୍ଲୀର ଯେଉଁ କରୁଣ ବ୍ୟଥିତ ରୂପଟି ସର୍ବଦା ଫୁଟିଉଠିଛି—ତାହାର ଅନ୍ତରାଳରେ କବି ଆତ୍ମାର ସମ୍ବେଦନଶୀଳତା ଓ ବିଦ୍ରୋହର ବାର୍ତ୍ତା କେତେ ଆନ୍ତରିକ ଓ ଶାଣିତ, ତାହା ଏଇ ଉତ୍ତର ଓ ପୂର୍ବ-ଷାଠିଏର ରଚନା 'ଉଆଁସ କହିଁ' ପର୍ଯ୍ୟାୟର କବିତାଗୁଡ଼ିକରୁ ବୁଝିହୁଏ । ଏହା ପୁନଶ୍ଚ ସେଇ 'ମାଟି ଓ ଲାଟି' ବା ପୂର୍ବରୁ ଲିଖିତ ବହୁ ପଲ୍ଲୀଭାବନାର ଏକ ସରଳ ଯୋଗସୂତ୍ର । 'ମାଟି ଓ ଲାଟି'ର ଆସକ୍ତ ସମାଲୋଚକ କବି ମାନସିଂହ 'ଉଆଁସ କହିଁ' ପର୍ଯ୍ୟାୟର 'ସତୀ', 'ନୂତନ ରାଧା', 'ଧାନ ନାନୀ', 'ମଉସାଙ୍କ ବେଉରା' କବିତାଗୁଡ଼ିକ ଉପରେ ଦୃଷ୍ଟିପାତ କରିଥିଲେ ବୋଧହୁଏ ସେଇ ଆତ୍ମିମୂଖ୍ୟର ଏକ ପ୍ରଧାବିତ ରୂପ ଦେଖିପାରିଥାନ୍ତେ । ଆଧୁନିକ ଓଡ଼ିଆ କାବ୍ୟ-କବିତା କ୍ଷେତ୍ରରେ ଗ୍ଲାଲଥିବା ଅବୋଧ

---

୪୮ । 'ଯାଯାବର'—('ଝଙ୍କାର' ଅପ୍ରେଲ ୧୯୭୩)—କୁ. ସ. ପୃ. ୨୬୯ ।
୪୯ । 'ରାଜକନ୍ୟା' ('ଝଙ୍କାର' ଅପ୍ରେଲ ୧୯୭୪)—କୁଞ୍ଜବିହାରୀ ସଞ୍ଚୟନ ପୃ. ୨୮୭ ।

ପରୀକ୍ଷାଠାରୁ ଦୂରରେ ରହି ଏକ ସ୍ୱକୀୟ ଚେଷ୍ଟାରେ ଯେଉଁ କବି ପାଠକମନରେ ଯୋଗ-ସୂତ୍ର ସ୍ଥାପନ କରିପାରେ—ତା'ର ସୃଷ୍ଟି ଉପେକ୍ଷଣୀୟ ନୁହେଁ । କାରଣ ପାଠକଙ୍କ ମନଭିତରେ ସେ ଆପେ ସ୍ଥାନ ନେଇ ହୋଇଥାଏ । ଏ ଦୃଷ୍ଟିରୁ ଜନଜୀବନର ପ୍ରତ୍ୟକ୍ଷୀଭୂତ ରୂପ ଓ ପଲ୍ଲୀ ପ୍ରାଣର ଅନୁକୂଳ ଆଲେଖ୍ୟରେ ତାଙ୍କ କବିତାର ଧାରା ନନ୍ଦକିଶୋର, ଗୋଦାବରୀଶଙ୍କ କାବ୍ୟସ୍ମୃତିକୁ ଜାଗରିତ କରିବା ସଙ୍ଗେ ସଙ୍ଗେ ଏକ ସ୍ୱକୀୟ ମହିମାରେ ଗରିମାମଣ୍ଡିତ ହୋଇଉଠେ ।

**ଆଙ୍ଗିକ ଆଲୋଚନା :**

ତାଙ୍କ କବିତାରେ ଆଙ୍ଗିକ ପରୀକ୍ଷା ପ୍ରାଚୀନ ମଧ୍ୟଯୁଗୀୟ କାବ୍ୟଶୈଳୀର 'ବଙ୍ଗଳାଶ୍ରୀ'ଠାରୁ ଅତ୍ୟାଧୁନିକ ବାକ୍‌ରୀତି, ଶବ୍ଦଭଙ୍ଗୀ, ପଦବନ୍ଧ ଓ ଶବ୍ଦଗ୍ରାସ ପର୍ଯ୍ୟନ୍ତ ପ୍ରଧାବିତ । ବେଳେବେଳେ ଭାବର ଅଣାୟତ୍ତ ଉଚ୍ଛ୍ୱାସରେ ସେ କବିତା ଲେଖୁଲେଖୁ କେବଳ ପଦବନ୍ଧରେ ଗଦ୍ୟ ହିଁ ଲେଖିଛନ୍ତି । ଉଦାହରଣ ସ୍ୱରୂପ 'ମଞ୍ଜରୀ ଖଞ୍ଜୁରି ଖଞ୍ଜୁରି—' 'ଗୋଟାଏ ମଣିଷ କଙ୍କାମାଂସ ଶୀତଳରକ୍ତର', 'ସମୁଦ୍ର ମନ୍ଥନ', 'ନୀରବ କାନ୍ଦୁ କୃଳାନ୍ତ ତା'ର ଅଗ୍ରୁଗାଥା' ଆଦି କବିତା । ଯେତେଦୂର ମନେହୁଏ ଏହି ଶୈଳୀ କବି ରାଉତରାୟଙ୍କ 'ଟେବଲ୍ କବିତାରୁ (୧୯୩୭) ହିଁ ପ୍ରଥମେ ଆରମ୍ଭ ହୋଇ ଓଡ଼ିଆ କବିତାରେ ବିଶେଷ ପ୍ରଭାବ ପକାଇ ପାରିଥିଲା । ଏ ଶୈଳୀକୁ ଉତ୍ତର ଷାଠିଏରେ କବି ଶ୍ରୀ ଦାଶ ଅନୁସରଣ କରି ଓଡ଼ିଆ କବିତାର ବିଶେଷ କିଛି ଆଙ୍ଗିକ ସମୃଦ୍ଧି ଆଣିପାରିଛନ୍ତି ବୋଲି ମନେହୁଏ ନାହିଁ । ଏହା ବସ୍ତୁତଃ ଏକ ଆଙ୍ଗିକ ବିଲକ୍ଷଣ ମାତ୍ର । ୫୦ । ତଥାପି ବାକ୍‌ରୀତି ଓ ଶବ୍ଦଶୈଳୀକୁ ଆୟତ୍ତ କରିବାରେ ତାଙ୍କ କବିତାରେ ଅସାଧାରଣ କୃତିତ୍ୱ ଲକ୍ଷ୍ୟ କରା-ଯାଇପାରେ । ପୁଣି ପ୍ରତୀକ ଓ ରୂପକଳ୍ପ ପ୍ରୟୋଗରେ ମଧ୍ୟ ସେହିପରି ସେ ନୂତନତା ପ୍ରତି ଉନ୍ମୁଖ ଓ ଆସକ୍ତ ହେଲେ ବି ସଫଳତା ହାସଲ କରିପାରିନାହାନ୍ତି । କବି ସ୍ପଷ୍ଟତଃ ନିଜ ସମ୍ପର୍କରେ ଯାହା କହିଛନ୍ତି, ତାହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ—"ଏ ପର୍ଯ୍ୟନ୍ତ ଲିଖିତ ମୋର କବିତା ଗୋଟାଏ ପରୀକ୍ଷା । ନିର୍ଦ୍ଦିଷ୍ଟ ଲକ୍ଷରେ ବା ପରିଣତିରେ ପହଞ୍ଚିପାରିନାହିଁ । କେବେ ପହଞ୍ଚିବ କହିବା ଦୁଷ୍କର । ଏହି ପରୀକ୍ଷା ଓ ପ୍ରୟାସ ମଧ୍ୟରେ ଯତ୍କିଞ୍ଚିତ ହୋଇ-ଅଛୁ, ତହିଁରୁ ବିଷୟାନୁଯାୟୀ ଶୈଳୀର ବୈଚିତ୍ର୍ୟ, ହୁଏତ କମିକ ଭାବାତ୍ମକ ବିକାଶ ଦେଖିବାକୁ ମିଳିବ ।" ୫୧ ।

---

୫୦ । 'ଗୋଟାଏ ମଣିଷ କଙ୍କାରକ୍ତ ଶୀତଳ ମାଂସର' (୧।୩।୭୦) 'ସମୁଦ୍ର ମନ୍ଥନ' (୩।୧୨।୭୦) 'ନୀରବ କାନ୍ଦୁ କୃଳାନ୍ତ ତା'ର ଅଶ୍ରୁଗାଥା' (ଝଙ୍କାର—ଏପ୍ରିଲ୍, ୧୯୭୨)—ଏ କବିତାଗୁଡ଼ିକ 'ଫସିଲ ଓ ଫସଲ' (କୁ. ସ. ର ୩ୟ ଭାଗରେ ଅବସ୍ଥାପିତ) ।

୫୧ । 'କୁନ୍ତିବିହାରୀ ଦାଶଙ୍କ ସଞ୍ଚୟନ', ୩ୟ ଭାଗ—ମୁଖବନ୍ଧ ପୃ. 'ଗ' ।

ଏଇ ପରୀକ୍ଷାରେ ସେ ଅନେକ ସଙ୍ଗୀତ (lyrics) ଓ ଅଣୁକବିତା ( ଅଣୁ ) ମଧ୍ୟ ରଚନା କରିଅଛନ୍ତି । ବିଭିନ୍ନ ସମୟରେ ରଚିତ ଏଇ ସଙ୍ଗୀତ ବା ପ୍ରଗୀତଗୁଡ଼ିକ 'ରାଗିଣୀ'ରେ ଓ ଅଣୁକବିତାଗୁଡ଼ିକ 'ଅଣୁ'ରେ ସଙ୍କଳିତ ହୋଇଛି । ୧୯୬୨-୬୪ ମଧ୍ୟରେ ରଚିତ ଅଣୁ କବିତାଗୁଡ଼ିକ ଦକ୍ଷିଣ ଭାରତ ଭ୍ରମଣ କାଳରେ ବସ୍‌ରେ ରଚିତ । ଶ୍ରେଷ୍ଠ ଶ୍ରେଷ୍ଠ ଭାବନା ଯାହା ମନରେ ହଠାତ୍ ଝଲସିଯାଏ,-ଏଥିରେ ତାକୁ ହିଁ ସହସା ଧରି ରଖିବାର ଅଭିନବ ଚେଷ୍ଟା କରାଯାଇଛି । ଏହି କବିତାଗୁଡ଼ିକରେ ପୁନଶ୍ଚ ଏକ କାବ୍ୟ ଆବେଗର ପ୍ରବହମାନତା ଲକ୍ଷ୍ୟ କରାଯିବ । ଏପରି ଆଙ୍ଗିକ ଉଦ୍ୟମ ଓଡ଼ିଆ ସାହିତ୍ୟରେ ବିଦ୍ୟୁତ୍‌ପ୍ରଭଙ୍କଠାରୁ ଆରମ୍ଭ ହୋଇଥିବା ମନେହୁଏ । ଏହିପରି ବହୁ ପରୀକ୍ଷାରେ ଉତ୍ତର-ଷାଠିଏ କାଳରେ ଶ୍ରୀ ଦାଶ ଏକ କାବ୍ୟିକ ଉତ୍ତରଣ ପହଞ୍ଚିବାର ଅବ୍ୟବହିତ ପୂର୍ବରୁ ତାଙ୍କ ଲେଖନୀ ଚାଳନା ପ୍ରାୟ ବନ୍ଦ ହୋଇଯାଇଛି । ଏବେ ସେ କାବ୍ୟ କବିତା ଅପେକ୍ଷା ଭ୍ରମଣ ବୃତ୍ତାନ୍ତ, ପ୍ରବନ୍ଧ, ଜୀବନୀ ସାହିତ୍ୟ ଓ ସମାଲୋଚନା ଲେଖିବାରେ ସେ ଅଧିକ ମନୋନିବେଶ କରିଛନ୍ତି । ତଥାପି ବେଳେବେଳେ ତାଙ୍କ କଲମରୁ ଯେଉଁ କବିତା ଝରି ଆସୁଛି, ତାହା ଅତ୍ୟନ୍ତ ସୀମିତ ହେଲେ ବି ଉତ୍ତର ସତୁରି କାଳରେ ତାଙ୍କର ଅନ୍ୟତମ ସୃଷ୍ଟି 'ଉପେକ୍ଷିତା' (୫୨) ଓଡ଼ିଆ କବିତା କ୍ଷେତ୍ରରେ ଏଇ ଭାବବିଭୋର କବିର ଆନ୍ତରିକ ପୁରାତନ ମାନବବାଦୀ ବେଦନାବୋଧକୁ ପ୍ରକଟିତ କରେ ।

---

୫୨ । 'ଉପେକ୍ଷିତା'--'ଝଙ୍କାର' ସେପ୍ଟେମ୍ବର ୧୯୭୫—ନାଟ୍ୟକାର କବିଚନ୍ଦ୍ର କାଳିଚରଣଙ୍କ 'ପରଣୀତା' ହିଁ ଏହି ଜୀବନ ନାଟକର ଉପେକ୍ଷିତା ବୋଲି କବି ଏହି କବିତାର ପାଦଟୀକାରେ ଉଲ୍ଲେଖ କରିଛନ୍ତି । ଏହି କବିତା ପ୍ରକାଶ ପାଇବାର ମାସକ ପରେ ଏହି ଉପେକ୍ଷିତା-ପରଣୀତାଙ୍କର ପରଲୋକ ହୋଇ-ଯାଇଛି ।

※ ନିତ୍ୟାନନ୍ଦ ଶତପଥୀ,
ରିଡର, ଉତ୍କଳବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର



## ।। କୁଞ୍ଜବିହାରୀଙ୍କ ପ୍ରୟୋଗବାଦୀ କବିତା ।।

**ଡ଼ଃ ନୀଳାଦ୍ରିଭୂଷଣ ହରିଚନ୍ଦନ**

୧୯୩୬-୩୭ ପରେ ଓଡ଼ିଆ କବିତା କ୍ଷେତ୍ରରେ ଏକ ବ୍ୟାପକ ପରିବର୍ତ୍ତନର ସୂତ୍ରପାତ ଘଟିଛି । କବିର ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀ ଭିତରେ କ୍ରମଶଃ ବାସ୍ତବବାଦୀ ଚେତନା ଫୁଟି ଉଠିଛି । ଫଳରେ କାବ୍ୟର ସୁକୁମାର ପ୍ରଥାସିଦ୍ଧ ବିଷୟବସ୍ତୁଗୁଡ଼ିକ ଅପସୃତ ହୋଇ ତା ସ୍ଥାନରେ ରୁକ୍ଷ ମଳିନ ଜୀବନର ଶୋଭାଯାତ୍ରା ରୂପ ପାଇଛି । ମଣିଷର ଅଶାନ୍ତ ବିକ୍ଷିପ୍ତ ଚିନ୍ତା, କ୍ଳାନ୍ତି, ଅବସାଦ, ଯନ୍ତ୍ରଣାଗ୍ରସ୍ତ ଜଟିଳ ଜୀବନ-ଚର୍ଯ୍ୟା କାବ୍ୟବସ୍ତୁ ଭାବରେ ଗୃହୀତ ହୋଇଛି । ଜୀବନର ଜଟିଳତାର ଉପସ୍ଥାପନ କାବ୍ୟଶୈଳୀକୁ ମଧ୍ୟ ଜଟିଳ କରି ତୋଳିଛି । କାବ୍ୟ ତାର ସ୍ୱଭାବସିଦ୍ଧ ରସାଳତାକୁ ପରିତ୍ୟାଗ କରି ଶୁଷ୍କ ନୀରସତାକୁ ଜୀବନ ଧର୍ମ ଭାବରେ ଗ୍ରହଣ କରି ନେଇଛି । କାରଣ ଜୀବନର ଜଟିଳତା ଏବଂ ବିକ୍ଷିପ୍ତ ଚିନ୍ତାରାଶିକୁ ଆଉ କୌଣସି ସାବଳୀଳ ମାଧ୍ୟମ ଭିତରେ ଧରି ରଖିବା ସମ୍ଭବ ହୋଇନାହିଁ । ଆଙ୍ଗିକର ଜଟିଳତାକୁ ଜଟିଳ ଆଙ୍ଗିକ ମାଧ୍ୟମରେ ସ୍ପଷ୍ଟ ଓ ସହଜ କରି ପ୍ରକାଶ କରିବା ହୋଇଛି ଯୁଗରୁଚିର ଦାବୀ ।

ନୂତନ କବିତାର ଅଭ୍ୟୁଦୟରେ ଯେଉଁମାନେ ଆଗୁଆଣି ଥାଟର ସୈନିକ ଥିଲେ ସେମାନଙ୍କ ମଧ୍ୟରୁ କବି କୁଞ୍ଜବିହାରୀ ଅନ୍ୟତମ । ଗତାନୁଗତିକ ଶୈଳୀରେ ବହୁ ରୋମାଣ୍ଟିକ୍ ଓ ବାସ୍ତବଧର୍ମୀ କବିତାରଚନା କରି ଓଡ଼ିଆ କବିତା କ୍ଷେତ୍ରରେ ସିଦ୍ଧିର ସ୍ୱାକ୍ଷର ଦେଇସାରିଥିଲେ ମଧ୍ୟ ଯୁଗରୁଚିର ଅନୁରୋଧରେ ସେ ନିଜର ଗତିପଥ ବଦଳାଇବାକୁ ବାଧ୍ୟ ହୋଇଛନ୍ତି । କାରଣ କାବ୍ୟସାଧନାରେ ସ୍ଥାଣୁତ୍ୱ ବା ଉଦାସୀନତା ତାଙ୍କ ଜୀବନାଦର୍ଶର ବିରୋଧୀ । ପ୍ରୟୋଗବାଦୀ କବିତାର ସକଳ ବିଷୟବସ୍ତୁ ଓ ଅଧିକାଂଶ ଆଙ୍ଗିକକୁ ନିଜସ୍ୱ କବିତା କ୍ଷେତ୍ରରେ ସେ କିପରି ସାର୍ଥକଭାବେ ଉପସ୍ଥାପନ କରିପାରିଛନ୍ତି, ତାହା ବର୍ତ୍ତମାନ ଦେଖିବାର କଥା ।

ଏ କଥା ସତ୍ୟ ଯେ କୁଞ୍ଜବିହାରୀ ଆଧୁନିକତାର ଅଭିନବ ସ୍ରୋତକୁ ଅନୁଭବ କରିଥିଲେ ମଧ୍ୟ ସେ ସ୍ରୋତ ଭିତରେ ସମ୍ପୂର୍ଣ୍ଣରୂପେ ଭାସିଯିବାକୁ ଇଚ୍ଛା କରିନାହାନ୍ତି । ପରମ୍ପରାର ସୁଦୃଢ଼ ଭିତ୍ତି ଉପରେ ଠିଆ ହୋଇ ନୂତନତ୍ୱର ଆବାହନରେ ଏକ ସ୍ୱତନ୍ତ୍ର

କାବ୍ୟଶିଳ୍ପ ଗଢିବା ତାଙ୍କର ଲକ୍ଷ୍ୟ ହୋଇଛି । ତାଙ୍କର ପ୍ରଗତି ସଚେତନ ମନ ଆଧୁନିକ ମୁକ୍ତ ଛନ୍ଦର ଅବାଧସ୍ୱାଧୀନତା ଓ ସୁଯୋଗକୁ ଗ୍ରହଣ କରିଛି । ଏହା ବାସ୍ତବବାଦୀ ଚିନ୍ତାଧାରାର ସହଜ ପ୍ରକାଶ ଲାଗି ଯେ ସମ୍ପୂର୍ଣ୍ଣ ଉପଯୁକ୍ତ, ତାହା ସେ ତାଙ୍କର ବହୁ କବିତାରେ ପ୍ରୟୋଗ ମାଧ୍ୟମରେ ଦର୍ଶାଇଛନ୍ତି । କିନ୍ତୁ ଗଦ୍ୟଛନ୍ଦକୁ ସେ ଜଟିଳ ଦୁର୍ବୋଧତା ଭିତରେ ହଜାଇ ଦେଇ ନାହାନ୍ତି । ସବୁ କ୍ଷେତ୍ରରେ ତାଙ୍କର ବକ୍ତବ୍ୟ ସ୍ପଷ୍ଟ ଓ ପ୍ରଭାବଶାଳୀ ।

ଶୋଷକର ଶୋଷଣ/ସ୍ୱାଧୀନତାର ଷଡଯନ୍ତ୍ର ବିରୁଦ୍ଧରେ/ଯୁଗ ଯୁଗ ସଂଗ୍ରାମ କରି/ ତୁମେ ଯେ ନିଜକୁ ବଞ୍ଚାଇଛ / ଏ ତୁମର ଜଗତକୁ ଶ୍ରେଷ୍ଠ ଅବଦାନ ।

'ତୁମେ ହିଁ ତୁମର କର୍ତ୍ତା'—ସେ ଏକ ଲୋମଶ ନୀଳ ହାତ

ଶୋଷିତ ସମାଜର କୃଷକ ଓ ଶ୍ରମିକ ପ୍ରତି କବି ପ୍ରାଣରେ ଗଭୀର ବେଦନା ଓ ସହାନୁଭୂତି ସୃଷ୍ଟି ହୋଇଛି । ଯେଉଁମାନଙ୍କ ରକ୍ତରେ ସମାଜ ଗଢା ହୁଏ, ସେମାନେ ଯେ ସମାଜରେ ସମ୍ମାନିତ ଆସନ ପାଇବା ଉଚିତ, ତା ସେ ବିଭିନ୍ନ କବିତାର ପଂକ୍ତି ଭିତରେ ପ୍ରକାଶ କରିଛନ୍ତି । 'ସେ ଏକ ଲୋମଶ ନୀଳହାତ' (୧୯୫୧), 'ସନନ୍ଦ' ଓ 'ଲୁହଲିପି'ର ଅଧିକାଂଶ କବିତା ପ୍ରଗତିଚେତନା ସମ୍ବଳିତ, ଶ୍ରେଣୀ ସଂଘର୍ଷ ଉପରେ ଆଧାରିତ । ୧୯୩୫-୩୬ ପରବର୍ତ୍ତୀ ଓଡ଼ିଆ କବିତା କ୍ଷେତ୍ରରେ ପ୍ରଥମ ଆଧୁନିକତାର ପଦ ସଞ୍ଚରଣ ଘଟିଥିଲା ଏହିପରି ବାସ୍ତବବାଦୀ ଚିନ୍ତାଧାରା ମଧ୍ୟ ଦେଇ । ଲୋକସାହିତ୍ୟର ଅଗ୍ରଗାମୀ ସାରଥୀ ଭାବରେ ଏହି ମାନବ ଦରଦୀ କବିଙ୍କର ସାଧାରଣ ମଣିଷର ଦୁଃଖ ସୁଖ ସହିତ ଜଡ଼ିତ ହେବାର ବହୁ ସୁଯୋଗ ଘଟିଥିଲା । ଏହା କେବଳ ତାଙ୍କର କାର୍ଯ୍ୟାନୁରୋଧରେ ନୁହେଁ, ଅବହେଳିତ ଜନଗୋଷ୍ଠୀ ପ୍ରତି ତାଙ୍କର ଗଭୀର ଆନ୍ତରିକତା ଓ ଉଦାର ଦୃଷ୍ଟିକୋଣ ହେତୁ । ଗ୍ରାମ୍ୟ ପରିବେଶରେ ଗାଁ ଲୋକଙ୍କ ନିତିଦିନିଆ ଅଭାବ, ଅସୁବିଧା ଭିତରେ ବଢି ଆସିଥିବା କବି ପରବର୍ତ୍ତୀ କାଳରେ ମଧ୍ୟ ଗାଁକୁ ଭୁଲି ପାରି ନାହାନ୍ତି । ସହରରେ ବାସକଲା ବେଳେ ସହରୀ ସଭ୍ୟତାର ଚାକଚକ୍ୟ, ଆଧୁନିକ ସୁବିଧା ସୁଯୋଗ ତାଙ୍କ ମନକୁ ଭୁଲାଇ ରଖି ପାରିନାହିଁ । ସବୁବେଳେ ଗୋଟିଏ ପ୍ରଗଲ୍ଭ ଶିଶୁର ଉଲ୍ଲାସ ନେଇ ସେ ଦୌଡ଼ିଛନ୍ତି ଗାଁ ମାଟିକୁ ନଚେତ୍ ସହରର କୁଲିବସ୍ତିକୁ, ଯେଉଁଠି ସେ ମଲାମୁଣ୍ଡିଆ ଲୋକଙ୍କର ଦୁଃଖ ସହିତ ଅନ୍ତରଙ୍ଗ ହୋଇ ପାରିଛନ୍ତି । ଅବହେଳିତ ଜନଗୋଷ୍ଠୀ ମଧ୍ୟରେ ନିଜର ମାନବିକ ଅଧିକାର ସମ୍ପର୍କରେ ସଚେତନତା ସୃଷ୍ଟି କରାଇବା ଓ ଶୋଷକମାନଙ୍କର ସ୍ୱରୂପକୁ ପଦାରେ ପକାଇଦେବା ହୋଇଛି ତାଙ୍କର ଅଧିକାଂଶ ଆଧୁନିକ-ଧର୍ମୀ କବିତାର ଲକ୍ଷ୍ୟ । 'ଫେରିଲି ଲକ୍ଷେ ରୁଧିର-ପ୍ରପାତ ପେନ ମୋ ହୃଦୟରୁ କଣେ', 'ସନନ୍ଦ', 'ପୁନର୍ଜନ୍ମ', 'ଦୁଇଟି ଶିଶୁ ଜଣେ ନାରୀ', 'ଏ ଯେ ଆପଣଙ୍କ ଛବି', 'ଫାଟିଲା ଗ୍ଲୋବ ତା ଆଖିରେ ହେଉଛି ଢଳଢଳ', ତଥାପି ସେ ଚାଲିଅଛି ଏକା, ମହନା ଗୁହିଁଅଛି ଜଳକାପରି, ସେ ଏକ ଲୋମଶ ନୀଳହାତ, ଧୂସ୍ତାର

ମଣିଷ, ହେ ମୋର କବିତା, ଧନ୍ଦା ଓ ଦରିଦ୍ର, ଏକ ନୁହେଁ ତୁମର ପ୍ରାର୍ଥନା, ଲାଞ୍ଛନା, ରିକ୍ସାବାଲା, କୋଇଲା ଖଣିର କୁଲି, ବାଉଶ ସାହିରେ ସନ୍ଧ୍ୟା, ଧୁମାରେ ଗୃଉଳ ଗୋଟିଏ ନାହିଁ, ନାହିଁ ନାହିଁ ତୁମର ଆଲୋକ, ତୁମେ ହିଁ ତୁମର କାହିଁ, ଚଷା ଆଉ କୁଲି, ଝଡର ସହସ୍ର ପଦଧ୍ୱନି ପ୍ରଭୃତି କବିତା ଗୁଡ଼ିକରେ ଶ୍ରେଣୀ ଚେତନାର ବହୁବିଧ ପ୍ରତିଫଳନ ଘଟିଛି ।

ଉଡ଼ିଯାଏ ଗୁଡ଼ି ଧୂଆଁ ବାଣ
ପୁଞ୍ଜିପତି ନିଃଶବ୍ଦ ମଠର
ଦରପୋଡ଼ା ସିଗାରେଟ ପଡ଼ି
ଜଳେ କନ୍ଥା କବିଟା ତୋହର ।

( 'ରାସ୍ତାର ମଣିଷ'-ସେ ଏକ ଲୋମଶ ନୀଳହାତ )

କୁଞ୍ଜବିହାରୀ ମୁଖ୍ୟତଃ ମାନବବାଦୀ କବି । ମଣିଷ ଆତ୍ମାର ଲାଞ୍ଛନାରେ ସେ ଗଭୀର ଆଘାତ ପାଇଛନ୍ତି । ଗୋଟିଏ ଦିଗରେ ସାମାଜିକ ବୈଷମ୍ୟ, ଅନ୍ୟ ଦିଗରେ ଆର୍ଥନୀତିକ ବୈଷମ୍ୟ ଯୋଗୁଁ ମଣିଷ ଜୀବନର ଚରମ ବିପର୍ଯ୍ୟୟ ତାଙ୍କ ଲେଖନୀରେ ଝଡ ତୋଳିଛି । ଦୁଃଖୀ ମଣିଷ ପାଇଁ ସ୍ୱତଃ ଝରି ଆସିଛି କବିର ଅଶ୍ରୁ ଅର୍ଘ୍ୟ । ପ୍ରକୃତି ଜଗତ ଭିତରେ ମଧ୍ୟ ବହୁ ସମୟରେ ସେ ମଣିଷର ବିକଳରୂପଟିକୁ ଆବିଷ୍କାର କରି ବସିଛନ୍ତି ।

"ତା ପରେ ଦେଖାଗଲା/ସନ୍ଧ୍ୟାର ସେଇ ମେଘ/ଦୁର୍ଭିକ୍ଷର ଚିତାଗ୍ନି/ରକ୍ତ ଆଉ ଅଶ୍ରୁର ହ୍ରଦ/ଶୁକ୍ରତାରା ଯେପରିକି/ମୃତ୍ୟୁର ଅମଙ୍ଗଳ ଚକ୍ଷୁ/ ଅଲକ୍ଷି ଗୁଳି ପରି ତାର ଅଭିଶାପ/ଫଟାଇଛି ଏଇ ଭୂମି-/କୃଷକର ଛାତି / ସେଇ ରକ୍ତରେ ଯେପରି ରଙ୍ଗୀନ ହୋଇଛି ଏଇ ଆକାଶ । ( ସେଇ ରକ୍ତରେ ରଙ୍ଗୀନ ଏଇ ଆକାଶ—ଚିତା ଚନ୍ଦ୍ର )

ଆଧୁନିକ ଜୀବନର ଅସମାପ୍ତ ଅଶାନ୍ତି ଓ ବିପର୍ଯ୍ୟୟ କବିର ଚିତ୍ତକୁ ଦ୍ୱିଧା ବିଖଣ୍ଡିତ, ବହୁବିକ୍ଷିପ୍ତ କରିପକାଇଛି । ଶ୍ରେଷ୍ଠବିତ୍ତ ଅସଂଖ୍ୟ ସମସ୍ୟାରେ ସେ ଜର୍ଜରିତ । ଦୈନନ୍ଦିନ ଜୀବନର ଛିନ୍ନ ସଂଘାତମୟ ବୈଚିତ୍ର୍ୟ ବହୁ ସମୟରେ ସ୍ପଷ୍ଟତର । ଏ ଯୁଗର ବିପର୍ଯ୍ୟସ୍ତ ସାମାଜିକ, ରାଜନୈତିକ ଏବଂ ଅର୍ଥନୈତିକ ପରିସ୍ଥିତିରେ ସେ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଛି । ବାରମ୍ବାର ଆହତ, ବିପର୍ଯ୍ୟସ୍ତ ମନ ସବୁଠାରୁ ସତ୍ୟବୋଲି ଗ୍ରହଣ କରିନେଇଛି ଖଣ୍ଡିତ କଠିନତାକୁ । ତେଣୁ ଦୈନନ୍ଦିନ ସଂଗ୍ରାମର ରୂଢ଼ତା ଭିତରେ ସେ ହୋଇ ଉଠୁଛି ଛିନ୍ନମୂଳ । ଗତାନୁଗତିକ ସମାଜ ବିରୁଦ୍ଧରେ ତାର ନିର୍ଘୋଷ କ୍ରୋଧ ତାକୁ ସମାଜଠାରୁ ବିଚ୍ଛିନ୍ନ କରି ତୋଳୁଛି । ତାର ଚିନ୍ତାଧାରା ଗଡ଼ଡାଳିକା ପ୍ରବାହରେ ପ୍ରବାହିତ ବିଶ୍ୱର ବୋଧଠାରୁ ହୋଇପଡ଼ୁଛି ଭିନ୍ନ । ଏଇ ପରିପ୍ରେକ୍ଷୀରେ ସେ ବେଳେ ବେଳେ ହୋଇ ପଡ଼ୁଛି ନିଃସଙ୍ଗ । ଏକ ନିଃସଙ୍ଗ ଅସହାୟତା କ୍ରମେ ତାର ମନପ୍ରାଣକୁ

ଆଚ୍ଛନ୍ନ କରି ବସୁଛନ୍ତି । କୁଞ୍ଜବିହାରୀଙ୍କ କେତେକ କବିତାରେ ଏଇ ବିଚ୍ଛିନ୍ନ ଭାବନା ବା ବିଚ୍ଛିନ୍ନତାବୋଧ ଲକ୍ଷିତ ହୁଏ ।

ଯୁଗଯନ୍ତ୍ରଣାଗତ ଚିତ୍ତବିକ୍ଷେପର ମୂଳ ଏତେ ଗଭୀର ଯେ ତାର ସନ୍ଧାନ ପାଇବା ସାଧାରଣ ଲୋକପକ୍ଷରେ ଅସମ୍ଭବ । ମଣିଷର ଭିତରସାମ୍ରାଜ୍ୟର ଭୟଙ୍କର ରୂପ ସେ ନିଜେ ଅନୁଭବ କରିବାକୁ ଅସମର୍ଥ । ଏତକବେଳେ କବି ଆଧୁନିକ କ୍ଷୟିଷ୍ଣୁଶୀଳ ଜୀବନର ଏଇ ଚରମ ସତ୍ୟଟିକୁ ପ୍ରକାଶ କରିବା ଲାଗି ଆଗେଇ ଆସିଛନ୍ତି । କାରଣ ଯୁଦ୍ଧ-କାଳୀନ ଓ ଯୁଦ୍ଧୋତ୍ତର ମାନବଜୀବନର ବିଶୃଙ୍ଖଳ ବିପର୍ଯ୍ୟସ୍ତ ରୂପଟି ତାର ବେଦନାକୁ ଗଭୀରଭାବେ ଆଲୋଡ଼ିତ କରିଛି । ବିଶ୍ୱମାନବର ଖଣ୍ଡିତ ତୁଚ୍ଛତା, ବସ୍ତୁ ବିକ୍ଷିପ୍ତ ଚିନ୍ତାଧାରା, ଅନାସ୍ଥାପ୍ରବୃତ୍ତି, ଦିଗ୍‌ଭ୍ରାନ୍ତ ଅନ୍ୱେଷଣ, ବିପୁଳ ମୂଲ୍ୟକ୍ଷୟକୁ ମହତ ସାହିତ୍ୟ ଭାବରେ ଗଢି ତୋଳିବାର ଉଦ୍ୟମ କରି ପାଉଣ୍ଡ୍‌, ଏଲ୍‌ଏଟ୍‌ ସଫଳକାମୀ ହେବାପରେ ଏହା ଏକ ଆନ୍ତର୍ଜାତିକ ଚେତନା ଭାବରେ ପ୍ରତ୍ୟେକ ଆଧୁନିକ ସାହିତ୍ୟିକକୁ ପ୍ରଭାବିତ କରିଛି । ଓଡ଼ିଶାର କ୍ରାନ୍ତିକାରୀ କାବ୍ୟ-ସ୍ରଷ୍ଟାମାନେ ଏହି ଚେତନାଠାରୁ ଦୂରେଇ ରହି ପାରିନାହାନ୍ତି । ଏଇ ନୂତନ କାବ୍ୟ ସରଣୀର ପ୍ରଥମଦଳର ଯାତ୍ରୀ ଭାବରେ କୁଞ୍ଜବିହାରୀ ନିଜକୁ ପ୍ରତିଷ୍ଠା କରିପାରିଛନ୍ତି ।

ପ୍ରୟୋଗବାଦୀ ଓଡ଼ିଆ କବିତାର ପ୍ରାଥମିକ ଅବସ୍ଥାରେ ଆଧୁନିକତାର ଚିହ୍ନ-ସ୍ୱରୂପ ଗଦ୍ୟଛନ୍ଦ ବ୍ୟାପକଭାବରେ ବ୍ୟବହୃତ ହୋଇଛି । କୁଞ୍ଜବିହାରୀ ଏହି ଛନ୍ଦକୁ କିପରି ପ୍ରଭାବଶାଳୀଭାବରେ ପ୍ରୟୋଗ କରି ପାରିଛନ୍ତି ତାହା ପୂର୍ବେ ଦର୍ଶାଯାଇଛି । କିନ୍ତୁ ତାଙ୍କର ଭାଷା ପ୍ରୟୋଗର ଆଉ ଏକ ବୈଶିଷ୍ଟ୍ୟ ଲକ୍ଷ୍ୟ କରିବାର କଥା । ସେ ମୂଳତଃ ଜଣେ ଗୀତଧର୍ମୀ କବି ହେଲେ ଲିଖି ସମ୍ପୂର୍ଣ୍ଣ ଗଦ୍ୟଛନ୍ଦ, ଏପରି କି କଥିତ ଗଦ୍ୟଛନ୍ଦ ବ୍ୟବହାର କରିବାରେ କୁଣ୍ଠା ପ୍ରକାଶ କରିନାହାନ୍ତି । ଅନେକ ସମୟରେ କବିତାଗୁଡ଼ିକୁ ଅନ୍ତଛନ୍ଦ ଶ୍ରୁତିମଧୁର କରି ତୋଳିଥିଲେ ମଧ୍ୟ ପୂରାପୂରି ଗଦ୍ୟରେ ଲେଖିବା ବୋଧହୁଏ ତାଙ୍କପାଇଁ ଭାବପ୍ରକାଶ ଲାଗି ଅଧିକ ସୁଯୋଗ ଆଣି ଦେଇଛି । ଏଇ ପାର୍ଥକ୍ୟ ଦୁଇଟି କବିତାଂଶର ଉଦ୍ଧୃତିରୁ ସ୍ପଷ୍ଟ ହୋଇପାରିବ ।

ବେଙ୍କାର / ବିଫଳଚେଷ୍ଟା ଦୁହିଁଥିବ ତମ ଅନ୍ତନାଡ଼ୀ / ଘୋରତର ନିର୍ଯାତନା ଦେଇଥିବ ଜାଳି / ଆବାଳ୍ୟ ପଠିତ ନୀତ / ଦରିଦ୍ରର ଆଗେ ଯାହା ଘେଟ୍ୱେଏ ପାଚେରୀ / ଅପବାଦ ଅପମାନ ରୋଧିବାର ଏକମାତ୍ର ପନ୍ଥା ହରିକେଙ୍କ ।

( 'ଏକ ଟେନ ଅଗ୍ନିଗିରି ଜ୍ୱଳନ୍ତ ବିଦ୍ରୋହ'—ସନନ୍ଦ )

ଏହିପରି କେତେକ କବିତା ଗଦ୍ୟ-ପଦ୍ୟର ସମନ୍ୱୟରେ ଏକ ଚମତ୍କାର ଶିଳ୍ପସୌଷ୍ଠବ ଲାଭ କରିଛି । ଏହାର ଆବୃତ୍ତିଧର୍ମିତା ଓ ଶ୍ରୁତିମାଧୁର୍ଯ୍ୟ ପାଠକ ମନରେ

ଗମ୍ଭୀର ରୂପ ସୃଷ୍ଟି କରିବାକୁ ସମର୍ଥ । ଏଥିରେ କବିଙ୍କର ବକ୍ତବ୍ୟମଧ୍ୟ ସୁସ୍ପଷ୍ଟ ଓ ସୁଦୃଢ଼ । କିନ୍ତୁ ଏପରି ଛନ୍ଦକୁ ସେ ସବଁତ୍ର ବ୍ୟବହାର ନ କରିବାର କାରଣ ହେଉଛି ବାସ୍ତବଧର୍ମୀ କବିତାଗୁଡ଼ିକ ସାଧାରଣ ଚିତ୍ତରେ ସଚେତନତା ସୃଷ୍ଟି ଲାଗି ଉଦ୍ଦିଷ୍ଟ । ଯଦି ସାବଲୀଳ ଶୃତିମାଧୁର୍ଯ୍ୟ ଭିତର ଦେଇ କବିତା କେବଳ ଆନନ୍ଦ ଦାନ କରିପାରେ ଏବଂ ସମାଜର ପରିବର୍ତ୍ତନ ଲାଗି ପାଠକ ମନରେ ଗମ୍ଭୀର ପ୍ରତିକ୍ରିୟା ତଥା ଆଲୋଡ଼ନ ସୃଷ୍ଟି କରି ନ ପାରେ, ତାହାହେଲେ କବିର ଉଦ୍ଦେଶ୍ୟ ବ୍ୟର୍ଥ ହେବ । ତେଣୁ ଶ୍ରୋତା ବା ପାଠକକୁ କଥିତ ଭାଷାରେ ସମାଜର ଏହି ନିଷ୍ଠୁର ବୈଷମ୍ୟକୁ ବୁଝାଇବାକୁ ପଡ଼ିବ । ସେ ଯେପରି ଅନୁଭବ କରିବ ଜଣେ ଅନ୍ତରଙ୍ଗ ଲୋକ ତାର ଆଖି ଖୋଲି ଦେଇ ବାସ୍ତବ ସତ୍ୟକୁ ଦେଖାଇ ଦେଉଛି । ଅନ୍ୟାୟ ଅବିଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାଲାଗି ତାକୁ ପ୍ରରୋଚିତ କରୁଛି । ଏହି ଦୃଷ୍ଟିରୁ କଥିତ ଗଦ୍ୟଛନ୍ଦରେ କବିତା ରଚନା କରି ମଧ୍ୟ କୁନ୍ତଳାଙ୍କୁ କମ୍ ସଫଳତା ଅର୍ଜନ କରିନାହାନ୍ତି ।

ମୁଖେ ମୁଖେ ନଅଙ୍କର ଆତଙ୍କ/ନୈରାଶ୍ୟର ଘନଚ୍ଛାୟା/ଶୂନ୍ୟକୁ ଅନାଇ/ ଶତଶତ ଶେଷ ଶ୍ୱାସ ତ୍ୟାଗ କରୁଛନ୍ତି/ମାଟିତଳେ ଘରେ ଲକ୍ଷଲକ୍ଷ ଗହମ ବସ୍ତା/ତା ଉପରେ ବସି ସେଠ୍‌ଜୀ ହସୁଛନ୍ତି/ମର୍ମଦାହୀ ସେ ହସ ବୁଲେଟ୍ ପରି ଛୁଟିଛି ଦଗେଦଗେ ।

( 'ଏ ଯେ ଆପଣ, ଆପଣଙ୍କ ଛବି'—ସନନ୍ଦ )

ଆଧୁନିକ କାବ୍ୟ ସୌନ୍ଦର୍ଯ୍ୟର ମୂଳ ଉପାଦାନ ହେଉଛି ପ୍ରତୀକ ଓ ଚିତ୍ରକଳ୍ପ । କବି 'ସାଧା କଥା' କହିବା ଛାଡ଼ି ଚିତ୍ରକଳ୍ପ ମାଧ୍ୟମରେ ହିଁ ତା କଥାଟିକୁ ପରୋକ୍ଷ ଭାବରେ କହୁଛି । ପ୍ରାଚୀନ ମଧ୍ୟଯୁଗୀୟ କାବ୍ୟକବିତାର ଉପମା, ରୂପକ ପରି ଏଗୁଡ଼ିକ ତୁଳନାମାତ୍ର ନୁହେଁ, ଆଧୁନିକ ଚିତ୍ରପ୍ରତିମାର ପ୍ରାଣମୟ ଚଳତ୍‌ଶକ୍ତି ଦର୍ଶକମନକୁ ଗମ୍ଭୀର ଭାବେ ପ୍ରଭାବିତ କରିପାରେ । ତା ହୃଦୟରେ ଅନୁରୂପ ଚିତ୍ର ସୃଷ୍ଟି କରି ତାକୁ ରସ-ଲୋକର ସନ୍ଧାନ ଦେଇପାରେ । କୁନ୍ତଳାଙ୍କ ପ୍ରତୀକ, ଚିତ୍ରକଳ୍ପଗୁଡ଼ିକ ଅତ୍ୟନ୍ତ ସଜୀବ; ଗତିଶୀଳତା ହିଁ ସେ ଗୁଡ଼ିକର ପ୍ରାଣଧର୍ମ ।

"ଇସ୍ତଫା ଦେଇଛି ଅଷ୍ଟମୀର ଚନ୍ଦ୍ର
ଆକାଶର ସମ୍ବାଦପତ୍ରରେ
ତାରକା ଅକ୍ଷରେ
ପ୍ରକାଶିତ ତାର
ଦୀର୍ଘତମ ଇସ୍ତାହାର୍"

କିମ୍ବା

"ଶୋଇଛି ଅନ୍ଧାର
ଝଣିରେ ରୁଦ୍ଧଶ୍ୱାସ ହୋଇ

ଉଡ଼ି ଯାଇଛି ତାର ଜୀବନ
ଏକ ଅଚଳାୟନ ମୂର୍ଦ୍ଧାର
ଖଣିରେ ମିଞ୍ଜି ମିଞ୍ଜି ଆଲୋକ ଜଳନ୍ତି
ମୁମୂର୍ଷୁର ନତ୍ୱାଣ ଆଖିରେ
ଜୀବନର ଶେଷବିନ୍ଦୁ ପରି ।"

( କୋଇଲା ଖଣିର କୁଲି—ସେ ଏକ ଲୋମଶ ନୀଳହାତ )

ଆଧୁନିକ ପ୍ରୟୋଗବାଦୀ କବିତା କ୍ଷେତ୍ରରେ କୃତ୍ତିବାସୀଙ୍କ ଅବଦାନର ଯଥାର୍ଥ ଆକଳନ ହୋଇନାହିଁ । ଯୁଗରୁଚି ସହିତ ପାଦମିଳେଇ ନୀରବରେ ସେ ସାଧନା କରି-ଚାଲିଛନ୍ତି । ସୃଷ୍ଟି ତାଙ୍କର ବିପୁଳ । ଅନ୍ୟର ନିନ୍ଦା, ପ୍ରଶଂସା ପ୍ରତି ସଚେତନ ହେବା ପାଇଁ ତାଙ୍କର ଅବସର ନାହିଁ । ସମସ୍ତ ସଫଳତା ଓ ବିଫଳତାକୁ ଜୟମାଲ୍ୟ ଭାବରେ ସେ ଗ୍ରହଣ କରି ନେଇଛନ୍ତି । ବହୁ ସାର୍ଥକ କବିତାର ସ୍ରଷ୍ଟା ହେଲେ ମଧ୍ୟ ସେ ନିରଭିମାନ । ନିଜକୁ ଦେଖେଇ ହେବାର ପ୍ରବଣତାଠାରୁ ଦୂରରେ । ପ୍ରଗତିଶୀଳ କାବ୍ୟ ଚେତନାର ଉପସ୍ଥାପନ ଓ ଗଦ୍ୟଛନ୍ଦର ପ୍ରୟୋଗ କ୍ଷେତ୍ରରେ ଜଣେ ଅଗ୍ରଗାମୀ ଶିଳ୍ପୀ ଭାବରେ ଯଥାର୍ଥ ସ୍ୱୀକୃତି ଲାଭ କରିବାପାଇଁ ସେ ହକ୍‌ଦାର । ପଲ୍ଲବଗ୍ରାହୀ ସମାଲୋଚନା ଯୋଗୁଁ ଏହା ବହୁ କ୍ଷେତ୍ରରେ ସମ୍ଭବ ହୋଇନାହିଁ । ତେଣୁ ବର୍ତ୍ତମାନ ତାଙ୍କର ପ୍ରୟୋଗବାଦୀ ଶ୍ରେଷ୍ଠ କବିତା ଗୁଡ଼ିକର ଏକ ସୁସମ୍ପାଦିତ ସୁନିର୍ବାଚିତ ସଂକଳନ ପ୍ରକାଶର ଆବଶ୍ୟକତା ରହିଛି । ଏପରି ଏକ ସଂକଳନ ତାଙ୍କର ଅମଳିନ କବିତ୍ୱର ଯାଥାର୍ଥ ପରିଚୟ ଦେଇପାରିବ ।

* ଓଡ଼ିଆ ବିଭାଗ, ବିଶ୍ୱଭାରତୀ
ଶାନ୍ତିନିକେତନ—୭୩୧୨୩୫

# ॥ କୁଞ୍ଜବିହାରୀଙ୍କ କବିତାରେ ନିସର୍ଗ ପ୍ରକୃତି ॥

**ଅଧ୍ୟାପକ ବସନ୍ତକୁମାର ପଣ୍ଡା**

"ପ୍ରକୃତିକି ମୁଁ ଭଲ ପାଇଛି ହୃଦୟର ଲହୁ ଦେଇ । ଜୀବନର ସକଳ ଜଞ୍ଜାଳ ମଧ୍ୟରେ ତାହାର କୁହୁକ କାଉଁରୀ ସ୍ପର୍ଶ ମୋତେ ବାଉଳ କରିଛି । କେତେବେଳେ ସ୍ନେହମୟୀ ଜନନୀରୂପେ, କେତେବେଳେ କୌତୁକମୟୀ କିଶୋରୀ ସଖୀ ରୂପେ, କେତେବେଳେ ପ୍ରାଣ ବିମୋହିନୀ ପ୍ରିୟା ରୂପେ, କେତେବେଳେ ଦୁଃଖନାଶିନୀ ଭଗିନୀ ରୂପେ ପ୍ରକୃତି ମୋର ଚିତ୍ତ ବିନୋଦନ କରିଛି । ଅଜାଡ଼ି ଦେଇଛି ଦୁଃଖ, ଅବସାଦ, ନୈରାଶ୍ୟ ସବୁଜସୁନ୍ଦରୀର ଚରଣ ତଳେ, ପାଇଛି ତା'ଠାରୁ ପ୍ରେରଣା, ଆଶା, ଆନନ୍ଦ ।"

—କୁଞ୍ଜବିହାରୀ ( ମୋ କାହାଣୀ : ୨ୟ ଖ ପୃ. ୨୭୮ )

କବି କୁଞ୍ଜବିହାରୀଙ୍କ କବିତାଜଗତ ବିପୁଳ ଓ ବିଚିତ୍ର । ପ୍ରକୃତି ଓ ପରମ୍ପରା, ପ୍ରେମ ଓ ଜୀବନ, ଦେଶାତ୍ମବୋଧ ଓ ସମାଜ ଚେତନା, ଶିଶୁମନୋରଞ୍ଜନ ଓ ପଲ୍ଲୀଚିତ୍ର ଆଦି ଓଡ଼ିଆ କାବ୍ୟଧାରାର ପ୍ରାୟ ସମସ୍ତ ଦିଗକୁ ତାଙ୍କ ଲେଖନୀ ସ୍ପର୍ଶ କରିଛି । ଏହାର ବିସ୍ତୃତ ପରିଧିରେ ଆଧୁନିକ ଜୀବନର ସମଗ୍ର ବିଭବ ଯେପରି ଏକତ୍ର ପ୍ରକାଶ ଲଭିଛି, ସେହିପରି ଆଧୁନିକ କାବ୍ୟକଳାର ସମ୍ପୂର୍ଣ୍ଣ ରୂପ ପ୍ରକାଶ ପାଇଛି । କବିତାକୁ ସେ ଅନ୍ତର ଦେଇ ଭଲ ପାଇଛନ୍ତି । କହିଛନ୍ତି—"ଜୀବନରେ କ'ଣ ଭଲ ପାଅ ବୋଲି ଯଦି ପଚାରି ଯାଏ, କହିବି—କବିତା । ଅନ୍ତରର ଶ୍ରେଷ୍ଠ ଅର୍ଘ୍ୟ ଡାଲି ଚରଣରେ ଢାଳି ଦେଇଛି । ଭ୍ରମଣର ସଙ୍ଗିନୀ ସେ, ସଂସାର ଉଦ୍ୟାନର ଶ୍ରେଷ୍ଠ ଚୟନ, ନିଦ୍ରାର ସ୍ୱପ୍ନ ।" ଆଜୀବନ ସେ କବିତା ରଚନାରେ ବହୁ ପରୀକ୍ଷା ନିରୀକ୍ଷା କରିଛନ୍ତି । ତାଙ୍କ କବିତାରେ ନିସର୍ଗ ପ୍ରକୃତିର ଅନୁପମ ମାଧୁରୀ ସର୍ବଦା ଏକ ପ୍ରଧାନ ସ୍ଥାନ ଅଧିକାର କରିଛି । ଆଧୁନିକ ଓଡ଼ିଆ କାବ୍ୟଧାରାର ଆଦିଯୁଗରେ ରାଧାନାଥ 'ଚିଲିକା' ରଚନା କରି ପ୍ରକୃତି ବର୍ଣ୍ଣନାମୂଳକ କାବ୍ୟରଚନାର ପରମ୍ପରା ସୃଷ୍ଟି କରିଥିଲେ । ପରବର୍ତ୍ତୀ ସମୟରେ ଅନ୍ୟ କବିମାନେ ଉଣା ଅଧିକେ ନିଜନିଜର ସୃଷ୍ଟିରେ ସେଇ ପରମ୍ପରାକୁ ରକ୍ଷା କରିବା ପାଇଁ ଚେଷ୍ଟା କରିଛନ୍ତି । କିନ୍ତୁ ସମକାଳୀନ ଯୁଗରେ କୁଞ୍ଜବିହାରୀ ହିଁ ବୋଧହୁଏ ପ୍ରକୃତି ଚିତ୍ରଣ ଦିଗରେ ଓଡ଼ିଆ କାବ୍ୟରାଜ୍ୟର ଶ୍ରେଷ୍ଠ ଶିଳ୍ପୀ ବିବେଚିତ ହେବେ ।

ପ୍ରକୃତି ପ୍ରତି ଏକ ସହଜାତ ଆକର୍ଷଣ କବିଙ୍କର ଥିଲା । କୁଶଭଦ୍ରା ଓ ଭାର୍ଗବୀ ନଦୀର ଉପକୂଳବର୍ତ୍ତୀ ଏକ ପଲ୍ଲୀରେ ଜନ୍ମ ହୋଇ କବି ଶୈଶବରୁ ପ୍ରାକୃତିକ ପରିବେଶରେ ବଢ଼ିଥିଲେ । ପରବର୍ତ୍ତୀ ସମୟରେ କାର୍ଯ୍ୟାନୁରୋଧରେ ଓଡ଼ିଶାର ପ୍ରାକୃତିକ ସୌନ୍ଦର୍ଯ୍ୟପୂର୍ଣ୍ଣ ବିଭିନ୍ନ ଅଞ୍ଚଳ ସେ ବୁଲିଲେ । ହିମାଚଳଠାରୁ କୁମାରିକା ଯାଏ ଭାରତର ବିଭିନ୍ନ ସ୍ଥାନ ଭ୍ରମଣ କଲେ । ସ୍ୱପ୍ନର କାଶ୍ମୀରକୁ ବାସ୍ତବ ରୂପରେ ଦେଖିଲେ । ଉତ୍କଳର କେଉଁ ଏକ ଅଜଣା ପଲ୍ଲୀବାସୀ ହେଲେ ଭାରତ ଓ ଲଙ୍କାଯାତ୍ରୀ । ନିସର୍ଗ ପ୍ରକୃତିର ସ୍ଥଳ ତଥା ସ୍ୱଦେଶର ଏକ ପ୍ରତିଷ୍ଠିତ ଭାବଭୂମି ଶାନ୍ତିନିକେତନରେ ନିଜକୁ ପ୍ରତିଷ୍ଠା କଲେ । ପରିଣତ ବୟସରେ ପୁଣି ୟୁରୋପ, ଆମେରିକା ଓ ଆଫ୍ରିକା ମହାଦେଶରେ ବିଭିନ୍ନ ସ୍ଥାନ ଭ୍ରମଣ କରି ବହୁ ପ୍ରାକୃତିକ ଦୃଶ୍ୟ ପ୍ରତ୍ୟକ୍ଷଭାବେ ଦେଖିବାର ସୁଯୋଗ ପାଇଥିଲେ କବି । ପ୍ରତିଭା ରଞ୍ଜନ ଦୃଷ୍ଟିରେ ସେ ସବୁକୁ ଯେମିତି ସ୍ୱରଚିତ ଭ୍ରମଣକାହାଣୀରେ ସେ ଯେପରି ବର୍ଣ୍ଣନା କରିଛନ୍ତି କବିତାରେ ମଧ୍ୟ ସେହିପରି ଜୀବନ୍ତ ଓ ସରସ କରି ରୂପାୟିତ କରିଛନ୍ତି ।

ପ୍ରାକୃତିକ ଜଗତ ସହିତ ଆତ୍ମିକ ସମ୍ପର୍କ ରକ୍ଷା କରି କବିତାରେ ତାହାର ନିଷ୍ଠାପର ପ୍ରକାଶ ପାଇଁ ସତତ ଉଦ୍ୟମ କରିଥିବାରୁ କୁଞ୍ଜବିହାରୀଙ୍କ କବିତାରେ ଦୁର୍ବୋଧତା ଓ ରସଶୂନ୍ୟତାର ଚିହ୍ନ ନାହିଁ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ କବି କଲିକତା ବିଶ୍ୱବିଦ୍ୟାଳୟରେ ଉଚ୍ଚଶିକ୍ଷା ଲାଭ କରୁଥିଲେ । ବିଶ୍ୱଯୁଦ୍ଧ ପରବର୍ତ୍ତୀ କବିତାରେ ଅବକ୍ଷୟଶୀଳ ମାନବମନର ପ୍ରତିଚ୍ଛବି ଦେଖିବାକୁ ମିଳିଲା । କବିତା ଜୀବନଠାରୁ ଦୂରେଇ ଯିବାକୁ ଲାଗିଲା । କିନ୍ତୁ କୁଞ୍ଜବିହାରୀଙ୍କ କବିତାରେ ଏଇସବୁ କୃତ୍ରିମତା କିମ୍ବା ଛିନ୍ନମୂଳଭାବ ପ୍ରବେଶ କରି ନଥିଲା । ଅତିମାତ୍ରାରେ ଆଧୁନିକ ହେବାକୁ ଯାଇ ଅନେକ କବି ଅନୁକରଣ ସର୍ବସ୍ୱ ହୋଇ ପଡ଼ିଲେ । କବିତାକୁ ପରମ୍ପରାଚ୍ୟୁତ କରିଦେଲେ । ଏମାନଙ୍କ କବିତା ଲୋକପ୍ରିୟତା ହରାଇଲା । ଓଡ଼ିଆ କବିତାର ଏହିଭଳି ଏକ ଦୁର୍ଦ୍ଦିନରେ କୁଞ୍ଜବିହାରୀଙ୍କ ସୃଷ୍ଟି ସୁନ୍ଦର ଓ ସାର୍ବଜନୀନ ହୋଇ ପାରିଥିଲା । ଷଷ୍ଠ ଦଶକରେ କବି ୟୁରୋପ ଓ ଆମେରିକା ଭ୍ରମଣ କରି ପାଶ୍ଚାତ୍ୟ ସାହିତ୍ୟର ପରିବର୍ତ୍ତନର ଧାରାକୁ ପ୍ରତ୍ୟକ୍ଷଭାବେ ଜାଣିବାର ସୁଯୋଗ ପାଇଥିଲେ । ସେତେବେଳକୁ ଯୁଦ୍ଧୋତ୍ତର ପୋଡାଭୂଇଁର କବିତା ଲୋପ ପାଇଯାଇଥିଲା । ନୂତନ ଆଭିମୁଖ୍ୟ ଯେମିତି କବିତାକୁ ଛନ୍ଦମୟ ଓ ସୁବୋଧ କରି ରଚନା କରିବାପାଇଁ ଚେଷ୍ଟା ଚଳାଇଥିଲେ ଇଂଲଣ୍ଡର ନ୍ୟୁ ସିଗ୍‌ନେଚର ଗ୍ରୁପ୍‌ର କବିଗଣ । ଆମେରିକାରେ ରବର୍ଟ ଫ୍ରସ୍‌ଟଙ୍କ ଗୀତିମୟ, ଛନ୍ଦଯୁକ୍ତ ଓ ଆବେଗପୂର୍ଣ୍ଣ କବିତା ଖୁବ୍ ଲୋକପ୍ରିୟତା ଲାଭ କରିଥିଲା । କେନେଡ଼ିଙ୍କ ରାଜତ୍ୱକାଳରେ ଫ୍ରସ୍‌ଟ ସର୍ବଶ୍ରେଷ୍ଠ ସାହିତ୍ୟସ୍ରଷ୍ଟାରୂପେ ପ୍ରଥମେ ଜାତୀୟ ସମ୍ମାନ ଲାଭ କରିଥିଲେ । କବି କୁଞ୍ଜବିହାରୀ ଏଇ ଦୁଇଧାରାର କବି ଓ କବିତାର ଘନିଷ୍ଠ ସଂସ୍ପର୍ଶରେ ଆସିଥିଲେ ଓ ସେଇ ଆତ୍ମବେଗପ୍ରବଣ ହୃଦୟସ୍ପର୍ଶୀ କବିତାରଚନାର ଧାରାକୁ ଓଡ଼ିଆ ସାହିତ୍ୟରେ ପ୍ରଚଳନ କରାଇ

ଥିଲେ । ତାଙ୍କର ବିଦଗ୍ଧ ମନ ସଂସ୍କୃତ ରୁଚିରେ ମାର୍ଜିତ, ସରସ ହୃଦୟ ପଲ୍ଲୀ ଗୀତର ରସରେ ସମୃଦ୍ଧ । ଏଇ ଦୁଇଧାରାକୁ ସମନ୍ୱିତ କରି ସେ ବାଣୀମୂର୍ତ୍ତିକୁ ରୂପ ଦେଇଛନ୍ତି । ତାଙ୍କ କବିତା ତେଣୁ ସୁବୋଧ, ପରମ୍ପରାର ସ୍ୱାଭାବିକ ବିକାଶରେ ପୁଷ୍ଟ ଓ ଅନୁଭୂତିସିଦ୍ଧ ଜୀବନଚିନ୍ତାରେ ଜୀବନ୍ତ । ତାଙ୍କ ସୃଷ୍ଟିରେ ଜାତୀୟତା ସହିତ ବିଶ୍ୱଜନୀନ ମାନବତାବୋଧ, ଉତ୍କଳପ୍ରୀତି ସହିତ ମହାଭାରତୀୟ ଭାବଧାରା, ପ୍ରକୃତିପ୍ରାଣତା ସହିତ ଜୀବନଧର୍ମିତା ଐକାନ୍ତିକଭାବେ ସମନ୍ୱିତ ହୋଇ କାବ୍ୟଚେତନାର ଅନ୍ତଃସ୍ୱରକୁ ଚିରାୟତ ମର୍ଯ୍ୟାଦାରେ ମଣ୍ଡିତ କରିଛି ।

ଆଦ୍ୟ ଯୌବନରେ ବିଦ୍ୟାଳୟରେ ପଢ଼ିଲାବେଳେ ହିଁ କୃଷ୍ଣବିହାରୀ ପ୍ରକୃତିକୁ ଉପଜୀବ୍ୟ କରି କବିତା ରଚନା ଆରମ୍ଭ କରିଥିଲେ । ପ୍ରଥମ କବିତା ରଚନାର ପୁଲକିତ ଅନୁଭୂତି ବର୍ଣ୍ଣନା କରି 'ମୋ କାହାଣୀ'ରେ ଲେଖିଛନ୍ତି : "ଯେଉଁ ବର୍ଷ ମୋ ଜୀବନରେ ଗୋଟିଏ ନୂତନ ଦିଗ୍‌ବଳୟ ଖୋଲିଲି । ବିତାନ ପରି ବିଚିତ୍ର ସେ, ବହୁବର୍ଣ୍ଣଯୁକ୍ତ । ମୁଁ କବିତା ଲେଖିଲି । ୧୯୩୧ ମସିହା କଥା । ନିଜକୁ ନୂଆଭାବେ ଆବିଷ୍କାର କଲାପରି ଲାଗିଲା । ନିଜପାଖେ ନିଜର ମୂଲ୍ୟ ବଢ଼ିଗଲା । × × କେଉଁଠି କେଜାଣି 'ରାଧାନାଥ ଗ୍ରନ୍ଥାବଳୀ' ଖଣ୍ଡିଏ ମୋ ହାତରେ ପଡ଼ିଥାଏ । ବିନା ଗୁରୁରେ କାବ୍ୟ ଖଣ୍ଡିକ ପରେ ଖଣ୍ଡିଏ ପଢ଼ି ପକାଉଥାଏ । ରାଧାନାଥଙ୍କଠାରୁ ମୁଁ ପ୍ରଥମେ ପ୍ରକୃତିକୁ ଭଲ ପାଇବା ଶିଖିଲି । × × ଗୁରୁ ଗମ୍ଭୀର ହୋଇ ବୁଲିଲି କୁଶଭଦ୍ରା ନଦୀ ତଟରେ, ବସିଲି ମନ୍ଦିର ଦେହଲୀରେ; ଶ୍ମଶାନରେ ବା ନିର୍ଜନ ତୋଟାମାଳରେ ।" ( ମୋ କାହାଣୀ, ପୃ : ୧୫୭ ) । ନବମ ଶ୍ରେଣୀରେ ପଢ଼ିଲାବେଳେ 'ଲାବଣ୍ୟ କୁସୁମ' ନାମରେ ଯେଉଁ କାଳ୍ପନିକ କାବ୍ୟଟି ରଚନା କରିଥିଲେ ସେଥିରେ ଉଷା ଓ ସାନ୍ଧ୍ୟ ପ୍ରକୃତିର ମନୋରମ ବର୍ଣ୍ଣନା ସ୍ଥାନ ପାଇଥିଲା ।

ମୃଦୁ ମନ୍ଦ ବହେ ଦକ୍ଷିଣା ପବନ
ପଡେ ବାଳାରୁଣ କର
ବଡ଼ ବୃକ୍ଷ ଦେଖି କନକ ଗ୍ରୁଡ଼ଣୀ
କରୁଛି ସେ ଦିବାକର ।
ଉଠ୍‌ଲେ ଉଠଲେ ବୋଲି ଏକପକ୍ଷୀ
ଡାକିଲା ସବ ଦୁଆରେ
ମଧୁପର ସ୍ରୋତ ଭସିଗଲେ ଏକ
ଶଙ୍ଖ ବଜାଇ ସୁସ୍ୱରେ । (ମୋ କାହାଣୀ, ପୃ ୧୫୯)

ଏହିପରି ଭାବରେ କବିଙ୍କର କବିତ୍ୱମୟ ଜୀବନର ମୂଳଦୁଆ ପଡ଼ିଥିଲା । ପଲ୍ଲୀ ପ୍ରକୃତିର ଅନାବୃତ ରୂପରାଶି ଓ ପଲ୍ଲୀ ଜୀବନ ଭିତରେ ଇତସ୍ତତଃ ବିଚ୍ଛୁରିତ ଅନାବିଳ

ଅସଂଖ୍ୟ ପଲ୍ଲୀଗୀତକୁ କବି ଆଦରରେ ନଜର କରି ନେଇଥିଲେ । ନୈକଟତମ ଅନୁଭୂତି ଯେତେ ତୁଚ୍ଛ ହେଲେ ବି ସେ ତାହାକୁ ଦରଦୀ ଆତ୍ମମଗ୍ନ ଚିତ୍ତରେ ନିଜ ସୃଷ୍ଟିରୁ ଉତ୍ସ-ଭାବରେ ଗ୍ରହଣ କରିଥିଲେ । ତେଣୁ ତାଙ୍କ କବିତାରେ ବିଦଗ୍ଧ ଭାବଚେତନା ସହିତ ପ୍ରକୃତି ଓ ଜୀବନର ସୂକ୍ଷ୍ମ ଚିତ୍ରର କଳାଗତ ଯୋଗାଯୋଗ ମିଶ୍ରିତ ହୋଇ ପ୍ରକୃତି ଚିତ୍ରଣ ଶିଳ୍ପକୁ ସୁଷମାମଣ୍ଡିତ କରିଛି । ଏ ଶିଳ୍ପରେ ଆସ୍ୱାଦଲବ୍ଧ କାରିଗରୀ ଅପେକ୍ଷା ପ୍ରତ୍ୟକ୍ଷ ଅନୁଭୂତିର ଆବେଗୋଷ୍ଣ ପ୍ରକାଶ ବେଶୀ ଉପଭୋଗ୍ୟ ହୋଇ ପାରିଛି ।

କୁଞ୍ଜବିହାରୀଙ୍କ କବିତା ଗ୍ରନ୍ଥ 'ପ୍ରଭାତୀ'ର (୧୯୪୩) ଶତାଧିକ ସନେଟ୍‌ରେ ପ୍ରକୃତିର ରୂପ ବୈଚିତ୍ର୍ୟ ବିଭିନ୍ନ ଭାବରେ ପ୍ରକାଶିତ । ସଙ୍କଳନଟିର ମୁଖବନ୍ଧରେ ତତ୍କାଳୀନ ସମୃଦ୍ଧ ସାହିତ୍ୟ ପତ୍ରିକା 'ସହକାର'ର ସମ୍ପାଦକ ଶ୍ରୀ ବାଳକୃଷ୍ଣ କର କବିତାଗୁଡ଼ିକର ଉତ୍କର୍ଷ ଦେଖାଇ ଲେଖିଥିଲେ, "କବିତାର ବିଷୟବସ୍ତୁ କଳ୍ପନାର ବିସ୍ତୀର୍ଣ୍ଣ କ୍ଷେତ୍ରରୁ ସଂଗୃହୀତ ହୋଇଥିବା ଯୋଗୁ ସକଳ ଶ୍ରେଣୀର ପାଠକମାନଙ୍କର ସମଧିକ ଚିତ୍ତାକର୍ଷଣ କରିବାରେ ଏହା ସାହାଯ୍ୟ କରିବାର ଆଶା କରାଯାଏ । 'ପ୍ରଭାତୀ' ନାମକରଣର ଯଥାର୍ଥତା ଏହାର ପ୍ରତ୍ୟେକ କବିତାରୁ ପ୍ରମାଣିତ ହୁଏ । ଏଥିରେ ତୂରୀ ଭେରୀର ଉନ୍ମାଦନା ନାହିଁ, ଅଛି ଶଙ୍ଖର ଶାନ୍ତମନ୍ତ୍ର; ପାଠକର ପ୍ରାଣରେ ଭୟ ବିସ୍ମୟର ରୋମାଞ୍ଚ ଜନ୍ମାଏ ନାହିଁ; ଜନ୍ମାଏ ଭକ୍ତି ପ୍ରୀତିର ପୁଲକ ।" ଏଇ କବିତାଗୁଡ଼ିକରେ ପ୍ରକୃତି ଉପାସନା ସହିତ ଦରଦୀ ମାନବବାଦୀ ସ୍ୱର ଓ ସ୍ୱଦେଶ ପ୍ରୀତିର ପରିଚୟ ମିଳେ । ବେଳେବେଳେ ସେ ଭକ୍ତ କବି ମଧୁସୂଦନଙ୍କ ପରି ପ୍ରକୃତିର ବିପୁଳ ବୈଭବି ମଧ୍ୟରେ ଏକ ଅଦୃଶ୍ୟ ସତ୍ତାର ରହସ୍ୟମୟ କାମ୍ୟମତି ଉପଲବ୍ଧି କରିଛନ୍ତି ଓ ବିହ୍ୱଳ ହୋଇ ତା ପାଖରେ ଆତ୍ମସତ୍ତା ହରାଇ ବସିଛନ୍ତି । ପୁଣି ଆଉ କେତେବେଳେ ପ୍ରକୃତିର ନାନ୍ଦନିକ ସୌନ୍ଦର୍ଯ୍ୟକୁ ସମସ୍ତ ଇନ୍ଦ୍ରିୟ ଦେଇ ଉପଭୋଗ କରିବାପାଇଁ ଚେଷ୍ଟା କରିଛନ୍ତି । 'ପ୍ରଭାତୀ'ର ସନେଟ୍ ଗୁଡ଼ିକରେ ପ୍ରକୃତି ପ୍ରତି ଅନୁରକ୍ତି ଓ ମଣିଷପ୍ରତି ଗଭୀର ପ୍ରୀତି ଏକାଧାରରେ ପ୍ରକାଶ ପାଇଛି । 'ବିଜନବାଣୀ' ଓ 'ନିଶିଥିନୀ' ସନେଟ୍ ଦୁଇଟି ପ୍ରଥମ ସଂସ୍କରଣରେ 'ପ୍ରଭାତୀ'ରେ ସ୍ଥାନ ପାଇଥିଲା । କୁଞ୍ଜବିହାରୀ ସଞ୍ଚୟନର 'ପ୍ରଭାତୀ' ପର୍ଯ୍ୟାୟରେ ଏହା ନାହିଁ । କବିତା ଦୁଇଟିରେ ପ୍ରାକୃତିକ ଜଗତର ଅନାବିଲ ଚିତ୍ର ଦେଖାଯାଏ ।

"କେଉଁ ତିରିମୂଳେ କେଉଁ ନଦୀ ତୀରେ ବସି
ଚନ୍ଦ୍ରାଲୋକେ ତନ୍ଦ୍ରା ଭାଙ୍ଗି ଗାଅ କିଏ ଗୀତ,
ଧୀରେ ଟିରି-ଶିରେ ଶୁଣେ ଚନ୍ଦ୍ରସମ ଶଶୀ
ଅମେ ବାଆ, ନଦୀ ନାଆ, ବନ ସଚକିତ ।"          ('ବିଜନବାଣୀ')

"ପ୍ରକୃତି ସିଧିର ମାରେ ଝିଙ୍କାରୀ ଝନନେ
ସ୍ୱରଲା କୁମାରୀ ସମ ଶ୍ୟାମଳ କେଦାରେ,

ମୃଦୁଳ ମଧୁର ହାସ ସୁନ୍ଦର ଆନନେ
ସଂସାରର ଆବିଳତା ପରଶିନି ତାରେ !” (‘କଣିଥିଳା’)

ସମଗ୍ର ପ୍ରକୃତିକୁ ନୀତି ଓ ରୂପର ଉଭୟ ଭାବରେ ହିଁ କବି ଦେଖିଛନ୍ତି, ‘ତାରାମୟୀ’, ‘ମଲୟଜନ୍ମ’, ‘ଗୋଧୂଳି ପରେ’, ତରୁ ମଧ୍ୟେ ସାରା ବିମ୍ବ ଦେଖିଲି ଚକିତେ’ ଚତୁର୍ଦ୍ଦଶପଦୀ ଗୁଡ଼ିକ ଏଇ ଭାବଧାରା ଯେପରି ରଚିତ ହୋଇଛି ।

“ତରୁ ସମ ଶିକ୍ଷା ଗୁରୁ ସ୍ନିଗ୍ଧ ଛାୟା ଦାନେ
ବିଶ୍ୱ ସେବା ଭାବ ସୁଧା ଦେଲା ଢାଳି ପ୍ରାଣେ ।

‘ଦୁର୍ଦ୍ଦିନ ପ୍ରକୃତି’ କବିତାଟିରେ କବି କଳ୍ପନା ଓ ଜୀବନଧାରାର ସାମଞ୍ଜସ୍ୟ ନିବିଡ଼ ଓ ପ୍ରକୃତି ସହିତ କବି ଏକାତ୍ମ ।

“ଦୁର୍ଦ୍ଦିନ ପ୍ରକୃତି ଆଜି କି ଦୁଃଖେ ଗମ୍ଭୀର
ବାୟୁ ମୂଖେ ବାଣୀ ତାର ନ ସ୍ଫୁରଇ ଲେଶ ।
ବେଳେବେଳେ ଘନ ତଳେ ଜଳଇ କୁହୁଳି,
ରୋଗୀ ହାସ୍ୟ ପରି ଚଳି ବାଦଲେ ବିଜୁଳି ।”

‘ଦୁର୍ଦ୍ଦିନେ ଆଜି ଘନଗର୍ଜି ନୋହେ ବାରି’ ପ୍ରଭୃତି ପଙ୍‌କ୍ତିରେ ମଧ୍ୟଯୁଗୀୟ ଚିନ୍ତାର ପ୍ରଭାବ ଏଠି ଥିଲେ ମଧ୍ୟ ଚଳିବାଦଲ କୋଳରେ ବିଜୁଳି ଓ ରୋଗୀର ନିରସ ହସର ତୁଳନାତ୍ମକ ବାସ୍ତବବାଦୀ ଚିନ୍ତା ପ୍ରକୃତିରେ ଅଭିନବ । ଅନ୍ୟାନ୍ୟ କେତେକ ସନେଟ୍‌ରେ ପ୍ରଣୟ ସହିତ ପ୍ରକୃତିର ନିଗୂଢ଼ ଚିନ୍ତା ଆମ୍ଭମାନଙ୍କୁ କାଳିଦାସୀ କାବ୍ୟ-ଜଗତକୁ ଘେନିଯାଏ । ‘ପ୍ରଭାତୀ’ର ସମାଲୋଚନାରେ ଚନ୍ଦ୍ରଶେଖର ମିଶ୍ର ଲେଖିଥିଲେ; “ଅଧିକାଂଶ ଭାବାତ୍ମକ ଓ ବର୍ଣ୍ଣନାତ୍ମକ କବିତାରେ ନୀତିଶିକ୍ଷାର ଏକ ପ୍ରଚ୍ଛନ୍ନ ସ୍ରୋତ ପ୍ରବାହିତ ହୋଇ ଚାଲିଛି ଏବଂ ସେହି ନୀତିଶିକ୍ଷାର ମୋହ କବିତାର ସ୍ୱଚ୍ଛନ୍ଦ ବିକାଶରେ କିଛି ବାଧା ଦେଇଥିଲାପରି ମନେ ହୁଏ ।” କିନ୍ତୁ ନୀତିଶିକ୍ଷା ସହିତ ରୂପପ୍ରାଣତାକୁ ମଧ୍ୟ କବି ଅଙ୍ଗାଙ୍ଗୀଭାବେ କବିତାରେ ଗୁରୁତ୍ୱ ଦେଇଛନ୍ତି । ତେଣୁ ତାଙ୍କ କବିତା ପ୍ରକୃତି-ପ୍ରାଣତା ସହିତ ମାନବତାବୋଧର ଏକ ନିଜସ୍ୱଧାରାରେ ଗରିମାମଣ୍ଡିତ । ‘ପ୍ରଭାତୀ’ର କାବ୍ୟଚିନ୍ତା ଓ ପ୍ରକୃତି ଚିତ୍ରଣ ହିଁ ଅନ୍ୟାନ୍ୟ କାବ୍ୟ କବିତାରେ ଅବଧାରିତ ହୋଇଛି ଓ ଅଧିକତର ରୂପସୌନ୍ଦର୍ଯ୍ୟ ଯେପରି ପ୍ରକାଶ ଲଭିଛି କବିଙ୍କ ପରବର୍ତ୍ତୀ ସୃଷ୍ଟି ସମୂହରେ ।

ପରବର୍ତ୍ତୀ ସମୟରେ ରଚିତ ପ୍ରକୃତି ଚିତ୍ରଣ ମୂଳକ ଅନେକ କବିତା କବିଙ୍କର ‘କଳକଲ୍ଲୋଳ’ (୧୯୪୭), ‘ନର୍ମଦା’ (୧୯୪୮) ଓ ‘ଚିନ୍ତାଚିନ୍ତା’ କବିତାଗ୍ରନ୍ଥ ଗୁଡ଼ିକରେ ସନ୍ନିବେଶିତ । ଅନ୍ୟାନ୍ୟ କାବ୍ୟଗ୍ରନ୍ଥରେ କବିଙ୍କର ପ୍ରକୃତି ଚିତ୍ରଣ ରହିଥିଲେ ମଧ୍ୟ ଏଇ ଗ୍ରନ୍ଥଗୁଡ଼ିକରେ ନିସର୍ଗ ପ୍ରକୃତିର ରୂପବୈଚିତ୍ର୍ୟ ଯେପରି ବହୁ ମନୋମୁଗ୍ଧକର କବିତା ସ୍ଥାନ ପାଇଛି । ‘କଳକଲ୍ଲୋଳ’ର କବିତା ପଙ୍‌କ୍ତିଗୁଡ଼ିକରେ ଦେଖିବାକୁ ମିଳେ ପ୍ରକୃତିର

'ସୌନ୍ଦର୍ଯ୍ୟ ଜଗତକୁ ପ୍ରାଣ ଭରି ଉପଭୋଗ କରିବାପାଇଁ କବିଙ୍କର ଏକ ଉଦଗ୍ର ଆବେଗ । 'ସେଇ ଆବେଗପ୍ରବଣ ଅନୁଭୂତି ପ୍ରାଚୀନ ଗ୍ରନ୍ଥିକ ରୀତିରେ ପ୍ରକାଶ ପାଇଛି ଏଇ କବିତା ଗୁଡ଼ିକରେ । ବିଚିତ୍ର ପ୍ରକୃତି କୋଳରେ କବି ଆତ୍ମବିଭୋର ହୋଇ ଭ୍ରମଣ କରିଛନ୍ତି । ଆତ୍ମବିଭୋର କବିପ୍ରାଣର ଉଦାତ୍ତ ଧ୍ୱନି ଏଇ କବିତାଗୁଡ଼ିକୁ ନବନବ ଛନ୍ଦ, ଲୟ ଓ ସାଙ୍ଗୀତିକ ଆବହର ବିଚିତ୍ର ସ୍ୱର ସଙ୍ଗୀତରେ ଚିରନ୍ତନ ହୃଦୟସ୍ପର୍ଶୀ କରିଛି । 'ପ୍ରଧାନ ପୀଠ' କବିଙ୍କ ନିକଟରେ ରାଧାନାଥଙ୍କ 'ଚିଲିକା'ପରି ସଙ୍ଗୀ ଓ ପ୍ରିୟଙ୍କାଲୀପଙ୍ଗିନୀ ହୋଇ ଦେଖା ଦେଇଛି । ତାହାର ପରିପାର୍ଶ୍ୱର ପ୍ରାକୃତିକ ଶୋଭା ବର୍ଣ୍ଣନାରେ ରୂପ ଓ ସ୍ୱର ଉଭୟର ସମତାଳିକଭାବେ ଗତିକରି ଚାଲିଛି ।

ଝର ଝର ଝର                    ବନ ମର ମର
କୀକଲ ମୁଖର ମଧୁର ସନ୍ତ,
ରଙ୍ଗ ରତ ରତ                    ଶଇଳ ସୀମାନ୍ତ
ଦଣେ ଶିଖିମନ୍ତ୍ର, ମଉଳେ କନ୍ତ ।
( କୁ: ସ—୧ମ ଭାଗ/ପୃ: ୧୯୫ )

କିମ୍ବା

ଉଇଁ ଆସେ ରବି                    ସ୍ୱର୍ଣ୍ଣଧାରା ଦ୍ରବି
ଦେଲଣି ସେ ପ୍ଲାବି ବନ ପ୍ରାନ୍ତର,
କୋକିଲ କୂଜଇ                    ଭ୍ରମର ଗୁଞ୍ଜନ
କମଲ ପୂଜଇ କୋମଲ କର ।          ( ପୃ : ୧୯୫ )

ରୋମାଣ୍ଟିକ୍ ଯୁଗର ପ୍ରକୃତି ବା ରାଧାନାଥଙ୍କ କାବ୍ୟରେ କମ୍ବୃଦନ୍ତୀ ଓ କାହାଣୀକୁ ଉପଜୀବ୍ୟ କରି ବର୍ଣ୍ଣନା ମଧ୍ୟରେ ପ୍ରକୃତି ଚିତ୍ରଣ ପରି ଏଥିରେ ଉପକଥା ମଧ୍ୟ ସ୍ଥାନ ପାଇଛି । ଚିଲିକାର ଅପରୂପ ବର୍ଣ୍ଣନାରେ 'ପଦ୍ମାବତୀ'ର ଭୂମିକା ପରି ପୀଠ ସୌନ୍ଦର୍ଯ୍ୟର ଉତ୍କର୍ଷ ପାଇଁ ଶୈଳଦୁଲାଳୀର ଅଲଅଲ ଚିତ୍ର ଏଥିରେ ବର୍ଣ୍ଣିତ ।

ପଲ୍ଲୀ ପ୍ରକୃତିକୁ ବୈଶିଷ୍ଟ୍ୟରୂପ ମଣ୍ଡିତ କରିବାରେ କୁଞ୍ଜବିହାରୀଙ୍କ ଲେଖନୀ ନନ୍ଦକିଶୋରଙ୍କ ପରି ଯଶୋବନ୍ତ । ତାଙ୍କ କବିତାରେ ପଲ୍ଲୀର ଅଜସ୍ର ନିତ୍ୟନୂତନ ଚିତ୍ର ଚମତ୍କାର ରୂପଲାଭ କରିଅଛି । 'ପଲ୍ଲୀ ସନ୍ଧ୍ୟା' କବିତାରେ ଫୁଟି ଉଠିଛି ପ୍ରାକୃତିକ ପଲ୍ଲୀର ସାନ୍ଧ୍ୟ ପ୍ରକୃତି । ତା ସହିତ ପଲ୍ଲୀର ବର୍ଷା, ଦୋଳପର୍ବ ଆଦି ପାଳନରେ ପାରମ୍ପରିକ ଆନନ୍ଦ ଉତ୍ସବର ଚିତ୍ର ମଧ୍ୟ ଅତ୍ୟନ୍ତ ମନୋହର ହୋଇଛି । ସାମଗ୍ରିକଭାବେ ବିଶ୍ଳେଷଣ କଲେ ପଲ୍ଲୀ ପ୍ରକୃତି ଓ ଗ୍ରାମ୍ୟଜୀବନର ସୂକ୍ଷ୍ମ ଚିତ୍ର ଅଙ୍କନରେ କବି ପାରମ୍ପରିକତା ସହିତ

ଅଧୁନାତନ ବାସ୍ତବତାକୁ ଏକର୍ଣ୍ଣିତ କରିଛନ୍ତି । ଏଥିରେ ଆଜିର ପଲ୍ଲୀ ଜୀବନକୁ ବୁଝିବା ପାଇଁ ଏକ ସ୍ୱାଭାବିକତା ସ୍ଥାନ ପାଇଛି ।

'କଳକଲ୍ଲୋଳ'ର 'ମାର୍ଗଶୀର' କବିତାରେ ମାର୍ଗଶୀର ରଜନୀର ଶୋଭା ବର୍ଣ୍ଣିତ । ସଜଳ ଉଜଳ କୁଙ୍କୁମ ନୟନରେ ପକ୍ଷପାତ କରେ ସେଇ ଶୀତାର୍ତ୍ତି ରାତ୍ରି । ଛନ୍ଦର କଳଧ୍ୱନିରେ କବିତାଟି ଯେପରି ମଧୁର ପଲ୍ଲୀ ପ୍ରକୃତିର ଜୀବନ୍ତ ଆଲେଖ୍ୟ ରଚନାରେ ସେହିପରି ଚିତ୍ରମୟ ହୋଇଛି ।

ସବୁଜ ସରସ ଶସ୍ୟ ଶିଷାରେ ବୁଲାଇ କନକ କାଉଁଶ
ହେମ ଅଞ୍ଚଳା ଚଞ୍ଚଳା ଆଜି ବାନ୍ଧିବେ କ୍ଷେତ ଚଉଁରା
ଶେଷ ହାସ ଦେଇ ଝରିଯିବ କାଶ
ସରୋଜ ଶେଫାଳି ଦେବେ ଶେଷ ବାସ,
ସୁଷମା ସାଗରେ ଖେଳିଯିବ ଶେଷ ଲାବଣ୍ୟବୋଳା ଭଉଁରୀ
କୁହେଲି ଜୁଆରେ ଶିଶିର ସର୍ମିରେ ଅଙ୍କାଶ ଉଠିବ ଉଛୁଳି ।

( କୁ : ସ—୧ମ ଭାଗ/ପୃ: ୬୫ )

ଶାରଦ ଗୋଧୂଳିରେ ଶାରଦୀୟ ସନ୍ଧ୍ୟାର ଅନୁପମ ମାଧୁରୀ ରୂପାୟିତ ହୋଇଛି । ଏକ ଦିଗରେ ଶାରଦୀୟ ନିଶାରେ ଚିର ଚଞ୍ଚଳ ଜ୍ୟୋତ୍ସ୍ନା ଓ ଅନ୍ୟଦିଗରେ ପ୍ରୀତିଭରା ହୃଦୟର ଅନୁରାଗ ରାଗିଣୀ ଏକ ବିଚିତ୍ର ଐକ୍ୟତାନ ସୃଷ୍ଟି କରିଛି ଏଥିରେ ।

'ବର୍ଷାତଟିନୀ'ରେ ଏକ କୂଳପ୍ଲାବିନୀ, ଛନ୍ଦୋମୟୀ ବର୍ଷା ତଟିନୀର ରୂପ ଦେଖାଯାଇଛି ଓ ଛନ୍ଦ ଶୁଣାଯାଇଛି । ପୁଣି 'ଅନାମିକା'ରେ କେଉଁ ଏକ ଅନାମିକା ଚିର ନିର୍ଝରିଣୀକୁ ନିଜ ପ୍ରାଣ ସଙ୍ଗିନୀ ରୂପେ କବି ବରଣ କରିଛନ୍ତି ।

ଖଇଳା ନୀଳା ବେଦୀରେ ଗୁରୁ ସବୁଜ ଲତା ଶେଯ
ବସିଲି ଧୀରେ ଅନାଇଁ ଦୂରେ ଅନ୍ତରିକ୍ଷ ତେଜ
ଗଣ୍ଡେ ତୁମ ସନ୍ତ ଚୁମ ଦେଖି ମୁଁ ହେଲି ଭୋଳା
ବୁଦ୍‌ବୁଦର ଚୂହାଣୀ ହେଲା ଡୋଳା
ହସିଲ ମୋର ମୁଖେ
ନିର୍ଝରିଣୀ, ବୁଡ଼ିଲି ମୁହିଁ ସରସ ପ୍ରେମ ସୁଖେ ।

ଏଇ କବିତା ସହିତ ରବର୍ଟ ଫ୍ରଷ୍ଟଙ୍କର 'west run brooks'ର ତୁଳନା କରାଯାଇପାରେ । ଫ୍ରଷ୍ଟ ଚିର ନିର୍ଝରିଣୀର ଅବିଶ୍ରାନ୍ତ ପ୍ରବାହ ଓ କୌଣସି ପଥ ପ୍ରସ୍ତରରେ ଧକ୍କା ଖାଇ ପଛ ଫେରନ୍ତା ସ୍ରୋତକୁ ମନୁଷ୍ୟ ଜୀବନର ମୋହ ଓ

ମରଣର ଝାଣ ସହିତ ତୁଳନା କରିଛନ୍ତି । କବି କୁଞ୍ଜବିହାରୀ ମଧ୍ୟ ନିର୍ଝରର କନ୍ଦ୍ରୀଭଙ୍ଗ କରି ଜୀବନର ଫୁଲକଗୀତ ଗାଇଛନ୍ତି ।

'କେଦାର ଲକ୍ଷ୍ମୀ'ରେ ପୌଷ ପ୍ରକୃତି ଚିତ୍ରଣ କରିବା ପାଇଁ କବି ମଧ୍ୟଯୁଗୀୟ କାବ୍ୟକାରଙ୍କ ପରି ମାଳମାଳ ଉତ୍ପ୍ରେକ୍ଷା ଓ ରୂପକ ସଂଯୋଜନ କରି ସାବିଳାଳ କାବ୍ୟରସକୁ ବେଳେବେଳେ କ୍ଷୁଣ୍ଣ କରିଛନ୍ତି । 'ଆଶୀର୍ବାଦ' କବିତାରେ ଏକ ନାଟକୀୟ ଭଙ୍ଗୀରେ ମେଘଦ୍ୱାରା ନଦୀଘ ଜଳସେଞ୍ଚିତ ହେବାର କାହାଣୀ ଯେପରି ସୁନ୍ଦର ଓ ରୋମାଞ୍ଚକର, 'ଚିଲିକାରେ ଉଦୟଶ୍ରୀ' ମଧ୍ୟ ସେହିପରି ମନୋହର ।

'ପୁରୀପ୍ରାନ୍ତେ' କବିତାରେ ପୁରୀ ସାଗର ବେଳାର ଦୃଶ୍ୟର ଏକ ମନୋରମ ପ୍ରତିଛବି ଦେଖିବାକୁ ମିଳେ । ଏ ସ୍ଥାନ କବିଙ୍କର ଅତ୍ୟନ୍ତ ପ୍ରିୟ ଥିଲା । ତେଣୁ 'ସାଗର ବିଦାୟ' ରଚନା କରି ସେଇଦିନ ସେଇ ସାଗର କୂଳରେ ଆନନ୍ଦର ଦିନକୁ ସ୍ମରଣ କରି କବି ମାନସିକ ବିଷାଦ ଅନୁଭବ କରିଛନ୍ତି ।

ଆଜି ବିଦାୟ ସଦନ ବିଦାୟ ବିଜନ ବେଳା
ଆଜି ବିଦାୟ ସୁନୀଳ ଫେନିଲ ଲହରୀମେଳା
ନିତି ଗୋଧୂଳି ବଧୂର ନୂପୁର ନାଦ
ହୃଦେ ଚଖାଇଛି ନବ ପୀରତି ସପନ ସ୍ୱାଦ
ପ୍ରାଣ ହଜାଇଛି ଏଇ ଲହରୀ ମୁଖର କୂଳେ
ଯୋର ଜଞ୍ଜାଳ କାଳ ସର୍ପ ଗରଜେ ଦୂରେ ।

( କୁ : ସ ୧ମ ଭାଗ/ପୃ. ୨୫୧ )

କୁଞ୍ଜବିହାରୀଙ୍କ ପ୍ରକୃତି କବିତା ମୁଖ୍ୟତଃ ପରିଦୃଶ୍ୟମାନ ଓ ରୂପ ପ୍ରଧାନ । ନଦୀ, ପର୍ବତ, ସମୁଦ୍ର, ପଲ୍ଲୀର ବିଜନ ପଥ, ଦିଗନ୍ତ ବିସ୍ତାରୀ କ୍ଷେତ—ସର୍ବତ୍ର ରୂପସୃଷ୍ଟି କରିବାରେ କବି ପ୍ରୟାସୀ ହୋଇଛନ୍ତି । ଦୃଶ୍ୟମାନ ପ୍ରକୃତିର ଅନ୍ତରାଳରେ ଏକ ସ୍ମରଣୀୟ ରୂପରୁଚିର ସନ୍ଧାନ କରି କବିତାରେ ତାର ଚିତ୍ରାୟନ କରିଛନ୍ତି କବି । ତେଣୁ ପ୍ରକୃତିର ଫଟୋଗ୍ରାଫିକ୍ ଚିତ୍ର ଅଙ୍କିତ ହେବା ସଙ୍ଗେ ସଙ୍ଗେ କବି ହୃଦୟର ଏକ ଅନୁରଣିତ ଆବେଗ କବିତାରେ ସର୍ବତ୍ର ସ୍ଥାନ ପାଇଛି । 'ନର୍ମଦା'ରେ ସନ୍ନିବେଶିତ ବହୁ କବିତାରେ ବର୍ଣ୍ଣାଢ୍ୟ ପ୍ରକୃତିର ବିଚିତ୍ର ରୂପ ଦେଖିବାକୁ ମିଳେ । 'ବର୍ଷବାର ସ୍ୱର-ଲିପି'ରେ—

"ପବନର ରେଶମ ଅଙ୍ଗୁଳି/ସଜାଡେ ଅନମ୍ର କେଶ/ଅରଣ୍ୟର । ମଞ୍ଜମଞ୍ଜୀ ଖରା/ସୂତା ସୂତା କରି/ନାରିକେଳ ପାନଆ ପତରୁ/ଲମ୍ବାଉଛି ଦିଗ ପ୍ରାନ୍ତେ କୌତୁକୀ ସକାଳ/ମେଘେ ମେଘେ ଲମ୍ବାଉଛି ଜରି ଧଡ଼ି/ଅପରାହ୍ଣ ଶେଷର ଫୁଆରୀ/ଗେ ଟିକେଟେ ଅଭି ବିନ୍ଦୁ ତାରା ।

—କୁଞ୍ଜବିହାରୀ ସଞ୍ଚୟନ ୩ୟ ଭାଗ

ସେହିପରି 'ଦୃଶ୍ୟ ଅଦୃଶ୍ୟ', 'ଏଥିଲାଗି ଏତେ ପୁଷ୍ପ ଏତେ ଜ୍ୟୋତ୍ସ୍ନା' କବିତା ଦୁଇଟିରେ ପ୍ରାକୃତିକ ଦୃଶ୍ୟର ପ୍ରତିଛବି ଅଙ୍କିତ । ଗଦ୍ୟଛନ୍ଦରେ ରଚିତ ପରୀକ୍ଷାଧର୍ମୀ ଏହି କବିତାଗୁଡ଼ିକରେ କବି ଆଧୁନିକ ପ୍ରତୀକ ଓ ରୂପକଳ୍ପ ବ୍ୟବହାର କରି ପ୍ରକୃତିର ବିଭିନ୍ନ ଉପାଦାନକୁ ବାସ୍ତବ ରୂପଦେବାରେ ପ୍ରୟାସ କରିଛନ୍ତି । 'ଗୁଇତଲ ଫୁଲ' କବିତାଟିରେ କବିଙ୍କ ମର୍ମବେଦନା ନିହିତ । କେତେ ସ୍ୱପ୍ନର ବଳୟ, ଜ୍ୟୋତ୍ସ୍ନାର ଆସକ୍ତି ଓ ଆଶାର ଆଲୋକ ଯେନ ଫୁଟିଛି ଗ୍ରେଟ୍ ଫୁଲଟି । କ୍ଷଣିକ ସ୍ଥିତିରେ ମଧ୍ୟ ତାହା ବିଶ୍ୱଜନତାର ସେବାରେ ନିଜକୁ ନିୟୋଜିତ କରିବ ଓ ପରାନ୍ନମୀର ଦଳନ ବିରୁଦ୍ଧରେ ବିପ୍ଳବ କରିବ । ଏଇ ଆଭିମୁଖ୍ୟ ଭିତରେ କବିଙ୍କର ବିପ୍ଳବୀ କାବ୍ୟଦର୍ଶନ ପ୍ରତିଭାତ । ଏଥିରେ କବିଙ୍କର ପ୍ରକୃତି ସହିତ ଆତ୍ମୀକରଣ ହୋଇପାରିଛି । 'ସାତକୋଶିଆରେ ସନ୍ଧ୍ୟା'ରେ ପ୍ରକୃତିର ଶ୍ୟାମକାନ୍ତ ରୂପ ପ୍ରକଟିତ ହୋଇଛି ।

ଲୀଳାମୟୀ ପ୍ରକୃତି ସୁନ୍ଦରୀ
ଖେଳେ ନାନା ରଙ୍ଗେ କାହିଁ ଭୀମ୍ବ କାହିଁ ହର୍ଷ ମୂର୍ତ୍ତି ଧରି ।

'ଆସହେ ବସନ୍ତ'ରେ ବସନ୍ତର ଆବାହନ ଗଙ୍ଗାଧରଙ୍କ 'ମଳୟ ଆବାହନ' ପରି କିମ୍ବା ଶେଲିଙ୍କ 'ଓଡ୍ ଟୁ ଦ ୱେଷ୍ଟ ୱିଣ୍ଡ' ପରି ଚିରାୟତ ଗୌରବ ଦାବୀ କରେ । 'ଗୋଧୂଳି ଆସ୍ଥା'ରେ ବିଶ୍ୱଜନୀନ ମହତ୍ତ୍ୱର ପ୍ରକୃତି ଚେତନା ସ୍ଥାନ ପାଇଛି । କୁଞ୍ଜବିହାରୀଙ୍କ ପ୍ରକୃତି ପ୍ରାଣତାରେ ନୈରାଶ୍ୟଭାବ ନାହିଁ, ଅଛି ଆଶା ଓ ଆନନ୍ଦର ଏକ ଉଚ୍ଛ୍ୱସିତ ବାଣୀ ।

'ଚିତାଚନ୍ଦ୍ର' ପର୍ଯ୍ୟାୟର କବିତାଗୁଡ଼ିକରେ ପ୍ରକୃତିର ଏକ ସାମଗ୍ରିକ ସତ୍ତା, ବିପୁଳ ବିସ୍ତାର ଓ ନିତ୍ୟ ନୂତନ ରୂପରେ କବି ଆତ୍ମହରା ହୋଇଛନ୍ତି । ପ୍ରକୃତିର ଅନ୍ତଃସ୍ଥଳରେ ଅନନ୍ତ ଭୂମାର ସତ୍ତା କବି ଉପଲବ୍ଧି କରିଛନ୍ତି । ନିଃସଙ୍ଗ ମୁହୂର୍ତ୍ତରେ କବି ପ୍ରକୃତିର ଉଦାର ଅଙ୍ଗନରେ ଭ୍ରମଣର ସ୍ମୃତିକୁ ରୋମନ୍ଥନ କରିଛନ୍ତି । କବିଙ୍କ ଅନୁଭବରେ ବିରାଟ ପ୍ରକୃତି ହୋଇ ଉଠିଛି ଏକାନ୍ତ ନିକଟ ଓ ଆତ୍ମୀୟ । ଜୀବନର ସକଳ ଶୂନ୍ୟତା ପ୍ରକୃତିରେ ପୂର୍ଣ୍ଣ ହୋଇ ଉଠେ । ଜ୍ୟୋତ୍ସ୍ନାର ପ୍ରଲେପରେ ପୃଥିବୀର ପୁଲକିତ ବେଶ, ବର୍ଷାର ଅଜସ୍ର ବାରିଧାରା ଭିତରେ ସ୍ପନ୍ଦନରତା ପୃଥିବୀର ଜୀବନ ପ୍ରୀତି, ଧୂଆଁ ଧାରର ପ୍ରବାହ ମଧ୍ୟରେ ସଭ୍ୟତାର ବିବର୍ତ୍ତନର ଧାରା କବି ଲକ୍ଷ୍ୟ କରିଛନ୍ତି । 'ଉଲର' ହ୍ରଦ ଭ୍ରମଣ କାଳରେ କବି ମାନସରେ ପ୍ରକୃତିର ଯେଉଁ ମାର୍ମିକ ଚିତ୍ର ଫୁଟି ଉଠିଛି ତାରି ଭିତରେ ପଶୁ-ପକ୍ଷୀ, ପାହାଡ଼-ପର୍ବତ ଓ ଚଳମାନ ମାନବ ଜୀବନର ଐକ୍ୟତାନ ଧ୍ୱନିତ ହୋଇଛି ।

କୁଞ୍ଜବିହାରୀଙ୍କ ଦୁଇଟି ପ୍ରକୃତି ଚିତ୍ରଣ ଆଧାରିତ ଖଣ୍ଡକାବ୍ୟ 'ଝୁଞ୍ଜୁମା' ଓ 'ଝାଗ୍ରା' ( 'ଫେଣିଲ ଲକ୍ଷେ ରୁଧିର ପ୍ରପାତ ଯେନ ମୋ ହୃଦୟ କଣେ' ) । ଦୁଇଟି

ଜଳପ୍ରପାତର ପ୍ରାକୃତିକ ଦୃଶ୍ୟ ଏହି ଦୁଇ କାବ୍ୟରେ ଅତି ମନୋମୁଗ୍ଧକର ଭାବରେ ବର୍ଣ୍ଣିତ । ସଙ୍ଗେ ଯେପରି କି କେଉଁ ଆଦିମ ବେଗବତୀ ନିର୍ଝରଣୀର ମୁକ୍ତଛନ୍ଦରେ ଧ୍ୱନିତ ହୋଇଛି ଜାତୀୟତା ଓ ମାନବତାବାଦର ମହାମନ୍ତ୍ର ।

ଏକ ଶାନ୍ତ ସମାହିତ ନିର୍ଜନ ପ୍ରକୃତି କୋଳରେ ଆତ୍ମବିଭୋର କବିପ୍ରାଣର ମାର୍ମିକ ଅଭିବ୍ୟକ୍ତି ଯେଉଁ ଡୁଡୁମା କାବ୍ୟର ସୃଷ୍ଟି । ପ୍ରକୃତିର ପ୍ରାଣପୂର୍ଣ୍ଣ ପ୍ରକାଶ ଜୀବନ୍ତ ହୋଇ ଉଠିଛି କାବ୍ୟର ପ୍ରତି ଛନ୍ଦେ ଛନ୍ଦେ । ୧୯୪୫ ରେ ଆହୂତ ଉତ୍କଳ ସମ୍ମିଳନୀରେ ଯୋଗଦେବାକୁ ଯାଇ କବି ଡୁଡୁମା ପ୍ରପାତ ଦେଖିଥିଲେ । କେବଳ ଦେଖି ନଥିଲେ ଡୁଡୁମାର ମଞ୍ଜୁଳ ପ୍ରକୃତି ଭିତରେ ନିଜର ଆତ୍ମସତ୍ତାକୁ ନିମଜ୍ଜିତ କରି ପ୍ରକୃତିର ଅନନ୍ତ ପ୍ରାଚୁର୍ଯ୍ୟକୁ ପ୍ରାଣଭରି ଉପଭୋଗ କରିଥିଲେ । 'ଡୁଡୁମା' କାବ୍ୟଟିରେ ବନ୍ଧନହୀନ ନିର୍ଲିପ୍ତ ହୃଦୟର ବିସ୍ତାର ଅଛି ଓ ସ୍ୱଚ୍ଛମନା ଶିଶୁର କୌତୂହଳ ବି ଅଛି । ଆଧୁନିକ ନାଗରିକ ଜୀବନର ରୁଦ୍ଧ ବକ୍ଷୁବ୍ଧ ଚିତ୍ତର ଭାବମୁକ୍ତି ଏଥିରେ ଉନ୍ମୁକ୍ତ ହୋଇଅଛି । ମାଛକୁଣ୍ଡ ନଦୀର ବର୍ଣ୍ଣନାରେ କବି ବହୁ ଉପମା ବ୍ୟବହାର କରିଛନ୍ତି । ହାସ୍ୟମୟୀ, ଯୌବନୋନ୍ମତ୍ତା, ବ୍ରୀଡାବତୀ ବଧୂ ପରି ନଦୀର ରୂପ କେତେବେଳେ ଆନନ୍ଦମୁଖର ପୁଣି କେତେବେଳେ ଶୀର୍ଣ୍ଣା, ବିରହ-ବିଧୁରା । ଏସବୁ ବର୍ଣ୍ଣନାରେ କବି ଭାଷା ଗୁମ୍ଫନ ଓ ଛନ୍ଦର ଦୋଳନର ଚମତ୍କାରିତା ମଧ୍ୟରେ ବହୁ ପ୍ରାଣଚଞ୍ଚଳ ଚିତ୍ର ଅଙ୍କନ କରିଛନ୍ତି ।

ମାଛକୁଣ୍ଡ ନଦୀଟିରେ ହସି ହସି କିଶୋରୀ ଯେସନ,
କିବା ଆଜି ଧାଇଁଯାଏ ଦେଖି ଆଶା ଗୋଲାପୀ ଲପନ ।

ପରବର୍ତ୍ତୀ ପର୍ଯ୍ୟାୟରେ ଅଙ୍କିତ ହୋଇଛି ଶିଖରିଙ୍କିତ, ମେଘମେଦୁରିତ ପର୍ବତର ଦୃଶ୍ୟ । ପାଣ୍ଡୁର ଆକାଶ ଓ ଲତା ପଲ୍ଲବରେ ଚିର ସବୁଜ ଉପତ୍ୟକା । ଏହି ଅରଣ୍ୟ ପ୍ରକୃତି ମଧ୍ୟରେ ନଦୀର ରୂପ ଅତ୍ୟନ୍ତ ଚିତ୍ରଧର୍ମୀ । କେଉଁଠି ମୃଦୁ କେଉଁଠି ପୁଣି ପ୍ରଖରା; କେଉଁଠି ଉପଳ ଖଣ୍ଡକୁ ଚୁମ୍ବନ ଦେଉଛି, କେଉଁଠି ଅବା ପ୍ରିୟ ଦୟିତ କୃଷ୍ଣଶିଳାକୁ ବାହୁବେଷ୍ଟନ କରି ଆଲିଙ୍ଗନ କରୁଛି । ଜନନୀ ବାତ୍ସଲ୍ୟ ପରି ଗଣ୍ଡ ତାର କେଉଁଠି ସୁଗଭୀର, ପୁଣି ବିମାତାର କୃତ୍ରିମ ସ୍ନେହପରି କେଉଁଠି ଶଯ୍ୟା ସିକତିଳ । ଏଇ ସବୁ ଦୃଶ୍ୟ ଦେଖି କବିଙ୍କ ମନ କେତେବେଳେ ପାର୍ଥିବ ସୌନ୍ଦର୍ଯ୍ୟର ଇନ୍ଦ୍ରିୟଗ୍ରାହ୍ୟ ନାନ୍ଦନିକ ଅନୁଭୂତିରେ ବିଭୋର, କେତେବେଳେ ଅବା ଅତୀନ୍ଦ୍ରିୟ ଅପାର୍ଥିବ ଚିନ୍ତାରେ ନିମଗ୍ନ ହୋଇଛି । ଏକ ମନୋଜ୍ଞ ଶରତ ସନ୍ଧ୍ୟାର ଦୃଶ୍ୟ କବିଙ୍କ ଅନ୍ତରକୁ ସ୍ପର୍ଶ କରିଛି । ସୂର୍ଯ୍ୟାସ୍ତର ଲୋହିତ ଆଭା ଓ ଉଦିତ ଚନ୍ଦ୍ରର ରଜତ ଧାରା ମିଶି ପାର୍ବତ୍ୟ ଅଞ୍ଚଳକୁ ବର୍ଣ୍ଣାଢ୍ୟ କରିଛି । ଏହାରି ମଧ୍ୟରେ କବିଙ୍କ ମନରେ ଦେଖାଦେଇଛି ଏକ ଜାତୀୟ ବେଦନାବୋଧ । ଯେଉଁଠି ଜଡ ଓ ଚେତନ ମଧ୍ୟରେ ପ୍ରଭେଦ ନାହିଁ; ପାର୍ଥିବ ମାୟା, ଦୁଃଖ ଓ ଅବସାଦ ନାହିଁ । ଅଛି କେବଳ ଅନିର୍ବଚନୀୟ ଅନୁଭବର ଜଗତ । ଭକ୍ତକବି

ମଧୁସୂଦନଙ୍କ ପରି ପ୍ରକୃତିର ଅନନ୍ତ ବିପୁଳ ରୂପ ମଧ୍ୟରେ ମାନବଜୀବନର ସକଳ କ୍ଷୁଦ୍ରତାକୁ ହଜାଇ ଦେବାର ଅନୁଭୂତି କବିଙ୍କୁ ସ୍ପର୍ଶ କରିଛି । ଶେଷରେ କବିମନର ବିଚ୍ଛେଦ ପ୍ରକାଶ 'ଚିଲିକା'ରେ ରାଧାନାଥଙ୍କ ନୈରାଶ୍ୟ ଅନୁଭୂତି ପରି ଅବସାଦଗ୍ରସ୍ତ । କିନ୍ତୁ କବି ଶେଷରେ ବୃଢ଼ୁମ୍ବାଠାରୁ ଚିରନ୍ତନ ଆଶା ଓ ଆଶ୍ୱାସନା ପାଇ ବିଦାୟ ନେଇଛନ୍ତି ।

ବାଧା ବିଘ୍ନ ଗିରି ଶୃଙ୍ଗେ ନଦୀଧାରା ସମ ଯିବୁ ଝରି,
ବିପଦେ ଧରିବୁ ଧୈର୍ଯ୍ୟ ସହିଷ୍ଣୁତା ପରବତ ପରି ।
ଜୀବନ ଦୁର୍ଦ୍ଦିନେ ଚିର ନିରେଖିବୁ ଆଶା-ବିଦ୍ୟୁଲ୍ଲତା,
ଖ୍ରୀମକାନ୍ତ ଶାନ୍ତ ଧ୍ୱାନ୍ତ ମଣିଷର ଜୀବନ ସର୍ବଥା ।

( କୁ : ଫ ୧ମ ଭାଗ/ପୃ. ୧୯୭ )

'ବାଗ୍ରା' ଖଣ୍ଡ କାବ୍ୟଟି ୧୯୪୮ରେ ରଚିତ । ଏଥିରେ ସୌନ୍ଦର୍ଯ୍ୟ ଦର୍ଶନ ଅପେକ୍ଷା କବି ଅନ୍ତରର ବେଦନାବୋଧ ଅଧିକ । ବ୍ୟଥା ଓ ଅନୁଶୋଚନାର ସ୍ୱରଲିପି ଏଥିରେ ମାର୍ମିକ ଭାବେ ଅଭିବ୍ୟଞ୍ଜିତ । 'ବାଗ୍ରା' ପ୍ରପାତ ଉପରେ ଆସିଛି ବର୍ଷା । ବର୍ଷାର ଚିତ୍ର ପୃଷ୍ଠପଟ୍ଟରେ କବି ପାର୍ବତ୍ୟ ପ୍ରକୃତିର ଚିତ୍ର ଅଙ୍କନ କରିଛନ୍ତି । ନୀଳ ଆକାଶରେ କଳା ବଉଦ, ବର୍ଷାର ଅବିରତ ଧାରାପାତ ଯେପରି ପାର୍ବତ୍ୟ ପ୍ରକୃତିର ଚିତ୍ରକୁ ଜୀବନ୍ତ କରିଛି । କବି ଗିରିନଦୀ ଓ ବାଗ୍ରା ପ୍ରପାତର ଗତିପଥ ବର୍ଣ୍ଣନା କରୁ କରୁ ପାର୍ବତ୍ୟ ଅଧିବାସୀମାନଙ୍କର ଜୀବନଚିତ୍ର ଆଙ୍କିଛନ୍ତି । 'ପରଜା' ଗ୍ରାମର ଦୃଶ୍ୟ ସଜ୍ଜାରେ ପ୍ରକୃତିର ଚିର ଚଞ୍ଚଳରୂପ ପ୍ରକଟିତ ହୋଇଛି ।

ପ୍ରକୃତି ନବ ଅଦ୍‌ଭୁତ ଛନକାରେ
ନବ ବିବାହବେଶିନୀ ବଧୂ ସମ ଗୃହେଁ
ମଞ୍ଜୁଳ ମମତାରେ । ( କୁ : ଫ ୨ୟ ଭାଗ/ପୃ. ୯ )

ଏହି ଜୀବନ-ଚିତ୍ରଣ ଭିତରେ ସମକାଳୀନ ଦ୍ୱନ୍ଦ୍ୱଶାଗ୍ରସ୍ତ ଜାତୀୟ ଜୀବନର ସଙ୍କଟ ଓ ସମସ୍ୟା କବିଙ୍କୁ ଚିନ୍ତିତ କରିଛି । ପ୍ରକୃତି କୋଳରେ ଶାନ୍ତି ନ ପାଇ କବି ବିଷାଦଭରା ଜୀବନର କ୍ଷତାକ୍ତ ବେଦନା ଅନୁଭବ କରିଛନ୍ତି । ଫେରିଛନ୍ତି ଲକ୍ଷେ ରୁଧିର ପ୍ରପାତର କାରୁଣ୍ୟ କାହାଣୀକୁ ହୃଦୟରେ ବହନ କରି । ଏହି ବେଦନା-ଦଗ୍ଧ ଅନୁଭୂତି ହିଁ ତାଙ୍କ କାବ୍ୟକୁ ଭାବଷ୍ପନ୍ଦିତ କରିଛି ।

"ଗିରି ଦୁଲାଲୀ ରୂପସୀ ବାଗ୍ରା ଦେଖିବ
ଯାଇଥିଲି ସୁଖି ମନେ
ଆହା, ଫେରିଲି ଲକ୍ଷେ ରୁଧିର ପ୍ରପାତ
ଘେନି ମୋ ହୃଦୟ କଣେ ।"

'କଙ୍କାଳର ଲୁହ'ରେ ବନ୍ୟାବିଧ୍ୱସ୍ତ ପଲ୍ଲୀ ଜୀବନର ଅଶ୍ରୁସଜଳ ଚିତ୍ର ଅଙ୍କିତ ।

ଗାଥାଗୀତ ଗୁଡ଼ିକରେ ମଧ୍ୟ କୁଞ୍ଜବିହାରୀ ପ୍ରକୃତିକୁ ପୃଷ୍ଠଭୂମି ଭାବରେ ଚିତ୍ରଣ କରିଛନ୍ତି । ପ୍ରକୃତିର ମନୋଜ୍ଞ ରଙ୍ଗଶାଳାରେ ଗାଥାର ନାୟକ ନାୟିକାଙ୍କୁ ଅବତୀର୍ଣ୍ଣ କରାଇଛନ୍ତି କବି । ବୀର ନାୟକର ଦୃପ୍ତ ପଦଧ୍ୱନି ଭୈରବ ରବରେ ଅଶନି ପ୍ରହାର କରେ । ବେଦନାହତ ନାୟକର ଚିତ୍ତ ଭୂମିର ଚିତ୍ର ଫୁଟାଇବା ଲାଗି ଆଷାଢ଼ ରାତ୍ରିର ନିବିଡ଼ ନିର୍ଜନତା ଭିତରେ ଅନ୍ଧକାର ଡେଣା ଝାଡ଼େ । ସ୍ୱଦେଶ ଜନନୀର ଅଶ୍ରୁ ସଞ୍ଚିତ ହୋଇ ବାରିଧାରା ରୂପେ ବର୍ଷିତ ହୁଏ । ଆତ୍ମଦାନ ଉନ୍ମୁଖ ଦଧୀଚିଙ୍କ ଚରିତ୍ର ବର୍ଣ୍ଣନା କରିବା ପୂର୍ବରୁ କବି ଆଶ୍ରମ ପ୍ରଭାତର ବର୍ଣ୍ଣୋଜ୍ଜ୍ୱଳ ଚିତ୍ର ଆଙ୍କିଛନ୍ତି ।

"କୁହୁ କେକା କଳ କାକଳି ଚହଲେ ଉଛୁଳେ କାନନ ବୀଥିକା/ପର୍ଣ୍ଣେ ପର୍ଣ୍ଣେ ସ୍ୱର୍ଣ୍ଣ ବର୍ଣ୍ଣେ ଅରୁଣ କିରଣ ଦୀପିକା/ଭ୍ରମର ଭ୍ରମିତ କୁସୁମେ କୁସୁମେ/ହୋମାନଳ ଧୂମ୍ର ବିମଳିନ ଦ୍ରୁମେ ପ୍ରକୃତ ଶୋଭା ଲିପିକା/କିରଣ ଅରୁଣା ଦଧୀଚ କରୁଣା ଦୟାକୁଳୁକୁଳୁ ଗୀତିକା ।" ଏହିପରି ଅନେକ ଉଦାହରଣ ଭିତରେ କୁଞ୍ଜବିହାରୀଙ୍କ କାବ୍ୟରେ ପ୍ରକୃତି ଚିତ୍ରଣର ବହୁମୁଖୀ ଢଙ୍ଗକୁ ଆଲୋଚନା କରାଯାଇ ପାରିବ ।

କବିଙ୍କ ପ୍ରକାଶିତ ଶେଷ କାବ୍ୟଗ୍ରନ୍ଥ 'ଅପରାହ୍ନର କେତୋଟି ସ୍ୱର'ରେ ମଧ୍ୟ ପ୍ରକୃତି ଚିତ୍ରଣ ଆଧାରିତ ବହୁ ନୂତନ କବିତା ସଙ୍କଳିତ । ଶାନ୍ତି ନିକେତନର ନିର୍ବିଦ୍ୟୁତ ଅନ୍ଧକାର ଭିତରେ ପ୍ରକୃତିର ବିଚିତ୍ର ରୂପ-ରହସ୍ୟକୁ ଉଦ୍‌ଘାଟନ କରିବା ପାଇଁ କବି ଯେପରି କି ଏଠାରେ ବ୍ୟଗ୍ର ହୋଇ ଉଠିଛନ୍ତି । ସମସ୍ୟାବହୁଳ ସାମ୍ପ୍ରତିକ ସମୟ ଓ ଯନ୍ତ୍ରଣାଦଗ୍ଧ ଜୀବନକୁ ଚିତ୍ରଣ କରିବା ପାଇଁ କବି ପ୍ରକୃତିରୁ ବହୁ ପ୍ରତୀକ ଓ ରୂପକଳ୍ପ ସଂଗ୍ରହ କରିଛନ୍ତି । ସେସବୁ ଭିତରେ ଯେପରିକି ନୂତନଭାବରେ ପ୍ରାକୃତିକ ଜଗତକୁ ଆବିଷ୍କାର କରିବାର ସୁଯୋଗ ମିଳିଛି ।

ପ୍ରକୃତି କୁଞ୍ଜବିହାରୀଙ୍କ କାବ୍ୟରେ ସର୍ବଦା ଏକ ମହତ୍ତ୍ୱର ଭୂମିକାରେ ଅବତୀର୍ଣ୍ଣ ହୋଇଛି । 'ପ୍ରଭାତୀ'ଠାରୁ ଆରମ୍ଭ କରି 'ଅପରାହ୍ନର କେତୋଟି ସ୍ୱର' ପର୍ଯ୍ୟନ୍ତ ତାଙ୍କର ପ୍ରତ୍ୟେକ କାବ୍ୟ କବିତାରେ ପ୍ରକୃତିର ବୈଚିତ୍ର୍ୟବିମଣ୍ଡିତ ରୂପ ଦେଖିବାକୁ ମିଳେ । ପ୍ରକୃତି ସହିତ ତାଙ୍କର ପ୍ରଣୟ ଅତି ନିବିଡ଼ ଓ ନିଷିକ୍ତ । ପ୍ରକୃତିର ବିଚିତ୍ର ଅଙ୍ଗନରେ ମନ ଓ ହୃଦୟର ଆବେଗୋଷ୍ଣ ଅନୁଭୂତି ହିଁ ତାଙ୍କ କବିତାର ମୁଖ୍ୟ ରହସ୍ୟ । ତେଣୁ ନିଜସ୍ୱ ଶୈଳୀରେ ତାହା ସମୃଦ୍ଧ । କବି ପ୍ରତିଭାର ଆରମ୍ଭରୁ ପ୍ରକୃତିକୁ ଅବଲମ୍ବନ କରି ସେ କାବ୍ୟରଚନା କରିଛନ୍ତି । କିନ୍ତୁ ମାନସିକ ସଙ୍କଟ ଭିତରୁ ଭାବମୁକ୍ତି ପାଇଁ ପ୍ରକୃତି କୋଳରେ ଆଶ୍ରୟ ଲୋଡ଼ି ନାହାନ୍ତି କିମ୍ବା ଭାବବାଦୀ ପଳାୟନ ମଧ୍ୟ ଗ୍ରହିଁ ନାହାନ୍ତି । ବରଂ ପ୍ରକୃତି ସହିତ ଭାବପ୍ରବଣ କବିଚିତ୍ତର ଏକ ଚିରାୟତ ଏକାତ୍ମୀକରଣ ହିଁ ତାଙ୍କ ସୃଷ୍ଟିରେ ସର୍ବତ୍ର ଲକ୍ଷିତ ହୋଇଛି । ସାମ୍ପ୍ରତିକ ଯନ୍ତ୍ର ଯୁଗରେ ପ୍ରକୃତିକୁ ଆନ୍ତରିକତାର ସହିତ ଭଲ ପାଇବା ପାଇଁ ବେଦନାର୍ତ୍ତ ବ୍ୟସ୍ତ ମଣିଷର ସମୟ ନଥିଲାବେଳେ କୁଞ୍ଜବିହାରୀ କିପରି ପ୍ରକୃତିକୁ ନିଜର କରି ନେଇଛନ୍ତି ତାହା ଏକାନ୍ତ ବିସ୍ମୟକର ।

●●

✳ ସୁରଜମଲସାହା ମହାବିଦ୍ୟାଳୟ, ପୁରୀ

# ।। ଛନ୍ଦଶିଳ୍ପୀ କୁଞ୍ଜବିହାରୀ ।।

ଡକ୍ଟର ରାମବହାଲ ତିୱାରୀ

କବିତା କେବଳ ଭାବ ନୁହେଁ, ଶିଳ୍ପାଶ୍ରିତ କଳା । ସମଗ୍ର ଭାବରେ କବିତା ଉଚ୍ଚସ୍ତରର ଏକ ସୂକ୍ଷ୍ମଶିଳ୍ପ । ଏଇ ଶିଳ୍ପ ଭାଷା, ଛନ୍ଦ, ଅଳଙ୍କାର ଯୋଗେ ଗଠିତ । ଏଇ ଗଠନରେ ହିଁ ଭାବ ଓ ପ୍ରାଣର ପ୍ରକାଶ ଘଟେ, କବିତା ଚରିତାର୍ଥତା ଲାଭ କରେ । ଭାଷା ଅନାଶ୍ରିତ କବିତା ଅକଳ୍ପନୀୟ । ଅନଳଙ୍କୃତ ସାର୍ଥକ କବିତା ଦୁର୍ଲଭ ନୁହେଁ । କିନ୍ତୁ ଛନ୍ଦହୀନ ସାର୍ଥକ କବିତା କୋଟିକେ ଗୋଟିଏ । ସୁତରାଂ କାବ୍ୟଶିଳ୍ପ ଭାବାନୁରୂପ ଶବ୍ଦଚୟନ, ପ୍ରତ୍ୟାଶିତ ବିନ୍ୟାସ-ଜାତ ଧ୍ୱନିର ଝଙ୍କାର-ମାଧୁର୍ଯ୍ୟ ଉପରେ ବହୁଳାଂଶରେ ନିର୍ଭରଶୀଳ । ଏଇ ଧ୍ୱନି-ମାଧୁରୀ-କଳା ହିଁ ଛନ୍ଦଶିଳ୍ପର ନାମାନ୍ତର ମାତ୍ର । ଯଥାର୍ଥ କବି ହିଁ ଜଣେ ଛନ୍ଦଶିଳ୍ପୀ ।

କବିମାନେ ଦୁଇଭାବରେ ଛନ୍ଦ ପ୍ରୟୋଗ କରିଥାନ୍ତି । କୌଣସି ପ୍ରତିଭାବାନ କବି ଦୀର୍ଘକାଳ ବହୁ ପ୍ରଚଳିତ ଛନ୍ଦର ଗତାନୁଗତିକତାଠାରୁ ନିଜ ଭାଷାର କାବ୍ୟ ସରସ୍ୱତୀଙ୍କୁ ମୁକ୍ତିଦାନ ମାନସରେ ଯୁଗୋପଯୋଗୀ ଅଭିନବ ଛନ୍ଦ ନିର୍ମାଣ ଅଥବା ଅନ୍ୟ ଭାଷାଠାରୁ ଆମଦାନୀ କରନ୍ତି । ସେଥିପାଇଁ ପ୍ରାଚୀନତାର ଅନୁପଯୋଗୀ ଭାରରୁ ମୁକ୍ତ ହୋଇ ସ୍ୱଚ୍ଛନ୍ଦ ହୋଇ ଉଠେ ଛନ୍ଦଶିଳ୍ପ । କାବ୍ୟ ନବୀନରୂପରେ ଦେଖାଦିଏ । ଛନ୍ଦ ସଙ୍ଗେ ସଙ୍ଗେ କାବ୍ୟବି ନବଶକ୍ତି ଓ ସୌନ୍ଦର୍ଯ୍ୟରେ ସଞ୍ଜୀବିତ ହୁଏ । ଏଇ ପ୍ରସଙ୍ଗରେ ବଙ୍ଗଳା ଛନ୍ଦକ୍ଷେତ୍ରରେ ମାଇକେଲ ମଧୁସୂଦନ ଦତ୍ତ ବଙ୍ଗଳାରେ ଏବଂ ଭାରତୀୟ ଭାଷାରେ ସର୍ବପ୍ରଥମେ ଇଂରାଜୀ ବ୍ଲାଙ୍କଭର୍ସ (Blank-Verse)ର ଆଦର୍ଶରେ 'ଅମିତ୍ରାକ୍ଷର' ବା ଅମେଳ ପ୍ରବହମାନ ପୟାର ଛନ୍ଦୋବନ୍ଧ ବଳିଷ୍ଠଭାବେ ପ୍ରବର୍ତ୍ତନ କରିଛନ୍ତି । ରବୀନ୍ଦ୍ରନାଥ ପୂର୍ବ ପ୍ରଚଳିତ ମିଶ୍ରବୃତ୍ତ ବା ଅକ୍ଷରବୃତ୍ତ ରୀତି (Mixed Moric Style)କୁ ଅଭିନବ ସାର୍ଥକ ରୂପ ଦେଲେ । 'ରୁଦ୍ଧଦଲ' (Closed Syllable)କୁ ଦ୍ୱିମାତ୍ରିକ ଧ୍ୱନି ମୂଲ୍ୟ ଦେଇ "ନବ୍ୟ କଳାବୃତ୍ତ ରୀତି"ର (New moric style) ପ୍ରବର୍ତ୍ତନ କରିଛନ୍ତି ଏବଂ ଚିର ଅବହେଳିତ ଅପାଙ୍‌କ୍ତେୟ ଲୌକିକ ବା ଦଳବୃତ୍ତ ରୀତି (Syllabic Style)ର ଆବଶ୍ୟକ ସଂସ୍କାର ସାଧନ କରି ତାର ଅନ୍ତର୍ନିହିତ ଶକ୍ତି ଓ ସୌନ୍ଦର୍ଯ୍ୟର ସ୍ୱରୂପ ଉଦ୍‌ଘାଟନପୂର୍ବକ ସାଧୁ ସାହିତ୍ୟ ସଭାରେ ସମ୍ମାନର ଆସନରେ ସୁପ୍ରତିଷ୍ଠିତ କରିଛନ୍ତି । ଫଳରେ ବଙ୍ଗଳା ଛନ୍ଦଶିଳ୍ପ ତିନୋଟି ରୀତି ଏବଂ ତାର ବିବିଧ ଓ ବିଚିତ୍ର ରୂପ ଐଶ୍ୱର୍ଯ୍ୟରେ ସୁସମୃଦ୍ଧ ହୋଇ ଉଠିଲା । ଏଇ ଶ୍ରେଣୀର କବି ଶିଳ୍ପୀମାନେ ନୂତନ ଛନ୍ଦ ପ୍ରବର୍ତ୍ତନ କଲେ—ଏହା ଆହୃତ ହେଉ ବା ମୌଳିକ ହେଉ ।

ଦ୍ୱିତୀୟ ଶ୍ରେଣୀର କବିମାନେ ପୂର୍ବ ପ୍ରଚଳିତ ଛନ୍ଦର ଧାରାକୁ ଆହୁରି ବହୁଳ ଓ ବିଚିତ୍ର ଭାବରେ ବ୍ୟବହାରକରି ଛନ୍ଦ ସରସ୍ୱତୀଙ୍କ ଭଣ୍ଡାରକୁ ଶକ୍ତି, ଶୋଭା ଓ ସମ୍ପଦର ଅର୍ଘ୍ୟରେ ପରିପୂର୍ଣ୍ଣ କଲେ । ଫଳରେ କବିତା ନୂତନ ଶକ୍ତି ଓ ସୌରଭରେ ରସାଣିତ ହେଲା । ଆସିଲା ଚଳିଷ୍ଣୁତା ଓ ପ୍ରାଣ ଶୃଙ୍ଖଳା । ଏଇ ସବୁ କବି ଶିଳ୍ପୀମାନଙ୍କ ପାଖରେ କାବ୍ୟ ଜଗତ୍ ବିଶେଷକରି ଛନ୍ଦ ଶିଳ୍ପର ଜଗତ ଅପରିଶୋଧ ଋଣରେ ଆବଦ୍ଧ । କିନ୍ତୁ କିଏ କାହାକୁ କେତେକାଳ ମନେ ରଖେ ? ଯଦି ଏଇ ସ୍ୱତଃସ୍ଫୂର୍ତ୍ତି ଦାନ ଶ୍ରଦ୍ଧା ଓ ଅନୁରାଗ ସହିତ ଅଧ୍ୟୟନ, ଆଲୋଚନା ଏବଂ ବିଚାର ବିଶ୍ଳେଷଣ କରାଯାଏ—ତାହାହେଲେ କୃତି ସଙ୍ଗେ କର୍ତ୍ତା ମଧ୍ୟ ସ୍ମରଣୀୟ ହୋଇ ଉଠନ୍ତି । ତାର ଅନ୍ୟଥା ହେଲେ ସୃଷ୍ଟି ସହିତ ସ୍ରଷ୍ଟା ମଧ୍ୟ ବିସ୍ମୃତି ଗହ୍ୱରରେ ହଜି ଯାଆନ୍ତି ।

ଓଡ଼ିଆ ସାହିତ୍ୟର ସ୍ୱନାମଧନ୍ୟ ବରେଣ୍ୟ ଅଧ୍ୟାପକ ଡଃ କୁଞ୍ଜବିହାରୀ ଦାଶ ଏକାଧାରରେ କବି, ସମାଲୋଚକ ଓ ଔପନ୍ୟାସିକ୍ । ଓଡ଼ିଆ ଲୋକ ସାହିତ୍ୟର ପଥଦର୍ଶୀ ବିଦ୍ୱାନ କବି ଭାବରେ ସମଧିକ ପରିଚିତ । ଭାରତବର୍ଷ ସ୍ୱାଧୀନ ହେବାର ବହୁ ପୂର୍ବରୁ ଅଧ୍ୟାପକ ଦାଶଙ୍କ କଲମ ମୁନରୁ ଅଜସ୍ର କବିତା ଝରିବାକୁ ଆରମ୍ଭ କରେ । ୧୯୩୭ ସାଲରେ ପ୍ରକାଶିତ ହୁଏ ତାଙ୍କ କାବ୍ୟ ସଞ୍ଚୟନର ପ୍ରଥମ ଭାଗ । ପରବର୍ତ୍ତୀ ଦଶ ବର୍ଷ ମଧ୍ୟରେହିଁ ପ୍ରକାଶିତ ହୁଏ ସଞ୍ଚୟନର ଦ୍ୱିତୀୟ ଓ ତୃତୀୟ ଭାଗ । ଆଜିବି ତାଙ୍କର କବିତା ସୃଷ୍ଟିର ଧାରା ଅବାରିତ । ସୁତରାଂ ପ୍ରୟାସ କରାଗଲେ ସଞ୍ଚୟନର ଆଉ କେତୋଟି ଖଣ୍ଡ ଯେ ନମିଳିବ ଏହା କୁହାଯାଇ ନପାରେ । ଅବଶ୍ୟ ସେ ଲୋକ ସାହିତ୍ୟ ସଂଗ୍ରହ, ଅନ୍ୟାନ୍ୟ ବିଷୟକ ପ୍ରବନ୍ଧ ଓ କେତୋଟି ଉପନ୍ୟାସ ମଧ୍ୟ ପ୍ରକାଶ କରିଛନ୍ତି । ଏହା ସତ୍ତ୍ୱେ ମଧ୍ୟ କବି କୁଞ୍ଜବିହାରୀ ଦାଶଙ୍କ ସୃଷ୍ଟ କାବ୍ୟଲୋକ ଯେମିତି ବିପୁଳ, ସେମିତି ବିଚିତ୍ର ।

ପ୍ରକୃତି ଓ ପରମ୍ପରା, ପ୍ରେମ ଓ ଜୀବନ, ଦେଶାତ୍ମବୋଧ ଓ ସମାଜ ଚେତନା, ଶିଶୁ ମନୋରଞ୍ଜନ ଓ ପଲ୍ଲୀ ଚିତ୍ର ଆଦି ଆଧୁନିକ କାବ୍ୟ ଧାରାର ସମସ୍ତ ବିଭାବରେ ତାଙ୍କର ସଚ୍ଛନ୍ଦ ପଦସଞ୍ଚାର ଘଟିଛି । ଯୁଗ ଚେତନାର ପ୍ରୟୋଜନରେ ଏବଂ ଶିଳ୍ପ ଗୁଣରେ ତାଙ୍କର କବିତା କୃତି ସମୃଦ୍ଧ ତଥା ଉପଭୋଗ୍ୟ ହୋଇ ଉଠିଛି । ଉପଭୋଗ୍ୟ ହେବାର ଗୋଟିଏ ପ୍ରଧାନ କାରଣ ସେ ପୂର୍ବବର୍ତ୍ତୀ ଓଡ଼ିଆ କବିମାନଙ୍କ ଭଳି ଚିରାଚରିତ ପ୍ରଥାରେ କବିତା ଲେଖି ସନ୍ତୁଷ୍ଟ ହୋଇ ପାରି ନାହାନ୍ତି । ଆଧୁନିକ ଯୁଗର ପାଠକମାନଙ୍କ ପାଇଁ ଆଧୁନିକ ଭାବ, ଭାଷା ଓ ଛନ୍ଦ ସାହାଯ୍ୟରେ ଉତ୍କଳର କାବ୍ୟ ସରସ୍ୱତୀଙ୍କୁ ନୈବେଦ୍ୟ ବାଢିଛନ୍ତି ।

କେବଳ ଛନ୍ଦ ରଚନା ନୁହେଁ ଛନ୍ଦ ସେନ ଚର୍ଚ୍ଚା କରିବାରେ ସେ ପ୍ରୟାସୀ । ତେବେ ଏହା ପରିମାଣ ଦୃଷ୍ଟିରୁ ସ୍ୱଳ୍ପ ଓ ଯତ୍ରତତ୍ର ବିଛୁରିତ । ତାଙ୍କ 'ଓଡ଼ିଆ ଲୋକ-ଗୀତ ଓ କାହାଣୀ' ଗ୍ରନ୍ଥରେ ଓଡ଼ିଆ ଲୌକିକ ଛନ୍ଦ ବିଷୟରେ ସ୍ୱଳ୍ପ ପରିସର ମଧ୍ୟରେ ଆଲୋଚନା କରା ଯାଇଥିଲେ ମଧ୍ୟ ସେଥିରେ ଲୌକିକ ଛନ୍ଦର ମୂଳସୂତ୍ର ନିର୍ଦ୍ଧାରଣରେ

ପ୍ରୟାସ ଲକ୍ଷିତ । ତାଙ୍କ ମତରେ ଲୌକିକ ଛନ୍ଦରେ କବିତା ରଚନା କରି ପ୍ରାଚୀନ ଓଡ଼ିଆ କବିମାନେ ଜନପ୍ରିୟତା ଲାଭ କରିଥିଲେ । ସେ ଆହୁରି ମନେ କରିଥିଲେ ଦାଣ୍ଡିବୃତ୍ତ ମଧ୍ୟରେହିଁ ଓଡ଼ିଆ ଲୋକଗୀତ ଛନ୍ଦର ମୂଳତତ୍ତ୍ୱ ନିହିତ । ସ୍ୱଭାବ କବି-ମାନଙ୍କର 'ବଚନିକା' ଛନ୍ଦଟିବି ତାଙ୍କ ମତରେ ଦାଣ୍ଡିବୃତ୍ତ ସହିତ ସମ୍ପୃକ୍ତ । ଏହିସବୁ ଅଭିମତ କ୍ଷେତ୍ରରେ ସ୍ୱର୍ଗତଃ ଶ୍ୟାମସୁନ୍ଦର ରାଜଗୁରୁ ଓ ପଣ୍ଡିତ ନୀଳକଣ୍ଠ ଦାସଙ୍କର ଛନ୍ଦ ବିଷୟକ ଅଭିମତର ସେ ଥିଲେ ସମର୍ଥକ । ଛନ୍ଦର ଗୁରୁତ୍ୱ ତଥା ମହତ୍ତ୍ୱ ବିଷୟରେ ତାଙ୍କର ଅଭିମତ ଛନ୍ଦୋବଦ୍ଧ ହୋଇ ଧରାପଡ଼ିଛି ତାଙ୍କର 'ପ୍ରଭାତୀ' ଗ୍ରନ୍ଥର 'ଛନ୍ଦ' ଶୀର୍ଷକ ଚତୁର୍ଦ୍ଦଶପଦୀ କବିତାରେ । ସେହି ମୂଲ୍ୟବାନ୍ କବିତାଟି ଏଠାରେ ଉଦ୍ଧାର କରାଗଲା—

କେ କହେ କବିତା ପଦ୍ମ ଚରଣ ଶିକୁଳି
ଛନ୍ଦ ? ତା ନୟନ ଅନ୍ଧ ପୁଟୁଳି ବନ୍ଧନ
ସ୍ୱାଧୀନ ବିହଙ୍ଗ ସମ ଉଡନ୍ତା ମୁକୁଳି
କବିତା ନ ଥିଲେ ଏହି କୃତ୍ରିମ ଛନ୍ଦନ
କବିତା ଅମରୀ ତନୁ ସ୍ୱର୍ଗୀୟ ଭୂଷଣ
ଶାନ୍ତ ନୀତ କାନ୍ତ ଚିର ଛନ୍ଦ କବିତାର
ଭାରତୀ ବୀଣାର ସ୍ୱର ବୈଚିତ୍ର୍ୟ କୀର୍ତ୍ତନ
କରେ ଯାହା; ରଶ୍ମି ଯଥା ଶୋଭେ ସବିତାର ।
ସୃଷ୍ଟି ନୁହେଁ ଛନ୍ଦ-ହୀନ ଅନ୍ଧକାରାଗାର
ପଦେ ପଦେ ଜଳେ ସ୍ଥଳେ ଚିରନ୍ତନ ଛନ୍ଦ
ଫୁଟେ ବିଧାତାର; ଚିର ସୁନ୍ଦର ସଂସାର
ବୈଚିତ୍ର୍ୟ ମିଳାଇ ଏଥି ସକଳ ଆନନ୍ଦ
ଏକେ ବା ସମୂହେ ଲଭି ତୁଳନା ସୁନ୍ଦର
ବିଶ୍ୱସୃଷ୍ଟି; ଗୀତେ ଗୀତେ ଛନ୍ଦ, ଛନ୍ଦେ ସ୍ୱର ।

( ପ୍ରଭାତୀ : ସଞ୍ଚୟନ,—୩ୟ ଭାଗ ପୃ ୨୭୧ )

ଏଥିରେ ଭାରତୀୟ କାବ୍ୟଶାସ୍ତ୍ରୋକ୍ତ ଛନ୍ଦତତ୍ତ୍ୱଟି ସୁନ୍ଦର ମୁକ୍ତା ଭଳି ଉଦ୍‌ଭାସିତ ହୋଇ-ଉଠିଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

—୨—

ପ୍ରାଚୀନ ଓଡ଼ିଆ ଛନ୍ଦ ମାତ୍ରାବୃତ୍ତ ଓ ଦାଣ୍ଡିବୃତ୍ତ । ପୁଣି ଦାଣ୍ଡିବୃତ୍ତର ପ୍ରୟୋଗ ସର୍ବାଧିକ । ଆଧୁନିକ ଓଡ଼ିଆ ସାହିତ୍ୟରେ ଆଧୁନିକ ମାତ୍ରାବୃତ୍ତ ବା କଳାବୃତ୍ତ, ଅକ୍ଷରବୃତ୍ତ ବା ମିଶ୍ରବୃତ୍ତ ବା ଦଳବୃତ୍ତ ଲୌକିକ ଛନ୍ଦର ବୈଜ୍ଞାନିକ ନାମ । କବି ଶିଳ୍ପୀ କୁଞ୍ଜବିହାରୀ ଦାଶ ଏହି ତ୍ରିବିଧ ଛନ୍ଦର ବହୁ ବିଚିତ୍ର ସୁନ୍ଦର ଓ ସାର୍ଥକ ବ୍ୟବହାର କରିଛନ୍ତି । ତାଙ୍କ

ଅବଲମ୍ବିତ ଛନ୍ଦ ନିର୍ମାଣର ପଥଟି ଓଡ଼ିଆ କବି ସମ୍ପ୍ରଦାୟ ଦ୍ୱାରା ପୂର୍ବରୁ ହିଁ ସମାଦୃତ ଓ ଗୃହୀତ । ସୁତରାଂ ପ୍ରୟୋଗରେ ବହୁ ପ୍ରକାର ଅଭିନବତା ଓ ସାର୍ଥକତା ଦୃଷ୍ଟ ହେଲେ ମଧ୍ୟ ଛନ୍ଦଶିଳ୍ପୀ ଭାବରେ ସେ ସମୁଜ୍ଜ୍ୱଳ କରିଛନ୍ତି ଦ୍ୱିତୀୟ ବିଭାଗଟିକୁ । ଓଡ଼ିଆ କାବ୍ୟ ରସିକ ସମ୍ପ୍ରଦାୟ ତାଙ୍କ ପାଖରେ ଅପରିଶୋଧ୍ୟ ଋଣରେ ଋଣୀ । ସେ ସାଧାରଣ ଭାବରେ କଳାବୃତ୍ତ, ମିଶ୍ରବୃତ୍ତ ଓ ଦଳବୃତ୍ତ—ତିନି ରୀତିରେହିଁ କବିତା ଲେଖିଛନ୍ତି । ସୁପରିମିତ, ସୁନିୟମିତ ଓ ପୁନରାବର୍ତ୍ତିତ ଧ୍ୱନି ସାହାଯ୍ୟରେ କବିତା ରଚନାରେ ଯେପରି ନୈପୁଣ୍ୟ ଦେଖାଇଛନ୍ତି—ଅମେଳ ପ୍ରବହମାନ ପୟାର (ଅମିତ୍ରାକ୍ଷର), ସମେଳ ପ୍ରବହମାନ ପୟାର, ଅମେଳ ଓ ସମେଳ ମହାପୟାର, ଅମେଳ ଓ ସମେଳ ମୁକ୍ତକ ଏପରିକି ଗଦ୍ୟ ଛନ୍ଦରେ କବିତା ଲେଖି ସେ ସମ୍ଭାବ୍ୟ ସମସ୍ତ ପ୍ରକାର ଧ୍ୱନି ସୁଷମା ଓ ମାଧୁରୀରେ ଓଡ଼ିଆ କାବ୍ୟକାନନକୁ ଭରପୁର ତଥା ସମୃଦ୍ଧ କରିଛନ୍ତି ।

ଉତ୍କଳରେ ସବୁଜପ୍ରାଣ ତରୁଣ ତରୁଣୀମାନଙ୍କ ଚିତ୍ତରେ ଯୁଗୋପଯୋଗୀ ସଚ୍ଚିନ୍ତ୍ୟତା, ସ୍ୱଦେଶପ୍ରୀତି ଓ ସାହିତ୍ୟ ରୁଚି ଜନ୍ମାଇବା ଉଦ୍ଦେଶ୍ୟରେ ଯେଉଁ 'ସବୁଜ ସାହିତ୍ୟ ସମିତି' (୧୯୨୦)ରେ ଗଢି ଉଠିଥିଲା କବି କୁଞ୍ଜବିହାରୀ ତାହାର ଯୋଗ୍ୟ ଉତ୍ତର ସାଧକ । ତାଙ୍କର ପ୍ରଧାନତଃ କଳାବୃତ୍ତ ରୀତି ପ୍ରତି ଅନୁରାଗ ଥିଲା । ଏହି ଛନ୍ଦ ରୀତିରେ ପ୍ରତ୍ୟେକ ରୁଦ୍ଧଦଳ ( close syllable ) ଦୁଇକଳା ମାତ୍ରା ରୂପେ ଗଣ୍ୟ । କାରଣ ମୁକ୍ତ ଦଳ ଉଚ୍ଚାରଣ ନିମିତ୍ତ ଯେତିକି ସମୟ ଲାଗେ ତାହା ଏକ କଳା (mora) ପରିମାଣ ଭାବରେ ଗଣ୍ୟ । କିନ୍ତୁ ରୁଦ୍ଧ ଦଳ ଉଚ୍ଚାରଣରେ ତାର ଦୁଇଗୁଣ ସମୟ ଲାଗେ, ଏଣୁ ଦୁଇକଳା ମାତ୍ରା ଭାବରେ ଗଣ୍ୟ । ଏହି ଭାବରେ ଏହା କଳାମାତ୍ରିକ ଭାବରେ ଗୃହୀତ ଓ ଏହି ଛନ୍ଦ ରୀତିର ନାମ କଳାମାତ୍ରିକ । କଳାମାତ୍ରିକ ରୀତିଯୁକ୍ତ କବିତାକୁ ସାଧାରଣତଃ ସ୍ୱରଲହରୀ ଲଗାଇ ପଢିବାକୁ ହୁଏ । ଏହି କଳାମାତ୍ରିକ (moric style) ରୀତିରେ ଚାରି, ପାଞ୍ଚ, ଛଅ ଓ ସାତ ମାତ୍ରାର ପର୍ବ (Foot) ରଚିତ ହୁଏ । ସେଥିପାଇଁ ଏହି ଛନ୍ଦ ପ୍ରୟୋଗ ଦ୍ୱାରା କବିତାରେ ବିବିଧ ବୈଚିତ୍ର୍ୟ ପରିଲକ୍ଷିତ ହୁଏ; ଯାହା ଅନ୍ୟ ରୀତିରେ ସମ୍ଭବ ନୁହେଁ । ଆଧୁନିକ କବିମାନଙ୍କଠାରେ ଏହି ସ୍ୱରାଶ୍ରିତ ଛନ୍ଦରୀତିଟି ଗୀତିକବିତା ଓ ଅନ୍ୟାବଧ ରଚନାର ଉତ୍କୃଷ୍ଟ ବାହନ ରୂପେ ସମାଦୃତ । କବି କୁଞ୍ଜବିହାରୀ ଦାଶଙ୍କ ରଚନାରେ ମଧ୍ୟ ଏହି ନବ୍ୟକଳାବୃତ୍ତ ଛନ୍ଦଟିର ବହୁ ବିଚିତ୍ର ଓ ସାର୍ଥକ ପ୍ରୟୋଗ ଲକ୍ଷ୍ୟ କରାଯାଏ । ବର୍ତ୍ତମାନ ଅନୁରୂପ ଛନ୍ଦଶିଳ୍ପ ନିଦର୍ଶନ ଦ୍ୱାରା କୁଞ୍ଜବିହାରୀଙ୍କ ଛନ୍ଦ ନୈପୁଣ୍ୟର ପରିଚୟ ଦିଆଯାଇ ପାରେ ।

(୧) ଚତୁଷ୍କଳ ପାର୍ବିକ ଏକପଦୀ : ( ୪ + ୪ + ୧ = ୯ ମାତ୍ରା )

ତୁମ ଡାକ ଶୁଣି ଦେଶ ମୁକ୍ତି
କୋଟି କୋଟି ଦେଶ ଜନ ସୁଖ ସ୍ଫୂର୍ତ୍ତି,

ଜାତି ଇଜ୍ଜତ ତୁମ ଭୁଜରେ
ଧନ ସମ୍ପଦ୍ ପଦ ରଜରେ
ଦେଶ ଉନ୍ନତି ତବ ଆସ୍ୟେ
କୋଟି କବିତା ମଧୁର ହାସ୍ୟେ
ଅରି ପତନ ଦୃଷ୍ଟି ଲସ୍ୟେ
ଲେଖ ଇତିହାସ ଦେଶ ନିଶାଣେ

( ଖାରବେଳ ଦିଗ୍‌ବିଜୟ : ବାରଣ୍ଣୀ, ସଞ୍ଚୟନ ୩ୟ, ପୃ ୩୬୦ )

ଉଦ୍ଧୃତାଂଶର ପ୍ରତ୍ୟେକ ପଂକ୍ତିରେ ଦୁଇମାତ୍ରା ଯୁକ୍ତ ଗୋଟିଏ ଲେଖାଏଁ ଅତିପର୍ବ ବା anacrusicର ଅବସ୍ଥିତି ଫଳରେ କବିତା ପାଠରେ ଧ୍ୱନିତରଙ୍ଗର ବୈଚିତ୍ର୍ୟ ପରିଲକ୍ଷିତ । ଅନୁରୂପଭାବରେ ଅତିପର୍ବ ପରିଚନ ଓ ବ୍ୟବହାରରେ କବିଙ୍କର ବିଶେଷ ଦକ୍ଷତା ଲକ୍ଷ୍ୟ କରାଯାଏ ।

(୨) ଚତୁଷ୍କଳ ପାର୍ବିକ ଦ୍ୱିପଦୀ : ( ୪ + ୪ ।। ୪ + ୪ । = ୧୬ ମାତ୍ରା )

କାଶ୍ମୀର, କାଶ୍ମୀର କୁଣ୍ଡଳେ ଚେଷ୍ଟାଫୁଲ୍
କାଶ୍ମୀର, କାଶ୍ମୀର କଣ୍ଠେ ତୋ ବୁଲ୍ ବୁଲ୍ ।

( କାଶ୍ମୀର : ଆଲବମ୍, ସଞ୍ଚୟନ ୧ମ, ପୃ ୩୧୧ )

ଚତୁଷ୍କଳା ମାତ୍ରାର ଚତୁଷ୍ପର୍ବ ପର୍ବରେ ପ୍ରଥମ ଧ୍ୱନୋଟିର ପ୍ରାରମ୍ଭରେ ରୁଦ୍ଧଦଳ ରହିବାରୁ ଝୋଙ୍କ ବା ପ୍ରସ୍ୱର ସୃଷ୍ଟି ହୋଇଛି । ସେହିପରି ଚତୁର୍ଥ ପର୍ବରେ ରୁଦ୍ଧଦଳ ଓ ଝୋଙ୍କ ନ ରହି ମଧ ବୈଚିତ୍ର୍ୟ ପରିଲକ୍ଷିତ । ସାଧାରଣତଃ ଓଡ଼ିଆ କବିତା କ୍ଷେତ୍ରରେ ଏ ଧରଣର ନିଦର୍ଶନ ଖୁବ୍ କମ୍ ଲକ୍ଷ୍ୟ କରାଯାଏ ।

(୩) ପଞ୍ଚକଳା ପାର୍ବିକ ଦ୍ୱିପଦୀ : ( ୫ + ୫ ।। ୫ + ୫ । ୨୦ ମାତ୍ରା )

ଗୋଟିଏ ଆଖି ଗଲାଣି ନିଭି
ଆଉ ଗୋଟିଏ ଅସ୍ତ ପ୍ରାୟ
ତଥାପି ତୁମ କଲମ ଚଳେ
ସ୍ୱାଗତ ଶଶିଭୂଷଣ ରାୟ ।

(ଚୌପଦୀ : ଶଶିଭୂଷଣ ରାୟ, ଯେଉଁମାନେ ବଞ୍ଚିଛନ୍ତି, ସଞ୍ଚୟନ ୧ମ, ପୃ ୧୪୬ )

(୪) ପଞ୍ଚକଳା ପାର୍ବିକ ଚୌପଦୀ ( ୫ + ୫ ।। ୫ + ୫ ।। ୫ + ୫ ।। ୫ + ୩ । = ୩୮ ମାତ୍ରା )

ନାହିଁ ମୋ ମନେ ଝଟିକା ଭୀତି/ଜୀବନ ଲାଗି ଜୀବନ ପ୍ରୀତି
ପ୍ରକୃତି ମୋ ପିଆସୀ ସୁଧା/ତା' ଶୀତ ହୃଦେ ବରଷ ।

ଯେତେ ଯା ଶୋଭା ଶଇଲ ବନେ କୁସୁମ ହୋଇ ମୋହର ମନେ
ତଥ୍ୟ ହଅ ସତ୍ୟ ହଅ ସୁନ୍ଦରର ଝଲସେ ।

(ମନର ଯେତେ ସପନ ମୋର ; ରାଗିଣୀ, ସଞ୍ଚୟନ ୩ୟ ପୃ.୩୮୨)

ତୃତୀୟ ପଦର ପ୍ରଥମ ପର୍ବରେ 'ସ୍ୱକୃତମୋ' ସାଧାରଣତଃ ଗୁରୁମାତ୍ରା ରୂପେ ଉଚ୍ଚାର୍ଯ୍ୟମାନ ହେଲେ ମଧ୍ୟ 'ମ'ର ଉଚ୍ଚାରଣ ପ୍ରସାରିତ ଏବଂ ଦ୍ୱିମାତ୍ରିକ ହେବାରୁ ସହଜରେ ପାଞ୍ଚକଳା ମାତ୍ରା ମିଳିଥାଏ ।

(୪) ଷଟ୍‌କଳ ପାର୍ବିକ ଦ୍ୱିପଦୀ ; (୬+୬ ॥ ୬+୨ । = ୨୦ମାତ୍ରା )

(କ) ମୃତ୍ୟୁ ପଥର ଯାତ୍ରୀକି କେବେ ମୃତ୍ୟୁକୁ କରେ ଭୟ ?
ସେବା ବ୍ରତ ଯାର ଅନ୍ତରେ ତାର ମୃତ୍ୟୁର ପରାଜୟ ।

(କଙ୍କାଳର ଲୁହ, ; ସଞ୍ଚୟନ ୧ମ ପୃ.୭)

ଷଟ୍‌କଳ ପାର୍ବିକ କଳାବୃତ୍ତ ଛନ୍ଦୋବଦ୍ଧ ଦ୍ୱିପଦୀ ଗୀତିକବିତାର ବିଶେଷ ଉପଯୋଗୀ ହେବାରୁ କବି ଏହାର ସର୍ବାଧିକ ପ୍ରୟୋଗ କରିଛନ୍ତି ।

(୫) ଏ ଯେ ନବ ପଲ୍ଲବ
ଛୁଇଁ ନାହିଁ ନବ
ଊଷାର ଚରଣ ରେଖା ।
ତାର ଅଙ୍ଗେ ଅଙ୍ଗେ
ତଡ଼ିତ ତୂଳିରେ
ନବ ଯୌବନ ଲେଖା ।

(ସଞ୍ଚୟନ ଦ୍ୱିତୀୟ ଭାଗ, ପୃ.୨୦)

ଏଠାରେ ପ୍ରତ୍ୟେକ ପଂକ୍ତିର ପ୍ରାରମ୍ଭରେ ଗୋଟିଏ କରି ଦ୍ୱିମାତ୍ରାର ଅତିପର୍ବ ଲକ୍ଷ୍ୟଣୀୟ ।

(୬) ଷଟ୍‌କଳ ପାର୍ବିକ ତ୍ରିପଦୀ ; ୬+୬ ॥ ୬+୬ ॥ ୬+୬+୫=୪୧ମାତ୍ରା

ମଣିଷରେ ଯେତେ ଦେଲ ଅପମାନ
ପଶୁରକ ତାରେ ହେଲା ଅବସାନ ?
ହିଂସା ହତ୍ୟା ବିଦାୟ ଗୀତିକ ହୃଦୟ ପୁରେ ?

(ତୁଣ୍ଡିମାରୁଛି ବସିଲ ଜଣେ / ଯେଉଁମାନେ ବଞ୍ଚିଛନ୍ତି ସଞ୍ଚୟନ ୧ମ.ପୃ.୧୪୭)

ଏହି ପ୍ରକାରର ଷଟ୍‌କଳ ପାର୍ବିକ ତ୍ରିପଦୀ ଓଡ଼ିଆ କାବ୍ୟ କବିତାରେ ଖୁବ୍ ସୁଲଭ ନୁହେଁ ।

(୭). ଷଟ୍‌କଳ ପାର୍ବିକ ଚଉପଦୀ (୬+୬ ॥ ୬+୬ ॥ ୬+୬ ॥ ୬+୩=୪୫ମାତ୍ରା)

ଆମ୍ଭରେ କରି ଚିର ଅବନତ
ବଳିଦେଇ ମୋର ମାନଇଜ୍ଜତ
ପଶୁ ହେବି, ରାଜା, ତୁମ୍ଭେ ଜାତି କେବେ କାହେଁକି ଥାଏ ଭୁଲିସି ?

(ବିପ୍ଳବୀ କବି ଦୀନକୃଷ୍ଣ : ନବ ମାଳିକା, ସଞ୍ଚୟନ, ୨ୟ. ପୃ.୧୬୧)

ଏଠାରେ ଦେଖାଯାଉଛି କଳାବୃତ୍ତ ଗଣଯୁକ୍ତ ଛନ୍ଦ ଯୋଜନାରେ କବି ବିଶେଷ ଦକ୍ଷତାର ସହିତ ଅଗ୍ରସର ହୋଇଛନ୍ତି ଏବଂ ଓଡ଼ିଆ କବିତାକୁ ଅଭୂତପୂର୍ବ ଭାବରେ ସମୃଦ୍ଧ କରିଛନ୍ତି । ତାଙ୍କ ପ୍ରଯୁକ୍ତ ବିବିଧ ବିଚିତ୍ର ରୂପଙ୍ଗପଦର କେତୋଟିମାତ୍ର ନିଦର୍ଶନ ଏଠାରେ ଦିଆଗଲା । ତାଙ୍କ ରଚନାରେ ସପ୍ତକଳ ପାର୍ବିକ କବିତା ଖୁବ୍‌କମ୍ । ତେବେ ଦୁଇଟି ସପ୍ତକଳ ପର୍ବ ସାହାଯ୍ୟରେ ଅମେଳ ପ୍ରବହମାନ ବା ଅମିତାକ୍ଷର ବନ୍ଧ ରଚନାର ଅଭିନବ ପ୍ରୟାସ ତାଙ୍କ ଛନ୍ଦ ଯୋଜନାର ଅନ୍ୟତମ ବିଶେଷ ଦିଗ । ସାଧାରଣଭାବରେ ଆଠ ଓ ଛଅମାତ୍ରାର ଦୁଇଟି ପର୍ବ ସାହାଯ୍ୟରେ ମିଶ୍ରବୃତ୍ତ ଗଠରେ ରଚିତ ହୋଇଥାଏ । ଏଠାରେ ସପ୍ତକଳ ପର୍ବିକ କଳାବୃତ୍ତ ଅମିତାକ୍ଷରର ପଂକ୍ତି ବିଚାର କରାଯାଇପାରେ ।

(୮) ସପ୍ତକଳ ପାର୍ବିକ ପ୍ରବହମାନ ଏକପଦ (୭+୭ । = ୧୪ମାତ୍ରା)

ଶୁଣେ ମୁଁ ବିଜନତା କରୁଣ ଅନ୍ତର
କବିତା କଳରବ, ଖୋଜିମୁଁ ଯାଏ କାହିଁ
ଅନ୍ତରୀକ୍ଷ ଦେଶେ, ସୀମାର ସୀମା ଶେଷେ
ଫଗୁଲ ମେଘ ସମ, ଶାନ୍ତ ଗୋଧୂଳିର
କାହାଣୀ କହେ ମୁହିଁ, ଅସୀମ କାନେକାନେ ।
ଅସୀମ କହେ ମୋତେ ଅରୂପ ରୂପ କଥା
ଉପଲ ଦ୍ୱୀପଖରେ ଲହରୀ ଲପଲପ
କାହିଁକି ଭଙ୍ଗେ ସେ ପ୍ରୀତିର ଗଭୀରତା
(ନାଗରୀ ନାଥ ରଖ ; ଚିତାଚିତ୍ର ସଞ୍ଚୟନ ୧ମ୍ଭ ପୃ୯୧

(୯) ସପ୍ତପଞ୍ଚ କଳପାର୍ବିକ ମିଶ୍ର ଦ୍ୱିପଦୀ . ୭+୫।୭+୨ ।=୨୧ ମାତ୍ରା

ପକାଇ ବାଇଗେଣି ପତର ପାଶେ
ଯେନାର ବୁଲାଇକି ମଥା
କାଟିଲା ଗଛ ପରି ପଡ଼ିଲା ଗଡ଼ି ତଳେ
କ୍ଷଣକେ ବୁଡ଼ିଗଲା ଚେତା ।
କଏ ସେ ଖତ ବୁହେ କେକରେ ହଳ
କଏ ବା ବୁଣୁଅଛି ଧାନ
ପଥିକ ଦାନା ନାହିଁ କଣ୍ଠରେ କେହି ନାହିଁ
ବାଳୁଆ ହୀନ ହତମାନ ।

(ଅନ୍ଧାର ଅସ୍ତ୍ରଅଛି ଘୋଟି : ଭୁଆଁସ କର୍ଣ୍ଣ, ସଂଚୟନ ୩ୟ୍ଭ, ପୃ ୩୭୧)
ଏହି ବିଚିତ୍ର ରଚନାଟିର ପର୍ବ ବିନ୍ୟାସ ସଂସ୍କୃତ ଛନ୍ଦାନୁସାରୀ । ଏଠାରେ ଏହା ଲକ୍ଷଣୀୟ ଯେ ଏଥିରେ ରୁଦ୍ଧଦଳର ପ୍ରୟୋଗ ନାହିଁ । ମାତ୍ରପରବର୍ତ୍ତୀ ଅଂଶରେ ରୁଦ୍ଧଦଳ ରହିବାରୁ ତାହା ଭିନ୍ନ ଛନ୍ଦପ୍ରକୃତି ରୂପଲାଭ କରିଛି ।

-ଗ-

ମିଶ୍ରବୃତ୍ତ ବା ଅକ୍ଷର ବୃତ୍ତ ଛନ୍ଦରୀତିଟି ଦାଣ୍ଡିବୃତ୍ତ ନାମରେ ପରିଚିତ । ଏହା ପ୍ରାଚୀନ ହେଲେ ମଧ୍ୟ ସଂସ୍କୃତ ପ୍ରାକୃତ ବର୍ଣ୍ଣବୃତ୍ତ ଠାରୁ ସ୍ୱତନ୍ତ୍ର । ଏହି ଛନ୍ଦରେ ମୁକ୍ତଦଳ ଏକ କଳାମାତ୍ରା । ଏବଂ ଶବ୍ଦାନ୍ତକ ରୁଦ୍ଧଦଳ ଦୁଇ କଳାମାତ୍ର । କିନ୍ତୁ ଶବ୍ଦର ଆଦି ଓ ମଧ୍ୟସ୍ଥ ରୁଦ୍ଧଦଳ ଏକମାତ୍ରା ରୂପେ ସଂଙ୍କୁଚିତ । ପ୍ରତ୍ୟେକ ପର୍ବରେ ସାଧାରଣ ଭାବରେ ଚାରୋଟି ମାତ୍ରା ରହେ । ସେହି ଦୃଷ୍ଟିରୁ ପର୍ବ ସାହାଯ୍ୟରେ ଏହି ରୀତିରେ ଛନ୍ଦ ବୈଚିତ୍ର୍ୟ ସୃଷ୍ଟି କରିବାର ଅବକାଶ ଅପେକ୍ଷାକୃତ କମ୍ । ସୁତରାଂ ଏହି ଛନ୍ଦ ଯୋଜନା-ରେ କବି କୁନ୍ତଳକୁମାରୀ ଦାଣ ବିଭିନ୍ନ ଆୟତନର ପଂକ୍ତି, ପ୍ରବହମାନ ମୁକ୍ତକ ଏବଂ ମେଳ-ଯୁକ୍ତ ମେଳ ବିହୀନ ବଳର ସମ୍ଭାବ୍ୟତା ନେଇ ବୈଚିତ୍ର୍ୟସୃଷ୍ଟି କରିବାରେ ପ୍ରୟାସୀ ହୋଇ ଛନ୍ତି । ବର୍ତ୍ତମାନ ମିଶ୍ର ବୃତ୍ତ ରୀତିର ବିଭିନ୍ନ ଅକାର ଯୁକ୍ତ କେତୋଟି ଦୃଷ୍ଟାନ୍ତ ଦିଆଯାଇ-ପାରେ ।

(୨) ମହାପୟାର ; (୪+୪ ‖ ୪+୪+୧= ୧୮ ମାତ୍ରା ।)

ପାଷାଣେ ହସାଇ ଫେଣ ଫେଣ ଦନ୍ତେ କାହିଁ ଦନ୍ତୁରିତଗିଲା '
ଚୂର୍ଣ୍ଣିଘସେ ଅଛହସେ୍ୟ ନର୍ତ୍ତ୍ୟଣୀ ରଚେ କେତେ ଲୀଳା ।

(ଉତ୍ତୁମା : ସଂଚୟନ ୧ମ ପୃ-୧୬୯ )

କବି ୮+୬ । =୧୪ ମାତ୍ରାର ପୟାରବନ୍ଧେ ରଚନା କରିଛନ୍ତି ଏହାଛଡ଼ା ୮+୧୦ । = ୧୮ ମାତ୍ରାର ମହାପୟାର ମଧ୍ୟ ସାଫଲ୍ୟ ସହିତ ଲେଖିଛନ୍ତି

(୧) ଦ୍ୱିପଦୀ . (୪+୪+୨ ‖ ୪+୪+୨ । = ୨୦ ମାତ୍ରା । )

ଅନ୍ଧାରେ ରଙ୍ଗ ଚଙ୍ଗ ଆଖି
ଦେହେ ମନେ ନରକର ଜ୍ୱାଳା
ନର୍ତ୍ତୀବେଶେ ଶିଶିର ଝଣିଥେ
ପ୍ରବେଶିଲା ଦ୍ୱାରେ ରକ୍ସାବାଲା ।

(ରକ୍ସାବାଲା . ସେ ଏକ ଲୋମଶ ମାଳହାତ ସଂଚୟନ ୧ମ ପୃ ୬୨ )

ମିଶ୍ରବୃତ୍ତ ରୀତିର ଶବ୍ଦାନ୍ତକ ରୁଦ୍ଧଦଳ ଦ୍ୱିମାତ୍ରିକ ହୁଏ , ଅନ୍ୟତ୍ର ଏହା ଏକମାତ୍ରିକ କଦ୍, ରଙ୍, ନୀର୍, ରକ୍ ପ୍ରଭୃତି ରୁଦ୍ଧଦଳ ଏକମାତ୍ରିକ । ରକ୍ସାବାଲା ଶବ୍ଦଟି ବିଶେଷ ଭାବରେ ଲକ୍ଷଣୀୟ । ଦୃଷ୍ଟି ବିଭାଜନ ଅନୁଯାୟୀ ରକ୍ସାବାଲା ଶବ୍ଦରେ ଛଅଟି ଦଳ ମିଳିବା କଥା । ମାତ୍ର ଶ୍ରୁତିସମ୍ମତ ଭାବରେ ତାହା ରକ୍ସାବାଲା — ଏହିପରି ଚାରୋଟି ଦଳରେ ପର୍ଯ୍ୟବସିତ । ସୁତରାଂ ତାହା ଚତୁର୍ମାତ୍ରିକ । ପ୍ରଥମ ରୁଦ୍ଧଦଳରେ ଗୋଟିଏ ଏବଂ ପରବର୍ତ୍ତୀ ତିନୋଟି ମୁକ୍ତଦଳରେ ତିନୋଟି ଏହିଭଳି ମୋଟ ଚାରିମାତ୍ରା ।

(୩) ହ୍ରସ୍ୱ ଦ୍ୱିପଦୀ (୪+୨ ॥ ୪୧ ÷॥ ୪+୧ । =୨୩ ମାତ୍ରା )

ଶ୍ୟାମଳ କାନନ ପାଟଳ ଆନନ
ଫୁଟିକାସ୍ତ ଫୁନନ , କୁନ୍ଦ ଓ କେକା
ରକ୍ତ ରବକଳେ ଅମ୍ବୁଜକ ଫୁଲେ,
ସବୁଜର ଜଳେ କରଣ ରେଖା

(ପ୍ରଧାନପାଟ : କଳକଲ୍ଲୋଳ , ସଂଚୟନ ୧ମ, ପୃ ୧୯୫)

ଆପାତତଃ ଏହି ରଚନାଟି ଷଟ୍‌ମାତ୍ରିକ ପଦ ବୋଲି ମନେ ହୁଏ । ମାତ୍ର ଏହା ଚତୁର୍ମାତ୍ରିକ ପଦ । ୧୨ ॥ ୧୧ =୨୩ ମାତ୍ରାର ଦ୍ୱିପଦୀ ରୂପରେ ମଧ୍ୟ ଏହା ଗଣ୍ୟ । ଯାହାର ପ୍ରତି ଛଅ ମାତ୍ରା ଶେଷରେ ମେଳ ରକ୍ଷିତହୁଏ । ଅବଶ୍ୟ ଚଉପଦୀ ଭାବରେ ଗଣନା କଲେ ପ୍ରଥମ ଦୁଇପଦର ଶେଷରେ ମେଳ ଲକ୍ଷ୍ୟକରାଯାଏ ଏବଂ ଶେଷ ପଦଟି ଅପୂର୍ଣ୍ଣ :ପଞ୍ଚମାତ୍ରିକ ।

(୪) ଅମିତ୍ରାକ୍ଷର ବା ଅମେଳ ପ୍ରବହମାନ ପୟାର : ୮ ॥ ୬ । =୧୪ମାତ୍ରା

ପାଷାଣ ଚରଣେ ରକ୍ତ ! ବାଳ ରବିକର
ପଡ଼ିଲି ଲୋହିତ ରେଖା ଅତି ମନୋହର
ଲଗିଛି କି ସ୍ନେହ ଭରେ ଉଦୟାସ୍ତ ପରେ
ପଦେ ତବ ? ଅବା ଛିନ୍ନ ରକ୍ତ ଜବା ଜଳେ ।
ପଲ୍ଲୀର ପୂଜାରୀ କଏ କେଉଁ ବର ଆଶେ
ପୂଜାହିଁ କି ଦେବ ଭବ ? ମହିମା ପ୍ରକାଶେ ।

(ପାଷାଣ ଚରଣେ ରକ୍ତ : ପ୍ରଥମସର୍ଗ , ସଂଚୟନ ୨ୟ ପୃ୧୩)

(୫) ଅମେଳ ମୁକ୍ତକ : (ଛଅ ଠାରୁ ଚଉଦ ମାତ୍ରାର ଚରଣ )

କାହିଁ ସେଇ କେଶ ସଜା
କୁସୁମ କୁମାରୀ ବେଶ , ନିକୁଞ୍ଜ ଦୋଳନ
କର୍ପୂର ଚନ୍ଦନଘୋଟା , କସ୍ତୁରୀ କୁଙ୍କୁମ
ଉଷୀର ମୃଣାଳ
ଦୀପାଳୋକେ, ଧୂପଗନ୍ଧ
ସାରୀ ଗୀତ, କାକତୁଆ ପ୍ରଶ୍ନ ଚମତ୍କାର

(ରାଜକନ୍ୟା . ଅଲବମ୍ , ସଂଚୟନ ୧ମ ପୃ-୨୮୭)

(୬) ସମେଲ ମୁକ୍ତକ . (ଚଉଦଠାରୁ ଅଠର ମାତ୍ରାର ଚରଣ)

ସଜଫୁଟା ଗୋଲାପରୁ ଏକ ଟେଖାସି ଦେଉଁ କେବଣେ
କୋକିଳ କହିଲା ଏଇ ବାଣୀ
ତୁମେ ଗୋ ଉଦ୍ୟାନ ରୂପରାଣୀ
ଏଇ କାଳେ କିଏ ତାର ପଛୁ ଦେଲା ଧକ୍କା ।
ଲୋଟିଲା ଭୂତଳେ କ୍ଷଣେ ଲାଞ୍ଛିତା ସେ ସାନ୍ତାଳ ବାଳିକା ।

(ରକ୍ତେ ତାର ଫୁଟିଲାଗୋଲାପ . ସେ ଏକ ଲୋମଶମାଳହାତ ସଂଚୟନ୧ମ ପୃ

ମିଶ୍ରବୃତ୍ତ ଗୀତର ବହୁ ବିଚିତ୍ର ପ୍ରୟୋଗରେ କବି କୁଞ୍ଜବିହାରୀ ଦାଶ ଓଡ଼ିଆ କାବ୍ୟ କାନନକୁ ସୁଶୋଭିତ ଓ ସମୃଦ୍ଧ କରିଛନ୍ତି । ତାର ନିଦର୍ଶନସ୍ୱରୂପ ସେଥିମଧ୍ୟରୁ କେତୋଟି ଏଠାରେ ଉଦ୍ଧାର କରାଗଲା । ଏଥିରୁ ତାଙ୍କ ଛନ୍ଦଶୈଳୀର ସମ୍ୟକ ପରିଚୟ ଆଭାସିତ ହୁଏ ।

—୪—

ଦଳବୃତ୍ତ ବା ଲୌକିକ ଗୀତ ପ୍ରଧାନତଃ ତାଳଆଶ୍ରିତ । ସେଥିପାଇଁ ପ୍ରତିଟି ଦଳକୁ ଏକମାତ୍ରା ଭାବରେ ହିସାବ କରାଯାଇ ତାଳର ସ୍ଥାୟୀତ୍ୱକାଳ ଅନୁଯାୟୀ ମାତ୍ରାନିରୂପଣ କରାଯାଏ । ସେଥିନିମିତ୍ତ ଏହାକୁ ଦଳମାତ୍ରିକ ଛନ୍ଦ କହିବା ବିଧେୟ । ସାଧାରଣ ଭାବରେ ଏହି ଛନ୍ଦରେ ପର୍ବ ରଚିତ ହୁଏ ଚାରିଗୋଟି ଦଳ ସାହାଯ୍ୟରେ । ତେବେ ଓଡ଼ିଆରେ ଅଧିକାଂଶ ଦଳ ସ୍ୱରାନ୍ତ ଯୋଗୁ ଛନ୍ଦ ଧ୍ୱନିସଙ୍କୋଚର ଅବକାଶ କମ୍ । ଫଳରେ ପାଞ୍ଚ ଏପରିକି ବେଳେବେଳେ ଛଅ ଦଳମାତ୍ରାର ପର୍ବ ଗଠିତହୁଏ । ଯାହାହେଉ ଏ ଛନ୍ଦରେ ଲୌକିକ ଗୀତ ଏବଂ ସ୍ୱରଧ୍ୱନି ଅନୁରଣନ ମିଳିଥାଏ । ଲୋକ ସାହିତ୍ୟର ପ୍ରଖ୍ୟାତ ପଣ୍ଡିତ କବି କୁଞ୍ଜବିହାରୀ କହିଛନ୍ତି—

"ମୋର ବିଶ୍ୱାସ ଡଗଡ଼ମାଳୀ ଅପେକ୍ଷା ଗାୟକଙ୍କ ପଦେମଳ ମୁକ୍ତ ମୌଖିକ ରଚନା ବନ୍ୟାର ପ୍ରବଳଧାରାପରି ପ୍ରବାହିତ ହେଉଥିବା ଅଜସ୍ର ଲୋକଗୀତର ସ୍ୱତନ୍ତ୍ର୍ୟ ଅଧିକ (ଓ ଲୋ.କା.୧୯୫୮ ପୃ.୩୬୬) । ସେ ଉକ୍ତ ଗ୍ରନ୍ଥରେ ଲୌକିକ ଓଡ଼ିଆ ଛନ୍ଦର ବିଭିନ୍ନ ରୂପଭଙ୍ଗୀର ବୈଚିତ୍ର୍ୟ ସନ୍ଧାନ କରିଛନ୍ତି । ପୁନଶ୍ଚ ପ୍ରୟୋଜନାନୁଯାୟୀ ଏଥିରେ କବିତା ମଧ୍ୟ ରଚନା କରିଛନ୍ତି । ଏଠାରେ ସେଥିରୁ କେତୋଟି ଦୃଷ୍ଟାନ୍ତ ଦିଆଯାଉଅଛି ।

(୧) ପଞ୍ଚଦଳ ପାର୍ବିକ ଦ୍ୱିପଦୀ (୫+୫ || ୫+୨=୧୭ ଦଳମାତ୍ରା)

ହସି ହସୁରା ମୁହଁଟିତାର ଫୁଲୁ ଫୁଲୁକା ଗାଲ
ସରୁ ସରୁଆ ଡଫାଳିଓଠ ପୋହଳାପରି ନାଲ
ମୁଗେଇ ଦାନ୍ତ ମାଳତୀକଢ଼ୀ ଦଧାଢ଼ିନେହେ ଥୁଆ

କଳରେ ଥାଇ ଦୁଇଟିଦାନ୍ତ ଗଜୁରେ ନୂଁଅ ନୂଁଅ
(ଝୁଲୁ ; ଇଟିକିଲି, ସଂଚୟନ ୩ୟ ପୃ. ୪୦୩)

ସତର ଦଳ ମାତ୍ରିକ ପ୍ରଥମପଂକ୍ତି ଯଦି "ହସହସୁରା ମୁହଁଟିତାର ଫୁଲୁଫୁଲୁକା ଗାଲ" ରୂପେ ପଢ଼ାଯାଏ ତେବେ ଷୋଳଦଳ ମାତ୍ରିକ ପର୍ବ ଓ ଚଉଦ ଦଳମାତ୍ରାର ପୟାର ବନ୍ଧ ସ୍ପଷ୍ଟ ହୋଇଉଠିବ । ଅର୍ଥାତ୍ ପାଞ୍ଚ ଦଳମାତ୍ରିକ ପର୍ବର ପ୍ରବଣତା ଷୋଳଦଳ ମାତ୍ରା ଭାବରେ ଲକ୍ଷିତ ହୁଏ ।

(୨) ଚାତୁର୍ଦ୍ଦଳ ପାର୍ବିକ ଦ୍ୱିପଦୀ ପୟାର (୪+୪ ॥ ୪+୨ = ୧୪ଦଳ ମାତ୍ରା)

ମନ୍ତ୍ରବଳେ ବହୁରୂପୀ ହୁଅନ୍ତି ମୁଁ ଯଦି
— ବହି ଯାନ୍ତି ମରୁପରେ ହୋଇ ମହାନଦୀ
ସମସ୍ତେ ହୁଅନ୍ତେ ରଜା ସମସ୍ତେ ପରଜା (ପୂର୍ବବତ୍, ସଂଚୟନ ୩ୟ ପୃ. ୪୧୦)

ଏହା ଚଳବୃତ୍ତ ପୟାରପଦ୍ଧତିର ଦୃଷ୍ଟାନ୍ତ ।

(୩) (ଏକ ପଦୀ ଦ୍ୱିପଦୀ ଓ ଚଉପଦୀ ୪+୩ । ୪+୪ ; ୮ ॥ ୮ ॥ ୮ ॥ ୭)

ଆସ ବୀର ଭାଇ ହେ
ତୁଣ୍ଡ ଭେରୀ ଢକ୍କା ଯୋଡ଼ି
ନାଗରା ବଜାଇ ହେ ।
ଦୁନ୍ଦୁଭି ବଜାଅ ଦମାମ୍ ଦମାମ୍
ହିନ୍ଦୁ ଶିଖ ହେ ମୁସଲମାନ୍
ସ୍ୱାଧୀନ ଭାରତ ମୁକ୍ତଭାରତ
ବୀର ଗୀତ ଗାଇ ହେ । (୧)

(ଅସବାର ଭାଇ ହେ ଡାକ୍‌ଡମାଡମ୍‌ଡମ୍, ସଂଚୟନ, ୩ୟ ପୃ. ୫୬୪)

ଚତୁର୍ଦ୍ଦଳ ମାତ୍ରିକ ପର୍ବର ବଣ୍ଟନ ନିମିତ୍ତ ଉଦ୍ଧରଣରେ କିଛି ପରିମାଣରେ ଆଧୁନିକ ହେବାକୁ ପଡ଼ିବ । ଦଳବୃତ୍ତ ପ୍ରୟୋଗରେ କବି କୁଞ୍ଜବିହାରୀ ସାହସ ଓ ବିଚକ୍ଷଣତାର ଆଶ୍ରୟ ନେଇଥିବା ଦେଖାଯାଏ । ତାଙ୍କ ପ୍ରବର୍ତ୍ତିତ ଧାରାର ଅନୁସୃତ ଘଟିଲେ ଓଡ଼ିଆ କାବ୍ୟ ଜଗତ ଛନ୍ଦ କ୍ଷେତ୍ରରେ ଅଭିନବ ଓ ସମୃଦ୍ଧିର ଅଧିକାରୀ ହେବ ଏଥିରେ ସନ୍ଦେହ ନାହିଁ ।

କବିଶିଳ୍ପୀ କୁଞ୍ଜବିହାରୀ ଦାଶ କିଛି ବିଦେଶୀ କବିତା ଏବଂ ଋକ୍‌ବେଦୀୟ ସୂକ୍ତର ଅନୁବାଦ କରିଛନ୍ତି । ଏହି ଅନୂଦିତ ରଚନାଗୁଡ଼ିକରେ ଭାଷା ଗୁରୁତ୍ୱ ସହିତ ଛନ୍ଦ ଯୋଜନା ସୁନ୍ଦର ଓ ସାର୍ଥକ ହୋଇପାରିଛି । ଛନ୍ଦ କ୍ଷେତ୍ରରେ ନବଦିଗନ୍ତ ଉନ୍ମୋଚିତ ହୋଇଛି । ସାମଗ୍ରିକ ଭାବରେ ଅନୁଧ୍ୟାନ କଲେ ଓଡ଼ିଆ ଛନ୍ଦ ଯେଉଁରେ ତାଙ୍କର ଶିଳ୍ପବୈଭବ ଯେପରି ବିପୁଳ ସେହିପରି ଗଭୀର । ଆମ୍ଭେମାନେ ଏହାକୁ ଯେତେ ଉପଲବ୍ଧି କରିବା ଆମ୍ଭମାନଙ୍କ ମନ ଆନନ୍ଦରେ ଉତ୍ଫୁଲ୍ଲିତ ଓ ଶ୍ରଦ୍ଧାରେ ଅବନମିତ ହୋଇଆସିବ ।



# ॥ ମୋ କାହାଣୀ କାହାଣୀ ନୁହେଁ ॥

ବିନୋଦ ରାଉତରାୟ

ପ୍ରାଚୀନ କାଳର ସମ୍ମାନାସ୍ପଦ କବି, କଳାକାର ସାହିତ୍ୟିକ ପ୍ରଭୃତି ବିଦଗ୍ଧ ବ୍ୟକ୍ତିଙ୍କର ଚିତ୍ତାକର୍ଷକ ଜୀବନର ବିସ୍ତୃତ ବିବରଣୀ ମିଳେ ନାହିଁ । ଏହାର ସବୁଠାରୁ ବଡ଼କାରଣ ହେଉଛି ପ୍ରକୃତ ମହିମା ଓ ମାଧୁର୍ଯ୍ୟମଣ୍ଡିତ ବ୍ୟକ୍ତିମାନେ ଅପ୍ରକାଶ୍ୟ ରହିବାକୁ ପସନ୍ଦ କରୁଥିଲେ ତେଣୁ ସେପରି ବ୍ୟକ୍ତିଗତ ଜୀବନ କିମ୍ବା ଆତ୍ମଜୀବନୀ ପ୍ରଭୃତି ଲେଖା ଯାଉଥିଲା । ଯଦି କୌଣସି କ୍ଷେତ୍ରରେ ସାହିତ୍ୟିକମାନେ ନିଜର ରଚନା ମଧ୍ୟରେ ଜୀବନର ସଂକ୍ଷିପ୍ତ ସୂଚନା ବା ସଙ୍କେତ ଛାଡ଼ିଯାଇଥିଲେ ତାହାକୁ ପୁଞ୍ଜି କରି ଅନ୍ୟମାନେ ସେମାନଙ୍କର ଜୀବନୀ ଲେଖି ଚେଷ୍ଟା କରୁଥିଲେ । ଏଣୁ ସେଥିରେ କେତେ ସତ୍ୟ, କେତେ କଳ୍ପନା ବର୍ଣ୍ଣନା କରିବା ଥିଲା ସାଧ୍ୟାତୀତ । ଏପରିକି ଆଦିକବି ମହର୍ଷି ବାଲ୍ମୀକି କିମ୍ବା ରସିକ କବି କାଳିଦାସଙ୍କ ସମ୍ବନ୍ଧରେ ଯେଉଁ କାହାଣୀ ସବୁ ଶୁଣାଯାଏ, ତାହା ତାଙ୍କର ପ୍ରକୃତ ଜୀବନକଥା କି ନୁହେଁ ଠିକ୍ କରିବା କଠିନ ବ୍ୟାପାର ଜଣାଯାଏ ଯେ ବାଲ୍ମୀକି ଥିଲେ ଦସ୍ୟୁ ରତ୍ନାକର । ପରବର୍ତ୍ତୀ କାଳରେ ଯେତେବେଳେ ଅଶ୍ରୁର ନିର୍ଝର ତାଙ୍କର ହୃଦୟରୁ ଝରିଲା । ସେତେବେଳେ ସେ ସୃଷ୍ଟି କଲେ ସଫଳ ମହାକାବ୍ୟ ରାମାୟଣ । ସେହିପରି ରସିକ କବି କାଳିଦାସ ଥିଲେ ନିପଟ ଅରସିକ ଓ ଗଣ୍ଡମୂର୍ଖ । ଦେବୀଙ୍କ କରୁଣା ଲାଭକରିଥିଲେ ଚିର ରସସ୍ରଷ୍ଟା ବିଦଗ୍ଧ ପଣ୍ଡିତ ପ୍ରବର । ଏହା ସତ୍ୟ, ନାଁ କଳ୍ପନା ? ଭକ୍ତମାନଙ୍କକୃତ ଭାବପଲ୍ଲବର କାହାଣୀ ? ଏଥିରେ ପାଠକର କୌତୂହଳ ନିବୃତ୍ତି କଲାଭଳି ଉପାଦାନ କେତେ ପରିମାଣରେ ରହିଛି ?

ମୋଗଲ ଯୁଗରେ ଯେଉଁ କେତୋଟି ମୂଲ୍ୟବାନ୍ ଆତ୍ମକଥା ଲିଖିତ ହୋଇଛି, ସେଥିରେ ପ୍ରତାପର ଆଲେଖ୍ୟରେଖା ଠାରୁ ଧୂମ୍ରକୁଣ୍ଡଳୀର ମାତ୍ରା ଆଦୌ ନ୍ୟୂନ ନୁହେଁ । ବରଂ ଅବନମିତା ସାହାଜାହାନ ଦୁହିତା କୁମାରୀ ଜାହାନାରାଙ୍କର ଆତ୍ମକାହାଣୀ ସେହି ଧୂମ୍ରକୁଣ୍ଡଳୀର ବ୍ୟୂହ ଅତିକ୍ରମ କରି ପାଠକ ଅନ୍ତରରେ ଜ୍ୟୋତିଃ ଶିଖା ବିକୀରଣ କରି ପାରିଛି । ଏହି ବିରହିଣୀ ନାରୀର ମର୍ମଗାଥା ଯେ ଅବହେଳାର ସାମଗ୍ରୀ ନୁହେଁ, ତାହା ପ୍ରଥମେ ବିଶ୍ୱସମ୍ମୁଖରେ ଉପସ୍ଥାପିତ କରିଥିଲେ ଦରଦୀ ରମଣୀ ଆଣ୍ଡ୍ରୀୟା ବୁଟେନ୍‌ଗନ । ବିଶ୍ୱସାହିତ୍ୟର ସୁଲିଖିତ ଓ ତଥ୍ୟ ସମ୍ବଳିତ ଆତ୍ମଜୀବନୀ ରୂପେ ଯେଉଁ ସମ୍ମାନାସ୍ପଦ ଗ୍ରନ୍ଥ ଗୁଡ଼ିକ ନିର୍ଦ୍ଦିଷ୍ଟ ସ୍ଥାନ ଅଧିକାର କରିଛି, ସେଗୁଡ଼ିକ ମଧ୍ୟରୁ ନାଟ୍ୟକାର ଗୋଏଟେଙ୍କର Poetry and Truth, ହେଲେନ୍ କେଲରଙ୍କର The story of my life, ଚର୍ଚ୍ଚିଲଙ୍କର war memoirs ହାର୍ ହିଟଲରଙ୍କର Mein kempf, ବାର୍ଣ୍ଣାଡଶଙ୍କର Sixteen self sketches, ମହାତ୍ମା ଗାନ୍ଧିଙ୍କ My Experiment with Truth, ଓ

କବିଗୁରୁ ରବୀନ୍ଦ୍ରନାଥଙ୍କ ଜୀବନ ସ୍ମୃତି ପ୍ରଧାନ । ଆଧୁନିକ କାଳରେ ଯେଉଁ ମୁଷ୍ଟିମେୟ କର୍ମବୀର ଆପଣାର ଜୀବନକଥା ନିର୍ଲିପ୍ତ ଭାବେ ଲିପିବଦ୍ଧ କରି ସତ୍ୟର ପ୍ରତି ଯଥାଯଥ ନିରପେକ୍ଷ ଅନ୍ତର୍ଗତ ପର୍ଯ୍ୟବେକ୍ଷଣ କରିଛନ୍ତି, ସେମାନେ ସମସ୍ତେ ନିଜ ଜୀବନକୁ ନିଜେହିଁ ଗଢ଼ିଛନ୍ତି । ସେଥିପାଇଁ ସେମାନଙ୍କର ଗ୍ରନ୍ଥଗୁଡ଼ିକ ଯେଉଁପରି ତଥ୍ୟ ବହୁଳ ଓ ଅନୁକରଣୀୟ ହୋଇଛି, ସେହିପରି ହୋଇପାରିଛି ସୁଖପାଠ୍ୟ । ଏ କ୍ଷେତ୍ରରେ ଉଦାହରଣ ସ୍ୱରୂପ ମହାତ୍ମାଗାନ୍ଧିଙ୍କର My Experiment with Truth, ନେତାଜୀ ସୁଭାଷଚନ୍ଦ୍ରଙ୍କର Indian struggle ଜବାହରଲାଲଙ୍କର Autobiography ପ୍ରଭୃତିକୁ ନିର୍ଦ୍ୱିଧାରେ ଗ୍ରହଣ କରାଯାଇପାରେ । ଭାରତୀୟ ସାହିତ୍ୟ କ୍ଷେତ୍ରରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ 'ଜୀବନସ୍ମୃତି ଓ ଛେଲେ ବେଲା,' ଶିଳ୍ପୀ ଅବନୀନ୍ଦ୍ରନାଥଙ୍କର ଆପନକଥା, ପଣ୍ଡିତ ଗୋଦାବରୀଶଙ୍କର 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ' ପ୍ରଭୃତି ପୁସ୍ତକ ଗୁଡ଼ିକ କେବଳ ଘଟଣା ପ୍ରବାହର ଏକ ବିବରଣୀ ପୁସ୍ତକ ହୋଇ ରହିନାହିଁ । ଏଗୁଡ଼ିକରେ ବିଚାର ମୁକ୍ତ ପ୍ରବାହ, ଶ୍ଳେଷୋକ୍ତି, ବକ୍ରୋକ୍ତି, ଶାଳୀନତା, ସ୍ୱଚ୍ଛନ୍ଦସ୍ୱର ପ୍ରତିଫଳନ ସହିତ ଆଧୁନିକ କାଳର ସର୍ବସ୍ୱ ଓ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ନିରପେକ୍ଷ ଚିତ୍ର ପ୍ରତିଫଳିତ ହୋଇଛି । ଏଣୁ ସାହିତ୍ୟିକ, କଳାକାର, କବି, ସମାଜସେବୀ ଓ ରାଜନୀତିଜ୍ଞ ପ୍ରଭୃତିଙ୍କର ଜୀବନଚରିତରୁ ଶୌର୍ଯ୍ୟ, ବୀର୍ଯ୍ୟ, ମହତ୍ତ୍ୱର ବ୍ୟାପକ ଭାବରେ ପରିଚୟ ମିଳୁଛି । ସମାଜର ନିମ୍ନ ଶ୍ରେଣୀରେ ପଡ଼ିରହିଥିବା ନିମ୍ନଗାମୀ ବାରବନିତା ମାନଦାଦେବୀଙ୍କ ଲିଖିତ 'ଶିକ୍ଷିତା ପତିତାର ଆତ୍ମଚରିତ' କିମ୍ବା ମଦ୍ୟପ ଲମ୍ପଟ ବ୍ୟଭିଚାରୀ 'ରମେଶ' ଦା ର ଆତ୍ମକଥା'ର ଅନ୍ତର୍ନିହିତ ଦୀପ୍ତି ନିଶ୍ଚିତଭାବେ ଅନ୍ଧକାରାଚ୍ଛନ୍ନ ସମାଜକୁ ଉଜ୍ଜ୍ୱଳ କରି ପାରିଛି ।

ଏହିଭଳି ଏକ ପୃଷ୍ଠପଟ ଉପରେ ଓଡ଼ିଆ ସାହିତ୍ୟକୁ ରଖି ବିଚାର ବା ବିଶ୍ଳେଷଣ କଲେ ଜଣାଯାଏ ଯେ ଆତ୍ମକଥା ବେଶଗଟି ଅବହେଳିତ । ତଥାପି ଯେଉଁ ଅଙ୍ଗୁଳିମେୟ ଗ୍ରନ୍ଥ ଦୃଷ୍ଟିଗୋଚର ହୁଏ ତାହା ମୋଟାମୋଟି ଦୁଇଟି ଶ୍ରେଣୀର । ପ୍ରଥମଟି ଅନୂଦିତ ଆତ୍ମକଥା । ଏହି ପର୍ଯ୍ୟାୟରେ ମହାତ୍ମାଗାନ୍ଧି, ପଣ୍ଡିତ ନେହରୁ, ଖଲିଲ ଜିବ୍ରାନ, ଆଲବର୍ଟ ସ୍ୱିତ୍‌ଜର, ମାକ୍‌ସିମ୍ ଗର୍କି ପ୍ରଭୃତିଙ୍କ ଆତ୍ମଜୀବନୀର ଅନୁବାଦ ଦେଖିବାକୁ ମିଳେ । ଭାଷାନ୍ତରକାରୀ ଭାବେ ଗୋପବନ୍ଧୁ ଚୌଧୁରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଚିତ୍ତରଞ୍ଜନ ଦାସ, ସୁନନ୍ଦକର ପ୍ରମୁଖ ନିଶ୍ଚିତ ଧନ୍ୟବାଦର ପାତ୍ର । ସେମାନେ ଓଡ଼ିଆ ପାଠକପାଠିକାଙ୍କ ହାତରେ କେତେକ ଅନବଦ୍ୟ ସାହିତ୍ୟକୃତି ଟେକିଦେବାକୁ ସମର୍ଥ ହୋଇଛନ୍ତି । ଏହା ବ୍ୟତୀତ ଯେଉଁ ଅନ୍ୟ କେତେକଜଣ ଜନନେତା, ସାହିତ୍ୟିକ, କବି, ଶିକ୍ଷାବିତ୍, ପ୍ରଶାସକ, ସମାଜସେବୀ ଓ ସଂସ୍କୃତିପ୍ରେମୀ ଆପଣାର ଘଟଣାବଳୀକୁ ଲିପିବଦ୍ଧ କରିଛନ୍ତି, ସେହି ଗୁଡ଼ିକ ମଧ୍ୟରେ ସଂସାରପ୍ରତି ଯଥାଯଥ ନିରପେକ୍ଷ ଅଭିମତ ପରିବେଷଣ କରାଯାଇଛି ବୋଲି ବାକୁ ପଡ଼ିବ । କାରଣ ପ୍ରବଳ ଭାବେ ସ୍ୱାଭାବିକ ସାହିତ୍ୟକୃତି ହିଁ ବହୁସମୟରେ ଜାତୀୟ ସାହିତ୍ୟ ଏକାଡ଼େମୀର ଉପାସନ ଲାଭ କରିଛି । ଫକୀରମୋହନଙ୍କ ଆତ୍ମଚରିତ ଓ

ଗଙ୍ଗାଧର ମେହେରଙ୍କ ଆତ୍ମଜୀବନୀ ଯେଉଁ ବଳିଷ୍ଠ ପରମ୍ପରା ସୃଷ୍ଟିର ସୂଚନା ଦେଇଥିଲା ତାହାର ଯଥାର୍ଥ ପୁଷ୍ଟି ସାଧନ କରିଛନ୍ତି ପଣ୍ଡିତ ଗୋଦାବରୀଶ, ପଣ୍ଡିତ ନୀଳକଣ୍ଠ, ସମାଜସେବୀ ଲକ୍ଷ୍ମୀ ନାରାୟଣ, ଶିକ୍ଷାବିତ୍ ଡକ୍ଟର ମାନସିଂହ, ପ୍ରଶାସକ ଶରତଚନ୍ଦ୍ର, ସବୁଜ ସାହିତ୍ୟିକ କାଳନ୍ଦୀଚରଣ, ଯାତ୍ରାକାର ବୈଷ୍ଣବ ପାଣି, ଦସ୍ୟୁ ସର୍ଦ୍ଦାର ବାହାଗି ନାୟକ, ବିପ୍ଳବୀ ପବିତ୍ରମୋହନ, ଉତ୍କଳକେଶରୀ ମହତାବ, କବିଚନ୍ଦ୍ର କାଳୀଚରଣ ପ୍ରମୁଖ । ଉପରୋକ୍ତ ଆତ୍ମଜୀବନୀଗୁଡ଼ିକ ଗୋଟିଏ ଗୋଟିଏ ଅପୂର୍ବ ସୃଷ୍ଟିରୂପେ ସୁବିଦିତ । ଆଧୁନିକକାଳର ତରୁଣମାନଙ୍କର ମାନସପଟରେ ଊନବିଂଶ ଓ ବିଂଶ ଶତାବ୍ଦୀର ଉତ୍କଳୀୟ ପରିବାର, ସମାଜ, ରାଜନୀତି, ଶିକ୍ଷାନୀତି, ସଂସ୍କୃତି, ଶାସନ ସମ୍ବନ୍ଧରେ ଉପରୋକ୍ତ ଆତ୍ମକାହାଣୀଗୁଡ଼ିକ ଜୀବନ୍ତଚିତ୍ର ଅଙ୍କନ କରିପାରିବ ବୋଲି ସ୍ୱତଃ ବିଶ୍ୱାସ ଜନ୍ମେ । ଓଡ଼ିଆର ପରିବାର, ସମାଜ, ସାହିତ୍ୟ, ଧର୍ମ, ଲୋକଚରିତ୍ର, ରାଜନୀତି, ପ୍ରଭୃତିର ସାମଗ୍ରିକ ରୂପ ଉପରୋକ୍ତ ଗ୍ରନ୍ଥଗୁଡ଼ିକ ମାଧ୍ୟମରେ ଜାତୀୟ ଜୀବନ ସହିତ ଏକାନ୍ତଭାବେ ବିଜଡ଼ିତ ହୋଇ ପାରିଛି । ଏଗୁଡ଼ିକ କେବଳ ଉପନ୍ୟାସ ଭଳି ସୁଖପାଠ୍ୟ ହୋଇନାହିଁ, ଅକଳ୍ପିତଭାବେ ସମାଜର ଉତ୍ଥାନ ପତନମୟ ଘଟଣାବହୁଳ ଇତିବୃତ୍ତ ହୋଇପାରିଛି ।

ଜାତୀୟସାହିତ୍ୟଏକାଡେମୀ ଦ୍ୱାରା ସ୍ୱୀକୃତ ଆତ୍ମକଥାଗୁଡ଼ିକ ମଧ୍ୟରୁ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ 'ମୋ କାହାଣୀ' ଗୋଟିଏ । ଏହାପରେ ଆଉ ଓଡ଼ିଆ ଆତ୍ମଜୀବନୀ ଗ୍ରନ୍ଥ ପୁରସ୍କୃତ ହୋଇନାହିଁ ବୋଧହୁଏ । ସେହି ଦୃଷ୍ଟିରୁ ମୋ କାହାଣୀକୁ ଅନନ୍ୟ ଗ୍ରନ୍ଥ ରୂପେ ଗ୍ରହଣ କରାଯାଇପାରେ । ଡକ୍ଟର କୁଞ୍ଜବିହାରୀ ସ୍ୱଭାବତଃ କବି । ସଂସାରର କଠିନ ବାଧା ଭିତର ଦେଇ ନିଜ ଜୀବନର ଛନ୍ଦ ନିର୍ମାଣ କରିଛନ୍ତି ଓ ଘରପାଖର କ୍ଷୁଦ୍ରତାକୁ ବିଚକ୍ଷଣ ଆଣୁବିକ୍ଷଣିକ ସର୍ଭେ ଦ୍ୱାରା ବଡ଼ କରି ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି । ଯେଉଁ ସବୁ ତୁଚ୍ଛାତିତୁଚ୍ଛ ଉପାଦାନକୁ ହାତ ପାହାନ୍ତାରେ ପାଇଛନ୍ତି, ତାହାକୁ ନିଜର ଅପୂର୍ବ ରଚନା ଶକ୍ତିର ଚମତ୍କାରିତା ଦ୍ୱାରା ଗଦ୍ୟ-କାବ୍ୟରେ ପରିଣତ କରିପାରିଛନ୍ତି । 'ମୋ କାହଣୀ' ପୂର୍ବରୁ 'ଶ୍ରୀମନ୍ତ' ପୁସ୍ତକର କେତୋଟି ମନ୍ତବ୍ୟରଚନା ମଧ୍ୟରେ ସେ ନିଜର ପରିଚୟ ଦେବାକୁ ଆଗ୍ରହୀ ହୋଇଥିଲେ । ସେଗୁଡ଼ିକ ଯେ ତାଙ୍କ ଜୀବନାଲେଖ୍ୟ ଚିତ୍ରଣ ପରିସରରୁ ଭିନ୍ନ, ଏହା କୁହାଯାଇ ପାରିବ ନାହିଁ । ୧୯୬୦ ମସିହାରେ ପ୍ରକାଶିତ ଉକ୍ତ ପୁସ୍ତକର ମୋ ଜୀବନର ଗୋଟିଏ ଅଧ୍ୟାୟ, ପରିଚୟ, ମୁଁ କାହିଁକି ଲେଖେ ଇତ୍ୟାଦିକୁ ମୋ କାହାଣୀର ପ୍ରସ୍ତୁତି ପର୍ବ ମଧ୍ୟରେ ଗ୍ରହଣ କରାଯାଇ ପାରିବ । ସେତେବେଳେ ନିଜ କବିତାର ମରମୀ ପାଠକମାନଙ୍କ ନିମନ୍ତେ ଯେଉଁ ଅଧ୍ୟାୟଟି ଲେଖି କବି କୁଞ୍ଜବିହାରୀ କାଳି ଓ କଲମ ଧାରିଥିଲେ, ତାହା ୧୯୭୭ ମସିହାରେ ଆତ୍ମଚରିତ ବା ଜୀବନ କାହାଣୀରୂପେ ପ୍ରକାଶ ପାଇଛି ବହୁ ବର୍ଣ୍ଣ, ବହୁ ଛନ୍ଦ, ବହୁ କାକଳିର ବିପୁଳତା ମଧ୍ୟରେ । କବି ନିଜେ ସ୍ୱୀକାର କରିଛନ୍ତି ଯେ ତାହା ହେଉଛି

ଅତୀତରୁ ବର୍ତ୍ତମାନକୁ ଏକପ୍ରକାରି ଭ୍ରମଣ କାହାଣୀ — ଜୀବନମାର୍ଗରେ ଘୂରିବୁଲୁଥିବା ପଥିକର ମର୍ମଗାଥା । ଉପରୋକ୍ତ ସ୍ୱୀକାରୋକ୍ତି ପରେ ଗୋଟିଏ କଥା ସ୍ୱତଃ ମନକୁ ଆସେ, ତାହା ହେଉଛି ସାହିତ୍ୟରେ ସୌଦାଗରୀ ବ୍ୟାପାର । ସୁଖ୍ୟାତି ଓ ପଦାଧିକାରକୁ ପୁଞ୍ଜି କରି କେହି କେହି ବିପୁଳାୟତନ ଆତ୍ମଚରିତ ଲେଖି ସେଥିରୁ ବ୍ୟବସାୟୀ ଫାଇଦା ଉଠାଇବା ପାଇଁ ଉଦ୍ୟମ କରିବାର ଇତିହାସ ଆଦୌ ଦୁର୍ଲଭ ନୁହେଁ । ଏହି କ୍ଷେତ୍ରରେ ମଧ୍ୟ ସେହିଭଳି ସିଦ୍ଧାନ୍ତରେ ଉପନୀତ ହେବାପାଇଁ ବାଧ୍ୟ କରାଯାଇ ପାରନ୍ତା; ଯଦି 'ମୋ କାହାଣୀ' ପୁସ୍ତକଟି ଅକୁଣ୍ଠ ଶୈଳ୍ପିକ ଅଭିବ୍ୟକ୍ତି ଓ ଏକ ଅପରିହାର୍ଯ୍ୟ ବ୍ୟକ୍ତିତ୍ୱର ଅସାଧାରଣ ବିଶୁଦ୍ଧତା ଓ ଉଦାରତାର ପ୍ରମାଣ ସ୍ୱରୂପ ଜାତୀୟ ସାହିତ୍ୟ ଏକାଡେମୀର ସ୍ୱୀକୃତି ଲାଭ କରି ନ ଥାନ୍ତା ।

ଯେକୌଣସି ଆତ୍ମଚରିତ ମଧ୍ୟରୁ ସର୍ବପ୍ରଥମେ ପାଠକର ମନକୁ ଆକର୍ଷଣ କରିଥାଏ ସମକାଳୀନ ଘଟଣାବଳୀ ସହିତ ଲେଖକର ଥିବା ଅକୁଣ୍ଠିତ ସମ୍ପର୍କ । ଏହି ଘଟଣା ପ୍ରବାହର ଲେଖକୀୟ ପ୍ରତିଫଳନ କିପରିଭାବରେ ଘଟିଛି, ଐତିହାସିକ ଆହ୍ୱାନର ସମ୍ମୁଖୀନ ହେବାପାଇଁ କିଭଳି ନିଜକୁ ସମ୍ବୋଧିତ କରାଯାଇଛି, ଦେଶ ଓ ଜାତି ସହିତ ମିଶାଇନେବା ପାଇଁ କେତେ ଗୁଡ଼ିବାକୁ କିମ୍ବା ଗ୍ରହଣ କରିବାକୁ ପଡ଼ିଛି, ତାହାର ସମଷ୍ଟିଗତ ସାଫଲ୍ୟକୁ କଳନା କରିବାପାଇଁ ଜୀବନବୃତ୍ତାନ୍ତରୁ ଜୀବନକୁ ବାଦ ଦେଇ କେବଳ ବୃତ୍ତାନ୍ତର ଉପାଦାନକୁ ନିଃସଙ୍କୋଚରେ ଗ୍ରହଣ କରିବାକୁ ହୋଇଥାଏ । କୁଞ୍ଜବିହାରୀଙ୍କ ରଚନାର ପ୍ରେକ୍ଷାପଟରେ ଏହି ବୃତ୍ତାନ୍ତର ଚିତ୍ର ସ୍ୱାଭାବିକ ଭାବରେ ସୁବିନ୍ୟସ୍ତ । ୧୯୧୯ରେ ପୁରୀ ଜିଲ୍ଲାର ଦୁର୍ଭିକ୍ଷ ଓ ୧୯୪୩ରେ ମହାଯୁଦ୍ଧୋତ୍ତର ଦୁର୍ଭିକ୍ଷର ସୁଗଭୀର ମର୍ମ ବିଦାରକ ପରିଚୟ ଦେବା ସଙ୍ଗେ ସଙ୍ଗେ ଏହାର ସୃଜନକାରୀ ଅଧମ, ପାଷଣ୍ଡ ଓ କପଟାଚାରୀମାନଙ୍କ ପ୍ରତି ତୀବ୍ର କଟାକ୍ଷପାତ କରାଯାଇଛି । ସେହିପରି ୧୯୩୯ରେ ରଣପୁରଠାରେ ଗଡଜାତ ଆନ୍ଦୋଳନ ଜନିତ ବେଜେଲଗେଟ୍ ହତ୍ୟାକାଣ୍ଡ, ୧୯୪୨ରେ ଭାରତଛାଡ଼ ଆନ୍ଦୋଳନ, ୧୯୪୩ରେ ତାଳଚେରର ପ୍ରଜା ବିପ୍ଳବ ଆଦିର ଅନ୍ତର-ବାହାର, ଆଚରଣ-ବିଶ୍ୱାସ ପ୍ରଭୃତିକୁ ମିଶାଇ ଜାତୀୟ ଚରିତ୍ରର ଏକ ସାମଗ୍ରିକ-ରୂପ ପ୍ରକଟିତ ହୋଇଛି । ଗୁଣୀ ଅବସ୍ଥାରେ ପ୍ରବାସୀ ଉତ୍କଳସମ୍ମିଳନୀ (୧୯୪୧), ଅଧ୍ୟାପକ ଭାବେ ଉତ୍କଳସମ୍ମିଳନୀର ବ୍ରହ୍ମପୁର ଓ ଜୟପୁର ଅଧିବେଶନ(୧୯୪୪ ଓ ୧୯୪୬ , ଗବେ-ଷକ ଭାବରେ ଅଖିଳଭାରତ ଲୋକ ସଂସ୍କୃତି ସମ୍ମିଳନୀ(୧୯୫୮, ୧୯୫୯, ୧୯୬୧), ସାହି-ତ୍ୟିକଭାବରେ ଓଡ଼ିଶାସାହିତ୍ୟ ଏକାଡେମୀର ନିଖିଳ ଉତ୍କଳ ଲେଖକ ସମ୍ମିଳନୀ(୧୯୬୧) ଓ ନିଖିଳ ଭାରତ ସମ୍ମେଳନର ରବୀନ୍ଦ୍ର-ଶତବାର୍ଷିକୀ ଉତ୍ସବ (୧୯୬୧)ରେ ଯୋଗ ଦେଇ ଲେଖକ-ସମଗୁଣୀମାନଙ୍କ ସହିତ ସଖ୍ୟତା ସ୍ଥାପନ କରିଛନ୍ତି । ପ୍ରତ୍ୟେକ କ୍ଷେତ୍ରରେ ଅକୁଣ୍ଠିତ ଆଗ୍ରହପ୍ରକାଶ କରିଛନ୍ତି । ମାନବିକ ମହିମା, ମର୍ଯ୍ୟାଦା ଓ ତାତ୍କାଳିକ ପରି-ବେଷ୍ଟନୀ ସମ୍ବନ୍ଧରେ ନିର୍ଭୀକ ଟିପ୍ପଣୀ ପ୍ରଦାନ କରିଛନ୍ତି, ଯାହା ନିଜ ଯୁଗ ଓ କାଳର ଅକୁଣ୍ଠିତ

ଦର୍ପଣ ହୋଇ ପାରିଛି । ଯେଉଁ ସମସ୍ତ ଘଟଣାର ଚିହ୍ନ ଅବକ୍ଷୟାନ୍ତେ ଲୋକଚକ୍ଷୁରୁ ନିଶ୍ଚିହ୍ନ ହୋଇଯିବା ସ୍ୱାଭାବିକ, ସେହିଗୁଡ଼ିକର ସ୍ପଷ୍ଟ-ଅସ୍ପଷ୍ଟ ପାଦଚିହ୍ନକୁ ଆଲୋଚ୍ୟ ଜୀବନ ଚରିତ ପୃଷ୍ଠାରେ ଦେଖିଲେ ବୁଝାଯାଏ ଯେ ସଭ୍ୟତା ଓ ସଂସ୍କୃତିର ପଥ କେଉଁ ଦିଗକୁ କପରି ଭାବରେ ଲମ୍ବି ଯାଇଛି ।

ସମକାଳୀନ ଘଟଣାବଳୀ ଭଳି ସମକାଳୀନ କ୍ଷୁଦ୍ର ଓ ମହତ୍ ବହୁ ବ୍ୟକ୍ତିର ପ୍ରତିକୃତି ଚିତ୍ରଣରେ ଏହି ଆତ୍ମଲିପି ହୋଇ ଉଠିଛି ବର୍ଣ୍ଣିଳ । ଯେଉଁମାନଙ୍କର ଜୀବନ ଲେଖକ ଜୀବନ ସହିତ ଅଙ୍ଗାଙ୍ଗୀଭାବରେ ଜଡ଼ିତ ହୋଇ ରହିଛି ସେହି ପରମ ଆତ୍ମୀୟ-ମାନଙ୍କମଧ୍ୟରୁ ନନା, ବୋଉ, ସୁରୁଯୀ ନାନୀ, ହୀର ନାନୀ, ଘନ ଭାଇନା, ହେର୍ମନ୍ ଭାଉଜ, ପଦିଆ, ଉଦିଆ, ବୀର ମହାନ୍ତି, ରାମ ମହାନ୍ତି, ହରିମାଷ୍ଟ୍ରେ, ବିଶ୍ୱମ୍ଭର ମାଷ୍ଟ୍ରେ, ସ୍ତ୍ରୀ, ଶ୍ୱଶୁର ଓ ଶାଶୁଙ୍କର ଅକପଟ ପ୍ରତିକୃତି ଏଠାରେ ଯେଉଁଭଳି ଚିତ୍ତରଞ୍ଜକ ହୋଇଛି ସେହିଭଳି ସ୍ଥାୟୀଭାବ ସଂଗ୍ରହୀ ମଧ୍ୟ ହୋଇଛି । ପାରିବାରିକ ଜୀବନର ବିଚିତ୍ର ଅଭିଜ୍ଞତା ଭିତରେ ଓଡ଼ିଶାର ଗ୍ରାମୀଣ ମଣିଷ ଓ ସଂସ୍କୃତିର ଐକ୍ୟ ସୂତ୍ରଟି ଏହିଠାରେ ଧରାପଡ଼ିଛି । ସତେ ଯେପରି ଗ୍ରାମ୍ୟ ଜୀବନର ରୂପରସ, ବର୍ଣ୍ଣଛନ୍ଦ, ସୁଖଦୁଃଖ ଆଘାତ ସଂଘାତ, ଭଲମନ୍ଦର ବିଚିତ୍ର ରସକୁ ଲେଖକ ଅନ୍ତରର ଗଭୀରତମ ପ୍ରଦେଶରେ ଗ୍ରହଣ କରିଛନ୍ତି ଓ ପ୍ରତିକୃତି ଗୁଡ଼ିକ ଭିତରେ ଶତକରା ଅନେଶ୍ୱତ ଭାଗ ଫୁଟାଇବାକୁ ଉଦ୍ୟମ କରିଛନ୍ତି । ସତ୍ୟର କଷଟୀରେ ବୋଉର ଚିତ୍ର ଝଟକି ଉଠୁଛି ଅନଳଂକୃତ ଦେବୀ ପ୍ରତିମା ପରି । ଲେଖକଙ୍କ ଭାଷାରେ 'ନେଇଁ ନୁହେଁ, କବି ନୁହେଁ, ସେବିକା ନୁହେଁ, ସେ ଥିଲା ଗୋଟିଏ ଘରଣୀ' । ଏହି ଘରଣୀ ବା ସନ୍ତାନ ବତ୍ସଳା ମାତୃମୂର୍ତ୍ତିର ନିବିଡ ସ୍ପର୍ଶ ଘରେ ଘରେ ଦେଖିବାକୁ ମିଳେ । ନଗର ସଭ୍ୟତା ଓ ନଗର ଜୀବନର ସ୍ପର୍ଶ ଲାଭକଲା ପରେ କୂପମଣ୍ଡୁକ ସଂକୀର୍ଣ୍ଣ ସରଣୀ ଛାଡ଼ି ବୃହତ୍ତର ଓ ମହତ୍ତର ଜୀବନର ଆଲୋକ ଓ ବାୟୁର ସ୍ପର୍ଶ ପାଇବା ସଙ୍ଗେ ସଙ୍ଗେ ଦିବ୍ୟ ଦୃଷ୍ଟି ସମ୍ପନ୍ନ ଗୁଣୀଜନଙ୍କ ସଂସ୍ପର୍ଶରେ ଆସିଛନ୍ତି । ସେହି ସୁଧୀଜନମାନଙ୍କର ପ୍ରତିକୃତି ହୋଇ ଉଠିଛି ମହା ମୂଲ୍ୟବାନ୍ । ବିପୁଳ ପ୍ରତିଷ୍ଠାର ଅଧିକାରୀ କବି, ସାମ୍ବାଦିକ, ଐତିହାସିକ, ଜ୍ଞାନତପସ୍ୱୀ, ଯୋଦ୍ଧା, ଋଷି, ଶିକ୍ଷକ, ରାଜନୀତିଜ୍ଞ, ପ୍ରକୃତି ପ୍ରେମୀ, ଗ୍ରନ୍ଥାଗାରିକ, ସତ୍ୟାନୁସନ୍ଧିତ୍ସୁ ବ୍ୟକ୍ତିମାନଙ୍କର କୌତୂହଳଜନକ ସ୍ୱତଃସ୍ଫୂର୍ତ୍ତି ପରିଚିତ ଯେକୌଣସି ପାଠକକୁ ପ୍ରରୋଚିତ କରାଇ ପାରିବ । ଉଦାର ମାନବିକତାମୟ, ସୂକ୍ଷ୍ମତମ ସମ୍ବେଦନା ଓ ସହାନୁଭୂତିସମ୍ପନ୍ନ ଦରଦୀ କବିଚିତ୍ତର ରସାନୁଭୂତ ସାମାଜିକ-ପାରିବାରିକ ଛିନ୍ନମୂଳ ଅବଦ୍ଧର ଓ ନୀଳ ମାଷ୍ଟରାଣୀର ପ୍ରତିକୃତିକୁ କରିଛି ପ୍ରାଣପୂର୍ଣ୍ଣ ଓ ସର୍ବକାଳୀନ । ସୀମିତ ଭାଷା ଓ ଅସୀମ ଭାବର ବ୍ୟଞ୍ଜନା ମଧ୍ୟରେ ତାହା ହୋଇଛି ବାସ୍ତବ, ଜୀବନ୍ତ ଓ ହୃଦ୍ୟ ।

ଲେଖକ ଜଣେ ରକ୍ତ ମାଂସର ଜୀବନ୍ତ ମଣିଷ ହୋଇଥିବାରୁ ବେଲ୍ଲାଲସେନ୍‌ର ମସ୍ତକ ଭଳି କୁରୁକ୍ଷେତ୍ରର ନୀରବ ଦର୍ଶକ ହୋଇ ରହିପାରେ ନାହିଁ । ପାରିପାର୍ଶ୍ୱିକ

ଘଟଣାର ପ୍ରବାହ ଓ ବ୍ୟକ୍ତିର ଆଦର୍ଶ ତାହାର ମାନସିକତା ସହିତ ସାମ୍ୟ ସ୍ଥାପନ କଲେ ସେ ବାରମ୍ବାର ବିଚଳିତ ହୁଏ । ବିଗଳିତ ହୁଏ ମଧ୍ୟ । ଆତ୍ମୋନ୍ନତି କିମ୍ବା ଆତ୍ମଶିକ୍ଷା ପାଇଁ ଯଥେଷ୍ଟ ପ୍ରେରଣା ଲାଭ କରେ । କବିବର ରାଧାନାଥଙ୍କ ଭଳି କବି କୁଞ୍ଜବିହାରୀଙ୍କର ପ୍ରକୃତି ପ୍ରୀତି ଓ ପରିଭ୍ରମଣଶୀଳ ଚିତ୍ତାବେଗ ସର୍ବଜନ ବିଦିତ । ତାଙ୍କର କାବ୍ୟ-କବିତା ଓ ଭ୍ରମଣ-କାହାଣୀଗୁଡ଼ିକର ଛତ୍ରେ ଛତ୍ରେ ଏହାର ପରିଚୟ ସୁସ୍ପଷ୍ଟ । ସେ ପ୍ରଥମେ ଓଡ଼ିଆ ସାହିତ୍ୟ ସହିତ ପରିଚିତ ହୋଇଥିଲେ ରାଧାନାଥ ଗ୍ରନ୍ଥାବଳୀ ଜରିଆରେ ୧୬।୧୭ ବର୍ଷ ବୟସରେ । ବାରମ୍ବାର ଏହି କଥାଟିକୁ ସେ ସ୍ୱୀକାର କରିଛନ୍ତି—"କେଉଁଠୁ କେଜାଣି ରାଧାନାଥ ଗ୍ରନ୍ଥାବଳୀ ଖଣ୍ଡିଏ ମୋ ହାତରେ ପଡ଼ିଥାଏ, ବିନା ଗୁରୁରେ ଏହି ଗ୍ରନ୍ଥ ବାରମ୍ବାର ପଢୁଥାଏ । ଏହାହିଁ ମୋ ଅନ୍ତରରେ ଖେଳାଇଲା ପ୍ରଥମ ଭାବର ଜୁଆର, ଶିଖାଇଲା ପ୍ରକୃତି ପ୍ରେମ"—( ଶ୍ରୀମନ୍ତ-ପୃ ୮ ) ଓ "ରାଧାନାଥ ହିଁ ମୋର ପ୍ରଥମ ଦିଶାରୀ, ତାଙ୍କର କାବ୍ୟରେ ହିଁ ମୋର ପ୍ରଥମଭାବର ଅଭିଷେକ ହୋଇଛି । ଘୋର ଶୂନ୍ୟତା ମଧ୍ୟରେ ପୂର୍ଣ୍ଣତାର ଅନୁଭବ ଆସିଛି ମନରେ । ରାଧାନାଥଙ୍କ ଠାରୁ ମୁଁ ପ୍ରଥମେ ପ୍ରକୃତିକୁ ଭଲ ପାଇ ଶିଖିଲି—"( ମୋ କାହାଣୀ-ପୃ ୧୭ ) । ସେହିପରି ଗବେଷଣା କ୍ଷେତ୍ରରେ ତାଙ୍କର ଦିଗ୍ ନିର୍ଦ୍ଦେଶକ ହେଉଛନ୍ତି ବିଶ୍ୱବିଖ୍ୟାତ ସତ୍ୟାନୁସନ୍ଧିତ୍ସୁ ଡକ୍ଟର ପ୍ରବୋଧଚନ୍ଦ୍ର ବାଗ୍‌ଚି । ଶାନ୍ତ, ସରଳ, ଅମାୟିକ, ଗୁଣଗ୍ରାହୀ ପ୍ରବୋଧ ଚନ୍ଦ୍ରଙ୍କ ନିର୍ଦ୍ଦେଶକୁ ସେ ନତମସ୍ତକରେ ମାନି ନେଇଥିଲେ—"ମୁଁ ଯାହା ଲେଖି ଆଣିଲି ତାକୁ ପଢି ବିସ୍ମୟରେ ମୋ ମୁହଁକୁ ଚାହିଁଲେ—ଏ କ'ଣ କବିତା ? ଗୋଟିଏ ଗଦ୍ୟ ପ୍ରବନ୍ଧରେ ଏତେ ଅଳଂକରଣ କାହିଁକି ? ଆବେଗ, ଉଚ୍ଛ୍ୱାସ, ଗବେଷଣାରେ ଏକ ଦୁର୍ବଳତା । ଗବେଷକ କବି ହେଲେ ଚଳେନାହିଁ, ବହୁପାଠୀ ଓ ଜ୍ଞାନୀ ହେବା ଆବଶ୍ୟକ । ସତ୍ୟାନୁସନ୍ଧାନ ଗବେଷକର ଧର୍ମ, ତାର ଉକ୍ତି, ଯୁକ୍ତି ଓ ପ୍ରମାଣ ଦ୍ୱାରା ସମର୍ଥିତ ହେବା ଆବଶ୍ୟକ । ତୁମେ ଗଦ୍ୟରେ କବିତାହିଁ ଲେଖିଛ । ଯାଅ ଓଡ଼ିଆ ଲୋକ ସାହିତ୍ୟ ସମ୍ବନ୍ଧରେ ଗୋଟିଏ ବହି ଲେଖି ଆଣ" — ( ମୋ କାହାଣୀ-ପୃ ୨୮ ) । କୁଞ୍ଜବିହାରୀଙ୍କ ଋଜୁ ବଳିଷ୍ଠ ଚରିତ୍ର କିପରିଭାବେ ଗଠିତ ହୋଇଛି ତାହାର ସୂଚନା ମୋ କାହାଣୀରେ ସ୍ପଷ୍ଟ । ସେ ବାଲ୍ୟକାଳରେ ଅନ୍ୟଲୋକ ପ୍ରାପ୍ତା ନିରକ୍ଷରା ଜନନୀ, କୈଶୋରରେ ସନ୍ନ୍ୟାସୀ ନିଗମାନନ୍ଦ ପରମହଂସ, ପରିଣତ ବୟସରେ ଭାରତର ନୀତିବାନ୍ ଶିଳ୍ପୀ ନନ୍ଦଲାଲ ବସୁଙ୍କ ଆଦର୍ଶ ପ୍ରତି ଆକୃଷ୍ଟ ହୋଇଛନ୍ତି । ଏଥି କାରଣରୁ ରୀତି ନୀତି, ଆହାର ଆଚରଣ ଜନିତ ଶୁଦ୍ଧତା, ରସିକତା, ସାହସିକତା ଓ ନିର୍ଭୀକତା ତାଙ୍କର ବ୍ୟକ୍ତିତ୍ୱକୁ କେତେ ପରିମାଣରେ ଆଲୋକିତ ଓ ଶ୍ରୀମଣ୍ଡିତ କରିଛି ତାହା ମନୋବିଜ୍ଞାନବିତ୍‌ମାନେ କଳନା କରିପାରିବେ ।

ପରିଶେଷରେ ସ୍ୱୀକାର କରାଯାଇ ପାରେ ଯେ ଆତ୍ମପ୍ରତିଷ୍ଠା ନିମନ୍ତେ ଅନୁଷ୍ଠିତ ସଂଗ୍ରାମ ବ୍ୟସ୍ତତା, ଜୀବନର ବିଚିତ୍ର ନିଷ୍ଠୁର ଅନୁଭୂତି, ପାରିପାର୍ଶ୍ୱିକ ପରିବେଶ ପ୍ରତି

ମୌଳିକ ଦାର୍ଶନିକ ଦୃଷ୍ଟିକୋଣ, ଅନ୍ତରର ସ୍ମୃତି ଗ୍ରହଣ ନିମନ୍ତେ ଥିବା ପ୍ରବଳ ଆଗ୍ରହ ହିଁ 'ମୋ କାହାଣୀ' ଲେଖିବାକୁ ବହୁ ପରିମାଣରେ ପ୍ରଣୋଦିତ କରାଇ ପାରିଛି । ତାହାର ଛନ୍ଦେ ଛନ୍ଦେ ପାରିବାରିକ ତଥା ସାମାଜିକ ଅଭିଜ୍ଞତା, ଐତିହାସିକତା, ପ୍ରକୃତିପ୍ରିୟତା, ଅକୃତ୍ରିମ ରସିକତା ଏପରି ସୁସଙ୍ଗତି ଓ ସୁବିନ୍ୟସ୍ତ ଭାବରେ ପ୍ରକାଶ ପାଇଛି ଯାହା ପାଠକଙ୍କୁ ଏକ ଉପନ୍ୟାସ ପଠନର ଆମୋଦ ପ୍ରଦାନ କରିଥାଏ । ଭାଷା ଅତୀବ-ଚିତ୍ତ-କର୍ଷକ; ବାକ୍ୟ ଏକାନ୍ତ ଆଭିଧର୍ମୀ, କ୍ଷୁଦ୍ର ଓ ବ୍ୟଞ୍ଜନା ସିଦ୍ଧ । ଓଡ଼ିଆ ଗଦ୍ୟ ସାହିତ୍ୟକୁ ଏକ ଅଭିନବ ଅବଦାନ । ଅତ୍ୟନ୍ତ ସାଧାରଣ କଥା ଜୀବନର ବିଶେଷ ଅବସ୍ଥା ଓ ବିଶେଷ ଉପଲବ୍ଧି ଭିତର ଦେଇ ସମ୍ପ୍ରସାରଣଶୀଳ ସଂକ୍ଷିପ୍ତବାକ୍ୟରେ ପ୍ରକାଶିତ ହୋଇଛି ।

'ମୋ କାହାଣୀ' ନାମକୁ ମାତ୍ର କାହାଣୀ ହୋଇଥିଲେ ମଧ୍ୟ ଏକ ରସମୟ ଓ ରହସ୍ୟମୟ ସମାଜ ବିଜ୍ଞାନ ଗ୍ରନ୍ଥରେ ପରିଣତ ହୋଇପାରିଛି ।

* Binode Routray
Govt. College of Art & Crafts
P. O. Khallikote, Ganjam



# ॥ ଆତ୍ମଜୀବନୀକାର ଲୋକରତ୍ନ କୁଞ୍ଜବିହାରୀ ॥

ଡକ୍ଟର ଦୋଳଗୋବିନ୍ଦ ଶାସ୍ତ୍ରୀ

ସାହିତ୍ୟ ସୃଷ୍ଟିର ଏକ ବିଶିଷ୍ଟବିଭାବ ରୂପେ ଜୀବନୀ ଓ ଆତ୍ମଜୀବନୀ ସର୍ବଜନସ୍ୱୀକୃତ । କବିସ୍ରଷ୍ଟା କାଳ୍ପନିକ ଘଟଣାବଳୀକୁ ଉପଜୀବ୍ୟ କରି ସାହିତ୍ୟ ସୃଷ୍ଟି କରେ । କାରଣ କାଳ୍ପନିକ ଘଟଣାରେ ଚମତ୍କାରିତା ସୃଷ୍ଟି କରିବାର ସ୍ୱାଧୀନତା କବିସ୍ରଷ୍ଟାର ଯେ ପରିମାଣରେ ଥାଏ, ବାସ୍ତବ ଘଟଣାରେ ତାହା ସଙ୍କୁଚିତ ଥାଏ । କିନ୍ତୁ ସମୟ ବିଶେଷରେ ଦେଖାଯାଏ ବାସ୍ତବ ପ୍ରକୃତିର ଚିତ୍ର ଚମତ୍କାର ତୂଳିକଳ୍ପନାର ଚିତ୍ରକୁ ମଧ୍ୟ ପରାସ୍ତ କରିଥାଏ । ସେହିପରି ବାସ୍ତବଘଟଣା ମଧ୍ୟ କବି କଳ୍ପନାକୁ ଅତିକ୍ରମ କରିଥାଏ । ବିଶେଷତଃ ସେ ବାସ୍ତବଘଟଣାର ନାୟକ ଯଦି ନିଜେ କବିସ୍ରଷ୍ଟା ହୁଏ, ତାହାହେଲେ ତାହାର ମାର୍ମିକ ଚିତ୍ର ଯେ ଅଧିକ ରସସିକ୍ତ ଏବଂ ଆମୋଦଦାୟକ ହେବ ଏଥିରେ ସନ୍ଦେହ ନାହିଁ ।

ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶ ଓଡ଼ିଶାର ଜଣେ ସୁପ୍ରତିଷ୍ଠିତ କବି, ଗଳ୍ପସ୍ରଷ୍ଟା । କ୍ରିଟିକ୍ ଓ ଔପନ୍ୟାସିକ ଭାବରେ ସର୍ବଜନ ପୂଜ୍ୟ । ତାଙ୍କର "ଆମେରିକାରୁ ଇଉରୋପ ଆଫ୍ରିକା" ଭ୍ରମଣ କାହାଣୀ ହିଁ ତାଙ୍କ ଆତ୍ମଜୀବନୀର ଏକ ସରସ ଅଂଶର କାବ୍ୟିକ ଭାଷାଚିତ୍ରରୂପେ ପାଠକ ଓ ସାମାଜିକ ହୃଦୟକୁ ରସାଣିତ କରିଅଛି ।

ଭ୍ରମଣ କାହାଣୀ ଅନେକେଇ ଲେଖିଲେଣି, ସେଥିରେ ନିଛକ ବର୍ଣ୍ଣନା ଅଛି କିନ୍ତୁ ରୂପଶ୍ରୀ ନାହିଁ; ଅନେକ କିଛି ଦେଖିଛନ୍ତି ବୋଲି ଲେଖାଅଛି କିନ୍ତୁ ଦେଖା ଜିନିଷର ଶୋଭାଟାର ବେଶବର୍ଣ୍ଣନା ଅଛି, ତାହାର ଭିତର ରୂପ, ରସ ବା ମଞ୍ଜିର ଆସ୍ୱାଦ ସେଥିରେ ପ୍ରାୟ ନାହିଁ କହିଲେ ଚଳେ । ଡକ୍ଟର କୁଞ୍ଜବିହାରୀ ଦାଶଙ୍କର ଭ୍ରମଣ କାହାଣୀ—ଉପର ଶୋଭା, ରୂପ, ମଞ୍ଜି, ରସ—ସବୁ ଅଂଶର ଆସ୍ୱାଦନକୁ ନିଜେ ଚାଖି ଭାଷାରେ ଚିତ୍ର ଆଙ୍କିଛନ୍ତି । ଏହିଠାରେ ହିଁ ତାଙ୍କର ଭ୍ରମଣ କାହାଣୀର ବୈଶିଷ୍ଟ୍ୟ । ଗୋଟିଏ ଛୋଟ ଉଦାହରଣ ଦେଲେ ଯଥେଷ୍ଟ ହେବ ।

ଆମେରିକାରେ ସଲ୍ଟ୍‌ଲେକ୍ ପରିଦର୍ଶନ ଅବସରରେ ସନ୍ଧ୍ୟା ହୋଇ ଆସୁଛି ସନ୍ଧ୍ୟାର ଆଗମନ ଲୋକରତ୍ନଙ୍କ ତୂଳିରେ—"ସେତେବେଳକୁ ସନ୍ଧ୍ୟା 'ରଙ୍କ' ଉପରକୁ

ଉଠିଥାଏ, ଜଣେ ଶିଳ୍ପୀପରି ଦୂରଦୃଷ୍ଟି ପକାଇ ଦେଖୁଥାଏ, ହ୍ରଦ ଉପରେ କେଉଁଠି ତୂଳୀ ଗମ୍ଭୀରଭାବେ ବୁଲାଇବ, କେଉଁଠି ଲଘୁଭାବେ, କେଉଁଠି କେଉଁ ରଙ୍ଗର ମାତ୍ରା କେତେ ହେବ ।"

ଗ୍ଲାଡସ୍ ନାମ୍ନୀ ତରୁଣୀର ଆତିଥ୍ୟ ଓ ତାହା ସହିତ ଆଳାପ ପ୍ରସଙ୍ଗରେ—"ଗ୍ଲାଡ୍‌ସ୍‌ରଙ୍ଗିଲ, ଗୃହିଣୀ, କଥନଭଙ୍ଗୀ ନାଟକୀୟ, କଥା କହିଲେ ମୁଁଅ ଛୁଟେ, ସତେ ବା କିଛି ପାର୍ଟ ମୁଖସ୍ଥ କରି କହୁଛି । କିନ୍ତୁ ସେହି ଦୋଷବନ୍ତର ଅପ୍ରାକୃତିକତା ଗ୍ଲାଡସ୍ କଥନରେ ନଥାଏ, ତାର ମଧୁରତା ମୋହାଚ୍ଛନ୍ନ କରେ । ଉତ୍ସପରି ଗଦ୍‌ଗଦ, ଉତ୍ସବ ପରି ବର୍ଣ୍ଣାଢ୍ୟ, କଥା କବିତାର ସ୍ତରକୁ ଉତ୍ତୀର୍ଣ୍ଣ ହୁଏ ଆତ୍ମବିସ୍ମୃତିରେ ।

ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଭ୍ରମଣକାହାଣୀର ପ୍ରତ୍ୟେକଟି ବର୍ଣ୍ଣନା ଏହିପରି ଜୀବନରସାପ୍ଳାବିତ । ଗଲି, ଦେଖିଲି, ବସିଲି, ହସିଲି, ଖାଇଲି, କଥା କହିଲି, କଥା ଶୁଣିଲି ଏପରି ଭ୍ରମଣ କାହାଣୀ ଭ୍ରମଣ ବିବରଣୀ ହୋଇପାରେ, କିନ୍ତୁ ସାହିତ୍ୟର କୋଠରୀରେ ତାକୁ ବସେଇବା ଅର୍ଥ ନିଛକ ଅରସିକତା ବୁଝାଯାଇପାରେ । ଆଉଗୋଟିଏ ଉଦାହରଣ ଦେବାର ଲୋଭ ସମ୍ଭାଳି ହେଉନାହିଁ । ଜାକି (ଛାକୋଲିନ୍)ର ବିବାହ ଉତ୍ସବର ଅତିଥି ଡକ୍ଟର ଦାଶ । ବିବାହ ପରେ ବରକନ୍ୟା ପ୍ରତ୍ୟେକ ଅତିଥିଙ୍କ ପାଖକୁ ଆସନ୍ତି । ଜାକି ଓ ତାର ବର ଡକ୍ଟର ଦାସଙ୍କ ପାଖକୁ ଆସିଲେ । ଉଦୟ (ଡକ୍ଟର ଦାଶଙ୍କ ସାନଭାଇ) କହିଲେ—"ଜାକି, ତୋ କଥା ଲେଖା ହେବ । ସେଠି କିଏ ବସିଛନ୍ତି ଜାଣୁ ? ଭାରତର ଜଣେ କବି ।"

ଜାକି ମୋ ପାଖକୁ ଦୌଡ଼ି ଆସିଲା, ସୁନ୍ଦର ସେହି ମୁଖରେ ଅପୂର୍ବ ପ୍ରଫୁଲ୍ଲତା, ବଦଳୁ ଥାଏ ମୂହୁର୍ମୁହୁ ତାର ଶ୍ରୀ, ନୀଳା ଚଞ୍ଚଳତାରେ । ମୋତେ ପଚାରିଲା—'କଣ ଲେଖିବ ମୋ ବିଷୟରେ' ?

"ଚନ୍ଦ୍ରାଲୋକ ସଙ୍ଗେ ତୁମର ସ୍ମିତ ଯେଉଁ ମୂର୍ଚ୍ଛନା ସୃଷ୍ଟି କରିଛି ମୋ ମନରେ, ତାକୁ ରୂପ ଦେବାକୁ ଚେଷ୍ଟା କରିବି ।"—ଏଇଆତ କବିର ଭ୍ରମଣ କାହାଣୀ ।

ତ ଗଲା କବିଙ୍କର ଆତ୍ମଜୀବନୀ ମୋ କାହାଣୀର ପୂର୍ବ ପୀଠିକା ।

'ମୋ କାହାଣୀ' ତ ଖାଲି 'କାହାଣୀ' ନୁହେଁ, ଏକ ମନୋଜ୍ଞ ରସୋତ୍ତୀର୍ଣ୍ଣ ଯୁଗଜୟୀ ଗଦ୍ୟକାବ୍ୟ । ଲେଖକ ତ କାହାଣୀ ଲେଖି ନାହାନ୍ତି—ସେ ଯେପରି ବଣିଆର ବାରମ୍ବାର ଛେଚୁପିଟା ଓ ପୋଡ ଖାଇଥିବା ଖଣ୍ଡେ ସୁନା ମୁଣ୍ଡା ଶ୍ରୀ କୁଞ୍ଜବିହାରୀ ଦାଶଙ୍କର ଅନ୍ତର ମଧ୍ୟରେ ପ୍ରବେଶ କରି ତାଙ୍କର ଭିତର ଓ ବାହାରର ନିଖୁଣ ସ୍ରଷ୍ଟା ଚିତ୍ର ତୂଳୀ ସାହାଯ୍ୟରେ ଛବି ପରେ ଛବି ଆଙ୍କି ଚାଲିଛନ୍ତି । ଏ ଚିତ୍ରଣରେ ପରୀପେକ୍ଷା

ନାହିଁ—କାଲେ କିଏ କ'ଣ ଭାବିବ—ଦ୍ୱିଧା ନାହିଁ—ସତକଥା ଲେଖିଲେ କାଳେ କାହା ମନରେ ନିଜ ମର୍ଯ୍ୟାଦା କମିଯିବ । 'ହିନ୍ଦୁନ୍ତ ନିୀତନପୁଣା ଯଦି ବା ସ୍ତବନ୍ତୁ'ର—ବେପରୁଆ, ଦିଲ୍‌ଦାରିଆ, ବାଆଫୁଲିଆ ନାଙ୍ଗୁଳିଆ ସେ । ଗୋଧୂଳି ବେଳାରେ ପଦ୍ମା-ନଦୀରେ ପାନ୍‌ସି (ଶ୍ରେଷ୍ଠ ନୌକା) ମଙ୍ଗରେ ବସି, ବୈଠା (ଶ୍ରେଷ୍ଠ ଆହୁଲା) ଖଣ୍ଡେ ଧରି ଦିଲ୍ ଖୋଲି ମନ ମତାଣିଆ ସ୍ୱରରେ ଗାଇଚାଲିଛନ୍ତି ତାର ହସକାନ୍ଦର ବେଦନାବିଧୁର ଅମ୍ଳମଧୁର ଭାଟିଆଲି ।

ନିଜକୁ ନିଜ ମଧ୍ୟରୁ ବାହାରେ ଠିଆ କରି ଅଣୁବୀକ୍ଷଣ ଯନ୍ତ୍ର ଦେଇ ନିରିଖି ଦେଖି ତାର ବିବରଣୀ ଅବିକଳ ଲେଖି ଯିବା ଯଦି ସାର୍ଥକ 'ଆତ୍ମଜୀବନୀ' ହୁଏ, ତେବେ ଲୋକରତ୍ନଙ୍କ ରଚିତ 'ମୋ କାହାଣୀ' ଯେ ପରିପୂର୍ଣ୍ଣଭାବେ ସାର୍ଥକତା ଲାଭ କରିଛି, ଏହା ଯେ କୌଣସି ପାଠକ ହୃଦୟରେ ଅନୁଭବ କରିବେ ।

ନିଜ ଜୀବନର ଶ୍ରେଷ୍ଠ ବଡ କଥା ଲେଖିଯିବାରେ ରସସୃଷ୍ଟି କରିବାର ଯେଉଁ ଚାତୁର୍ଯ୍ୟ, ତାହା 'ମୋ କାହାଣୀ'ର ପ୍ରତ୍ୟେକ ଘଟଣାରେ ସ୍ୱତଃସ୍ଫୂର୍ତ୍ତି ହୋଇ ଉଠିଛି । 'ମୋ କାହାଣୀ'ର କୌଣସି ପୃଷ୍ଠା ପଢୁ ପଢୁ ହସି ହସି ପାଠକ ବେଦମ ହୋଇଯିବ । କୌଣସି କୌଣସି ପୃଷ୍ଠାର କାରୁଣ୍ୟ ଆଖିରୁ ଲୁହର ଧାର ଛୁଟାଇବ ।

ଆତ୍ମଜୀବନୀରେ ବହୁ ସ୍ଥଳରେ ଲେଖକ ନିଜକୁ ପ୍ରଚାର କରିବାର ପ୍ରଚ୍ଛନ୍ନ ଲୋଭ ସମ୍ଭାଳି ପାରନ୍ତି ନାହିଁ । କିନ୍ତୁ ଲୋକରତ୍ନଙ୍କ 'ମୋ କାହାଣୀ'ରେ ତାହାର ଲେଶମାତ୍ର ପ୍ରଚେଷ୍ଟା ପରିଲକ୍ଷିତ ହୋଇନାହିଁ—ଅଥଚ ଜଣେ ସୁଖୀ, ସରଳ, ଅଥଚ ପ୍ରଚଣ୍ଡ ପ୍ରତିଭା ଓ ବ୍ୟକ୍ତିତ୍ୱର ପରିଚୟ ସ୍ପଷ୍ଟ ହୋଇ ଉଠିଛି । କୌଣସି କୌଣସି ପ୍ରତିଭାବାନ୍ ସାହିତ୍ୟସ୍ରଷ୍ଟାଙ୍କ ମଧ୍ୟରେ ପ୍ରୌଢ଼ୀ ବା ଅହଂଭାବ କେତେବେଳେ ସୁପ୍ତ ବା କ୍ଷେତ୍ର ବିଶେଷରେ ଅତି ପ୍ରକଟ ହୋଇଥାଏ । କିନ୍ତୁ ଲୋକରତ୍ନଙ୍କ ପ୍ରତିଭା ବିସ୍ମୟକର ହେଲେ ମଧ୍ୟ ସେଥିରେ ଆତ୍ମବିଶ୍ୱାସର ଦୃଢ଼ତା ଅଛି; ଅଥଚ କୌଣସି ଅହମିକା ସ୍ଥାନ ପାଇନାହିଁ । ତାଙ୍କର ନିଜ ଉକ୍ତିହିଁ ଏହାର ସାକ୍ଷ୍ୟ ଦିଏ ।

"ମୁଁ ନିଜକୁ ସାହିତ୍ୟର ଜଣେ ଶ୍ରମିକ ବୋଲି ମନେ କରେ । ମୋ ଲେଖାରେ କେତେ ପ୍ରତିଭା ଫୁଟିଛି ନ ଫୁଟିଛି ଜାଣେନାହିଁ । କିନ୍ତୁ ଶ୍ରମ କରିବା ମୋର ମୁଖ୍ୟ ବ୍ରତ । ଆଧୁନିକ ଓଡ଼ିଆ ସାହିତ୍ୟ କାଳିଦାସ, ରବୀନ୍ଦ୍ର ନାଥଙ୍କ ପରି ଜଣେ କ୍ରାନ୍ତିକାରୀ ଅପେକ୍ଷାରେ ରହିଛି । ତା'ହେଲେ ଯୁଗ ଯୁଗ ବ୍ୟାପୀ ମାନସିକ ଦାରିଦ୍ର୍ୟ ଘୁଞ୍ଚିଯିବ । ଓଡ଼ିଶାରେ ସେହି ପ୍ରତିଭାର ଆବିର୍ଭାବ ଲାଗି ମୁଁ ଓ ମୋଭଳି କର୍ମୀମାନେ ପଥ ପରିଷ୍କାର କରି ଚାଲିଛୁ ।"
( ମୋ କାହାଣୀ ୩୮୫ ପୃଷ୍ଠା )

ଆତ୍ମଜୀବନୀ ଲେଖକଙ୍କର ଏ ଉକ୍ତିରେ ପ୍ରୌଢ଼ି ନାହିଁ, ପ୍ରଜ୍ଞା ଅଛି, ଆତ୍ମପ୍ରଚାର ନାହିଁ, ଆତ୍ମପ୍ରତ୍ୟୟ ଅଛି, ଆତ୍ମ ଅବମାନନା ନାହିଁ, ଆତ୍ମ ସଚେତନା ଅଛି ।

'ମୋ କାହାଣୀ'ର ଭାଷା ମୋ ମାଆର ଭାଷା ବା ଲୋକ ସାଧାରଣଙ୍କ ଭାଷା । ଏହାର ମୋଟାମୋଟି ଆକାଶ ଏକ ଗାଉଁଲି ଆକାଶ । ଯିଏ ଯେଉଁମାନେ ମୋ ସଙ୍ଗେ ନିଃଶ୍ୱାସ ନେଉଥିଲେ, ସ୍ନେହସମ୍ପର୍କରେ ଆସି ମୋ ମନର ବାସିନ୍ଦା ହୋଇ ଯାଇଥିଲେ, ସେଇମାନେ ହିଁ ମୋ କାହାଣୀର ଚରିତ୍ର । ମୋ ଜୀବନ ସଂଗ୍ରାମ ଭିତରେ ହିଁ ସେହି-ମାନଙ୍କର ଭୂମିକା ।'

ଏ ଉକ୍ତିରେ ସାରଲ୍ୟ, ଅନାବିଳତା ଓ ପୁରସ୍କାର ପ୍ରାପ୍ତିରେ ସଲ୍ଲଜ-କୃତଜ୍ଞତା ସହିତ ଲେଖକ ନିଜ କାହାଣୀର ଯେଉଁ ମୂଲ୍ୟାଙ୍କନ ନିଜେ କରିଛନ୍ତି ତାହା ଅନ୍ୟ ଯେ କୌଣସି ସମୀକ୍ଷାଠାରୁ ଯଥାର୍ଥ ସାରଗର୍ଭ ।

"ଦେଶର ଲୋକେ କହିଲେ ଏକାଡ଼େମୀ ଆପଣଙ୍କୁ ସମ୍ମାନ ଦେଇ ଆପେ ହିଁ ସମ୍ମାନିତ ହେଲା । କିନ୍ତୁ ଦାଶେ କହିଲେ, ଏ ଅତିରଞ୍ଜିତ ଯଦିବା ସ୍ନେହଳ, ସୁନ୍ଦର । କାରଣ ଏକାଡେମୀ ଏକ ଅନୁଷ୍ଠାନ, ମୁଁ ସାମାନ୍ୟ ବ୍ୟକ୍ତି ମାତ୍ର; ଆଜି ଅଛି, କାଲି ନାହିଁ ।

ସାହିତ୍ୟ ଏକାଡେମୀ ପୁରସ୍କାର ପାଇବା ପୂର୍ବରୁ ସେହି ଲୋକେ କହୁଥିଲେ, ହଁ, ଲେଖୁଛି, ଏମିତି କେତେତ ଲେଖୁଛନ୍ତି । ଦୁଇଟା ବାଳ ଚନ୍ଦୁଆ, ବାସି ମୁହଁରେ ତୁମକୁ ପଚାରୁଛି କିଏ ?"

ସେତେବେଳେ ବି ତାଙ୍କୁ ଦାଶେ କହୁଥିଲେ, କିଓ, ମୁଁ କ'ଣ ଇସ୍କୁଲ ପିଲା ହେଇଚି, ପୁରସ୍କାରରେ ଫୁଲି ଉଠିବି ? ତିରସ୍କାରରେ ଝାଉଁଳି ପଡ଼ିବି ? ଛୁଟିକୁଟିଆ ଚାକିରିଆଟା ହୋଇଚି ଯେ ବକ୍‌ସିସ୍‌କୁ ଚାହିଁ ବସିବି ? ଏଡେ଼ ଏଡେ଼ ବୁଢା ପୁରସ୍କାର ଲାଗି ଟାକି ବସିଲେ ଲୋକେ ହସିବେ ନାହିଁ ? ଲଡୁରେ ସିନା ପିଲାଙ୍କ ଆଦର ।

ବୁଝିଲ, ସୃଷ୍ଟି ସର୍ଜନା କରି ଦେଖି ଭଗବାନ୍ ଖୁସି, ନିଜ ଲେଖା ପଢି ସେମିତି କବି । ସର୍ଜନ ଆନନ୍ଦରୁ ବଡ ଆନନ୍ଦ କ'ଣ ଅଛି ?

ବାସ୍ତବିକ୍ ସୃଷ୍ଟିର ଅନାବିଳ ଆନନ୍ଦ ରସାସ୍ୱାଦନ ହିଁ କବିର ସୃଷ୍ଟିର ସାର୍ଥକତା । ଯେ ଯୁଗରେ ସୃଷ୍ଟି ପାଇଁ ପ୍ରଶଂସା ନ କଲେ ସ୍ୱୟଂ ସମ୍ବର୍ଦ୍ଧନା ସଭା କରାଯାଉଥିବ । ଖ୍ୟାତିଲାଭ ପାଇଁ ପ୍ରଖ୍ୟାତ ସାହିତ୍ୟସ୍ରଷ୍ଟାମାନଙ୍କୁ ପ୍ରକାଶ୍ୟ ସଭାରେ ଅପଦସ୍ତ କରିବା ଏବଂ ତାଙ୍କ ଦୋଷତ୍ରୁଟି ଦେଖାଇ ବାହା ଗୁପିବାକୁ ଏକ ଉପାୟ ବୋଲି ଧରାଯାଏ, ସେ ଯୁଗରେ ଡକ୍ଟର ଦାଶଙ୍କ ପୁରସ୍କାରପ୍ରାପ୍ତି ପରେ ଉଦ୍ଧୃତ ଉକ୍ତି ନିଶ୍ଚୟ ଏକ ମହାନ୍ ବ୍ୟତିକ୍ରମ କହିବାକୁ ହେବ ।

ଲୋକରନ୍ତି ନିଜର ପ୍ରଶଂସା ସୂଚକ ଘଟଣା ଅନେକ ସ୍ଥଳରେ ବର୍ଣ୍ଣନା କରିଛନ୍ତି । କିନ୍ତୁ ସେଥିରେ ଆତ୍ମପ୍ରଚାରର ଆଇଁସିଆଗନ୍ଧ ନାହିଁ, ଅଛି ଫୁଲର ମହକ

ପର ମଉଳିଆ ସମ୍ବାଦ, ଯାହା ପଢ଼ିଲେ ମନ ବିରସ ହୁଏ ନା, ବରଂ ଖୁସି ଲାଗେ । ଗୋଟିଏ ଶ୍ରେଷ୍ଠ ବାଳିକାର ଉକ୍ତି—'ତୁମେ ମୋ ସୁନା ମଉସା, × × ତୁମେ ମତେ ଭଲ ଲାଗ, ସେଥିଲାଗି ଭଲ ଲାଗେ ତୁମ ଲେଖା । ତୁମକୁ ଭଲ ପାଏ, ତେଣୁ ସମ୍ମାନ ଦିଏ ପ୍ରତିଭାକୁ । ମା ଯୋଉ ପିଲାକୁ ସ୍ନେହ କରେ, ତା ଦୁଷ୍ଟାମୀ ତା ଆଖିରେ ପଡ଼େନା । ସେହିପରି ମୁଁ ତୁମର ସବୁ ଲେଖାକୁ ଭଲ ପାଏ, କାରଣ ମୁଁ ତୁମକୁ ଭଲ ପାଏ, ମଉସା ।'* ନିଜ ପ୍ରଶଂସା ଲୋକଙ୍କୁ ଜଣେଇବା ତ ଏ ନୁହେଁ, ପ୍ରଶଂସା ଭିତରେ ଯେଉଁ ସୁନ୍ଦର ମହକ ଟିକକ ଅଛି, ତାର ବାସନା ଚହଟାଇ ଆନନ୍ଦ ଦେବାର ଏଇ ସରଳ ସୁନ୍ଦର ପ୍ରକାଶଭଙ୍ଗୀ ହିଁ ଲେଖକଙ୍କ ମୋ କାହାଣୀକୁ ପାଠକ ନିକଟରେ ଅଧିକ ସ୍ୱାଦ୍ୟ କରିପାରିଛି ।

* ପାରେଶ୍ୱର ସାହୁ, କଣ୍ଟକ-୩



## ।। 'ମୋ କାହାଣୀ'ର କାହାଣୀ ।।

ମାନସୀ ବସ୍ତିଆ

ସାହିତ୍ୟର ବିଭିନ୍ନ ଆଙ୍ଗିକ ବିଭାଗ ମଧ୍ୟରେ ଜୀବନଚରିତର ବୈଶିଷ୍ଟ୍ୟ ସର୍ବାଧିକ । ସାରା ସାହିତ୍ୟ ମନୁଷ୍ୟର ଅଧ୍ୟୟନ ଯୋଗ୍ୟ ସତ, କିନ୍ତୁ ଜୀବନ ଚରିତରେ ସତ୍ୟ ଏବଂ ବାସ୍ତବିକତାର ସ୍ପର୍ଶ ଗଭୀର । ଏଥିରେ ଜୀବନର ବ୍ୟାଖ୍ୟା ପ୍ରତ୍ୟକ୍ଷ ଏବଂ ବାସ୍ତବ ତଥ୍ୟ ସମ୍ବଳିତ । ଇଂରେଜୀ କବି ପୋପ୍‌ଙ୍କ ଭାଷାରେ ମାନବର ଅଧ୍ୟୟନ ପାଇଁ ଉଚିତ୍ ବିଷୟହିଁ ସ୍ୱୟଂ ମାନବ । ୧ । ଘଟଣାବଳୀରେ ସମନ୍ୱିତ ସ୍ଥୂଳ ବିବରଣୀର ନାମ ଜୀବନୀ ନୁହେଁ । ନାୟକ ଜୀବନରେ ଲୁକ୍‌କାୟିତ, ବିକାଶ, ବ୍ୟକ୍ତିତ୍ୱର ରହସ୍ୟ ତଥା ମୁଖ୍ୟ ଜୀବନ-ଧାରକୁ ପାଠକ ସମ୍ମୁଖରେ ବାଛି ଦେବାରେ ହିଁ ଜୀବନୀ-ଲେଖକର କଳାସାର୍ଥକ ହୁଏ । ସାଧାରଣ ଜୀବନ ଚରିତ୍ର ଅପେକ୍ଷା ଆତ୍ମଚରିତ ମାନଙ୍କରେ କିଛି ବିଶେଷତା ପରିଲକ୍ଷିତ ହୁଏ । ଆତ୍ମଚରିତର ଲେଖକ ନିଜ ବିଷୟରେ ଯେତିକ ଜାଣେ, ଯଥେଷ୍ଟ ପ୍ରଯତ୍ନ କଲେ ମଧ୍ୟ ଅନ୍ୟ ଜଣେ ଲେଖକ ସେତିକ ଜାଣିପାରେନି । ଏକ ସୁଦୃଢ ନିର୍ଭରଶୀଳ ସତ୍ୟ ସନ୍ଧାନୀ ମନ ନିଜର ବ୍ୟକ୍ତିତ୍ୱକୁ ବ୍ୟଷ୍ଟି ମଧ୍ୟରେ ସମ୍ପ୍ରସାରିତ କରେ ।

ସ୍ୱୟଂ ଅନ୍ତର ଏବଂ ବାହ୍ୟସ୍ୱରୂପକୁ କଳାତ୍ମକ ଭାବରେ ପରିବେଷଣ କରିବାହିଁ ଆତ୍ମଜୀବନୀ । ଶାଳୀନତା, ସହୃଦୟତା, ସ୍ୱତନ୍ତ୍ରତା ଏବଂ ନିରପେକ୍ଷତାର ସହିତ ଚରିତ୍ର ନାୟକ ନିଜର ଗୁଣଦୋଷମୟ ସଜୀବ ବ୍ୟକ୍ତିତ୍ୱକୁ ଆକର୍ଷଣ ଶୈଳୀରେ ଉଦ୍‌ଘାଟନ କରେ । ଡଃ କୃଷ୍ଣଚନ୍ଦ୍ରବିହାରୀ ଦାଶଙ୍କ ଅସମ୍ପୂର୍ଣ୍ଣ ଆତ୍ମଚରିତ "ମୋ କାହାଣୀ" । ୨ । ଏକ ଅନନ୍ୟ ସାଧାରଣ ଆସଲିପି । ୧୯୭୯ରେ ଏହା କେନ୍ଦ୍ର ସାହିତ୍ୟ ଏକାଡେମୀଦ୍ୱାରା ସମ୍ମାନିତ ହୋଇଛି । ଜଣେ ସଫଳ ଆସଚରିତ ଲେଖକ ଭାବରେ ସେ ସ୍ୱୀକାର କରିଛନ୍ତି—"ମୋ କାହାଣୀ ଅହଙ୍କାରର ଆତ୍ମପ୍ରସାଦ ନୁହେଁ ନିଜ କୃତି ବା କୀର୍ତ୍ତିର କୀର୍ତ୍ତନ ନୁହେଁ । ଗ୍ରାମୀଣ ଓ ନାଗରିକ ପରିପ୍ରେକ୍ଷୀରେ ମୋ କ୍ଷୁଦ୍ରତା, ଅଧଃପାତ, ବିଫଳତା, ସଂଗ୍ରାମ ଓ ସଫଳତାର ଏକ ରୂପାୟନ ମାତ୍ର । ଏହା ମୋ ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ବହୁ କ୍ଷୁଦ୍ର ଓ ମହତ୍ ଜୀବନର କାହାଣୀ, ସମସାମୟିକ ସମାଜ ଜୀବନର କାହାଣୀ । କାରଣ ଅନେକଙ୍କୁ ଘେନି ଏକର ବିକାଶ-ଆଗରେ ପଛରେ, ଚତୁର୍ଦ୍ଦିଗରେ ମୋର ଚିନ୍ତା

---

୧ । Let other's contend and whatever can the proper study of mankind is man." A pope

୨ । କୃଷ୍ଣଚନ୍ଦ୍ରବିହାରୀ ଦାଶ "ମୋ କାହାଣୀ", ପ୍ରଥମ ପ୍ରକାଶ, ଜୁଲାଇ, ୧୯୭୭

ଅବହ୍ଲା ବହୁ ଜୀବନ ଅତୀତ ଓ ବର୍ତ୍ତମାନ ଉପରେ ଗ୍ରାସ୍ଥ ବିସ୍ତାର କରିଛନ୍ତି । ସେହି ସମସ୍ତଙ୍କ କାହାଣୀ ଯେମିତି 'ମୋ କାହାଣୀ' । ୩ ।

ବହୁ ଅନୁଭୂତିପୂର୍ଣ୍ଣ, ଘଟଣା ବହୁଳ ଜୀବନ କୁଞ୍ଜବିହାରୀଙ୍କର । ୧୯୧୪ ଖ୍ରୀ : ଅ ନଭେମ୍ବର ୨୯ ତାରିଖରେ ଏକ କୁଳୀନ ବ୍ରାହ୍ମଣ ପରିବାରରେ ତାଙ୍କର ଜନ୍ମ । ପିତାମାତାଙ୍କର ସେ ଥିଲେ ଚତୁର୍ଥ ସନ୍ତାନ । ଏକ ମଧ୍ୟବିତ୍ତ ବହୁକୁଟୁମ୍ବୀ ବ୍ରାହ୍ମଣ ପରିବାରରେ ପାଠ ପଢ଼ି ମଣିଷ ହେବା ବହୁ କଷ୍ଟସାଧ୍ୟ ବ୍ୟାପାର । ବହୁ କଷ୍ଟରେ ଜୀବନ ସହିତ ସଂଗ୍ରାମ କରି ୧୯୩୯ରେ ପାଟଣା ବିଦ୍ୟାଳୟରୁ ବି. ଏ ଡ଼ିଗ୍ରୀ ନେଇ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଏମ୍. ଏ. ଅଧ୍ୟୟନ କରିଥିଲେ । ବଙ୍ଗଳା, ହିନ୍ଦି, ତେଲୁଗୁ, ତାମିଲ ପ୍ରଭୃତି ସମସ୍ତ ଭାରତୀୟ ଭାଷା ବିଭାଗରେ ସର୍ବୋଚ୍ଚ ନମ୍ବର ରଖି ବିଶ୍ୱ-ବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ ।

୧୯୪୪ ମସିହା ଜୁଲାଇ ମାସରେ ଓଡ଼ିଆ ଅଧ୍ୟାପକଭାବେ ସେ ଖଲ୍ଲିକୋଟ ବିଦ୍ୟାଳୟରେ ଯୋଗ ଦେଇଥିଲେ । ଓଡ଼ିଆ ବିଭାଗରେ ସେ ପର୍ଯ୍ୟନ୍ତ କୌଣସି ଏମ୍. ଏ ପାସ୍ ଅଧ୍ୟାପକ ନିଯୁକ୍ତି ପାଇ ନ ଥିଲେ । ଓଡ଼ିଆ ଅଧ୍ୟାପନା ନିତାନ୍ତ ନୀରସ ଅବହେଳା ପୂର୍ଣ୍ଣ ଥିଲା । ତେଣୁ ସେ ସଂସ୍କୃତରେ ଏମ୍. ଏ ପାସ୍ ପାଇଁ ଯତ୍ନ କଲେ ।

୧୯୫୦ ଜାନୁୟାରୀ ୪ ତାରିଖରେ ତାଙ୍କର ଶାନ୍ତିନିକେତନ ଅଭିଯାନ । ଜନୈକ ଆଦର୍ଶ ଶିକ୍ଷକ ଭାବରେ ତାଙ୍କର କର୍ତ୍ତବ୍ୟ ସୁନ୍ଦରରୂପେ ପ୍ରତିପାଦିତ । ଅଧିକାଂଶ ଓଡ଼ିଆଙ୍କ ଅହଂଭାବ, ନ ହେଲେ ଈର୍ଷା ମନୋବୃତ୍ତି ଅନ୍ୟର ବିଶିଷ୍ଟ ଅବଶିଷ୍ଟ କୃତିକୁ ସମ୍ମାନ ଦେବାକୁ ଶିଖି ନାହାନ୍ତି । କିନ୍ତୁ ଉଦାର ନିରପେକ୍ଷବାଦୀ କୁଞ୍ଜବିହାରୀ ହୃଦୟଙ୍ଗମ କରିଥିଲେ : ବିକାଶଶୀଳ ସର୍ଜନାକାଂକ୍ଷୀ ଯୁବଶକ୍ତି ହିଁ ଦେଶର ଆଧାର । ଅନ୍ୟମାନଙ୍କୁ ଉତ୍ସାହ ଓ ପ୍ରେରଣା ଯୋଗାଇବାରେ ସେ ଚିର ସଜାଗ । ବହୁ କବି, ଗାଳ୍ପିକ, ପ୍ରାବନ୍ଧିକ ଛାତ୍ରମାନେ ତାଙ୍କ ପାଖକୁ ଆସନ୍ତି । ବିନା ଦ୍ୱିଧାରେ ସେ ସେମାନଙ୍କ କୃତି-ସମୂହକୁ ସଂଶୋଧନ କରିଦିଅନ୍ତି । ଲିଭିଯାଇଥିବା ପାଉଁଶ ଭିତରେ ଅଗ୍ନି ସଞ୍ଚାର ହୋଇ ଦୁନିଆକୁ ଆଲୋକିତ କରିପାରେ । ଏହାହିଁ ତାଙ୍କର ବଳିଷ୍ଠ ଯୁକ୍ତି । କାରଣ ନିଜେହିଁ ନିଜ ଭାବର ଜ୍ୱଳନ୍ତ ଉଦାହରଣ ।

ଓଡ଼ିଆ ଭାଷାକୁ ଓଡ଼ିଶା ବାହାରେ ସମୃଦ୍ଧ କରିବାର ଅଦମ୍ୟ ଚେଷ୍ଟା ପରିପୂର୍ଣ୍ଣ ହୋଇଛି । କଲିକତା ବିଶ୍ୱବିଦ୍ୟାଳୟରେ, ସ୍ୱତନ୍ତ୍ରବିଷୟଟିର ଉତ୍ତର କେବଳ ବଙ୍ଗଳା ଓ ଦେବନାଗରୀଲିପିରେ ଲେଖିବାର ନିୟମ ଥିଲା । କୁଞ୍ଜବିହାରୀଙ୍କର ଅନୁରୋଧରେ ଅନ୍ୟ-ମାନଙ୍କ ଭଳି ଓଡ଼ିଆ ଅକ୍ଷରରେ ଲେଖିବାକୁ ଅନୁମତି ପାଇଥିଲେ । ବିଶ୍ୱଭାରତୀ କେନ୍ଦ୍ର

୩ । କୁଞ୍ଜବିହାରୀ ଦାଶ "ମୋ କାହାଣୀ" ମୁଖବନ୍ଧ

ବିଶ୍ୱବିଦ୍ୟାଳୟର ମୁଖପତ୍ର କେବଳ ବଙ୍ଗଳା ଅକ୍ଷରରେ ଛପା ହେଉଥିଲା । ଏହାର ପ୍ରତିରୋଧ କରି ସେ ଓଡ଼ିଆ, ବଙ୍ଗଳା, ହିନ୍ଦୀ ଭାଷାରେ ଲେଖା ସ୍ଥାନ ପାଇବା ଉଚିତ ବୋଲି ମନ୍ତବ୍ୟ ଦେଇଥିଲେ । ତତ୍କାଳୀନ ଉପାଚାର୍ଯ୍ୟ ସୁଧୀରଞ୍ଜନ ବାବୁ ଏ ପ୍ରସ୍ତାବକୁ ଅନୁମୋଦନ ନ କରିବାରୁ ସେ ମୁକ୍ତକଣ୍ଠରେ ପ୍ରତିବାଦ କରିଥିଲେ । କୁଞ୍ଜବିହାରୀଙ୍କର ନିର୍ଭୀକତା, ସ୍ପଷ୍ଟବାଦିତା ସରଳ ଅମାୟିକ ବ୍ୟବହାର ସ୍ପଷ୍ଟାରେ ତାଙ୍କି ହୋଇଯାଉଛି । ଶାନ୍ତିନିକେତନ ଚହଳି ମଧ୍ୟରେ ଓଡ଼ିଆ ବିଭାଗର ପ୍ରତିଷ୍ଠା ଓ ବିକାଶ ଦିଗରେ ତାଙ୍କର ଉଦ୍ୟମ ପ୍ରଶଂସନୀୟ ।

ଓଡ଼ିଆ ଜାତିର ଐତିହ୍ୟ, ଗୌରବ ପରମ୍ପରାର ସ୍ୱାକ୍ଷର, ଓଡ଼ିଆ ପ୍ରାଣର ଆବେଗ, ହୃଦୟର ସ୍ପନ୍ଦନ ଝଂକୃତ ହୁଏ ଲୋକ ସଂସ୍କୃତିରେ । ସେଇ ହଜିଯାଉଥିବା ମୃତ ସମୂହକୁ ଆନ୍ତର୍ଜାତିକ ସ୍ତରରେ ପରିଚିତ କରିବାପାଇଁ ୧୯୫୩ରେ ପ୍ରକାଶ କଲେ- 'A study of Orissan Folklore' 'ମୋ କାହାଣୀ'ରେ ଲିଖିତ ଅଛି ଯେ, ଡଃ ପ୍ରବୋଧ ଚନ୍ଦ୍ର ବାଗ୍‌ଚୀଙ୍କ ପ୍ରେରଣାରେ ସେ ଲେଖିଥିଲେ ଏହି ମୂଲ୍ୟବାନ ପୁସ୍ତକକୁ । ୧୯୫୪ରେ ପ୍ରକାଶିତ "ଓଡ଼ିଆ ଲୋକଗୀତ ଓ କାହାଣୀ" ଓଡ଼ିଶାର ଓ ଓଡ଼ିଆ ଭାଷାର ପ୍ରଥମ ପ୍ରକାଶିତ ଥେସିସ୍ ।

ବାଲ୍ୟ ଜୀବନରେ ମାମୁଁଘରଠାରୁ କର୍ମମୟ ଜୀବନର ଶେଷ ଅବସର ଗ୍ରହଣ ପର୍ଯ୍ୟନ୍ତ ସଂଗ୍ରାମ ଜୀବନର ଚିତ୍ର 'ମୋ କାହାଣୀ'ରେ ବର୍ଣ୍ଣିତ । ଲେଖକଙ୍କ ସ୍କୁଲ, କଲେଜ ଓ ବିଶ୍ୱବିଦ୍ୟାଳୟ ଛାତ୍ର ଜୀବନର ଅନୁଭୂତି ଚିତ୍ତାକର୍ଷକ । ପ୍ରାଚୀନ ଗ୍ରାମ୍ୟ ସମାଜ, ବ୍ରାହ୍ମଣମାନଙ୍କର ପାରମ୍ପରିକ ବିଶ୍ୱାସ ଓ ଜୀବନ ନିର୍ବାହ ପଦ୍ଧତି, ଗ୍ରାମ ବୈଦ୍ୟ, ଗ୍ରାମବାସୀଙ୍କର ଦାରିଦ୍ର୍ୟ ଓ ଦୁଃଖ, ସତ୍ୟନିଷ୍ଠା, ସରଳତା, ଓଡ଼ିଶାର ଶିକ୍ଷା ବ୍ୟବସ୍ଥା ନିଜର ସାହିତ୍ୟିକ ସାଧନାସହ ଓଡ଼ିଶାର ସାହିତ୍ୟିକ ପରିବେଶ ସମ୍ପର୍କରେ ବିଶଦ ଭାବରେ ଆଲୋଚନା କରିଛନ୍ତି । ଘଟଣାବଳୀର ଚିତ୍ରଣ ସୁସଂହତ ।

ଆତ୍ମ ଜୀବନୀଟି ଫ୍ଲାସ୍‌ବ୍ୟାକ୍ ରୀତିରେ ରଚିତ । ସ୍ୱ ଅନୁଭୂତି ସହିତ ସଖା, ବନ୍ଧୁ, ପ୍ରିୟଜନଙ୍କ ଅନୁଭୂତିକୁ ସାମିଲ କରି 'ମୋ କାହାଣୀ' ଏକ ସଫଳ ସୃଷ୍ଟି ହୋଇ ପାରିଛି । ତାଙ୍କ ପାଠ ପଢାର ଆରମ୍ଭ ବର୍ଣ୍ଣନାରେ ତାଙ୍କର ପିତାଙ୍କ ଅନୁଭୂତିକୁ ବର୍ଣ୍ଣନା କରି ସେ ଲେଖିଛନ୍ତି, "ନନା ଝିଙ୍କି ଗାଆଁ ର କପିଳନାଥଙ୍କୁ ସ୍ୱପ୍ନରେ ଦେଖିଲେ; ଦେବ ଦେହ୍ନ ଦିନେ ଆମ ଘରକୁ ହାଲ୍ଲୋଲ କରି ଛୁଡା ହୋଇ ନନାଙ୍କୁ କହିଲେ— ପୁଅକୁ ଘରେ ବସାଇଛୁ କାହିଁକି ? ପାଠପଢା ଭଲ ହେବ" । ୪ । ୧୯୧୯ ମସିହା ପୁଣି ଦୁର୍ଭିକ୍ଷ ସମୟର ଲୋକଙ୍କର ଶୋଚନୀୟ ଅବସ୍ଥା ନିଜର ପରିବାରର ଉଦାହରଣ ଦେଇ ଲେଖିଛନ୍ତି—"ଚାଉଳ ସେରେ ରଙ୍କା ହୋଇ ଭୋଗଣି ଭଙ୍ଗା ହେଉଥିଲା । ମାଆ ବୋଉ

୪ । ଡଃ କୁଞ୍ଜବିହାରୀ ଦାଶ 'ମୋ କାହାଣୀ', ପୃ ୧୧୩

ଥିଲେ ଲେଖାଏଁ ଖାଇ ତୋରାଣି ପିଉଥିଲେ । କମ୍ପା ଚକ ଭଲଆ ଭାତ ଛୁଇଁ କୋଳଥ ଘାଉ ମାଣ୍ଡିଆ ଘାଉ ଖାଉଥିଲେ । କାଞ୍ଜି, ଖୁଦପିତା, ଖିରସାପାଣି ଖୁବ୍ ହେଉଥିଲା ।[୫]

ଆତ୍ମଜୀବନୀରେ ନାୟକ ହିଁ ସ୍ୱୟଂ ଲେଖକ । ନାୟକ ଜୀବନର ଉତ୍ଥାନ ପତନ ବହୁଚରିତ୍ରର ସମାରୋହରେ ପ୍ରସ୍ଫୁଟିତ ହୁଏ । 'ମୋ କାହାଣୀ'ରେ ଆମେ ବହୁ ଚରିତ୍ରର ସମାବେଶ ଲକ୍ଷ୍ୟ କରୁ । ତାଙ୍କ ନନା, ବୋଉ, ଭଉନା, ହେମଭଉଜ, ନାନୀ, ଉଦଆ, ହରମାଷ୍ଟ୍ରେ, ବଶମ୍ଭର ମାଷ୍ଟ୍ରେ, ପ୍ରଧାନ ଶିକ୍ଷକ ଅନାଥବନ୍ଧୁ, ସ୍କୁଲ କଲେଜର ସହପାଠୀବୃନ୍ଦ ଇତ୍ୟାଦି । ଭୁବନେଶ୍ୱରରେ ମାଇନର ପଢା ସମୟରେ ପ୍ରଧାନ ଶିକ୍ଷକ ଅନାଥ ବନ୍ଧୁ ମହାନ୍ତଙ୍କ ପ୍ରେମ, ଶ୍ରଦ୍ଧା, ଆନ୍ତରିକତାର ସ୍ପର୍ଶରେ କୁଞ୍ଜବିହାରୀ ଜଣେ ମେଧାବୀ ଛାତ୍ର ଭାବେ ପରିଗଣିତ ହେଉଥିଲେ । ମହତ୍ ବ୍ୟକ୍ତି ପ୍ରତି ବିପୁଳ ଶ୍ରଦ୍ଧା ତାଙ୍କ ଜୀବନର ଏକ ବିଶିଷ୍ଟ ଦିଗ । ତତ୍‌କାଳୀନ ଓଡ଼ିଶାର ବହୁ ମହନୀୟ ବ୍ୟକ୍ତିଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ । ତେଣୁ ଆଲୋଚ୍ୟ ଜୀବନ ଚରିତ ଏକ ଅଭିନବ ଐତିହାସିକ ବିବରଣୀ ପ୍ରଦାନ କରିଥାଏ । ମନୀଷୀ ନୀଳକଣ୍ଠ, ବୈକୁଣ୍ଠନାଥ ପଟ୍ଟନାୟକ, ଶଶିଭୂଷଣ ରାୟ, ପ୍ରବୋଧଚନ୍ଦ୍ର ବାଗ୍‌ଚୀ, ରାଜା ବୈକୁଣ୍ଠନାଥ ଦେ, ଇତ୍ୟାଦି ବହୁ କବି, ଗବେଷକ, ଅଧ୍ୟାପକ, ସମାଜସେବୀ ତଥା ଅବଲୁପ୍ତ ହୋଇ ରହିଥିବା ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ଜୀବନ କାହାଣୀ ମଧ୍ୟ ଜାଣିବାର ସୁଯୋଗ ରହିଛି ।

ପ୍ରାଣର ଭାଷା, ହୃଦୟର ଝଙ୍କାର ସର୍ବପ୍ରଥମେ ପ୍ରତିଫଳିତ ହୁଏ କବିତାରେ । ପ୍ରକୃତି ସୁନ୍ଦର, ମନୋହର ଚିତ୍ତାକର୍ଷକ ଅନୁଭୂତି ତାଙ୍କୁ କବିତା ଲେଖିବା ପାଇଁ ପ୍ରେରଣା ଯୋଗାଇଛି । ମାନବ ପ୍ରକୃତି ତଥା ସ୍ୱ ପରିବେଷ୍ଟନୀକୁ ଅନୁଶୀଳନ କରିବାରେ ସେ ଗଭୀର ସହାନୁଭୂତିଶୀଳ ହୋଇ ଉଠୁଥିଲେ । ସେ ସବୁର ପରି ପ୍ରକାଶ ଘଟିଛି ବହୁ କବିତା, ଭ୍ରମଣକାହାଣୀମାନଙ୍କରେ, ପଥ ଓ ପଥିକ, ଲଙ୍କାଯାତ୍ରୀ, ଆମେରିକାରୁ ୟୁରୋପ, ଆଫ୍ରିକା ଇତ୍ୟାଦି ଭ୍ରମଣ କାହାଣୀମାନଙ୍କରେ । ତାଙ୍କର ଭ୍ରମଣପ୍ରିୟତାର ପରିଚୟ ମିଳେ । କୁଞ୍ଜବିହାରୀ ଗଳ୍ପ ବା ଉପନ୍ୟାସ ଲେଖିନାହାନ୍ତି ସେ ସଂସ୍କୃତି, ସାହିତ୍ୟ, ସମାଲୋଚନା, ଆଲୋଚନା ଆଦି ନାନା ବିଷୟରେ ବହୁ ଉଚ୍ଚକୋଟୀର ଚିନ୍ତାଗର୍ଭକ ପ୍ରବନ୍ଧ ରଚନା କରିଛନ୍ତି । 'ମୋ କାହାଣୀ' ଶୈଳୀ ସରଳ ସାବଲୀଳ କାବ୍ୟିକ ରୀତିରେ ବର୍ଣ୍ଣିତ । ବ୍ୟକ୍ତିଗତ କଥନ ଭଙ୍ଗୀ ଗ୍ରାମ୍ୟ ଶବ୍ଦର ସଂଯୋଜନା କରି ଜୀବନର ଅନ୍ତରୀଣ ଭାବକୁ ପର୍ଯ୍ୟବେକ୍ଷଣ କରିଛନ୍ତି । ଏପରି ଜୀବନ୍ତ ସ୍ୱାଭାବିକ ବର୍ଣ୍ଣାଢ୍ୟ ରୂପାୟନ କୃଚିତ ଚରିତ ଗ୍ରନ୍ଥରେ ଦେଖିବାକୁ ମିଳେ । ନୟାଗଡର ରାଜକୁମାର, ରାଜେନ୍ଦ୍ର ଓରଫ ବାପିର ମନସ୍ତତ୍ତ୍ୱ ବର୍ଣ୍ଣନାରେ କୁଞ୍ଜବିହାରୀଙ୍କର ଏକ ଚଳ ଚଞ୍ଚଳ ଶିଶୁସୁଲଭ ମନର

୫ । ଡଃ କୁଞ୍ଜବିହାରୀ ଦାଶ, 'ମୋ କାହାଣୀ', ପୃ ୮୪

ପରିଚୟ ମିଳେ । ଆତ୍ମଜୀବନୀରେ ସେ ସ୍ୱୀକାର କରିଛନ୍ତି ସବୁ ଶିଶୁ କବିତାର ମୂଳ ଉତ୍ସହିଁ ଏହି-ବାପି ।

ମଣିଷର ପ୍ରତିଟି ମୁହୂର୍ତ୍ତ ଅନେକ ଶ୍ରେଷ୍ଠବଡ଼ ଅନୁଭୂତିରେ ପୂର୍ଣ୍ଣ ନିଶ୍ଚୟ, କିନ୍ତୁ ସମସ୍ତଙ୍କର ଅନୁଭୂତି ସମାନ ଯାଏନି । ଅନେକଙ୍କ ଜୀବନରେ ଏପରି ଘଟେ ଜୀବନାରମ୍ଭରୁ ହିଁ ତାଙ୍କର ପ୍ରତିଭା ଲେକମୁଖରକୁ ପ୍ରସ୍ଫୁଟିତ କରିଥାଏ । ଆଉ ଅନେକଙ୍କର କୌଣସି ଏକ ପରିବେଶ ବା ଅବସ୍ଥାର ବାଧରେ ସୃଜନୀ ଶକ୍ତିର ସ୍ଫୁରଣ ହୁଏ । ସେଦିନର କୁଞ୍ଜବିହାରୀ ଲଙ୍ଗଳ ଚଷୁ ଚଷୁ ଯେ କଲମ ଚାଷ କରି ପ୍ରସିଦ୍ଧ କବି ଓ ଗବେଷକ ହେବେ ଏକଥା କିଏ କଳ୍ପନା କରିଥିଲା ? କୁଞ୍ଜବିହାରୀଙ୍କ ଆତ୍ମଚରିତ 'ମୋ କାହାଣୀ' ପାଠ କଲେ ତାହାକୁ ଇଂରେଜୀ କବି ଗୋଲ୍ଡସ୍ମିଥ୍‌ଙ୍କ ସହିତ ତୁଳନା କରିବାକୁ ଇଚ୍ଛା ହୁଏ । ୬ ।

ସମୟର ପ୍ରବହମାନ ଗତିରେ ତାଙ୍କ ଜୀବନର ପ୍ରବାହ ବାର୍ଦ୍ଧକ୍ୟ ସୀମାରେ ଉପନୀତ । ଅବସରପ୍ରାପ୍ତ ଜୀବନ ତାଙ୍କ ପାଇଁ ଅସହ୍ୟ ଯନ୍ତ୍ରଣାଦାୟକ ହୋଇପଡ଼ିଛି । ସେ ଲେଖିଛନ୍ତି ମୋ ବାର୍ଦ୍ଧକ୍ୟର ସ୍ୱୀକୃତି ସରକାର ଆଜ୍ଞା ଦେଲେ ଅଥଚ ଦେହ ବା ମନରେ ବାର୍ଦ୍ଧକ୍ୟର କୌଣସି ଲକ୍ଷଣ ନଥିଲା······ଯେ ଅବସର ନେଲି । ସେ ଯେପରି ଜନପାଙ୍କ୍ତିରୁ ଗଲି । ୭ ।

ଡ଼ଃ କୁଞ୍ଜବିହାରୀ ଆଜି ଜଣେ ବଶିଷ୍ଟ କବି ଓ ସମାଲୋଚକଭାବେ ପ୍ରତିଷ୍ଠିତ । ଜଣେ ବଶିଷ୍ଟ ଆତ୍ମଚରିତ ଲେଖକ ଭାବରେ ତାଙ୍କର ମହତ୍ତ୍ୱ ଗୁରୁତ୍ୱପୂର୍ଣ୍ଣ । କାହାଣୀର ଛନ୍ଦେ ଛନ୍ଦେ ଅନୁଭୂତିର ଗମ୍ଭୀରତା ଓ ଭାବର ପ୍ରାଞ୍ଜଳତା ବିଦ୍ୟମାନ । ନିଜର ଜୀବନାଦର୍ଶ ଏବଂ ମୌଳିକ ଚିନ୍ତାଧାରା ସହିତ ସମନ୍ୱୟ ବା ଐକ୍ୟ ପ୍ରତିଷ୍ଠା କରି ଗଢ଼ି ଉଠିଛି କୁଞ୍ଜବିହାରୀଙ୍କର ଆତ୍ମକାହାଣୀ "ମୋ କାହାଣୀ ।"

---

୬ । ଜୀବନୀ ସାହିତ୍ୟ ଏକ ଅଧ୍ୟୟନ—ଅଧ୍ୟାପକ ପଠାଣି ପଟ୍ଟନାୟକ

୭ । କୁଞ୍ଜବିହାରୀ ଦାଶ—"ମୋ କାହାଣୀ" ପୃ ୩୭୪

✻ ଓଡ଼ିଆ ବିଭାଗ
ଶାନ୍ତିନିକେତନ

# ॥ କୁଞ୍ଜବିହାରୀଙ୍କ ଗଦ୍ୟ ରଚନା ଶୈଳୀ ଓ ତାଙ୍କର ଜାନପଦିକ ସୌନ୍ଦର୍ଯ୍ୟ ॥

ଅଧ୍ୟାପକ ଆଦିକନ୍ଦ ସାହୁ

ଲୋକରତ୍ନ କୁଞ୍ଜବିହାରୀ ଦାଶଙ୍କ ଗଦ୍ୟ ରଚନା ଏକ ପ୍ରାଣପୂର୍ଣ୍ଣ ଶୈଳୀରେ ରଚିତ । ଉଭୟ ଗଦ୍ୟ ଓ ପଦ୍ୟରେ ଯେଉଁ ଅକୃତ୍ରିମ ଜାନପଦିକ ଗଦ୍ୟ ଭାଷା, ଯାହା କଥିତ ଗଦ୍ୟ (Oral prose)ର ଗୁଣ ଓ ସୌନ୍ଦର୍ଯ୍ୟ ଗ୍ରହଣ କରିଥାଏ ତା'ର ଏକ ଅତ୍ୟନ୍ତ ପ୍ରାଣପୂର୍ଣ୍ଣ ପରମ୍ପରା ଆମ ଓଡ଼ିଆ ସାହିତ୍ୟରେ ରହିଛି; ସେଇ ପରମ୍ପରାର ଏକ ସୁଦୃଢ଼ ଆବର୍ତ୍ତନ ଭିତରେ କୁଞ୍ଜବିହାରୀଙ୍କ ଗଦ୍ୟ ଅଧିକ ଭୂମି ସଂଲଗ୍ନ ମନେ ହୁଏ । କୁଞ୍ଜବିହାରୀଙ୍କ ଗଦ୍ୟ ରସ୍କିନ୍ ଓ କାର୍ଲାଇଲଙ୍କ ପରି ଜ୍ଞାନଗର୍ଭିତ ଗଦ୍ୟ ( cognitive prose ) ନୁହେଁ । ମାତ୍ର ତାଙ୍କ ଗଦ୍ୟରେ ବୁଦ୍ଧି ଅପେକ୍ଷା ଆବେଗର ଉଷ୍ମତା ବେଶି; ସେଇଥିପାଇଁ ତାଙ୍କର ପ୍ରାୟ ସବୁ ପ୍ରକାରର ଗଦ୍ୟ ରଚନା ଅପେକ୍ଷାକୃତ ଅଧିକ ଆପଣାର ଓ ପାରିବାରିକ ମନେହୁଏ । ଏହି ଆତ୍ମୀୟତାର ଗୁଣ ତାଙ୍କ ଗଦ୍ୟକୁ ଭାରି ସହଜ ଓ ନରମ ( subtle ) କରିଛି । ପାରିବାରିକ ବା ସାଧାରଣ ପାରିବାରିକ ଜୀବନରେ ବ୍ୟବହୃତ ମୌଖିକ ଗଦ୍ୟର ଗୁଣ ଓ ପ୍ରବୃତ୍ତି ଯାହା, ତାହା ପରିପୂର୍ଣ୍ଣଭାବେ ତାଙ୍କ ଗଦ୍ୟରେ ପରିଲକ୍ଷିତ ହୁଏ । ସେ ଯେପରି ମନେକରନ୍ତି ହୃଦୟର ଯୋଗାଯୋଗ ପାଇଁ ଯେଉଁ ଭାଷା ଅଧିକ ପ୍ରଶସ୍ତ ତାହା ନରମ ଓ ମରମୀ ହେବା ଉଚିତ । ସାଧାରଣତଃ ଚିଠିର ଭାଷା ଯାହା ସେହି ଭାଷାର ନମନୀୟତାର ଗୁଣ ତାଙ୍କ ଗଦ୍ୟରେ ରହିଛି । 'ଆମେରିକାରୁ ୟୁରୋପ ଆଫ୍ରିକା' ଭ୍ରମଣ କାହାଣୀ ଗ୍ରନ୍ଥର ଆରମ୍ଭରେ ଏହି କେତେ ଧାଡ଼ି ଗଦ୍ୟ ରଚନାକୁ ତାଙ୍କର ଏଠାରେ ଲକ୍ଷ୍ୟ କରାଯାଇପାରେ ।

ଏକ ପରିବାରର ହେଲେ ବି ଅବସ୍ଥା ଚକ୍ରରେ ତୁମେ ଦି'ଜଣ ଆମେରିକାନ୍, ମୁଁ ଭାରତୀୟ—ଏଇ ଦୂର ବିଚ୍ଛେଦ ଆମମାନଙ୍କୁ ବହୁତ ପାଖକୁ ଟାଣି ଆଣିଛି—ମିଳାଇଛି—ସ୍ନେହୋଚ୍ଛଳ, ସୁନ୍ଦରତମ ଗୋଟିଏ ବିନ୍ଦୁରେ—'ଯେତେ ଦୂରରେ ଥିଲେ ଯେ ଯାହାର ସେ ତାହାର ।'

ଗାଉଁଲି ଭାଇନାଙ୍କୁ ଆଧୁନିକ କରିବାରେ ତୁମମାନଙ୍କ ଚେଷ୍ଟାରେ ଅନ୍ତ ନାହିଁ; ଅକାତରରେ ଖର୍ଚ୍ଚ କରି ଯାଉଛ, ଆମେରିକାରେ ଯାହା କିଛି ସୁନ୍ଦର, ଦେଖାଇବା

ଗୋଟିଏ ଶବ୍ଦରେ –'ଯେତେଦୂରରେ ଥିଲେ ଯେ ମାହାର ସେ ତାହାର ।'

ଗାଉଁଲି ସଂଜନାକୁ ଆଧୁନିକ କରିବାରେ ତୁମମାନଙ୍କ ଚେଷ୍ଟାରେ ଅନ୍ତ ନାହିଁ; ଅକାତରରେ ଖର୍ଚ୍ଚ କରି ଯାଉଛ, ଆମେରିକାରେ ଯାହା କିଛି ସୁନ୍ଦର, ଦେଖାଇବା ଲାଗି ଡ୍ରାଇଭ କରି ନେଇଛ ଦୁର୍ଗମଗିରି ଉପତ୍ୟକା ଅରଣ୍ୟ କାନ୍ତାରେ । ମନରେ ମୋର ଯାହା କିଛି ଐଶ୍ବର୍ଯ୍ୟ ଥିଲା ତାକୁ ଗୋଟେଇ ପୋଟେଇ ଠୁଳ କରିଚି, ଏହି କାହାଣୀରେ—ନିଅ ମୋର ସେଇ ସ୍ନେହୋପହାର ।

ଭାଷା ଓ ଭାବର ତୀବ୍ର ଆବେଗିକ ଉଷ୍ମତାକୁ ନାନା ଭାବରେ ତାଙ୍କ ଗଦ୍ୟରେ ପ୍ରତ୍ୟକ୍ଷ କରାଯାଇ ପାରେ । ମାତ୍ର ଭାବର ଆବେଗିକ ପ୍ରବହମାନତା ବନୀତ ବ୍ୟଂଜନା ଟିକାର ଅଧିକ ସହଜ, ଓ ସ୍ୱାଭାବିକ କୋମଳ ହୋଇଛି । ତାଙ୍କ ଭାଷା ନିଜ ଜୀବନ ଠାରୁ କେତେବେଳେ ବି ଦୂରେଇ ଯାଇନି । ତାଙ୍କ ଗଦ୍ୟ ସତେ ଯେପରି ବ୍ୟକ୍ତିଗତ ଅଙ୍ଗୀକାର ବା ଆତ୍ମ ସ୍ୱୀକାରୋକ୍ତି (Confession) ର ଭାଷା, ସେଥିପାଇଁ ସର୍ବଦା ତାଙ୍କ ମାନସିକ ନିମଗ୍ନତା (involvement) ସ୍ପଷ୍ଟତଃ ବାରି ହୋଇ ପଡ଼େ । ନିଜର ଜୀବନବୋଧ ଓ ଜୀବନର ବହୁବିଧ ଅନୁଭୂତିକୁ ସେ ତାଙ୍କ ଗଦ୍ୟର ଭାବ ଓ ଭାଷାରେ ଫୁଟାଇଛନ୍ତି । ତାଙ୍କ କବିପ୍ରାଣତାର ଏକାଂତ ଅନ୍ତରଙ୍ଗ ଅଭିବ୍ୟକ୍ତି ତାଙ୍କ ଗଦ୍ୟରଚନାକୁ ସରସ ଓ ଅଧିକ ହୃଦୟସ୍ପର୍ଶୀ କରିଛି । ଏକ ଭୂମିସଂଲଗ୍ନ ଉତ୍କଳୀୟତା ତାଙ୍କ ରଚନାରୁ ସର୍ବଦା ବାରି ହୋଇ ପଡ଼େ । ଯାହା ତାଙ୍କ ଶିଳ୍ପ ଶୈଳୀକୁ ଏକ ନୂତନ ପ୍ରତ୍ୟୟ ଆଣି ଦେଇଛି । ଓଡ଼ିଶାର ପ୍ରବାଦ, ପ୍ରବଚନ, ଢଗ,ଢମାଳି, କେବଳୀ ଓ ଲୋକକଥାକୁ ଯେପରି ସେ ପ୍ରୟୋଗ କରିପାରିଛନ୍ତି ଓ ଐଶ୍ୱର୍ଯ୍ୟମୟ ସଂସ୍କୃତ ଶ୍ଳୋକ ବାକ୍ୟକୁ ସେ ଯେପରି ସାରା ଜୀବନର ସାଧନା ଭିତରେ ବାରମ୍ବାର କରିଛନ୍ତି ତା'ର ପ୍ରତିଫଳିତ ରୂପ ତାଙ୍କ ଗଦ୍ୟରଚନା ଶୈଳୀରେ ପରିଦୃଷ୍ଟ ହୁଏ । ଜଣେ ନାମୀ ରୋମାଣ୍ଟିକ ଲେଖକ ଭାବେ ସେ ଓଡ଼ିଶାର ନଦୀ ଗିରିବନ ପର୍ବତକୁ ମୁଗ୍‌ଧ ଦୃଷ୍ଟିରେ ମୂଲ୍ୟାୟନ କରିବା ଦ୍ୱାରା ସେ ଅନ୍ତର ନର୍ମ ପାରି ନାହାନ୍ତି । ସେ ନିଛକ ଭାବେ ଜାଣି ଅତି ମାତ୍ରାରେ ଓଡ଼ିଶାର ସୁନ୍ଦର ଭୂଗୋଳ, ପରଂପରାର କମନୀୟ ଛବିକୁ ଭାବି ପାରିଥିଲେ ନିମ୍ନୋକ୍ତ କେତେ ଧାଡ଼ିରୁ ତାହା ସ୍ପଷ୍ଟ ହୋଇଯିବ ।

"ରଙ୍କ, ଚେଙ୍ଗେଲ ଆଲପସ୍‌ରେ ଭୁଲି ପାରି ନଥିଲି ମହେନ୍ଦ୍ର, ମେଘାସନ ମାଲ୍ୟଗିରି ସାଲୁର, କଳିଙ୍ଗାଘାଟି ନାଏଗ୍ରା ରାଇନ ନଦୀର ପ୍ରପାତ ଦେଖି ମନେ ପକାଉଥିଲି ଡୁଡୁମା, ବାରୀ, ପ୍ରଧାନପାଟ, ଖଣ୍ଡାଧାର, ଏଲୋଷ୍ଟୋନ, ଲେକ ଜେନେଭା, ଦେଖି ମନେପଡ଼ୁଥିଲି ଚିଲିକା, ଅଂସ୍ଫୋର୍ଡ 'ଓଲଡ଼ ଫେଡ଼ୁଫୁଲ' ସ୍ମରଣ କରାଉଥିଲା ହଟଜେଣ୍ଟରକୁ ; ଲେଡ଼ହେଡଭାରତୀୟ ଦେଖି ଆଖି ଆଗରେ ନାଚି ଉଠୁଥିଲା ସାନ୍ତାଳ, କୋହ୍ଲ ଆଦି ଆଦିବାସୀ, ଚର୍ଚ୍ଚମସ୍କ ରୋମ୍ ଦେଖି ମନେ ପଡ଼ୁଥିଲା ମନ୍ଦିର ନଗର ଭୁବନେଶ୍ୱର, ପାରଲ ବଣରେ ମର୍ମର ସ୍ତମ୍ଭ ସ୍ତମ୍ଭ ଭସି ଯାଇଥିଲି ପୁଣିରୁ କୋଣାର୍କ ଚୌଥିଲି ବିସ୍ତୃତ ଝାଉଁ ଅରଣ୍ୟକୁ; ଓଜୁ, ସିକାମୋର ଦେଖି ଶାଳ ପିଆଶାଳ ଜଂଗଲକୁ । ସତେ ମୋ

ଓଡ଼ିଶାଟି ଗୋଟିଏ ସଂକ୍ଷିପ୍ତ ପୃଥିବୀ' ।ଏପରି ଶୈଳୀଗତ ତୁଳନା କେବଳ ଶଶିଭୂଷଣ ସମ୍ଭବ ।

ନିଜକୁ ସଙ୍କେତାତ୍ମକ ଭାବେ ନିଜର ନିକଟତମ ତଥା ପରିଚିତ ପୃଥିବୀରେ ଅନୁଭବ କରିବାର ଉଚ୍ଛ୍ୱସିତ ଭାବୁକତା ଭିତରେ ଭାବ-ପ୍ରବୋଧକ (evocative) ବହୁ ପ୍ରତ୍ନଯୁକ୍ତ ଭାବ ବ୍ୟଂଜନାର ଅବତାରଣା ସେ କରିଛନ୍ତି । ଯେତେ ତଥ୍ୟନିଷ୍ଠ, ଗମ୍ଭୀର ବିଷୟ ସେ ଲେଖୁଥିଲେ ହେଁ ତାଙ୍କ ଅଲକ୍ଷ୍ୟରେ ସମ୍ପୂର୍ଣ୍ଣ ଉତ୍କଳୀୟ ଚିତ୍ତ ତାଙ୍କ ଗଦ୍ୟ ଶୈଳୀରେ ଏକ ସୁମଧୁର ଛନ୍ଦ ତାରଲ୍ୟ (rythmical liquidity) ର ଅନ୍ତ-ର୍ଗୁଣ ପ୍ରବହମାନତା ଆଣିଦେଇଛି । "ଏଠି ବାଛୁରୀଙ୍କ ଗାଈ ତଳରେ ମୁହଁ ଲଗାଇ ଚିଁ ଚିଁ କରି ଦୁଧ ପିଏ ନାହିଁ । ଜଙ୍ଘ ମଝିରେ ଡେକ୍‌ଚିକି ଚାପିରଖି କେହି ଗାଈ ଦୁହିଁ ବସେ ନାହିଁ ; ବାଛୁରୀଙ୍କ ଚୁକ୍‌ଚୁକ୍ ଗାଈ ଦୁଆଁ ହୋଇଯାଏ ନାହିଁ । ବାଛୁରୀ ଲଗି ଗାଈ ଦୁଧ ପ୍ରେରଣ ରଖେ ନାହିଁ । ଜନ୍ମ ହେଲ ପରେ ଗାଈ ସଙ୍ଗେ ବାଛୁରୀର ସମ୍ପର୍କ ନଥାଏ । କେବଳ ଦୁହାଁ ଦୁଧରୁ କିଛି ଦିଆଯାଏ । ମାତ୍ର ଆମ ଆଡ଼େ ସାଆନ୍ତେ ଚପି ଚାପି ଦୁହିଁଲେ ବାଛୁରୀ ଦୁଧ ଆଶା ଛାଡ଼େ । କଅଁଳ ଘାସ ଚୁଙ୍କି ଶିଖେ । ଗହୀର ବିଲରେ ବୁଲୁ ବୁଲୁ ବେଳେ ବେଳେ ହଜେ । ତାକୁ ଘର ଲୋକେ ଖୋଜିବାକୁ ଯାନ୍ତି, ଉଚ୍ଚସ୍ୱରରେ ଡାକ ଡ଼ାକନ୍ତି "ଆ ଗୁରୁବାରୀ ଆ—ଆ—" ଦୀର୍ଘ ସନ୍ଧ-ଚାକ ବେଳେ ଏ ଡ଼ାକ ଗହୀରକୁ ଗହୀର ଡ଼େଇଁ ଯାଉଥାଏ । ଏଠି ଗାଈ ଚୋରଅରି ତୋରାଣୀ କଂସାରେ ମୁହଁ ବୁଡ଼ାଏ ନାହିଁ, ଶାରଆ ସେ୍ନହରେ ସରୁ ଗ୍ରୀବାଟିଏ ହୁଏ ନାହିଁ ..'କାଳ ଗାଈ, ମୁଣ୍ଡରେ ଚନ୍ଦ, ତାକୁ ନେଇ ଗୁହାଳେବାନ୍ଧ,ର ଅର୍ଥ କିଛି ନାହିଁ । (ଡ଼ଃ କୁଞ୍ଜବିହାରୀ ଦାଶ, ଅମେରିକାରୁ ୟୁରୋପ ଆଫ୍ରିକା, ୧୯୬୮ ପୃ ୩୧୮)

ଜନ୍ମପୀଠର ପ୍ରତିଟି ଛବି ତାଙ୍କ ସମୁଦାୟ କାବ୍ୟିକ ବ୍ୟକ୍ତିତ୍ୱ ଓ ତାଙ୍କର ରସ ଚେତନାକୁ ଆଚ୍ଛନ୍ନ କରି ରଖିଛି । ସେ ପୃଥିବୀର ବହୁ ଛବି ଦେଖିବା ଭିତରେ ବି ନିଜ ପୀଠର ପ୍ରତିଟି ସରଳ ସୁନ୍ଦର ମୁହୂର୍ତ୍ତକୁ ମନେ ପକାଇଛନ୍ତି । 'ଗାଉଁଲି ଲୋକେ ଯେତେବେଳେ ରଜ ଦୋଳିରେ ବସିଥିବେ, ନଈ କୂଳରେ ଡୁ ଡୁ ଖେଳୁଥିବେ, ରଜ ମୁଢ଼ି ଗେଲୁଥିବେ ମୁଁ ବସିଥିବି ଉଡ଼ାଜାହାଜରେ । ଏ ବର୍ଷ ରଜ କଟିବ ଆକାଶରେ —ଏକ ବିଚିତ୍ର ଦୋଳିରେ, ଯାହାର ଅଗ୍ରଗତି ଅଛି, ପଶ୍ଚାତ୍ ଅପସରଣ ନାହିଁ ।

ଡ଼ଃ ଦାଶ ଚିନ୍ତା ଅପେକ୍ଷା ଅଧିକ ଭାବେ ଆବେଗକୁ ତାଙ୍କ ରଚନାରେ ପ୍ରାଧାନ୍ୟ ଦେଇଛନ୍ତି । ତାଙ୍କ ଗଦ୍ୟରଚନାରେ ତେଣୁ ଅଧିକ ଚିନ୍ତାଧାରାର ଗୁମ୍ଫନ ବିସ୍ତୃତ ବ୍ୟାଖ୍ୟା ବା ବିଶ୍ଳେଷଣ (scanning) ଅପେକ୍ଷା ଅଧିକ ରହିଛି ଭାବ ନିବିଡ଼ ଆବେଗର ଅଭିବ୍ୟକ୍ତି । ଏହି ଆବେଗ ତାଙ୍କ ଗଦ୍ୟକୁ ଏକ ଗୀତିମୟ ଆନ୍ତରିକତା (lyrical sincerity) ଆଣି ଦେଇଛି । ସେ ଯେଉଁ ଭାବ ପରିଧି ଉପରେ ତାଙ୍କ ରଚନା ବୃତ୍ତ ନିର୍ମାଣ କରିଛନ୍ତି ତାହା ବସ୍ତୁତଃ ଏକ ଅତି ମାର୍ମିକ ବିଷୟ ଯାହା ପାଠକର ପରିଚିତ ଅନୁଭୂତିକୁ ଉଖାରି ଦିଏ ଓ ତାର ରସ ଚେତନାକୁ ବହୁବାର ଆର୍ଦ୍ର କରେ । ତାଙ୍କ ଗବେଷଣା ସନ୍ଦର୍ଭର ଧାଡ଼ିଗୁଡ଼ିକ ମଧ୍ୟ ଯେ କୌଣସି ସାର୍ଥକ ସୃଷ୍ଟିଧର୍ମୀ ଗଦ୍ୟର

ଧାଡ଼ିଗୁଡ଼ିକ ପରି ଯେପରି ଅର୍ଥଦ୍ୟୋତକ ସେହିପରି ହୃଦୟସ୍ପର୍ଶୀ ମଧ୍ୟ । ଲେଖକର କଥାରୁ ପାଣିପରି ସେ ବୁହାଇ ଦେଇଛନ୍ତି ଏକ ସୁନ୍ଦର ଗତିଶୀଳ ଝରଣାର ଧ୍ୱନିତ ଶବ୍ଦମାନଙ୍କରେ; ଯାହାକୁ ହୁଏତ ଏକ ଅବିଚ୍ଛିନ୍ନ ଅନର୍ଗଳତା ବୋଲି ବର୍ଣ୍ଣନା କରାଯାଇ ପାରେ; ଯେଉଁଥି ପାଇଁ ଗଦ୍ୟ ଲେଖକ Bryant 'Eloquence is the poetry of prose' ବୋଲି କହିଚନ୍ତି ।

ସେ ଯେତିକି ଯେଉଁ ପ୍ରବନ୍ଧ ଓ ସମାଲୋଚନା ଲେଖିଛନ୍ତି ତାହା ଯେ ଜଣେ ସୃଷ୍ଟିଧର୍ମୀ ଗଦ୍ୟ ଲେଖକର, ଏହା ଯେ କୌଣସି ପାଠକ ନିଃସନ୍ଦେହରେ କହିଦେଇ ପାରିବ । ଭାବ ପରିଚ୍ଛନ୍ନତା (clarity) ସହିତ ଏକ ସ୍ପଷ୍ଟବାଦିତାର (boldness) ଗୁଣ ତାଙ୍କ ଗଦ୍ୟକୁ ଅପେକ୍ଷାକୃତ ସ୍ୱାତନ୍ତ୍ର୍ୟ ଆଣି ଦେଇଛି । ଅଳ୍ପଅଳ୍ପ ବାପଘର ଝିଅ ଶାଶୁ ଘରେ ଅତ୍ୟାଗ୍ରହୀତା ହେଲେ ଗାଢ଼ ଅନ୍ଧାରରେ ସେ ଯେଉଁ ଚୁଲ୍ଲି ବେଦନା ବୋଧ ଭିତରେ ହୃତସ୍ନିଗ୍ଧ ତାର ଉଦ୍‌ଯାପିତ ଶୈଶବକୁ ମନେ ପକାଏ । ତାର ସିକ୍ତ ଭାଷା କୃଷ୍ଣବିହାରୀଙ୍କ ଶୈଳୀକୁ ସେହିପରି ସ୍ନିଗ୍ଧ କରିଛି । କିନ୍ତୁ ସେ ତାଙ୍କ ଶୈଳୀକୁ ଅଯଥା ଭଙ୍ଗୀପ୍ରଧାନ (Mannered) ଓ କାବ୍ୟ ଚାତୁରୀ ଯୁକ୍ତ କରି ନାହାନ୍ତି । ସବୁଠି ଅକୃତ୍ରିମ ପଦ ବିନ୍ୟାସ । ମାତ୍ର ସେଥିରେ ପ୍ରାଣ ଅଛି; ଉଷ୍ମତା ଅଛି ।

ତାଙ୍କର 'ଜୀବନାୟନ' ଏକ ଜୀବନୀ ଗ୍ରନ୍ଥ । ସେହି ଜୀବନୀ ଗ୍ରନ୍ଥର ଧାଡ଼ିଗୁଡ଼ିକୁ ଲକ୍ଷ୍ୟ କଲେ ତାଙ୍କ ଶୈଳୀର ବିଶେଷତ୍ୱ ଚିହ୍ନିତ ହୋଇ ପାରିବ । ଦୂରରୁ ସେ କେବେ କୌଣସି କଥା ଦେଖନ୍ତି ନାହିଁ । ଅତି ନିକଟରୁ ନିଜକୁ ମିଶାଇ ଏକ 'sensible understanding' ଭିତରେ ସମସ୍ତଙ୍କୁ ପଢ଼ିବାକୁ ଚେଷ୍ଟା କରିଥାନ୍ତି । ଓଡ଼ିଶାରେ ଯେତେ ଜୀବନୀ ଗ୍ରନ୍ଥ ଲେଖା ଯାଇଛି ସେସବୁ ମଧ୍ୟରେ କୃଷ୍ଣବିହାରୀ ଦାଶଙ୍କ 'ଜୀବନାୟନ' ନୂଆ ରକମର ଜଣାପଡ଼େ । ସଂଯୋଜିତ ନାଟକୀୟ ଶୈଳୀ, ସଂସ୍ଥାପିତ ବ୍ୟକ୍ତିତ୍ୱ ଗୁଡ଼ିକର ମହତ୍ତ୍ୱକୁ ଚିହ୍ନାଇବାରେ ଅଧିକ ପ୍ରଶସ୍ତ । ଯେପରି ଦୁଃଖଦ ସେହି ଜୀବନକୁ ଲେଖିବାରେ ଡ଼ଃ ଦାଶ ଅନୁରୂପ ଭାବ ଓ ଭାଷା ବ୍ୟବହାର କରିଛନ୍ତି । ବିଦ୍ୟୁତ୍ ପ୍ରଭାଙ୍କ ଜୀବନର କନଫେସନ ଥିଲା 'ଏକେ ନାରୀ ଜୀବନ ତ ରଜ୍ଜୁ କିଆଁ / ତହିଁ ଗୁହ କଂକାଳ କାରାପିଞ୍ଜ / ଯେବେ କଲମ ଧରିଲି ସ୍ପର୍ଶେ ଗାଳି / ତାକୁ ଛାଡ଼ିଲେବି ହୁଏ ଖିନଭିନ୍ନ । / ଲେଖା ସବୁନଶା ତହୁଁ ବଡ଼ ଜଣା / ତାର ସୁଆଦ ଚାଖିଛି ଯିଏ ଥରେ / ସେ କି ଓହ୍ଲାଇବ ତାରେ ପାରେ ଏଡ଼ି ? / ଯେତେ ବାଧା ଆସୁ ପଛେ ଜୀବନରେ / ଅଳ୍ପ ଯିଏ ଯେତେ ପଛେ ଯାହା କହୁ / ମୁଁ ତ ନଈ ସୁଅ ପରି ବହିଯିବି / ଏଇ ରସଟିକ ପାଇଁ ଯେତେ ଝଡ଼ / ସୁଖେ ହସି ହସି ସବୁ ସହିଯିବି ! / ସେ ଯେ ସବୁ ବେଦନାର ପ୍ରଲେପନ, ସେ ଯେ ସବୁ ଦୁଃଖର ଗଉରବ / ସେ ମୋ ରକ୍ତ ଜିହାଦ ବନାଗ୍ନିର / ଜଳୁ ମେଘମହ୍ଲାର କଳରବ / ଏକ କଡ଼ାପି ମୁହଁର ଶିଖାପରି / ମୋର କବିତା ପ୍ରଦୀପ ଅଳି ଜଳେ ।' (ବିଦ୍ୟୁତ୍‌ପ୍ରଭା—ଦୁର୍ଗତାର ପ୍ରଥମ ଦେଉ) ଜୀବନୀକାର ଡ଼ଃ ଦାଶ ସେହି

ଜୀବନକୁ ଯେମିତି ଭାବରେ ଲେଖିଛନ୍ତି । ପାଠକ ନିଷ୍ଟୟ ସେଠି ଅଟକି ଯିବ । ଗୁରୁତ୍ୱ ଦେଇ, ସମ୍ବେଦନଶୀଳତା ଦେଇ ପଢ଼ିବ । ଚନ୍ଦ୍ରମୋହନ ମହାରଣା, ଗୋବିନ୍ଦ ରଥ, ମୃତ୍ୟୁଞ୍ଜୟ ରଥ; ଜଳଧର ଦେବ, ବୈଷ୍ଣବ ପାଣି, ବାଚସ୍ପତି ଆଗୁଆଙ୍କ ଜୀବନକୁ ସମୁଚିତ ଶ୍ରଦ୍ଧା ଓ ଅନ୍ତରଙ୍ଗତା ଦେଇ ସେ ଲେଖିଛନ୍ତି ।

ଲଙ୍କାଯାତ୍ରୀ, ମୋ ସ୍ୱପ୍ନର କାଶ୍ମୀର, ପଥ ଓ ପଥିକ, ସ୍ୱଦେଶରୁ ଆମେରିକା ଆଫ୍ରିକା ଇତ୍ୟାଦି ଭ୍ରମଣ କାହାଣୀ, ଜୀବନୀ ବ୍ୟତୀତ ତାଙ୍କର ପ୍ରବନ୍ଧ, ସମାଲୋଚନା, ଆତ୍ମଜୀବନୀ ଓ ଗଳ୍ପ ଉପନ୍ୟାସ ମଧ୍ୟ ରହିଛି । ତାଙ୍କ ଗଦ୍ୟସାହିତ୍ୟ ଉପରେ ମନ୍ତବ୍ୟ ଦେଇ ସୁରେନ୍ଦ୍ର ମହାନ୍ତି କହନ୍ତି—"କବିତା ଅପେକ୍ଷା ଗଦ୍ୟ ସାହିତ୍ୟ କୁଞ୍ଜ ବିହାରୀଙ୍କ ଲେଖନୀରେ ବହୁଭାବରେ ସମୃଦ୍ଧ ହୋଇ ପାରିଛି । ଭ୍ରମଣ ବୃତ୍ତାନ୍ତ, ଆତ୍ମଚରିତ ଓ ଜୀବନୀ ଚରିତ ଠାରୁ ସମାଲୋଚନା ପର୍ଯ୍ୟନ୍ତ ଗଦ୍ୟ ସାହିତ୍ୟର ବିଭିନ୍ନ କ୍ଷେତ୍ରରେ ସେ ଲେଖନୀ ଚାଳନା କରିଛନ୍ତି ।

"ତାଙ୍କର ଆତ୍ମ ଚରିତ "ମୋ କାହାଣୀ କେତେ ଝଣ୍ଡେ ହାତ ଗଣ୍ଠିରେ । ଆତ୍ମ ଚରିତ ମଧ୍ୟରେ ଏକ ଉଲ୍ଲେଖଯୋଗ୍ୟ କୃତି । ଏହାର ପ୍ରଥମ ଭାଗ ଯେପରି ଜୀବନ୍ତ ସେହିପରି ମର୍ମସ୍ପର୍ଶୀ । ଶୈଶବର ଏପରି ହୃଦୟଗ୍ରାହୀ ବର୍ଣ୍ଣନା ଅନ୍ୟ ଆତ୍ମଚରିତ ମାନଙ୍କରେ ଏପରି ମନୋଜ୍ଞ ଭାବରେ କ୍ୱଚିତ୍ ପ୍ରକାଶ ପାଇଛି । ଏହାର ଗଦ୍ୟ ଶୈଳୀ ଘାସ ପତ୍ରରେ ଶିଶିର ବିନ୍ଦୁରେ ନଗ୍ନଭରଣ କଲା ପରି ମନ୍ତ ।' ସୁରେନ୍ଦ୍ର ମହାନ୍ତିଙ୍କ ଏ ଅଭିମତ ଯଥାର୍ଥ । ସବୁ ସରଳତା ଭିତରେ ବି ଏକ ଜଟିଳରୂପ ବିନ୍ୟାସକୁ ଲକ୍ଷ୍ୟ କରାଯାଇ ପାରେ । ମେଥ୍ୟୁ ଆରନୋଲ୍ଡ ଠିକ୍ କହୁଥିଲେ 'Plain style is the most compound and elegant style. ଡ଼ଃ ଦାଶଙ୍କ 'ପଥ ଓ ପଥିକ' ପରି ଭ୍ରମଣ କାହାଣୀ ଗଳ୍ପ ଉପନ୍ୟାସ ପରି ସୁଖ ପାଠ୍ୟ ପାଠକ ତାର ପରିଚିତ ଅନୁଭୂତିକୁ ଏଥିରେ ଅନାୟାସରେ ଖୋଜି ପାଏ । କେବଳ ଆବେଗ ଉଦ୍‌ବେଗର ଭାଷା କେତେ ଉଜ୍ଜଳ ତଥା ମୁଗ୍ଧ ଅନୁଭବର ଭାଷା । ପାଠକ ଅଭିଭୂତ ହୋଇଯାଏ ବିନା କ୍ଳାନ୍ତ ଅନୁଭବ କରେନା । ଅବଶ୍ୟ ଏକଥା ସତ ଯେ ତାଙ୍କ ଗଦ୍ୟ ସେତେ ବକ୍ତବ୍ୟ ପ୍ରଧାନ ନୁହେଁ, ସେତେବେଶୀ ବର୍ଣ୍ଣନା ପ୍ରଧାନ । ଏକ କାବ୍ୟିକ ତନ୍ମୟତା ସେ ସବୁ ବର୍ଣ୍ଣନାକୁ ଅଧିକ ହୃଦ୍ୟ ଓ ଆକର୍ଷଣୀୟ କରିଛି । ଏଠାରେ ତାଙ୍କ 'ପଥ ଓ ପଥିକ' ରୁ କିଛି ଅଂଶ ଉଦ୍ଧାର କରାଯାଇପାରେ ।

'ଏ ମୁହୂର୍ତ୍ତରେ କଣ ଦେଖୁଛି ? କାଶ୍ମୀର ନା ମାଆ ? ଏ ଜୀବନ ଥିଲେ ହାତରେ ପଇସା ହେଲେ ଯେ କୌଣସି ମୁହୂର୍ତ୍ତରେ କାଶ୍ମୀର ଭେଟିଯିବି । + + + + + ସମସ୍ତ ହିମାଦ୍ରିର ହିମ ମୋ ଚକ୍ଷୁର ଦାହ ନିଭେଇ ପାରିବ ? କେଉଁ କାଶ୍ମୀର ଗୋଲାପର ଏପରି ମହକ ଅଛି, ଯାହାକି ମାତୃଦେହର ମହକକୁ ବଳିଯିବ ? ମା ଆଖିର ବିନ୍ଦୁଏ ଲୁହକୁ କେଉଁ ତୀର୍ଥର ଜଳ ସରି ହେବ ?"

"ଡ଼ାଲ ଲେକ୍ ପରି ଫୁଟି ଉଠିଲା ଆମ ଗାଆଁର ବଉଡ଼ଙ୍ଗ ପୋଖରୀ— ଫୁଟିଛି କଇଁ ଫୁଲ । ଚଞ୍ଚଳ ଢେଉରେ ନାଚୁଛି ତାର ଛାଇ । + + + ମାଆକୁ ଆଉ କବିତାର କାଶ୍ମୀରକୁ ପାଇଲି ଏଇ ଆମ ଗାଆଁରେ" । ତାଙ୍କ ନିଜସ୍ୱ ଜୀବନର ଅନ୍ତରଙ୍ଗତା , ଆଦର୍ଶ ନିଷ୍ଠା ଯେଉଁ ବ୍ୟକ୍ତିତ୍ୱ ଆଣି ଦେଇଛି ତାର କଳାତ୍ମକ ପ୍ରକାଶ ହୋଇଛି ବସ୍ତୁତଃ ତାଙ୍କର ଶୈଳୀ । ଦୁପକାନସ ଏ ପ୍ରସଙ୍ଗରେ ଯଥାର୍ଥ କହିଛନ୍ତି 'Style is seen as largely dictated by the nature of the author himself. It is the expression of his personality' ଡ଼. ଦାଶଙ୍କ ବ୍ୟକ୍ତିତ୍ୱରେ କାବ୍ୟପ୍ରାଣତା, ସାଙ୍ଗୀତିକତା , ଅତୀତ ପ୍ରତି ସମ୍ମୋହନ ଶୈଶବ ପ୍ରୀତି, ପଲ୍ଲୀପ୍ରୀତି ଅଦ୍ଭୁତ ଉତ୍କଳୀୟତା ତଥା ନିଜକୁ ଖାଣ୍ଟି କିଛି ସୁନ୍ଦର ସେଥିରେ ମିଶାଇ ଦେବାର ଦୁର୍ବାର ପ୍ରବଣତା ଯାହା ପରିଲକ୍ଷିତ ହୁଏ ତା'ର ଅନ୍ତର ମାର୍ମିକ ପ୍ରକାଶ ତାଙ୍କ ଗଦ୍ୟ ରଚନାକୁ ଏକାନ୍ତ ଆତ୍ମନିଷ୍ଠ କରିଛି । 'ନିଦାଘେ ମାଳତୀ' 'ବୈତରଣୀ' ଆଦି ପ୍ରବନ୍ଧ କାନ୍ତକବି ଲକ୍ଷ୍ମୀକାନ୍ତ ନିଜ ଶୈଶବର ପ୍ରାଣବାନ ସମସ୍ତ ଅନୁଭବକୁ ପ୍ରସ୍ଥ ପ୍ରସ୍ଥ ଯେପରି ଉନ୍ମୋଚନ କରିଛନ୍ତି କୁଞ୍ଜବିହାରୀଙ୍କ ଗଦ୍ୟରେ ଦେଶଙ୍କ ଦେହ ପ୍ରବଣତା ଓ ଦେହ ପ୍ରକାଶଯୋଗ ପରିଲକ୍ଷିତ ହୁଏ । ଦୃଶ୍ୟମାନ ପୃଥିବୀର ଦୂର, ନିକଟ, ଅତୀତ ଓ ବର୍ତ୍ତମାନ ବସ୍ତୁଜଗତକୁ ସେ ବିଶ୍ୱାସ ଓ ବିଶ୍ଳେଷଣ ଭିତରେ ଲେଖିଥିଲେ ହେଁ ସବୁଠି ଏକ ଅପୂର୍ବ ଭାବ ଜଗତ ପ୍ରବୃତ୍ତି ତାଙ୍କ ଧାରଗୁଡ଼ିକୁ ଛଳ ଛଳ କବିତାର ଭାବ ଓ ଭାଷା ଆଣି ଦେଇଛି । କବି ଓ୍ୱାର୍ଡସୱାର୍ଥ ତାଙ୍କର 'The Prelude' ଗ୍ରନ୍ଥରେ ନିଜସ୍ୱ ଆତ୍ମ ଜୀବନ ଚରିତକୁ ଯେପରି ପଦ୍ୟବନ୍ଧ ଅଭିବ୍ୟକ୍ତ ଦେଇଛନ୍ତି ଓ ସେଥିରେ ବସ୍ତୁନିଷ୍ଠତାର ଗୁଣ ଯେପରି ରହିଛି ତାହା ଏଠାରେ ସ୍ମରଣକୁ ଆସେ । କାରଣ ଯେ ଯେତେବଡ଼ ଲେଖକ ତା'ର ଲେଖାରେ ସେତିକି ଆତ୍ମନିମଗ୍ନମାନତା (involvement) ଥାଏ । ଲେଖକର ଏହି ଆତ୍ମନିମଗ୍ନ ମାନତା ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଭାବ ପରିଚ୍ଛନ୍ନତା (clarity) ର କାରଣ ।

କୁଞ୍ଜବିହାରୀଙ୍କ ଗଦ୍ୟ ରଚନା ଆବେଗଦୃପ୍ତ ହେଲେ ହେଁ ତାର ବହୁଭାଗ ମୌଳିକ ପ୍ରତିପାଦନ ବିବର୍ଜିତ ନୁହେଁ । ସେ ସବୁ ରଚନାରେ ତାଙ୍କର ଉଦ୍ଦେଶ୍ୟ ନିର୍ଦ୍ଦିଷ୍ଟ ବକ୍ତବ୍ୟକୁ ଲକ୍ଷ୍ୟକରାଯାଇ ପାରେ । ଅବେଗର ପରିପକ୍ୱତା ରହିଛି, ତାଙ୍କ ରଚନାରେ ; ସେ ଗଳ୍ପ ଉପନ୍ୟାସର ଭାଷା ଠାରୁ ଆହୁରି ନରମ (subtle) ଓ ଆହୁରି ସୂକ୍ଷ୍ମଧର୍ମୀ ଭାଷାରେ ତାଙ୍କର ଭ୍ରମଣ କାହାଣୀ ଓ ଆତ୍ମ ଜୀବନୀ ଚରିତ ଲେଖିଛନ୍ତି ।

ନିମ୍ନୋକ୍ତ କେତେ ଧାଡ଼ିକୁ ଏଠାରେ ପରୀକ୍ଷା କରାଯାଇ ପାରେ । "ହେଲଦୀ ଘଷା ନଦୀ କୂଳରୁ ଉଠି ଛୋଟେଇ ଛୋଟେଇ ପୁଣି ଚାଲିଲୁ । ପରସି ଘାଟି, କାଠ ଚଟି, ବାଉଁଶ ଘାଟି, + + + ଏମିତି ଘାଟି ପରେ ଘାଟି, ଶୃଙ୍ଗ ପରେ ଶୃଙ୍ଗ ଉଠାଣି ପୁଣି ଗଡ଼ାଣି ; ଗଡ଼ାଣି ପୁଣି ଉଠାଣି ; ନିପଟ୍ଟ ଜଙ୍ଗଲ , କୁଆଁର ଅଣ୍ଡା ନାହିଁ କ

ଚନ୍ଦ୍ରେଇର ଚେଷ୍ଟା ନାହିଁ, "କୋଉ ପକ୍ଷୀ ଦେହରେ ଶିକାରୀର ଗୁଳି ବାଜି ନାହିଁ ।"

ଏ ପ୍ରକାର ଧାଡ଼ି ଅଗଣା ଅଗଣି ବନସ୍ତ ଭିତରେ ବୁଢ଼ୀ ଅସୁରୁଣୀ କଥା ବା କାହାଣୀରେ ପରିଲକ୍ଷିତ ହୁଏ । ଏକ ସ୍ୱର ଲହରୀ ଆବୃତ୍ତି କରି ପଢ଼ିଲେ ବାରି ହୋଇ ପଡ଼େ । ବ୍ୟକ୍ତି ଅନୁଭବନିଷ୍ଠ ଗଦ୍ୟ ରଚନା (passionate prose) ର ବିଶେଷ ଭାବ ସଂଚରଣଶୀଳତା ତାଙ୍କ ଗଦ୍ୟରେ ଅନେକ ଧାଡ଼ିରେ ପରିଦୃଷ୍ଟ ହୁଏ । ଏକ ପ୍ରକାର 'poetic mode of utterance' ମଧ୍ୟ ତାଙ୍କ ଗଦ୍ୟକୁ ଅପେକ୍ଷାକୃତ ଅଧିକ ଶ୍ରବଣ ସୁଖ ଦାୟକ କରିଛି । କୃଷ୍ଣ ପ୍ରସାଦ ବସୁଙ୍କ 'ଆଖଡ଼ା ଘରେ ବୈଠକ' ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ 'ଭଗବତ ଟୁଙ୍ଗୀରେ ସନ୍ଧ୍ୟା', କାଳୀ ଚରଣ ପଟ୍ଟନାୟକଙ୍କ 'କୁମ୍ଭାର ଚକ, ହରେକୃଷ୍ଣ ମହତାବଙ୍କ 'ଗାଁ ମଜଲିସ' ଚିତ୍ତରଞ୍ଜନ ଦାସଙ୍କ 'ଜାତିରେ ମୁଁ ଯବନ' ମହାପାତ୍ର ନୀଳମଣି ସାହୁ, ଚନ୍ଦ୍ର ଶେଖର ରଥ ,ବସନ୍ତ କୁମାର ଶତପଥୀ, ଭୁବନେଶ୍ୱର ବେହେରାଙ୍କ ବିଭିନ୍ନ ଗଦ୍ୟ ରଚନାରେ ଯେଉଁ ଛଟା, ଯେଉଁ କଥିତ ଭାଷାର ବ୍ୟଞ୍ଜନା ପରିଲକ୍ଷିତ ହୁଏ ସେହି ଧାରା, ସେହି ପରଂପରାର ଅନ୍ୟ ଏକ ନିଦର୍ଶନ ହେଉଛି ଲୋକରତ୍ନ କୃଷ୍ଣଚନ୍ଦ୍ରଙ୍କ ଗଦ୍ୟ ରଚନା । ବ୍ୟାବହାରିକ ଗଦ୍ୟ (utilitarian prose) ରଚନାରେ ମଧ୍ୟ ସେ ତାଙ୍କ ବାକ୍‌ଭଙ୍ଗିତା ଓ ପରିପକ୍ୱତାର ପରିଚୟ ଦେଇଛନ୍ତି । କୃଷ୍ଣଚନ୍ଦ୍ରଙ୍କ ଗଦ୍ୟ ଯେପରି ବ୍ୟାବହାରିକତା ଠାରୁ ବେଶୀ ସାହିତ୍ୟକ । ତାଙ୍କ ଗଦ୍ୟରେ ସଂଯୋଜିତ ପଦ ବିନ୍ୟାସ (syntax) କୁ ଲକ୍ଷ୍ୟକଲେ ତାହା କିପରି ଅଧିକାଂଶରେ ପ୍ରାକୃତିକ ଧ୍ୱନି ଅନୁକୃତ ଶବ୍ଦପୁଞ୍ଜ (onomatopoetic words) ଦ୍ୱାରା ସୁଗଠିତ, ତାହା ଜଣା ପଡ଼ିବ । ତାଙ୍କ ଉପନ୍ୟାସ 'ମଶାଣି ତୁଳସୀ'ରେ ବହୁ ଶବ୍ଦ ଉଲ୍ଲିଖିତ ଧ୍ୱନି ଭିତ୍ତିରେ ଅଧିକ ଭାବ ସଂପ୍ରେରକ ହୋଇଛି ।

ସମୁଦାୟ ଉପନ୍ୟାସର କେନ୍‌ଭାସ (canvas) ହେଉଛି ପଲ୍ଲୀ ଜୀବନ । "କଳା ମିଚି ମିଚି ଆଖି । ଚେହେରା ଶାବଳ ପରି ନିଦା । ଚକ୍ ଚକ୍ ଆଖି । କଅଁଳା ବାଛୁରି ପରି ଛନ୍ ଛନ୍ , କନ୍ କନ୍ ଚେହେରାର କୁସୁମପୁର ଗାଁର ଗାଈ ଜଗା ପିଲା ପାଣ୍ଡୁଆ । ତାର ଜୀବନ ଲେଖା ଯାଇଛି ଉପନ୍ୟାସରେ । ଗୁଧୁଆ, ବୃନ୍ଦା, ଅଗାଧୁଆ ସମସ୍ତଙ୍କ ମୁହଁରେ ସାଧାରଣ ଲୋକ ଭାଷାର ସଂଳାପ । ଲୋକ ଭାଷା ପ୍ରତି ଔପନ୍ୟାସିକ ଲୋକରତ୍ନଙ୍କ ଅମାପ ଶ୍ରଦ୍ଧା ଓ ଅନୁରକ୍ତି ତାଙ୍କର ସମସ୍ତ ଚେତନାରେ ଲୋକଭାଷାପ୍ରୀତି ବିଜଡ଼ିତ ହୋଇ ପଡ଼ିଛି । ଗ୍ରାମ୍ୟ ଜନସୁଲଭ ଭାଷା (rustic language)ପ୍ରତି ତାଙ୍କର ଶ୍ରଦ୍ଧା ଓ ସମର୍ଥନ ତାଙ୍କ ରଚନା-ଶୈଳୀକୁ ଅଧିକ ଭୂମିସଂଲଗ୍ନ ବା ବାସ୍ତବତାର ଶକ୍ତି ସୌନ୍ଦର୍ଯ୍ୟ ଆଣି ଦେଇଛି । Herman Melvilleଙ୍କ 'Typee' ଉପନ୍ୟାସର ଭାଷା ଯେପରି ଗ୍ରାମୀଣ (colloquial) ଓ ସହଜ ଶବ୍ଦପୁଞ୍ଜ ଗୁଡ଼ିକ ଅଧିକ ବ୍ୟକ୍ତିକ ପଦ ସଂଯୋଜନା (subjective syntax)ର ଗୁଣ ଗ୍ରହଣ କରିଛି ସେହି ଗୁଣରେ ଗଦ୍ୟ ଲୋକରତ୍ନଙ୍କ ଲୋକ ଜୀବନ ଉପରେ ଆଧାରିତ 'ମଶାଣୀତୁଳସୀ' ଉପନ୍ୟାସରେ ଅଧିକ ପରିଲକ୍ଷିତ ହୁଏ । ତାଙ୍କର ଅଧିକାଂଶ ଗଦ୍ୟ ରଚନାରେ ଲୋକ ମୁଖରେ

ପ୍ରଚଳିତ ବୋଲି, ପହଳି, ପ୍ରବାଦ, ପ୍ରବଚନ, ଢଗଢମାଳି ବହୁଳ ମାଧ୍ୟମରେ ସଙ୍କେତିତ ହୋଇଛି । କାରଣ ଲୋକ ଜୀବନ ପ୍ରତି ତାଙ୍କର ଗଭୀର ସଂବେଦନଶୀଳତା ତାଙ୍କୁ ସେହିପ୍ରକାର ଏକ ଅଭିନିବେଶ ଆଣି ଦେଇଥିଲା ।'ଏ ଜୀବନ କାହାପାଇଁ ବୋହୁଚ ? ସୂର୍ଯ୍ୟ ଦେବ କାହାପାଇଁ ଉଦେ ହେଉଛନ୍ତି' ଆଦି ଧାଡ଼ି ଗୁଡ଼ିକ ଭିତରେ ସେହି ପଲ୍ଲୀ ଜୀବନର ଉଦାର ଉପଲବ୍ଧି ନିହିତ । ସେ ଯେପରି ନିଜର ସମସ୍ତ ଚିନ୍ତା ଓ ଚେତନାକୁ ସାଧାରଣ ଜନତାଭିତରେ ଗତିଶୀଳକରି ରଖିଥିଲେ ଓ ନିଜେ ସେ ଯେଉଁଥିପାଇଁ ଅକୁଣ୍ଠିତ ଚିତ୍ତରେ କହିଥିଲେ –'I have always been and will always be a man worshiper. Only I am incapable of expressing this property' ତାହା ତାଙ୍କୁ ନିପୀଡ଼ିତ ଖଟି ଖାଉଥିବା ମଣିଷ ମାନଙ୍କୁ ଶ୍ରଦ୍ଧା କରିବାର ପ୍ରବୃତ୍ତି ଓ ପ୍ରବଣତା ଆଣି ଦେଇଥିଲା । ଲେଖକର ମୂଳ ଚେତନା ତଥା ବ୍ୟକ୍ତିତ୍ୱର ମୌଳିକ ଅଭିରୁଚି ସମୁଦାୟ ଶିଳ୍ପ ଶୈଳୀ ଦ୍ୱାରା ସର୍ବଦା ନିୟନ୍ତ୍ରିତ ହୋଇଥାଏ ।

ଲୋକରତ୍ନଙ୍କ 'ଓଡ଼ିଆ ଲୋକଗୀତ ଓ କାହାଣୀର ଗଦ୍ୟ ଶୈଳୀ ସବୁଠାରୁ ବେଶୀ ସ୍ୱାଦ୍ୟ । କାରଣ ସେଥିରେ ଗଦ୍ୟକାରଙ୍କ ନିଜସ୍ୱ ନିମଜ୍ଜମାନତା ରହିଛି । ଲେଖକଙ୍କ ଏହି ଆନ୍ତରିକତା ତାଙ୍କର ଯେ କୌଣସି ଲେଖାକୁ ଅଧିକମାର୍ମିକ କରିଥାଏ । ଆଲୋଚିତ 'ଓଡ଼ିଆ ଲୋକଗୀତ ଓ କାହାଣୀ' ଡଃ ଦାଶଙ୍କ ଗବେଷଣାତ୍ମକ ପୁସ୍ତକ ହୋଇଥିଲେ ହେଁ ତାର ଗଦ୍ୟ ରଚନା ଶୈଳୀ ଯେ କୌଣସି ସୃଷ୍ଟିଧର୍ମୀ ରଚନାର ଗୁଣ ଗ୍ରହଣ କରିଛି । 'ଲୋକଗୀତ ଓ କାହାଣୀ'ର ବିଭାଜନ ଓ ତାର ବର୍ଗୀକରଣ ଓ ସେ ସବୁର ସଜ୍ଞା ଓ ପରିସର ନିର୍ଣ୍ଣୟ କରିବାରେ ସେ ଯେଉଁ ଭାଷା ବ୍ୟବହାର କରିଛନ୍ତି; ତାହା ଯେପରି ସାଧାରଣ ଲୋକ ଭାଷାର ମହତ୍ତ୍ୱ ଗ୍ରହଣ କରିଛି, ସେହିପରି ତାହା ବିଷୟ ଉପଯୋଗୀ ହୋଇଛି ମଧ୍ୟ । ଏଠାରେ 'ବଉଲା ଗାଈ ଗୀତ' ଶୀର୍ଷକରୁ କେତେଧାଡ଼ି ଗଦ୍ୟକୁ ଉଦ୍ଧାର କରାଯାଇ ତାର ଶବ୍ଦ ଯୋଜନା ଓ ବାକ୍ୟ ଗଠନ ପ୍ରଣାଳୀକୁ ଉଲ୍ଲିଖିତ ଦୃଷ୍ଟିରୁ ପରୀକ୍ଷା କରାଯାଇପାରେ । 'କାଞ୍ଚି ଦେଶରେ ଧନେଶ୍ୱର ବୋଲି ଜଣେ ବ୍ରାହ୍ମଣ ଥିଲା । ତାର ଗାଈ ନା' ବଉଳା । ବନା ରଖୁଆଳରେ ସେ ପ୍ରତିଦିନ ବନକୁ ଯାଇ ଚରିବୁଲି ଆସେ । ଦିନେ ଘରକୁ ବାହୁଡ଼ିଲା ବେଳେ ବଉଳା ବାଘ ହାବୁଡରେ ପଡିଲା । ବାଘ କହିଲା ମୁଁ ସାତଦିନ ହେଲା କିଛି ଖାଇ ନାହିଁ । ଏବେ ତୋ ଇଷ୍ଟ ସୁମରଣାକର । ବଉଳା କହିଲା ଘରେ ମୋର ତିନ ଦିନର ଗୋଟିଏ ବାଛୁରି ବସା ଅଛି, ତାକୁ ଦୁଧ ଦେଇ ଦେଇ ଆସିଲା ପରେ ମୋତେ ଖାଇବୁ । ବାଘ କହିଲା ତତେ କିପରି ବିଶ୍ୱାସ କରିବି ? ବଉଳା କହିଲା—ସତ୍ୟରେ ପୃଥିବୀ ଆଶ୍ରୟ ହୋଇଛି । ସତ୍ୟରେ ସମୁଦ୍ର କୂଳ ଲଂଘନ କରୁନାହିଁ । ସତ୍ୟରେ ସୂର୍ଯ୍ୟ ଚନ୍ଦ୍ର ଉଦୟାସ୍ତ ହେଉଛନ୍ତି । ମୁଁ ନିଶ୍ଚୟ ସତ୍ୟ ରକ୍ଷା କରିବି । ବାଘ ବିଶ୍ୱାସରେ ଛାଡ଼ିଦେଲା । ବଉଳା ଯାଇ ବାଛୁରୀକୁ କହିଲା, ଅରେ ବାପ, ଏଣିକି ମୋ ଆଶା ଛାଡ଼ । ମୁଁ ଏମିତି ଏମିତି ବାଘକୁ ସତ୍ୟ କରି ଆସିଛି । ତୁ ଏଣିକି ମାଉସୀ ପିଉସୀ ସଙ୍ଗରେ ଚରିବୁଲି ଯିବୁ । ମନ ବୋଧ କରି ଦୁଧ ଦେଇ ପ୍ରତିଶ୍ରୁତି ରକ୍ଷା କରି ବଉଳା ବନକୁ ଫେରି ଆସିଲା । ଅବୋଧ ବାଛୁରି ତା

ପଛେ ପଛେ ଗୋଡ଼ାଇଲା । ବଉଳାର ସତ୍ୟ ରକ୍ଷାରେ ଭଗବାନଙ୍କ ଆସନ ଟଳମଳ ହେଲା । ସେ ବାଘର କଂଠରେ ବସି କହିଲେ—ଟଉଳା ଘରକୁ ବାହୁଡ଼ି ଯାଆ । ତତେ ମାରିଲେ ଦୁଇଟି ପାପ ହେବ । ତା'ପରେ ସତ୍ୟର ଦୂତଙ୍କ ବଉଳା କଳା ଧଳା ଲଟ ପ୍ରହାରିତ କଳଷଣି ତାକୁ ଅନୁସ୍ଥ କରି ଯୋଗ୍ୟ ସ୍ୱର୍ଗ ପୁରକୁ ଗଲା । ଉକ୍ତ ଉଦ୍ଧୃତାଂଶଟିରେ ବାକ୍ୟ ଗଠନ ପ୍ରଣାଳୀ ଓ ଶବ୍ଦ ଯୋଜନାକୁ ଲକ୍ଷ୍ୟ କଲେ ସେ କିପରି ଶବ୍ଦଗୁଡ଼ିକୁ ଗଳ୍ପଟିର ଅବିକଳ ଭାବର ଅଭିବ୍ୟକ୍ତି ପାଇଁ ପ୍ରୟୋଗ କରିଛନ୍ତି; ତାହା ଜଣା ପଡ଼ିବ । ବାଘ ବଉଳାର ଉକ୍ତ ପ୍ରସଙ୍ଗର ଶବ୍ଦ ପ୍ରୟୁକ୍ତି ମଧ୍ୟ ବେଶ ଜୀବନ୍ତ ହୋଇଛି । କେଳକରେ ଯେଉଁ ବିଶ୍ୱାସ ଯେଉଁ ସ୍ଥଳ ପର୍ଷ୍ଠିତ ହୋଇଛି; ତାକୁ ଲେଖିବାର ଆଂତରିକତାରୁ ତାଙ୍କ ଗଦ୍ୟ ଭାଷା ଏପରି ଗୁରୁ ଲଘୁ ହୋଇଛି । ଏହି ଭାଷା କିନ୍ତୁ ପ୍ରକୃତ ଚିତ୍ର ଆଙ୍କିବାରେ ବେଶ୍ ସମର୍ଥ ଭାଷା ! ଡ଼ଃ ଦାଶ ଏହିପରି ଅଜସ୍ର ଲୋକଗୀତ ଓ କାହାଣୀକୁ ବିଶ୍ଳେଷଣ କରିବା ପରିପ୍ରେକ୍ଷୀରେ ଗୀତ ଓ ଗପଗୁଡ଼ିକର ମୌଳିକତା ରକ୍ଷା କରିବା ପାଇଁ ଲୋକ ମୁଖରେ ପ୍ରଚଳିତ ଢଗ ଢମାଳୀ ବିଭିନ୍ନ ପ୍ରକାରର ପ୍ରବାଦ ପ୍ରବଚନକୁ ବ୍ୟବହାର କରିଛନ୍ତି । ଓଡ଼ିଶାର ବିଭିନ୍ନ ସ୍ଥାନରେ କେତେକ ଲୋକ କଥା ଅଛି ଯାହାକୁ ସେ ନିର୍ଦ୍ଦିଷ୍ଟ ଭାବେ ଉଲ୍ଲିଖିତ କାରଣରୁ ତାଙ୍କ ଶୈଳୀରେ ସଂଯୋଜନା କରିଛନ୍ତି । ଗାଉଁଲି ପୀଠକ ଭାଷା ଶୈଳୀ ଓ ସୌନ୍ଦର୍ଯ୍ୟ ସାମଗ୍ରିକ ଭାବେ ତାଙ୍କ ଶୈଳୀର ଏକ ଅବିଭାଜ୍ୟ ଅଂଶ । ଏହି ପ୍ରବାଦ ପ୍ରବଚନ ଗୁଡ଼ିକ ଯେତିକି ଅର୍ଥ ପ୍ରକାଶ କରେ ତାହାଠାରୁ ଅଧିକ ଭାବର ସୂଚନା ଦେଇଥାଏ । ଏତଦ୍‌ଭିନ୍ନ ତାଙ୍କ ଆଲୋଚନାରେ ସ୍ଥାନେ ସ୍ଥାନେ କେତେକ ଆଂଚଳିକ ଭାଷାର ପ୍ରୟୋଗ ମଧ୍ୟ ଦେଖିବାକୁ ମିଳେ । ବିଶ୍ୱବିଦ୍ୟାଳୟର ସାହିତ୍ୟ ବିଭାଗର ପ୍ରଫେସର ହୋଇଥିଲେ ହେଁ ଜଣେ ଲେଖକ ଓ ସାହିତ୍ୟିକଭାବେ ସେ କିନ୍ତୁ ଅନଭିଜାତ ଲୋକଭାଷା ପ୍ରତି ଅଧିକ ଆକୃଷ୍ଟ ହୋଇଛନ୍ତି । ଇଂରେଜ ଔପନ୍ୟାସିକ ଥମାସ୍ ହାର୍ଡ଼ି ତାଙ୍କର ଅଧିକାଂଶ ଉପନ୍ୟାସରେ 'ଲଭ୍‌ର ପୋଲ ଓ ମେଂଚେଷ୍ଟର'ର ନିମ୍ନ ସମାଜର ଲୋକ କଥିତ ଭାଷାକୁ ଯେପରି ଲେଖିଛନ୍ତି ସେହିପରି ଡ଼ଃ ଦାଶ ଓଡ଼ିଶାର ସାଧାରଣ ଜନଗଣରେ ଭାବ ଓ ବାଞ୍ଛନାକୁ ସରସ ପଦ ଭିତରେ ଲେଖିଛନ୍ତି । ଯାହେ ଇଂଲଣ୍ଡର ଅଭିଜାତ ଲର୍ଡ଼ମାନେ ଯାହାକୁ ଅସଂସ୍କୃତ (vulgar Latin) ବୋଲି କହନ୍ତି । ଗଦ୍ୟ ଲେଖକ ଡ଼ଃ ଦାଶ ଜାପୃମନବାକ୍ୟରେ ଯେପରି ଉତ୍କଳୀୟ ଥିଲେ ସେହିପରି ଗାଉଁଲି ମଧ୍ୟ । କଟକରେ ଘରକରି ରହିଥିଲେ ହେଁ ଫୁଲକୁଣ୍ଡରେ ବଳାତ ଫୁଲ ଫୁଟିଲେ ସେ ଯେତେ ଅନନ୍ଦିତ ନହୁଅନ୍ତି ସେତେବେଶୀ ଆନନ୍ଦିତ ହୁଅନ୍ତି ସଜବେ ଗାଆଁରେ ଜହ୍ନି ଫୁଲ ଫୁଟିଥିବାର ସରସ ମୃତରେ ; ଉଭୟ ଗଦ୍ୟ ପଦ୍ୟରେ ଯେଉଁଠି ଯାହା ସେ ଲେଖିଛନ୍ତି ସବୁଠୁ ଏକ ସୁସ୍ପଷ୍ଟ ପଲ୍ଲୀ ପ୍ରାଣତା ବାରି ହୋଇ ପଡ଼ୁଛି । ସତେ ଯେପରି ମନେ ହୁଏ ଗାଁ ଲୋକର ~~ସେ~~ ଗାଁ ଉଲି କଥା ଶୁଣିଲେ ତାଙ୍କର ସମୁଦାୟ ଚେତନା ଯେପରି ଆମୋଦିତ ହୋଇ ଯାଉଛି । ଗଦ୍ୟରେ ଯେପରି ପଦ୍ୟରେ ମଧ୍ୟ ସେହିପରି ତାଙ୍କର ସେହି ପଲ୍ଲୀପ୍ରାଣତାର ଉଚ୍ଛଳ ଅଭିବ୍ୟକ୍ତି ଘଟିଛି । ଲୋକ ଜୀବନକୁ ଓ ଲୋକ ଚରିତ୍ରକୁ କବି ପ୍ରାଣ ଦେଇ ଏକାନ୍ତ ସମ୍ବେଦନଶୀଳତା ଭିତରେ-ନାନା ଭାବରେ ଦେଖି ଦେଖାଇ ଦେବାର ଜିଜ୍ଞାସାର ପ୍ରବଣତା ତାଙ୍କ ଗଦ୍ୟକୁ ଅଧିକ ପ୍ରାଣପୂର୍ଣ୍ଣ କରିଛି । ତାଙ୍କ ଓଡ଼ିଆ ଲୋକଗୀତ

ଓ କାହାଣୀ' ପୁସ୍ତକରେ ବସ୍ତୁତଃ ସମସ୍ତ ସତ୍ୟ ଓ ତଥ୍ୟ 'ଏକାନ୍ତ ଚନ୍ଦାତ୍ମକ ଅଭିବ୍ୟକ୍ତି ଲାଭ କରିଛି । ପଲ୍ଲୀର ସୁଖ ଦୁଃଖ ଆଣ୍ଠି ଅନ୍ତୁର ଜୀବନାଲେଖ୍ୟ ଗୋଟି ଗୋଟି ହୋଇ ସତେ ଅବା ଏ ପୁସ୍ତକରେ ଚିତ୍ରିତ ହୋଇଛି ।

ସେ ତେଣୁ ଲେଖିଛନ୍ତି—'ଲୋକଗୀତ ସନ୍ନ୍ୟାସୀର ନୁହେଁ, ସଂସାରୀର ଗୀତ । ସନ୍ନ୍ୟାସ ନୁହେଁ, ଗୃହସ୍ଥାଶ୍ରମ ହିଁ ଲୋକର ଆଦର୍ଶ । ଗୃହ ସଂସାରର ଦଗ୍‌ଦଳୟ ଅତିକ୍ରମ କରି ତା ଚିନ୍ତା କ୍ୱଚିତ୍ ଅଗ୍ରସର ହୁଏ । ବିଷୟ ଚିନ୍ତାରେ ଆଧ୍ୟାତ୍ମିକତା ସାମୟିକ ଦୃଷ୍ଟି କ୍ଷେପମାତ୍ର; ତା ପୁଣି ଜୀବନର ଶେଷ ପର୍ଯ୍ୟାୟରେ । ବାସ୍ତବତା ଲୋକଗୀତର ଭିତ୍ତି, ତାର ବାତାବରଣ ତହିଁରେ ଗଢ଼ା ତା'ର ସ୍ୱର ତହିଁରେ ଢଳା । ଏହା ସଚେତନ ଭାବରେ ବିଷୟଭୁକ୍ତ ହୋଇନାହିଁ । ପ୍ରାକୃତିକ ଭାବରେ ବିଷୟୀଭୂତ ହୋଇଅଛି । ଲୋକକବି ବାସ୍ତବତାର ପୂଜାହାରୀ ନୁହନ୍ତି, ପ୍ରତୀକ ବିଦଗ୍ଧ କବିର ସଚେତନ ପ୍ରୟାସ ଯେଉଁଠି ପରାଭବମାନେ, ସେଠି ଲୋକ କବିର ଅନାୟାସ ବିଜୟଯାତ୍ରା ।'

ଏ ଭାବ ଓ ଭାଷା ଓ ବ୍ୟଞ୍ଜନା କବିଜୀବନରେ ନିଶ୍ଚୟ ଏକ ଅଭିଭୂତ କବି ପ୍ରାଣର ଅଧିକାରୀ ନ ହେଲେ ଏତେ ଉଚ୍ଛଳ ସ୍ନିଗ୍ଧ ଭାଷା, ଏତେ ଚମତ୍କାର ପଲ୍ଲୀ ଚିତ୍ରର ବର୍ଣ୍ଣନା ଫୁଟିବ ନାହିଁ । ପଲ୍ଲୀ ଜୀବନର ସମସ୍ତ ବାସ୍ତବତା ( realistic sketch ) ଭିତରେ ସ୍ୱୈରବାଦୀ ଅନର୍ଗଳତା ( romantic verbosity ) ର ଭାବ ଓ ଭାଷା ତାଙ୍କ ଗଦ୍ୟ ରଚନାକୁ ଅଧିକ କାବ୍ୟିକ କରିଛି । ମାନବ କୈନ୍ଦ୍ରିକ ( anthropocentric ) ସକଳ ସୁଖ ଦୁଃଖର ବର୍ଣ୍ଣନା ତାଙ୍କ ଗଦ୍ୟକୁ ପୁଣି ଅତି ଆପଣାର କରିଛି । ପାଠକ ନିଜଠାରୁ ଦୂରେଇ ଯାଇ ଲୋକରନ୍ଧ୍ରଙ୍କ ଗଦ୍ୟରେ ଭିନ୍ନଭାବ ପରିଧିର ପ୍ରତିଜ୍ଞା ସେ ପଢେନାହିଁ । ତାଙ୍କ ଗଦ୍ୟରେ ସଂଯୋଜିତ ଶବ୍ଦଗୁଡ଼ିକ ଏକ ବିଶେଷ ଧ୍ୱନି ଅନୁକୃତ ସ୍ୱର ଯୋଜନା ( articulation ) ଉପରେ ପର୍ଯ୍ୟବସିତ । 'ପଡ଼ିଆର ଗୁଗୁଚିଆ, ପୋଖରୀ ହୁଡାର ଭେଳି ବାଇଗଣ କଣ୍ଟା, ହିଡ଼ର ଅଣଖୁଆ ବା କୋଇଲଖା, ପିଡାର ପୋଇଗଛ, ବୁଢୁବୁଢୁକିଆ ଜଙ୍ଗଲର ଭଇଁଷ ବା ଶଗଡ ବାଟୁଆ କୋଳି, ଅରମା ଢ଼ିହର ମଟମଟା ବା କୁଆମଇତା, ନଣ୍ଡା ଗରଗଛର ଗ୍ରୁଇ, ବାଉଁଶ ପନ୍ଦର ବେଣୀ, ତୋଟାର ବଙ୍କା ଆମ୍ବ ଡ଼ାହି, ନୂଆ ପୋଖରୀର ପାଣି, ଖଇଞ୍ଚି ପେଟର ମୀନ, ନଈର କେଞ୍ଚୁଆ ଗୀତ, ବାଡ଼ିର କଳାହାଣ୍ଡିଆ ତାଳ, ପୋଖରୀ ତୁଠର ଦୂବ ପାଚେରୀ ଉପରେ ଝରୀ, ଆମ୍ବଗଛର ଚକାସିଅ, କଅଁଳ କାକୁଡ଼ିର ବହଳ ଗ୍ୱେପା, ଲଙ୍କାମରିଚର କଣ୍ଡି, ବୁନ୍ଦ ବୁନ୍ଦ ପିତା ସାଗ, ନଡ଼ିଆର ଦୁଇ ଆଖି, ଓଳତଳେ କୁଆର ରାଉ ରାଉ, ଦେଉଳ ଉପର ହଂସ, ଆଖୁବାଡ଼ିର ଖଡ ଖଡ ପ୍ରଭୃତି ମହାକାବ୍ୟରେ ଅପାଂକ୍ତେୟ । ଏହି ଶବ୍ଦ ଯୁଗ୍ମ ସବୁ ପାଠକର କାନରେ ବାଜିଲେ ପାଠକ ତା ପରିଚିତ ଜୀବନବୋଧର ଉଷ୍ମତା ଅନୁଭବ କରେ ଜ୍ଞାନ ବିଜ୍ଞାନର ପ୍ରକାଣ୍ଡ ପ୍ରକାଣ୍ଡ ଗଦ୍ୟ ଗ୍ରନ୍ଥ ପଢିଲେ ପାଠକ୍ କୁ ସେହି

ଉତ୍କୃଷ୍ଟତା ଅନୁଭବ କରିପାରେ ନାହିଁ । ଏହି ଶବ୍ଦଗୁଡ଼ିକ ଯେତେ ଧ୍ୱନିଗର୍ଭିତ ନୁହେଁ; ସେତେବେଶୀ କାବ୍ୟିକ ଓ ଅଧିକ ଅର୍ଥ ଗର୍ଭି । ସେ ଚେଷ୍ଟା କରି ସଯୋଜିତ ଶବ୍ଦଗୁଡ଼ିକ ଋବାଡ଼ମ୍ବର ( poinpcus ) କରିନାହାନ୍ତି । ଶବ୍ଦଗୁଡ଼ିକ ଭାବ ଓ ବ୍ୟଞ୍ଜନା ଅନୁସାରେ ସ୍ୱତଃ ସତେ ଯେପରି ସଯୋଜିତ ହୋଇ ଗଲାପରି ମନେ ହେଉଛି । ଭାବ ପ୍ରବାହରେ ଶବ୍ଦଗୁଡ଼ିକ ସ୍ୱତଃ ବାଛି ହୋଇ ପଡ଼େ । ବିଶିଷ୍ଟ ଇଂରାଜୀ ସମାଲୋଚକ Herbert Read ଯଥାର୍ଥରେ ସେ ପାଇଁ କହିଛନ୍ତି—'A good writer does not select his words by virtue of any pedantic learning to this or that theory of their origin and proper use, but within the limits of accepted meaning is solely governed by the due measure of expressiveness implied in the syllables of an particular word.' କାରଣ 'rhythm' ହୁଏତ ଗୋଟିଏ ବାକ୍ୟକୁ high sounding କରିବ । ହୁଏତ ଅର୍ଥ ଗର୍ଭି କରି ନ ପାରେ ।

ପରିଶେଷରେ ଡଃ କୁଞ୍ଜବିହାରୀ ଦାଶଙ୍କ ଗଦ୍ୟ ରଚନା ଶୈଳୀ ଉପରେ ଏତିକି କୁହାଯାଇ ପାରେ ଯେ ଭାବ ପ୍ରକାଶର ପ୍ରାଞ୍ଜଳତା ( Lucidity ) ବସ୍ତୁତଃ ତାଙ୍କ ଗଦ୍ୟକୁ ସରଳଭାବପୂର୍ଣ୍ଣ କରିଛି । ଅଭିଯାତ ନଗରୀ ଜୀବନରୁ ସେ ତାଙ୍କ ଗଦ୍ୟ ପାଇଁ ଭାବ ଓ ଭାଷା ସଂଗ୍ରହ ନ କରି ଲୋକ ଜୀବନରୁ ହିଁ ସଂଗ୍ରହ କରିଛନ୍ତି । ଯେଉଁଥିପାଇଁ ତାଙ୍କ ଗଦ୍ୟ ରଚନା ଶୈଳୀର ଭାବ ସ୍ନିଗ୍ଧତା ( elevation ) ଅଧିକ ଓ ଯାହା ପାଠକର ରସ ଚେତନାକୁ ଅଧିକ ଆର୍ଦ୍ର କରେ । 'ଦୂରର ଧୂସର ରହସ୍ୟଭେଦ' କରିବାର ପ୍ରବୃତ୍ତି ଅପେକ୍ଷା ଆଖି ପାଖର କଳା କୌତୁକ ଦେଖି ଦେଖାଇବାରେ ସେ ଅଧିକ ମନୋନିବେଶ କରିଛନ୍ତି; ଯାହା ତାଙ୍କ ଶୈଳୀର ଏକ ବିଶେଷ ଗୁଣ ଓ ଯାହା ଲୋକଭାଷା ଶକ୍ତି ଓ ସୌନ୍ଦର୍ଯ୍ୟଲାଭ କରିଛି ।

* ଅଧ୍ୟାପକ ଉପାଧ୍ୟାୟ, ଓଡ଼ିଆ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଜ୍ୟୋତିବିହାର



# ।। କୁଞ୍ଜବିହାରୀ ଗଳ୍ପ-ଜଗତ : ଏକ ମାର୍ମିକ ଆଲୋଚନା ।।

**ବୈଷ୍ଣବ ଚରଣ ସାମଲ**

କୁଞ୍ଜବିହାରୀ କବି । ମୂଳତଃ ସେ ଜଣେ ସୌନ୍ଦର୍ଯ୍ୟବାଦୀ କବି । ସୌନ୍ଦର୍ଯ୍ୟ ଅନୁଶୀଳନ କରୁ କରୁ ମାନବ ବନ୍ଦନା କରିଅଛନ୍ତି । ସୌନ୍ଦର୍ଯ୍ୟବୋଧ ଓ ମାନବ ବନ୍ଦନା ତାଙ୍କ କବି-ମାନସର ସର୍ବଶ୍ରେଷ୍ଠ ଅନ୍ତର୍ଧ୍ୱନି । ମାନବ ବନ୍ଦନା ପ୍ରଚାରର ଇସ୍ତାହାର ନୁହେଁ; କଳାତ୍ମକ ସମ୍ବେଦନାର ସ୍ୱାଭାବିକ ଅଭିବ୍ୟକ୍ତି । ମାନବ ବନ୍ଦନା ଭିତରେ ସେ ଖୋଜିଛନ୍ତି ଗାଥା-ରୂପ । ଗୀତି-ରୂପ ଯେ ନାହିଁ, ନୁହେଁ । ଗାଥା-ରୂପ ମଧ୍ୟରେ କାହାଣୀ-ସର୍ଜନା-କଳା ଯେ ତଲ୍ଲୀନ ଥିଲା—ଏ କଥାକୁ ଅସ୍ୱୀକାର କରିହୁଏ ନାହିଁ । ଏହି କାରଣରୁ କବି କୁଞ୍ଜବିହାରୀ ଓଡ଼ିଶାର ପୁରପଲ୍ଲୀ ବୁଲି ବୁଲି ସଂଗ୍ରହ କରିଛନ୍ତି ଲୋକ-କାହାଣୀ । କେତେ ଲୋକଙ୍କୁ ସେ ଭେଟିଛନ୍ତି, କେତେ ନରନାରୀଙ୍କ ସହିତ ହୃଦୟଖୋଲା ଆଳାପ ଆଲୋଚନା କରି ଅଛନ୍ତି, ସେମାନଙ୍କୁ ଜାଣିଛନ୍ତି, ଚିହ୍ନିଛନ୍ତି, ନିଜର ଅନ୍ତଃରୂପକୁ ସେମାନଙ୍କ ସହିତ ମିଶେଇଛନ୍ତି, ସେଇମାନଙ୍କଠାରୁ ଯୁଗ ଯୁଗର କାହାଣୀକୁ ଶୁଣିଛନ୍ତି ଏବଂ ତାକୁ ସେଇମାନଙ୍କ ଭାଷାରେ ସଜେଇ କରି ଥୋଇ ଦେଇଛନ୍ତି । ଏହି ଲୋକ-କାହାଣୀ-ସଙ୍କଳନରେ ଅଛି ତାଙ୍କର ଲୋକ-ମନ, ଲୋକ-ହୃଦୟ, ଲୋକ-ରୁଚି । ଏଠି ବୋଧ ଅଛି; ପ୍ରଜ୍ଞା ନାହିଁ । ବେଦନା ଅଛି; ପ୍ରତାରଣା ନାହିଁ । ଅନୁଶୀଳନ ଅଛି, ଅନୁସନ୍ଧାନ ଅଛି, ଆଲୋଡନ ଅଛି; ଆତ୍ମପ୍ରଚାର ନାହିଁ । ଏହି ଲୋକ-କାହାଣୀ-ସଂଗ୍ରହ ଓ ସଂକଳନ ହିଁ କବି କୁଞ୍ଜବିହାରୀଙ୍କୁ କରିଛି ଗାଳ୍ପିକ ଆଉ ଔପନ୍ୟାସିକ । ତାଙ୍କ ଗଳ୍ପ ଆଉ ଉପନ୍ୟାସର ପ୍ରେରଣା ତେଣୁ ଲୋକ-ଜୀବନ, ଲୋକ-ସଂସ୍କୃତି, ଲୋକ-ମାନସ, ଲୋକ-ରୁଚି । ଯେଉଁ ଶୈଳୀ ଓ ଭାଷାକୁ ସେ ଲୋକକାହାଣୀ ସଂକଳନରେ ପରୀକ୍ଷା କରିଛନ୍ତି ତାକୁ ହିଁ ସେ ଗଳ୍ପ ଓ ଉପନ୍ୟାସରେ ମଧ୍ୟ ପରୀକ୍ଷା କରିଅଛନ୍ତି । ତାଙ୍କ ଗଳ୍ପ ଓ ଉପନ୍ୟାସରେ ତେଣୁ କାହାଣୀ ମୁଖ୍ୟ । ଗୋଟିଏ ସହଜ କାହାଣୀମଧ୍ୟ ଦେଇ ତାଙ୍କର ଗଳ୍ପ-ଜଗତ ଗତିଶୀଳ । ଏହି ଜଗତ ସ୍ଥିର ନୁହେଁ; ଅସ୍ଥିର ଯୁଗ ପ୍ରକୃତିର ଲଳିତ ପ୍ରବାହ । ଗାଳ୍ପିକ କୁଞ୍ଜବିହାରୀଙ୍କ ଗଳ୍ପ-ଜଗତରେ ତେଣୁ ଅଛି କବି କୁଞ୍ଜବିହାରୀଙ୍କ କବି-ହୃଦୟର ପରିଚୟ, କବି-ହୃଦୟର ସମ୍ବେଦନା । ଏଠି ଗଳ୍ପର ଧାରା ଜଟିଳ ନୁହେଁ; ସରଳ । ତଥାପି ସାରଲ୍ୟ ଭିତରେ ଅଛି ଜୀବନ-ଚର୍ଯ୍ୟାର ଅନ୍ତର୍ଧ୍ୱନି, ଜୀବନ-ଜିଜ୍ଞାସାର ଭାବ-ରୂପ, ସମ୍ବେଦନଶୀଳ ମାନବିକ

ମନନଶୀଳତାର ପରିଚୟ । ଏହି ଜଗତରେ ସ୍ରଷ୍ଟା-ପୁରୁଷ ଆର୍ଜୁମା ଅସହାୟତାରେ କାତର ନୁହେଁ; ତେଜିଷ ଦୃଷ୍ଟିରେ ନୂତନ ଆଶାବାଦରେ ଗତିଶୀଳ ।

ଗାଳ୍ପିକ କୁଞ୍ଜବିହାରୀ ନିୟମିତ ଗଳ୍ପ ଲେଖକ ନୁହନ୍ତି । ବରଂ ସେ ନିୟମିତ କଥକ । ଏଇ ରସସ୍ନିଗ୍ଧ କଥନ ଭଙ୍ଗୀ ତାଙ୍କୁ ଗଳ୍ପ ଲେଖିବାକୁ ଦେଇଛି ପ୍ରେରଣା । ଗଳ୍ପର ପ୍ରେରଣା ଆସିଛି ଆପେ ଆପେ । କାହାରିଠାରୁ ସେ ଏ ପ୍ରେରଣା ପାଇ ନାହାନ୍ତି । ବରଂ ସେ କହନ୍ତି—"ଚଢେଇ ତ ଆପେ ଆପେ ଆସି ମୋ ପାପୁଲିରେ ବସିଲା, ଗୁତ ଧସାଇ ମନ ଭିତରେ ପଶିଲା, ମୁଁ କଣ କରିବି ? ତାପରେ ମୁଁ ତାକୁ ପାଳିଲେ ପୋଷିଲେ, ନାଁ—ଡାକ୍ କଲେ କାହାର କଣ ଗଲା ?" । ୧ । କାହାରି ନିନ୍ଦା ପ୍ରଶଂସାକୁ ଚିନ୍ତା ନ କରି କୁଞ୍ଜବିହାରୀ ଗଳ୍ପ ଲେଖିଛନ୍ତି । ଜୀବନର ଚଲାପଥରେ ସେ ଲାଭ କରିଛନ୍ତି କେତେ ଅନୁଭୂତି । ସେହି ଅନୁଭୂତିକୁ କବିତା ବା ପ୍ରବନ୍ଧରେ ରୂପ ଦେବାକୁ ଯାଉ ଯାଉ ଗଳ୍ପ ହୋଇଯାଇଛି । କାରଣ ସ୍ରଷ୍ଟା ସୃଷ୍ଟିର ଅଧୀନ । ସୃଷ୍ଟି କେବେହେଲେ ସ୍ରଷ୍ଟାର ଅଧୀନ ନୁହେଁ । ସ୍ରଷ୍ଟା ସୃଷ୍ଟି କରେ କିନ୍ତୁ ସୃଷ୍ଟି କରୁ କରୁ ତାହା କବିତା ହୁଏ କି ଗଳ୍ପ ହୁଏ, ଭଲ ହୁଏ କି ମନ୍ଦ ହୁଏ—ତାହା ଆଉ ତାର ଅଧୀନ ହୋଇ ରହେ ନାହିଁ । ଏଥିପାଇଁ ବୋଧହୁଏ କୁଞ୍ଜବିହାରୀ 'ଗପର ଗପ'ରେ କହିଛନ୍ତି—"କେତେବେଳେ କାହାର ପ୍ରାଣ ଚପୁଡ଼ା, ରସ ନିଗିଡ଼ା ହସ ଆଖିରେ ଲୁଖିଛି, କଲିଜାକଣ୍ଟା, ଗୁତଫଣ୍ଟା ଲୁହ ବା ମୋ ଆଖିରେ ଲୁହ ହୋଇ ଯାଇଚ । ଜାଣି ଶୁଣି ତ କିଛି କରିନାହିଁ । ସେ ଯଦି କବିତା ବା ପ୍ରବନ୍ଧ ନ ହୋଇ ଗପ ହୋଇଗଲା ମୁଁ କଣ କରିବି ? କବି କୁଞ୍ଜବିହାରୀ ଯେଉଁ ଅମୂଲ ଅନୁଭୂତି ଲାଭ କରିଥିଲେ ତାକୁ ରୂପ ଦେଲାବେଳେ ତାହା ଗଳ୍ପ ହୋଇ ଯାଇଛି । ଏହି ସବୁ ଗପ ଜୀବନବାଦୀ ଗପ । ଏହି ଅନୁଭୂତି ଏକାନ୍ତ ନିଜସ୍ୱ । ଏହା ସ୍ୱଚ୍ଛ ଆଉ ସୁନ୍ଦର । ଏଥିରେ ନାହିଁ ଧାରକରା ଅନୁଭୂତି । ଅଥବା ବୁଦ୍ଧିର ଅହଂକାର ନାହିଁ । ଏହା ସମ୍ପୂର୍ଣ୍ଣଭାବେ ଗାଳ୍ପିକଙ୍କ ନିଜସ୍ୱ ଶୈଳୀ ଓ ଅନୁଭୂତିର ସ୍ୱଚ୍ଛନ୍ଦ ଅଭିବ୍ୟକ୍ତି । ଏ ସମ୍ପର୍କରେ 'ଗପର ଗପ'ରେ ଅଛି—"କାରଣ ଯୋଉ ଡେଣାରେ ଉଡ଼ିବାକୁ ସାହସ କରିଚ, ସେ ମୋ ନିଜର । ସୁନ୍ଦର ଦିଶିବ ବୋଲି ସେଥିରେ ମୟୂରପୁଚ୍ଛ ମୁଁ ଖଞ୍ଜି ନାହିଁ । ଆଗେ ଜୀବନ, ପରେ ଗପ – ଏସବୁ ଜୀବନ ଗପ । ଏଥିରେ ମେଦ ନାହିଁ, କଳ୍ପନାର କ୍ଲେଦ ନାହିଁ, କିଛିହେଲେ ଆଡ଼ପଡା ଗୁତଫୁଲା ବଡପଣ ନାହିଁ । ଏ ଖୋଦ୍ ଜୀବନ—ବା ସ୍ୱୟଂ ଖୋଦା ।" ଯେଉଁ ଜୀବନକୁ ସେ ଅଙ୍ଗେ ନିଭେଇଛନ୍ତି, ଯେଉଁ ଜୀବନ ସମ୍ପର୍କରେ ଆସିଛନ୍ତି ସେହି ଜୀବନର ଗପ ଲେଖିଛନ୍ତି । ତେଣୁ ଏଥିରେ କ୍ଲୃପ୍ତତା ନାହିଁ, ଜଟିଳତା ନାହିଁ; ଅଛି ପ୍ରାଣର ସ୍ୱତଃସ୍ଫୂର୍ତ୍ତି ଅଭିବ୍ୟକ୍ତି । ଏଥିରେ ମନନଶୀଳତା ଅପେକ୍ଷା ସମ୍ବେଦନଶୀଳତା ଅଧିକ ଅଛି । ଧୂସର-ମଳିନ-ବିଷାଦଗ୍ରସ୍ତ ପୃଥିବୀରେ ସେ ଶୁଣିଛନ୍ତି ବଞ୍ଚିବାର

୧ । ହସ କାନ୍ଦର ଗପ—'ଗପର ଗପ'—କୁଞ୍ଜବିହାରୀ ଦାଶ

ସ୍ୱରଲିପି । କବିତା ସମ୍ପର୍କରେ ତାଙ୍କର ଅଭିମତକୁ ଗଳ୍ପ ପାଇଁ ମଧ୍ୟ ସ୍ୱୀକାର କରାଯାଇ ପାରେ । "ବିଜ୍ଞତାର କୋଳରେ ଭାବାବେଗକୁ କେବେ ଖର୍ବ କରିନାହିଁ କିମ୍ବା ନିକଟତମ ଅନୁଭୂତ ଯେତେ କ୍ଷୁଦ୍ର ହେଉ ପଛେ ତାକୁ ଗୁରୁ ବିଶ୍ୱଜନୀନ ସ୍ରୋତ ସମ୍ଭାରରେ ଭସିଯାଇ ନାହିଁ । ହୃଦୟକୁ ମନ ଅପେକ୍ଷା ବଡ଼ କରି ଦେଖି ଆସିଛି । ସମ୍ବେଦନା ମନନ ଅପେକ୍ଷା ମୋ ଲେଖାରେ ଉଚ୍ଚତର ସ୍ଥାନ ଅଧିକାର କରିଅଛି ।" । ୨ ।

କୁଞ୍ଜବିହାରୀ ଆଧୁନିକ ଯୁଗର କବି ଓ ଗାଳ୍ପିକ । ସେ କିନ୍ତୁ ଆଧୁନିକ ହେବାକୁ ଚେଷ୍ଟା କରି ନାହାନ୍ତି । ପ୍ରାଚୀନ ନିକଟରେ ମଧ୍ୟ ଅସହାୟ ଆତ୍ମସମର୍ପଣ କରିନାହାନ୍ତି । ସେ ନୂତନତାର ପକ୍ଷପାତୀ; ନୂତନ ମୋହର ନୁହେଁ । ପ୍ରଗତିର ସମର୍ଥକ; ଯଥେଚ୍ଛାଚାରୀ ନୁହେଁ । "ଆଧୁନିକ ହେବା ଚେଷ୍ଟାରେ କୌଣସି ଦୃଷ୍ଟିର ଆଦର୍ଶ ବା ଅନୁଭୂତ ସୌନ୍ଦର୍ଯ୍ୟ ପ୍ରତି ଦୃଷ୍ଟିକ୍ଷେପ କରିନାହିଁ । ଯେତେବେଳେ ଯେଉଁ ବିଷୟ ମନରେ ବିଜୁଳି ଚମକ ପରି ଝଲସିଛି, ତାର ରୂପାଙ୍କନ କରିଛି ।" ୩ । ଏହାହିଁ କୁଞ୍ଜବିହାରୀଙ୍କର ସୃଷ୍ଟି ଧର୍ମ । ତାଙ୍କ ସୃଜନ କଳାର ଗଠନ ଶିଳ୍ପ । କବିତା ହେଉ ବା ଗଳ୍ପ ହେଉ—ଏହି ନେଇ ଅନୁଭୂତ ସୃଜନର ବେଣୁ ବଜାଇଛି । ଏହି ସୃଜନ ଧର୍ମ ଲୋକ ସାହିତ୍ୟ ଓ ସଂସ୍କୃତ ସାହିତ୍ୟ ଦ୍ୱାରା ଅନେକ ସମୟରେ ନିୟନ୍ତ୍ରିତ । ତେଣୁ ସେ ଗୁରୁଦତ୍ତ କଣ୍ଠା ନୁହନ୍ତି; ଅଥଚ ମୁକ୍ତି ପ୍ରୟାସୀ । କୁଞ୍ଜବିହାରୀ ସୃଷ୍ଟି ସମ୍ପଦରୁ ଲୋକ-ସାହିତ୍ୟ, ଲୋକ-ସଂସ୍କୃତିକୁ ବାଦ ଦେଇ ହୁଏ ନାହିଁ । ଏପରିକି ସହରୀ ସଭ୍ୟତା ସଞ୍ଜାତ ଅଭିଜାତ ମଣିଷର ଚିନ୍ତା ଆଙ୍କୁଥିଲାବେଳେ ମଧ୍ୟ ଲୋକ-ସାହିତ୍ୟ ଓ ଲୋକ-ସଂସ୍କୃତି ତାଙ୍କର ଭାବ-ବଳୟକୁ ଅହେତୁକ ଭାବରେ ପଶି ଆସିଛି । ଶିଳ୍ପୀ ପୁରୁଷ ପ୍ରଗତି ଓ ପରମ୍ପରା, ନୂତନ ଓ ପୁରାତନର ସମନ୍ୱୟ ଗଢ଼ିଛି ଏବଂ ଏହି ସମନ୍ୱୟରୁ ଆଉ ଏକ ନୂତନ ଜଗତର ଆଶା ପୋଷଣ କରିଛି । ପରମ୍ପରାର ସେ ଅନ୍ଧ ସ୍ତାବକ ନୁହନ୍ତି । ନୂତନର ମଧ୍ୟ ଦାସ ନୁହନ୍ତି । ନୂତନର ପ୍ରଗତିରେ ପରମ୍ପରାର ସେବା ଏକାନ୍ତ ଆବଶ୍ୟକ । ପରମ୍ପରା ନୂତନର ଅବିଚ୍ଛେଦ୍ୟ ଅଙ୍ଗ । ପରମ୍ପରା ଅତୀତ ଓ ବର୍ତ୍ତମାନ ମଧ୍ୟରେ କ୍ରିୟାଶୀଳ ଏବଂ ଗତିଶୀଳ ସଂଯୋଗ । ଏହି ଆଦର୍ଶକୁ କୁଞ୍ଜବିହାରୀ ଯଥାର୍ଥ ଭାବରେ ଉପଲବ୍ଧି କରି ଅଛନ୍ତି । ପରମ୍ପରାର ଅବବୋଧ ଓ ଯାହା କିଛି ଜୀବନୀ ଶକ୍ତିର ପ୍ରବୃଦ୍ଧକ ତାରି ଭିତ୍ତି ଭୂମିରେ ନୂତନର ଆବାହନ (ଆତ୍ମସମର୍ପଣ ନୁହେଁ)ହିଁ ତାଙ୍କର ଗଳ୍ପ-ସୃଷ୍ଟିର ପ୍ରେରଣା । ଲେନିନ କହନ୍ତି—"Man needs an ideal." ମଣିଷ ଆଦର୍ଶ କାମନା କରେ । କାରଣ ଜୀବନର ଗତି ପ୍ରକୃତି ଓ ପୂର୍ଣ୍ଣତା ଅଭିମୁଖୀ । ଏହା ଆଦର୍ଶ ପରିଚାଳିତ । ଆଦର୍ଶ ମଣିଷର ଅଳସ ମନର ଦିବା ସ୍ୱପ୍ନ ନୁହେଁ; ପ୍ରାୟୋଗିକ ବିବର୍ତ୍ତନ ଦେଇ ଜୀବନର ନବ ରୂପାନ୍ତର । ଏହିଠି ଆସେ

---

୨ । କୁଞ୍ଜବିହାରୀ ସଞ୍ଚୟନ—୩ୟ ଖଣ୍ଡ—ମୁଖବନ୍ଧ ।

୩ । କୁଞ୍ଜବିହାରୀ ସଞ୍ଚୟନ—୧ମ ଭାଗ—୨ୟ ସଂସ୍କରଣ ଭୂମିକା ।

ବାସ୍ତବତାର ପ୍ରସଙ୍ଗ । ବାସ୍ତବତା ହିଁ ଆଦର୍ଶକୁ କାର୍ଯ୍ୟରେ ପରିଣତ କରେ । "Reality always in the materialisation of an ideal. । ୪ । କଥାକାର କୁଞ୍ଜବିହାରୀଙ୍କର ଗଳ୍ପ-ଜଗତ ଏଇ ବାସ୍ତବ ଓ ଆଦର୍ଶର ଜଗତ । ଏଠି ବାସ୍ତବତା କ୍ରିୟା; ଆଦର୍ଶ ଇଙ୍ଗିତ । ବାସ୍ତବରୁ ଆଦର୍ଶ ଅଲଗା ନୁହେଁ । ଆଦର୍ଶ ଅଶରୀରୀ ଆକାଂକ୍ଷା; ଅଥଚ ଅତ୍ୟନ୍ତ ଶକ୍ତିଶାଳୀ । ବାସ୍ତବର ରସ-ରୂପାୟନ ମଧ୍ୟରେ ଆଦର୍ଶ ସ୍ପଷ୍ଟ । ଏହି ଆଦର୍ଶ ହିଁ ଶିଳ୍ପୀ ପ୍ରାଣର ଅବ୍ୟକ୍ତ ଆଶା ଓ ଆତ୍ମବିଶ୍ୱାସ । ସେ ତେଣୁ ଉପଲବ୍ଧି କରି ଅଛନ୍ତି—"ଆତ୍ମବିଶ୍ୱାସ ମନୁଷ୍ୟକୁ ଶକ୍ତିଶାଳୀ କରେ; ସୁପ୍ତ ଶକ୍ତିକୁ ନବ ନବ ଭାବରେ ବିକାଶ କରେ; ମନୁଷ୍ୟର ଜୀବନ ଆକାଶକୁ ଆଶା ତୂଳୀରେ ରଙ୍ଗାଇ ଦିଏ । ଆତ୍ମବିଶ୍ୱାସର ଅଭାବ ଜୀବନ ଅଧଃପାତର ମୂଳାଧାର ।" । ୫ । ଏହି ଆତ୍ମବିଶ୍ୱାସ କବି କୁଞ୍ଜବିହାରୀଙ୍କୁ କରିଛି ଗାଳ୍ପିକ ଓ ଔପନ୍ୟାସିକ କୁଞ୍ଜବିହାରୀ । ଏହି ଆତ୍ମବିଶ୍ୱାସହିଁ ତାଙ୍କୁ କରିଛି ଆଶାବାଦୀ । ଏହି ଆଶାବାଦହିଁ ବାସ୍ତବତାର ପୃଷ୍ଠଭୂମିରେ ହୋଇଛି ଆଦର୍ଶ ଉନ୍ମୁଖୀ ।

## ଗଳ୍ପ ସୃଷ୍ଟି ପ୍ରେରଣାର ମୂଳ ଉତ୍ସ ଲୋକ କଥା :

ପୂର୍ବରୁ ଆଲୋଚିତ ହୋଇଛି କୁଞ୍ଜବିହାରୀ ମୂଳତଃ କବି । ସମାଜବାଦୀ ମାନବ ବନ୍ଦନା ତାଙ୍କ କବିତାର ଅନ୍ତର୍ଧ୍ୱନି । କବି ହେଲେ ବି ସେ ଗାଳ୍ପିକ । ତାଙ୍କ ଗଦ୍ୟ ଶିଳ୍ପରେ ଅଛି ଲୋକକଥନ ବା ରଚନାର ଶୈଳୀ । ସେ କହନ୍ତି—"ଲୋକ କବି ମୋର ଗୁରୁ, ମୋ ଗଦ୍ୟରଚନା ଶୈଳୀରେ ଲୋକ କଥନ ବା ରଚନାର ଶୈଳୀ ଅନ୍ତଃସଲିଳା ଫଲ୍‌ଗୁ ପରି ଲୁଚି ରହିଛି ।" । ୬ । ତାଙ୍କର ଗଳ୍ପ-ଗଦ୍ୟ-କଳା-ଅନୁଧ୍ୟାନ କଲେ ଏହି ଅଭିମତର ଯଥାର୍ଥ୍ୟ ପ୍ରତିପାଦିତ ହୋଇଥାଏ । ଗଳ୍ପ ବା ଉପନ୍ୟାସ ରଚନା କଲା ପୂର୍ବରୁ କୁଞ୍ଜବିହାରୀ ଲୋକକାହାଣୀ ସଂଗ୍ରହ ଓ ସଂକଳନ କରିଅଛନ୍ତି । ଲୋକ କାହାଣୀକୁ କଥକଠାରୁ ସଂଗ୍ରାହକ ଟିପିଆଣେ । ସେ କେବଳ କଙ୍କାଳଟି ସଂଗ୍ରହ କରି ଆଣେ । ତାପରେ ସେ ତାକୁ ଲୋକମୁଖର ଭାଷାରେ ଓ ଲୋକ କଥନ-ଶୈଳୀରେ ରୂପ ଦିଏ । କାହାଣୀ; ଲୋକ ଜୀବନର ଶ୍ରୁତ-ସଂଚିତ-କାହାଣୀ । "କଥକଠାରୁ କାହାଣୀର କଙ୍କାଳ ମାତ୍ର ଟିପି ଆଣିବାକୁ ହୁଏ । ରୂପଦାନ କାର୍ଯ୍ୟ ଲେଖକର । ଏହା ପରିଶ୍ରମ ସାପେକ୍ଷ । ରୂପ ଦେଇ ନଜାଣିଲେ ଏହାଛଡ଼ା ଛଡ଼ାଫୁଲପରି ମଳିନ ଦିଶେ, ବେତାଳିଆ ସଙ୍ଗୀତ ପରି ଶୁଣାଯାଏ ଏହାର ସ୍ୱର, ସତେ ଯେପରି ରସବନ୍ତ ଜୀବନର ଏହା ଏକ ସମାଧି ମନ୍ଦିର,

---

୪ । Problems of Modern Aesthetics—P. 51 Progress publishers, Moscow.

୫ । କୁଞ୍ଜବିହାରୀଙ୍କ ଡାଇରୀ ୨୨ । ୮ । ୧୯୪୦—( ମୋ କାହାଣୀ ପୃ ୪୦୫ )

୬ । ପିଲ୍ଲୀଗୀତ ସଂଚୟନ ୨ୟ ଭାଗ—୧୯୫୯ ( ମୁଖବନ୍ଧ )

ମାଙ୍କଡ଼ା ପଥରରେ ଗଢ଼ା ।” ।୭। ଏ ବିଷୟରେ 'କଥାଟିଏ କହୁଁ' ମୁଖବନ୍ଧରେ କୁଞ୍ଜବିହାରୀଙ୍କ ଅଭିମତ ଆହୁରି ସ୍ପଷ୍ଟ । “ଲୋକଗୀତ ଅବିକଳ ଛପା ଯାଏ, କିନ୍ତୁ କଥାକୁ ରୂପ ଦେବାକୁ ହୁଏ । ଲୋକଙ୍କ କହିବା ଭିତରେ ଗ୍ରାମ୍ୟ ସମାଜର ଚିତ୍ର ଦେଇ ପ୍ରକୃତ ଗାଉଁଲି ବାତାବରଣ ଆଣିବାକୁ ପଡ଼େ । ଏହା ଏକ ପ୍ରକାର ସର୍ଜନ, ସଙ୍ଗଠନ, ଏଥିଲାଗି ସ୍ରଷ୍ଟାର ମନୋବୃତ୍ତି ଲୋଡ଼ା, ତାହା ସବୁବେଳେ ନ ଥାଏ, ଲୋଡ଼ିଲେ ବି ଆସେ ନାହିଁ, ତେଣୁ ଯେତେବେଳେ ଇଚ୍ଛା ସେତେବେଳେ ଗାଉଁଲି ଗଳ୍ପ ଲେଖିହୁଏ ନାହିଁ । ମଶାଣିର କଙ୍କାଳଟିଏ ଆଣି ତାକୁ ରକ୍ତ ମାଂସ, ସ୍ୱାସ୍ଥ୍ୟଶ୍ରୀ ଓ ବଳିଷ୍ଠ ଜୀବନ ଦେବା ସହଜ ସାଧ୍ୟ ବ୍ୟାପାର ନୁହେଁ । କାହାଣୀରେ ମନ୍ତ୍ରରେ ଯାହା ହୁଏ, ଏଠି ଲେଖନୀରେ ସେଇଆ କରିବାକୁ ପଡ଼େ ।” ।୮। ତେଣୁ ଲୋକ-କାହାଣୀ ଲୋକ-ମନ-ସଞ୍ଚିତ-ନିଧି ହୋଇ-ଥିଲେ ହେଁ ଏବଂ ଲୋକ-ସମାଜରେ ଲୋକରୁ ଲୋକ ମୁଖକୁ ବିବର୍ତ୍ତିତ ହୋଇ ଗଢ଼ି ଆସୁଥିଲେ ହେଁ ଯେତେବେଳେ ଲେଖକ ତାକୁ ସଂଗ୍ରହ କରି ରୂପ ଦିଏ ସେତେବେଳେ ତାହା ନୂତନ କାହାଣୀ ହୋଇଯାଏ । ଏଥିରେ ଥାଏ ଲୋକମନ, ଲୋକରୁଚି, ଲୋକ ଭାଷା, ଲୋକ ଶୈଳୀ; ତଥାପି ଲେଖକର ସୃଜନ-ପ୍ରତିଭା ପ୍ରାଧାନ୍ୟ ଲାଭ କରେ । ଲୋକ ହୃଦୟରେ ତାର ଅଶରୀରୀ ଶିଳ୍ପୀ ସତ୍ତା ପ୍ରବେଶ କରି ସେହି ଭାଷା ଓ ଶୈଳୀକୁ ବ୍ୟବହାର କରେ । ତାକୁ ଏକ ରସସ୍ନିଗ୍ଧ ଭାବରେ କାହାଣୀ-ରୂପ ଦିଏ । ଲୋକଜୀବନର ପୁଞ୍ଜୀଭୂତ ଭାବସତ୍ତା ଲେଖକ ହୃଦୟକୁ ପ୍ରତିଫଳିତ କରି ଲଳିତ ମଧୁର ଭାବରେ ପ୍ରବାହିତ ହୋଇ ଆସେ । ତେଣୁ ସଂଗ୍ରହ ଆଉ ସଂଗ୍ରହ ମାତ୍ର ନୁହେଁ; ତାହା ହୁଏ ମୌଳିକ ସୃଜନ-କଳାର ସରସ ପ୍ରକାଶ ।

କୁଞ୍ଜବିହାରୀଙ୍କର ଲୋକଗଳ୍ପ ସଂଗ୍ରହ ବିଚିତ୍ର ଓ ବିବିଧ । ୧୯୬୪ ମସିହାରେ ପ୍ରଥମ ଲୋକଗଳ୍ପ ସଞ୍ଚୟନ ପ୍ରକାଶ କରି ତା'ର ମୁଖବନ୍ଧରେ ସେ ଘୋଷଣା କରିଥିଲେ— “ଓଡ଼ିଆ ଜାତିର ଆତ୍ମଚରିତ ଆଜି ବାହାରିଲା । ସତରେ ଆମ ଜାତୀୟ ଚରିତ୍ର ଆଉ କେଉଁ କାବ୍ୟ ମହାକାବ୍ୟ, ବା ଗଳ୍ପ ଉପନ୍ୟାସରେ ଏତେ ନିଖୁଣ ଭାବରେ ଫୁଟିଛି ?” କୁଞ୍ଜବିହାରୀ ଲୋକ କାହାଣୀ ସଞ୍ଚୟନକୁ ଓଡ଼ିଆ ଜାତିର ଆତ୍ମଚରିତ ଭାବରେ ଗ୍ରହଣ କରିଅଛନ୍ତି । କାରଣ ଏଥିରୁହିଁ ଜାତିର ସବୁ କିଛି ଜଣାଯାଏ । “ଲୋକ କାହାଣୀ ଗୋଟିଏ ଜୀବନ୍ତ ଶିଳ୍ପ । ସାର୍ବଜନୀନ ଆବେଦନ ଯୋଗୁଁ ଏହା କାଳଜୟୀ । ବୟୋବୃଦ୍ଧ ହେଲେ ହେଁ ବୟସର ଜୀର୍ଣ୍ଣ ବାତାବରଣ ଏଥିରେ ନାହିଁ । ବକ୍ତା ଗୋଟିଏ ଗଳ୍ପକୁ ବାରମ୍ବାର କହି କ୍ଳାନ୍ତ ନୁହେଁ, ଶ୍ରୋତା ଶୁଣି ଶୁଣି ବିରକ୍ତ ନୁହେଁ । ଶ୍ରୁତି ପରମ୍ପରାରେ ଯୁଗରୁ ଯୁଗାନ୍ତରକୁ ଏହାର ଗତି; ଯୁଗରୁ ଯୁଗକୁ, ସ୍ଥାନରୁ ସ୍ଥାନକୁ, ମନରୁ ମନକୁ

---

୭। ଲୋକଗଳ୍ପ ସଞ୍ଚୟନ—୧୯୬୪ ( ମୁଖବନ୍ଧ )
୮। ଡଃ କୁଞ୍ଜବିହାରୀ ଦାଶ—କଥାଟିଏ କହୁଁ—୨ୟ ଭାଗ କଥାର କଥା )

ଆସି ଏହାର ରୂପ ବଦଳେ, ଭେକ ବି ବଦଳେ । କେବଳ ଅପରିବର୍ତ୍ତିତ ରହେ ଅନ୍ତରଙ୍ଗ ରସ । ଲୋକଗଳ୍ପ ବିଶ୍ୱ ପର୍ଯ୍ୟଟକ, ବିଶ୍ୱଶ୍ରୁତ ଏହାର ଗତିପଥ, ବିଶ୍ୱ ମନ ଏହାର ବିହାର ଭୂମି, ବିଶ୍ୱମାନବିକତା ଏହାର ଆଦର୍ଶ । ସାମ୍ପ୍ରଦାୟିକତାର ସ୍ପର୍ଶ ନାହିଁ, ଧର୍ମର ସଙ୍କେତ ନାହିଁ, ସଙ୍କୀର୍ଣ୍ଣ ଆଞ୍ଚଳିକ ସଂସ୍କୃତିର ପରିଚୟ ନାହିଁ, ନିର୍ଦ୍ଦିଷ୍ଟ ବହିଃପ୍ରକୃତିର ଚିହ୍ନଣ ନାହିଁ, ସମାଜ ବା ଜାତୀୟ ବୈଶିଷ୍ଟ୍ୟର ସୂଚନା ନାହିଁ, ମାନବାତ୍ମାର ସ୍ଥାୟୀ କୀର୍ତ୍ତି ହିସାବରେ ଏହାର ଦେଶେ ଦେଶେ ଆଦର, ପ୍ରାଣେ ପ୍ରାଣେ ଅଭିନନ୍ଦନ ।" ।୧। ଲୋକ-ଗଳ୍ପର ଏହି ବିଶ୍ୱବୋଧକୁ କୁଞ୍ଜବିହାରୀ ଉପଲବ୍ଧି କରିଥିଲନ୍ତି । ପ୍ରକାଶର ସାରଲ୍ୟ ଓ ଅନଳଙ୍କୃତ ଭାଷା ପ୍ରୟୋଗ ତାଙ୍କୁ ଆକୃଷ୍ଟ କରିଛି । ହରିଶ୍ଚନ୍ଦ୍ର କଥା, ଶିବ ଚରିତ, କର୍ଣ୍ଣ ପୁତ୍ର ବଳିଦାନ, ପ୍ରହ୍ଲାଦ ଚରିତ, ସୀତାବନବାସ, ଧ୍ରୁବ ଚରିତ ଆଦି ପୌରାଣିକ ଲୋକକାହାଣୀ, କୁକ୍‌କଣ୍ଠୀ ବ୍ରତ, କେଦାର ବ୍ରତ, ରବି-ନାରାୟଣ ବ୍ରତ, ଅନନ୍ତ ବ୍ରତ, କଉଡ଼ିଆ ବିନାୟକ ବ୍ରତ ଆଦି ବ୍ରତ କଥା, ଜହ୍ନି ଓଷା, ବୁଧେଇ ଓଷା, ବାଲିତୃତୀୟା, ଷଠୀ ଓଷା, ବଡ ଓଷା, ନାଗଲଚଉଠି ଆଦି ଓଷା କଥା, ଦାସିଆ ବାଉରି, ବଡ ବିପ୍ର ଶ୍ରେଷ୍ଠବିପ୍ର, ଗୀତା ପଣ୍ଡା, ରଘୁ ଅରକ୍ଷିତ, ବିଲ୍ୱମଙ୍ଗଳ ଆଦି ସନ୍ଥ ଓ ଭକ୍ତ କଥା, ବାରଣ ବଡେଇରେ ଦାୟ କି ପୁଅରେ ଦାୟ ପରି କିମ୍ବଦନ୍ତୀ ମୂଳକ କଥା, ସତ୍ୟନାରାୟଣ ପୂଜା କାହାଣୀ, ତୁଳସୀ ବ୍ରାହ୍ମଣୀ ଚରିତ, ମଳୟ ବସନ୍ତ ରାଜା ଓ ଶୃଗାଳ କନ୍ୟା ଚରିତ ଆଦି ମାହାତ୍ମ୍ୟ କାହାଣୀ, ଚକୁଳିଆ ପଣ୍ଡା କଥା, କୋପେ ବର କି ତପେ ବର, ମଉନାବତୀ ଆଦି ଲୌକିକ ଲୋକଗଳ୍ପ, ଦରଜୀ ଆଉ ଭୂତ, ବାବନାଭୂତ ଆଦି ଭୂତ ପ୍ରେତ କାହାଣୀ, ନେଇ ଆଣି ଥୋଇଲେ ଚୋରି ବିଦ୍ୟା ଭଲ, ରାମଚନ୍ଦ୍ର ବଣିଆ ଆଦି ଠକ ଶଠ କାହାଣୀ, ମହାଜନ ପୁଅବୋହୂ, ଅଜଗର ସାପ, ହଳାହଳ କୁମର, ଚୋରି ସଙ୍ଗାତ ଆଦି ପଶୁପକ୍ଷୀ ସର୍ପ ସମ୍ବନ୍ଧୀୟ କାହାଣୀ ଆଦି ଲୋକଗଳ୍ପଗୁଡ଼ିକୁ ସଂଗ୍ରହ କରି ଲେଖକ ଯେପରି ତହିଁରେ କଳ୍ପନାର ପୁଟ ଦେଇ ରସସ୍ନିଗ୍ଧ କରି ଗଢି ଦେଇଛନ୍ତି ତାହା ଉପାଦାନରେ ମୌଳିକ ନ ହୋଇ ମଧ୍ୟ ପରିବେଷଣରେ ମୌଳିକ ହୋଇଯାଇଛି । ଏହି ପରିବେଷଣ-ଶିଳ୍ପ ଭିତରେ ସେ ଲୋକ-ମନ, ଲୋକ-ଜୀବନ, ଲୋକ-ସଂସ୍କୃତି ସହିତ ମିଶିବାକୁ ଉଦ୍ୟମ କରିଅଛନ୍ତି । ଲୋକ-କାହାଣୀ ଭିତରୁ କଥାକାର କୁଞ୍ଜବିହାରୀ ଏକ ସାର୍ବଜନୀନ ମାନବିକତା ବୋଧ ଆବିଷ୍କାର କରି ତାକୁହିଁ ଆଧୁନିକ ମୌଳିକ ଗଳ୍ପ ରଚନା କରିବା କ୍ଷେତ୍ରରେ ମୁଖ୍ୟ ପ୍ରେରଣାରୂପେ ଗ୍ରହଣ କରିଅଛନ୍ତି । ମଣିଷର ପ୍ରେମ, ବିରହ, ଦୁଃଖ, ସୁଖ, ଈର୍ଷା, ଦ୍ୱନ୍ଦ୍ୱ, ଘୃଣା, ସ୍ନେହ, ମମତା, ପରଶ୍ରୀକାତରତା, ମୃତ୍ୟୁଭୟ, ଧର୍ମବିଶ୍ୱାସ, ବ୍ୟବସାୟରେ କାରସାଦି, ଆଦି ନାନା ମୌଳିକ ଚିତ୍ତବୃତ୍ତି ଲୋକ କାହାଣୀ ଭିତରେ ବିଦ୍ୟମାନ । ଶୋଷକ ଓ ଶୋଷିତ, ଖାଦ୍ୟ ଓ ଖାଦକର ସମ୍ପର୍କ ମଧ୍ୟ ଏଥିରେ ଚିହ୍ନିତ । କିନ୍ତୁ ଏ ଚିହ୍ନଣ କଳ୍ପିତ

୧ । ଓଡ଼ିଆ ଲୋକଗୀତ ଓ କାହାଣୀ—ପୃ ୩୫୩—ଡଃ କୁଞ୍ଜବିହାରୀ ଦାଶ

ଆଦର୍ଶର ବାର୍ତ୍ତାବହ । ଏଥିରେ ଯେ ବାସ୍ତବ ଜୀବନର ଆଲେଖ୍ୟ ନାହିଁ ନୁହେଁ, କଳ୍ପିତ ଆଦର୍ଶ ମୁଖ୍ୟ । କଥାକାର କୁଞ୍ଜବିହାରୀ ଏହି ଲୋକ କାହାଣୀର ସଂଗ୍ରହ ଓ ସର୍ଜନ କାଳରେ ଯେଉଁ ଭାଷା ଓ ଶୈଳୀର ପ୍ରୟୋଗ କରିଅଛନ୍ତି ତାହାହିଁ ତାଙ୍କୁ ପରବର୍ତ୍ତୀ କାଳରେ ଗଳ୍ପ ଓ ଉପନ୍ୟାସ ଲେଖିବାକୁ ପ୍ରେରଣା ଯୋଗାଇ ଅଛି । ଫଳରେ ଲୋକ-ଗଳ୍ପର ଭାଷା ଶୈଳୀ-ଭଙ୍ଗୀହିଁ ତାଙ୍କ ଗଳ୍ପର ମୁଖ୍ୟ ପ୍ରାଣସ୍ପନ୍ଦନ । ଏହି ସ୍ପନ୍ଦନହିଁ ତାଙ୍କୁ ସମ୍ବେଦନଶୀଳ ସ୍ରଷ୍ଟାରେ ପରିଣତ କରିଅଛି । ତେଣୁ କଦବା ପରି ତାଙ୍କ ଗଳ୍ପ-ଜଗତ ହୋଇଛି ମାନବିକ ସମ୍ବେଦନାର ଆଲେଖ୍ୟ । ହୁଏତ ଏହି ଗଳ୍ପ-କଳାରେ ଚମକ ନାହିଁ, କାହାଣୀକୁ ମୋଡ଼ାଇ ଦେବାର ପ୍ରୟାସ ନାହିଁ, ଲୋକ କାହାଣୀର ଗତାନୁଗତିକ ଓ କଥ୍ୟଧର୍ମିତା ପରି ଏହାର ରୂପ-ଶଯ୍ୟା; ତଥାପି ମାନବିକ ସମ୍ବେଦନା ଯୋଗୁ ଏହା ହୋଇଛି ରସାଳ ଓ ଭାବଧର୍ମୀ ।

ଗଳ୍ପକାର ଜଣେ ଚାଷୀ :

କଥାକାର ଜଣେ ଲେଖକ; ସେ ମଧ୍ୟ ଚାଷୀ । ତାର ଚାଷ କଲମ ଚାଷ । ମୂଲିଆ ମାଟି ଓ ପଥର ହାଣି ଚାଷ କରେ । ସେ ଦିଏ ଉଦରକୁ ଖାଦ୍ୟ; ଲେଖକ ଦିଏ ମନକୁ । କଲିକତା ସହରର ବାହାର ସଂସାର । ଝାଳ ଲହୁରେ ଯେଉଁମାନେ ଦିଅ ସହରର ମୂଳକ ତିଆରି କରନ୍ତି ସେମାନଙ୍କୁ ବାବୁମାନେ ବୁଝନ୍ତି ନାହିଁ । ସେମାନଙ୍କ ଶ୍ରମକୁ ଶୋଷଣ କରି ଆନନ୍ଦରେ ରହନ୍ତି । ଅଥଚ ମୂଲିଆ ହିଁ ନୂଆ ଯୁଗର ପୁନାଦି ପକାଏ । ସେହିହିଁ ଯୁଗ ତିଆରି କରେ । ଓଡ଼ିଶାର କେଉଁ ଅଜଣା ଗାଁରୁ ପେଟ ଜ୍ୱଳାରେ କେତେ ମୂଲିଆ ବ୍ରହ୍ମ ଦେଶ, ଆସାମ ଓ କଲିକତା ଚାଲିଯାଇଥିଲେ ଦାଦନ ଶ୍ରମିକ ହୋଇ । ସେମାନଙ୍କ ଦୁଃଖକୁ କିଏ ଦେଖେ ? କିଏ ସେମାନଙ୍କୁ ପଚାରେ ? ମାଟି ମୂଲ୍ୟରେ ସେମାନଙ୍କର ଶ୍ରମ ବିକ୍ରି ହୁଏ । ଅଥଚ ସେମାନଙ୍କ ଶ୍ରମକୁ ଶୋଷଣ କରି ବଡଲୋକ ଦେହରୁ ତେଲ ଖସି ପଡେ । ମୂଲିଆର ପେଟକୁ ହେଲେ ପିଠିକୁ ନାହିଁ । ତୋରାଣି ତେଣ୍ଡି ଜାଉ ହାପୁଡ଼ି ପଡ଼ିରହେ । ସହରଗରୁ ଆସି କାନ୍ଥାରରେ ପଡେ ।

ମୂଲିଆ ଦାମର ଜୀବନଯନ୍ତ୍ରଣାର କଥା ଶୁଣିଲେ ଲେଖକ । ତାଙ୍କ ଭିତରେ ସୃଷ୍ଟି ହେଲା ସମ୍ବେଦନା । ଦାମ ବୋଲିଲା କେତେ ଗୀତ—ହଳିଆ, ଦୋଳି, ରାଧାକୃଷ୍ଣ ପ୍ରେମଲୀଳା, ଦାସକାଠିଆ । ଲେଖକ ତନ୍ମୟ ହେଲେ । ତାଙ୍କର ମନେ ପଡ଼ିଲା ଓଡ଼ିଶାର ସମୃଦ୍ଧ ସଂସ୍କୃତିର କଥା । ସେଦିନ ଏ ଦେଶର ସନ୍ତାନ ସଂଗ୍ରାମ ଭୂମିକୁ ଚହଲାଇ ଦେଉଥିଲା । ସାତ ସମୁଦ୍ରକୁ ଭୟ କରୁ ନ ଥିଲା । ଅଥଚ ସେହି ସମୃଦ୍ଧ ବୀର ଜାତି ଆଜି ଶ୍ରମିକ । ଦାମ ପ୍ରତି ଲେଖକଙ୍କର ସୃଷ୍ଟି ହୋଇଛି ସମ୍ବେଦନା । ଦାମ ମୂଲିଆ; ମୂର୍ଖ ନୁହେଁ । କେତେ ଗୀତ ସେ ଜାଣିଛି ? ସେଇ ଗୀତର ତାଳେ ତାଳେ ସେ ତାର ଦୁଃଖ-ସମୁଦ୍ରକୁ ପହଁରି ଚାଲିଛି । ତେବେ ଯେଉଁ ଭଲ ପରିବେଶରେ ଦାମ ହୋଇଛି

ଏକାନ୍ତ ଅସହାୟ ସେପରି ସମୟରେ ସେ ପ୍ରାଣଖୋଲି ଗୀତ ବୋଲି ପାରେ କି ? ତଥାପି ସେ ଗୀତ ବୋଲିଛି । ଲେଖକଙ୍କର ସମ୍ବେଦନଶୀଳ ହୃଦୟ ସହିତ ଆପଣାର ହୃଦୟକୁ ମିଶାଇ ଦେଇ ସେ ଗୀତ ଗାଇଛି । ଏଥର ତାର ଆଉ ଉଦରର କ୍ଷୁଧା ନାହିଁ । ହୃଦୟର କ୍ଷୁଧା ମେଣ୍ଟିଛି । ଲେଖକ ତାକୁ ଦେଲେ ପ୍ରେରଣା—"କେତୁଟା ରକ୍ତମୁଖା ଦଳିଲ; ତୁମେ ଯେ ବହୁ ସହସ୍ର । ଆଉ ତରବାରି ଯୁଗ ନାହିଁ; ପଥର ମାଟିରେ ଶାବଳ ଭୁଲକୁ ନାହିଁ ! ଯୋଉ ଗ୍ରୀତ ତଳେ ଏତେ ଝଟାଉଛି ସେ ପଥରଠାରୁ ଆହୁରି ଟାଣ, ତା ସାଥିରେ ଲଢିବା ପାଇଁ ତଳେ ଶାବଳଠାରୁ ଅଧିକ ଶକ୍ତ ହେବାକୁ ହେବ ।" । ୧୦ । ଜୀବନ ସଂଗ୍ରାମରେ ଶ୍ରମିକ ଶୋଷକ ସମାଜଦ୍ୱାରା ଶୋଷିତ ହୋଇ ଭାଙ୍ଗି ପଡ଼ିଲେ ହେବ ନାହିଁ । ତାକୁ ଟାଣ ହେବାକୁ ହେବ । ଶୋଷକଙ୍କର ପଥର ଗ୍ରୀତରେ ଶାବଳ ମାରିବାକୁ ହେବ । ଆପଣାର ଅଧିକାରକୁ ସାବ୍ୟସ୍ତ କରିବାକୁ ହେବ । ଆପଣାର ରକ୍ତରେ ସଭ୍ୟତାର ନୂତନ ଫୁଲ ଫୁଟାଇବାକୁ ହେବ । ଲେଖକ ଶ୍ରମିକକୁ ଆପଣାର ମନେ କରିଛନ୍ତି ଏବଂ ତାକୁ କହିଛନ୍ତି—"ତୁ ଜମି ଚଷ କରୁ; ମୁଁ କଲମ ଚଷ କରେ । ତୁ ଧମନୀକି ରକ୍ତ ଦେଉ; ମୁଁ ଯୋଗାଏ ମନକୁ ରସ । ଦହେଁ ଚଷା" । ଉଦର ଓ ହୃଦୟ, ମନ ଓ ବିବେକ ମଧ୍ୟରେ ସମନ୍ୱୟ ହେଲେ ସମାଜର ହୁଏ କଲ୍ୟାଣ । ଲେଖକ ଚାହିଁଛନ୍ତି ଏହି ସମନ୍ୱୟ । ତେଣୁ ସେ ନିଜକୁ ଏକ କୃଷକ ଭାବରେ ପ୍ରତିପାଦନ କରିଅଛନ୍ତି । ଏହି ପ୍ରତିପାଦନ ମଧ୍ୟରେ ଅଛି ଲେଖକଙ୍କର ଗଭୀର ମାନବିକ ସମ୍ବେଦନା, ଲୋକ ସଂସ୍କୃତି ପ୍ରତି ନିବିଡ ମମତା ଓ ଜାତୀୟତା ପ୍ରତି ମମତ୍ୱବୋଧ ।

## ଲୋକ ଜୀବନ ଓ ଲୋକ ସଂସ୍କୃତି ପ୍ରତି ଆଦର :

କଥାକାର କୁଞ୍ଜବିହାରୀ ତାଙ୍କର ଆତ୍ମଜୀବନୀରେ ଲେଖିଛନ୍ତି—"କେହି ଗ୍ରାମବାସୀ, କେହି ସହରବାସୀ—ମୁଁ କିନ୍ତୁ ଉଭୟଚର; କେତେବେଳେ ଏ ପାଦ ପିଚୁରାସ୍ତାରେ, କେତେବେଳେ ବା ଗଭୀର ବିଲ ସରୁ ହିଡର କୋଇଲଖା କଣ୍ଟା ଭିତରେ । କେତେବେଳେ ପ୍ୟାଣ୍ଟ କୋର୍ଟର ଗ୍ରୁପ ଚକ୍‌ଚକିଆ ମହଲରେ, କେତେବେଳେ ଚଟି କରିଆ ପିନ୍ଧା ଲୁଙ୍ଗା ମେଳରେ ମୋ ଜୀବନ କଟେ । ସାହିତ୍ୟର ସ୍ତରେସ୍ତରେ ଉଭୟ ଚରିତ୍ରର ପ୍ରମାଣ । କିନ୍ତୁ ଗ୍ରାମପ୍ରତି ଟିକିଏ ଦରଦ ଅଧିକ । ସହରଟା ବାହାରେ, ଗ୍ରାମ ଏକାନ୍ତ ନିଜସ୍ୱ ଘରି ଥିଲି ମନରେ । ତାର ଅବହେଳିତ ତରୁତୃଣ ମୋର ପ୍ରିୟ, ତାର ଶ୍ରୀ ସୌହାର୍ଦ୍ଦ୍ୟ, ସ୍ନେହ ଓ ଆହ୍ଲାଦ, କୋମଳତା ଓ କାରୁଣ୍ୟ ଏକାନ୍ତ ମର୍ମସ୍ପର୍ଶୀ ଥିଲି, ତାର ଜୀବନ ମୋ ଜୀବନକୁ ଅର୍ଦ୍ଧାଧିକ ଆବୋରି ବସିଥିଲି । ତାର ଲାଜକୁଳୀ ଲତା, ଘୋର ଦାରିଦ୍ର୍ୟ ମଧ୍ୟରେ ତାର ଧୃତି, କୃତି, କରାମତି ଓ ସହଣିକ ଶକ୍ତି, ତାର ଅନାବିଳ ସର୍ଜନ ଓ ଅଟଳ ଈଶ୍ୱରୈକ ଆସ୍ଥା, ତାର ନମ୍ର ନତ ସ୍ୱଭାବ ଓ କମ୍ରକାନ୍ତ ଭାବ ବିଳାସ,

୧୦ । ହସ କାନ୍ଦର ଗପ—'ଦାଣ୍ଡିଣ ଚଷୀ—ପୃ ୫୨

ତାର ପୁଣ୍ୟ ପଦ, ଯାହାର୍ଲୀଳା ରସିକତା ଓ ହାସ୍ୟବ୍ୟଙ୍ଗପଟୁତା ମୋତେ ମନ୍ତ୍ରମୁଗ୍ଧ କରି ରଖିଥିଲା; ତାର ଜୀବନ ସଂଗ୍ରାମ ପଛେ ପଛେ ପରୋକ୍ଷଭାବେ ମୁଁ ଥିଲି ।” ( ସେ କାହାଣୀ—ପୃ ୩-୪୧ ) ଗଳ୍ପକାର ସହରରେ ଅବସ୍ଥାନ କରୁଥିଲେ ହେଁ. ସହର ଜୀବନର ଚାକଚକ୍ୟ ସମ୍ପର୍କରେ ଆସୁଥିଲେ ହେଁ ପଲ୍ଲୀର ସ୍ନିଗ୍ଧ ସୁଷମା ଓ ପଲ୍ଲୀଜୀବନର ସ୍ୱଭାବ ସୁନ୍ଦର ନିଷ୍କପଟ ଭାବ ଭୂତ ପ୍ରତି ବିଶେଷ ଭାବରେ ଆକୃଷ୍ଟ । ଏହି ପଲ୍ଲୀବୋଧ ହିଁ ତାଙ୍କ ସ୍ରଷ୍ଟା-ମାନସର ମୁଖ୍ୟ ଚରଣ-ଛଳା । ମଣାଶି ତୁଳସୀ, (୧୯୭୯) ମହିମା ଶୁଣିମା (୧୯୮୦), କି କଥା ? କଲିକତା (୧୯୮୨), ଉପେକ୍ଷିତ ଉପନ୍ୟାସର ଏକ ଅଧ୍ୟାୟ 'କର୍ମଫଳ' ଆଦି ଉପନ୍ୟାସଗୁଡ଼ିକରୁ ଏହି ପଲ୍ଲୀବୋଧର ରସାଳ ମନୁଷ୍ୟ ଆଲେଖ୍ୟ ଦେଖିବାକୁ ମିଳେ । ଅବଶ୍ୟ ଏ ସବୁଥିରେ ଜୀବନ ସଂଗ୍ରାମର ସୁତୀବ୍ର ପ୍ରକାଶ ନାହିଁ କିନ୍ତୁ ପଲ୍ଲୀର ଗୃହିଣୀ, ସେଇ ଗୃହିଣୀର ଅନ୍ତରୁଲ ଆବେଦନ ଓ କାତର ଅନୁସନ୍ଧାନ ଏବଂ ସର୍ବୋପରି ଏକ ସମ୍ବେଦନଶୀଳ ମାନବ ବନ୍ଦନା ଏ ସବୁଥିରୁ ସ୍ପଷ୍ଟ ଲକ୍ଷ୍ୟ କରାଯାଇଥାଏ । ହସ କାନ୍ଦର ଗପ ସେଇ ପଲ୍ଲୀ-ଗୃହିଣୀର ସ୍ୱଭାବ ସୁନ୍ଦର ଚର୍ଚ୍ଚା ।

ଏଇ ହସ କାନ୍ଦର ଏକ ଜୀବନ୍ତ ଚିତ୍ର-'ମୁଁ କାତ ପିନ୍ଧିବି କାଠ' ଗଳ୍ପ । ଗାଁର ଜଣେ ବଢ଼େଇର କର୍ମମୁଖର ଜୀବନ, ତାର ବ୍ୟକ୍ତିଗତ ପାରିବାରିକ ପରିସ୍ଥିତି, ସ୍ୱାମୀ ସ୍ତ୍ରୀର ସମ୍ପର୍କ, ପୁଅ ବିବାହ କରି ବୋହୂ ଆସିଲା ପରେ ଶାଶୁ ବୋହୂର ସମ୍ପର୍କ, ବୋହୂର କ୍ରମ ଆଧିପତ୍ୟ ଓ ଶାଶୁର ଅସହାୟତାକୁ ଲେଖକ ସୁନ୍ଦର ଭାବରେ ରୂପାୟନ କରିଅଛନ୍ତି । ଯେଉଁ ଶାଶୁଟି ଥିଲା ଘରର ମାଲିକାଣୀ ସେ କ୍ରମେ ବୋହୂର ଚକ୍ରାନ୍ତରେ ଘରୁ ବାହାରକୁ ଆସିଲା । ଘରର ବାହାରେ ହିଁ ରହିଲା । ସ୍ୱାମୀର ସେବା ନାହିଁ କି ପୁଅର ହାନିଲାଭ ବୁଝିବା ନାହିଁ । ଯେମିତି ସେ ଜଣେ ଅଦରକାରୀ ଜୀବ । ଏହି ଗଳ୍ପଟି ପଢ଼ିଲାବେଳେ ବସନ୍ତ କୁମାରୀ ପଟ୍ଟନାୟକଙ୍କର 'ଅମଡ଼ାବାଟ' ଉପନ୍ୟାସରେ ଶାଶୁ ଓ ବୋହୂର ସମ୍ପର୍କ ସ୍ୱତଃ ମନକୁ ଆସିଯାଏ । ତଥାପି ଲେଖକ ଏହି ବର୍ଣ୍ଣନା ମଧ୍ୟରେ ପଲ୍ଲୀ ଜୀବନର ଭାବବୋଧକୁ ରୂପାୟନ କରିଅଛନ୍ତି । 'ଏ ପୁଅ କ'ଣ କହୁଚି !' ଗଳ୍ପରେ ଗ୍ରାମ୍ୟ ଜୀବନର ଆଉ ଏକ ଭିନ୍ନ ଦିଗକୁ ଲେଖକ ଦେଖାଇ ଅଛନ୍ତି । ଏକ ଦିଗରେ ଶୋଷକର ଉଲ୍ଲଙ୍ଘ ଉଲ୍ଲାସ, ଅନ୍ୟ ଦିଗରେ ଅସହାୟର କ୍ରମୋତ୍ଥାନ ଜନିତ ଆପଣାର ଦାବି ଓ ଅଧିକାର ସମ୍ପର୍କରେ ସଚେତନତା—ଏହି ଦ୍ୱନ୍ଦ୍ୱ ଓ ପରିଣତିକୁ ଏଥିରେ ପ୍ରକାଶ କରାଯାଇଅଛି । ରାଧାଗୋବିନ୍ଦ ଚରିତ୍ରକୁ ବିଚାର କଲାବେଳେ ଫକୀରମୋହନ ସେନାପତିଙ୍କର 'ଛମାଣ ଆଠଗୁଣ୍ଠ' ଉପନ୍ୟାସର ରାମଚନ୍ଦ୍ର ମଙ୍ଗରାଜ ସ୍ୱତଃ ମନକୁ ଆସନ୍ତି । ମଙ୍ଗରାଜ ଶୋଷକ । କେତେ ଦୁର୍ବଳ-ଅସହାୟ-ବିଧବାଙ୍କର ସମ୍ପତ୍ତିକୁ ନେଇ ନିଜର ସମ୍ପତ୍ତି ବଢ଼ାଇଥିଲେ । ଏହି ଶୋଷଣକୁ ମଧ୍ୟ ଆଲୋଚ୍ୟ ରାଧାଗୋବିନ୍ଦ ଚରିତ୍ରରୁ ଦେଖିବାକୁ ମିଳେ । ଏ ଚରିତ୍ର ସ୍ୱାଧୀନତା ପରବର୍ତ୍ତୀ ପରିବର୍ତ୍ତିତ ପରିସ୍ଥିତିରେ ଶୋଷକ ଚରିତ୍ର । ବିନ୍ଦୁ କ୍ଷୁଦ୍ର ଜୀବନକୁ ମାଡ଼ି ମକଚି ସେ ହୋଇଛନ୍ତି ବଡ଼ଲୋକ ।

ତାଙ୍କ ପକ୍ଷରେ ଧନ ସମ୍ପତ୍ତି ହିଁ ଏକାନ୍ତ ବଡ଼ । ମଣିଷକୁ ସେ ଚିହ୍ନି ନାହାନ୍ତି । କରଜ ଦେଇ କେତେ ଲୋକଙ୍କ ଜମିବାଡ଼ି ନେଇଛନ୍ତି । ମକଦ୍ଦମା ମାମଲା କରି କେତେକଙ୍କୁ ସର୍ବସ୍ୱାନ୍ତ କରିଅଛନ୍ତି । ସ୍ୱାଧୀନତା ପରେ ଜମିଦାରୀ ଓ ମକଦ୍ଦମୀ ଉଠିଗଲେ ମଧ୍ୟ ଏହିପରି ଚରିତ୍ରମାନେ ନିଜ ନିଜ ଜମିକୁ ସବୁ ବେନାମି କରି ସରକାରଙ୍କ ଆଇନ୍‌କୁ ଭୂଆଁ ବୁଲାଇଲେ । ସମୟ ବଦଳିଲା । ଯେଉଁମାନେ ଶୋଷିତ ଥିଲେ ସେମାନେ ହେଲେ ଜାଗ୍ରତ, ଜବରଦସ୍ତ ଜମି ଦଖଲ କଲେ । ବିଲରୁ ଫସଲ କାଟିନେଲେ । ରାଧାଗୋବିନ୍ଦ ବ୍ୟସ୍ତ ହୋଇ ପଡ଼ିଲେ । "ଗାଆଁର ଇତିହାସକୁ ନିଜ ଖିଆଲରେ ଜୀବନ ସାରା ଲାଗି ଲାଗି ସେ ଗଢ଼ିଥିଲେ । ଏବେ ଇତିହାସ ଅରମା ମାଡ଼ି ଗୁଳିଚ ଗୋଟାଏ ପଦ୍ମତୋଳା ପଦ ନ ମାନୁଥିବା ଶଙ୍ଖଚୂଡ଼ପରି ।" । ୧୧ । ଅତୀତର ଶୋଷକ ସ୍ୱାଧୀନତା ପରେ ନୂତନ ପୋଷାକରେ ହୋଇଛି ଆବିର୍ଭୂତ । ଅତୀତର ସମାଜ ଆଜି ବଦଳିଛି । ସମାଜବାଦର ହୋଇଛି କ୍ରମ ବିକାଶ । ମୂଲିଆର ହୋଇଛି ନବ ଜାଗରଣ । ରାଧାଗୋବିନ୍ଦ ଅତୀତ ପରମ୍ପରାର ସୁବିଧାବାଦୀ ଜମି ମାଲିକ । ଏହି ପରମ୍ପରା କେବେହେଲେ ମୂଲିଆ ମାଲିକ ହେବାକୁ ଚାହେଁ ନାହିଁ । ଏହି ପରମ୍ପରା ଚାହେଁ ଯିଏ ମୂଲିଆ, ସେ ଚିରକାଳ ହିଁ ମୂଲିଆ । ମୂଲିଆର ସୁଖ ଓ ଆନନ୍ଦକୁ ଏ ପରମ୍ପରା ସହେ ନାହିଁ । ଭାରତବର୍ଷରେ ସ୍ୱାଧୀନତା ପରେ ଏ ଅବସ୍ଥା ବଦଳିଛି । ବିଶ୍ୱ ଇତିହାସରେ ବଲ୍‌ସେଭିକ ବିପ୍ଳବ ପରଠାରୁ ଏହି ନୂତନ ସମାଜବାଦୀ ଚେତନାର ହୋଇଛି ଉତ୍ତରଣ । ତେଣୁ ମୂଲିଆ ଓ ବଞ୍ଚିତ ହୋଇଛି ସଚେତନ । ଫକୀରମୋହନ ଯୁଗରେ ଜମିଦାର ନିରୀହ ଲୋକଙ୍କ ଘରଦ୍ୱାର ଭାଙ୍ଗି ଦେଇଛି, ଜମିକୁ ଦଖଲ କରି ନେଇଛି । ଗରିବ କେବଳ ଗଡ଼ାଇଛି ଲୁହ । ଭାଗ୍ୟ ହାତରେ ଛାଡ଼ି ଦେଇଛି ସବୁ । ସେ ପ୍ରତିବାଦ କରି ପାରିନାହିଁ । ଯୁଦ୍ଧୋତ୍ତର କାଳରେ ସେଇ ମଣିଷ ପ୍ରତିବାଦ କରିଛି । ଭାଗ୍ୟକୁ ସେ ଆଦରି ନେଇନାହିଁ । ଶୋଷକ ସାହୁକାର ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରିଛି । ଆପଣାର ଅସ୍ତ୍ରକୁ ଉଠାଇଛି । ଏଠି ସେ ଏକାକୀ । ସାଙ୍ଗରେ ତାର ଆଉ କେହି ନାହିଁ । ଭଗବତୀ ଚରଣଙ୍କ 'ଶିକାର' ଗଳ୍ପର ଘିନୁଆ ବା ଗୋପୀନାଥଙ୍କ ପରଜା, ଉପନ୍ୟାସର ମାଣ୍ଡି ଆଜାନ—ଶୁକ୍ରୁଜାନି—ଟିକ୍ରା ଆଦି ସମସ୍ତେ ଏକକ । ସ୍ୱାଧୀନତା ପରେ ଏହି ଏକକ ଜାଗରଣ ସାମାଜିକ ଜାଗରଣରେ ପରିଣତ ହୋଇଛି । ଜଣେ ଶୋଷିତ ପାଇଁ ସବୁ ଶୋଷିତ ଠୁଳ ହୋଇଯାଉଛନ୍ତି ଗୋଜଣା, ଖଣତି, ମୁଣ୍ଡି ଝାଡ଼ିକା, ଗୁଣ୍ଡୁଣୀ, ବାଡ଼ି ଓ କୁରାଢ଼ି ଧରି । ତେଣୁ ଉଦିଆ ପରି ଶୋଷିତ ମଣିଷ ଆଉ ଏକାକୀ ନୁହେଁ; ସେ ବହୁ । ତେଣୁ ସେମାନେ ଶୋଷକ ବିରୁଦ୍ଧରେ ଚଳାଇଛନ୍ତି ଅଭିଯାନ । ରାଧାଗୋବିନ୍ଦଙ୍କ ବିଲରୁ ଧାନ କାଟି ନେଇଛନ୍ତି, ଖଳାରୁ ଧାନ ନେଇ ଯାଇଛନ୍ତି । ନିମ୍ନମଧ୍ୟବିତ୍ତ, ଶ୍ରମିକ ସର୍ବହରା ନିଜ ନିଜ ଦାବୀ ସମ୍ପର୍କରେ ସଚେତନ । ବୁର୍ଜୁୟା ଶୋଷକର ପ୍ରତୀକ ରାଧାଗୋବିନ୍ଦ

୧୧ । ହରିପ୍ରସାଦ ଦାସଙ୍କ ଗପ—'ଏ ପୃଥିବୀ କାହାର କହୁଛ !'—ପୃ ୪୧

କେବଳ ଆହତ ସର୍ପ ପରି ଫଁ ଫଁ ହେଲେ । କାହାକୁ ସେ ଦଂଶିବେ ? ନିଜ ଫଣାର ଚୋଟ ନିଜ ଉପରେ ହିଁ ପଡ଼ିଲା । ସବୁ ବୁର୍ଜୁଆ ଶୋଷକ ସମାଜ ପ୍ରତି ଏହା ଏକ ଚେତାବନୀ । ଯେତେବେଳେ ବୁର୍ଜୁଆର ରକ୍ଷା କବଚ ଆଇନ୍ ଓ ବିଗ୍ରହ ଭାଙ୍ଗିପଡ଼େ ସେତେବେଳେ ବୁର୍ଜୁଆ ମଧ୍ୟ ଭାଙ୍ଗିପଡ଼େ । ସେତିକିବେଳେ ସେ ଭାବେ ଧନ ଏକ ଲାଞ୍ଛନା—ଅପାର ଅପମାନ । କଥାକାର କୁଞ୍ଜବିହାରୀ ଏହି ପରିବର୍ତ୍ତନ ଓ ସମାଜବାଦୀ ଭାବବୋଧକୁ ପଲ୍ଲୀଜୀବନ ଭିତ୍ତିରେ ଯେପରି ଦେଖାଇଅଛନ୍ତି ତାହା ବାସ୍ତବିକ ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

ଗ୍ରାମ୍ୟ ଜୀବନରେ ଶୋଷଣ ଓ ଅସହାୟତାର ଆଉ ଏକ ଦିଗ 'କହିଲ, ମୁଁ କ'ଣ କରିବି' ଗଳ୍ପରେ ବର୍ଣ୍ଣିତ । ଭୂମି କେନ୍ଦ୍ରିକ ଅର୍ଥନୀତି ହିଁ ଶୋଷଣର କାରଣ ହୋଇଛି । ଏହି ଶୋଷଣ ହୋଇଛି କାଗଜରେ ଟିପ ଚିହ୍ନ ବଳରେ । କେତେ ଲୋକ ଏହାର ଯୋଗୁ ହୋଇଛନ୍ତି ବାସ୍ତୁହରା । ସୁରୁଙ୍ଗୀ ତା ସ୍ୱାମୀ ପୁଣି ସନ୍ତାନହରା ନାରୀଠାରୁ ଟିପଚିହ୍ନ ନେଇ ଆପଣାର ପୁତୁରା ହେଲା ସମ୍ପତ୍ତିର ଅଧିକାରୀ । ସୁରୁଙ୍ଗୀ ହେଲା ଅସହାୟା । ଗାଁ ଲୋକଙ୍କ ପାଖରେ ସେ ହେଲା ଫେରାଦ । କ'ଣ ସେ କରିବ ? କିପରି ସେ ବଞ୍ଚିବ ? ଗାଁଲୋକେ ନିଶାପ କଲେ, ମାତ୍ର ପୁତୁରା ନିଷ୍ଠ ଫାଙ୍କି ଦେଇଛି । ଲେଖକ ତେଣୁ ଗ୍ରାମ୍ୟ ଜୀବନକୁ ଅନୁଧ୍ୟାନ କରି ମତ ଦେଇଛନ୍ତି—"ଗାଁ ସମାଜର ସେଇ ଐକ୍ୟ ବା ଦୃଢ଼ତା ନାହିଁ—ଅମାନିଆଁ ନାକରେ ଦଉଡ଼ି ଲଗାଇ ଘୋଷାରିବ ! ଏବେ ରାଜନୀତିରେ ଜନତା ଫାଙ୍କ ଫାଙ୍କ ।" । ୧୨ । ଅତୀତରେ ଗାଁ ସଭା ଥିଲା ଶକ୍ତିଶାଳୀ । କୌଣସି ବ୍ୟକ୍ତି ସେହି ସଭାର ନିଷ୍ପତ୍ତିକୁ ଫାଙ୍କି ପାରୁ ନଥିଲା । ବର୍ତ୍ତମାନ ଯୁଗରେ ଅତୀତର ସେହି ଦୃଢ଼ତା ନାହିଁ । ନିମ୍ନ ମଧ୍ୟବିତ୍ତ ଚରିତ୍ରରେ ଅତୀତର ଜମିଦାର, ସାହୁକାର, ରାଜାର ନିଷ୍ଠୁରତା, ଶୋଷଣ ଓ ଅତ୍ୟାଚାର ଏବେ ମଧ୍ୟ ବିରାଜିତ । ଏଥିପାଇଁ—ଲୋଡ଼ା ଏକ ମହାବନ୍ୟା, ଯେ ଅତୀତର ସେଇ ପାପ କଳଙ୍କ ପୋଛି ଦେବ, ମଣିଷକୁ କରିବ କାନ୍ଥବାଡ଼, ଭେଦବାଦହୀନ ଗୋଟାଏ ଜାତି, ସଫେଦ, ସୁନ୍ଦର ।" କଥାକାରଙ୍କର ସ୍ରଷ୍ଟାମାନସ ଏକ ସମ୍ବେଦନଶୀଳ ମାନସ । ଏହି ମାନସ ଚାହିଁଛି ଏକ ଶୋଷଣ ମୁକ୍ତ ସମାଜ, ଏକ ଭେଦ-ବାଦହୀନ ମାନବବାଦୀ ସମାଜ । ଗଭୀର ଭାବରେ ଆଧୁନିକ ଗ୍ରାମ୍ୟ ଜୀବନର ଐକ୍ୟ-ହୀନତାକୁ ଲେଖକ ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ନିମ୍ନ ମଧ୍ୟବିତ୍ତ ମନ ଭିତରେ ପୁଣି ଶୋଷଣର ବୀଜ ନିହିତ ରହି ନୂତନ ଭାବରେ ଆତ୍ମପ୍ରକାଶ କରୁଛି ତାକୁ ସେ ଅନୁଧ୍ୟାନ କରିଅଛନ୍ତି । ଏହି ଶୋଷଣ-ମନୋଭାବ ଓ ମାନବିକ ସମ୍ବେଦନାର ଅଭାବରେ ସୁରୁଙ୍ଗୀ ପରି କେତେ ଅସହାୟା ନାରୀ ଓ ଅସହାୟ ମଣିଷ ଆଜି ରାସ୍ତାଘାଟରେ ବୁଲୁଛନ୍ତି । ସେମାନେ ପ୍ରଶ୍ନ କରୁଛନ୍ତି—କ'ଣ କରିବେ ? କିପରି ସେମାନେ ବଞ୍ଚିବେ ? ମାନବବାଦ ବା ସମାଜବାଦ କେହି ସେମାନଙ୍କ କଥା ଶୁଣୁ ନାହିଁ

---

୧୨ । ହସ କାନ୍ଦର ଗପ—'କହିଲ, ମୁଁ କ'ଣ କରିବି'—ପୃ ୭୫

ସେହି ଅସହାୟ ମଣିଷ ସବୁ ଦୁଃଖ ସୁଖକୁ ଭଗବାନଙ୍କ ଲୀଳା ଭାବରେ ଗ୍ରହଣ କରି ନେଉଛି । "ଜୀବନଟା ମଣିଷର ଲୀଳା" । ୧୩ । ଏକଥାକୁ ସେ ସ୍ୱୀକାର କରୁନାହିଁ । ଯୁଗ ଯୁଗର ସରଳ ଧର୍ମ ବିଶ୍ୱାସ ତାର ମନରେ ସୃଷ୍ଟି କରିଛି ଗୋଟିଏ ଧାରଣା— ଭଗବାନ ହିଁ ଏ ସୃଷ୍ଟିର କର୍ତ୍ତା । ଏ ସଂସାର ତାଙ୍କର ଲୀଳା । ବାସ୍ତବବାଦୀ ଚିନ୍ତା କହେ_ମଣିଷ ବଡ ହୋଇଛି ତାର ବାହୁବଳରେ, ତାର ବୁଦ୍ଧିର ବିକାଶରେ । କର୍ମ-କୋଠି, ବାବାଜୀ, ଭିକାରୀଙ୍କ ଯୋଗେ ଦେଶ ନଷ୍ଟ ହେଉଛି । ଭଗବାନଙ୍କୁ ଡାକି ମଣିଷ ବଡ ହୋଇନାହିଁ । ସାଧନା ଦ୍ୱାରା ମଣିଷ ସବୁ କିଛି ସମ୍ଭବ କରେ । ଭଗବାନ ଏକ ମିଥ୍ୟା । ଅଥଚ ଗାଁର ସରଳ ମଣିଷ ଏ କଥା ବିଶ୍ୱାସ କରେ ନାହିଁ । ନଟପରି ସରଳ ଚିନ୍ତାପ୍ରିୟ ମଣିଷ ସେଇ ପରମ୍ପରାଗତ ଧର୍ମକୁ ବିଶ୍ୱାସ କରେ । ଅଥଚ ଯେଉଁଦିନ ସେ ଉପଲବ୍ଧି କଲା ବାତ୍ୟାର ପ୍ରକୋପରେ ତାର ଘର ଭାଙ୍ଗି ଯାଇଛି, ବିଲରୁ ଧାନ ଚାଲି-ଯାଇଛି, ଦାରିଦ୍ର୍ୟର କଷାଘାତରେ ତାର ପୁଅ ମରିଯାଇଛି, ପୋଖରୀ ବୋହୂର ପେଟ ପୋଡ଼ି ଜଳି ଯାଉଛି, ଘରେ ପିଲାମାନେ ତାକୁ ଖାଇବାକୁ ମାଗୁଛନ୍ତି ସେତିକିବେଳେ ତାର ସବୁ ଆଦର୍ଶ ଭାଙ୍ଗିଯିବାକୁ ଲାଗିଛି । ଏଥର ବାତ୍ୟା ତାର ମନକୁ କଲା ବିକ୍ଷୁବ୍ଧ । ମଣିଷର ଶକ୍ତି ଉପରେ ତାର ଆସ୍ଥା ଆସିଲା ବେଳକୁ ସେ କିନ୍ତୁ କିଂକର୍ତ୍ତବ୍ୟବିମୂଢ଼ ।

ଗ୍ରାମ୍ୟଜୀବନର ସ୍ୱାଭାବିକ ଚିତ୍ରକୁ ଲେଖକ ବିଭିନ୍ନ ଗଳ୍ପରେ ରୂପାୟନ କରିବା ସଙ୍ଗେସଙ୍ଗେ ଆଧୁନିକ ଯୁଗରେ ତାହା କିପରି ଅନ୍ୟ ସମସ୍ୟାର ସମ୍ମୁଖୀନ ହୋଇଛି, କିପରି ସେଠି ସହୃଦ ଲୋପ ପାଇଯାଇଛି—ସେସବୁ ବିଷୟକୁ ସେ ସୁନ୍ଦର ଭାବରେ ପ୍ରକାଶ କରି ତାରି ଭିତରେ ଏକ ମାନବିକ ଆଦର୍ଶକୁ ଫୁଟାଇ ଅଛନ୍ତି । ତେଣୁ ଗ୍ରାମ୍ୟଜୀବନ ଭିତ୍ତିକ ଗଳ୍ପଗୁଡ଼ିକ ସ୍ରଷ୍ଟା ହୃଦୟର ସମ୍ବେଦନଶୀଳ ଆଦର୍ଶବୋଧର ପରିଚାୟକ ।

### ମାନବବାଦୀ ଚିନ୍ତାଧାରାର ସଫଳ ରୂପାୟନ :

ଆଧୁନିକ କଥାକାର ସମ୍ବେଦନଶୀଳ ମାନବିକତାର ରୂପକାର । ସମାଜର ନିମ୍ନସ୍ତରର ମଣିଷ ସମାଜ ପ୍ରତି ତାର ଅନ୍ତରରେ ସୃଷ୍ଟି ହୁଏ ଗଭୀର ସମତ୍ୱବୋଧ । ଏହି କାରଣରୁ ସେ ଶୋଷକ ଓ ସୁବିଧାବାଦୀ ମଣିଷର ଶୋଷଣ ଏବଂ ଅତ୍ୟାଚାରକୁ ଦେଖାଇ ଅପରପକ୍ଷରେ ଅତ୍ୟାଚାରିତ ଓ ଶୋଷିତର ଅସହାୟତା ଏବଂ ଦୁଃଖକୁ ରୂପାୟନ କରେ । ତାରି ମଧ୍ୟ ଦେଇ ସେ ଶୋଷିତ ପ୍ରତି ସମ୍ବେଦନା ସୃଷ୍ଟି କରେ । ଯେଉଁ ସାହିତ୍ୟରେ ଏହି ମାନବ ବନ୍ଦନା ନାହିଁ ତାହା ସୃଜନଶୀଳ କଳା ପ୍ରତି ବିପଦ । ବୁର୍ଜୁୟା-କଳା ମାନବିକତାର ବିରୋଧୀ । ତେଣୁ ଜଣେ ସଫଳ ସ୍ରଷ୍ଟା ତାର ସୃଷ୍ଟି ମଧ୍ୟରେ ମାନବ ବନ୍ଦନା କରେ । ସେଥିରେ ସେ ସୃଷ୍ଟି କରେ ଚରିତ୍ର । ସେହି ଚରିତ୍ରମାନଙ୍କର ମହତ୍-ଗୁଣରୁ ହିଁ ଏକ ଆଦର୍ଶ ସୃଷ୍ଟି କରେ, ଯାହାକି ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ଟର୍ଚ୍ଚ ଆଲୋକପରି

୧୩ । ହୁଏ କାହାର ଗପ ଭଗବାନଙ୍କ ଲୀଳା—ପୃ ୯୫

କାର୍ଯ୍ୟ କରେ । True wri ers have always attempted to weate ch. ı cters whcse noble qualities made them an ideal lighting the wav to a bright future like a flaming toıc ' । ୧୪ । ଲେଖକ ଚରିତ୍ରର ରୂପାୟନ ମଧ୍ୟରେ ଆଦର୍ଶ ସୃଷ୍ଟି କରେ । ଏହି ଆଦର୍ଶ ହିଁ ମଣିଷର ଅପୂର୍ଣ୍ଣତା ବିରୁଦ୍ଧରେ ସଂଗ୍ରାମ କରେ । କାରଣ ଆଦର୍ଶ ଦ୍ୱାରା ପରିଚାଳିତ ହୋଇ ଜୀବନ ପ୍ରଗତି ଓ ପୂର୍ଣ୍ଣତା ଅଭିମୁଖେ ଗତି କରେ । ସେହି ଆଦର୍ଶ ହୁଏତ ଏବେ ନ ଥାଏ; କିନ୍ତୁ ଆସିବା ସମ୍ଭବ । ମଣିଷର ଏହି ଆଦର୍ଶ ପ୍ରାକୃତିକ; ଅତି ଅପ୍ରାକୃତିକ ନୁହେଁ । ଲେନିନ ତେଣୁ କହନ୍ତି —" × × a human ideal corresponding to nature and not a supernatural ideal." । ୧୫ । କୃଷ୍ଣଚନ୍ଦ୍ରଙ୍କ କଥା ସାହିତ୍ୟର ଆଦର୍ଶ, ଏହି ଦୃଷ୍ଟିରୁ ଅତିପ୍ରାକୃତିକ ନୁହେଁ; ପ୍ରାକୃତିକ, ଅତିମାନବିକ ନୁହେଁ; ମାନବିକ ।

'ଭଗବାନଙ୍କ ଲୀଳା' ଗଳ୍ପରେ ଲେଖକ ଜୀବନକୁ ମଣିଷର ଲୀଳା ଭାବରେ ଗ୍ରହଣ କରିଅଛନ୍ତି । ଅତିପ୍ରାକୃତିକ ଲୀଳା ଭାବରେ ଜୀବନକୁ ଗ୍ରହଣ କରୁଥିବା ବ୍ୟକ୍ତି କିପରି ନାନା ଦୁଃଖ ଓ ଯନ୍ତ୍ରଣାର ସମ୍ମୁଖୀନ ହୁଏ ତାର ଚିତ୍ର ଏଥିରେ ଅଛି । ଅତି ପ୍ରାକୃତିକତାରୁ ମଣିଷର ମନକୁ ପ୍ରାକୃତିକତା ଓ ସ୍ୱାଭାବିକତା ଆଡ଼କୁ ଫେରାଇ ନେବା ଲାଗି ଏହିଗଳ୍ପ ଏକ ଆଶାନ୍ୱିତ ଆହ୍ୱାନ । ଲେଖକ ତାଙ୍କର 'ନବମାଳିକା (୧୯୫୧)ର ମୁଖବନ୍ଧରେ ଲେଖିଛନ୍ତି—"ମୋ ଜାତିର ଅନ୍ନବସ୍ତ୍ରହୀନ ଦୁର୍ବଳ କଙ୍କାଳକୁ ଯେତେବେଳେ ଦେଖେ, ଆତ୍ମବିସ୍ମୃତ ତରୁଣ, ବିଳାସୀ ଅଳସ ଧନିକ, ଶୋଷକ ସାହୁକାର, ଅର୍ଥଲୋଭୀ ବ୍ୟବସାୟୀ, ସୁବିଧାବାଦୀ ନେତା, ମାମଲତଖୋର ମାମଲତକାରକୁ ଯେତେବେଳେ ଦେଖେ, ସେତେବେଳେ ମୋ ମନରେ ଆସେ ବିପ୍ଳବ । ଏ ସମାଜରେ ବହୁତ କିଛି ଓଲଟପାଲଟ କରିଦେବାକୁ ଇଚ୍ଛା ହୁଏ । ବୀରତ୍ୱ, ମହତ୍ତ୍ୱ, ମନୀଷାରେ ବରିଷ୍ଠ ଏ ଜାତିର ଦୁର୍ଦ୍ଦଶା ନୟନରେ ଅଶ୍ରୁ ଆଣେ ନାହିଁ, ଆଣେ ଅଗ୍ନି ।" ଷଷ୍ଠଦଶକର ଆଦ୍ୟପାଦରେ ଲେଖକଙ୍କର ଏହି ଅନୁଭବ ସେ ଏକ ଲୋମଶ ନୀଳ ହାତ' (୧୯୬୪) କବିତା ସଂକଳନ ବେଳକୁ ଆହୁରି ହୋଇଛି ଶାଣିତ । ଧୂଳି ଧୂମ ଧୂସରିତ ଜୀବନର ଅଶ୍ରୁକୁ ସେ ଆପଣାର ସୃଷ୍ଟି-ବଳୟର ପ୍ରେରଣା ଭାବରେ ଗ୍ରହଣ କରି ସେଥିରେ ସୃଷ୍ଟି କରିଛନ୍ତି ମାନବିକ ସମ୍ବେଦନା । ଆପଣାର ଗ୍ରାମରେ ଭଗବାନ ଦାସ ପରି ଧନୀ ଓ ଶୋଷକ ଲୋକଙ୍କୁ ସେ ଦେଖିଥିଲେ । ଏପରି ଧନୀ ଲୋକ ଗୃହେଁ ଦୁର୍ଭିକ୍ଷ ଓ ମହାମାରୀ, ବନ୍ୟା ଓ ବାତ୍ୟା । ସାଧାରଣ ଲୋକଙ୍କୁ ଶୋଷଣ କରି ଧନୀ ଆହୁରି ଏହି ପରିସ୍ଥିତିରେ ଧନୀ ହୁଏ ।

୧୪ । Problems of Modern Aesthetics—P.
( Progress Publisher )—P 54

୧୫ । Lenin : Collected works Vo 138—P. 75

ଆତ୍ମ ଜୀବନୀରେ ତେଣୁ ସେ ଲେଖିଛନ୍ତି—"ମୋର ବିଶ୍ୱାସ, ଅଧିକାଂଶ ଧନୀ ବ୍ୟକ୍ତିଙ୍କର ମତିଗତି ପ୍ରାୟ ୀ ।ପରି । ଦୁର୍ଭିକ୍ଷକୁ ଡାକନ୍ତି ସେମାନେ; ଅକାଳ ନ ପଡ଼ିଲେ ଲୋକେ ଅମାନିଆ ହୋଇଯିବେ । ଲୋକଙ୍କ ବିପଦ ଭିତରୁ ହିଁ ବଡ଼ ଲୋକଙ୍କ ସମ୍ପଦ ଛିଡ଼ାହୁଏ ।" । ୧୬ । ଧନୀମାନଙ୍କର ଏହି ମନୋଭାବକୁ ଲେଖକ ବାଲ୍ୟ ଜୀବନରୁ ଦେଖି ଆସିଥିଲେ । ତେଣୁ ତାଙ୍କର ସମ୍ବେଦନା ଦରିଦ୍ର ସମାଜ ପ୍ରତି । ତେଣୁ ସେ ଭାଗ୍ୟବାଦୀ ନୁହଁନ୍ତି; କର୍ମବାଦୀ, ମନୀଷିର ଶଙ୍କର, ଉତ୍ତରଣ ପ୍ରୟାସୀ । 'ଏ ଯୁଅ କ'ଣ କହୁଚି', 'ଭଗବାନଙ୍କ ଲୀଳା', 'କହିଲ ମୁଁ କ'ଣ କରିବି' ଆଦି ଗଳ୍ପକୁ ଅନୁଧ୍ୟାନ କଲେ ଏହି ଭାବ-ସତ୍ୟକୁହିଁ ଦେଖିବାକୁ ମି ଥାଏ ।

ଡାକ୍ତରୀ ବିଦ୍ୟାର ପଦେ ପଦେ ମାନବିକତା ଆବଶ୍ୟକ । ଅପରେସନ ଟେବୁଲ ଉପରେ ରୋଗୀକୁ ଶୁଆଇ ଅନ୍ତର ଭିତରେ ମାନବିକ ସମ୍ବେଦନା ନ ଆସିଲେ ଚିକିତ୍ସାରେ ମୂଲ୍ୟ କ'ଣ ? ବିରାଡ଼ି ପରି ଡାକ୍ତର ସମ୍ବେଦନଶୀଳ ହେଲେ, ଔଷଧ ଉପରେ ଶ୍ୟେନ ଦୃଷ୍ଟି ରଖିଲେ, ମନ ଭିତରେ ରହିଲେ ଉଦଗ୍ର ଅର୍ଥ କାମନା—ରୋଗୀ ଭଲ ହେବ କିପରି ? ଦରିଦ୍ର ରୋଗୀର ଅବସ୍ଥାକୁ କିଏ ଅନୁଭବ କରେ ? ମୂଷା, ଠେକୁଆ ବା ମାଙ୍କଡ଼ ପରି ଦରିଦ୍ରର ଦେହ । ରୋଗୀ ମରିଗଲେ ଦୁଃଖ କ'ଣ ? ବରଂ ରୋଗୀ ମଲେ ତାର ମୃତ ଶରୀରକୁ ନେଇ ନାନା ପରୀକ୍ଷା ହେବ । "ମୃତ୍ୟୁ ଜୀବନକୁ ଦେଇଛି ଏଇ ଦକ୍ଷିଣା । ଅଭିଜ୍ଞତାରୁ ଶିଖାଇବ; ଅନୁଭୂତରୁ ମର୍ମଜ୍ଞାନ ଦେବ । ଚିକିତ୍ସା ଓ ଅସ୍ତ୍ରୋପଚାରର ଶିହଲପାଲ ହେବ ଏଠି । ମୃତ୍ୟୁ ଅପ୍ରୟୋଜନୀୟ ନୁହେଁ । ଜୀବନ ଓ ଜୀବନର ପରିପୂରକ ସେ; ଭୂମିକା । ଜୀବନର ପରୀକ୍ଷା ଲାଗି ପ୍ରୟୋଗାଗାରର ପରୀକ୍ଷିତ ଦ୍ରବ୍ୟ ପରି ମୃତ୍ୟୁର ଆତ୍ମଦାନ ଏକାନ୍ତ ମହନୀୟ । ମୃତ୍ୟୁ ଜୀବନର ବୈତାଳିକ; ସହାର ସୃଷ୍ଟିର ସବାହିକ ।" । ୧୭ । ଏକ ପକ୍ଷରେ ଡାକ୍ତରର ଦରିଦ୍ର ରୋଗୀପ୍ରତି ଅନାସକ୍ତି ଓ ସମ୍ବେଦନାର ଅଭାବ, ଅନ୍ୟପକ୍ଷରେ ମୃତ୍ୟୁ ପରେ ତାର କଙ୍କାଳକୁ ନେଇ ପରୀକ୍ଷା—ଏହାର ମଧ୍ୟରେ ସମ୍ବେଦନଶୀଳ ଲେଖକ ହୃଦୟର ତାର୍ଥିକ ଦୃଷ୍ଟି ପ୍ରକଟିତ । ମୃତ୍ୟୁମୁଖୀ ଦରିଦ୍ର ମନୀଷିର ଆପେ କେତେ ଚିନ୍ତା । ପେଟ୍ର ଚିନ୍ତା, ବନ୍ଧୁଦାର ଚିନ୍ତା କରଜ ପରିଶୋଧ କରିବାର ଚିନ୍ତା । ବଢ଼ିଲା ଝିଅର ବାହାଘର ଚିନ୍ତା । ଅଥଚ ସେ ମରେ । କେମିତ ମଲା ଅସହାୟ ଦରିଦ୍ର ବଟ ବେହେରା । ତେଣୁ ଲେଖକ ଯଥାର୍ଥରେ କହିଛନ୍ତି—"ଏଇ କଲେଜରୁ ଡାକ୍ତର ବାହାରୁଛନ୍ତି, ମଣିଷ ଭିତରୁ ନାହାନ୍ତି । ଦୁଃଖୀ ଦରିଦ୍ର ଚିକିତ୍ସାର ମୂଲ୍ୟ ଦେଇ ନପାରି ମରୁଛି । ଡାକ୍ତରର ଦୃଷ୍ଟି ପୁଞ୍ଜିପତିର ଦୃଷ୍ଟି ପରି ରକ୍ତଶୋଷୀ; ବହୁ ଜୀବନଜୀବୀ ହୋଇଛି ।" ବଟ ବେହେରାର କଙ୍କାଳ ଭିତରେ କେତେ

୧୬ । ମୋ କାହାଣୀ—ପୃ ୭୬-୭୭

୧୭ । ହିସ କାନ୍ଦର ଗପ—'କଙ୍କାଳର ସ୍ମୃତିଲିପି'—ପୃ ୧୬

ନଷ୍ଟ ବେହେରା, ଭଜନା ଖେଇ, ରାଧୁଆ ବାରିକ, ସାଧୁଆ ମଲ୍ଲିକ, ହଗୁରା ପଧାନର ଗ୍ରୁଇ ଆତ୍ମପ୍ରକାଶ କରିଛୁ । ସମସ୍ତେ ଖୋଜୁଛନ୍ତି ବ୍ୟାଧିର ମୂଳ । ଏଇ ମୂଳ ପାଇଛନ୍ତି ଆଧିରେ ।
"କିନ୍ତୁ ଆଧିର ମୂଳ କେଉଁଠି ?"—ଏହି ପ୍ରଶ୍ନବାଚୀ ମାନବବାଦୀ କଥାକାରଙ୍କର ।

'ଏ ପୁଅ କ'ଣ କହୁଚ' ଗଳ୍ପରେ ସେଇ ମାନବିକ ସମ୍ବେଦନା । ଶୋଷକ ସଇତାନ ବାପାକୁ ପୁଅ ହରିଗୋବିନ୍ଦ କହୁଛି ମୂଲିଆ ତାଙ୍କଠାରୁ ଢେର ସୁଖୀ । କାରଣ ତାର ଇଜ୍ଜତ ଅଛି, ମହତ ଅଛି । ଅର୍ଥ ମଣିଷର ଇଜ୍ଜତ ନୁହେଁ; ତାହା ଲାଞ୍ଛନା, ଅପମାନ ଓ ଅଭିଶାପ । ଯୁଗ ଯୁଗଧରି ଶୋଷଣର ଭିତ୍ତି ଉପରେ ଛିଡ଼ା ହୋଇଥିବା ରାଧାଗୋବିନ୍ଦ ବିଚଳିତ ହୋଇ ପଡ଼ିଛନ୍ତି ଏଇ କଥାରେ । ମୂଲିଆର ଅଭିଯାନ, ମୂଲିଆର ଦାବୀ ସମ୍ପର୍କରେ ସଚେତନା ଓ ଶୋଷଣର ପରମ୍ପରାରୁ ଜନ୍ମ ନେଇଥିବା ନୂଆ ମଣିଷର ସର୍ବହରା ପ୍ରତି ନୂତନ ମଚେତନତା ଭିତରୁ ଏକ ମାନବବାଦୀ ଭାବଧାରା ପ୍ରକାଶ ପାଇଛି । ଏହି ସମ୍ବେଦନା ପୁଣି 'ଉଜଡ଼ ଚାଷୀ' ଗଳ୍ପରେ ପ୍ରକାଶିତ । ପେଟ ଗୃହଣୀକୁ ବଞ୍ଚାଇବା ପାଇଁ, ବସ୍ତିବାଦୀ ଦୁନିଆରେ ଟିକେ ଭଲ କରି ବଞ୍ଚିବା ପାଇଁ ଦାମ ସାହୁ ଅନ୍ୟାନ୍ୟ ଶ୍ରମିକମାନଙ୍କ ସହିତ କଲିକତା ଯାଇଥିଲା ମାତ୍ର ସେଠି ବାବୁର ସଂସାର ଭିତରେ ସେମାନଙ୍କର ସ୍ଥାନ କାହିଁ ? ଅଥଚ ସେହିମାନେ ହିଁ ନୂଆଯୁଗର ପୁନାଦ ପକାନ୍ତି । ଲେଖକ ତାର ସହିତ ମିତ୍ରତା ସ୍ଥାପନ କରିଅଛନ୍ତି । ତାକୁ ଦେଇଛନ୍ତି ବଞ୍ଚିବା ପାଇଁ ବଳ୍ଗ ଆହ୍ୱାନ । ତାର ଭିତରର ସୁପ୍ତ ମଣିଷକୁ ଜାଗ୍ରତ ହେବାକୁ ପ୍ରେରଣା ଦେଇଛନ୍ତି । ଅସହାୟ ଭାବରେ ଭାଗ୍ୟକୁ ଆଦରି ଭାଙ୍ଗି ପଡ଼ିଲେ ଶୋଷକ ବାବୁ ସମାଜ ଆହୁରି ଶୋଷଣ କରିବାକୁ ଆଗେଇ ଆସିବେ । ଦରିଦ୍ର ହୋଇ ଭିକ୍ଷାବୃତ୍ତି ଅବଲମ୍ବନ କରିବା ମଣିଷ ପକ୍ଷରେ ପାପ । ମଣିଷ କର୍ମଯୋଗୀ । ପର ଉପରେ ଭାର ଦେଇ ସମାଜ ବାହାରେ ନୂଆ ସମାଜ-ନୂଆ ସଂସାର ଗଢ଼ିବା ଅନୁଚିତ । "ଦେହରେ ବଳଥିବା ଲୋକ ଭିକ ମାଗି ବୁଲିବା ଏକ ପାପ, କାମ କରୁ କରୁ ମରିଯିବାହିଁ ସବୁଠାରୁ ବଡ଼ ପୁଣ୍ୟ ।" ଦୁର୍ଭିକ୍ଷ କବଳରେ ପଡ଼ି ଘରବାଡ଼ି ଜମି ଓ ପତ୍ନୀ ସନ୍ତାନକୁ ହରାଇଥିବା ମୁକୁଲା ଭିକାରୁଣୀ ତରିକୁ ବିବାହ କରି ଆଉ ଭିକ୍ଷା ମାଗିବାକୁ ଭଲ ପାଇ ନାହିଁ । ସେ ମୂଲ ଲାଗିଛି । ପରିଶ୍ରମ କରିଛି । ନୂଆ ସଂସାର ଗଢ଼ିଛି । ଲେଖକଙ୍କ ମାନବିକ ଦୃଷ୍ଟି ଭଙ୍ଗୀ ଦରିଦ୍ରକୁ ଦାନ କରିବା ନୁହେଁ, ଭିକାରୀକୁ ଭିକ୍ଷା ଦେଇ ମଣିଷକୁ ପଙ୍ଗୁ କରିବା ନୁହେଁ; ମଣିଷ ଭିତରେ ଥିବା ତାର ସୁପ୍ତ ପୌରୁଷକୁ ଜାଗ୍ରତ କରିବା, ତାକୁ କର୍ମଯୋଗୀ କରିବା ।

**ନାରୀଜୀବନ-ଚର୍ଯ୍ୟା ଓ ପ୍ରେମବୋଧ :**

କଥାକାର ସମାଜର ବିଭିନ୍ନ ସ୍ତରର ପୁରୁଷ ଓ ନାରୀ ସମାଜର ଚିତ୍ତବୃତ୍ତିକୁ ସୂକ୍ଷ୍ମଭାବରେ ଅନୁଧ୍ୟାନ କରିଅଛନ୍ତି । ବିଶେଷତଃ ନାରୀ-ଜୀବନ-ଚର୍ଯ୍ୟା ଓ ତାର ଚିତ୍ତ-

ସମ୍ପର୍କକୁ ଜୀବନ୍ତ ଭାବରେ ଋପ ଦେଇଅଛନ୍ତି । ଏହି ନାରୀ ସମାଜ ଯେପରି ଅଭିଜାତ ସେହିପରି ଅତି ସାଧାରଣ ସ୍ତରର । ଯେପରି ନଗରକେନ୍ଦ୍ରିକ ସେହିପରି ମଧ୍ୟ ପଲ୍ଲୀ କେନ୍ଦ୍ରିକ । ଡାକ୍ତର ସୁରେନ ଚୌଧୁରୀଙ୍କ କନ୍ୟା ସୁପ୍ରୀତି ଯେତେବେଳେ ଦେଖିଲା ତାର ସାଙ୍ଗ ଝିଅମାନେ ଇଞ୍ଜିନିୟର, ଡାକ୍ତର, ଆଇ. ଏ. ଏସ୍ ଅଫିସରମାନଙ୍କୁ ବିବାହ ହୋଇଗଲେ ସେତେବେଳେ ତାର ନାରୀତ୍ୱ ଆକୁଳ ହାହାକାର କରିଛି । ସେ ଭଲ ପାଇ ବସିଛି ଜଣେ ସ୍ୱଳ୍ପବେତନଭୋଗୀ ଶିକ୍ଷକଙ୍କୁ ଓ ବିବାହ କରିଛି । ଅଥଚ ତାର ନାରୀତ୍ୱ ପୁଣି ହୋଇଛି ସନ୍ଦେହପ୍ରବଣ । ସ୍ୱାମୀକୁ ତ୍ୟାଗ କରି ସେ ପିତ୍ରାଳୟକୁ ଆସିଛି । ସିନେମା ଦେଖି ଦେଖି ସମୟ କାଟିଛି । ପୁଣି ତାର ଆସିଛି ପୁରୁଷ-କାମନା । କେତେ ଯୁବକଙ୍କ ସହିତ ଅବାଧ ମିଳାମିଶା କରିଛି । ସେ ପୁଣି ହୋଇଛି ପ୍ରତାରିତା । ତତ୍ପରେ ସେ ଗଲା ଜନୈକ ସାଧୁଙ୍କ ନିକଟକୁ ଆତ୍ମାର ମୁକ୍ତିପାଇଁ । ସନ୍ନ୍ୟାସିନୀ ସୁପ୍ରୀତିର ପୁଣି ସୃଷ୍ଟି ହେଲା ଉଦଗ୍ର କାମନା । ସେହି ବାବାଜୀଙ୍କୁ ସେ ବିବାହ କଲା, ମାତ୍ର ବାବାଜୀ ଚାଲିଗଲା ତାକୁ ଛାଡ଼ି । ସୁପ୍ରୀତି ଜନ୍ମ ଦେଲା ପୁତ୍ର ସନ୍ତାନଟିଏ । ଅସହାୟା ସୁପ୍ରୀତି । ଏକମାତ୍ର ନବଜାତ ପୁତ୍ରହିଁ ତାର ସାନ୍ତ୍ୱନା ('ସୁପ୍ରୀତିର ଜାତକ') ।

ଅନ୍ୟପକ୍ଷରେ 'ମୁଁ କାଚ ପିନ୍ଧିବି କାଚ' ଗଳ୍ପରେ ଶାଶୁ ଓ ବୋହୂର ସମ୍ପର୍କ ମଧ୍ୟ ଦେଇ ନାରୀଜୀବନର ଆଉ ଏକଦିଗକୁ ପ୍ରକାଶ କରାଯାଇଅଛି । ନାରୀ ତାର ସ୍ୱାମୀ ଓ ପୁତ୍ର କନ୍ୟାକୁ ନେଇ ସଂସାର କରେ । ପୁଅ ବଡ଼ ହେଲେ ବୋହୂ ଆଣେ । ପ୍ରଥମେ ପ୍ରଥମେ ଶାଶୁ ବୋହୂର ପ୍ରଶଂସା କରେ । ସାଇପଡ଼ିଶାରେ ବୁଲି କହେ । କ୍ରମେ ବୋହୂ ହୁଏ ଘରର ମୁରବୀ । ଶାଶୁ ସବୁ ଅଧିକାରରୁ ବଞ୍ଚିତା ହୁଏ । ତେଣୁ ତାର ଦେଖାଦିଏ ପ୍ରତିକ୍ରିୟା । ବୋହୂ ଉପରେ ସେ ବିରକ୍ତ ହୁଏ, ତାକୁ କଠୋର ଭାବରେ ଗାଳି ଦିଏ । ତାର ଶାଶୁପଣିଆର ଅଧିକାରରୁ ବଞ୍ଚିତ ହେବାହିଁ ତାର କ୍ରୋଧର କାରଣ । ଯେତେବେଳେ ତାର ସ୍ୱାମୀ ମରିଯାଏ ସେତେବେଳେ ସେ ନିଜକୁ ମନେ କରେ ଅସହାୟା । ନାରଣିଆ ମାଆ ସ୍ୱାମୀର ଜୁଇଗାଡ଼ରୁ ପାଉଁଶ ଆଣି ନିଜ ଦେହରେ ବୋଳି ହେଲା । ସେ ହେଲା ବାୟାଣୀ । ସେ ମନେକଲା ସେ ହେବ ଅଧ୍ୟକ୍ଷାଣୀ । ସେ କାଚ ପିନ୍ଧିବ । ତାର ଅଧିକାରକୁ ସେ ସାବ୍ୟସ୍ତ କରିବ । ନାରୀ ମନର ଏହି ଅଧିକାରଗତ ଦ୍ୱନ୍ଦ୍ୱକୁ ଲେଖକ ଜୀବନ୍ତ ଭାବରେ ପ୍ରକାଶ କରି ଅଛନ୍ତି । 'ନାୟିକା ଓ ନେତ୍ରୀ' ଗଳ୍ପରେ ନାରୀ ଅଭିଜାତ । ଏହି ଅଭିଜାତ ନାରୀ ବର୍ଣ୍ଣାମିତ୍ରା—'ଏକ ତରଙ୍ଗ ସଙ୍କୁଳା ବେଳା' ସେ ହେଲା ନେତ୍ରୀ । ସେ ମଧ୍ୟ ହେଲା ମନ୍ତ୍ରୀ । ସ୍ୱାମୀଙ୍କ ସେବା ସେ କରେ ନାହିଁ । ଘର କଥା ବୁଝେ ନାହିଁ । ପତ୍ନୀ ନିକଟରେ ସ୍ୱାମୀର ନିଜତ୍ୱ, ମହତ୍ତ୍ୱ ଓ ବିଦ୍‌ବତ୍ତା ହେଲା ଅସ୍ୱୀକୃତ । ସ୍ୱାମୀ ଏଠି ମନେ କରେ ଯେପରିକି ଗୋଟିଏ ଚନ୍ଦ୍ର ପିତୁଳା । ଜୀବନ ମନେ ହୁଏ ଗୋଟିଏ ନିଦ୍ରା । ଏଥର ସ୍ୱାମୀ ଚାଲିଯାଏ କର୍ମକ୍ଷେତ୍ରକୁ ସ୍ୱାଭିମାନ ନେଇ । ପତ୍ନୀ ପାଖରେ ରହେ ପୁତ୍ର । ପୁତ୍ର ହୁଏ ଉଚ୍ଛୃଙ୍ଖଳ । 'ନେତ୍ରୀ ଉଡ଼ା ଚଢ଼େଇ; ନାୟିକା ପଞ୍ଜୁରୀର ପକ୍ଷୀ, ଉଡ଼ି ବୁଲିବା ଘରର ଅଭ୍ୟାସରେ ପରିଣତ ହୋଇଗଲାଣି, ପଞ୍ଜୁରୀରେ

ବନ୍ଦୀ ହୋଇ ରହିବାକୁ ତାକୁ କ'ଣ ଆଉ ଭଲ ଲାଗିବ ?" । ୧୮ । ଆଧୁନିକ ଯୁଗରେ ଅଭିଜାତ ବସ୍ତୁବାଦୀ ପରିବାରରେ ଏଇ ଅବସ୍ଥା । ଏଠି ନାୟିକା ହୁଏ ନେନ୍ସୀ, ସେ ଯାଏ ତାର ବାଟରେ । ସ୍ୱାମୀ ହୁଏ ନିଃସଙ୍ଗ, ପୁତ୍ର ହୁଏ ନିଜ ହାତରେ ଚଉଦ ପାଆ । ପାରିବାରିକ ସହୃତ ଓ ସୌହାର୍ଦ୍ଦ୍ୟ, ପ୍ରୀତି ଓ ମମତା ଲୋପ ପାଇଯାଏ । ଅଥଚ ସାଧାରଣ ଦରିଦ୍ର ସମାଜରେ ଦେଖାଦିଏ ଗଭୀର ପ୍ରୀତିବୋଧ । ଅଭାବ ଅନାଟନ ମଧ୍ୟରେ, ଗାଳି ଓ ମାଡ ମଧ୍ୟରେ ଥାଏ ଯେପରି ଗଭୀର ମମତ୍ୱବୋଧ । ୧୯ ।

ସ୍ୱାମୀ ଓ ସନ୍ତାନଙ୍କୁ ହରାଇ ନାରୀ ଉପରେ ନିଜର ଆତ୍ମୀୟମାନଙ୍କଦ୍ୱାରା ଅବହେଳିତା ହୁଏ, ତାର ଜୀବନ ଉପରେ ଅସହାୟ ହୁଏ, ତାର ପରିଚୟ ଅଛି—'କହନ୍ତୋ, ମୁଁ କ'ଣ କରିବି' ଗଳ୍ପରେ । ଯେତେଦିନଯାଏ ନାରୀ ତାର ଘରେ ଥାଏ, ଘରକୁ ଲିପାପୋଛି କରୁଥାଏ, ଲକ୍ଷ୍ମୀପାଦ ଚିତା ଲେଖୁଥାଏ, ମାଣପେଡ଼ି ଘରେ ରଖିଥାଏ, ସେତେଦିନଯାଏ ତାର ଥାଏ ସ୍ୱାଭିମାନ । ସ୍ୱାମୀ ଓ ସନ୍ତାନ ନ ଥିଲେ ମଧ୍ୟ ସେ ବଞ୍ଚିରହେ ଏହି ସ୍ୱାଭିମାନ ବଳରେ । ଯେତେବେଳେ ତାର ଏହି ଅଧିକାର ଚାଲିଯାଏ ସେ ଅସହାୟା ହୁଏ । ୧୯ । ସହରର ଆଭିଜାତ ନାରୀର ଜୀବନ-ବୈଚିତ୍ର୍ୟଠାରୁ ଆରମ୍ଭ କରି ପଲ୍ଲୀର ସାଧାରଣ ଦରିଦ୍ର ନାରୀର ଜୀବନ-ଚର୍ଯ୍ୟା ପର୍ଯ୍ୟନ୍ତ ଲେଖକ ତାଙ୍କର ଗଳ୍ପ-ଜଗତରେ ରୂପାୟନ କରିଅଛନ୍ତି । ସେହି ଜୀବନାୟନ ଭିତରେ ଲେଖକ ନାରୀର ସ୍ୱାଭିମାନ, ପ୍ରେମ, ମମତ୍ୱବୋଧ, ସ୍ୱେଚ୍ଛାଗୃହିତା, କ୍ଷମତା ଲିପ୍‌ସା ଆଦି ନାନା କଥାକୁ ପ୍ରକାଶ କରି ସମାଜ-ଜୀବନର ଛବିରୂପ ପ୍ରଦାନ କରିବାରେ ସମର୍ଥ ହୋଇଅଛନ୍ତି ।

### ମାନବେତର ଜୀବନ-ଜିଜ୍ଞାସା ଭିତରେ ମାନବିକ ମୂଲ୍ୟବୋଧ :

ଓଡ଼ିଆ ଗଳ୍ପ-ସାହିତ୍ୟରେ ମାନବେତର ଚରିତ୍ର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଅଛି । ଲୋକଗଳ୍ପରେ ମାନବେତର ଚରିତ୍ର ମଣିଷ ସମାଜ ସହିତ କୌଟୁମ୍ବିକ ସମ୍ପର୍କ ସ୍ଥାପନ କରିଥିବା ଲକ୍ଷ୍ୟ କରାଯାଏ । ମଣିଷ ପରି ସେସବୁ ଚରିତ୍ର କଥା କହିଛନ୍ତି, ବ୍ୟବହାର କରିଛନ୍ତି । ସେମାନେ ରୂପରେ ପଶୁ ବା ପକ୍ଷୀ; କାର୍ଯ୍ୟ ଓ ଧର୍ମରେ ମଣିଷ । ଆଧୁନିକ ଗଳ୍ପରେ ପଶୁ ପକ୍ଷୀ କଥା କହୁନାହାନ୍ତି । ସେ ସବୁ ଚରିତ୍ର ଚିତ୍ରଣ ଭିତରେ କଥାକାର ମଣିଷ ଜୀବନର ଅନ୍ତର୍ନିହିତ ଭାବସତ୍ତ୍ୱକୁ ବ୍ୟଞ୍ଜିତ କରିଅଛନ୍ତି । ଫକୀରମୋହନ ସେନାପତି, କାଳିନ୍ଦୀଚରଣ ପାଣିଗ୍ରାହୀ, ଗୋଦାବରୀଶ ମହାପାତ୍ର, ରାଜକିଶୋର ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ମନୋଜ ଦାସ, ବସନ୍ତକୁମାର

---

୧୮ । ହସକାନ୍ଦର ଗପ—'ନାୟିକା ଓ ନେନ୍ସୀ'—ପୃ ୪୭

୧୮ । —ତତ୍ରୈବ—'ନୂଆ ସଂସାର'—ପୃ ୬୨

୧୯ । ହସକାନ୍ଦର ଗପ—ହେଲେନ୍—ପୃ ୩

ଶତପଥୀ, ମହାପାତ୍ର ନୀଳମଣି ସାହୁ ପ୍ରମୁଖ" କଥାକାରମାନେ ବିଭିନ୍ନ ଦୃଷ୍ଟିକୋଣରୁ ମାନବେତର ଚରିତ୍ରକୁ ରୂପାୟନ କରି ସେଥିରୁ ମାନବିକ ଭାବ-ରୂପକୁ ପ୍ରକାଶ କରି ଅଛନ୍ତି । କୃଷ୍ଣବିହାରୀଙ୍କର 'ହେଲନ୍' ଗଳ୍ପ ଏ ଦିଗରେ ଏକ ସଂଯୋଗ । ଏ ଗଳ୍ପରେ କୁକୁରହିଁ ମୁଖ୍ୟ । ଏଥିରେ କୁକୁରର ସ୍ୱଭାବକୁ ବିଭିନ୍ନ ଦୃଷ୍ଟିକୋଣରୁ ରୂପାୟନ କରା-ଯାଇଅଛି । ଯେତେ ପୋଷା ମାନିଥିଲେ ମଧ୍ୟ କୁକୁରକୁ ମାଂସ ଖଣ୍ଡେ ଦେଇଦେଲେ ସେ ଭୁକେନାହିଁ । ଚୋର ଆରାମରେ ଚୋରି କରେ । ତେଣୁ ଲେଖକ ଏହି ପ୍ରସଙ୍ଗରେ ଯଥାର୍ଥରେ କହିଛନ୍ତି—"ଆଜିର ଦୁନିଆ ତ ଲାଞ୍ଚଖୋର ।" ଦେଶୀ ଆଉ ବିଦେଶୀ କୁକୁରଙ୍କର ତୁଳନାତ୍ମକ ବିଚାର କରି ଆଧୁନିକ ଯୁଗରେ ବିଦେଶୀ କୁକୁରପ୍ରତି କିପରି ଅଧିକ ମମତା ବଢିଛି ସେ କଥାପ୍ରତି ଲେଖକ ଦାର୍ଶନିକ ଦୃଷ୍ଟିପାତ କରିଅଛନ୍ତି । ଆଜି ଯୁଗ ବଦଳିଛି । ଅତୀତ ଯୁଗ ଥିଲା ବେଦ, ଉପନିଷଦ, ଆଉ ପୁରାଣର ଯୁଗ । ଯାହା ପାଇଁ ଦରକାର ହେଉଥିଲା ଘୃତ । ତେଣୁ ଗାଈର ଥିଲା ଆଦର । ଆଜି ସମାଜରେ ଚୋର ଓ ଡକାୟତଙ୍କର ପ୍ରଭାବ ବେଶୀ । ତେଣୁ ଏଥିପାଇଁ ଲୋଡା କୁକୁର । "ଏଟା ହେଲା କୁକୁରଙ୍କ ଯୁଗ, ଯେ ହେତୁ ଏ ଯୁଗରେ ଚୋର ବେଶୀ; ଚୋର ଧରିବାରେ ମଣିଷ ଅପେକ୍ଷା କୁକୁରର ଦକ୍ଷତା ଅଧିକ । ତେଣୁ ଚୋରି, ଡକେଇତି, ନରହତ୍ୟା ଧରିବା ଲାଗି ପୁଲିସ ନେଉଛି ଏମାନଙ୍କ ସାହାଯ୍ୟ । ୨୦ ।

କୁକୁରର ବୈଶିଷ୍ଟ୍ୟ ବିଶ୍ଳେଷଣ କରି ଲେଖକ କୁକୁର ଭିତରେ ମଣିଷ ଓ ଦେବତାକୁ ଅନୁଭବ କରିଅଛନ୍ତି । ତେଣୁ କୁକୁର ଘୃଣ୍ୟ ନୁହେଁ, ଅସ୍ପୃଶ୍ୟ ନୁହେଁ । ସେ ମଧ୍ୟ ପ୍ରେମ ଜାଣେ, ପ୍ରେମର ମହତ୍ତ୍ୱ ମଧ୍ୟ ବୁଝେ । ସେ ମଧ୍ୟ ପ୍ରଭୁଭକ୍ତ । ଯାହାର ନିମକ ଖାଏ ତାକୁ ସେ ଛାଡେ ନାହିଁ । ହରିଶଙ୍କର ବାବୁ ତାଙ୍କର ପୋଷା କୁକୁର ହେଲେନ୍‌କୁ ଆପଣାର କନ୍ୟାପରି ଭଲ ପାଆନ୍ତି । ଅଥଚ ସେହି ହେଲେନ୍ ଯେତେବେଳେ ମୌସୁମୀର ଉନ୍ମାଦନା ନେଇ ଅନ୍ୟ କୌଣସି ପୁରୁଷ କୁକୁର ସହିତ ଚାଲିଗଲା ଆପଣାର ପ୍ରବୃତ୍ତି ତାଡନାରେ ସେତେବେଳେ ହରିଶଙ୍କର ବାବୁ ତା'ପ୍ରତି ବିରକ୍ତ ହେଲେ । ଦିନଦିନ ପରେ ହେଲେନ୍ ବିନମ୍ର ଭାବରେ ଘରକୁ ଆସିବାରୁ ହରିଶଙ୍କର ବାବୁ ତାକୁ ଧିକ୍କାର କଲେ । ଘରୁ ବାହାରିଯିବାକୁ କହିଲେ । ହେଲେନ୍ ପଶୁ, ଅଥଚ ସେ ମଣିଷର କଥାକୁ ବୁଝିଲା । ଘରୁ ବାହାରି ଚାଲିଗଲା । ହରିଶଙ୍କର ବାବୁ ମଣିଷ-ହୋଇ ମଧ୍ୟ ମଣିଷ ପରି ଜୀବଜନ୍ତୁର ଯେ ଆସଙ୍ଗ ଲିପ୍ସା ଅଛି—ଏକଥା ବୁଝିଲେ ନାହିଁ । ହେଲେନ୍ ଚାଲିଗଲା ପରେ ଦେଶୀ କୁକୁରମାନଙ୍କର ଈର୍ଷାଜନିତ ଆକ୍ରମଣର ସମ୍ମୁଖୀନ ହୋଇଛି । ନରନାରାୟଣ ବାବୁଙ୍କ ଯୋଗୁ ସେ ରକ୍ଷା ପାଇଛି । ହେଲେନ୍ ଜନ୍ମ ଦେଇଛି କେତୋଟି ପୁଅ ଓ ଝିଅଙ୍କୁ । କୁକୁର ଚାଲିଗଲା ପରେ ହରିଶଙ୍କର

୨୦ । ହସ କାନ୍ଦର ଗପ—ହେଲେନ —ପୃ ୬

ବାବୁଙ୍କର ଦେଖା ଦେଇଛି ତତ୍ର ପ୍ରତିକ୍ରିୟା । ପଦେ କଥାରେ ଆପଣାର କନ୍ୟା ତୁଲ୍ୟା କୁକୁର ଚାଲିଗଲା । ଘରେ ଅଶାନ୍ତି । ସେହି କୁକୁର ଥିଲା ତାଙ୍କ ପାରିବାରିକ ସ୍ନେହ-ପ୍ରୀତିର ଯୋଗସୂତ୍ର, କର୍ତ୍ତବ୍ୟନିଷ୍ଠାର ଆଦର୍ଶ । ହେଲେନ୍‌ର ଅନୁପସ୍ଥିତିରେ ତାହା ହେଲା ଶିଥିଳ । ଏଥର ହରିଶଙ୍କର ବାବୁ ଖୋଜିଲେ ହେଲେନ୍‌କୁ । ନରନାରାୟଣ ବାବୁଙ୍କ ଘରେ କୁକୁର ଥିବା ଜାଣି ସେ ଗଲେ ଆଣିବାକୁ । ହେଲେନ୍ କିନ୍ତୁ ପ୍ରଥମେ ଆସିଲାନାହିଁ । ସେ ଚାହିଁଲା ନରନାରାୟଣ ବାବୁଙ୍କ ଅନୁମତି । କାରଣ ସେ ତାକୁ ବଞ୍ଚାଇଛନ୍ତି । କେତେଦିନ ହେଲା ସେ ତାଙ୍କର ନିମକ୍ ଖାଇଛି । ନରନାରାୟଣ ବାବୁଙ୍କ ଅନୁମତି ନେଇ ହେଲେନ୍ ଆସିଲା ହରିଶଙ୍କର ବାବୁଙ୍କ ପାଖକୁ । ମାଆ, ପୁଅ ଓ ଝିଅ ସମସ୍ତଙ୍କୁ ନେଇ ସେ ଆସିଲେ ନିଜ ଘରକୁ ।

ଏହି ଗଳ୍ପର ପ୍ରଥମ ପର୍ଯ୍ୟାୟ କୁକୁର ସମ୍ପର୍କିତ ନାନା ଚର୍ଚ୍ଚା । ମଣିଷ ପ୍ରକୃତି ସହିତ କୁକୁର ପ୍ରକୃତିର ତୁଳନାତ୍ମକ ବର୍ଣ୍ଣନା ଭିତର ଦେଇ ରମ୍ୟରଚନାର ସ୍ୱାଦ ଫୁଟିଛି । ଦ୍ୱିତୀୟ ପର୍ଯ୍ୟାୟହିଁ ପ୍ରକୃତ ଗଳ୍ପ । ଏଥିରେ କୁକୁରର ଆଯଙ୍ଗଲପ୍ରୀତି, ତାର ଜନନୀତ୍ୱ, ପ୍ରଭୁଭକ୍ତି ଓ ନିମକସଚା ଗୁଣକୁ ବର୍ଣ୍ଣନା କରି ଯାଇଥିବା ସଙ୍ଗେ ସଙ୍ଗେ ଅନ୍ୟ-ପକ୍ଷରେ ମଣିଷର କୁକୁର ପ୍ରତି ସମ୍ବନ୍ଧବୋଧ ଓ ସେହି ମମତା ଭିତରେ ମାନବାୟିତ ଭାବକୁ ପ୍ରକାଶ କରାଯାଇଅଛି । ତେଣୁ ଏହି ଗଳ୍ପ ମଧ୍ୟ ଦେଇ ମାନବିକ ଭାବ ସତ୍ୟକୁହିଁ ଦିଆଯାଇଛି ପ୍ରାଧାନ୍ୟ ।

## କୁଞ୍ଜବିହାରୀଙ୍କ ଗଳ୍ପ-ଜଗତର ମର୍ମବୋଧ :

କୁଞ୍ଜବିହାରୀଙ୍କ ଗଳ୍ପଜଗତ ସୁପ୍ରଚୁର ନୁହେଁ, ସୃଷ୍ଟି ସୀମିତ । ଅଥଚ ସେହି ସୀମିତ ସୃଷ୍ଟି ମଧ୍ୟରେ ଅଛି ସିଦ୍ଧି । ମଣିଷ ଜୀବନର ବହୁ ବିଚିତ୍ର ଭାବ-ଜଗତକୁ ସେ ଦେଖିଛନ୍ତି, ଅନୁଭବ କରିଅଛନ୍ତି ଏବଂ ତାକୁ ରୂପ ଦେଇଛନ୍ତି । ଗପ କରୁ କରୁ ଗଳ୍ପ ଲେଖାର ଝିଅ ତାଙ୍କର ବାହାଘର ପଡ଼ିଛି । କବି ହୋଇ ସେ ଗାଳ୍ପିକ ହୋଇଛନ୍ତି । କଳା ତାଙ୍କ ବିଚାରରେ ଆଦର୍ଶର ବାର୍ତ୍ତାବହ । କଳା ନିକଟରେ ଆର୍ଥିକ ମୂଲ୍ୟ ନଗଣ୍ୟ । ଯେତେବେଳେ କଳା ହୁଏ ଅର୍ଥର ଅଧୀନ, ସେତେବେଳେ କଳା-ମୂଲ୍ୟ ହ୍ରାସ ପାଏ । ଏହି କାରଣରୁ "କୃଷି ସଭ୍ୟତାର ସେ ରସିକତା ଅକାତରତା ଶିଳ୍ପ ସଭ୍ୟତାରେ ଦୁର୍ଲଭ । ଏବେ ବହୁ ଯୋଜନା, କଳ୍ପନା, ବହୁ ମାପଚୁପ୍, ଓଜନବାଜନ, ସବୁ ହିସାବ ଦୋରସ୍ତ, ପ୍ରୟୋଜନ ନିର୍ଭର, ଭୋଗମୁଖ୍ୟ । ମାନବ ମନର ମହିମାନ୍ୱିତ ଶ୍ରେଷ୍ଠ କୃତିତ୍ୱ ଆଉ ଦେଖିବାକୁ ମିଳୁନାହିଁ । ମିଳୁଛି ହୁଏତ ଗୋଟାଏ ସୁଉଚ୍ଚ ସୌଧ ନଇଲେ ଗୋଟାଏ ମହିମ ଯାଦୁଘର ।" । ୬୧ । ଆଜିର କଳା ଓ ସାହିତ୍ୟରେ ଅଛି ସୁଉଚ୍ଚ ଅଟ୍ଟାଳିକା

୬୧ । ହସ କାନ୍ଦର ଗପ—ସୂର୍ଯ୍ୟାସ୍ତର ଜଣେ ଶେଷ ଗ୍ରାହକ— ପୃ ୮୧

ଅଥବା ମହମ ଯାଦୁଘର । ସେଥିରେ ଜୀବନ ନାହିଁ । ଆଡମ୍ବର ଅଛି; ଆନନ୍ଦ ନାହିଁ । ଗୃହାଣୀ ଅଛି; ଚମକ ନାହିଁ । "ଶିଳ୍ପରେ ଯେପରି ଅମାପ ଝର୍ଚ୍ଚ, ଶିଳ୍ପୀର ଜୀବନରେ ସେହିପରି କିଛି ମାପଝାପ ନାହିଁ । ପ୍ରାଣପ୍ରାଚୁର୍ଯ୍ୟର ଅନୁଭବ ଲାଗି ସେ ଜୀବନକୁ ଅକୁଣ୍ଠଭାବେ ଫିଙ୍ଗିଦିଏ, ଡାଳିଦିଏ ବା ଜାଳିଦିଏ । କେମିତି ଭଲ ଖାଇବାକୁ ମିଳିବ, କି ଉପାୟ କଲେ ବେଶୀ ପଇସା ରୋଜଗାର ହେବ, ସେ ବିଚାର ବସେ ନାହିଁ । ଉତ୍କୃଷ୍ଟ କଳା ଭାଙ୍ଗ୍ୟ ଖିଆଲର ସୃଷ୍ଟି । ଅବଚେତନ ମନରୁ ତାର ଜନ୍ମ ।" ବାସ୍ତବିକ କଳାକାର ବଞ୍ଚେ ଅର୍ଥକୁ ନେଇ ନୁହେଁ; ତାର ଖିଆଲକୁ ନେଇ । ତାର ଅବଚେତନର ଆଲୋଡ଼ନ ମଧ୍ୟରୁ ଜନ୍ମ ନିଏ ତାର କଳା । ବାହାରକୁ ଚାକଚକ୍ୟ କରି ଯେଉଁରେ ପ୍ରୀତି ପ୍ରାଚୁର୍ଯ୍ୟ ସୃଷ୍ଟି କରି ନ ପାରିଲେ କଳା ହୁଏ ବ୍ୟର୍ଥ । ଅର୍ଥ ଓ କ୍ଷମତାର ବଶୀବର୍ତ୍ତୀ ହେଲେ କଳା ହୁଏ କ୍ଲୀବ । କୁଞ୍ଜବିହାରୀ ଏ ବିଷୟରେ ସଚେତନ । କଳା ଓ ମାନବିକତାର ମହିମାନ୍ୱିତ ପୂଜାରୀ ଧନ ଖୋଜେ ନାହିଁ; ଖୋଜେ ରସିକ ମନ । ଆଜି କିନ୍ତୁ ସେହି ମନ କାହିଁ ? କ୍ଷମତା ମଦମତ୍ତ ମଣିଷ କଳାର ମୂଲ୍ୟ କ'ଣ ବୁଝେ ? କଳାକାର ମଧ୍ୟ ଦୁଃଖ, ଦୈନ୍ୟ, ଯନ୍ତ୍ରଣା ଓ ଅଭାବ ଭିତରେ ଥାଇ କଳାକୁ ବିକୃତ କରେ । ସତ୍ୟ-ଶିବ ସୁନ୍ଦରର ପୂଜାରୀ ହୋଇ କଳାକୁ ବ୍ୟବସାୟିକ ରଙ୍ଗମଞ୍ଚକୁ ନେଇ ଆସେ । ଏଇଠି କଳାକାରର ହୁଏ ସମାଧି । କୁଞ୍ଜବିହାରୀ ଏକଥା ଜାଣନ୍ତି । ଆଧୁନିକ ଶିଳ୍ପକଳାର ଅବକ୍ଷୟକୁ ସେ ଏହି ଦୃଷ୍ଟିରୁ ଅନୁଭବ କରି ଅଛନ୍ତି । 'ମୂର୍ତ୍ତିର କଦେ ଚୋଷ ଗ୍ରାହକ' ଗଳ୍ପରେ ତେଣୁ ଆଧୁନିକ ବସ୍ତୁତାନ୍ତ୍ରିକ ଜଗତରେ ପ୍ରକୃତ କଳା କିପରି ଅବହେଳିତ ସେ କଥାକୁ ପ୍ରକାଶ କରିଅଛନ୍ତି !

ଏହି ଆଦର୍ଶ ଭିତ୍ତିରେ କୁଞ୍ଜବିହାରୀ କାହାଣୀଧର୍ମୀ ଗଳ୍ପରଚନା କରି ମଣିଷର ଚରିତ୍ର-ସଙ୍ଘର୍ଷକୁ ଦେଖାଇ ଅଛନ୍ତି । ତାଙ୍କର ଉଦ୍ଦେଶ୍ୟ ହେଉଛି ଗଳ୍ପରେ ପାଠକକୁ ଆନନ୍ଦ ଦେବା, ପାଠକକୁ କିଛି ଭାବିବା ପାଇଁ ଖୋରାକ ଦେବା ଓ ସର୍ବୋପରି ମାନବ ବନ୍ଦନା ସୃଷ୍ଟି କରିବା । ମଣିଷର ପ୍ରେମ ଓ ତାର ଭୋଗ କାମନା, ବାତ୍ସଲ୍ୟ ଓ ପ୍ରବୃତ୍ତିଗତ ସଙ୍ଘର୍ଷ, ଦାରିଦ୍ର୍ୟ ଓ ଅସହାୟତା, ପ୍ରେମ ଓ ସ୍ୱାଭିମାନ, ସ୍ୱେଚ୍ଛାଚାରିତା ଓ ଅସଙ୍ଗତି, ଶୋଷଣ ଓ ନୂତନ ସମାଜବୋଧ, ମାନବିକତା ଓ ବନ୍ଧୁତା, ତ୍ୟାଗ ଓ ପ୍ରେମ, ଯୌନତା ଓ ପ୍ରେମବୋଧ, ଜୀବନ ଓ ଯୌବନ, ଅର୍ଥ ଓ କଳାପ୍ରାଣତା, କର୍ମବାଦ ଓ ଭାଗ୍ୟବାଦ ଆଦି ନାନା ଭାବ ଓ ସମସ୍ୟାକୁ ବିଭିନ୍ନ ଗଳ୍ପରେ ଲେଖକ ଯେପରି ରୂପାୟନ କରି ମାନବିକ ଭାବ-ଦ୍ୟୁତି ପ୍ରତି ଇଙ୍ଗିତ ଦେଇଅଛନ୍ତି ତାହା ବାସ୍ତବିକ ହୃଦ୍ୟ । ତାଙ୍କର ଗଳ୍ପ-କଳାରେ ଅଙ୍ଗ-ବୈଚିତ୍ର୍ୟ ନାହିଁ । ଏହା ଗତାନୁଗତିକ । କାହାଣୀ-ପ୍ରକଳ୍ପ ମଧ୍ୟରେ ଗଳ୍ପ-କଳା ଲୀଳାୟିତ । ଏଥିରେ ନଭଶ୍ଚୁମ୍ବୀ ପ୍ରାସାଦର ଐଶ୍ୱର୍ଯ୍ୟ ନାହିଁ । କାଚଘରର ଚାକଚକ୍ୟ ନାହିଁ । ଲବ୍ଧ ଓ ଆହୃତ ବିଦେଶୀ ଭାବ ନାହିଁ । ଏହା ସମ୍ପୂର୍ଣ୍ଣ ଏଇ ମାଟିରୁ ସୃଷ୍ଟି । ରୂପ ସରଳ, ଭାବ ଗଭୀର, ବାସ୍ତବତା ଅଛି; ଯଥେଚ୍ଛାଚାର ନାହିଁ ।

 

ପ୍ରବୃତ୍ତିର ବିଶ୍ଳେଷଣ ଅଛି; ନଗ୍ନତା ନାହିଁ । ଅବଚେତନର କଥା ଅଛି; କିନ୍ତୁ ଏହା ସଚେତନ ମନର କଳା-ଶିଳ୍ପ । ବାସ୍ତବତାର ରସ ଘନ-ରୂପ-କଳା ଅଛି; କିନ୍ତୁ ଆଦର୍ଶ ଏହାର ମୁଖ୍ୟ ସ୍ୱର, ମାନବ ବନ୍ଦନା ଏହାର ପ୍ରାଣଧର୍ମ । ଏହି ମାନବ ବନ୍ଦନା ହୃଦୟ ସହିତ ହୃଦୟର ମିଳନ ପାଇଁ, ବ୍ୟକ୍ତି ସହିତ ସମାଜର, ଧନୀ ସହିତ ନିର୍ଦ୍ଧନର ସମନ୍ୱୟ ପାଇଁ । କଥାକାରଙ୍କର ଆତ୍ମବିଶ୍ୱାସ—"ଧନୀ ଆଉ ଦରିଦ୍ରର ମିତ୍ରତାରେ ହିଁ ସୁଖୀ ପୃଥିବୀ ଗଢାଯାଇ ପାରିବ—ଧନୀ ଆଉ ଦରିଦ୍ର ଦେଶର ମିତ୍ରତାରେ ହିଁ ପୃଥିବୀର ଅଭ୍ୟୁଦୟ—ଏହି ଉପରହିର ବିଜୟଘୋଷଣା ।" । ୨୨ ।

କୃଷ୍ଣବିହାରୀଙ୍କ ଗଳ୍ପ-ଜଗତର ମଣିଷ; ସହରୀ ସଭ୍ୟତା-ସଞ୍ଜାତ-ଅଭିଜାତ୍ୟ ମଣିଷ ଆଉ ପଲ୍ଲୀ-ପରମ୍ପରାଭିତ୍ତିକ ସାଧାରଣ ଗଣ-ସମାଜ । ଉଭୟଙ୍କ ନୈରାଶ୍ୟ ଓ ଶୋଚନୀୟତା, ବ୍ୟଥା ଓ ବିଫଳତାର ଅଶ୍ରୁହିଁ ତାଙ୍କ ଗଳ୍ପର ଭାବ-ଫଲ୍‌ଗୁ । ଦରିଦ୍ରର ଅଶ୍ରୁ ତାଙ୍କର ଅନ୍ତରକୁ ସ୍ପର୍ଶ କରିଛି ଗଭୀର ଭାବରେ । ଦରିଦ୍ରର ଏହି ଅଶ୍ରୁ ତାର ଆର୍ଥନୀତିକ ସମସ୍ୟା-ସଞ୍ଜାତ । ଧନୀ ଓ ସ୍ୱେଚ୍ଛାଚାରୀ ସୁବିଧାବାଦୀଙ୍କ ଶୋଷଣ ଓ ଅତ୍ୟାଚାରରୁ ଏ ଅଶ୍ରୁର ଜନ୍ମ । ସେମାନଙ୍କର ପ୍ରତାରଣାରେ ଏ ଅଶ୍ରୁର ପ୍ଲାବନ । ଅତ୍ୟାଚାରୀ ପ୍ରତାରକମାନଙ୍କର ଅଶ୍ରୁ ନାହିଁ; ଅଛି ଶୋଷଣ ଉଲ୍ଲଙ୍ଘ ଉଲ୍ଲାସ । ଏକ ପକ୍ଷରେ ଅଛି ଅଶ୍ରୁ, ଅନ୍ୟ ପକ୍ଷରେ ଅଛି ପୈଶାଚିକ ଉଲ୍ଲାସ କିନ୍ତୁ ଏହାର ରକ୍ତ-ସଂଘର୍ଷ ନାହିଁ । ତେଣୁ ଏହି ଅଶ୍ରୁରେ ଉତ୍ତାପ ନାହିଁ; ଆଲୋକ ଅଛି । ଅଗ୍ନି ନାହିଁ; ମାଧୁର୍ଯ୍ୟ ଅଛି । ଫଳରେ ଏହି ଅଶ୍ରୁର ଭାବମୂର୍ତ୍ତିସ୍ୱର ହେଉଛି ଅଭିଜାତ ମଣିଷର ସ୍ୱର ( Voice of the civilised mankind ) । ଅନ୍ୟପକ୍ଷରେ ଅଭିଜାତ ମଣିଷର ଅଶ୍ରୁ ଅର୍ଥନୀତି କୈନ୍ଦ୍ରିକ ନୁହେଁ; ପ୍ରେମ ଜନିତ, ମମତା ଜନିତ, କଳା ଜନିତ । ତେଣୁ ଏହି ଅଶ୍ରୁ ଦରିଦ୍ରର ଅଶ୍ରୁ ନିକଟରେ ହୋଇଛି ଜ୍ୟୋତିହୀନ । ତଥାପି ସେହି ଅଭିଜାତ ମଣିଷ ଯେତେବେଳେ ପରିବାର-ପରିଜନ-ପତ୍ନୀ-ସନ୍ତାନ ଦ୍ୱାରା ଅବହେଳିତ ହୋଇ ଏକ ନିଃସଙ୍ଗ ଯନ୍ତ୍ରଣା ଅନୁଭବ କରେ, ଭିତରେ ତାର ପୌରୁଷ ଆହତ ଅଭିମାନରେ ଅସହାୟ ହୋଇପଡେ ସେତେବେଳେ ତାର ଯେଉଁ ଅଶ୍ରୁ ଝରିଛି ସେହି ଅଶ୍ରୁ ହୋଇଛି ଏକାନ୍ତ ସମ୍ବେଦ୍ୟ । ଆଧୁନିକ ପଲ୍ଲୀ ଜୀବନର ସହିଷ୍ଣୁହୀନତା, ସହରୀ ଜୀବନର ବ୍ୟକ୍ତି-କୈନ୍ଦ୍ରିକ ବସ୍ତୁବାଦୀ ମନୋଭାବ, ରାଜନୀତି, ଭିତର ମଣିଷର କ୍ଷମତାମଦମତ୍ତ ଅହଂକାରସ୍ୱ ଭାବ, ବ୍ୟାବସାୟିକ ମନୋବୃତ୍ତି ଯୋଗୁ କଳାର ବିପର୍ଯ୍ୟୟ, ପତ୍ନୀ-ରାଜନୀତି ଭିତରେ ଅଭିଜାତ ସ୍ୱାମୀର ଅସହାୟତା, ଚାକିରିଜୀବୀ ପରିବାରରେ ନିଃସଙ୍ଗତାବୋଧ, ଦରିଦ୍ର ମଣିଷର ଆର୍ତ୍ତି ଜୀବନଯନ୍ତ୍ରଣା, ଶ୍ରମିକ ଓ କୃଷକର ବେଦନାବୋଧ ଓ ଆପଣାର ଅଧିକାର ସମ୍ପର୍କରେ ସଚେତନତା, ନାରୀମନର ସଂଗୁପ୍ତ କାମ-କାମନାର ଦୀପ୍ତ

୨୨ । ଡଃ କୃଷ୍ଣବିହାରୀ ଦାଶ—କି କଥା ? କଲିକତା ? ( ୧୯୮୨ )—ପୃ ୬୭୪

ଅଗ୍ନିଶିଖା, ତାର ପ୍ରେମବୋଧ ଓ ବାତ୍ସଲ୍ୟ ପ୍ରୀତି, ତାର ସ୍ୱାଭିମାନ ଓ ସମ୍ବେଦନା— କୁନ୍ତଳକୁମାରୀଙ୍କ ଗଳ୍ପ-ଜଗତର ପ୍ରତିପାଦ୍ୟ ।

ବସ୍ତୁନିଷ୍ଠ ସ୍ୱାନୁଭୂତିର ରସାଳ ବର୍ଣ୍ଣନା-ବିନ୍ୟାସ ଭିତରେ କାହାଣୀ ଗତିଶୀଳ ହୋଇଥିଲେ ହେଁ କଥାକାରଙ୍କର ବ୍ୟକ୍ତି-ପୁରୁଷ ଅନେକତ୍ର ବ୍ୟକ୍ତିକ ସମ୍ପର୍କ-ସମନ୍ୱୟ ଭିତରେ ଆତ୍ମପ୍ରକାଶ କରିଛି । ଯେତେବେଳେ କଥାକାର ପ୍ରଥମ ପୁରୁଷରେ ଗଳ୍ପ-ପରିସର ମଧ୍ୟକୁ ଆସିଛନ୍ତି ସେତେବେଳେ ସେହି ବିଷୟ ଓ ଚରିତ୍ର ସହିତ ତଲ୍ଲୀନତା ଥିବା ଜଣାଯାଏ । ଏଥିରେ ବସ୍ତୁନିଷ୍ଠତା ଓ ବ୍ୟକ୍ତିନିଷ୍ଠତାର ସମନ୍ୱୟ ହୋଇଅଛି । କିନ୍ତୁ ଏହି ସମନ୍ୱୟ ଭିତରେ ତଥାପି ସ୍ରଷ୍ଟାର ପ୍ରଥମ ପୁରୁଷ ଯେପରି ଅଲଗା ରହିଯାଇଛି । ଆଦର୍ଶ ଓ ଉପଦେଶ ସ୍ତରକୁ ଏହି ପ୍ରଥମ ପୁରୁଷ ଗ୍ରହଣକରିଯାଇଥିବାରୁ ଗଳ୍ପର ଚମତ୍କାରିତା କେତେକ ପରିମାଣରେ ହ୍ରାସ ପାଇଥିବା ଲକ୍ଷ୍ୟ କରାଯାଇପାରେ । ଗଳ୍ପର ଗତି ପ୍ରବାହ ମଧ୍ୟରେ ବେଳେ ବେଳେ ରମ୍ୟରଚନାର ନିବନ୍ଧୀୟ ଶୈଳୀ ମଧ୍ୟ ଅନୁସୃତ ହୋଇଅଛି । ଫଳରେ ଗଳ୍ପର ମୁଖ୍ୟ ଭାବସ୍ରୋତ ବ୍ୟାହତ ହୋଇଥିବା ଲକ୍ଷ୍ୟ କରାଯାଏ । ଏ ସବୁ ସତ୍ତ୍ୱେ ଗଳ୍ପ ଗୁଡ଼ିକର ନାଟକୀୟ ଉପସ୍ଥାପନା, ସଂଳାପୀୟ ଶୈଳୀ ସଂଯୋଜନା, ଭାଷାର ସାବଲୀଳ ପ୍ରୟୋଗ ବିଧି ଲେଖିକାଙ୍କୁ ଯେ ସିଦ୍ଧି ପ୍ରଦାନ କରିଛି; ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ । ଲୋକ ଗଳ୍ପର ସଂଗ୍ରହ-ସର୍ଜନା ମଧ୍ୟରୁ ଯେଉଁ ସ୍ରଷ୍ଟା-ମାନସର ଆରମ୍ଭ ହୋଇଥିଲା ସେହି ଭିତ୍ତିଭୂମି ଉପରେ ଅଭିଜାତ ଗଳ୍ପ ରଚନାରେ ହେଲା ଉତ୍ତରଣ । ଏ ଶୈଳୀ ତାଙ୍କର ନିଜସ୍ୱ । ଏଥିରେ ମୟୂର ପୁଚ୍ଛ ଖଞ୍ଜା ଯାଇନାହିଁ ଯାହା ତାଙ୍କର ଅନ୍ତରର ଆହ୍ୱାନ ତାହାହିଁ ଅନ୍ତରର ଭାଷାରେ ବର୍ଣ୍ଣିତ ଜୀବନ ଗପ । ଯେତିକି ଅନ୍ତରରୁ ଆହ୍ୱାନ୍ ଆସିଛି ସେତିକି; ଅଯଥା କଳ୍ପନାର କ୍ଳେଦ ନାହିଁ, କୌଣ୍ଡିକତାର କସରତ ନାହିଁ । କବିତାପରି ତାଙ୍କର ଗଳ୍ପ ମଧ୍ୟ ସ୍ରଷ୍ଟା ଅନ୍ତରର ମନୋରମ ଅର୍ଘ୍ୟ, ସଂସାର ଉଦ୍ୟାନର କ୍ଷତାକ୍ତ ଚୟନ, ନିଦ୍ରାର ସ୍ୱପ୍ନ । ଏହି କାରଣରୁ କୁନ୍ତଳକୁମାରୀଙ୍କ ଗଳ୍ପ ଜଗତରେ ବ୍ୟାପ୍ତି ନ ଥିଲେ ମଧ୍ୟ ଅଛି ଦୀପ୍ତି; ଅଛି କ୍ଳେଦହୀନ କଳ୍ପନା ଭିତରେ ମାନବ ବନ୍ଦନାର ସର୍ବଶ୍ରେଷ୍ଠ ଆହ୍ୱାନ ।

# ।। ହସ କାନ୍ଦର ଗପ, ଜୀବନ ଗପ ।।

ଅଧ୍ୟାପିକା ଶ୍ରୀମତୀ ବୀଣାପାଣି ସିଂହ

ମଣିଷ ଅସୀମ ଶକ୍ତିର ଅଧିକାରୀ । ଚେଷ୍ଟାକଲେ ସେ ଅନେକ ଅସମ୍ଭବକୁ ସମ୍ଭବ କରିପାରିବ । "ମଣିଷ ଢେର ବଡରେ ଢେର ବଡ, ସେ ନିଜେ କେତେ ବଡ ଜାଣି ନ ପାରିବା ପର୍ଯ୍ୟନ୍ତ ଭଗବାନ୍ କେତେବଡ ଜାଣି ପାରିବନାହିଁ ।" ଭାଗ୍ୟବାଦୀ ହୋଇ ଭଗବାନଙ୍କ ଉପରେ ନିର୍ଭର କରିବା ଅପେକ୍ଷା ନିଜର ପ୍ରଚେଷ୍ଟାଦ୍ୱାରା ଭାଗ୍ୟକୁ ପରିବର୍ତ୍ତିନ କରିବାକୁ ଲେକରିକ୍ତ ଡକ୍ଟର କୁଞ୍ଜବିହାରୀ ଦାଶ "ଭଗବାନଙ୍କ ଲୀଳା"ରେ ପ୍ରକାରାନ୍ତରେ କହିଛନ୍ତି । "ଭଗବାନଙ୍କ ଲୀଳା" ଗପ ମାଧ୍ୟମରେ ଲେଖକ ମନୁଷ୍ୟର ଲୀଳା ବିଷୟ ବର୍ଣ୍ଣାଣିଛନ୍ତି ।

ଡକ୍ଟର ଦାଶ ଜୀବନରେ ଅତି ଅଳ୍ପ ଗଳ୍ପ ଲେଖିଛନ୍ତି । ମାତ୍ର ବାରଗୋଟି ଗଳ୍ପର ସମାହାରରେ "ହସକାନ୍ଦର ଗପ"ର ସୃଷ୍ଟି । ବର୍ତ୍ତମାନର ବହୁ ଗାଳ୍ପିକ, ଗଳ୍ପସଂଖ୍ୟା ଦୃଷ୍ଟିରୁ ଓଡ଼ିଶାର ବିଶିଷ୍ଟ ଗାଳ୍ପିକମାନଙ୍କର ସମାସ୍କନ୍ଧ ହୋଇ ଛିଡାହେବା ଡକ୍ଟର ଦାଶଙ୍କ ପକ୍ଷରେ ସମ୍ଭବ ନୁହେଁ । କିନ୍ତୁ ତାଙ୍କର ପ୍ରତ୍ୟେକଟି ଗଳ୍ପ ଜୀବନ-ରସରେ ଭରପୂର । ଏଥିରେ ତାଙ୍କ ପ୍ରାଣର କଥା ବ୍ୟକ୍ତ ହୋଇଛି । ଗପ ଗୁଡ଼ିକରେ ଲେଖକଙ୍କର ଯୁଗୋପଯୋଗୀ ବ୍ୟକ୍ତିତ୍ୱ ଓ ବୈଜ୍ଞାନିକ ମନୋଭାବ ସ୍ପଷ୍ଟ । ପ୍ରକୃତପକ୍ଷେ ସେ ଯାହା, ତାଙ୍କ ଶୈଳୀ ସେଇଆ । ଏଥିରେ ବନେଇଚୁନେଇ ଲେଖିବାର ଚେଷ୍ଟା ଆଦୌ ନାହିଁ । ଜୀବନରେ ଯେତେବେଳେ ଯାହା ଦେଖିଛନ୍ତି, ଅବିକଳ ତା'ର ବାସ୍ତବ ଚିତ୍ର ଦେବାକୁ ଚେଷ୍ଟା କରିଛନ୍ତି ।

ଲେଖକଙ୍କ ପ୍ରଥମ ଗଳ୍ପ "ହେଲେନ୍" ଜଣେ ସୁପ୍ରସିଦ୍ଧା ଚିତ୍ରତାରକା ନୁହେଁ, ଗାୟିକା ବା ନର୍ତ୍ତକୀ ନୁହେଁ, ବିଶ୍ୱସୁନ୍ଦରୀ ମିସ୍ ଜଣେ ବି ନୁହେଁ, ମାତ୍ର ଗୋଟିଏ ଗୃହପାଳିତା ବିଦେଶୀ କୁକୁର ହରିଶଙ୍କର ବାବୁଙ୍କର ପ୍ରିୟ ପାଳିତା ଜୀବଟିଏ । ହରିଶଙ୍କରବାବୁ ଜଣେ ଖିଆଲି ଲୋକ, କିନ୍ତୁ ଶ୍ୱାନ-ସାହିତ୍ୟ-ବିଶାରଦ । ସେ ନିଜର ପୁତ୍ର, କନ୍ୟାଙ୍କଠାରୁ ବି ଅଧିକ ଭଲପାଇ ଆଦର ସ୍ନେହ ଦେଇ ପାଳିଛନ୍ତି ଏଇ ହେଲେନ୍‌କୁ । ସବୁପ୍ରକାର ସୁବ୍ୟବସ୍ଥା, ସୁଖାଦ୍ୟ ଓ ଯତ୍ନ ମଧ୍ୟରେ ରହି ହେଲେନ୍ ହୋଇଉଠିଛି ଅତ୍ୟନ୍ତ ଅନୁରକ୍ତ, କୃତକୃତ୍ୟ ଓ ପ୍ରଭୁଭକ୍ତ । ହେଲେନ୍‌କୁ ଭଲ

ପାଇବାରେ ହରଶଙ୍କର ବାବୁ ଏତେ ସମ୍ମୋହିତ ହୋଇ ଯାଇଛନ୍ତି ଯେ ସେ ତାଂର ସ୍ୱାଭାବିକ ପଶୁତ୍ୱ ଭୁଲି ତା'ଠାରୁ ମାନବ ସୁଲଭ ବା ମାନବୋତ୍ତର ସବୁପ୍ରକାର ସୁଗୁଣ, ସୁଚରିତ୍ର ଆଶା କରିଛନ୍ତି । କିନ୍ତୁ ଦିନେ ଯେତେବେଳେ ହରଶଙ୍କର ବାବୁ ଦେଖିଲେ ଯେ ତାଙ୍କର ସବୁ ଆଶା ଓ ବିଶ୍ୱାସକୁ ଧୂଳିସାତ୍ କରି ହେଲେନ୍ ଏକ କଦାକାର ଦୁର୍ଗନ୍ଧ ଦେଶୀ ବାରବୁଲା କୁକୁର ସହିତ ଏକ ହୋଇଯାଇଛି, ସେତେବେଳେ ସେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ତା'କୁ ବିତାଡ଼ିତ କରି ଦେଇଛନ୍ତି; କିନ୍ତୁ ହେଲେନ୍‌ର ଅନୁପସ୍ଥିତି ତାଙ୍କୁ ବିବ୍ରତ କରିଛି । ବହୁତ ଖୋଜାଲୋଡ଼ା, ଖବର କାଗଜରେ ବିଜ୍ଞାପନରେ ହରଶଙ୍କର ବାବୁ ହେଲେନ୍‌ର ସନ୍ଧାନ ପାଇ ତା'କୁ ସସମ୍ମାନେ ଘରକୁ ପାଛୋଟି ଆଣିଛନ୍ତି ।

ହରଶଙ୍କର ବାବୁଙ୍କ ଅଭିଭାବକ ଶ୍ରେଣୀ ଓ ହେଲେନ୍‌କୁ ସାଧାରଣ ପ୍ରବୃତ୍ତି ପରିଚାଳିତ ଜୀବଜଗତର ପ୍ରତିନିଧି ଭାବରେ ବିଚାରକୁ ଆଣିଲେ ଦେଖିବାକୁ ମିଳେ ଯେ ହରଶଙ୍କର ବାବୁ ଏକାନ୍ତଭାବେ ଏକଦିଗଦର୍ଶୀ । ତାଙ୍କପରି ସବୁ ପିତା ମାତା ବା ଅଭିଭାବକ ନିଜ ପିଲାମାନଙ୍କଠାରୁ ସବୁପ୍ରକାର ସୁଗୁଣ ଆଶା କରନ୍ତି; କିନ୍ତୁ କ୍ରମବର୍ଦ୍ଧିଷ୍ଣୁ ପିଲାମାନଙ୍କର ଶାରୀରିକ ଅଭିବୃଦ୍ଧି ତାଙ୍କ ମନ ଉପରେ କି ପ୍ରକାର ପ୍ରଭାବ ଓ ଛାପ ପକାଏ, ସେଥିପ୍ରତି ସେମାନେ ସଚେତନ ହୁଅନ୍ତି ନାହିଁ । ଫଳରେ ପ୍ରକୃତି ହିଁ ଶେଷରେ ଜୟଲାଭ କରେ । ଅଭିଭାବକ ଗୋଷ୍ଠୀଙ୍କ ପାଇଁ ଏହା ଏକ ଚେତାବନୀ ନିଶ୍ଚୟ । ଅସହାୟ ବୁଲା କୁକୁରର ତାଡ଼ନା ତଥା ନିର୍ଯ୍ୟାତନା ମାଧ୍ୟମରେ ଲେଖକ ପାଠକ ମନରେ ବଞ୍ଚିତ ମଣିଷ ସମାଜ ପ୍ରତି ଅନୁକମ୍ପା ସୃଷ୍ଟି କରିବାକୁ ଚେଷ୍ଟା କରିଛନ୍ତି ।

ଗାଲ୍ପିକଙ୍କ ଦ୍ୱିତୀୟ ପାହାଚ କଙ୍କାଳର ସ୍ମୃତିଲିପି । ପାଠ୍ୟପୁସ୍ତକର ବିଷୟ-ବସ୍ତୁ ଶେଷରେ ପିଲାର ମନନଶୀଳତା ସୃଷ୍ଟିପାଇଁ ଯେପରି ପ୍ରଶ୍ନାବଳୀର ପ୍ରୟୋଗ ହୋଇଥାଏ, ସେହିପରି ଲେଖକ ପାଠକସମାଜ ଆଗରେ ଏକ ପ୍ରଶ୍ନ ଉତ୍ଥାପନ କରି ତା'ର ଯଥାଯଥ ଉତ୍ତର ଦେଇଛନ୍ତି ଉକ୍ତ ଗଳ୍ପ ମାଧ୍ୟମରେ ।

ବ୍ୟାଧିର ମୂଳ ଆଧିରେ । କିନ୍ତୁ ଆଧିର ମୂଳ କେଉଁଠି ? ଏହି ଆଧିର ମୂଳକୁ ଆମେ ଖୋଜିପାଉଁ ବଟ ବେହେରା, ନଟ ସାଇଁ, ଅନନ୍ତ ମାଝିଙ୍କ ଜୀବନୀ ଭିତରେ, ଏଇମାନେହିଁ ପରୀକ୍ଷାଗାରର ଜୀବ । ନିଷ୍ପେଷିତ ଓ ନିପୀଡ଼ିତ । ଅଭାବ, ଅନାଟନରେ ଜର୍ଜରିତ ଏଇମାନଙ୍କର ଜୀବନୀ ପର୍ଯ୍ୟାଲୋଚନା କଲେ ଅନେକ ସତ୍ୟର ସନ୍ଧାନ ମିଳିବ । କଙ୍କାଳର ସାହାଯ୍ୟରେ ମଣିଷ ଶରୀରର ବିଭିନ୍ନ ରୋଗ ବିଷୟରେ ଜ୍ଞାନଲାଭ ହେଲାପରି ଏଇମାନଙ୍କ ଜୀବନରୁ ପ୍ରକୃତ ଜୀବନ ରହସ୍ୟ ଗୁଡ଼ିକ ହୁଏ ଓ ମାନବବାଦ ମୂଳରେ ଥିବା ପ୍ରକୃତ ମନସ୍ତତ୍ତ୍ୱ ହୃଦୟଙ୍ଗମ କରିହୁଏ । ଆଜିର ମଣିଷ କିନ୍ତୁ ଏ ମନସ୍ତତ୍ତ୍ୱକୁ ବୁଝି ପାରେନି, ଡାକ୍ତରଖାନା ଭଳି ମାନବସେବା ଓ ମାନବଧର୍ମର ଅନୁଷ୍ଠାନରେ ମଧ୍ୟ ଏଇ ମନ ତତ୍ତ୍ୱର

ବିପର୍ଯ୍ୟୟମୁଖୀ କାର୍ଯ୍ୟକଳାପ ପରିଲକ୍ଷିତ ହୁଏ । ଏହାରି କେତେକ ଉଦାହରଣ ଆମେ ବିଚ୍ଛେଦରେ ବିଚରଣ ମାଧ୍ୟମରେ ପାଉଁ ।

'ସୁଗ୍ରୀବର ଜାତକ' ଆଜିକାଲି ଅଧିକାଂଶ ରୂପହୀନା, ଧନୀ କନ୍ୟାମାନଙ୍କର ଜାତକ । ଯେଉଁ ପ୍ରେମରେ ଭଲପାଇବା ନଥାଇ ଉଦଗ୍ର କାମନାର ମୋହଥାଏ, ସେ ବନ୍ଧନ ସ୍ଥାୟୀ ହୋଇପାରେ ନାହିଁ । ସେଥିରେ ସାମୟିକ ସୁଖ ମିଳିପାରେ କିନ୍ତୁ ଶାନ୍ତି ମିଳେ ନାହିଁ । ସୁଗ୍ରୀବ ଠକି ଯାଇଛି, ଲେଖକ ଉକ୍ତ ଗଳ୍ପରେ ପ୍ରସଙ୍ଗକ୍ରମେ ଆଦର୍ଶ ପତିପତ୍ନୀ, ପିତାମାତାଙ୍କ ପ୍ରତି ଅନୁରକ୍ତିର ଅଭାବ, ଯୋଗ୍ୟତାର ଉଜ୍ଜୀବନ, ବିଭିନ୍ନ କ୍ଷେତ୍ରରେ ସତ୍ୟର ଅପଳାପ, ଭାଗ୍ୟର ବିଡ଼ମ୍ବନା ଆଦି ବିଷୟ ଉପରେ ଆଲୋକପାତ କରିଛନ୍ତି ।

'ମୁଁ କାଚମିଶ୍ରିତ କାଚ' ଗପରେ ନାରଣିଆ ମା' ମନରେ ସଂଶୟ । ସନ୍ଦେହର ନିଆଁରେ ସେ କୁହୁଳିବାକୁ ଲାଗିଲା । କଥା କଥାକେ ନାକ ଟୁଙ୍ଗାଡ଼ି ମୁହଁ ମୋଡ଼ିଲା, ଛିଟା ମେଲିଲା, ଯେତେ ଯାହା ଅକର୍ଥ୍ୟ ମନ୍ତବ୍ୟ କହିଲା । ଏହି ଅବସ୍ଥାରେ ବୋହୂକୁ ନେଇ ସେ ବସାଇ ଦେଲା ଶଶୁର ପାଖେ, ତା' ନିଜ ଥାନରେ । ହାତରୁ କାଚ ପିନ୍ଧା ହେଲା ପରେ ନାରଣିଆ ମା'ର ଚେତା ପଶିଲା, କାଚର ପ୍ରକୃତ ମୂଲ୍ୟ ସେ ବୁଝିପାରିଲା ।

ବାପା, ମା', ପିଲାଛୁଆଙ୍କ ସଂସାର ଭିତରେ ଜୀବନ ସରସ ହୁଏ । ସ୍ୱାମୀ, ସ୍ତ୍ରୀ ଏକାଠି ବସି ଭବିଷ୍ୟତ ଜୀବନ ପାଇଁ ଯୋଜନା ପ୍ରସ୍ତୁତ କଲାବେଳେ ମନରେ ଆନନ୍ଦ ଆସେ । କିନ୍ତୁ ଦେବଦୁର୍ଲଭଙ୍କ ଜୀବନରେ ଏ ଆଶା ପ୍ରଶ୍ନବାଚୀ ହୋଇ ରହିଯାଏ । ବାପା, ମା', ପୁଅ ସତେ ଯେମିତି ଗୋଟିଏ ତ୍ରିଭୁଜର ତିନୋଟି ବାହୁ । ତ୍ରିଭୁଜର ଗୋଟିଏ ବାହୁ ହେଇ ବିଶ୍ୱମିତ୍ରା ଉଡ଼ିଯା'ନ୍ତି ଦୂରରୁ ଦୂରକୁ ।......'ନାୟିକା ଓ ନେତ୍ରୀ' ଏକ ସଙ୍ଘାତମୂଳକ ଗଳ୍ପ । ନେତ୍ରୀ ଉଡ଼ା ଚଢେଇ, ନାୟିକା ପଞ୍ଜୁରୀର ପକ୍ଷୀ, କିନ୍ତୁ ଯାହାର ନାୟିକା ସମୟର ସୁଅରେ ନେତ୍ରୀ ହୋଇଯାଏ, ଦେବଦୁର୍ଲଭଙ୍କ ଭଳି ତା'ର ଦଶା ହେବନି ତ ଆଉ କ'ଣ ?

ଅହଂକାରୀ ସାମନ୍ତବାଦୀ ଚନ୍ଦ୍ରାଧର ଓ ତା'ର ପରିଣତିକୁ ନେଇ "ଏ ପୁଅ କ'ଣ କହୁଚି" ଗପର ସୃଷ୍ଟି ।......ଜମିଦାରୀ, ମକଦ୍ଦମା ଉଠିଗଲା, ଲୋକେ କରଜ ନେଇ ଆଉ ଶୁଝିବା ନାଁ ଧରିଲେ ନାହିଁ । ଭିତରେ ଭିତରେ ସତରେ ରାଧାଗୋବିନ୍ଦଙ୍କ ଶନି ହୋଇଗଲେ । ମାର୍ଗଶୀରମାସ ଗୁରୁବାରରେ ଖଳାବାଡ଼ିର ଧାନଗଦା ଲକ୍ଷ୍ମୀ ହଳାସବୁ ବୋହିନେଲେ, ସେ ହେଲେ ସର୍ବହରା, ଏକ ଘରକିଆ । ତଥାପି ରାଧାଗୋବିନ୍ଦଙ୍କ ମନର ଗାମ୍ଭୀର୍ଯ୍ୟରେ ପୂର୍ଣ୍ଣଚ୍ଛେଦ ପଡ଼ୁନଥିଲା । ପୁଅ ହରମୋହନର କଥାକୁ ସେ ତାଚ୍ଛଲ୍ୟ କରୁଥିଲେ ।.........ଅନ୍ୟର ହିତ ବା ମଙ୍ଗଳ ପାଇଁ ଯେଉଁ ଧନ ନିୟୋଜିତ ହୋଇ-

ପାରେ ନାହିଁ, ସେଭଳି ଧନ ଅର୍ଜନ ବା ସଞ୍ଚୟ ଶେଷରେ ସବୁପ୍ରକାର ଅପମାନ ଓ ଲାଞ୍ଛନାର କାରଣ ହୋଇଥାଏ ।

'ଦି'ଜଣ କୃଷୀ' ଗପଟିରେ ଜଣେ କଲମ, ଆଉଜଣେ ଲଙ୍ଗଳ ଗ୍ରହଣ କରେ । ଦେଶରେ ମୂଲିଆ ଜୀବନ ମୂଲ୍ୟହୀନ ନୁହେଁ । ସେମାନେ ନୂଆଯୁଗର ପୂଜାବେଦୀ ପକାନ୍ତି । କିନ୍ତୁ ଏ ଯୁଗର ବାବୁମାନଙ୍କ ନିକଟରେ ମୂଲିଆ ଜୀବନର କୌଣସି ଓଜନ ନାହିଁ । ଦାମ ସାହୁ ଚରିତ୍ର ମାଧ୍ୟମରେ ଲେଖକ ଏହି ସତ୍ୟତା ପ୍ରକାଶ କରିଛନ୍ତି ।

ଲେଖକ ଜାତୀୟ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ କହିଛନ୍ତି, "ମୁଁ ଓଡ଼ିଆ, ତୁ ଓଡ଼ିଆ, ଏକା ନାହିଁ ଦି'ଖଣ୍ଡ, ଯୋଉଠି ଥିଲେ ବି ଆମେ ଏକ ।"......ଧନିକ ଗୋଷ୍ଠୀ ବିରୁଦ୍ଧରେ ଲେଖକଙ୍କର ବିଦ୍ରୋହାତ୍ମକ ମନୋଭାବ ପ୍ରକାଶ ପାଇଛି । ବିଷୟବସ୍ତୁର ପରିସମାପ୍ତିରେ ଗଳ୍ପର ନାମକରଣ ବେଶ୍ ମନୋମୁଗ୍‌ଧକର ।

ଦିନକୁଦିନ ମାଗଣ୍ୟାଙ୍କ ସଂଖ୍ୟା ବଢ଼ିଚାଲିଛି । ଆମ ଗରିବ ଦେଶରେ ଏମାନେ ବୋଝ ଉପରେ ନଳିତା ବିଡ଼ା ପରି । ଲେଖକ ନିଜର ସୃଜନୀ ଶକ୍ତି ମାଧ୍ୟମରେ ଏହି ଜାତୀୟ ସମସ୍ୟାର ସମାଧାନ କରିବାକୁ ଆଗେଇ ଆସିଛନ୍ତି । ସର୍ବହରାର ଜୀବନାବଶେଷକୁ ଯୋଡ଼ି ସେ ଗଢ଼ିଛନ୍ତି 'ନୂଆ ସଂସାର' । ସେଥିରେ ଉମା ଫେରିପାଇଛି ତା'ର ଅଣଲେଉଟା ସ୍ୱାମୀକୁ । ମକୁନ୍ଦା ପାଇଛି ସତେଯେମିତି ତା' ପୂର୍ବ ସ୍ତ୍ରୀକୁ, ଆଉ ସନିଆଁ ଭେଟିଛି ତା'ର ବାପା, ବୋଉଙ୍କୁ...... । ଲେଖକ ସେଇମାନଙ୍କ କାନରେ ଜୀବନର ମହାମନ୍ତ୍ର ଫୁଙ୍କିଛନ୍ତି—"କାମ କରୁ କରୁ ମରିଯିବାହିଁ ସବୁଠାରୁ ବଡ଼ ପୁଣ୍ୟ" ।

"କହିଲ ମୁଁ କ'ଣ କରିବି"—ଏକ ସଂସ୍କାରଧର୍ମୀ; ସଚେତନବାଦୀ କ୍ଷୁଦ୍ରଗଳ୍ପ । ପିଚ୍ଛିଲ ଦିନର ଅତ୍ୟାଚାରୀ ରାଜାର ରାଜୋଚିତ ମନୋଭାବ, ନିଷ୍ଠୁର ଜମିଦାରର, ଶୋଷକ ସାହୁକାରର ଶାବ୍ଦିସ୍ୱର ଆଜି ନିମ୍ନ ମଧ୍ୟବିତ୍ତ ନଟର ରକ୍ତରେ, ଅସ୍ଥିରେ, ମଜ୍ଜାରେ, ରୁଣ୍ଡରେ ପ୍ରତିଫଳିତ । ନଟରୂପୀ ଚରିତ୍ର ଆଜିର ସମାଜରେ ବହୁ ସଂଖ୍ୟାରେ ଦେଖାଯା'ନ୍ତି । ସେଇମାନଙ୍କୁ ମୁକାବିଲା କରିବାକୁ ଲୋକମାନେ ସହଜରେ ଆଗେଇ ପାରନ୍ତି ନାହିଁ, ଫଳରେ ଅସହାୟ ଦୁଃଖୀ ଲୋକମାନେ ହିଁ ସେହି ଚରିତ୍ର-ମାନଙ୍କର ଶରବ୍ୟ ହୁଅନ୍ତି ।

"ଦେଖା ଆକାଶର ସେ ପାଖେ" ଗପରେ ନୀରଦଭୂଷଣଙ୍କ ବହିଃକର୍କଶତା ଭେଦ କରି ଲେଖକ ତାଙ୍କର ନିକଟତର ହୋଇଛନ୍ତି; ଆବିଷ୍କାର କରିଛନ୍ତି ତାଙ୍କ ଅନ୍ତରର ନରମ ମନ । ସ୍ତ୍ରୀଙ୍କର ଅକାଳବିୟୋଗ ନୀରଦଭୂଷଣଙ୍କୁ କରିଛି ସ୍ଥାଣୁ ।

ସମାଜ କହେ—ବୃଦ୍ଧର ବିବାହ ଅଧିକାର ନାହିଁ, ହେଲେ ଏ ଭାବନା ଯୁଗୋପଯୋଗୀ ନୁହେଁ, ସମାଜରେ ବଞ୍ଚି ରହିବାକୁ ହେଲେ ନିଃସଙ୍ଗ ଜୀବନ ବଡ଼

ଦୁଃଖପ୍ରଦ । ସମାଜରେ ବୁଢ଼ୀକୁମାରୀଙ୍କ ସଂଖ୍ୟା ନ୍ୟୂନ ନୁହେଁ । ପଲ୍ଲୀବାଳାଠୁ ଆରମ୍ଭ କରି ଶିକ୍ଷିତା ନାରୀ ସ୍ୱପ୍ନରେ ବିଭୋର ହେଉହେଉ ବୟସ ଗଡ଼ିଯାଇଛି । ଆହୁରି ଅଛନ୍ତି ଅନେକ ରୂପମୟୀ, ପରିତ୍ୟକ୍ତା ଅବା ବିଧବା, ବୃଦ୍ଧର ଭଙ୍ଗାଜୀବନକୁ ସେମାନେ ଗଢ଼ିଦେବେ ନୂତନ ଅନୁରାଗରେ । ଛିଡ଼ିଯାଇଥିବା ହୃଦୟର ତାରରେ ନୂତନ ସୁର ଭରି ଦେବେ । ଦେହର ପିପାସା ସେମାନଙ୍କ ମନରୁ ମରିଯାଇଥିଲେ ବି ସ୍ନେହ, ମମତା, ଭଲ ପାଇବାର ବୀଜ ଅଙ୍କୁରିତ ହେଲେ ଗୋଟିଏ ଜୀବନ ଅନ୍ୟଟିର ପରିପୂରକ ହେବ ।

'କଳା' କଳାକାରର ଜୀବନ । ଯେଉଁ ମୁହୂର୍ତ୍ତରେ ସେ ଖିଆଲକୁ ଛାଡ଼ି କଳାକୁ ନିଜର ଜୀବିକା ବୋଲି ଧରିନେବ, ସେତେବେଳେ କଳାର ଉତ୍କର୍ଷ ଲୋପ ପାଇବ । ଅଭାବର ଯେତେ ତାଡ଼ନା ଆସିଲେ ବି ସୁକଳାକାର ମୁଣ୍ଡ ନୁଆଁଏ ନାହିଁ । କଳାର ଉତ୍କର୍ଷ ଅର୍ଥର ମାନଦଣ୍ଡରେ ମାପି ହୁଏନା—ଏହା ଅମୂଲ୍ୟ । ଆଧୁନିକ ଶିଳ୍ପ ସଭ୍ୟତାର ପ୍ରସାର ସଙ୍ଗେ ସଙ୍ଗେ କଳା, ସାହିତ୍ୟ ଓ ସଂସ୍କୃତିର ମାଧୁର୍ଯ୍ୟ ଅସାର ହୋଇ ଉଠୁଛି । ଶିଳ୍ପ ମାଧ୍ୟମରେ ସମାଜ ଧନଲାଭ କରୁଛି, ହେଲେ ମନ ହରାଉଛି । କଳାର ଗ୍ରାହକ ଆଜି ଆଉ ନାହାନ୍ତି ।

"ସୂର୍ଯ୍ୟାସ୍ତର ଜଣେ ଶେଷ ଗ୍ରାହକ" ଉପର ନାମକରଣଟି ମଧ୍ୟ କଳାତ୍ମକ ଓ ଭାବୋଦ୍ଦୀପକ, ଗାଳ୍ପିକ ଏଠାରେ ଉତ୍କୃଷ୍ଟ କଳା ଓ କଳାକାରର ବିଲୋପକୁ ସୂର୍ଯ୍ୟାସ୍ତ ଓ ନିଜଗଳ୍ପର ନାୟକକୁ ଶେଷ ଗ୍ରାହକ ହିସାବରେ ବର୍ଣ୍ଣନା କରି ନାମକରଣର ଯଥାର୍ଥତା ପ୍ରତିପାଦନ କରିଛନ୍ତି ।

ଲେଖକଙ୍କ ଶେଷ ସମ୍ଭାର "ଭଗବାନଙ୍କ ଲୀଳା"ରେ ନଟ ସହିତ ଲେଖକ ଏକମତ ହୋଇ ପାରନ୍ତି ନାହିଁ । ତାଙ୍କ ମତରେ—ଜୀବନଟା ମଣିଷର ଲୀଳା । ମଣିଷ ଚେଷ୍ଟା କଲେ ଅସାଧ୍ୟ ସାଧନ କରିପାରେ । ନିଜ ଶିଙ୍ଗରେ ମାଟିତାଡ଼ି, ନିଜ ବାହୁବଳ ଓ ବୁଦ୍ଧି ଉପରେ ବିଶ୍ୱାସ କରି ସେ ବଡ଼ ମଣିଷ ହୋଇପାରେ । ଆଖି ବୁଜି ବସି ରହିଲେ ଭଗବାନ୍ ହାତ ପାଖରେ ଭାତ ଥାଳି ରଖିଦେବେ ନାହିଁ । ନିଜର କର୍ମ ଛାଡ଼ି ଭଗବାନଙ୍କୁ ଡାକିବା ଅନ୍ୟାୟ । କର୍ମତତ୍ପରତାରେ ଦେଶ ବଡ଼ ହୁଏ, ଭଗବାନଙ୍କୁ ଡାକି ନୁହେଁ । ମଣିଷ ଭିତରେ ଯେ କେତେ ଶକ୍ତି ଲୁଚି ରହିଛି, ସେ ସାଧନା ନ କଲେ ଜାଣି ପାରିବ ନାହିଁ । ଅବହେଳା ନ କରି ବାରମ୍ବାର ଚେଷ୍ଟା କଲେ ଭଗବାନ ସହାୟ ହୁଅନ୍ତି । ଏହା ଲେଖକଙ୍କ ମର୍ମବାଣୀ, ଯାହା ଜୀବନ ସଂଗ୍ରାମୀଙ୍କ ଅନ୍ତରାତ୍ମାରେ ପ୍ରତିଧ୍ୱନିତ ହେଉଥିବ ।

ଡଃ ଦାଶଙ୍କ ଗଳ୍ପ ସମ୍ଭାରରେ କୁହୁକର କାଉଁରୀକାଠି ନାହିଁ, ରଜାପୁଅର ବାରହାତ ଖଣ୍ଡା ଅବା ଅପ୍ସରୁଣୀର ଜୀବନନାଟି ନାହିଁ, ବାସ୍ତବତାର ପ୍ରଲେପ ଦେଇ ଗପ ସବୁକୁ ସେ ବେଶ୍ ଆକର୍ଷଣୀୟ କରିପାରିଛନ୍ତି । ଲେଖକଙ୍କ ମତରେ ଆଗେ ଜୀବନ, ପରେ ଗପ, ତେଣୁ "ହିସକାନ୍ଦର ଗପ"କୁ ଜୀବନ ଗପ କହିଲେ ଅତ୍ୟୁକ୍ତି ହେବନାହିଁ ।

* ଅଧ୍ୟାପିକା, କନ୍ଦରପୁର କଲେଜ, କଟକ

# ॥ ଓଡ଼ିଶାର ଲୋକସଂସ୍କୃତି, ଲୋକ-ସାହିତ୍ୟ ଓ ଲୋକରଙ୍ଗ ॥

ଡକ୍ଟର ଭଗବାନ ପଣ୍ଡା

ସାମ୍ପ୍ରତିକ ସଭ୍ୟତାର ପ୍ରଭାବ ଫଳରେ ସାଧାରଣ ଲୋକରୁଚିର ଦ୍ରୁତ ପରିବର୍ତ୍ତନ ଘଟୁଛି । ସମାଜର ଶିଳ୍ପାୟନ ଓ ନିତ୍ୟ ନୂତନ ବୈଜ୍ଞାନିକ ଉଦ୍‌ଭାବନଦ୍ୱାରା ପାରମ୍ପରିକ ଚେତନାର ସୁଦୃଢ଼ ଭିତ୍ତି କ୍ରମଶଃ ଦୁର୍ବଳତର ହେଉଛି ଏବଂ ପ୍ରାଚୀନତାର ମୂଲ୍ୟବୋଧ କମି କମି ଆସୁଛି । ଏହି ପରିବର୍ତ୍ତନର ପ୍ରଖର ପ୍ରଭାବରେ କେବଳ ଓଡ଼ିଶା ବା ଭାରତ ନୁହେଁ ସମଗ୍ର ପୃଥିବୀବାସୀ ପ୍ରଭାବିତ ହୋଇଛନ୍ତି । ତେଣୁ ଲୋକସଂସ୍କୃତିର ସ୍ୱାଭାବିକ ଓ ସ୍ୱଚ୍ଛଳ ପ୍ରବାହ ବହୁଭାବରେ ପର୍ଯ୍ୟୁଦସ୍ତ ଓ ବିପର୍ଯ୍ୟସ୍ତ ହୋଇପଡ଼ୁଛି । ତଥାପି ଏହି ପରିବର୍ତ୍ତନର ବହଳ ବାଲୁକା ଶଯ୍ୟାତଳେ ଲୋକସଂସ୍କୃତିର ଶାଶ୍ୱତ ଧାରା ଅନ୍ତଃସଲିଳା ଫଲ୍‌ଗୁ ପରି ଅଦ୍ୟାବଧି ଜୀବିତ ଅଛି । ଲୋକସାଧାରଣଙ୍କ ମନ ଓ ପ୍ରାଣରେ ଥିବା ସ୍ୱାଭାବିକ ସ୍ନେହ, ପ୍ରେମ, ଅନୁରାଗ, ବିଶ୍ୱାସ ଓ ଆନନ୍ଦର ପରିପୂର୍ଣ୍ଣ ଐଶ୍ୱର୍ଯ୍ୟ ମଧ୍ୟରେ ସେହି ସଂସ୍କୃତିର ସତ୍ତା ପ୍ରକାଶ ପାଇ ଆସୁଛି । ସେହି ସତ୍ତାର ଅନୁଭୂତି ପାଇଁ ସଭ୍ୟ ରସିକ ଅନୁଭବୀର ହୃଦୟଟିଏ ଆବଶ୍ୟକ ।

ଓଡ଼ିଶାର କଳା, ସଂସ୍କୃତି, ଧର୍ମ ଓ ଇତିହାସର ମୌଳିକ ରୂପ ଓ ପ୍ରକୃତି ଯୁଗ ଯୁଗ ଧରି ଲୋକସଂସ୍କୃତିର ବୈଚିତ୍ର୍ୟପୂର୍ଣ୍ଣ ପରିପ୍ରକାଶ ମଧ୍ୟରେ ସଂରକ୍ଷିତ ହୋଇ ରହି ଆସିଛି । ଲୋକ-ସାହିତ୍ୟ, ସଙ୍ଗୀତ, ନୃତ୍ୟ, ନାଟ୍ୟ, ଶିଳ୍ପ, ଧର୍ମବିଶ୍ୱାସ, ପର୍ବପର୍ବାଣୀ, ଓଷାବ୍ରତ ଓ ମେଳାମହୋତ୍ସବ ମଧ୍ୟରେ ହିଁ ଓଡ଼ିଶାର ସ୍ୱକୀୟ ସାଂସ୍କୃତିକ ବୈଶିଷ୍ଟ୍ୟ ବିକାଶ ଲାଭ କରିଛି । ଲୋକସଂସ୍କୃତିର ଏହି ବିଭାବଗୁଡ଼ିକର ମୂଳ ଉତ୍ସ ହେଉଛି ଦେଶ, କାଳ, ମାତ୍ର ଆଧାରିତ ସମାଜ, ଜନଗୋଷ୍ଠୀ ବା ଜାତିବିଶେଷ । ଜନସାଧାରଣ ବା ସମାଜବିଶେଷର ଇତିହାସ ହିଁ ଲୋକସଂସ୍କୃତିର ଇତିହାସ । ଐତିହାସିକ, ଭୌଗୋଳିକ, ସାମାଜିକ, ଅର୍ଥନୈତିକ ପରିବେଶ ଓ ଜନଗୋଷ୍ଠୀର ନୃତାତ୍ତ୍ୱିକ ବୈଶିଷ୍ଟ୍ୟର ପୃଷ୍ଠଭୂମିରେ ଦେଶ-ବିଶେଷର ଲୋକସଂସ୍କୃତି ନିଜର ବୈଶିଷ୍ଟ୍ୟକୁ ନେଇ ଆତ୍ମପ୍ରକାଶ କରିଥାଏ । ତେଣୁ ଲୋକସଂସ୍କୃତିର ଅଧ୍ୟୟନ କ୍ଷେତ୍ରରେ ଏସବୁ ବିଷୟର ପର୍ଯ୍ୟାଲୋଚନାକୁ ଉପେକ୍ଷା କରିଯାଇ ନ ପାରେ ।

ଭାରତର ଅନ୍ୟାନ୍ୟ ଅଞ୍ଚଳ ସହିତ ଓଡ଼ିଶାର ଲୋକ ସଂସ୍କୃତିରେ ଆଞ୍ଚଳିକ ଓ ଭୌଗୋଳିକ ବୈଶିଷ୍ଟ୍ୟସୂଚକ ବହୁ ପ୍ରକୃତାର୍ଥିକ ନିଦର୍ଶନ ମିଳିଛି । ଓଡ଼ିଶାର ପ୍ରାକୃତିକ ଗଠନ ଯେପରି ବିଚିତ୍ର ଲୋକସାଧାରଣଙ୍କ ଆକୃତି, ପ୍ରକୃତି ଓ ସଂସ୍କୃତି ମଧ୍ୟ ସେହିପରି ବୈଚିତ୍ର୍ୟମୟ । ବହୁ ପାହାଡ଼, ପର୍ବତ, ନଦ, ନଦୀ ଉପତ୍ୟକା, ଘନ ଅରଣ୍ୟ, ମାଳ-ଭୂମି, ସୁବିସ୍ତୃତ ସାଗର ଉପକୂଳକୁ ନେଇ ଗଠିତ ଓଡ଼ିଶାର ପ୍ରାକୃତିକ ପରିବେଶ ମଧ୍ୟରେ ଲୋକସଂସ୍କୃତିର ଉଦ୍‌ଭବ ଓ ବିକାଶ ଘଟିଛି । ମାଳ ଅଞ୍ଚଳଠାରୁ ଉପକୂଳ ପର୍ଯ୍ୟନ୍ତ ବିଭିନ୍ନ ପ୍ରକାର ପ୍ରାକୃତିକ ପରିବେଶ ମଧ୍ୟରେ ବସବାସ କରୁଥିବା ଲୋକେ, ଭାଷାସୂତ୍ରରେ ଏକତାବଦ୍ଧ ଥିଲେ ମଧ୍ୟ 'ନଈକେ ବାଙ୍କ୍ ଦେଶ୍‌କେ ଫାଙ୍କ୍' ନ୍ୟାୟରେ ଅଞ୍ଚଳବିଶେଷର ଜୀବନଯାପନ ପ୍ରଣାଳୀକୁ ଭିତ୍ତି କରି ଗଢ଼ି ଉଠିଥିବା ବିଭିନ୍ନ ପ୍ରକାର ଧାରଣା, ବିଶ୍ୱାସ ଓ ବିଚାରକୁ ନେଇ ଓଡ଼ିଶାର ଲୋକସଂସ୍କୃତିରେ ସ୍ୱତନ୍ତ୍ରତା ପ୍ରକାଶ ପାଇଛି । ଓଡ଼ିଶାର ବଣ, ପାହାଡ଼, ନଦୀ, ନାଳ, ବିଲମାଳରେ ଯେ ବୁଲିଛି ଏବଂ ବିଭିନ୍ନ ବେଶ ପୋଷାକ, ଖାଦ୍ୟପେୟ, ଆଚାର ବ୍ୟବହାର, ଭାବ ଓ ଭାଷାର ରସ ଯେ ଚାଖିଛି ସେହି କେବଳ ଲୋକସଂସ୍କୃତିର ବର୍ଣ୍ଣାଢ୍ୟ ରୂପବିଭବ ଓ ଅଫୁରନ୍ତ ପ୍ରାଣସ୍ପନ୍ଦନ ଅନୁଭବ କରି ପାରିବ ।

ଓଡ଼ିଶା ଉତ୍ତର ଭାରତ ଓ ଦକ୍ଷିଣ ଭାରତର ସଙ୍ଗମସ୍ଥଳୀ । ଏଠାରେ ଉଭୟ ସଂସ୍କୃତିର ମିଳନ ଓ ମିଶ୍ରଣ ଘଟିଛି । କେବଳ ସେତିକି ନୁହେଁ ଉଭୟ ଅଞ୍ଚଳର ବିଭିନ୍ନ ଜନଗୋଷ୍ଠୀ ସହିତ ଭିନ୍ନ ଭିନ୍ନ ସମ୍ପ୍ରଦାୟରେ ବିଭକ୍ତ ଆଦିବାସୀ, ସାଧାରଣ କୃଷିଜୀବୀ ଓ ଉଚ୍ଚବର୍ଗୀୟ ଲୋକେ ଓଡ଼ିଶାରେ ବସବାସ କରନ୍ତି । ତେଣୁ ଉଣା ଅଧିକେ ଏମାନେ ସମସ୍ତେ ଓଡ଼ିଶାର ଲୋକସଂସ୍କୃତିକୁ ସମୃଦ୍ଧ କରି ଆସିଛନ୍ତି । 'ଯଥା ନଦୀନାଂ ବହବୋଽମ୍ବୁବେଗାଃ ସମୁଦ୍ରମେବାଭିମୁଖାଃ ଦ୍ରବନ୍ତି' ସେହିପରି ଏମାନଙ୍କ ସାଂସ୍କୃତିକ ଚେତନାର ସ୍ରୋତ ଏକାକାର ହୋଇ ଓଡ଼ିଶାର ସାଂସ୍କୃତିକ ମହାସାଗରର ଗାମ୍ଭୀର୍ଯ୍ୟ ବୃଦ୍ଧିରେ ସହାୟକ ହୋଇଛନ୍ତି । ତେଣୁ ଓଡ଼ିଶାର ଧାର୍ମିକ ଓ ସାମାଜିକ ଜୀବନରେ ଯେଉଁ ବୈଚିତ୍ର୍ୟ ଫୁଟି ଉଠିଛି ତାହାର ତୁଳନା ନାହିଁ । ସେହି ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟର ଶ୍ରେଷ୍ଠ ପ୍ରତୀକ ହେଉଛନ୍ତି ଶ୍ରୀଜଗନ୍ନାଥ । ସେ ବୈଦିକ ଆର୍ଯ୍ୟ ଓ ଲୌକିକ ଆର୍ଯ୍ୟେତରଙ୍କ ମଧ୍ୟରେ ପୁରୁଷୋତ୍ତମ ଭାବେ ଅଭିହିତ । ଶ୍ରୀଜଗନ୍ନାଥଙ୍କ ପୂଜା ଉପଚାରରେ ବୈଦିକ ବିଧିବିଧାନର ଯେତିକି ପ୍ରଭାବ ରହିଛି ଲୋକ-ଆଚାର, ବିଚାର, ବ୍ୟବହାର ଓ ବିଶ୍ୱାସର ତତୋଧିକ ପ୍ରାଧାନ୍ୟ ପ୍ରତିଫଳିତ ହୋଇଛି । ଶ୍ରୀଜଗନ୍ନାଥଙ୍କୁ ବାଦ୍ ଦେଇ ଓଡ଼ିଶାର ଲୋକସଂସ୍କୃତି ଅଧ୍ୟୟନ ସମ୍ଭବ ନୁହେଁ; କାରଣ, ଶ୍ରୀଜଗନ୍ନାଥଙ୍କ ପରି ଲୋକ-ସଂସ୍କୃତିମୂଳକ ସାର୍ବଜନୀନ ପ୍ରତୀକର ପଟାନ୍ତର ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଭାରତର ପୂର୍ବପ୍ରାନ୍ତରେ ଅବସ୍ଥିତ ଓଡ଼ିଶାରେ ଆର୍ଯ୍ୟସଂସ୍କୃତି ପ୍ରସାରର ବହୁ ପୂର୍ବରୁ ଆର୍ଯ୍ୟେତର ସଂସ୍କୃତିର ଏକ ସୁଦୀର୍ଘ ପରମ୍ପରା ଥିଲା ବୋଲି ନୃତତ୍ତ୍ୱବିତ୍,

ଜାତିତତ୍ତ୍ୱବିତ୍ ଓ ଭାଷାତତ୍ତ୍ୱବିତ୍‌ମାନଙ୍କ ଆଲୋଚନାରୁ ଜଣାଯାଏ । ତେଣୁ ଓଡ଼ିଶାରେ ଲୋକସଂସ୍କୃତିର ଏକ ମୌଳିକ ରୂପ ଯେ ଦୀର୍ଘକାଳ ଧରି ଅବିକୃତଭାବେ ସଂରକ୍ଷିତ ଥିଲା ସେଥିରେ ସନ୍ଦେହ ନାହିଁ । ସେହି ଲୌକିକ ଉପାଦାନଗୁଡ଼ିକର ପର୍ଯ୍ୟାପ୍ତ ପ୍ରଭାବକୁ ଆତ୍ମସାତ୍ କରି ଓଡ଼ିଶାରେ ପରବର୍ତ୍ତୀକାଳୀନ ଆର୍ଯ୍ୟସଂସ୍କୃତି ବିକାଶ ଲାଭକରିଥିଲା । କାରଣ ଓଡ଼ିଶାର ସାମାଜିକ, ଧାର୍ମିକ ଓ ସାଂସ୍କୃତିକ ଜୀବନରେ ଅନୁସୃତ ରୀତି ନୀତି, ଆଚାର ବ୍ୟବହାର, ବିଶ୍ୱାସ ଓ ବିଚାରକୁ ଆଦିବାସୀ ସମ୍ପ୍ରଦାୟର ଜୀବନଧାରା ବହୁ-ଭାବରେ ପ୍ରଭାବିତ କରିଥିବାର ତତ୍‌ବିତ୍‌ମାନେ ମତ ଦିଅନ୍ତି ।

ଆଦିବାସୀ ସମାଜ କାଳକ୍ରମେ ଜାତୀୟ ସଂସ୍କୃତିର ପ୍ରଗତିଶୀଳ ଧାରାରୁ ବିଚ୍ୟୁତ ହୋଇ ନିଜର ସ୍ୱାତନ୍ତ୍ର୍ୟ ମଧ୍ୟରେ ଆତ୍ମରକ୍ଷା କରିଛୁ । କିନ୍ତୁ ଭୌଗୋଳିକ ଅବସ୍ଥିତିଗତ ସାନ୍ନିଧ୍ୟ ଫଳରେ ସେମାନେ ନିକଟବର୍ତ୍ତୀ ଅଞ୍ଚଳର ଲୋକସଂସ୍କୃତିକୁ ବିଶେଷଭାବେ ପ୍ରଭାବିତ କରିଛନ୍ତି ଏବଂ କାଳକ୍ରମେ ନିଜେ ମଧ୍ୟ ପ୍ରଭାବିତ ହୋଇଛନ୍ତି । ବଣ, ପାହାଡ଼, ନଈ, ନାଳଦ୍ୱାରା ବିଚ୍ଛିନ୍ନ ଗ୍ରାମ, ବନ ଓ ପାର୍ବତ୍ୟ ଭୂମିରେ ବାସ-କରୁଥିବା ଆଦିବାସୀମାନଙ୍କ ଆଚାର, ଅନୁଷ୍ଠାନ, ଶିଳ୍ପ ଓ ସଂସ୍କୃତିର ମୌଳିକ ତାତ୍ପର୍ଯ୍ୟର ଅନୁଶୀଳନରୁ ସେମାନେ ଭାରତର ଆଦିମ ଅଧିବାସୀ ଓ ଭାରତୀୟ ସଂସ୍କୃତିର ପ୍ରକୃତ ପ୍ରବର୍ତ୍ତକ ଓ ଉତ୍ତର ସାଧକ ଥିବାର ଜଣାଯାଏ । ସମଗ୍ର ଭାରତ ପକ୍ଷରେ ଏହା ଯେପରି ସତ୍ୟ ଓଡ଼ିଶାର ଲୋକସଂସ୍କୃତି ବିକାଶ କ୍ଷେତ୍ରରେ ଆଦିବାସୀ ପ୍ରଭାବ ସେହିପରି ଗୁରୁତ୍ୱପୂର୍ଣ୍ଣ ।

ବହୁକାଳ ଧରି ପ୍ରଚଳିତ ସଭ୍ୟତା ଓ ସଂସ୍କୃତିଗତ ବିବର୍ତ୍ତନ ମଧ୍ୟ ଦେଇ ଆର୍ଯ୍ୟ, ଆର୍ଯ୍ୟେତର ବା ଆଦିବାସୀଗୋଷ୍ଠୀ ମଧ୍ୟରେ ଯେଉଁ ଆତ୍ମୀକରଣ ପ୍ରକ୍ରିୟାର ଉଦ୍‌ଭବ ହେଲା ସେଥିରୁ ଆତ୍ମପ୍ରକାଶ ଲାଭ କଲା ଜାତୀୟ ସମନ୍ୱୟ ଭାବନା । ଲୋକସଂସ୍କୃତିର ଏହି ପୃଷ୍ଠଭୂମିରେ ଭାରତୀୟ ହିନ୍ଦୁ ସଭ୍ୟତାର ଭିତ୍ତି ପ୍ରତିଷ୍ଠିତ । ତାହାର ଉପରେ ଗଢ଼ିଉଠିଛି ସାଧାରଣ ସଂସ୍କୃତିର ବିଶାଳ ଦୁର୍ଗ । ଏକ ପକ୍ଷରେ ପ୍ରାକୃତିକ ଓ ଭୌଗୋଳିକ ପରିବେଶ ଏବଂ ବିଭିନ୍ନ ଜନଗୋଷ୍ଠୀର ମିଶ୍ରିତ ଭାବନାରେ ଓଡ଼ିଶାର ସଂସ୍କୃତି ସ୍ୱକୀୟ ବୈଶିଷ୍ଟ୍ୟ ପ୍ରତିଷ୍ଠା କରିଥିବାବେଳେ ଅନ୍ୟପକ୍ଷରେ ଆତ୍ମୀକରଣ ଓ ସମ୍ମିଶ୍ରଣ ଫଳରେ ଓଡ଼ିଶାର ସାଧାରଣ ସମାଜରେ ଲୋକସଂସ୍କୃତି ନିତ୍ୟ ନୂତନ ଧାରାରେ ବିକାଶଲାଭ କରିଛି । ଓଡ଼ିଶାର ଲୋକ-ସଂସ୍କୃତିରେ ବର୍ଣ୍ଣ, ଜାତି ଓ ଧର୍ମର ସାମ୍ପ୍ରଦାୟିକ ସଂକୀର୍ଣ୍ଣତା ଅନୁପ୍ରବେଶ କରି ନାହିଁ । ଜାତି, ଗୋଷ୍ଠୀ, ଧର୍ମ ନିର୍ବିଶେଷରେ ସମସ୍ତେ ଲୋକସଂସ୍କୃତିର ବିଚିତ୍ର ଚନ୍ଦ୍ରାତପ ତଳେ ଆଶ୍ରୟ ନେଇଛନ୍ତି । ତେଣୁ ଓଡ଼ିଶାର ଲୋକସଂସ୍କୃତିରେ ଆର୍ଯ୍ୟ, ଦ୍ରାବିଡ଼, ହିନ୍ଦୁ, ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ, ମୁସଲମାନ, ପ୍ରଭୃତିଙ୍କ ବିଭିନ୍ନ ମାନସ ବୈଶିଷ୍ଟ୍ୟର ବିଚିତ୍ର ଧାରା ପ୍ରବାହିତ ଥିବାର ପରିଲକ୍ଷିତ ହୁଏ ।

ଲୋକ ସଂସ୍କୃତିର ବୈଶିଷ୍ଟ୍ୟ ପ୍ରତିପାଦନ କରିବାକୁ ଯାଇ ଆଲୋଚକ ଡ଼ଃ ତୁଷାର ଚଟ୍ଟୋପାଧ୍ୟାୟ କହିଛନ୍ତି —ପ୍ରାକୃତିକ ପରିବେଶ, ଭୌଗୋଳିକ ଅବସ୍ଥାନ, ସ୍ୱଚ୍ଛନ୍ଦ ଜୀବନଯାପନର ଉପାୟ, ବିଚିତ୍ର ଜନଗୋଷ୍ଠୀର ବିବର୍ତ୍ତନ, ବିଳମ୍ବିତ ଆର୍ଯ୍ୟପ୍ରଭାବ, ପ୍ରାନ୍ତୀୟ ଉପଜାତି—ଆଦିବାସୀ ସାନ୍ନିଧ୍ୟ, ପାର୍ଶ୍ୱବର୍ତ୍ତୀ ପ୍ରଦେଶ ସମୂହର ବିଭିନ୍ନ ଭାଷାଭାଷୀ ଉପଜାତି ସଂସ୍କୃତିର ପ୍ରଭାବ ଓ ଦ୍ୱନ୍ଦ୍ୱସମନ୍ୱୟ, ମିଶ୍ର ସଂସ୍କୃତିର ପ୍ରତିସ୍ପର୍ଦ୍ଧୀ ସମାଜମାନଙ୍କର ବିପରୀତଧର୍ମୀ ସାଂସ୍କୃତିକ ଉପକରଣ ସ୍ୱାଙ୍ଗୀକରଣ କ୍ଷମତାର ପ୍ରକୃଷ୍ଟ ପୃଷ୍ଠଭୂମିରେ ଲୋକ ସଂସ୍କୃତିର ବହୁ ବିଚିତ୍ର ଧାରା ସାହିତ୍ୟ—ସଙ୍ଗୀତ—ନୃତ୍ୟ—ନାଟ୍ୟ -ଧର୍ମବିଶ୍ୱାସ ଆଚାର-ଆଚରଣ-ପର୍ବପର୍ବାଣୀ- ଉତ୍ସବ ଅନୁଷ୍ଠାନ- ଶିଳ୍ପକଳା ପ୍ରଭୃତିରେ ସମୃଦ୍ଧତମ ଅଭିବ୍ୟକ୍ତି ଲାଭ କରିଛି ।

ଲୋକକବି ଡ଼ଃ କୁଞ୍ଜବିହାରୀ ଦାଶଙ୍କ ଅନୁସାରେ "ଲୋକ ଶବ୍ଦ ବିଶେଷ ବ୍ୟାପକ । ଏହାର ଅର୍ଥ ସର୍ବସାଧାରଣ ଜନତା । କନ୍ଧ, କୋହ୍ଲ, ସାନ୍ତାଳ, ଭୂୟାଂ, ଗଣ୍ଡ, ଶବରାଙ୍କଠାରୁ ଆରମ୍ଭ କରି ପଲ୍ଲୀ ଓ ନଗରର ଅଶିକ୍ଷିତ, ଅର୍ଦ୍ଧଶିକ୍ଷିତ ଜନତା ପର୍ଯ୍ୟନ୍ତ ସମସ୍ତେ ଏହାର ଅନ୍ତର୍ଗତ । ଏ ଲୋକ ମଧ୍ୟରେ ବହୁ ଗୋଷ୍ଠୀ । ଗୋଷ୍ଠୀର ବିଭିନ୍ନ ବ୍ୟକ୍ତିଙ୍କ ମଧ୍ୟରେ ସାଂସ୍କୃତିକ ବୈଷମ୍ୟ ଅଳ୍ପ, ଆଚାର- ବିଚାର, ଚଳଣିରେ ତାରତମ୍ୟ ସାମାନ୍ୟ । ଚିନ୍ତାର ଧାରା ଗୋଟିଏ ସୀମା ମଧ୍ୟରେ ଆବଦ୍ଧ ଥାଏ । ଏମାନଙ୍କ ସଂସ୍କୃତିକୁ ଲୋକ ସଂସ୍କୃତି କୁହାଯାଏ । + + + । ଭାରତୀୟ ସଂସ୍କୃତି, ବୈଦିକ ସଂସ୍କୃତି ଓ ଲୋକ ସଂସ୍କୃତିର ସମ୍ମିଳିତ ରୂପ । ଲୋକକଳା, ଲୋକଶିଳ୍ପ, ଲୋକସାହିତ୍ୟ ପ୍ରଭୃତି ଜନତାର ସମସ୍ତ କୃତିତ୍ୱକୁ ନେଇ ଲୋକସଂସ୍କୃତି ଗଠିତ । ଯେଉଁ ସାହିତ୍ୟକୁ ମହାବିଦ୍ୱାନଠାରୁ ଗଣ୍ଡମୂର୍ଖ ସମସ୍ତେ ବୁଝି ପାରନ୍ତି ତାହାକୁ ଲୋକସାହିତ୍ୟ କହନ୍ତି ।"

ଲୋକ ସାହିତ୍ୟ ଲୋକସଂସ୍କୃତିର ବାହକ । ଏହାର ନିର୍ଦ୍ଦିଷ୍ଟ କାଳନିର୍ଣ୍ଣୟ ସମ୍ଭବ ନୁହେଁ । ବିଷୟ ବସ୍ତୁର ଆକାର ପ୍ରକାରକୁ ନେଇ ଲୋକସାହିତ୍ୟର କଳେବରରେ ରୂପରୂପାନ୍ତର ଘଟୁଥିଲେ ମଧ୍ୟ ଯୁଗ ଯୁଗ ଧରି ଏହାର ପ୍ରକାଶନ ଶୈଳୀରେ ସ୍ୱତନ୍ତ୍ରଧାରା ସଂରକ୍ଷିତ ଅଛି । ସୁଖଦୁଃଖ, ଆନନ୍ଦଉତ୍ସବ, ସମାଜ, ଧର୍ମବିଶ୍ୱାସ, ଭୌତିକ ଓ ପାରମାର୍ଥିକ ଚିନ୍ତା ସମ୍ବନ୍ଧୀୟ ସାଧାରଣ ଜନମାନସର ସ୍ୱତଃସ୍ଫୂର୍ତ୍ତି ନେଇପକାଏ । ଲୋକସାହିତ୍ୟର ମୂଳ ଉତ୍ସ । ଲୋକ ସାହିତ୍ୟର ପରିସୀମା ଯେପରି ବ୍ୟାପକ ତାହାର ରୂପ, ଗୁଣ ଓ ଅବେଦନ ସେହିପରି ବିଚିତ୍ର । ଏହାର ବିଭାଗୀକରଣ ବିଷୟରେ ଆଲୋଚକମାନେ ବିଭିନ୍ନ ପ୍ରକାର ବିଚାର ଉପସ୍ଥାପିତ କରିଥିଲେ ମଧ୍ୟ ତାହା ସମ୍ପୂର୍ଣ୍ଣ ଓ ସର୍ବସମ୍ମତ ନୁହେଁ । କାରଣ, ଯାହାର ସୃଷ୍ଟି ଅସୀମ ତାହାର ବିଭାଗୀକରଣ ସୀମିତ ହେବା ସମ୍ଭବ ନୁହେଁ । ତଥାପି ଅନୁଶୀଳନର ସୁବିଧା ନିମିତ୍ତ ଲୋକସାହିତ୍ୟକୁ ଗଦ୍ୟ (କଥା) ଓ ପଦ୍ୟ (ଗୀତ) ଭାବେ ଦୁଇ ଭାଗରେ ବିଭକ୍ତ କରାଯାଇଛି । ଉଭୟ ପୁଣି ବହୁ ବିଭାଗ ଓ ଉପବିଭାଗରେ

ଥିଲେ । ଲୋକସାହିତ୍ୟରେ ପ୍ରତିଫଳିତ ଲୋକବିଶ୍ୱାସ ଓ ସଂସ୍କାର ମୁଖ୍ୟତଃ ଦେବତାମନ୍ଦିର, ଗୁଣିଗାରେଡ଼ି, ସାମାଜିକ, ଅର୍ଥନୈତିକ, କୃଷି ସମ୍ବନ୍ଧୀୟ, ଦେବଦେବୀ, ଭୂତପ୍ରେତ, କୌତୁକ, ସ୍ୱପ୍ନ, ଶକୁନ ଆଦି ବିଭାଗରେ ଏବଂ ଏଗୁଡ଼ିକ ପ୍ରତ୍ୟେକ ପୁଣି ସ୍ଥାନ, କାଳ, ପାତ୍ର, ଧର୍ମ ଭେଦରେ ପୁନର୍ବିଭକ୍ତ ହୋଇଥିବାର ଦେଖାଯାଏ । ଏହି ପୃଷ୍ଠ-ଭୂମିରେ ଓଡ଼ିଆ ଲୋକ ସାହିତ୍ୟ ଓ ସଂସ୍କୃତିର ଅନୁଶୀଳନ କ୍ଷେତ୍ରରେ ଲୋକରତ୍ନ କବି ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ସ୍ମରଣୀୟ ଅବଦାନର ସୂଚନା ଦିଆଯାଇ ପାରେ ।

ଓଡ଼ିଆ ଲୋକ ସାହିତ୍ୟର ବୈଜ୍ଞାନିକ ଅଧ୍ୟୟନ କ୍ଷେତ୍ରରେ ଯେଉଁ କୃତବିଦ୍ୟ ଗବେଷକଗଣ ଅକ୍ଳାନ୍ତ ଉଦ୍ୟମ କରିଆସିଛନ୍ତି ସେମାନଙ୍କ ମଧ୍ୟରେ କବି ଡକ୍ଟର ଦାଶଙ୍କ ଉଦ୍ୟମ ଓ ଅବଦାନ ଉଲ୍ଲେଖଯୋଗ୍ୟ । ତାଙ୍କ ପ୍ରଣୀତ 'ଓଡ଼ିଆ ଲୋକଗୀତ ଓ କାହାଣୀ' ଶୀର୍ଷକ ଓଡ଼ିଆ ଭାଷାର ପ୍ରଥମ ଗବେଷଣାତ୍ମକ ସନ୍ଦର୍ଭ ଓଡ଼ିଶା ତଥା ଓଡ଼ିଶା ବାହାରର ବହୁ ବିଦଗ୍ଧ ପାଠକଙ୍କୁ ଓଡ଼ିଆ ଲୋକସାହିତ୍ୟ ଓ ସଂସ୍କୃତି ସମ୍ବନ୍ଧୀୟ ଅଧ୍ୟୟନ ନିମିତ୍ତ ମାର୍ଗ ପ୍ରଦର୍ଶକ ଭାବେ ବିଶେଷଭାବେ ଅନୁପ୍ରେରିତ କରିଆସିଛି । ଏହି ନିବନ୍ଧ ରଚନା କରି ସେ ୧୯୫୪ରେ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ଡକ୍ଟର (ବିଦ୍ୟାବାରିଧି) ଉପାଧିରେ ଭୂଷିତ ହୋଇଛନ୍ତି । ୧୯୫୮ରେ ଶାନ୍ତିନିକେତନରୁ ଏହା ପ୍ରକାଶ ପାଇଛି । ଏହି ଗ୍ରନ୍ଥରେ ଓଡ଼ିଆ ଲୋକ ସାହିତ୍ୟ କ୍ଷେତ୍ରରେ କାର୍ଯ୍ୟ କରିଥିବା ପୂର୍ବସୂରୀମାନଙ୍କ ବିଷୟରେ ସେ ଯେଉଁ ଦିଗ୍‌ଦର୍ଶନ ପ୍ରଦାନ କରିଛନ୍ତି ଯେଥିରୁ ଆଲୋଚ୍ୟ ବିଷୟର ଐତିହାସିକ ସୂଚନା ଉପଲବ୍ଧ ହୁଏ ।

ଜନ୍ ବୀମ୍ସ ସାହେବଙ୍କ ଲିଖିତ Folklore of Orissa ପ୍ରବନ୍ଧ ୧୮୭୨ ମସିହାରେ ପ୍ରକାଶ ପାଇବା ପରେ ପଣ୍ଡିତ କପିଳେଶ୍ୱର ନନ୍ଦ ବିଦ୍ୟାଭୂଷଣ 'ଢଗଢମାଳି' ଶୀର୍ଷକ ପୁସ୍ତକଟିଏ ୧୮୦୬ ମସିହାରେ ଛପାଇ ବିଦଗ୍ଧ ସମାଜକୁ ଲୋକସାହିତ୍ୟ ପ୍ରତି ଆକୃଷ୍ଟ କରିବାରେ ସର୍ବପ୍ରଥମ ଉଦ୍ୟମ ଆରମ୍ଭ କରିଥିଲେ । ଏହାପରେ ରାଘବାନନ୍ଦ ଦାସଙ୍କ 'କଥାଲହରୀ' (୧୯୦୧), ନୀଳମଣି ବିଦ୍ୟାରତ୍ନଙ୍କ ସଙ୍କଳିତ 'ଢଗଢମାଳି' (୧୯୦୩), ରାଘବାନନ୍ଦ ଦାସଙ୍କ 'କୃଷି ସମ୍ବନ୍ଧୀୟ ପ୍ରବଚନ' ଓ ପଣ୍ଡିତ ଭଗବାନ ହୋତାଙ୍କ 'ଓଡ଼ିଆ ପ୍ରବାଦମାଳା' (୧୯୧୪), ରାଧାଚରଣ ମହାପାତ୍ରଙ୍କ 'ଉତ୍କଳକାହାଣୀ ଦର୍ପଣ' (୧୯୨୧), ଅପର୍ଣ୍ଣା ପଣ୍ଡାଙ୍କ 'ଢଗମାଳିକା ତତ୍ତ୍ୱବୋଧିନୀ' (୧୯୨୩), ଗୋପାଳ-ଚନ୍ଦ୍ର ପ୍ରହରାଜଙ୍କ 'ଉତ୍କଳ କାହାଣୀ' ଓ 'ଢଗଢମାଳି ବଚନ' (୧୯୨୬), ଚକ୍ରଧର ମହାପାତ୍ରଙ୍କ 'ଉତ୍କଳ ଗାଉଁଲିଗୀତ' (୧୯୩୧) ଏବଂ ୧୯୪୭ରେ ଲକ୍ଷ୍ମୀନାରାୟଣ ସାହୁଙ୍କ 'ଗାନ୍ଧର୍ବିକା ଶତଦଳ' ପୁସ୍ତକ ପ୍ରକାଶିତ ହେଲା । ଡକ୍ଟର ଦାଶ ମଧ୍ୟ ପୂର୍ବସୂରୀଙ୍କ ପନ୍ଥା ଅନୁସରଣ ପୂର୍ବକ ୧୯୪୮ରେ 'ପଲ୍ଲୀପୁଷ୍ପ' ଓ ୧୯୫୦ରେ 'ପଲ୍ଲୀନିର୍ଝରଣୀ' ଶୀର୍ଷକ ଲୋକଗୀତ ସଂଗ୍ରହାତ୍ମକ ଦୁଇଟି ଗ୍ରନ୍ଥ ପ୍ରକାଶ କରିଥିଲେ । ପାଠକ ସମାଜରେ ଗ୍ରନ୍ଥ ଦୁଇଟିର ସବିଶେଷ ଆଦର କବିଙ୍କୁ ଲୋକଗୀତ ପ୍ରତି ଆକୃଷ୍ଟ କଲା । ଲୋକଗୀତ ଓ ଲୋକକଥାର ରସ ଓ ଭାବରେ ଭାବବିଭୋର ହୋଇ କବି ଦ୍ୱିଗୁଣ ଉତ୍ସାହର ସହିତ

ସେହି କଥା ଓ ଗୀତ ସଂଗ୍ରହରେ ମନୋନିବେଶ କଲେ । ତାଙ୍କଦ୍ୱାରା ସଂଗୃହୀତ ଓ ସଂକଳିତ 'ପଲ୍ଲୀଗୀତି ସଞ୍ଚୟନ' ପ୍ରଥମଭାଗ ୧୯୫୪ରେ ଏବଂ 'କଥାଟିଏ କହୁଁ' ଶୀର୍ଷକ ଲୋକଗଳ୍ପ ଗ୍ରନ୍ଥର ପ୍ରଥମ ଓ ଦ୍ୱିତୀୟ ଭାଗ ଯଥାକ୍ରମେ ୧୯୫୬ ଓ ୧୯୫୭ରେ ପ୍ରକାଶ ପାଇଛି ।

ଓଡ଼ିଆ ଲୋକସାହିତ୍ୟର ଜଣେ ଶ୍ରେଷ୍ଠ ଅନୁରାଗୀ ସାଧକ ଭାବେ ଡ଼ଃ ଦାଶ ପୂର୍ବୋକ୍ତ ଗବେଷଣାତ୍ମକ ନିବନ୍ଧ ରଚନା ଦ୍ୱାରା ଓଡ଼ିଆ ଲୋକସାହିତ୍ୟ ଓ ସଂସ୍କୃତିର ଅଧ୍ୟୟନ କ୍ଷେତ୍ରରେ ପ୍ରଥମ କରି ଗବେଷଣାର ସୁଦୃଢ଼ଭିତ୍ତି ସ୍ଥାପନ କଲେ । ଓଡ଼ିଶାର ପୂର୍ବରୁ ପଶ୍ଚିମ ଓ ଉତ୍ତରରୁ ଦକ୍ଷିଣ ସୀମାଯାଏ ଯାଯାବର ପରି ବୁଲି ବୁଲି ସାଧାରଣ ଜନମାନସର ବିଭିନ୍ନ ଭାବ ପ୍ରକାଶକ ବିବିଧ ଢ଼ଗ ଢମାଳି, ପ୍ରବାଦ ପ୍ରବଚନ, ଗୀତ, କଥା, କାହାଣୀ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଲୋକ ସାହିତ୍ୟ ଓ ସଂସ୍କୃତିର ଜୀବନ୍ତ ଅଥଚ ବହୁଧା ବିଭକ୍ତ ତଥା ବିଚ୍ଛିନ୍ନ ଧାରାକୁ ଏକ ମହା ପ୍ରବାହରେ ପରିଣତ କରି ପାରେ କବିଙ୍କ ଆଶାତୀତ ଉଦ୍ୟମ, ଆୟାସ ଓ ସଫଳତାକୁ କେବେହେଲେ କେହି ଭୁଲିପାରିବ ନାହିଁ । ଓଡ଼ିଶାର ବିଲୁପ୍ତପ୍ରାୟ ସୁସମୃଦ୍ଧ ଲୋକ ସାହିତ୍ୟ ଓ ସଂସ୍କୃତିର ପୁନରୁଦ୍ଧାର, ସଂସ୍କାର, ପ୍ରତିଷ୍ଠା ଓ ପ୍ରସାର ନିମିତ୍ତ ସେ ଯେଉଁ ଆୟାସସାଧ୍ୟ ଶ୍ରମ ଓ ସାଧନା କରିଛନ୍ତି ତାହା ଓଡ଼ିଆ ଜାତି ପାଇଁ ଚିରସ୍ମରଣୀୟ ହୋଇ ରହିବ ।

ଓଡ଼ିଆ ଲୋକ ସାହିତ୍ୟ ଓ ସଂସ୍କୃତିର ଯଥାର୍ଥ ଅନୁଶୀଳନ ନିମିତ୍ତ ଡ଼ଃ ଦାଶ ତାଙ୍କ ନିବନ୍ଧକୁ ପଦ୍ୟ ଭାଗ ଓ ଗଦ୍ୟ ଭାଗ ରୂପେ ଦୁଇ ଭାଗରେ ବିଭକ୍ତ କରିଛନ୍ତି । ପଦ୍ୟ ଭାଗ ବା ଲୋକଗୀତ ଅନ୍ତର୍ଗତ ଗାଆଗୀତିକା, କାନ୍ଦଣା, ପାଲା, ଯାତ୍ରୁଆଗୀତ, ଦଣ୍ଡନାଟ, ଚଇତିଘୋଡ଼ାନାଟ, ସଖୀନାଟ, କରମାକ୍ଲା, ବାରମାସୀ, ପ୍ରଚଖେଳ, ପିଲାଙ୍କଗୀତ, ଦୁଲିଆଗୀତ, ନାଁଦିଆ, ଚାମ୍ପସା, ଢ଼ଗଢମାଳି ଛିଟା, ପ୍ରବାଦ, ପ୍ରବଚନ, ଦୋକଗୀତ, ମନ୍ତ୍ରଗୀତ ପ୍ରଭୃତିର ଆଲୋଚନାରେ ସାମାଜିକ, ଧାର୍ମିକ, ଅର୍ଥନୈତିକ ଓ ସାଂସ୍କୃତିକ ପୃଷ୍ଠଭୂମି, ବୈଶିଷ୍ଟ୍ୟ, ପ୍ରଭାବ, ପ୍ରସାର, ପ୍ରତିଷ୍ଠାଦି ବିଷୟ ପର୍ଯ୍ୟାଲୋଚିତ ହୋଇଛି । ସେହିପରି ଗଦ୍ୟଭାଗ ବା ଲୋକକଥା ଅନ୍ତର୍ଗତ ପୌରାଣିକ କଥା, ଓଷାବ୍ରତ କଥା, ସନ୍ଥଭକ୍ତ କଥା, କିମ୍ବଦନ୍ତୀ, ସତ୍ୟନାରାୟଣ ମଜାକଥା ଓ ବିଭିନ୍ନ ବିଭାଗ-ର ବିଭକ୍ତ ଲୌକିକ କଥା ଗୁଡ଼ିକର ଆଲୋଚନାରେ ଓଡ଼ିଶାର ଇତିହାସ, କିମ୍ବଦନ୍ତୀ, ବିଶ୍ୱାସ, ରୁଚି, ଖାଦ୍ୟପେୟ, ଆଗ୍ରହ ବ୍ୟବହାର, ଲୋକସଂସ୍କାରାଦି ପ୍ରସଙ୍ଗର ସୂଚନା ଦିଆଯାଇଛି ।

ଦୀର୍ଘ ତିନି ଦଶନ୍ଧି ପୂର୍ବେ କବି ପ୍ରଭୃତ ଶ୍ରମ ଓ ସାଧନା ବଳରେ ଓଡ଼ିଆ ଲୋକସାହିତ୍ୟ ଅନୁଶୀଳନର ଯେଉଁ ଉର୍ବର କ୍ଷେତ୍ର ପ୍ରସ୍ତୁତ କରି ସେଥିରେ ଅନୁସନ୍ଧାନର ସୂକ୍ଷ୍ମବୀଜ ବପନ କରିଥିଲେ ତାହା ଆଜି ଫଳ ପୁଷ୍ପାସମନ୍ୱିତ ମହାଦ୍ରୁମରେ ପରିଣତ ହୋଇଛି । ଓଡ଼ିଶାର ଯେଉଁ ଲୋକ କବି ଓ ଲୋକ କଥାକାରଗଣ ଡ଼ଃ ଦାଶଙ୍କ

ବୃତ୍ତିଗତ ଲୋକକବିଙ୍କ ହୃଦୟରେ ଅନୁପ୍ରେରିତ କରିଥିଲେ ସେମାନଙ୍କ ସୁଯୋଗ୍ୟ ଦାୟାଦ ରୂପେ ସେହି ଜାତିର ଗୁରୁ ଦାୟିତ୍ୱ ସମ୍ପାଦନ କରି ଆସିଛନ୍ତି । ଓଡ଼ିଆ ସାହିତ୍ୟରେ ନୈସର୍ଗିକ ରୂପ, ଛନ୍ଦରେ ସ୍ୱାଭାବିକ ଗଠନ, ଜୀବନରେ ଅକୃତ୍ରିମ ଭାବନା, ଭାବନାରେ ରସ ପରିବେଷଣ କରିବାରେ ତାଙ୍କର ଅବଦାନ ଅନନ୍ୟସାଧାରଣ ।

ଓଡ଼ିଆ ଲୋକଗୀତ ଓ କାହାଣୀର ପ୍ରକାଶ ପରେ ତାଙ୍କ ପଲ୍ଲୀଗୀତ ସଞ୍ଚୟନର ଦ୍ୱିତୀୟ ଓ ତୃତୀୟ ଖଣ୍ଡ ଯଥାକ୍ରମେ ୧୯୫୯ ଓ ୧୯୬୪ରେ ଏବଂ ଲୋକଗଳ୍ପ ସଞ୍ଚୟନ ୧୯୬୮ରେ ପ୍ରକାଶ ପାଇଛି । ଭାରତର ଅନ୍ୟାନ୍ୟ ପ୍ରଦେଶରେ ସଂଗୃହୀତ, ସଙ୍କଳିତ ଓ ପ୍ରକାଶିତ ଲୋକଗଳ୍ପ ସଞ୍ଚୟନ ଗ୍ରନ୍ଥ ମଧ୍ୟରେ 'ଓଡ଼ିଆ ଲୋକଗଳ୍ପ ସଞ୍ଚୟନ' ବୃହତ୍ତମ ଗ୍ରନ୍ଥ । ଓଡ଼ିଆ ଜାତି ପକ୍ଷରେ ଏହା ନିଶ୍ଚିତଭାବେ ଗର୍ବ ଓ ଗୌରବର ବିଷୟ । ଏହା ପରେ ସଂଗୃହୀତ ଓଡ଼ିଆ ଢଗଢମାଳିର ଆଲୋଚନାତ୍ମକ ଗ୍ରନ୍ଥ 'ଲୋକବାଣୀ ସଞ୍ଚୟନ'ର ପ୍ରଥମ ତିନୋଟି ଭାଗ ଯଥାକ୍ରମେ ୧୯୭୩, ୧୯୭୬ ଓ ୧୯୭୮ରେ ପ୍ରକାଶିତ ହୋଇଛି । ଏଥିରେ ପଲ୍ଲୀଜୀବନର ଅନୁଭୂତି ଓ ଶତାବ୍ଦୀର ପ୍ରତିକୃତି ଯେପରି ଭାବେ ରୂପ, ରସ ଓ ସୁରଭିରେ ସୁରଭିତ ହୋଇଛି ସେଥିରେ ଟୀକାକାର ସ୍ୱୟଂ ଡଃ ଦାଶଙ୍କ ସହିତ ସାଧାରଣ ପାଠକ ମଧ୍ୟ ବିମୋହିତ ହୋଇ ଉଠିଛନ୍ତି ।

ଲୋକରତ୍ନ ଡକ୍ଟର ଦାଶଙ୍କ ଲେଖନୀ ନିସୃତ 'ଛିନ୍ନମସ୍ତା' ଗ୍ରନ୍ଥ ୧୯୪୦ ରେ ପ୍ରକାଶ ପାଇଥିଲା । ସେହି କାଳରୁ ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି ତାଙ୍କ ଲେଖନୀର ଧାରା ଅପ୍ରତିହତ ବେଗରେ ପ୍ରବାହିତ ହୋଇ ଆସିଛି । ଏପର୍ଯ୍ୟନ୍ତ ସେ ପ୍ରାୟ ପଚିଶ ଖଣ୍ଡ ଉପାଦେୟ ଗ୍ରନ୍ଥର ଜନକ ଓ ପାଳକ ରୂପେ ସମ୍ମାନିତ । ଓଡ଼ିଶାର ସର୍ବତ୍ର ସେ ଜଣେ ବିଦଗ୍ଧ ଲୋକକବି ଭାବେ ସୁପରିଚିତ ଓ ଆଦୃତ ହୋଇ ଆସିଛନ୍ତି । ତାଙ୍କର ସମଗ୍ର ସୃଷ୍ଟି ଲୋକ ପ୍ରାଣର ସହଜ, ଅକୃତ୍ରିମ ସୁଖ ଦୁଃଖ, ଆଶା, ଆଶଙ୍କା, ଆନନ୍ଦ ଉଲ୍ଲାସ, ଉଦାର ଉଦ୍ଦୀପନାର ସ୍ୱତଃସ୍ଫୂର୍ତ୍ତି ପ୍ରକାଶରେ ଉଦ୍ଭାସିତ । ୧୯୭୭ ରେ ପ୍ରକାଶିତ 'ମୋ କାହାଣୀ' ତାଙ୍କ କୃତିତ୍ୱର ସର୍ବଶ୍ରେଷ୍ଠ ନିଦର୍ଶନ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କବିଙ୍କ ବ୍ୟକ୍ତିଗତ ଜୀବନକୁ ଭିତ୍ତି କରି ଗଢ଼ି ଉଠିଥିଲେ ମଧ୍ୟ ଏହି ଗ୍ରନ୍ଥର ସାର୍ବଜନୀନ ଆବେଦନ, ସ୍ୱୀକୃତି, ସମ୍ବେଦନା, ଭାବନା ଓ ରସ ପାଠକକୁ ଅନ୍ତରଙ୍ଗ ଭାବରେ ବିଭୋର କରିପାରିଛି ।

ଲୋକ ସାହିତ୍ୟ ସମ୍ବନ୍ଧୀୟ ସଂଗ୍ରହ, ସଂକଳନ, ଅନୁବାଦ ଓ ଅନୁଶୀଳନାତ୍ମକ ଗ୍ରନ୍ଥ ପ୍ରଣୟନ କ୍ଷେତ୍ରରେ ତାଙ୍କର ଅବଦାନ ଅବିସ୍ମରଣୀୟ । ଲୋକଭାଷା, ସାହିତ୍ୟ, ସଂସ୍କୃତି ଓ ଜୀବନଧାରାର ବିଶ୍ଳେଷଣରେ, ତାଙ୍କର ଅନୁସନ୍ଧିତ୍ସା ଓ ଗଭୀର ଦୃଷ୍ଟିରେ ଏକ ସ୍ୱତନ୍ତ୍ର ଓ ସ୍ୱକୀୟ ବୈଶିଷ୍ଟ୍ୟ ପ୍ରତିଫଳିତ ହୋଇଥିବାର ଲକ୍ଷ୍ୟ କରାଯାଏ । ୧୯୫୩ ମସିହାରେ ପ୍ରକାଶିତ ତାଙ୍କ 'A study of Orissan folklore' ଗ୍ରନ୍ଥ ଏହାର ଶ୍ରେଷ୍ଠ ନିଦର୍ଶନ । ଏହି ଗ୍ରନ୍ଥର ସମୀକ୍ଷା କରିବାକୁ ଯାଇଁ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଗବେଷକ ଜେଡ୍ ଭାଇଟାଲ୍ ଚେକୋସ୍ଲୋଭାକିଆ ବିଜ୍ଞାନ ଏକାଡେମୀ ପକ୍ଷରୁ ପ୍ରକାଶିତ Archive Oriental ପତ୍ରିକାରେ (୧୯୫୫) ଲେଖିଛନ୍ତି—The materials presented here forms a valuable contribution

to the study of folklore of contemporary India which is a field not sufficiently investigated; କେବଳ ସେତିକି ନୁହେଁ ଆମେରିକା ସ୍ଥିତ କଲମ୍ବିଆ ବିଶ୍ୱବିଦ୍ୟାଳୟର ଜର୍ଜ ବ୍ରୁସ୍, ଭାରତର ଜାତୀୟ ଅଧ୍ୟାପକ ଡକ୍ଟର ସୁନୀତି କୁମାର ଚାଟାର୍ଜି, ସୁପ୍ରିମ୍ କୋର୍ଟର ମୁଖ୍ୟ ବିଚାରପତି ସୁଧୀରଞ୍ଜନ ଦାସ, ଡକ୍ଟର କୃଷ୍ଣଦେବ ଉପାଧ୍ୟାୟ ପ୍ରମୁଖ ଭାରତ ଓ ଭାରତ ବାହାରର ବହୁ ବିଶିଷ୍ଟ ପଣ୍ଡିତ ଡକ୍ଟର ଦାଶଙ୍କ କୃତିତ୍ୱର ଭୂରି ଭୂରି ପ୍ରଶଂସା କରିଛନ୍ତି । ଓଡ଼ିଆ ଲୋକ ସାହିତ୍ୟ ଓ ସଂସ୍କୃତିକୁ ଓଡ଼ିଶା ତଥା ଭାରତ ବାହାରକୁ ନେଇ ଆନ୍ତର୍ଜାତୀୟ ସ୍ତରରେ ପ୍ରତିଷ୍ଠିତ କରାଇବାରେ କବିଙ୍କ ଉଦ୍ୟମ, ତ୍ୟାଗପୂତ ନିଷ୍ଠା ଓ ଅନୁଶୀଳନାତ୍ମକ ବିଚାର ଧାରାକୁ କେବେହେଲେ ଅସ୍ୱୀକାର କରିହେବ ନାହିଁ ।

ଶିଶୁ ସାହିତ୍ୟ ଲୋକ ସାହିତ୍ୟର ଅନ୍ୟତମ ବିଶିଷ୍ଟ ବିଭବ, କୋମଳ ଶିଶୁ ପ୍ରାଣରେ ବାର୍ତ୍ତା ବହନ କରୁଥିବା ବିବିଧ ଲୋକଗୀତ ଓ କାହାଣୀ ଲୋକ ପରିଧିକୁ ଅତିକ୍ରମ କରି ବିଦଗ୍ଧ ସାହିତ୍ୟର ରୂପଶ୍ରୀ ସମୃଦ୍ଧିରେ ବିଶେଷ ଭାବେ ସହାୟକ ହୋଇଛି । ସେହି ମଧୁର ଶୈଶବ ଭାବନାରେ ବିଭୋର ହୋଇ କବି ବହୁ କବିତା ରଚନା କରିଛନ୍ତି । ଖେଳସାଥୀ (୧୯୪୭), ତାକ୍ ଡୁମା ଡୁମ ଡୁମ (୧୯୫୧), କୁନି ମୁନି (୧୯୫୯) ପ୍ରଭୃତି କବିତା ଗ୍ରନ୍ଥରେ କବି ଡକ୍ଟର ଦାଶଙ୍କ ଶିଶୁ ସୁଲଭ କଳ୍ପନା, ଭାବନା, ଆଶା ଆଶଙ୍କା, ଆନନ୍ଦ ଓ ଅନୁଭୂତିର ବର୍ଣ୍ଣମୟ ଆଲେଖ୍ୟ ଅଙ୍କିତ ହୋଇଛି । ଓଡ଼ିଆ ଶିଶୁ ସାହିତ୍ୟ କ୍ଷେତ୍ରରେ ଏହି ଶିଶୁ କବିତାଗୁଡ଼ିକର ସ୍ୱତନ୍ତ୍ର ମହତ୍ତ୍ୱ ଓ ପ୍ରତିଷ୍ଠା ରହିଛି ।

ବ୍ୟାସ କବି ଫକୀରମୋହନ, ପଲ୍ଲୀକବି ନନ୍ଦକିଶୋର, ଭାଷାକୋଷକାର ଗୋପାଳ ଚନ୍ଦ୍ର ପ୍ରହରାଜ ପ୍ରମୁଖ ମନୀଷୀମାନଙ୍କ ପରି ଲୋକରତ୍ନ କବି ଡକ୍ଟର ଦାଶ ଓଡ଼ିଆ ଲୋକ ସାହିତ୍ୟ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ଓ ନିଜସ୍ୱ ଶୈଳୀ ପ୍ରତିଷ୍ଠା କରିଛନ୍ତି । ତାଙ୍କ ପ୍ରଣୀତ ଲଙ୍କାଯାତ୍ରୀ (୧୯୬୦) ମୋ ସ୍ୱପ୍ନର କାଶ୍ମୀର (୧୯୫୭), ପଥ ଓ ପଥିକ (୧୯୫୮) ଆଦି ଭ୍ରମଣ କାହାଣୀ, ଚରିତବର୍ଣ୍ଣନାତ୍ମକ 'ଜୀବନୀ ଓ ଜୀବନ' (୧୯୬୨), ମଣିମା ଶୁଣିମା ହେଉ' (୧୯୮୨) ଉପନ୍ୟାସ ପ୍ରଭୃତି ସେହି ସ୍ୱତନ୍ତ୍ର ଶୈଳୀର ଏକ ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । କବିଙ୍କ ସମସ୍ତ ଗଦ୍ୟ ରଚନାରେ ଲୋକ କଥନ ଶୈଳୀ ଅନ୍ତଃସଲିଳା ଫଲ୍‌ଗୁ ପରି ଲୁଚି ରହିଛି । ଲୋକଭାଷା ସାହିତ୍ୟ ଓ ଜୀବନକୁ ବିଦଗ୍ଧ ସମାଜରେ ଉପସ୍ଥାପିତ ଓ ଆଦୃତ କରିବାରେ କବିଙ୍କ ଅବଦାନର ତୁଳନା ନାହିଁ । ୧୯୬୭ ଓ ୧୯୭୦ ରେ ପ୍ରକାଶିତ 'କୁଞ୍ଜବିହାରୀ ସଞ୍ଚୟନ' ପ୍ରଥମ ଓ ଦ୍ୱିତୀୟ ଭାଗର ପ୍ରକାଶନରୁ ପ୍ରକାଶକଙ୍କ ବକ୍ତବ୍ୟ ଉଲ୍ଲେଖନୀୟ । ସେଥିରେ ଲେଖା ଅଛି-'କବି କୁଞ୍ଜବିହାରୀଙ୍କ କାବ୍ୟ-ଜଗତ ବିପୁଳ ବିରାଟ୍ । ପ୍ରକୃତି ଓ ପରମ୍ପର, ପ୍ରେମ ଓ ଜୀବନ, ଦେଶାତ୍ମବୋଧ ଓ ସମାଜ ଚେତନା, ଶିଶୁମନୋରଞ୍ଜନ ଓ ପଲ୍ଲୀଚିତ୍ର ଆଦି ସାମ୍ପ୍ରତିକ ଓଡ଼ିଆ କାବ୍ୟଧାରାର ସମସ୍ତ ଦିଗକୁ ତାଙ୍କ ଲେଖନୀ ସ୍ପର୍ଶ କରିଛି । ତାଙ୍କ ବୈଦଗ୍ଧ ମନ ସଂସ୍କୃତ ରୁଚିରେ ମାର୍ଜିତ, ସରସ ହୃଦୟ ପଲ୍ଲୀର ଗୀତରସରେ ସିକ୍ତ । ଏହି ଦୁଇ ଧାରା ତାଙ୍କ ବାଣୀ ମୂର୍ତ୍ତିକୁ ରୂପ ଦେଇ ଅଛି ।' ଏହି ଉକ୍ତିର ଯଥାର୍ଥତା ପ୍ରତ୍ୟେକ ସହୃଦୟହିଁ ଅନୁଭବ କରିବାକୁ ସମର୍ଥ ।

କବି ଡ଼କ୍ଟର ଦାଶଙ୍କ ପ୍ରତଭା, ବ୍ୟକ୍ତିତ୍ୱ, ଉତ୍ସାହ, ଆନନ୍ଦ, ପ୍ରେରଣା, ସାହିତ୍ୟ ଦୃଷ୍ଟି ଓ ସୃଷ୍ଟିର ସମୀକ୍ଷା ପାଇଁ ସୁଯୋଗ୍ୟ ବ୍ୟକ୍ତି ଓ ଉଦାର ହୃଦୟ ଆବଶ୍ୟକ । ସାମ୍ପ୍ରତକ ଶିକ୍ଷାଭିମାନ, ପଦ ପଦବୀର ଅହଙ୍କାର, ତଥାକଥିତ ସମ୍ଭ୍ରାନ୍ତଭାବନା, ଆର୍ଥିକ ମର୍ଯ୍ୟାଦା ଜନତ ଈର୍ଷ୍ୟା, ଅସୂୟା, ବିଦ୍ୱେଷ ଓ ଘୃଣାଭାବକୁ ସମୂଳ କରିଥିବା କେହି ଲୋକକବିଙ୍କ ସୃଷ୍ଟି ଓ ଦୃଷ୍ଟି, ରସ ଓ ଶୈଳୀ, ସାଧନା ଓ ସିଦ୍ଧିକୁ ଉପଲବ୍ଧି କରିବା ସହଜ ଓ ସମ୍ଭବ ନୁହେଁ । ସେଥିପାଇଁ ସଭ୍ୟ, ସରଳ, ସହୃଦ, ସୁଶିକ୍ଷିତ ପ୍ରାଣ ଓ ମନ ପ୍ରୟୋଜନ । ମନ, ବଚନ, କର୍ମରେ ଐକ୍ୟଭାବ ପୋଷଣ କରୁଥିବା ବ୍ୟକ୍ତି ହିଁ ସୁଶିକ୍ଷିତ ତଥା ମହାତ୍ମା ରୂପେ ପରିଚିତ; ଅନ୍ୟଥା ସେ ଅଶିକ୍ଷିତ ତଥା ଦୁରାତ୍ମା ବ୍ୟକ୍ତିଭାବେ ବିବେଚିତ ହୁଏ । ସେଥିପାଇଁ କୁହାଯାଇଛି—

ମନସ୍ୟେକଂ ବଚସ୍ୟେକଂ କର୍ମଣ୍ୟେକଂ ମହାତ୍ମନାମ୍ ।
ମନସ୍ୟନ୍ୟଦ୍ ବଚସ୍ୟନ୍ୟଦ୍ କର୍ମଣ୍ୟନ୍ୟଦ୍ ଦୁରାତ୍ମନାମ୍ ।।

ଏହି ବାକ୍ୟ ଅନୁସାରେ ପ୍ରତ୍ୟେକ ଜନ ନିଜର ସ୍ଥିତି ଓ ପ୍ରବୃତ୍ତି ବିଚାର କରିବା ଉଚିତ୍ । ଆଜି ବି ବୈୟକ୍ତିକ ଓ ସାମାଜିକ ଜୀବନକୁ ସରସ ଓ ସୁନ୍ଦର କରିବା ପାଇଁ ଏବଂ ଦେଶ ଜାତିର କଲ୍ୟାଣ ପାଇଁ ଏହାର ଯଥେଷ୍ଟ ଉପଯୋଗିତା ରହିଛି ।

ଲୋକକବି ଡ଼କ୍ଟର କୁଞ୍ଜବିହାରୀ ଦାଶ ନିଜର ଅକୃତ୍ରିମ ସୃଷ୍ଟି ଓ ଦୃଷ୍ଟି ନେଇ ଲୋକ ସାହିତ୍ୟ ଓ ସଂସ୍କୃତିର ସ୍ୱଭାବିକ ପ୍ରବାହଦ୍ୱାରା ଓଡ଼ିଆ ସାହିତ୍ୟ କ୍ଷେତ୍ରକୁ ସରସ, ସୁନ୍ଦର, ସବୁଜ କରିବାରେ ବିଗତ ଅର୍ଦ୍ଧଶତାବ୍ଦୀ କାଳବ୍ୟାପୀ ସାଧନା କରି ଆସିଛନ୍ତି । ସେହି କଠୋର ସାଧନାରେ ସେ ସିଦ୍ଧିଲାଭ କରିଛନ୍ତି । ଏ ଯୁଗର ମନୀଷୀ ଭାବେ ତାଙ୍କ ଆଦର ଓ ସମ୍ମାନର ଦିଗନ୍ତ ବିସ୍ତୃତ ହୋଇଛି । ତାଙ୍କ ସାହିତ୍ୟର ସେହି ସିଦ୍ଧିର ଫଳ ସ୍ୱରୂପ ନିରାଡମ୍ବର ଜୀବନ, ସରଳ ସମ୍ବେଦନଶୀଳ ମନ ଓ ଉଚ୍ଚ ମାନବିକତାର ବାର୍ତ୍ତା ପ୍ରସାର ଲାଭ କରିଛି । ଓଡ଼ିଆ ଲୋକ ସାହିତ୍ୟ ଅନ୍ତର୍ଗତ ଅକୃତ୍ରିମ ଲୋକଜୀବନ କଳାର ବର୍ଣ୍ଣାଢ୍ୟ କୁବେର ସମ୍ପତ୍ତିକୁ ସଂଗ୍ରହ କରି ସେ ନିଜ ମାତୃଭାଷା ଓ ସାହିତ୍ୟର ସମୃଦ୍ଧିରେ ତାହାର ପୂର୍ତ୍ତି ବିନିଯୋଗ କରିଛନ୍ତି । ଓଡ଼ିଆ ଜାତି, ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରତି ଏହା ତାଙ୍କର ସର୍ବଶ୍ରେଷ୍ଠ ଅବଦାନ । ମହାତ୍ମା ଗାନ୍ଧୀଙ୍କ ଭାଷାରେ କହିଲେ ଲୋକକବି ଲୋକରତ୍ନ ଡ଼କ୍ଟର କୁଞ୍ଜବିହାରୀ ଦାଶ ଜଣେ ମହାତ୍ମା ।

*ଏଂ ସ୍ତୁତକ ନର୍ଦ୍ଦେଶାଳୟ, ଭୁବନେଶ୍ୱର



# ।। ଓଡ଼ିଆ ଲୋକସାହିତ୍ୟ ଚର୍ଚ୍ଚା ଓ

## ଡ଼ଃ କୁଞ୍ଜବିହାରୀ ଦାଶ ।।

### ଡକ୍ଟର ଶ୍ୟାମସୁନ୍ଦର ମହାପାତ୍ର

ଓଡ଼ିଶାର ଲୋକସାହିତ୍ୟ ସଂଗ୍ରହ ଓ ଗବେଷଣା କ୍ଷେତ୍ରରେ ଡକ୍ଟର କୁଞ୍ଜବିହାରୀ ଦାଶ ଏକ ସୁପରିଚିତ ନାମ । ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି ସେ ଲୋକ-ସାହିତ୍ୟର ଚର୍ଚ୍ଚା କରି ଆସିଛନ୍ତି । ସରକାରୀ କାମରୁ ଅବସର ନେବାପରେ ମଧ୍ୟ ଏ ଉଦ୍ୟମ ଅବ୍ୟାହତ ରହିଛି । ଉଭୟ ସଂଗ୍ରହ ଓ ଅଧ୍ୟୟନ କ୍ଷେତ୍ରରେ ତାଙ୍କର ଅବଦାନ ବିପୁଳ । ଓଡ଼ିଆ ଲୋକସାହିତ୍ୟ ଚର୍ଚ୍ଚାର ବିକାଶ ପରିପ୍ରେକ୍ଷୀରେ ତାଙ୍କ ଅବଦାନର ଗୁରୁତ୍ୱ କଳନା କରାଯାଇ ପାରେ ।

କୁଞ୍ଜବିହାରୀଙ୍କ ଆତ୍ମପ୍ରକାଶର (ପଲ୍ଲୀପୁଷ୍ପ-୧୯୦୮) ଦୀର୍ଘ ୭୦ବର୍ଷ ପୂର୍ବରୁ ଓଡ଼ିଆ ଲୋକସାହିତ୍ୟ ଚର୍ଚ୍ଚାର ସୂତ୍ରପାତ କରିଥିଲେ ଜନ୍ ବିମ୍ସ । 'ଇଣ୍ଡିଆନ୍ ଏଣ୍ଟିକ୍ୱେରୀ'(୧୮୭୨ ପ୍ରଥମ ବର୍ଷ ପ୍ରଥମ ସଂଖ୍ୟା) ରେ ପ୍ରକାଶିତ ତାଙ୍କର 'ଓରିଶାନ୍ ଫୋକ୍‌ଲୋର' ଏ ସମ୍ପର୍କୀୟ ପ୍ରଥମ ଆଲୋଚନା । ଇତି ମଧ୍ୟରେ ବହୁ ଲୋକସାହିତ୍ୟା-ନୁରାଗୀ ଅଳ୍ପ ବହୁତ ଅବଦାନ ଦେଇଯାଇଛନ୍ତି । ସେମାନଙ୍କ ଦୃଷ୍ଟି ମୁଖ୍ୟତଃ ସଂଗ୍ରହ ଉପରେ ନିବଦ୍ଧ । ସଂଗ୍ରହ ପୁଣି ଢ଼ଗ, କୃଷି ସମ୍ପର୍କିତ ପ୍ରବଚନ, ପ୍ରବାଦ ଆଦି ଅଳ୍ପ କେତୋଟି ବିଭାଗ ଭିତରେ ସୀମିତ । ଉଭୟ ସଂଗ୍ରହ ଓ ଅନୁଶୀଳନକୁ ପ୍ରାଧାନ୍ୟ ଦେଇଥିବା କେତେଜଣ ବିଶିଷ୍ଟ ଲୋକ ସାହିତ୍ୟବିଦ୍ ହେଲେ ଗୋପାଳଚନ୍ଦ୍ର ପ୍ରହରାଜ, ଚନ୍ଦ୍ରଧର ମହାପାତ୍ର ଓ ଲକ୍ଷ୍ମୀନାରାୟଣ ସାହୁ ।

ପ୍ରହରାଜ ନିଜ ସଂଗୃହୀତ ଢ଼ଗଢମାଳି, ପ୍ରବଚନ ଆଦିକୁ ପାଞ୍ଚ ଖଣ୍ଡରେ ସଙ୍କଳନ କରିଥିଲେ । ସେଥିରୁ ଦୁଇଖଣ୍ଡ ପ୍ରକାଶିତ । ସେ 'ଉତ୍କଳ କାହାଣୀ' ନାମରେ ଲୋକ କାହାଣୀର ଏକ ସଂଗ୍ରହ ମଧ୍ୟ ପ୍ରକାଶ କରିଛନ୍ତି । ସମ୍ଭବତଃ ଏହା ଓଡ଼ିଆ ଲୋକ କାହାଣୀର ପ୍ରଥମ ପ୍ରକାଶିତ ସଂକଳନ । ଓଡ଼ିଆ ଲୋକସାହିତ୍ୟ ଅଧ୍ୟୟ-ନକୁ ପ୍ରହରାଜଙ୍କ ବିଶେଷ ଅବଦାନ ହେଲା, ସେ ପ୍ରଥମେ ଓଡ଼ିଆ ଲୋକସାହିତ୍ୟର ବ୍ୟାପକତା ପ୍ରତି ଜନସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରିବା ସଙ୍ଗେ ସଙ୍ଗେ ବୈଜ୍ଞାନିକ ସଂଗ୍ରହ-ପଦ୍ଧତି ସମ୍ପର୍କରେ ସଚେତନ କରାଇ ଦେଇଛନ୍ତି । "ଲୌକିକ ବଚନମାନ ଯେଉଁ ଆକାରରେ ଲୋକ ମୁଖରେ ଶୁଣାଯାଏ ଓ ବୋଲା ଯାଏ ସେହି ଆକାରରେ ଉଦ୍ଧାର କରିବା ସଂଗ୍ରାହକର କର୍ତ୍ତବ୍ୟ" "ଏକ ଅଞ୍ଚଳର ଲୋକ ସେହି ଗୀତ ସଂଗ୍ରହ କରିବା ଉଚିତ" ଭଳି ଲୋକସାହିତ୍ୟ ଅନୁଶୀଳନ ଦୃଷ୍ଟିରୁ କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ସେ ଉତ୍ଥାପନ କରିଛନ୍ତି । ଏଣୁ ଯଥାର୍ଥରେ ସେ ଓଡ଼ିଆ "ପଲ୍ଲୀଗୀତ ଓ କଥା ସଂଚୟନର ପ୍ରଥମ ପଥ ପ୍ରଦର୍ଶକ ।"

ଶ୍ରୀ ଚକ୍ରଧର ମହାପାତ୍ର, ବିଶିଷ୍ଟ ଲୋକସାହିତ୍ୟବିତ୍ ଦେବେନ୍ଦ୍ର ସତ୍ୟାର୍ଥୀଙ୍କ ସାହଚର୍ଯ୍ୟରେ ଆସିଥିଲେ । ତାଙ୍କର ପ୍ରେରଣାରେ ସେ ଓଡ଼ିଆ ଲୋକଗୀତ ସଂଗ୍ରହ କରିଛନ୍ତି । ୧୯୩୯ ରେ ପ୍ରକାଶିତ ତାଙ୍କର 'ଉତ୍କଳ ଗାଉଁଲିଗୀତ ଚୁମ୍ବକ' ଏକ ଗୁରୁତ୍ୱପୂର୍ଣ୍ଣ ସଂକଳନ । ଓଡ଼ିଆ ଲୋକଗୀତର ନମୁନା ସହିତ ତାର ହିନ୍ଦୀ ଓ ଇଂରେଜୀ ଅନୁବାଦ ଏଥିରେ ଦିଆଯାଇଛି । ଓଡ଼ିଶା ବାହାରେ ଓଡ଼ିଆ ଲୋକଗୀତର ପରିଚିତି ପାଇଁ ଏହା ଏକ ପ୍ରଶଂସନୀୟ ପଦକ୍ଷେପ । ଦୀର୍ଘ ଦିନର ବ୍ୟବଧାନରେ (୧୯୫୯) ପ୍ରକାଶ ପାଇଲା ତାଙ୍କର ବିଶିଷ୍ଟ ସଙ୍କଳନ 'ଉତ୍କଳ ଗାଉଁଲି ଗୀତ' । ଯଦିଓ ଏହାର ଏକ ଅଂଶ 'ବୋହୂଙ୍କ ସୁଖଦୁଃଖ ଗୀତିକା' ୧୯୪୬ ରେ ପ୍ରକାଶିତ ହୋଇଥିଲା । ଗ୍ରନ୍ଥଟିର ଦୀର୍ଘ ମୁଖବନ୍ଧ ଦେଇ ଏ ସଂକଳନ ରେ ଲୋକଗୀତର ସ୍ୱରୂପ ଦର୍ଶାଇବା ସଙ୍ଗେ ସଙ୍ଗେ ଓଡ଼ିଆ ଲୋକଗୀତର ଶ୍ରେଣୀକରଣ କରିଛନ୍ତି ।

ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଓଡ଼ିଶାର ଆଦିବାସୀଙ୍କ ମଧ୍ୟରେ ପ୍ରଚଳିତ ଲୋକ ଉପାଦାନର ସଂଗ୍ରହ ଓ ଆଲୋଚନା କରିଛନ୍ତି । 'ଗାନ୍ଧର୍ବିକୀ ଶତଦଳ' (୧୯୪୭) ନାମକ ଆଦିବାସୀ ଗୀତର ସଂଗ୍ରହ ସହିତ ତାଙ୍କର "Hill Tribes of Jaypore (1942) 'ଦଣ୍ଡନାଟ' ସମ୍ପର୍କିତ ଆଲୋଚନା ଗ୍ରନ୍ଥ ପ୍ରକାଶିତ । ଓଡ଼ିଶାର ଲୋକସାହିତ୍ୟ କହିଲେ କେବଳ ଓଡ଼ିଆ ଲୋକସାହିତ୍ୟକୁ ବୁଝାଏ ନାହିଁ । ଉପଜାତିଙ୍କ ଲୋକସାହିତ୍ୟ ମଧ୍ୟ ଏହାର ଅନ୍ତର୍ଭୁକ୍ତ । ଉତ୍କଳୀୟ ତଥା ଭାରତୀୟ ସାହିତ୍ୟ ଓ ସଂସ୍କୃତିକୁ ଏମାନଙ୍କର ଅବଦାନ ଅପରିସୀମ । ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଓଡ଼ିଶାର ଲୋକ ସଂସ୍କୃତି ତଥା ସାହିତ୍ୟର ଏହି ବ୍ୟାପକତର ପରିସର ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି ।

କୁଞ୍ଜବିହାରୀ ଓଡ଼ିଆ ଲୋକସାହିତ୍ୟ ଚର୍ଚ୍ଚା କ୍ଷେତ୍ରରେ ଅବତୀର୍ଣ୍ଣ ହେବାବେଳକୁ ଏକ ନିର୍ଭରଯୋଗ୍ୟ ଭିତ୍ତିଭୂମି ସ୍ଥାପିତ ହୋଇ ସାରିଛି । ଲୋକସାହିତ୍ୟର ସ୍ୱରୂପ ଓ ଗୁରୁତ୍ୱ ସମ୍ପର୍କରେ ଏକ ସ୍ପଷ୍ଟ ଧାରଣା ପ୍ରଚଳିତ । ପତ୍ରପତ୍ରିକା ଓ ପୁସ୍ତକ ମାଧ୍ୟମରେ ଏହି ଚର୍ଚ୍ଚା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି ହୋଇଛି । ପ୍ରଚଳିତ ଓଡ଼ିଆ ଲୋକସାହିତ୍ୟର ସ୍ୱତନ୍ତ୍ରି କଳନା କରାଯାଇ ପାରିଛି । ଏ ସମ୍ପର୍କୀୟ କିଛି ଆଲୋଚନାର ସୂତ୍ରପାତ ମଧ୍ୟ ହୋଇଛି । ଲୋକ ସାହିତ୍ୟ ଚର୍ଚ୍ଚା କ୍ଷେତ୍ରରେ ଅଗ୍ରସର ହେବାପାଇଁ ଏହାହିଁ ଥିଲା କୁଞ୍ଜବିହାରୀଙ୍କ ବେଳକୁ ପରମ୍ପରାର ଅବଦାନ ।

ଲୋକସାହିତ୍ୟ ଅଧ୍ୟୟନ ସବୁବେଳେ ସଂଗ୍ରହ ଉପରେ ନିର୍ଭରଶୀଳ । ଓଡ଼ିଶାପରି ଲୋକସାହିତ୍ୟ ସମୃଦ୍ଧ ଏକ ରାଜ୍ୟର ସବୁଅଞ୍ଚଳରୁ ଲୋକସାହିତ୍ୟ

ସଂଗ୍ରହ କରି ତାର ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟ ନିର୍ଦ୍ଧାରଣ କରିବା ସେତେ ସହଜ କାର୍ଯ୍ୟ ନୁହେଁ । ବ୍ୟକ୍ତିଗତ ପ୍ରୟାସରେ ଏହା ଅସମ୍ଭବ । ଏଥି କୁଞ୍ଜବିହାରୀ ଥରକୁଥର ନିଜକୁ ଓ ନିଜ ସମାଜକୁ ଏଇ ପ୍ରଶ୍ନ ପଚାରିଛନ୍ତି, "ସଂଗ୍ରହ କ'ଣ ଜଣେ ଅଧେଙ୍କ କାର୍ଯ୍ୟ ? ସମଗ୍ର ଜାତି ନ ମାତିଲେ ଜାତୀୟ ସଂସ୍କୃତି କ'ଣ ବଞ୍ଚିଲାପରି ବଞ୍ଚିପାରେ ? ସବୁତିକ ଗୀତ, ଯେତେ ଯେଉଁଠି ଅଛି, ସବୁତିକ କିମ୍ବଦନ୍ତୀ, ସବୁତିକ ପ୍ରଚଳିତ ଗଳ୍ପ, ଢଗ ଢମାଳି, ନାଁ ଧଆ ପ୍ରଭୃତି ଖୋଜିଲୋଡ଼ି ଆଣି ଏକାଠି କରିଥିଲେ ହୋଇଥାନ୍ତା ଗୋଟିଏ ସମୁଦ୍ର । ଚମକେଇ ଦେଇଥାଆନ୍ତା ପୃଥିବୀକୁ । ସେକଥା ହୋଇ ପାରିଲା ନାହିଁ ।" (ମୁଖବନ୍ଧ, ଲୋକବାଣୀ ସଞ୍ଚୟନ, ୪ର୍ଥ ଖଣ୍ଡ) କୁଞ୍ଜବିହାରୀ ଚାହିଁଛନ୍ତି ଓଡ଼ିଶାର କୋଣ ଅନୁକୋଣରୁ ସମସ୍ତ ଲୋକଗୀତ, କାହାଣୀ ସଂଗ୍ରହ କରିବେ, ଆଲୋଚନା କରିବେ ପୃଥିବୀକୁ ଚମକେଇ ଦେବେ । କିନ୍ତୁ ଜଣକେ ପକ୍ଷରେତ ତାହା ସମ୍ଭବ ନୁହେଁ । ତଥାପି ତାଙ୍କ ସାଧନାର ଅନ୍ତ ନାହିଁ । ଓଡ଼ିଶା ତଥା ଓଡ଼ିଶାର ଉପାନ୍ତ ଅଞ୍ଚଳରେ ନିଜେ ବୁଲି ଲୋକ ଉପାଦାନ ସଂଗ୍ରହ କରିଛନ୍ତି, ଚିଠିପତ୍ର ମାଧ୍ୟମରେ, ବିଭିନ୍ନ ବ୍ୟକ୍ତିଙ୍କଦ୍ୱାରା ସଂଗ୍ରହ କରାଇଛନ୍ତି । ଅବଶେଷରେ ସରକାରୀ କଳର ସାହାଯ୍ୟ ମଧ୍ୟ ନେଇଛନ୍ତି— ସରକାରୀ ନିର୍ଦ୍ଦେଶନାମା ଜରିଆରେ ସ୍କୁଲଶିକ୍ଷକମାନଙ୍କଦ୍ୱାରା ଗୀତ, ଗଳ୍ପଆଦି ସଂଗ୍ରହ କରିଛନ୍ତି । ସଂଗ୍ରହ ହୋଇଛି ଆଶାପ୍ରଦ । ଚାରିଖଣ୍ଡରେ ବିଭକ୍ତ "ପଲ୍ଲୀଗୀତ ସଞ୍ଚୟନ" ଓ ଛଅ ଖଣ୍ଡରେ ବିଭକ୍ତ 'ଲୋକବାଣୀ ସଞ୍ଚୟନ'ରେ ଏ ସବୁ ପ୍ରକାଶିତ । ପଲ୍ଲୀଗୀତ ସଞ୍ଚୟନର ବିଭିନ୍ନ ଖଣ୍ଡ ୧୯୫୪ରୁ ଓ ଲୋକବାଣୀ ସଚୟନ ୧୯୬୩ରୁ ପ୍ରକାଶିତ । ପଲ୍ଲୀଗୀତ ସଞ୍ଚୟନର ୪ର୍ଥ ଭାଗରେ ସିଂହଭୂମ ଅଞ୍ଚଳରୁ ସଂଗୃହୀତ କେତେକ ଲୋକ-ଗୀତ ସଂଯୋଜିତ । ଲୋକଗୀତକୁ ବାଦ୍ ଦେଇ ଧନ୍ଦା, ଢଗଢମାଳି, ଛଟାଆଦିକୁ ସେ 'ଲୋକବାଣୀ' ବୋଲି ଏକ ସ୍ୱତନ୍ତ୍ର ନାମରେ ନାମିତ କରିଛନ୍ତି । ଉକ୍ତ ସଙ୍କଳନରେ ଅକ୍ଷର କ୍ରମରେ ଏସବୁ ସଜ୍ଜିତ । ଆବଶ୍ୟକ ସ୍ଥଳରେ ସଂଗ୍ରାହକ ସେସବୁର ଅର୍ଥମଧ୍ୟ ସଂଯୋଜିତ କରିଥିବାରୁ ଏ ସଂଗ୍ରହ ଉପାଦେୟ ହୋଇଛି । ଲୋକଗୀତ ଓ ଲୋକ-ବାଣୀର ସଂଗ୍ରହ ସମ୍ପର୍କରେ ସେ ବେଶ୍ ସଚେତନ । ସେ କହନ୍ତି, "ଗୀତ ଯେଉଁ ରୂପ୍‌ରେ ଅଛି ସେହି ରୂପରେ ରଖିବାକୁ ହୋଇଥାଏ, ମାତ୍ରାଟିଏ ଅଦଳବଦଳ କରିବାର ଅଧିକାର ସଂକଳକର ନାହିଁ ।" ସଂଗ୍ରାହକ ସ୍ୱୟଂ ଲୋକଗୀତ ସଂଗ୍ରହ କଲେ ସମସ୍ୟା ନାହିଁ । କିନ୍ତୁ ଲୋକସାହିତ୍ୟ ଓ ତା'ର ସଂଗ୍ରହପଦ୍ଧତି ସମ୍ପର୍କରେ ବିଧିବଦ୍ଧ ପ୍ରଶିକ୍ଷଣ ପାଇ ନ ଥିବା ସରକାରୀ କର୍ମଚାରୀଙ୍କ ଉପରେ ନିର୍ଭର କଲେ ନାନା ଅସୁବିଧା ଦେଖା ଦେବ । ଡଃ ଦାଶ ସଂଗ୍ରାହକଙ୍କୁ ବିସ୍ତୃତ ନିର୍ଦ୍ଦେଶପତ୍ର ଦେଇଥିଲେମଧ୍ୟ ସଂଗ୍ରହଗତ ସମସ୍ୟା ଉପୁଜିଛି । ଏ ସମ୍ପର୍କରେ ସେ ନିଜେ କହନ୍ତି, 'ଅନେକ ଶିକ୍ଷକ ଗାଉଁଲି ଗୀତ କ'ଣ ଜାଣି ନ ଥିବାରୁ, ମୁଁ ସେମାନଙ୍କୁ ବୁଝାଇବାର କୌଣସି ସୁବିଧା ନ ଥିବାରୁ, ପାଠ୍ୟବହିସ୍ଥ କବିତା ଉତାରି, ଗ୍ରନ୍ଥ ଚଉପଦୀ ନକଲ କରି, ଏପରିକି ମୋ ନିଜର କବିତା ଟିପି ମୋ ନିକଟକୁ ପଠାଇଦେଲେ । କେତେକ ସହସା କବି ବନିଯାଇ ଗୋଷ୍ଠି-

ଗୋଛା ସ୍ୱରଚିତ କବିତା ପଠାଇ ମୋ ଭଣ୍ଡାର ପୂର୍ଣ୍ଣ କରିଦେଲେ ।" ( ଓଡ଼ିଆ ଲୋକଗୀତ ଓ କାହାଣୀ, ପୃ—୩୯ ) । ଏଥିରୁ ଲେଖକ ପ୍ରକୃତ ଲୋକଗୀତ ବାଛି ନେବାବେଳେ ନିଜର ଦୀର୍ଘ ଅଭିଜ୍ଞତା ଉପରେ ନିର୍ଭର କରିଛନ୍ତି ।

'ଲୋକଗୀତ' ଓ 'ଲୋକବାର୍ତ୍ତା'ପରି 'ଲୋକ ଗଳ୍ପ ସଞ୍ଚୟନ' ମଧ୍ୟ ତାଙ୍କର ଏକ ବିଶିଷ୍ଟ ଅବଦାନ । ଓଡ଼ିଶାର ବିଭିନ୍ନ ଅଞ୍ଚଳର ଦୁଇଶହ କୋଡ଼ିଏଟି ଗଳ୍ପ ଏହାର ଅନ୍ତର୍ଭୁକ୍ତ । ଅଠର ଭାଗରେ ଏ ଗୁଡ଼ିକ ବିଭକ୍ତ । କେଉଁ ସ୍ଥାନରୁ ଗଳ୍ପ ସଂଗୃହୀତ ଗଳ୍ପ ଶେଷରେ ତାର ଉଲ୍ଲେଖ ରହିଛି । ଦୀର୍ଘ ମୁଖବନ୍ଧରେ ଡଃ ଦାଶ ଓଡ଼ିଶାରେ ଲୋକଗଳ୍ପ ବୋଲିବାର ପରମ୍ପରା, ଲୋକଗଳ୍ପର ବିଶେଷତ୍ୱ, କ୍ଷୁଦ୍ରଗଳ୍ପଠାରୁ ଏହାର ପାର୍ଥକ୍ୟ, ଓଡ଼ିଆ ଲୋକଗଳ୍ପ ଉପରେ ପଞ୍ଚତନ୍ତ୍ର, ହିତୋପଦେଶ ଆଦିର ପ୍ରଭାବ, ବଙ୍ଗଳା ଓ ଓଡ଼ିଆ ଲୋକଗଳ୍ପ ମଧ୍ୟରେ ସମ୍ପର୍କ, ଓଡ଼ିଆ ଲୋକଗଳ୍ପ ସଂଗ୍ରହର ଇତିହାସ ଆଦି ବିଷୟ ଆଲୋଚନା କରିଛନ୍ତି ।

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପ୍ରଚଳିତ କଥିତ ଭାଷା ମଧ୍ୟରେ ତାରତମ୍ୟ ପରିଦୃଷ୍ଟ ହୁଏ । ଲୋକଗଳ୍ପ ବୋଲାକ୍ଷେତ୍ରରେ ସେପରି ତାରତମ୍ୟ ଦେଖାଯିବା ସ୍ୱାଭାବିକ । ଲେଖକ ଏ କ୍ଷେତ୍ରରେ 'ସ୍ଥାନୀୟ ରଙ୍ଗ ରକ୍ଷାକରିବାକୁ ଯତ୍ପରୋନାସ୍ତି ଚେଷ୍ଟା' କରିଛନ୍ତି । କିନ୍ତୁ ଲୋକଗୀତ କ୍ଷେତ୍ରରେ ଯେପରି ମୂଳରୂପକୁ ରକ୍ଷା କରିବା ଆବଶ୍ୟକ ବୋଲି ମନେ କରିଛନ୍ତି, ଲୋକଗଳ୍ପ କ୍ଷେତ୍ରରେ ତା କରିନାହାନ୍ତି । ଏ ସମ୍ପର୍କରେ ସେ କହନ୍ତି, ଲୋକଗଳ୍ପ କ୍ଷେତ୍ର ଭିନ୍ନ । କଥକଠାରୁ କାହାଣୀର କଙ୍କାଳମାତ୍ର ଟିପି ଆଣିବାକୁ ହୁଏ । ରୂପଦାନ କାର୍ଯ୍ୟ ଲେଖକର, ଏହା ପରିଶ୍ରମ ସାପେକ୍ଷ ।" ପୁଣି 'ବୈଜ୍ଞାନିକ ରୀତିରେ ରେକର୍ଡ଼ିଂ କରିଥିଲେ ଭଲ ହୋଇଥାନ୍ତା । ଏଥିରେ ପ୍ରାକୃତିକତା ଅଧିକ ସଂରକ୍ଷିତ ହୋଇଥାନ୍ତା । କିନ୍ତୁ ତା ସଙ୍ଗେ ଉତ୍କଟ ଗ୍ରାମ୍ୟତା ପଶିଆସନ୍ତା । ପୁଣି ସ୍ଥାନୀୟ ଭାଷାର ଏହା ଏକ ଚିଡ଼ିଆଖାନା ହୋଇଯାନ୍ତା । ସମ୍ବଲପୁର, ମେଦିନୀପୁର ଓ ମଞ୍ଜୁଷାର ଭାଷା ହୁଏତ ଅନ୍ୟ ଅଞ୍ଚଳର ଲୋକେ ବୁଝିପାରନ୍ତେ ନାହିଁ ।" ( ଲୋକଗଳ୍ପ ସଞ୍ଚୟନ-ମୁଖବନ୍ଧ ) ଏ ପ୍ରକାର ବିଶ୍ୱାସର ବଶବର୍ତ୍ତୀ ହୋଇ ଡଃ ଦାଶ ଓଡ଼ିଆ ଲୋକ-କାହାଣୀର କଙ୍କାଳ ସଂଗ୍ରହ କରି ତାର ରୂପାୟନ କରିଛନ୍ତି । ପଲ୍ଲୀଭାଷା ଉପରେ ତାଙ୍କର ଅଖଣ୍ଡ ଆଧିପତ୍ୟ ହେତୁ ଗଳ୍ପଗୁଡ଼ିକର ଭାଷା ଓ ପ୍ରକାଶ ରୀତିରେ ପଲ୍ଲୀର ସୁରଭି ସଂରକ୍ଷିତ । ଗଳ୍ପଗୁଡ଼ିକ ସୁଗଠିତ ଓ ଉତ୍କଟ ଗ୍ରାମ୍ୟତାରୁ ମୁକ୍ତ ହୋଇ ସର୍ବଜନ-ଗ୍ରାହ୍ୟ ହୋଇପାରିଛି । କିନ୍ତୁ ଏହାଦ୍ୱାରା ଗଳ୍ପଗୁଡ଼ିକ ଏକପ୍ରକାର ଆତ୍ମସର୍ଜନାତ୍ମକ ରଚନା ( Creative work ) ରେ ପରିଣତ ହୋଇଗଲା । ଏ ପ୍ରକାର ରୂପାୟନ ଏକ ସ୍ୱତନ୍ତ୍ର କଳା; ଏହା ସ୍ୱତନ୍ତ୍ର ପ୍ରତିଭାର ଅପେକ୍ଷା ରଖେ; ତାର ସ୍ୱତନ୍ତ୍ର ମୂଲ୍ୟବୋଧ ରହିଛି, ଅନ୍ୟପକ୍ଷରେ ଲୋକସାହିତ୍ୟର ଯେକୌଣସି ଗବେଷଣା ତାର ମୂଳ ରୂପକୁହିଁ ଆଧାର

କରିଥାଏ । ଉଭୟ ଲୋକଗୀତ ଓ ଲୋକଗଳ୍ପ ସଂଗ୍ରହର ନିୟମ ସମାନ, "ମାତ୍ରାଟିଏ ଅଦଳବଦଳ କରିବାର ଅଧିକାର ସଂକଳକର ନାହିଁ ।" ସେ ପ୍ରକାର ଉପାଦାନ ଅଶ୍ଳୀଳ ବା ଗ୍ରାମ୍ୟ ହେଲେ ତାହା ସର୍ବସାଧାରଣଙ୍କ ପାଇଁ ପ୍ରକାଶ ନକରି କେବଳ ଗବେଷଣା ଉଦ୍ଦେଶ୍ୟରେ ବ୍ୟବହାର କରାଯାଇ ପାରେ ବା ଉପଯୁକ୍ତ ସମ୍ପାଦନା ( editing ) ସହ ପ୍ରକାଶ କରାଯାଇ ପାରେ । ଅବଶ୍ୟ ଡଃ ଦାଶଙ୍କ ବେଳକୁ ଭାରତୀୟ ଲୋକଗଳ୍ପର ସଂଗ୍ରହ ଏଇ ଭାବରେହିଁ ହେଉଥିଲା । ଶବ୍ଦଗ୍ରହଣ ଯନ୍ତ୍ରର ବିଶେଷ ପ୍ରଚଳନ ନ ଥିଲା; ଲୋକଗୀତ ଗୁଡ଼ିକ ଅପେକ୍ଷାକୃତ କ୍ଷୁଦ୍ର ହୋଇଥିବାରୁ ଅବିକଳ ସଂଗ୍ରହ କରିବା ସହଜସାଧ୍ୟ ହେଉଥିବାବେଳେ ଲୋକଗଳ୍ପ କ୍ଷେତ୍ରରେ ତାହା ସମ୍ଭବ ହେଉ ନ ଥିଲା ।

ଓଡ଼ିଆ ସାହିତ୍ୟ ଗବେଷଣାକୁ ଡଃ ଦାଶଙ୍କ ବିଶେଷ ଅବଦାନ ତାଙ୍କ ଗବେଷଣା ନିବନ୍ଧ ( ଥେସିସ୍ ) "ଓଡ଼ିଆ ଲୋକଗୀତ ଓ କାହାଣୀ" (୧୯୫୪) । ଏହା ପ୍ରଥମ ପ୍ରକାଶିତ ଓଡ଼ିଆ ଥେସିସ୍ ଓ ଲୋକସାହିତ୍ୟ ସମ୍ପର୍କିତ ପ୍ରଥମ ଥେସିସ୍ । ଓଡ଼ିଆ ଲୋକ-ସାହିତ୍ୟ ଅଧ୍ୟୟନ ଓ ଅଧ୍ୟାପନା କ୍ଷେତ୍ରରେ ଏକ ଅପରିହାର୍ଯ୍ୟ ସହାୟକ ଗ୍ରନ୍ଥ ଭାବରେ ଏହା ଏ ପର୍ଯ୍ୟନ୍ତ ସ୍ୱୀକୃତ । ଏଥିରେ ଓଡ଼ିଆ ଲୋକଗୀତ ଓ କାହାଣୀର ପରିସର ଓ ପ୍ରବୃତ୍ତି ଅନୁସନ୍ଧାନ କରିବା ଲେଖକଙ୍କର ଲକ୍ଷ୍ୟ ।

ଗ୍ରନ୍ଥଟି ଦୁଇଭାଗରେ ବିଭକ୍ତ । ପ୍ରଥମ ବିଭାଗରେ ଓଡ଼ିଆ ଲୋକଗୀତ ସମ୍ପର୍କିତ ଯାବତୀୟ ତଥ୍ୟ ସନ୍ନିବେଶିତ ହୋଇଛି; ତାର ବ୍ୟାପକତର ଅନୁଶୀଳନ ମଧ୍ୟ କରାଯାଇଛି । ଲୋକ କବିଙ୍କ ସୌନ୍ଦର୍ଯ୍ୟଦୃଷ୍ଟି, ହାସ୍ୟରସ ଓ ବ୍ୟଙ୍ଗାତ୍ମକ ଚିତ୍ର, ସମାଜଚିତ୍ର, ଛନ୍ଦ, ଲୋକଦର୍ଶନ ପରି ତାତ୍ତ୍ୱିକ ଆଲୋଚନା ଏଥିରେ ସ୍ଥାନ ପାଇଛି । ଏହାର ଉପକ୍ରମଣିକାଟି ମଧ୍ୟ ଓଡ଼ିଆଗ୍ରାହ୍ୟ ଗବେଷକଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ । ଏ ଯାବତ୍ ଲୋକସାହିତ୍ୟ ସମ୍ପର୍କିତ କିଛି କାମ ହୋଇଥିଲେ ମଧ୍ୟ ତାର ତାତ୍ତ୍ୱିକ ଦିଗଟି ସମ୍ପର୍କରେ ବିସ୍ତୃତ ଲେଖା ଓଡ଼ିଆରେ ନ ଥିଲା । ଲୋକଗୀତର ସ୍ୱରୂପ, ଏହାର ସୃଷ୍ଟି ସମ୍ପର୍କିତ ବିଭିନ୍ନ ମତାମତ, ବିଦଗ୍ଧ ସାହିତ୍ୟଠାରୁ ଏହାର ପାର୍ଥକ୍ୟ, ଅନ୍ୟାନ୍ୟ ପ୍ରାନ୍ତୀୟ ରାଜ୍ୟରେ ଏ ସମ୍ପର୍କିତ ଗବେଷଣା, ଓଡ଼ିଆ ଲୋକଗୀତ ସଂକଳନ ଓ ସଂଗ୍ରହ-ଇତିହାସ ଏଥିରେ ସ୍ଥାନପାଇ ଓଡ଼ିଆ ଲୋକସାହିତ୍ୟର ଛାତ୍ରଙ୍କୁ ପ୍ରାଥମିକ ଜ୍ଞାନ ଦେବାରେ ସହାୟକ ହୋଇଛି । ଦ୍ୱିତୀୟ ଭାଗଟି ମଧ୍ୟ ଉପାଦେୟ । 'ଓଡ଼ିଆ କାହାଣୀ ଉପରେ ସର୍ବଭାରତୀୟ କାହାଣୀର ପ୍ରଭାବ', ବିଭିନ୍ନ ପ୍ରାଦେଶିକ କାହାଣୀ ମଧ୍ୟରେ ସୌସାଦୃଶ୍ୟ, ପରି ଅଧ୍ୟାୟରେ ଗବେଷକଙ୍କର ତୁଳନାତ୍ମକ ଦୃଷ୍ଟିଭଙ୍ଗୀ ସ୍ପଷ୍ଟ । ଲୋକଗୀତ କ୍ଷେତ୍ରରେ ମଧ୍ୟ ଓଡ଼ିଆର ଠିଆପାଲା ଓ ବଙ୍ଗଳାର କବିଗାନ ମଧ୍ୟରେ ସମ୍ପର୍କ ନିର୍ଦ୍ଦେଶ କରିବା ଭିତରେ ସେଇ ତୁଳନାତ୍ମକ ଦୃଷ୍ଟିଭଙ୍ଗୀ କାମ କରିଛି । କାହାଣୀ ଭାଗରେ ତାଙ୍କର ବିଶେଷ

ଉଲ୍ଲେଖ ଯୋଗ୍ୟ ଅଧ୍ୟାୟ, 'ଲୋକଗଳ୍ପର ଆକୃତି ଓ ଅଭିପ୍ରାୟ' ଅଂଶଟି । ଲୋକଗଳ୍ପର ଅଭିପ୍ରାୟ ( motif ) ସମ୍ପର୍କିତ ଆଲୋଚନା ଆମେରିକାର ଲୋକସାହିତ୍ୟବିଦ୍ ଷ୍ଟିଥ୍‌ଥମ୍ପସନ୍ ଆରମ୍ଭ କରିଥିଲେ । ଲୋକଗଳ୍ପ ଅଧ୍ୟୟନ ପାଇଁ ବହୁଦିନ ଧରି ଏହାହିଁ ଥିଲା ସର୍ବାଧୁନିକ ପଦ୍ଧତି । ଡଃ ଦାଶ ଷ୍ଟିଥ୍ ଥମ୍ପସନ୍‌ଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଥିଲେ । ଆମେରିକା ଗସ୍ତ ସମୟରେ ତାଙ୍କଠାରୁ ସେ ଉଭୟ 'ଥମ୍ପସନ୍ ଓ ଆର୍ଣ୍ଣି ଆର୍ନେ'ଙ୍କ ସଙ୍କଳିତ ଟାଇପ୍ ଇଣ୍ଡେକ୍ସରୁ ଖଣ୍ଡିଏ ଉପହାର ସ୍ୱରୂପ ପାଇଥିଲେ ( ଆମେରିକାରୁ ଇଉରୋପ, ଆଫ୍ରିକା, ପୃ—୪୨ ) ମଧ୍ୟ ସେ ତାର ଅନୁସରଣ ନ କରି ମୋଟିଫ୍‌ର ଅନୁସନ୍ଧାନ କରିଛନ୍ତି । କାରଣ ମୋଟିଫ୍ ସମ୍ପର୍କିତ ଆଲୋଚନାର ସୂତ୍ରପାତ ହେବାପରେ 'ଟାଇପ୍‌'ର ଗୁରୁତ୍ୱ ହ୍ରାସ ପାଇଥିଲା । ଏହିପରି ଭାବରେ ଥେସିସ୍‌ଟିରେ ସମକାଳୀନ ଲୋକସାହିତ୍ୟ ସମ୍ପର୍କିତ ସର୍ବାଧୁନିକ ପଦ୍ଧତିର ପ୍ରୟୋଗ କରି ଓଡ଼ିଆ ଲୋକସାହିତ୍ୟ ଆଲୋଚନାର ପରିସରକୁ ସେ ସମ୍ପ୍ରସାରିତ କରିଛନ୍ତି ।

ଯେକୌଣସି ସାହିତ୍ୟର ପ୍ରାଥମିକ ପର୍ଯ୍ୟାୟରେ ହୋଇଥିବା ଗବେଷଣା ଗ୍ରନ୍ଥମାନଙ୍କରେ ତ୍ରୁଟିବିଚ୍ୟୁତି ରହିବ । ଡଃ ଦାଶଙ୍କ ଗ୍ରନ୍ଥରେ ସେମିତି କିଛି ଅପୂର୍ଣ୍ଣତା ନଜରକୁ ଆସେ । ଡଃ ଦାଶଙ୍କ ଲୋକଗୀତ ଆଲୋଚନାରେ 'ଗୀତ' ସମ୍ପର୍କିତ ଆଲୋଚନା ଗୁରୁତ୍ୱଲାଭ କରିନାହିଁ । ଅନେକ କ୍ଷେତ୍ରରେ ତାର ଆନୁଷ୍ଠାନିକ ବିବରଣୀ (ritual-part)ଟି ପ୍ରାଧାନ୍ୟ ଲାଭ କରିଛି । ଅବଶ୍ୟ ଶଂପିତ ଲୋକଗୀତର ଅବବୋଧ ପାଇଁ ସେ ତଥ୍ୟ ଯେ ଅପରିହାର୍ଯ୍ୟ ଏଥିରେ ସନ୍ଦେହ ନାହିଁ । ପୁନଶ୍ଚ ଡଃ ଦାଶଙ୍କ ଥେସିସ୍‌ରେ କୌଣସି ଉପସଂହାର ନାହିଁ । ପରିଶିଷ୍ଟ ଅଂଶରେ 'ଓଡ଼ିଆ ନାରୀର ଭାଷା' ସମ୍ପର୍କିତ ଆଲୋଚନା କରି ସେ ଗ୍ରନ୍ଥର ସମାପ୍ତି ଟାଣିଛନ୍ତି । ଏଣୁ ଲୋକଗୀତ ଓ କାହାଣୀ ବିଭାଗ ଦୁଇଟି ସମନ୍ୱିତ ହୋଇ ପାରିଲାନାହିଁ । ଅବଶ୍ୟ ଡଃ ଦାଶଙ୍କ ଥେସିସ୍‌ର ବିଗ୍ଭରକ ଆମେ ହୋଇ ନ ପାରୁ ; ସମୟର କଷଟିରେ ତାହା ପରୀକ୍ଷିତ ।

ଡଃ ଦାଶଙ୍କ ଅନ୍ୟତମ ଉଲ୍ଲେଖଯୋଗ୍ୟ କୃତି 'A study of Orissan Folklore (1953) । ଓଡ଼ିଆ 'ଲୋକସାହିତ୍ୟ'କୁ ଓଡ଼ିଶା ବାହାରେ ପରିଚିତ କରାଇବା ଦୃଷ୍ଟିରୁ ଏହା ପ୍ରଥମ ଇଂରେଜୀ ଲିଖିତ ଆଲୋଚନା ଗ୍ରନ୍ଥ । ଓଡ଼ିଆ ଲୋକ-କାହାଣୀ, ଗାଥା, ଅନ୍ୟାନ୍ୟ ଲୋକଗୀତ, ପଂଚପଟାଣୀ, ଓଷାବ୍ରତ ଆଦି ସମ୍ପର୍କରେ ଏଥିରେ ସଂକ୍ଷିପ୍ତ ଆଲୋଚନା ଓ ବିବରଣୀ ସ୍ଥାନ ପାଇଛି । ଗ୍ରନ୍ଥର ଶେଷଭାଗରେ କେତୋଟି ଗାଥା, ନାଉରିଆ ଗୀତ, ଶଗଡ଼ିଆ ଗୀତ, ସାପୁଆ କେଳାଗୀତ, ଚଢାକୁଟା, କେଳୁଣୀ ଗୀତ, ପାଲ୍‌ଟୁଆ ଗୀତ, ମହିଷିଆଳ ଗୀତ, କୃଷି ସଙ୍ଗୀତ, ପ୍ରାର୍ଥନାଗୀତ, ଦୋଳିଗୀତ, ପ୍ରେମଗୀତ ଓ ଅନ୍ୟାନ୍ୟ ଗୀତର ମୂଳରୂପ ଦେବନାଗରୀ ଅକ୍ଷରରେ ଦିଆହୋଇବା ସଙ୍ଗେ ସଙ୍ଗେ ଇଂରେଜୀ ଅନୁବାଦ ମଧ୍ୟ ଦିଆଯାଇଛି । ଏ ଦୃଷ୍ଟିରୁ ଗ୍ରନ୍ଥଟି

ଉପାଦେୟ । କିନ୍ତୁ ଏଥିରେ ଥିବା 'ଓଡ଼ିଶାନ୍ ମାସ୍ ଲିଟେରେଚର୍' ଅଧ୍ୟାୟଟି କିଞ୍ଚିତ୍ ବିଷୟ ବହିର୍ଭୂତ ମନେହୁଏ । ଏଥିରେ ଓଡ଼ିଶାର ଗାଁ ଗହଳରେ ଆଦୃତ ସାରଳା ଦାସ, ବଳରାମ ଦାସ, ଜଗନ୍ନାଥ ଦାଶ ଆଦିଙ୍କ କୃତି ସମ୍ପର୍କରେ ସୂଚନା ଦିଆଯାଇଛି । ଗ୍ରନ୍ଥଟି ଦେଶ ବିଦେଶରେ ପ୍ରଶଂସିତ । ଗ୍ରନ୍ଥଟିର ମୁଖବନ୍ଧରେ ବିଶ୍ୱଭାରତୀ ବିଦ୍ୟାଭବନର ତତ୍କାଳୀନ ଅଧ୍ୟକ୍ଷ ଡଃ ପି. ସି. ବାଗ୍‌ଚି କହନ୍ତି, "As he has boldly done this spade work so far as Orissan Folklore is concerned his work deserves every commendation" ପ୍ରଫେସର ଲକ୍ଷ୍ମଣ ମହାପାତ୍ରଙ୍କ ସହଯୋଗିତାରେ ଲିଖିତ ତାଙ୍କର "Folklore of Orissa" ମଧ୍ୟ ଭାରତୀୟ N. B. T. ଦ୍ୱାରା ପ୍ରକାଶିତ ହୋଇ ଆଦୃତ ହେଉଛି । ଏତଦ୍‌ବ୍ୟତୀତ Folklore ପତ୍ରିକାରେ ତାଙ୍କର ପ୍ରାୟ କେତୋଟି ଗବେଷଣାତ୍ମକ ପ୍ରବନ୍ଧ ରହିଛି । ତାଙ୍କ ପ୍ରବନ୍ଧ ସଂକଳନ ଗୁଡ଼ିକରେ ମଧ୍ୟ ଲୋକସାହିତ୍ୟ ସମ୍ପର୍କିତ କେତୋଟି ପ୍ରବନ୍ଧ ସନ୍ନିବିଷ୍ଟ । ଓଡ଼ିଆ ସାହିତ୍ୟର ସ୍ୱରୂପ ଉଦ୍‌ଘାଟନ କରିବା ଓ ତାହାର ଦୁନିଆକୁ ଏହାର ରସ ଚଖେଇବା ସକେ ସେପରି ତାଙ୍କର ବ୍ରତ ହୋଇପଡ଼ିଛି । ଓଡ଼ିଆ ଲୋକସାହିତ୍ୟ ସମ୍ପର୍କରେ ଏତେ ଦୀର୍ଘକାଳ ଧରି ଏତେ ବ୍ୟାପକ ସାଧନା ଦ୍ୱିତୀୟ ଲୋକ କରିନାହିଁ ।

ଏବେ ଓଡ଼ିଶାରେ ଲୋକସାହିତ୍ୟ ଚର୍ଚ୍ଚା ସ୍ତିମିତ । ଓଡ଼ିଶାର ବିଶ୍ୱବିଦ୍ୟାଳୟ ଗୁଡ଼ିକ ଏ ସମ୍ପର୍କରେ ଉଦାସୀନ । କେତେକ ଗବେଷକ ଲୋକସାହିତ୍ୟ ଚର୍ଚ୍ଚାକୁ ନିଜର ମୁଖ୍ୟ ଗବେଷଣା କ୍ଷେତ୍ରଭାବରେ ଗ୍ରହଣ ନ କଲେ ମଧ୍ୟ କେବେବେଳେ କେମିତି ଏ ଦିଗରେ କିଛି କିଛି ଉଦ୍ୟମ କରୁଥିବାର ଲକ୍ଷ୍ୟ କରାଯାଏ । ସେହିପରି କେତେଜଣ ବିଦ୍ୱାନ ହେଲେ ଡଃ ନଟବର ସାମନ୍ତରାୟ, ଡଃ କୃଷ୍ଣଚରଣ ବେହେରା, ପ୍ରଫେସର ଗୋପାଳଚନ୍ଦ୍ର ମିଶ୍ର, ଡଃ ନରେନ୍ଦ୍ରନାଥ ମିଶ୍ର, ଡଃ ଗଗନେନ୍ଦ୍ର ନାରାୟଣ ଦାଶ, ଡଃ ଭବଗ୍ରାହୀ ମିଶ୍ର ଓ ଡଃ ପ୍ରସନ୍ନ ମିଶ୍ର । ଏମାନଙ୍କ ମଧ୍ୟରୁ ଡଃ ଭବଗ୍ରାହୀ ମିଶ୍ର ଓ ଡଃ ପ୍ରସନ୍ନ ମିଶ୍ର ନୃତତ୍ତ୍ୱ/ଲୋକତତ୍ତ୍ୱ ବିଷୟକ ଚର୍ଚ୍ଚାକରି ପି. ଏଚ୍. ଡ଼ି. ଡ଼ିଗ୍ରୀ ଲାଭ କରିଛନ୍ତି । ଡଃ ଭବଗ୍ରାହୀ ମିଶ୍ରଙ୍କ ଥେସିସ୍ "Verrier Elwin—A Pioneer Indian anthropologist." ଏସିଆ ପବ୍ଲିସିଂ ହାଉସ୍ ନଉଦିଲ୍ଲୀଦ୍ୱାରା ପ୍ରକାଶିତ । ଇତମଧ୍ୟରେ ଲୋକସାହିତ୍ୟ ସମ୍ପର୍କିତ ଆଉ କେତୋଟି ପି. ଏଚ୍. ଡ଼ି. ନିବନ୍ଧ ମଧ୍ୟ ଗୃହୀତ ହୋଇଛି । କିନ୍ତୁ ସେସବୁ ପ୍ରକାଶ ପାଇନାହିଁ ।

ଏବେ ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଲୋକସାହିତ୍ୟ ଚର୍ଚ୍ଚା ଉପରେ ଗୁରୁତ୍ୱ ଦିଆହେଉଛି । ଧରଓ୍ୱାର ସ୍ଥିତ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ କନ୍ନଡ ଷ୍ଟାଡ଼ିଜ୍‌ରେ କେବଳ ଲୋକସାହିତ୍ୟରେ ଏମ୍. ଏ. ଅଧ୍ୟାପନାର ବ୍ୟବସ୍ଥା ହୋଇଛି । ମହୀଶୂରର ବିଶ୍ୱ-ବିଦ୍ୟାଳୟରେ ମଧ୍ୟ ଏ ବ୍ୟବସ୍ଥା ରହିଛି । ମହୀଶୂର ବିଶ୍ୱବିଦ୍ୟାଳୟ ପରିଚାଳିତ

ଫୋକ୍‌ଲୋର ମ୍ୟୁଜିୟମ୍ ଏସିଆରେ ଏକ ସୁବୃହତ୍ ମ୍ୟୁଜିୟମ । ମହୀଶୂରର ଭାରତୀୟ ଭାଷା ଗବେଷଣା ଅନୁଷ୍ଠାନ ( C. I. I. L. ) ଏ ଦିଗରେ ଅଗ୍ରଣୀ । ଏଠାରେ ଏକ ଅଡ଼ିଓଭିଜୁଆଲ ୟୁନିଟ୍ ସାହାଯ୍ୟରେ ଲୋକଗୀତ, ନୃତ୍ୟ ଆଦିର ସଂରକ୍ଷଣ ଓ ଅନୁଶୀଳନ କରାଯାଉଛି । ଲୋକସାହିତ୍ୟ ଅଧ୍ୟୟନ ପାଇଁ ଏକ ସ୍ୱୟଂ ସମ୍ପୂର୍ଣ୍ଣ ଲାଇବ୍ରେରୀ ମଧ୍ୟ ଗଢ଼ି ଉଠୁଛି । ଏବେ କଲ୍ୟାଣୀ ବିଶ୍ୱବିଦ୍ୟାଳୟରେ ଏକ ଲୋକସାହିତ୍ୟ ଗବେଷଣା କେନ୍ଦ୍ର ( Institute of Folklore ) ଖୋଲାଯାଇଛି । ଏଥିରେ ଡଃ ତୁଷାର ଚଟ୍ଟୋପାଧ୍ୟାୟଙ୍କ ନେତୃତ୍ୱରେ ଆଠଜଣ ଗବେଷକ କାମ କରୁଛନ୍ତି । ଆସାମର ଗୌହାଟୀ ବିଶ୍ୱବିଦ୍ୟାଳୟରେ ଲୋକସାହିତ୍ୟ ବିଭାଗଟି କେବଳ ଗବେଷଣା ସଂସ୍ଥାଭାବରେ କାମ କରୁଛି । ବଙ୍ଗଳାରେ ମଧ୍ୟ ବିଶ୍ୱବିଦ୍ୟାଳୟ ବ୍ୟତୀତ ବ୍ୟକ୍ତିବିଶେଷଙ୍କ ଉଦ୍ୟମରେ ଲୋକବିଦ୍ୟା ଗବେଷଣା ଅନୁଷ୍ଠାନମାନ ଗଢ଼ି ଉଠିଛି ।

ଲୋକଉପାଦାନ ଜନଜୀବନ, ସାହିତ୍ୟ ଓ ସଂସ୍କୃତି ସହ ଜଡ଼ିତ । ଲୋକ-ଉପାଦାନର ଗନ୍ତାଘର ଓଡ଼ିଶାର ଲୋକସାହିତ୍ୟ ବୈଜ୍ଞାନିକ ପଦ୍ଧତିରେ ସଂରକ୍ଷିତ ନ ହେଲେ ଜାତି ଏକ ମହାନ୍ ସାଂସ୍କୃତିକ ଐତିହ୍ୟ ହରାଇ ବସିବ । ଏ ସମ୍ପର୍କୀୟ ଗବେଷଣା ନ ହେଲେ କୌଣସି ସଂସ୍କୃତିର ଅବବୋଧ ସମ୍ଭବ ନୁହେଁ । ଡ଼ଃ ଦାଶ ଏ ଦିଗରେ ଅନବରତ ଚିନ୍ତାକରି ଆସିଛନ୍ତି । ତାଙ୍କର ନିରବଚ୍ଛିନ୍ନ ସାଧନାହିଁ ଏହାର ସାକ୍ଷ୍ୟ ବହନ କରେ । ନାନା କ୍ଷେତ୍ରରେ ସେ ଏ ସମ୍ପର୍କରେ ତାଙ୍କର ବ୍ୟଗ୍ରତା ପ୍ରକାଶ କରିଛନ୍ତି । ନିଜର ଏକ ସଙ୍କଳନର ମୁଖବନ୍ଧରେ ସେ କହନ୍ତି, "ସଂଗ୍ରହର ଅନ୍ତରାୟ ଅନେକ । ବିଜ୍ଞାନ ଯୁଗରେ ବି ନିତାନ୍ତ ମାମୁଲି ଅମଳର ସରଞ୍ଜାମ ଅବଲମ୍ବନ କରିବାକୁ ବାଧ୍ୟ ହୋଇଛୁ × × × ସମଗ୍ର ଓଡ଼ିଶାରେ ଏ ପର୍ଯ୍ୟନ୍ତ ଲୋକସାହିତ୍ୟ ପରିଷଦ ଗଢ଼ାଯାଇ ପାରିନାହିଁ × × × ଏ ଅବସ୍ଥିତିରେ ପଲ୍ଲୀସଂସ୍କୃତିର ସୁରକ୍ଷା ଲାଗି ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ୱତନ୍ତ୍ର ଲୋକସଂସ୍କୃତି ବିଭାଗ ଖୋଲିବା ଏକମାତ୍ର ପନ୍ଥା । ( ପଲ୍ଲୀ ଗୀତି ସଞ୍ଚୟନ, ୨ୟ ଭାଗ, ପୃ—୪୫ )

ଓଡ଼ିଆ ଲୋକସାହିତ୍ୟ ପାଇଁ ବ୍ୟକ୍ତିଗତ ଉଦ୍ୟମରେ ଡଃ ଦାଶ ଯାହା କରିଛନ୍ତି ତାର ପଟାନ୍ତର ନାହିଁ ଓଡ଼ିଶାରେ ବ୍ୟକ୍ତିଗତ ଉଦ୍ୟମଦ୍ୱାରାହିଁ କିଛି କିଛି ଉଲ୍ଲେଖଯୋଗ୍ୟ କାମ ହୋଇଥାଏ । ସଙ୍ଘବଦ୍ଧ ଉଦ୍ୟମର ପରମ୍ପରା ଗଢ଼ି ଉଠିବା ଦରକାର । ସରକାରୀ, ବେସରକାରୀ ଓ ବିଶ୍ୱବିଦ୍ୟାଳୟ ସ୍ତରରୁ ଉତ୍ସାହ ନ ମିଳିଲେ ଏ ପ୍ରକାର ଜାତୀୟ କାର୍ଯ୍ୟ ବିଘ୍ନିତ ହେବ । ସୁବ୍ୟବସ୍ଥିତ ଭାବରେ ଏକ ଲୋକବିଦ୍ୟା ଗବେଷଣା ପ୍ରତିଷ୍ଠାନ ପ୍ରତିଷ୍ଠିତ ହେଲେ ଡଃ ଦାଶଙ୍କ ସ୍ୱପ୍ନ ସାର୍ଥକ ହେବା ସଙ୍ଗେ ସଙ୍ଗେ ଉତ୍କଳୀୟ ସଂସ୍କୃତିର ସୁରକ୍ଷା ଓ ମୂଲ୍ୟାୟନ ଦିଗରେ ଯଥାର୍ଥ ଉଦ୍ୟମ ଆରମ୍ଭ ହେବ । ●

# ॥ ଦୁଇଟି କାବ୍ୟ ନାଟିକା ଏବଂ କୁଞ୍ଜବିହାରୀ ନାଟ୍ୟ ମାନସ ॥

ଡକ୍ଟର ହେମନ୍ତ କୁମାର ଦାସ

କବିତ୍ୱ ସଫଳ ନାଟକ ରଚନାର ଏକ ଅପରିହାର୍ଯ୍ୟ ଅଙ୍ଗ । ସେକ୍‌ସପିୟର, କାଳିଦାସ, ଭବଭୂତି, ଦ୍ୱିଜେନ୍ଦ୍ରଲାଲ, କାଳିଚରଣ ପ୍ରମୁଖ ବହୁ ନାଟ୍ୟକାର କବିରୂପରେ ମଧ୍ୟ ପ୍ରଖ୍ୟାତିଲାଭ କରିଛନ୍ତି । ଯେଉଁ ନାଟ୍ୟକାର କବି ନୁହନ୍ତି, ତାଙ୍କୁ ସଫଳ ନାଟ୍ୟକାର କୁହା ନ ଯାଇ 'Half-Dramatist' ବୋଲି କୁହାଯିବା ସମ୍ପର୍କରେ ଏକ ମନ୍ତବ୍ୟ ମଧ୍ୟ ରହିଛି । କବିପୁରୁଷର କବିସତ୍ତା ତଥା ନାଟ୍ୟସତ୍ତାର କଳାତ୍ମକ ସମନ୍ୱୟରେ ହିଁ ଜଣେ ପୂର୍ଣ୍ଣାଙ୍ଗ ସଫଳ ନାଟ୍ୟକାରର ସୃଷ୍ଟି ହୁଏ ବୋଲି ତେଣୁ କୁହାଯାଇପାରେ । ମନେ ରଖିବାକୁ ହେବଯେ, ସଂସ୍କୃତସାହିତ୍ୟ ଶାସ୍ତ୍ରରେ ନାଟକକୁ 'ଦୃଶ୍ୟକାବ୍ୟ' କୁହାଯାଇଛି । 'ଦୃଶ୍ୟ' ଶବ୍ଦ 'ଅଭିନେୟ' ଏହି ପାରିଭାଷିକ ଅର୍ଥରେ ବ୍ୟବହୃତ ହୋଇଛି ଏବଂ 'କାବ୍ୟ' ଶବ୍ଦ ବ୍ୟବହୃତ ହୋଇଛି କବିର ସୃଷ୍ଟି—ଭାଷାମୟୀ ରଚନା ଅର୍ଥରେ । ଅର୍ଥାତ୍ ସଂସ୍କୃତ କାବ୍ୟଶାସ୍ତ୍ରରେ ନାଟକର ଯେଉଁ ସଂଜ୍ଞା ନିରୂପଣ କରାଯାଇଛି, ତହିଁରେ ନାଟକ କାବ୍ୟ ଜାତିର ଅନ୍ତର୍ଗତ ଏବଂ ତାର ପ୍ରଜାତି ଲକ୍ଷଣ ହେଉଛି—ଦୃଶ୍ୟତ୍ୱ ବା ଅଭିନେୟତ୍ୱ । 'କାବ୍ୟ' ଶବ୍ଦଟିର ବ୍ୟବହାରଦ୍ୱାରା, ଯାହା କବିକୃତ ନୁହେଁ, ତାହା ବାଦ୍ ପଡ଼ିଯାଉଛି, ପୁଣି 'ଦୃଶ୍ୟ' କଥାଟିରୁ କବିକୃତ ଅନ୍ୟାନ୍ୟ ରଚନା ଯାହା ଅଭିନେୟ ନୁହେଁ, ସେ ସବୁ ବାଦ୍ ପଡୁଛି । 'କାବ୍ୟ' ଅଭିଧାରେ ଗୋଟିଏ ଦିଗରେ ଯାଗଯଜ୍ଞାଦି ଦୃଶ୍ୟାତ୍ମକ ଅନୁଷ୍ଠାନ ନାଟ୍ୟପଦବାଚ୍ୟ ହୋଇପାରୁନାହିଁ, ଅନ୍ୟ ଦିଗରେ 'ଦୃଶ୍ୟ' କୁହାଯିବାରୁ ଗୀତିକବିତା, ଆଖ୍ୟାନ କାବ୍ୟ, ମହାକାବ୍ୟ, ଉପନ୍ୟାସ ଓ ଗଳ୍ପରେ ଅତିବ୍ୟାପ୍ତି ଘଟୁନାହିଁ ।

ଆରିଷ୍ଟଟଲ ତାଙ୍କର ପ୍ରସିଦ୍ଧ କାବ୍ୟତତ୍ତ୍ୱ (Poetic.) ଗ୍ରନ୍ଥରେ ଚିତ୍ର, ସଙ୍ଗୀତ, ନୃତ୍ୟ, କାବ୍ୟ ପ୍ରଭୃତି ଶିଳ୍ପକୁ 'ଅନୁକରଣାତ୍ମକ' (Modes of imitation) ବୋଲି କହିଛନ୍ତି । ତାଙ୍କ ମତରେ କାବ୍ୟ ଶିଳ୍ପ ହେଉଛି, "art which imitates by means of language alone and that either in prose or verse" ଅର୍ଥାତ୍ ଗଦ୍ୟବନ୍ଧରେ ହେଉ କିମ୍ବା ପଦ୍ୟବନ୍ଧରେ ହେଉ ଏଥିରେ ଭାଷା ସାହାଯ୍ୟରେ 'ଅନୁକରଣ'ହିଁ କରାଯାଇ ଥାଏ । ଯେ ଭାଷା ସାହାଯ୍ୟରେ ଅନୁକରଣ

କରନ୍ତି, ସେ କବି । ସେ ପୁଣି ନିଜେ କମ୍ବା ଅନ୍ୟଦ୍ୱାରା ବର୍ଣ୍ଣନା ସାହାଯ୍ୟରେ ଅନୁକରଣ କରନ୍ତି । ଅର୍ଥାତ୍ ରୀତିଦୃଷ୍ଟିରୁ କାବ୍ୟ ବର୍ଣ୍ଣନାତ୍ମକ ଏବଂ ଦୃଶ୍ୟାତ୍ମକ । ଆରିଷ୍ଟଟଲ ଏ ବିଷୟରେ ସୁସ୍ପଷ୍ଟ ନିର୍ଦ୍ଦେଶ ଦେଇ କହିଛନ୍ତି । "the poet may imitate by narrati n in which case he car either take another personality as Homer does, or speak in his own person unchanged or he may present all his characters as living and moving before us—" ଏହି ମନ୍ତବ୍ୟର ଶେଷ ପଂକ୍ତିରେ ବର୍ଣ୍ଣନାତ୍ମକ ରଚନା ଏବଂ ଦୃଶ୍ୟାତ୍ମକ ରଚନାର ମୌଳିକ ପାର୍ଥକ୍ୟ ସମ୍ପର୍କରେ ଉଲ୍ଲେଖ ରହିଛି । ଯାହାହେଉ, ଏଥିରେ କୌଣସି ସନ୍ଦେହ ନାହିଁ ଯେ କବିଙ୍କ ସହିତ ନାଟ୍ୟକାର-ଙ୍କର ଏକ ଗୂଢ଼ ସମ୍ପର୍କ ରହିଛି । ଏହାମଧ୍ୟ ଦେଖାଯାଇଛି ଯେ, ଯେଉଁ ନାଟ୍ୟକାରମାନେ କବି ନୁହନ୍ତି, ନାଟ୍ୟକାର ରୂପରେ ସେମାନଙ୍କର ସଫଳତା ବିବାଦାତ୍ମକ ହୋଇ ପଡ଼ିଛି । ଏହାପରେ ସ୍ୱାଭାବିକ ଭାବରେ କାବ୍ୟ ଏବଂ ନାଟକ ମଧ୍ୟରେ ପ୍ରାଥମିକତାର ପ୍ରଶ୍ନ ଉଠିବ । ଶିଳ୍ପ କ୍ଷେତ୍ରର ଏ ଦୁଇ ରୂପର ଅଗ୍ରଜତ୍ୱର ସପକ୍ଷ ଏବଂ ବିପକ୍ଷରେ ବହୁ ମନ୍ତବ୍ୟ ଦିଆ-ଯାଇଛି । ନାଟକକୁ 'Higher' ଏବଂ 'Larger' form of art ବୋଲି ଘୋଷଣା କରାଯାଇ ଏହାକୁ କାବ୍ୟଠାରୁ ବହୁ ଊର୍ଦ୍ଧ୍ୱରେ ସ୍ଥାପନ କରାଯାଇଛି । କାବ୍ୟ-ବାଦୀମାନେ ସେଇଭଳି ଭାବରେ 'କଳା' ରୂପରେ ନାଟକ 'belongs to a later phase of class society' ବୋଲି ଘୋଷଣା କରିଛନ୍ତି । ଏଥିରେ ସନ୍ଦେହ ନାହିଁ ଯେ, କାବ୍ୟ ଏବଂ ନାଟକର ଜନ୍ମ ଏକ ସମୟରେ । କାରଣ ଶିଳ୍ପର ଯେଉଁ ରୂପ ଆଦିମ-ସଭ୍ୟତାରେ ପ୍ରଥମେ ଆତ୍ମପ୍ରକାଶ କରିଥିଲା, ସେଥିରେ କାବ୍ୟ ଥିଲା, ନାଟକ ମଧ୍ୟ ଥିଲା । ସଭ୍ୟତାର ଅଗ୍ରଗତି ସହିତ କ୍ରମଶଃ ଏହାର ରୂପ-ପରିବର୍ତ୍ତନ ହୋଇଛି ଏବଂ କଳାର ଏକ ଏକ ସ୍ୱତନ୍ତ୍ର ରୂପ ଭାବରେ ଏହା କ୍ରମଶଃ ପ୍ରତିଷ୍ଠା ଲାଭ କରିଛି । ଏଥିରେ ତେଣୁ ସନ୍ଦେହ କରିବାର କିଛି ନାହିଁ ଯେ ଶିଳ୍ପର ଏ ଉଭୟ ରୂପଅନ୍ୟୋନ୍ୟ ନିର୍ଭରଶୀଳ; ପରସ୍ପରର ପ୍ରତିପକ୍ଷ ନୁହନ୍ତି ।

ଶିଳ୍ପର ଏକ ସ୍ୱତନ୍ତ୍ର ରୂପଭାବରେ କାବ୍ୟ ନାଟକର ଉଦ୍ଭବ ଖୁବ୍ ବେଶୀ ଦିନର ନୁହେଁ, ଯଦିଓ କବିତ୍ୱକୁ ବାଦ୍ ଦେଇ କୌଣସି କ୍ଷେତ୍ରରେ ସଫଳ ନାଟକ ଲେଖା ଯିବା ବିଷୟ ଚିନ୍ତା କରାଯାଇ ନାହିଁ । କାବ୍ୟ ନାଟକର ଅଭିନୟ ଯୋଗ୍ୟତା ଦିଗରେ ବିଶେଷ ଦୃଷ୍ଟି ଦିଆଯାଏ ନାହିଁ, ବରଂ କାବ୍ୟ ନିମନ୍ତେ ସଚରାଚର ବ୍ୟବହୃତ ବର୍ଣ୍ଣନାତ୍ମକ ରୀତିଟିକୁ ହିଁ ଏଥିରେ ଗୁରୁତ୍ୱ ଦିଆଯାଇଥାଏ । ଏଥିରେ କଥାବସ୍ତୁ ଥାଏ, ଚରିତ୍ର ଥାଆନ୍ତି, ଭାଷାକୁ ମଧ୍ୟ ଯଥାରୀତି ସଳାପାତ୍ମିକା କରିବା ନିମନ୍ତେ ଉଦ୍ୟମ କରାଯାଇ ଥାଏ । କେବଳ ମାତ୍ର ଏହାର ବର୍ଣ୍ଣନାତ୍ମକ ରୀତି, ମଂଚ୍ୟବତରଣରେ ବାଧକ ସ୍ୱରୂପ ହୋଇଥାଏ । ଏହାର ରଚନା କାଳରେ ସାହିତ୍ୟିକ ଦିଗଟି ଉପରେ ମଧ୍ୟ ବିଶେଷ ଦୃଷ୍ଟି

ଦିଆଯାଇଥାଏ । ମଞ୍ଚ ପାଇଁ ଯେଉଁ ବିଶେଷ ଉପାଦାନଗୁଡ଼ିକର ପ୍ରୟୋଜନ ହୋଇଥାଏ, ନାଟ୍ୟକାର ଏଥିରେ ସେ ସବୁର ପ୍ରୟୋଗ ନିମନ୍ତେ ବିଶେଷ ଆଗ୍ରହୀ ହୁଅନ୍ତି ନାହିଁ । ଏହା ଯେ ଅଭିନୟର ସମ୍ପୂର୍ଣ୍ଣ ଅନୁପଯୋଗୀ, ଏକଥା ନୁହେଁ । ପ୍ରୟୋଜନ ବୋଧରେ ସାମାନ୍ୟ ପରିବର୍ତ୍ତନ ପରିବର୍ଦ୍ଧନ କରି, ଏହାକୁ ମଞ୍ଚରେ ଉପସ୍ଥାପନ କରାଯାଇପାରେ । ସଂସ୍କୃତର ଅଧିକାଂଶ ନାଟକକୁ ଏହି ଶ୍ରେଣୀର ନାଟକ କୁହାଯାଇପାରେ । ଏହାକୁ ପାଠ୍ୟ-ନାଟକ ( Closet Drama ) ଶ୍ରେଣୀଭୁକ୍ତ କରାଯାଇପାରେ । ରଙ୍ଗମଞ୍ଚର ଅଭାବ, ଏହି ଧରଣ ନାଟ୍ୟ ସୃଷ୍ଟିର ଏକ ମୁଖ୍ୟ କାରଣ । କୁହାଯାଏ ଯେ, ଜେ. ଏସ୍. ନୋଲ୍ସ୍ ( ୧୭୮୪-୧୮୬୨ ) ପ୍ରଥମେ କାବ୍ୟ-ନାଟକ ଲେଖିବାକୁ ପ୍ରୟାସ କରିଥିଲେ ମାତ୍ର ବିଭିନ୍ନ କାରଣରୁ ସେ ଏ ଦିଗରେ ସଫଳତା ଲାଭ କରିପାରି ନ ଥିଲେ । ମାତ୍ର ଊନବିଂଶ ଶତକର ଶେଷଭାଗ ତଥା ବିଂଶ ଶତକର ପ୍ରଥମ ତିନିଦଶକରେ ଏଇ ଧରଣର ପ୍ରଚୁର କାବ୍ୟନାଟକ ରଚନା କରାଯାଇଛି, ପରିଣାମରେ ସାହିତ୍ୟର ଏକ ଧାରାରୂପରେ ଏହା ପ୍ରତିଷ୍ଠାଲାଭ କରିଛି ମଧ୍ୟ । ବିଶ୍ୱକବି ରବୀନ୍ଦ୍ରନାଥ ନିଜର ଜୀବନକାଳ ମଧ୍ୟରେ ଅନେକ କାବ୍ୟ ନାଟିକା ରଚନା କରିଛନ୍ତି, ଯାହା ରବୀନ୍ଦ୍ରୋତ୍ତର କାଳରେ ମଧ୍ୟ ଅନୁଶୀଳିତ ହୋଇଛି । ବଙ୍ଗଭାଷାରେ ବୁଦ୍ଧଦେବ ବସୁ ତପସ୍ୱୀ ଓ ତରଙ୍ଗିଣୀ, ଦେବଯାନୀ ଓ ଇଲେକ୍ଟ୍ରା, କାଳସନ୍ଧ୍ୟା ପ୍ରଭୃତି ବହୁ କାବ୍ୟ ନାଟିକା ରଚନା କରି ପ୍ରଶଂସିତ ହୋଇଛନ୍ତି । 'ତପସ୍ୱୀ ଓ ତରଙ୍ଗିଣୀ' ନିମନ୍ତେ ତାଙ୍କୁ କେନ୍ଦ୍ର ସାହିତ୍ୟ-ଏକାଡେମୀର ସ୍ୱୀକୃତି ମଧ୍ୟ ମିଳିଛି । ଓଡ଼ିଆ ଭାଷାରେ ବିଧିବଦ୍ଧ କାବ୍ୟନାଟିକା ବୋଧହୁଏ, ୧୯୨୦ ମସିହା ପୂର୍ବରୁ ରଚିତ ହୋଇନାହିଁ । ସବୁଜ ଗୋଷ୍ଠୀର କବି କାଳନ୍ଦୀଚରଣ, ବୈକୁଣ୍ଠନାଥ ଏବଂ ହରିଶ୍ଚନ୍ଦ୍ର ବଡ଼ାଲ ପ୍ରମୁଖ ପ୍ରଥମେ ଏ ଦିଗରେ ପଦକ୍ଷେପ ନେଇଥିଲେ । କୁନ୍ତଳାକୁମାରୀ, ମାୟାଧର ମାନସିଂ, ରାଧାମୋହନ ଗଡ଼ନାୟକ ପ୍ରଭୃତି କବିବୃନ୍ଦ ମଧ୍ୟ କାବ୍ୟନାଟକମାନ ଲେଖିଛନ୍ତି । ପଚାଶ ଦଶକ ପରେ ଏହି ଧରଣର ସାହିତ୍ୟ ସୃଷ୍ଟି ଯଥେଷ୍ଟ ହ୍ରାସ ପାଇଥିଲେ ମଧ୍ୟ ତଥାପି କିଛି କିଛି କାମ ଏ ଦିଗରେ ହୋଇଛି । ନିକଟରେ ଶ୍ରୀ ପୀତାମ୍ବର ପ୍ରଧାନ 'କଳିଙ୍ଗ କବି' ନାମଧେୟ ଖଣ୍ଡିଏ ଚମତ୍କାର କାବ୍ୟ ନାଟିକା ରଚନା କରିଛନ୍ତି । ଏ ଦୃଷ୍ଟିରୁ ବିଚାର କରି ଦେଖିଲେ, ଜଣାଯିବ ଯେ, କୁଞ୍ଜବିହାରୀ ଏକ ନିର୍ଦ୍ଦିଷ୍ଟ ପରମ୍ପରା ମଧ୍ୟରୁ ହିଁ କାବ୍ୟ-ନାଟ୍ୟକାର ରୂପେ ଆତ୍ମ ପ୍ରକାଶ କରିଥିଲେ ।

ଦୀର୍ଘ ଅର୍ଦ୍ଧଶତକରୁ ଊର୍ଦ୍ଧ୍ୱକାଳ କବି କୁଞ୍ଜବିହାରୀ ଛାୟାଚ୍ଛନ୍ନ ଏକ ବିପୁଳ ବଟ ବୃକ୍ଷଭଳି ଓଡ଼ିଶାର କାବ୍ୟ ରାଜ୍ୟକୁ ମାନବିକତାର ଉଦାର ବାହୁ ବନ୍ଧନରେ ଆଲିଙ୍ଗନାବଦ୍ଧ କରି ରଖିଛନ୍ତି । ପ୍ରକୃତି ପ୍ରେମର ପାରମ୍ପରିକ ପଥ ଦେଇ, ଜାତୀୟତାର ହାତ ଧରି ସେ ବିଶ୍ୱ-ମାନବିକତାର ତୋରଣ ଦ୍ୱାରରେ ଦଣ୍ଡାୟମାନ । ତରୁଣ ବୟସରେ ୧୯୩୧-୩୨ ମସିହା ବେଳକୁ କୁଞ୍ଜ ବିହାରୀଙ୍କର କବିସତ୍ତା ସେଇ ଯେ, ଗମ୍ଭୀର

ସ୍ୱସ୍ଫୂର୍ତ୍ତି ମଧ୍ୟରୁ ଆତ୍ମପ୍ରକାଶ କରିଥିଲା, ଦୀର୍ଘକାଳର ବ୍ୟବଧାନରେ ତାହା ଆଉ ବିଶ୍ରାମ ନେଉଡ଼ିବାକୁ ଚିନ୍ତା ସୁଦ୍ଧା କରିନାହିଁ । ମୁକ୍ତଛନ୍ଦ, ସାବଲୀଳ, ସୁବୋଧ ଏବଂ ଛନ୍ଦୋବଦ୍ଧ କାବ୍ୟ କବିତା ରଚନା ହେଉଛି, କବିଙ୍କର ସମ୍ପୂର୍ଣ୍ଣ ନିଜସ୍ୱ । ପରୀକ୍ଷା ନିରୀକ୍ଷାର ବିପୁଳ ଆୟୋଜନ ମଧ୍ୟରେ ସୁଦ୍ଧା ସେ ନିଜର ରଚନା-ରୀତି ବଦଳାଇ ନାହାନ୍ତି । ଆବେଗ ସର୍ବସ୍ୱତା ମଧ୍ୟରେ କାବ୍ୟର ଯେଉଁ ଦୀପ୍ତି, ତାହାହିଁ ହୋଇଛି ତାଙ୍କର ଧ୍ୟେୟ । 'ହୃଦୟକୁ ମନ ଅପେକ୍ଷା ବଡ଼ କରି ଦେଖି' 'ନିଷ୍କତାର ଲୋଭରେ ଭାବାବେଗକୁ କେବେ କ୍ଷୁଣ୍ଣ ନ କରି', 'ନିକଟତମ-ଅନୁଭୂତି'କୁ ଗୁରୁତ୍ୱ ଦେଇ, 'ସମ୍ବେଦନାକୁ ମନନ ଅପେକ୍ଷା ଉଚ୍ଚତର ସ୍ଥାନ' ଦେଇ, 'ଅନୁଭୂତିର ପ୍ରତିବିମ୍ବନ ଜନିତ ଦରଦୀ ଭାବାବେଗକୁ' ସମ୍ବଳ କରି କବିପୁରୁଷ ନିଜପଥରେ ଆଗେଇ ଚାଲିଛି । ନିଜର ଶୈଳୀ ସମ୍ପର୍କରେ ସୂଚନା ଦେଇ କବି ଲେଖିଛନ୍ତି, " × × ଜାଣି ଶୁଣି କବିତାକୁ ପୂରାପୂରି ଦୁର୍ବୋଧ କରିବା ବିପକ୍ଷରେ ମୁଁ । ଏକେତ ମୁଁ ଦାର୍ଶନିକ ନୁହେଁ; ଦ୍ୱିତୀୟତଃ, ଏ ଯୁଗର ପାଠକ କବିତା ପ୍ରତି ବୀତଶ୍ରଦ୍ଧ । ଅଯଥା କବିତାକୁ ବୈଜ୍ଞାନିକ ଚିନ୍ତାକଳ୍ପରେ ଭାରାକ୍ରାନ୍ତ କରି ଜନତାକୁ ଠେଲି ପେଲି ଦୂରେଇ ଦେବା ମୋର ଇଚ୍ଛା ନୁହେଁ । ଜଗତର ଯେତେ ଅଗ୍ରଗତି ହେଲେ ମଧ୍ୟ କବିତା କବିତା ହୋଇ ରହିବ । ଭାବାବେଶ, ସୌନ୍ଦର୍ଯ୍ୟ ପ୍ରୀତି ଓ ସୂକ୍ଷ୍ମ କଳାତ୍ମକତା ଦୃଷ୍ଟିରୁ ତା'ର ମାନ ସ୍ଥିର ହେଉଥିବ । ଯେତେ ଗଦ୍ୟରୂପୀ ହେଲେ ବି ସେ ଛନ୍ଦହୀନ ହେବନାହିଁ ।" ( କୃଷ୍ଣବିହାରୀ ସଞ୍ଚୟନ ଭାଗ ୧ ପୃ: ଖ-ଗ ) କୋଡ଼ିଏ ବର୍ଷ ପୂର୍ବର ଏ ମନ୍ତବ୍ୟ ଯେ, କେତେ ଅଭ୍ରାନ୍ତ, ସମ୍ପ୍ରତି କାବ୍ୟ କବିତାର ଜଗତ୍ ସହିତ ସମ୍ପୃକ୍ତ ପ୍ରତ୍ୟେକ ବ୍ୟକ୍ତି ଏହା ଜାଣନ୍ତି । ବକ୍ତବ୍ୟର ଋଜୁତା ଏବଂ ରଚନାର ଛନ୍ଦୋବଦ୍ଧତାକୁ ମୁଖ୍ୟ କରି, ତେଣୁ କବି ପୁରୁଷର ଉତ୍କ୍ରମଣ, ଆଧୁନିକ ଓଡ଼ିଆ କାବ୍ୟ ଧାରା ପାଇଁ ଯେ ଏକାନ୍ତ ଶୁଭଙ୍କର ହୋଇଥିଲା, ତାହା ନ କହିଲେ ମଧ୍ୟ ଚଳିବ ।

ଏ ଦେଶର ଲୁପ୍ତପ୍ରାୟ ଅଜସ୍ର ଲୋକଗୀତ ଏବଂ ଲୋକକଥାର ସଂଗ୍ରାହକ ହିସାବରେ କୃଷ୍ଣବିହାରୀ ବେଶ୍ ପ୍ରସିଦ୍ଧି ଲାଭ କରିଛନ୍ତି । ଏ ସବୁଥିରେ ନାଟକୀୟତାର ଯେଉଁ ବିପୁଳଉପାଦାନ ରହିଥାଏ, ହୁଏତ ତାହାହିଁ କବିପୁରୁଷର ନାଟ୍ୟସତ୍ତାକୁ ଉଦ୍-ଜୀବିତ କରିଛି । ତେଣୁ ତାଙ୍କର ଅଧିକାଂଶ କାବ୍ୟ କବିତା, ଏହାର ସ୍ପର୍ଶରୁ ବଂଚିତ ହୋଇନାହିଁ ।

ଯେ କୌଣସି କାବ୍ୟର ମୂଳ ଉଦ୍ଦେଶ୍ୟ ତାହାର ସମାଜ ସଂସ୍ଥା ପ୍ରତି ସମ୍ବେଦନଶୀଳତା ମଧ୍ୟରେ ହିଁ ନିହିତ ଥାଏ । ( the function of poetry is social ) ନାଟକର ଉଦ୍ଦେଶ୍ୟ ମଧ୍ୟ ଏହାଠାରୁ ଖୁବ୍ ସ୍ୱତନ୍ତ୍ର ନୁହେଁ । ସାମାଜିକତା ପ୍ରତି କବି କୃଷ୍ଣବିହାରୀଙ୍କର ଯେ ଏକ ସତର୍କ ଦୃଷ୍ଟି ସର୍ବଦା ରହିଛି, ଏହା କୌଣସି ପ୍ରମାଣର ଅପେକ୍ଷା ରଖେ ନାହିଁ । "ପ୍ରତ୍ୟେକ ନାଟ୍ୟକାରଙ୍କର ମୂଳ ଉଦ୍ଦେଶ୍ୟ ଦ୍ୱିବିଧ।

ପ୍ରଥମତଃ, ଆରମ୍ଭ ସଙ୍ଗେ ସଙ୍ଗେ ଦର୍ଶକର ମନୋଯୋଗ ଆକର୍ଷଣ କରିବା, ଏବଂ ଦ୍ୱିତୀୟତଃ, ଯବନିକା ପତନ ପର୍ଯ୍ୟନ୍ତ ସେଇ ଔତ୍ସୁକ୍ୟ ବଜାୟ ରଖିବା କିମ୍ବା କ୍ରମାଗତ ଭାବରେ ବଢାଇ ଯିବା" (ପିୟାର୍ସ ବେକାର-ଡ୍ରାମାଟିକ୍‌ଟେକ୍‌ନିକ୍-୧୯୧୯) ଯେଉଁ ନାଟକ ଯେତେ ଆବେଗ ଉଦ୍ଦୀପିତ କରିପାରେ, ସେ ନାଟକ ସେତେ ଦର୍ଶକଙ୍କୁ ଆକୃଷ୍ଟ କରିପାରେ । ତେଣୁ ନାଟକକୁ ଆବେଗ ପରମ୍ପରାର ଏକ ସୁବିନ୍ୟସ୍ତ ବୃନ୍ତ ବୋଲି କୁହାଯାଇ ପାରେ । ଆବେଗ ତରଙ୍ଗ ସୃଷ୍ଟି କରିବା ଏବଂ ନିରବଚ୍ଛିନ୍ନଭାବରେ ସେଇ ତରଙ୍ଗକୁ ଅକ୍ଷୁଣ୍ଣ ରଖିବା ହେଉଛି, ନାଟ୍ୟକାରଙ୍କର ମୁଖ୍ୟ କର୍ତ୍ତବ୍ୟ । ତେବେ ଆବେଗ ସୃଷ୍ଟି ନିମନ୍ତେ ଖାପଛଡା ଭାବରେ ଏଣୁତେଣୁ କିଛି ଗୋଟାଏ ବ୍ୟବହାର କରିବା, ଏକାନ୍ତ ଅନୁଚିତ । ସାର୍ଥକ ଘଟଣା, ଏବଂ ଚରିତ୍ର ସାହାଯ୍ୟରେ ହିଁ ଏହି କାର୍ଯ୍ୟଟିକୁ ତୁଲାଇବାକୁ ପଡ଼ିବ । ଅନର୍ଥକ ଘଟଣା ଏବଂ ଅବାନ୍ତର ଆଚରଣ ଦର୍ଶକ ମନରେ ଆବେଗ ପରିବର୍ତ୍ତେ ବିରାଗ ସୃଷ୍ଟି କରିପାରେ ।

ନାଟକର ଏହି ଧର୍ମ ସହିତ କାବ୍ୟଧର୍ମର ବିଶେଷ କୌଣସି ବିରୋଧ ନାହିଁ । ନାଟକ ଭଳି କାବ୍ୟରେ ମଧ୍ୟ ଆବେଗ ସଂସ୍ପର୍ଶତାକୁ ଭିତ୍ତି କରି, ଏହାର ସଫଳତା ଗଢିଉଠେ । ନାଟକରେ ଘଟଣା, ଚରିତ୍ରର ଦୃଶ୍ୟମାନତା ମାଧ୍ୟମରେ ଏହି କାର୍ଯ୍ୟଟି ହେଉଥିଲାବେଳେ କାବ୍ୟରେ ଏଥିପାଇଁ ମୁଖ୍ୟତଃ ବର୍ଣ୍ଣନା ଉପରେ ହିଁ ନିର୍ଭର କରାଯାଇଥାଏ ।

ଆବେଗକୁ ପୁଞ୍ଜି କରି କବି କୁନ୍ତଳ କୁମାରୀ ନିଜର ଲେଖକ ଜୀବନ ଆରମ୍ଭ କରିଥିଲେ । 'ଦରଦୀ ଭାବାବେଗ' 'ସମ୍ବେଦନା' ଯେ, ତାଙ୍କ ଲେଖାରେ ସର୍ବଦା ରହିଥାଏ, ଏ ବିଷୟ ସେ ନିଜେ ସ୍ପଷ୍ଟ କରି ଦେଇଛନ୍ତି । ହୃଦୟାବେଗ ସୃଷ୍ଟି ସହିତ ଔତ୍ସୁକ୍ୟ ବୃଦ୍ଧିର କୌଶଳକୁ ନେଇ ତାଙ୍କର ନାଟ୍ୟସତ୍ତା ପ୍ରସ୍ତୁତ ହୋଇଛି । ଏହି ବିଷୟ ତାଙ୍କର 'ଗୃହିଣୀକା' ଏବଂ 'ପାଷାଣ ଚରଣେ ରକ୍ତ' କାବ୍ୟ ନାଟିକା ଦୁଇଟିରୁ ବେଶ୍ ସ୍ପଷ୍ଟ ହୋଇଥାଏ ।

ଉଭୟ କାବ୍ୟ ନାଟିକାର ସୃଷ୍ଟି କବିଙ୍କର ତ୍ରୁଣ ଜୀବନରେ । ଏଥିରେ ତେଣୁ ଅନୁଭୂତି ଅପେକ୍ଷା ତରୁଣ ପ୍ରାଣର ସ୍ୱପ୍ନବିଳାସ ଏବଂ ଆବେଗ ପ୍ରବଣତାର ମାତ୍ରା ଅଧିକ ହେବା ସ୍ୱାଭାବିକ । ଇତିହାସର ଉଦ୍‌ବୋଧନରେ ଜାତୀୟତାର ପୁନରୁଜ୍ଜୀବନ ହିଁ ଏ ଉଭୟର ଲକ୍ଷ୍ୟ । 'ପାଷାଣ ଚରଣେ ରକ୍ତ' (୧୯୪୫) ଏବଂ 'ଗୃହିଣୀକା' (୧୯୪୮) ସ୍ୱାଧୀନତାର ଅବ୍ୟବହିତ ପୂର୍ବର ରଚନା । ସେ ସମୟରେ ସମଗ୍ର ଦେଶରେ ଜାତୀୟତାର ଯେଉଁ ଉଦ୍ଦାମ ସ୍ରୋତ ପ୍ରବାହିତ ହେଉଥିଲା, ମନେହୁଏ, ଏ ଉଭୟ କାବ୍ୟନାଟିକା ସେଇ ସ୍ରୋତର ଏକ ବିଚ୍ଛିନ୍ନ ଜଳ ବୁଦ୍‌ବୁଦ ଧାରା । ଗୋଟିକରେ ଚଣ୍ଡାଶୋକଙ୍କୁ ଧର୍ମା-

ଶ୍ଳୋକରେ ପରିଣତ କରାଇବାରେ ଉତ୍କଳର ଭୂମିକା, ଉତ୍କଳୀୟମାନଙ୍କର ଦେଶପ୍ରାଣତା ଏବଂ ଆଧ୍ୟାତ୍ମିକତା ପ୍ରଭୃତି ବର୍ଣ୍ଣିତ ହୋଇଥିବା ସ୍ଥଳେ ଅନ୍ୟଟିରେ ଧର୍ମପଦ ଏବଂ ବିଶୁମହାରଣାର ଜନ୍ମଦାତ୍ରୀ ନର୍ତ୍ତକୀର ଜାତ ପ୍ରେମର କାହାଣୀ ସ୍ଥାନ ପାଇଛି । ଉଭୟ କାହାଣୀ ଦ୍ୱନ୍ଦ୍ୱଗର୍ଭିତ । ବିଶାଳ ଉତ୍କଳକୁ ଶ୍ମଶାନରେ ପରିଣତ କରିସାରିବା ପରେ ଚଣ୍ଡାଶୋକଙ୍କର ମାନସିକ ଦ୍ୱନ୍ଦ୍ୱ ଏବଂ ବାରଶହ ଶିଳ୍ପୀର ମାନ ସମ୍ମାନ, ଜୀବନପ୍ରାଣର ଦାୟିତ୍ୱ ବହନ କରିଥିବା ବିଶୁମହାରଣାର ମାନସ-ମନ୍ଥନ—ହୁଏତ ଏହାହିଁ ତରୁଣ କବିଙ୍କୁ ପ୍ରଭାବିତ କରିଛି ସମଧିକ ।

ନାଟକରେ 'ଗଠ' ସୃଷ୍ଟି କରିବାରେ ଦ୍ୱନ୍ଦ୍ୱର ଭୂମିକା ଅପରିହାର୍ଯ୍ୟ । କୁହାଯାଇଛି, "the essence of drama is crisis" ଅବସ୍ଥା ବା ପରିସ୍ଥିତି ଯେତେ ସଙ୍କଟପୂର୍ଣ୍ଣ, ବିଷୟବସ୍ତୁ ଯେତେ ସଙ୍କଟାତ୍ମକ, ତାହା ସେତେ ନାଟକୀୟ । ନାଟକକୁ ତେଣୁ ଦୈବତନ୍ତ୍ର କିମ୍ବା ଅବସ୍ଥାଚକ୍ର ମଧ୍ୟସ୍ଥ ସଙ୍କଟର ଦ୍ରୁତ ବର୍ଦ୍ଧମାନ ରୂପ ବୋଲି କୁହାଯାଇଥାଏ । ପ୍ରତ୍ୟେକ ନାଟକର ବୃତ୍ତରେ ସଙ୍କଟର ରୂପ ବ୍ୟକ୍ତ ହୁଏ ଏବଂ ପ୍ରତ୍ୟେକ ପରିସ୍ଥିତିରେ ଏବଂ ଦୃଶ୍ୟରେ ମୂଳସଙ୍କଟର ରୂପ ଅଂଶତଃ ବ୍ୟକ୍ତ ହୋଇଥାଏ ।

କୁଞ୍ଜ ବିହାରୀ ଅବଶ୍ୟ ନାଟ୍ୟକାର ନୁହନ୍ତି ତେବେ ଜଣେ ରସଜ୍ଞ ବୋଦ୍ଧା । ଯେଉଁ ଶକ୍ତି ସାହାଯ୍ୟରେ ନାଟକୀୟତାର ସମସ୍ତ ଲକ୍ଷଣ ସମ୍ପର୍କରେ ଅବହିତ ହୋଇ-ପାରେ, କହିବା ବାହୁଲ୍ୟ ଯେ, ସେ ସମସ୍ତ ଶକ୍ତି ତାଙ୍କର ରହିଛି । ଅନ୍ତତଃ ପୂର୍ବୋଲ୍ଲିଖିତ ଦୁଇଖଣ୍ଡି କାବ୍ୟ ନାଟିକାକୁ ପରୀକ୍ଷା କଲେ ଏହାର ସତ୍ୟତା ପରୀକ୍ଷିତ ହୋଇଥାଏ । 'ଘୂର୍ଣ୍ଣିକା'ରେ ଏକ ଦ୍ୱନ୍ଦ୍ୱଗର୍ଭକ ସଙ୍କଟପୂର୍ଣ୍ଣ କାହାଣୀ ହିଁ ସ୍ଥାନ ପାଇଛି । ପ୍ରାଣମନ ଏକ କରି ଶିଳାରେ କଳାର ଉତ୍କର୍ଷ ଫୁଟାଉଥିବା ବାରଶତ ଶିଳ୍ପୀଙ୍କର ଅସଫଳତା ଏବଂ ନିଷ୍ଠୁର ରାଜାଦେଶ ମଧ୍ୟରେ ସଙ୍କଟର ସ୍ପଷ୍ଟ ଇଙ୍ଗିତ ରହିଛି । ବିଶୁ ମହାରଣା ଏବଂ କିଶୋର ଧର୍ମପଦ ପିତା ପୁତ୍ରଙ୍କର ମିଳନରେ ଆଶାର ସୂଚନା ଦିଆଯାଇ ଉତ୍ସୁକତା ବୃଦ୍ଧି କରାଯାଇଛି । ଧର୍ମପଦର ଦଧିନଉତି ସ୍ଥାପନରେ ଏହି ଉତ୍ସୁକତା ପୁଣି ତୀବ୍ରରୂପରେ ଆତ୍ମପ୍ରକାଶ କରିଛି । ଏହାପରେ କାହାଣୀର ନୂତନ ମୋଡ ବାରଶହ ଶିଳ୍ପୀର ସାମୂହିକ ଈର୍ଷା—ସଙ୍କଟର ନୂତନ ରୂପର ସୂଚନା ଦେଇଛି । ଚନ୍ଦ୍ରଭାଗାର କଲ୍ଲୋଳିତ ପ୍ରବାହ ମଧ୍ୟରେ ଧର୍ମପଦର ଆତ୍ମଗୋପନରେ ଏହି ସଙ୍କଟ ପୁଣି କୋଟୀ ସ୍ପର୍ଶ କରିଛି । ଧର୍ମପଦର ଆତ୍ମହତ୍ୟା ମିଳନର ଉଲ୍ଲସିତ କଲ୍ଲୋଳ ମଧ୍ୟରେ ବିଚ୍ଛେଦର କାରୁଣ୍ୟ ମର୍ମଭେଦୀ ସାହାନାଇ । ପ୍ରତିକୂଳତା ବିରୁଦ୍ଧରେ, ନିୟତିର ପ୍ରତିପକ୍ଷ ଭାବରେ ତାହାର ଏକକ ସଂଗ୍ରାମ ସମସ୍ତ ନାଟକଟିକୁ ଟ୍ରାଜିକ୍ ସ୍ପର୍ଶ ଦେଇଛି । ବିଶୁ ମହାରଣା ଏବଂ ଧର୍ମପଦ ଏ ଦୁଇ ଚରିତ୍ରର କାୟିକ, ମାନସିକ ଏବଂ ଆତ୍ମିକ ପ୍ରତିକ୍ରିୟା ଦେଖିବା ନିମନ୍ତେ ଶେଷ ପର୍ଯ୍ୟନ୍ତ ପାଠକର ବ୍ୟଗ୍ରତା ଏଥିରେ ବଜାୟ ରଖାଯାଇ ପାରିଛି । କାଳଯବନର ମହା-ମନ୍ତ୍ରରେ ଦୀକ୍ଷିତ ସାଗରିକା ଏହି କାବ୍ୟ ନାଟିକାର ଅନ୍ୟ ଏକ କରୁଣ ଚରିତ୍ର, କାଳର

ତୋରଣ ଦ୍ୱାରରେ ଅଙ୍କିତ ଏକ ଭାବଗମ୍ଭୀର ଆଲମ୍ପନ, ଯାହା ଆଖିରେ ପଡ଼ିଲେ, ହୃଦୟ ଆଲୋଡ଼ିତ ହୋଇଉଠେ—ନୟନ ଅଶ୍ରୁ ଗଦ୍‌ଗଦ ହୋଇପଡ଼େ । ମୋଟାମୋଟି ଭାବରେ କେହି କୁହାଯାଇପାରେ ଯେ, ଆଲୋଚ୍ୟ ନାଟ୍ୟ-କାବ୍ୟଟି ତତ୍ତ୍ୱଦୃଷ୍ଟିରୁ ଦ୍ୱନ୍ଦ୍ୱ ସଙ୍କଟମୟ ହୋଇ ପାରିଥିବାରୁ ଅତ୍ୟନ୍ତ ପ୍ରଭାବଶାଳୀ ହୋଇପାରିଛି ।

ଗୋଟିଏ ଦୃଶ୍ୟ ମାଧ୍ୟମରେ କବି ଧର୍ମପଦ ଏବଂ ବିଶୁ ମହାରଣାଙ୍କୁ ପରସ୍ପରର ଖୁବ୍ ନିକଟକୁ ନେଇ ଆସିଛନ୍ତି । କିଶୋର ଧର୍ମପଦ ଜନ୍ମକାଳରୁ ଯେଉଁ ପିତାଙ୍କୁ କେବେ ଦେଖି ନ ଥିଲା, ତାଙ୍କ ଉପରେ ନିର୍ଭର କରିବାକୁ ଆରମ୍ଭ କରିଛି, ତାଙ୍କୁ ବୁଝିବାକୁ ଉଦ୍ୟମ କରିଛି । ରକ୍ତର ଆକର୍ଷଣହିଁ ଏଠାରେ ପାରମ୍ପରିକ ସମ୍ପର୍କର ରାକ୍ଷୀ-ବନ୍ଧନ ଘଟାଇଛି । ବାରଶହ ବଢ଼େଇଙ୍କ ନିମନ୍ତେ ବିଶୁ ମହାରଣାର ଦାୟିତ୍ୱ, ଏଣେ ଏକମାତ୍ର କୁଟି ପୁତ୍ର ନିମନ୍ତେ ତାହାର ଆକର୍ଷଣ—ଉଭୟ ସଙ୍କଟର ଗୁରୁଭାରରେ ବିଶୁ ମହାରଣା ଯେତେବେଳେ ଦଳିତ, ପିଷ୍ଟ, ସେତେବେଳେ ଧର୍ମପଦ ହିଁ ସେଥିରୁ ତାକୁ ନିଷ୍କୃତି ଦେଇ ପାରିଛି । ଏକମାତ୍ର ପୁତ୍ରର ଜୀବନ ନିକଟରେ ବାରଶହ ଶିଳ୍ପୀର ଭବିଷ୍ୟତ ଯେ କେତେ ବଡ଼, ଧର୍ମପଦ ତାହା ଭଲ ଭାବରେ ବୁଝିପାରିଛି । ଏହାପରେ ଚନ୍ଦ୍ରଭାଗାର କଳାହୃଦର ପାଣିତଳେ ଆଶ୍ରୟର ସନ୍ଧାନ କରିବା ବ୍ୟତୀତ ତା' ନିକଟରେ ଅନ୍ୟପଥ ଖୋଲା ରହିନାହିଁ । ମୃତ୍ୟୁକୁ ସେ ମହାନ୍ କରିଦେଇଛି, ଶାଶ୍ୱତ ରୂପ ଦେଇପାରିଛି । ମରଣ ତା ପାଇଁ ହୋଇଛି ଶ୍ୟାମ ତୁଲ୍ୟ ଆରାଧ୍ୟ, ବନ୍ଦନୀୟ । ପିତାପୁତ୍ରର ମାନସିକ ସଂଘର୍ଷର ଗୁରୁ ଆଲେଖ୍ୟ କବି କୁଞ୍ଜବିହାରୀ ଏଥିରେ ଫୁଟାଇବା ନିମନ୍ତେ ସକ୍ଷମ ହୋଇଛନ୍ତି । କବି ଗତନାୟକ ଏ ସମ୍ପର୍କରେ ଯଥାର୍ଥରେ ଲେଖିଛନ୍ତି, "ପୁତ୍ର ମାଗୁଛି ମୃତ୍ୟୁ, ଶିଳ୍ପୀ କୁଳର ବନ୍ଦୀମାନ, ମାନସମ୍ଭ୍ରମର ଉଦ୍ଧାର ପାଇଁ । ପିତୃ ହୃଦୟ ଆନ୍ଦୋଳିତ ହୋଇଛି ଯଶ ଓ ସ୍ନେହ ମଧ୍ୟରେ, ମାତ୍ର ଶେଷରେ ଲୋଟିପଡ଼ୁଛି ସ୍ନେହରେ । × × କୁଞ୍ଜ ବିହାରୀଙ୍କ ତୂଳୀରେ ଏ ଚିତ୍ର ସୁସ୍ପଷ୍ଟ ଓ ଶୋଭନୀୟ ହୋଇଅଛି ।" (କୁଞ୍ଜବିହାରୀ ସଞ୍ଚୟନ-୩ୟ ଭାଗ—ପୃ: ୪ ସୂଚନା) । ଉଭୟ ଚରିତ୍ର ସଙ୍କଟ ମଧ୍ୟ ଦେଇ ପୂର୍ଣ୍ଣତା ଆଡ଼କୁ ଅଗ୍ରସର ହୋଇଛନ୍ତି । ଭୋଗ ଉପରେ ତ୍ୟାଗର ପ୍ରତିଷ୍ଠା କରାଇ, ବ୍ୟକ୍ତି କେନ୍ଦ୍ରିକତା ବଦଳରେ ସମଷ୍ଟି-ସ୍ୱାର୍ଥର ମର୍ଯ୍ୟାଦା ବଜାୟ ରଖିବାକୁ ନିଜକୁ ନିୟତି ହାତରେ ଟେକି ଦେଇଛନ୍ତି । ଧର୍ମପଦ ମରଣ ବରଣ କରି ଅମର ହୋଇଯାଇଛି । ବିଶୁ ମହାରଣା ଜୀବିତ ରହି ଅସହାୟତାର ଗ୍ଲାନିରେ ତିଳ ତିଳ ହୋଇ ଦଗ୍ଧ ହୋଇଛି । ଯନ୍ତ୍ରଣାର ଶରଶଯ୍ୟାରେ ଶୋଇ ଉତ୍ତରାୟଣକୁ ବ୍ୟାକୁଳ ଭାବରେ ଅପେକ୍ଷା କରିଛି । ଆତ୍ମ-ତ୍ୟାଗର ଏହି ତୁଳିମିଳି ଦୃଷ୍ଟାନ୍ତ, ସମଷ୍ଟି ନିମନ୍ତେ ବ୍ୟଷ୍ଟିର ଏହି ଜୀବନବଳୀ—ପ୍ରାଚ୍ୟ ଜୀବନ-ଦର୍ଶନର ଏକ ସ୍ୱାତନ୍ତ୍ର୍ୟ; ପାଶ୍ଚାତ୍ୟ ଜୀବନ-ଧାରାରେ ଯାହା ଉଦ୍ଦେଶ୍ୟହୀନ ବ୍ୟତୀତ ଅନ୍ୟ କିଛି ନୁହେଁ । ସେ ଦେଶର ହାମ୍‌ଲେଟ୍, ଅଥେଲୋ, କିଂଲିୟରର କମ୍ପା ନୋରା ପ୍ରଭୃତି ଚରିତ୍ରର ଜୀବନ ସଂଗ୍ରାମ, ମାନସିକ ସଂଘର୍ଷ

ବିହୁତରେ କୌଣସି ସମାଜ ନିମନ୍ତେ ନୁହେଁ, ବ୍ୟକ୍ତି କୈନ୍ଦ୍ରିକତା ହିଁ ତାହାର ମୂଳଭିତ୍ତି; ଭାରତୀୟ ଦର୍ଶକ/ପାଠକବୃନ୍ଦ ଆତ୍ମୋତ୍ସର୍ଗର ଏହି ଅନନ୍ୟ ପରମ୍ପରା ସହିତ ଅଭ୍ୟସ୍ତ ମଧ୍ୟ ।

ଧର୍ମପଦ କିମ୍ବା ବିଶୁ ମହାରଣାର ଜୀବନକାହାଣୀ ସାଧାରଣ କାମନା, ବାସନା ବିକ୍ଷୁବ୍ଧ ମାନବ ଜୀବନଠାରୁ ବହୁ ଊର୍ଦ୍ଧ୍ୱରେ । ସ୍ଥିତି ନିମନ୍ତେ ତୀବ୍ର ସଙ୍ଘର୍ଷ ମଧ୍ୟରୁ ହିଁ ଉଭୟ ଚରିତ୍ରର ସୃଷ୍ଟି । ବିଶୁ ମହାରଣା ଜାଣେ ଜଣେ ବିଶ୍ରୁତ କଳାକାର ରୂପରେ କୋଣାର୍କର ପୂର୍ଣ୍ଣାଙ୍ଗ ରୂପ ନିର୍ମାଣ ଉପରେ ହିଁ ତା'ର ସ୍ଥିତି ନିର୍ଭରଶୀଳ । ଏଥି ନିମନ୍ତେ ତେଣୁ ସେ ଶେଷ ପର୍ଯ୍ୟନ୍ତ ଉଦ୍ୟମ ଚଳାଇ ଯାଉଛି । ପିତୃ ପରିଚୟ ପ୍ରାପ୍ତି ଏବଂ ଯୋଗ୍ୟ ପିତାଙ୍କ ଉପଯୁକ୍ତ ପୁତ୍ରର ପରିଚୟ ପ୍ରଦାନ—ଏ ଉଭୟ ଉପରେ ପୁଣି ଧର୍ମପଦର ସ୍ଥିତି । ସେଥିପାଇଁ ତାହାର ସଂଗ୍ରାମ ସମସ୍ତ ପ୍ରତିକୂଳତା ବିରୁଦ୍ଧରେ ତାହାର ସ୍ୱର ଉତ୍ତୋଳନ । ଦ୍ୱନ୍ଦ୍ୱ, ସଙ୍କଟ କିମ୍ବା ସଙ୍ଘର୍ଷକୁ ଯଦି ନାଟକର ସଫଳତାରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଏ, ତେବେ ସ୍ୱୀକାର କରିବାକୁ ହେବ, 'ଗୃହିଣୀକା'ର କାହାଣୀ ଭାଗରେ କବି ଏହାର ଚୂଡ଼ାନ୍ତ ରୂପଟିକୁ ହିଁ ପ୍ରଦର୍ଶନ କରିଛନ୍ତି ।

"ପାଷାଣ ଚରଣ୍ଡେ ରକ୍ତ" କାବ୍ୟ ନାଟିକାଟି ମଧ୍ୟ ଏ ଦୃଷ୍ଟିରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଜାତୀୟତାର ମହାସଙ୍କଟର ସୂଚନା ଏ କାବ୍ୟର ପ୍ରଥମରୁ ହିଁ ଦିଆଯାଇଛି, 'ଶ୍ରୀମୁକ' ଚରିତ୍ର ସାହାଯ୍ୟରେ । 'ଚଣ୍ଡାଶୋକ'ଙ୍କର ଉତ୍କଳ ଆକ୍ରମଣ, ଉତ୍କଳ ସେନା-ବାହିନୀର ବୀରତ୍ୱ ପ୍ରତି ତାଙ୍କର ଅସହନଶୀଳତା ମଧ୍ୟରୁ ସ୍ପଷ୍ଟ ବୋଲି ସୂଚାଇ ସଂଶୟ ବାଦୀ 'ଚନ୍ଦ୍ର'କୁ ସମ୍ବୋଧନ କରି ଶ୍ରୀମୁକ କହିଛି—

"ପ୍ରାଣଠାରୁ ମୂଲ୍ୟବାନ ଜାତୀୟ ସମ୍ମାନ
ଜାତିର ଗୌରବ-ଧନ ପ୍ରିୟ ସ୍ୱାଧୀନତା,
ଭାଙ୍ଗି ଚି କଳିଙ୍ଗ, କେବେ ନୁଆଇଁବ ମଥା ।"

( କୁଞ୍ଜବିହାରୀ ସଞ୍ଚୟନ ୨ୟ ଭାଗ ପୃ: ୧୦୩ )

କଳିଙ୍ଗର ସମ୍ମାନ ରକ୍ଷା ନିମନ୍ତେ ପ୍ରବଳ ପରାକ୍ରାନ୍ତ ଭାରତ ସମ୍ରାଟଙ୍କ ବିରୁଦ୍ଧରେ ଉତ୍କଳୀୟମାନଙ୍କର ଐକ୍ୟବଦ୍ଧ ସଂଗ୍ରାମ ମଧ୍ୟରେ ଫୁଟି ଉଠିଛି ଦୁର୍ଦ୍ଦୈବ ବିରୁଦ୍ଧରେ, ପ୍ରତିକୂଳତାର ପ୍ରତ୍ୟକ୍ଷ ହିସାବରେ କିଶୋର ଚନ୍ଦ୍ରର ବୀରତ୍ୱପୂର୍ଣ୍ଣ ଗମ୍ଭୀର ଅନନ୍ୟ ରୂପ । ଦ୍ୱିତୀୟ ସର୍ଗରେ ଶତ୍ରୁମାନଙ୍କ ଦ୍ୱାରା ଆହ୍ୱାନ ହେବା ଦ୍ୱାରା ଏହି ଚରିତ୍ର 'ସଙ୍କଟ'ର ସ୍ପଷ୍ଟ ଇଙ୍ଗିତ ଦେଇଛି ଏବଂ ଶେଷ,ତୃତୀୟ ସର୍ଗରେ ଚଣ୍ଡାଶୋକରୁ ଧର୍ମଶୋକରେ ପରିବର୍ତ୍ତିତ କରି ତାହାର ମୃତ୍ୟୁ ବରଣରେ ସମସ୍ତ ସଙ୍ଘର୍ଷର ଅବସାନ ଘଟିଛି । ଅଶୋକ ଘୋଷଣା କରିଛନ୍ତି—

ନିବାରିବି ଜୀବ ହିଂସା, ଏ ଶୈଳେ ଗୋଳିବି,
ଆଗେ ସ୍ତୁତି-ସତ୍ୟବାଣୀ ଜନଶିକ୍ଷା ପାଇଁ

ଅହିଂସାର ମନ୍ତ୍ରେ ଦେବ ଜଗତ ଜଗାଇ,
ସ୍ୱାର୍ଥ ତେଜି ପରମାର୍ଥ ଭଜିବେ ସକଳେ
ଭୋଗ ନେବ ତ୍ୟାଗ ଦୀକ୍ଷା, ପ୍ରେମ ମନ୍ତ୍ରବଳେ
ଦୁର୍ଦ୍ଧର୍ଷ ଯେ ହେବେ ବଶ ମୈତ୍ରୀ ଶିକ୍ଷା ପାଇ
ମଣିଷ ମଣିଷ ଶତ୍ରୁ ହେବେ ଆଉ ନାହିଁ ।”

( କୁଞ୍ଜବିହାରୀ ସଞ୍ଚୟନ ୨ୟ ଭାଗ ପୃ: ୧୪୫-୪୭)

ପରବର୍ତ୍ତିତ ଅଶୋକ ଆତୁର କହିଛନ୍ତି—

“ଚଣ୍ଡ ନର ଚରନ୍ତନ ! ମୃତ୍ୟୁ କି ତାଙ୍କର,
ସମ୍ଭବଇ ? ମରଣ ଯେ ମହାତ୍ମା କଙ୍କର ।”

ଚଣ୍ଡ ଚରିତ୍ରର ସଂଘର୍ଷମୁଖୀନତା, ଜାତୀୟତାର ଯଜ୍ଞବେଦୀରେ ତାହାର ସର୍ତ୍ତିହୀନ ଆତ୍ମ-ବିସର୍ଜନ, ପାଠକଚିତ୍ତରେ ଏକ ସ୍ଥାୟୀ ଦାଗ କାଟି ଦିଏ । ଏହି ନାଟ୍ୟ କାବ୍ୟର ‘ଅଶୋକ’ ଚରିତ୍ର ମଧ୍ୟ ସଙ୍କଟ ମୁକ୍ତ ନୁହେଁ । ନରହତ୍ୟାକୁ କ୍ଷତ୍ରିୟର ଧର୍ମ ବୋଲି ବିଚାର କରି ବାସନାର ବଶବର୍ତ୍ତୀ ହୋଇ, କଳିଙ୍ଗ ବିରୁଦ୍ଧରେ ତାଙ୍କର ଯୁଦ୍ଧଘୋଷଣା ଏବଂ ଲକ୍ଷ ଲକ୍ଷ କଳିଙ୍ଗ ସୈନ୍ୟର ଆତ୍ମବଳରେ ତାଙ୍କର ମାନସିକ ପରିବର୍ତ୍ତନ ଏ ଉଭୟ ଘଟଣା ସଂଘର୍ଷର ଭିତ୍ତି ଉପରେ ହିଁ ଦଣ୍ଡାୟମାନ । ଯୁଦ୍ଧ ଘୋଷଣାରେ ସଙ୍କଟର ତୀବ୍ର ରୂପ ଏବଂ ପରିବର୍ତ୍ତନରେ ଏହାର ଅବସାନ, କବି କୁଞ୍ଜବିହାରୀ ଚମତ୍କାର କଳାତ୍ମକ ଭାବରେ ଦେଖାଇ ପାରିଛନ୍ତି । ସମଗ୍ର ତୃତୀୟ ସର୍ଗ ବ୍ୟାପୀ ଅଶୋକଙ୍କ ମାନସିକ-ସଂଘର୍ଷର ଏକ ରୁଚିପୂର୍ଣ୍ଣ ଚିତ୍ର ପ୍ରଦର୍ଶିତ ହୋଇଛି । ଅଶୋକ ଜାଣିଥିଲେ, ସଂଗ୍ରାମ ହେଉଛି କ୍ଷତ୍ରିୟର ଧର୍ମ । ମାତ୍ର କଳିଙ୍ଗ ଯୁଦ୍ଧର ବିଭୀଷିକା, ଔଦ୍ଧତ୍ୟପୂର୍ଣ୍ଣ ଏକ ଜାତିର ରକ୍ତନଦୀ ସନ୍ତରଣର ଐକ୍ୟବଦ୍ଧ ପ୍ରଚେଷ୍ଟାର ଭୟାବହ ରୂପଟି ମାତ୍ର ତାଙ୍କର ଅଜ୍ଞାତ ଥିଲି । ଏ ସମ୍ପର୍କରେ ହେନ୍‌ରି ଆର୍ଥାସ୍ ଜୋନ୍‌ସ ( ଇଣ୍ଟ୍ରୋଡକ୍‌ସନ୍ ଟୁ ବ୍ରୁନେଟିୟର୍ସ ଲ ଅଫ୍ ଡ୍ରାମା—୧୯୧୪) ଗ୍ରନ୍ଥରେ ଲେଖିଛନ୍ତି “Drama arises when any person or persons in a play are consciously or unconsciously up aganist some antagonistic person or circumstances or fortune”. ଏଥିରେ ବ୍ୟବହାର କରାଯାଇଥିବା ‘ଜ୍ଞାତସାରରେ’ କିମ୍ବା ‘ଅଜ୍ଞାତସାରରେ’ ଶବ୍ଦ ଦୁଇଟି ଲକ୍ଷ୍ୟଣୀୟ । ନିୟତି କିମ୍ବା ଦୈବ ବିରୁଦ୍ଧରେ ପ୍ରତ୍ୟେକ ନାଟ୍ୟ ଚରିତ୍ର ଯେ, ସଚେତନଭାବେ ସଂଗ୍ରାମ କରିଥିବେ, ଏହାର କୌଣସି ସ୍ଥିରତା ନାହିଁ ବୋଲି ‘ଜୋନ୍‌ସ’ ସୂଚନା ଦେଇଛନ୍ତି । ଆଗାମେମ୍‌ନନ୍, ଇଡ଼ିପାସ୍ ଏବଂ ଗୋଷ୍ଟ ପ୍ରଭୃତି ନାଟକରେ ନାଟ୍ୟ ଚରିତ୍ର ନିଜ ଅଜ୍ଞାତ ସାରରେ ହିଁ ଦୁର୍ଦୈବର କବଳ ଗ୍ରସ୍ତ ହୋଇଛନ୍ତି । ଆଲୋଚ୍ୟ କାବ୍ୟ-ନାଟ୍ୟରେ ଅଶୋକ ଚରିତ୍ରକୁ ଆମେ ଏହି ଶ୍ରେଣୀ ଭୁକ୍ତ କରିପାରୁଁ । ନିଜ ଅଜ୍ଞାତ ସାରରେ ଅଶୋକ ଏକ ଭୀଷଣ

ପରିଣତି ଆଡ଼କୁ ଟାଣି ହୋଇଯାଇଛନ୍ତି । ନିଜର କୃତକର୍ମର ଫଳାଫଳ ଦର୍ଶନ କରି, ପ୍ରତିକାର ଲୋଡ଼ିବାକୁ ଆରମ୍ଭ କଲାବେଳକୁ ବହୁତ ବିଳମ୍ବ ହୋଇ ଯାଇଛି । ଅନୁତାପର ଗ୍ଲାନିରେ ନିଜର ସମସ୍ତ ପାପ ଧୋଇବାକୁ ପ୍ରୟାସ କରି ଏଥର ସେ ନୂତନ କରି ବଞ୍ଚିବା ନିମନ୍ତେ ଉଦ୍ୟମ କରିଛନ୍ତି । ଆମେ ପୂର୍ବରୁ କହିଛୁଁ ଯେ, ଯେଉଁ ଚରିତ୍ରରେ ପରିବର୍ତ୍ତନର ସମ୍ଭାବନା ଥାଏ, ଗତିଶୀଳ ହୋଇଥିବାରୁ ନାଟକ ପାଇଁ ଏଭଳି ଚରିତ୍ର ଅତ୍ୟନ୍ତ ଉପାଦେୟ ହୋଇଥାଏ । ଏହି କାରଣରୁ ହିଁ ଅଶୋକ ଚରିତ୍ରର କାୟିକ, ମାନସିକ ଏବଂ ଆତ୍ମିକ ପ୍ରତିକ୍ରିୟା ନିମନ୍ତେ ଶେଷପର୍ଯ୍ୟନ୍ତ ପାଠକ ଚିତ୍ତର ବ୍ୟାକୁଳତା ଥାଏ । ଅଶୋକ୍ ଏ ପର୍ଯ୍ୟନ୍ତ ନିରଙ୍କୁଶ ଭାବରେ ଯୁଦ୍ଧ ଜୟ କରି ନିଜର ଅପ୍ରତିହତ କ୍ଷମତା ସମ୍ପର୍କରେ ଦୃଢ଼ ଆସ୍ଥାଶୀଳ ହୋଇ ଉଠିଥିଲେ । କଳିଙ୍ଗର ଐକ୍ୟବଦ୍ଧ ପ୍ରଚେଷ୍ଟା ଯେତେବେଳେ ତାଙ୍କର ଏହି ବିଶ୍ୱାସର ଭିତ୍ତିକୁ ଦୋହଲାଇ ଦେଲା, ସେତେବେଳେ ସେ ବିମୂଢ଼ ହୋଇ ପଡ଼ିବା ସ୍ୱାଭାବିକ । ତାଙ୍କର ଏହି ଦ୍ୱିଧାଗ୍ରସ୍ତ ଭାବମୂର୍ତ୍ତିର ସୁନ୍ଦର ବିଶ୍ଳେଷଣ ଆଲୋଚ୍ୟ କାବ୍ୟ ନାଟକରେ ଦେଖାଇ ଦିଆଯାଇଛି । ବାଧାଗ୍ରସ୍ତର ପ୍ରତିକ୍ରିୟା ଏବଂ ପରିଣାମ ଶେଷ ପର୍ଯ୍ୟନ୍ତ ଔତ୍ସୁକ୍ୟ ବଜାୟ ରଖିବାରେ ସମର୍ଥ ହୋଇଥିବାରୁ 'ଅଶୋକ' ଚରିତ୍ର ଏକାନ୍ତ ଭାବରେ ନାଟକୀୟ ହୋଇପାରିଛି ମଧ୍ୟ । ଅନୁତାପାନଳ ଦଗ୍ଧ ଅଶୋକ ଶେଷରେ ନିଜର ଇଚ୍ଛା ପ୍ରକାଶ କରି କହିଛନ୍ତି—

"ରାଜାର ସକଳେ ଭୃତ୍ୟ, ରାଜା ସକଳର
ସେବକ, ସେବଇ ରାଜ୍ୟ ଯେହ୍ନେ ଜଳଧର
ଅତ୍ୟାଗୃଷ୍ଟି ଟାଣେ କରି, ଜାଣଇ ତାଡ଼ନା
ତାଡ଼ନା ଶାସନ ନୁହେଁ, ପ୍ରଜାର ମୂର୍ଚ୍ଛନା-
ଫିଟାଇ କାଢେ ଯେ ଉକ୍ତି-ଅନ୍ୟ ନାମ ଭୟ
ଶତଗୁଣେ ସେ ଶାସନୁ ଶ୍ମଶାନେ ଆଶ୍ରୟ ଶ୍ରେୟସ୍କର ପରଜାର—"

ଏହି ବର୍ଣ୍ଣନାକୁ ଆମେ ଆଲୋଚ୍ୟ କାବ୍ୟ ନାଟ୍ୟର ଶୀର୍ଷବିନ୍ଦୁ ବୋଲି ଗ୍ରହଣ କରି ନେଇ ପାରୁଁ । କାରଣ ଏହାପରେ ସ୍ୱାଭାବିକ ଭାବରେ ଘଟଣା ପ୍ରବାହରେ ବ୍ୟାପ୍ତି ବଦଳରେ ସଂକ୍ଷିପ୍ତତା ଆସିଯାଇଛି । ମୋଟ ଉପରେ ତେଣୁ କୁହାଯାଇପାରେ ଯେ, ଏହି ଗ୍ରନ୍ଥର ଉଭୟ 'ଚନ୍ଦ' ଏବଂ 'ଅଶୋକ' ଚରିତ୍ର ସନ୍ଦର୍ଭ ଗର୍ଭରୁ ସ୍ପଷ୍ଟ, ପରିବ୍ୟାପ୍ତ ତଥା ପରିଣତିମୁଖୀ ହୋଇଛନ୍ତି । ଉଭୟ ଚରିତ୍ରରେ ତେଣୁ ନାଟକୀୟତାର ପ୍ରଚୁର ଉପାଦାନ ରହିବା ସ୍ୱାଭାବିକ । ଅଶୋକ ଇତିହାସର ଏକ ଦ୍ୱନ୍ଦ୍ୱମୁଖର ଚରିତ୍ର । ମାତ୍ର 'ଚନ୍ଦ' ସମ୍ପୂର୍ଣ୍ଣ ଭାବରେ କବିକଳ୍ପନା ପ୍ରସୂତ ଏବଂ ଅଶୋକ ଚରିତ୍ର ପରିସ୍ଫୁଟନ ନିମନ୍ତେ ସୃଷ୍ଟ । ଏହି ଚରିତ୍ର ତାହାର ଦାୟିତ୍ୱ ଯେ ସମ୍ପୂର୍ଣ୍ଣଭାବରେ ତୁଲାଇଛି, ଏହା କହିବା ବାହୁଲ୍ୟ ମାତ୍ର ହେବ ।

ଚରିତ୍ରପ୍ରଧାନ କିମ୍ବା ସଂଳାପପ୍ରଧାନ ନାଟକ ଅପେକ୍ଷା ଘଟଣାପ୍ରଧାନ ନାଟକ ହିଁ ସହଜରେ ଦର୍ଶକମାନଙ୍କୁ ପ୍ରଭାବିତ କରିପାରେ । ଯେଉଁ ନାଟକ ଯେତେ ଆବେଗ

ଉଦ୍ଦୀପିତ କରିପାରେ, ସେ ନାଟକ ସେତେ ଦର୍ଶକ ଚିତ୍ତ ଆକର୍ଷଣ କରିପାରେ । ଆବେଗ ତରଙ୍ଗ ସୃଷ୍ଟି କରି ଶେଷପର୍ଯ୍ୟନ୍ତ ଦର୍ଶକ ଚିତ୍ତରେ ତାହାର ନିରବଚ୍ଛିନ୍ନତା ବଜାୟ ରଖିବା ହେଉଛି ନାଟ୍ୟକାରଙ୍କ ପ୍ରଧାନ ଦାୟିତ୍ୱ, ଏ ବିଷୟ ପୂର୍ବରୁ ସୂଚିତ ହୋଇଛି । ଔତ୍ସୁକ୍ୟ, ଦ୍ୱନ୍ଦ୍ୱ, ସଙ୍କଟ, ଅପ୍ରତ୍ୟାଶିତ ଓ ଅଦ୍‌ଭୁତ ଘଟଣାର ସମାବେଶ ଏବଂ ଆବେଗ ସୃଷ୍ଟି କ୍ଷମତା, ଏ ସବୁ ଦୃଶ୍ୟ ଏବଂ ଶ୍ରବ୍ୟ ଉଭୟବିଧ କାବ୍ୟରେ ଦେଖା-ଯାଇଥାଏ । ଆଲୋଚ୍ୟ ଉଭୟ କାବ୍ୟ ନାଟକରେ ଚରିତ୍ର କିମ୍ବା ସଂଳାପ ଅପେକ୍ଷା ଘଟଣା ହିଁ ଗୁରୁତ୍ୱଲାଭ କରିଛି । "ଗୃହଲକ୍ଷ୍ମୀ" କାବ୍ୟନାଟ୍ୟରେ ଜ୍ୟୋତ୍ସ୍ନାପ୍ଲାବିତ ସମୁଦ୍ର ବେଳାରେ ଅପ୍‌ସରୀମାନଙ୍କର ଲୀଳାବିହାର, ସେମାନଙ୍କ ସମ୍ପର୍କରେ କଳାର ଭୂମି ଉତ୍କଳର ସମୃଦ୍ଧ ଅତୀତର ଉନ୍ମୋଚନ, ବିଶୁ ମହାରଣା ଏବଂ ଧର୍ମପଦର ମିଳନ ତଥା ପୁଣି ବିଚ୍ଛେଦ, ଧରମାର ଆତ୍ମତ୍ୟାଗ ଶିଳ୍ପୀକୁଳର ମର୍ଯ୍ୟାଦା ରକ୍ଷା ନିମନ୍ତେ ଶେଷରେ ଦ୍ୱୀପି ସାଗରକାର ଗୃହଲକ୍ଷ୍ମୀ ରୂପରେ ଆତ୍ମପ୍ରକାଶ ଘଟଣା ପରମ୍ପରାର ସୁସଜ୍ଜିତ ତୋରଣ ଦ୍ୱାରରେ ଗୋଟିଏ ଗୋଟିଏ ସୁସଜ୍ଜିତ ଦୀପସ୍ତମ୍ଭ ସ୍ୱରୂପ ଦଣ୍ଡାୟମାନ । ଦୀପାନ୍ୱିତ ଏହି ମାର୍ଗରେ ଯାଉଁ ଯାଉଁ ପଥିକ ଦେଖିବାକୁ ପାଏ, ଅଜସ୍ର ବର୍ଣ୍ଣାଢ୍ୟ ଚରିତ୍ର, ଶୁଣିବାକୁ ପାଏ ସେମାନଙ୍କର କଳକୋଳାହଳ ମାତ୍ର ସେ ସମସ୍ତ ଘଟଣା ବର୍ଣ୍ଣନାର ଅଂଶ ରୂପରେ ହିଁ ପାଠକ ସମ୍ମୁଖରେ ଆବିର୍ଭୂତ ହୁଅନ୍ତି । ଠିକ୍ ସେହିଭଳି "ପାଷାଣ ଚରଣେ ରକ୍ତ" ନାଟ୍ୟକାବ୍ୟରେ ଦେଶର ସ୍ୱାଧୀନତା ରକ୍ଷା ନିମନ୍ତେ କଳାକାର, ଶିଳ୍ପୀଗୋଷ୍ଠୀର ଆତ୍ମତ୍ୟାଗ, ଚିତ୍ର ଭଳି ଏକ ଅପାପବିଦ୍ଧ କିଶୋରର ଜୀବନ ବଳି, ଚଣ୍ଡାଶୋକଙ୍କର ଧର୍ମାଶୋକ ରୂପରେ ପରିବର୍ତ୍ତନ କାଳର ବିସ୍ତୃତ ପୃଷ୍ଠଭୂମିରେ କେତେ ଯେ ଅପ୍ରତ୍ୟାଶିତ ଏବଂ ଅଦ୍‌ଭୁତ ଘଟଣାର ପରିକଳ୍ପନା କରାଯାଇଛି, ତାହାର ଇୟତ୍ତା ନାହିଁ । ଏଠାରେ ମଧ୍ୟ ପୂର୍ବଭଳି ଚରିତ୍ର ଏବଂ ସଂଳାପ-ଘଟଣା ବର୍ଣ୍ଣନର ବାହକ ମାତ୍ର ହୋଇଛନ୍ତି । ବାକି ରହିଲା 'ଆବେଗ'ର ପ୍ରଶ୍ନ । ଆବେଗ କେବଳ ନାଟକର ନୁହେଁ, କାବ୍ୟର ମଧ୍ୟ ପ୍ରାଣ କେନ୍ଦ୍ର । କୁଞ୍ଜବିହାରୀ ନାଟ୍ୟକାର ହୋଇ ନ ପାରନ୍ତି, କିନ୍ତୁ ସେ ଓଡ଼ିଆ ସାହିତ୍ୟର ଜଣେ ବହୁ ଚର୍ଚ୍ଚିତ କବି । କବି ସୁଲଭ ଆବେଗ ତାଙ୍କର ପ୍ରତ୍ୟେକ କାବ୍ୟ କବିତାରେ ପ୍ରଚୁର ପରିମାଣରେ ରହିଥାଏ । ଆଲୋଚ୍ୟ ଉଭୟ କାବ୍ୟରେ ତାହାର ପୁନରାବୃତ୍ତି ମାତ୍ର ଘଟିଛି । 'ଗୃହଲକ୍ଷ୍ମୀ' କାବ୍ୟ ନାଟ୍ୟରେ ଧରମା ସହିତ ବିଶୁର ପ୍ରଥମ ସାକ୍ଷାତ୍କାର ଏବଂ ତହିଁରେ ବିଶୁର ପ୍ରତିକ୍ରିୟା—

> ମାଙ୍ଗଳିକ ଆଶିଷର ଅଜସ୍ର ଶ୍ରାବଣ
> ଅସରି ବରଷେ ହୃଦ, ନୟନୁ ଝରଇ
> ଅସରନ୍ତି ଅଶ୍ରୁଜଳ, ଦେହ ତରଳଇ
> ଯେମନ୍ତ କି ମେରୁଦଣ୍ଡ ଅସ୍ଥି ଗ୍ରନ୍ଥି ଶତ
> ଗଲା ଫିଟି ! ପାଣି ଫାଟିଯାଏ ମୋ ରକତ ।"

(କୁଞ୍ଜବିହାରୀ ସଞ୍ଚୟନ ୩ୟ ପୃ: ୧୭୩)

କିମ୍ବା ଅନ୍ତିମ ବିଦାୟ ମୁହୂର୍ତ୍ତରେ ଜନନୀଙ୍କ ଉଦ୍ଦେଶ୍ୟରେ 'ଧରମା'ର ଦସ୍ତିନ—

× × ଶୁଷ୍କ ମୁଖେ ଅହ୍ନା ସ୍ନେହ ଚାଲ ଚାଲ ନମସ୍କାର ! ମାତା ମୋତେ କର ଆଲିଙ୍ଗନ, କ୍ଷୀଣ ଶକ୍ତି କ୍ଷୀଣ ମନେ, ଭରମା ବଦନ, ସସ୍ନେହ ଚୁମ୍ବନେ ଢାଳ ଚରଣ ଧୂଳିକା ଶିରେ ମୋର—

( ଉଚ୍ଛ୍ୱାସ—ପୃ: ୧୦୯-୧୦ )

ପ୍ରକୃତ ସମ୍ବେଦନଶୀଳ ପାଠକ ପ୍ରାଣକୁ ଆବେଗ ଉଚ୍ଛ୍ୱାସରେ ପୂର୍ଣ୍ଣ କରିଦେବାରେ ଯେ କିଭଳି ସଫଳ, ଏହାକୁ ବୁଝାଇ କହିବାର କୌଣସି ଆବଶ୍ୟକ ନାହିଁ । "ପାଷାଣ ଚରଣେ ରକ୍ତ" କାବ୍ୟ-ନାଟ୍ୟରେ ମଧ୍ୟ ଏହିଭଳି ଆବେଗୋଚ୍ଛଳ ବର୍ଣ୍ଣନାର ଆଦୌ ଅଭାବ ନାହିଁ । ନାଟକ ଯେ ହେତୁ ଦୃଶ୍ୟ ଅର୍ଥାତ୍ ଅଭିନେୟ, ନିର୍ଦ୍ଦିଷ୍ଟ କାଳଦ୍ୱାରା ଅଭିନୟ ସୀମାବଦ୍ଧ, ତେଣୁ ନାଟକର ଗଠନ ସଂହତ ହେବାକୁ ବାଧ୍ୟ । ସୁତରାଂ ଆବେଗ ହେଉ, ଅପ୍ରତ୍ୟାଶିତ, ଅଦ୍ଭୁତ ଘଟଣା ହେଉ କିମ୍ବା ସଙ୍କଟଜନକ ପରିସ୍ଥିତି ହେଉ, ସେ ସବୁକୁ ସୁଗୁଡ଼ଳସ୍ତରେ ବିନ୍ୟାସ କରିବାକୁ ହେବ । ଏହା ପରେ ଦ୍ୱନ୍ଦ୍ୱକୁ 'ଦୃଶ୍ୟ' କରିବାକୁ ଉଦ୍ୟମ କରିବାର ଅର୍ଥ ହେଉଛି, ଦୁଇ ଶକ୍ତିର ଅର୍ଥାତ୍ ବ୍ୟକ୍ତି, ବାସନାର ପାରସ୍ପରିକ ବୁଝାମଣାର ପ୍ରତ୍ୟକ୍ଷ ରୂପ ଉପସ୍ଥାପନ କରିବା । କାବ୍ୟ ଉପନ୍ୟାସାଦିରେ ଦ୍ୱନ୍ଦ୍ୱ ବର୍ଣ୍ଣିତ, ନାଟକରେ ତାହା ପ୍ରତ୍ୟକ୍ଷତଃ ଉପସ୍ଥାପିତ । ଉଭୟ କାବ୍ୟ-ନାଟିକାରେ କ୍ଷୁଦ୍ର ବିହାର ଘଟଣା ପରମ୍ପରାର ବିପୁଳ ବିସ୍ତାର ଦେଖାଇଥିବାର ଇତଃପୂର୍ବରୁ ସୂଚିତ ହୋଇଛି । 'ଗୁରଣିକା'ର ହିଲ୍ଲୋଳିକା, କୁସୁମିକା, ଉଲ୍ଲାସିକା, ମଣିଚକା ତଥା ଗୁରଣିକା ଏହି ପାଞ୍ଚଟି ସର୍ଗ ମଧ୍ୟରେ ସମସ୍ତ ଘଟଣାକୁ ସଂହତ କରି ରଖାଯାଇଛି । ଏହି ପାଞ୍ଚଟି ସର୍ଗକୁ ନାଟକର ପାଞ୍ଚଟି ଅଙ୍କବୋଲି ମଧ୍ୟ ଗ୍ରହଣ କରାଯାଇ ପାରେ । ମନେ ରଖିବାକୁ ହେବ ଯେ, ଯେଉଁ ସମୟରେ 'ଗୁରଣିକା' ରଚିତ ହୋଇଥିଲା, ତାହା ହେଉଛି ଓଡ଼ିଆ ନାଟକରେ 'ପଂଗ୍ଦ୍ୱଙ୍କ'ର ଯୁଗ । 'ଅଙ୍କ' କମନ୍ତେ ସ୍ୱତନ୍ତ୍ର ନାମକରଣ ସେକାଳରେ ଅଶ୍ୱିନୀକୁମାରଙ୍କ ଭଳି ପ୍ରସିଦ୍ଧ ନାଟ୍ୟକାର ମଧ୍ୟ କରିଛନ୍ତି । 'ଗୁରଣିକା'ର ସର୍ଗଗୁଡ଼ିକୁ ତେଣୁ ଅଂକାଖ୍ୟରେ ଚିହ୍ନିତ କରିବାରେ ବିଶେଷ କିଛି ଅସୁବିଧା ନାହିଁ । କାବ୍ୟକୁ ନାଟକ ରୂପରେ ଗ୍ରହଣ କରିନେଲେ, କ୍ରମଶଃ ଏଥିରେ ପଞ୍ଚସନ୍ଧି ପ୍ରଭୃତି ନାଟ୍ୟାଙ୍ଗ ଗୁଡ଼ିକର ଅନୁସନ୍ଧାନ ମଧ୍ୟ କରାଯାଇ ପାରିବ । 'ହିଲ୍ଲୋଳିକା' ନାମଧେୟ ଏହାର ପ୍ରଥମ ଅଙ୍କରେ ସାଗର-ବେଳାରେ ଅପ୍ସରାମାନଙ୍କର ଜ୍ୟୋସ୍ନା ବିଳାସ, ସାଗରିକାର ଆଗମନ ଏବଂ ଉତ୍କଳର ଅତୀତ ସମୃଦ୍ଧିର ବର୍ଣ୍ଣନା ମାଧ୍ୟମରେ କୋଣାର୍କ ମନ୍ଦିର ନିର୍ମାଣ ପ୍ରସଙ୍ଗର ଅବତାରଣାରେ ସଙ୍କଟର ସୂଚନା, ଦ୍ୱିତୀୟ 'କୁସୁମିକା' ପର୍ବରେ ବାରଶହ ଶିଳ୍ପୀ କୁଳର ଅସହାୟତା ବର୍ଣ୍ଣନରେ, ଏହି ସଙ୍କଟର ସ୍ପଷ୍ଟରୂପ । ତୃତୀୟ 'ଉଲ୍ଲାସିକା' ପର୍ବରେ ପିତାପୁତ୍ରର ପାରସ୍ପରିକ ସମ୍ପର୍କ ମଧ୍ୟରେ ସଙ୍ଘର୍ଷର ତୀବ୍ରତା, ଚତୁର୍ଥ 'ମଣିଚକା' ଅଂଶରେ ଶିଳ୍ପୀକୁଳର ସ୍ୱାଭିମାନ୍ୟତା ପ୍ରଦର୍ଶନରେ ଏହାର ଚରମରୂପ ତଥା ଶେଷ 'ଗୁରଣିକା' ଅଂଶରେ ଧରମାର ଆତ୍ମହତ୍ୟା ପରେ ସଙ୍ଘର୍ଷର ଅବସାନ

ଦେଖାଇ ଦିଆଯାଇଛି । ବିଶ୍ୱମାନବିକତା ଏବଂ ସ୍ୱାର୍ଥପରତା ମଧ୍ୟରେ ଏଠାରେ ଦ୍ୱନ୍ଦ୍ୱ ପରିକଳ୍ପିତ ହୋଇଛି, ଯାହାର ମୂଳରେ ରହିଛି, କବିଙ୍କର ସମାଜ ସଚେତନତା । କାହାଣୀର ଆରମ୍ଭ ହୋଇଛି, ଶିଳ୍ପୀକୁଳର ଅସଫଳତା ଜନିତ ମନୋବେଦନାର ଚିତ୍ରଣରୁ, ଧର୍ମପଦର ଉଦ୍‌ବୋଧନରେ ଏହା ବିସ୍ତୃତ ହୋଇ, ଶେଷରେ ତାହାର ଆତ୍ମବଳିରେ ଶୀର୍ଷବିନ୍ଦୁରେ ପହଞ୍ଚିଯାଇଛି । ଏହାପରେ ସ୍ୱାଭାବିକ ଭାବରେ 'ଉପସଂହାର' ଦେଖାଇ ଦିଆଯାଇଛି । ମୋଟାମୋଟି ଭାବରେ ତେଣୁ କୁହାଯାଇ ପାରେ ଯେ, ନାଟକୀୟତାର ସମସ୍ତ ଉପାଦାନ ଗୁଣ ଅଧିକେ ଆଲୋଚ୍ୟ କାବ୍ୟରେ ରହିଛି । ତେଣୁ କାବ୍ୟ ନାଟିକା ରୂପରେ ଏହାର ସଫଳତା ଅବିସମ୍ବାଦିତ ।

ତାଙ୍କର ଅନ୍ୟ ନାଟ୍ୟକାବ୍ୟ 'ପାଷାଣ ଚରଣେ ରକ୍ତ' ସମ୍ପର୍କରେ ମଧ୍ୟ ପୂର୍ବୋକ୍ତ ମନ୍ତବ୍ୟ ଗୁଡ଼ିକ ପ୍ରୟୋଗ କରାଯାଇ ପାରିବ । ଗୋଟିଏ ରସାତ୍ମକ କାହାଣୀ କିମ୍ବା ବୃତ୍ତ ହେଉଛି କେତେକ ଅନ୍ୱୟଯୁକ୍ତ ଘଟଣାର ପରମ୍ପରା । ଦୃଶ୍ୟ ହେଉ କିମ୍ବା ଶ୍ରାବ୍ୟ ହେଉ, ଆଦିରୁ ଅନ୍ତ ପର୍ଯ୍ୟନ୍ତ ଏହାର ଅନ୍ୱୟ ଏବଂ କ୍ରମ ରକ୍ଷା କରାଯିବା ଏକାନ୍ତ ଆବଶ୍ୟକ । ଶ୍ରବ୍ୟ କାବ୍ୟରେ ଘଟଣାର ସମସ୍ତ ସ୍ତରଗୁଡ଼ିକ ବିନ୍ୟାସ କରିବାର ଅବକାଶ ଥାଏ, ଦୃଶ୍ୟକାବ୍ୟରେ ଅବଶ୍ୟ ଏହି ଅବକାଶ ଏତେ ସ୍ପଷ୍ଟ ନୁହେଁ । ତେଣୁ ଘଟଣା ପରମ୍ପରା ମଧ୍ୟରୁ କେବଳ ସାର୍ଥକ ଘଟଣାଗୁଡ଼ିକୁ ସଂଗ୍ରହ କରିନେଇ ସେ ଗୁଡ଼ିକର ଦୃଶ୍ୟରୂପ ପ୍ରସ୍ତୁତ କରିବାକୁ ହୋଇଥାଏ । ତେବେ ନାଟକରେ ମଧ୍ୟ ସଂସୂଚିତ ଘଟଣା ସାହାଯ୍ୟରେ ବୃତ୍ତର ଏକ ପୂର୍ଣ୍ଣରୂପ ପ୍ରସ୍ତୁତ କରିବାକୁ ପଡ଼େ । ସାର୍ଥକଘଟଣାର ନିର୍ବାଚନ ଏବଂ ସେ ସବୁର ସଂହତବିନ୍ୟାସ ମଧ୍ୟ ଦେଇ ନାଟ୍ୟକାରର ପ୍ରକୃତ ଭାବମୂର୍ତ୍ତି ଦର୍ଶକ-ମାନଙ୍କ ନିକଟରେ ସ୍ପଷ୍ଟ ହୋଇଥାଏ । ଆହୁରି ମଧ୍ୟ ନିର୍ବାଚିତ ଘଟଣା ବା ପରିସ୍ଥିତିକୁ ବାସ୍ତବ ଲୋକ ବୃତ୍ତ ଭଳି ସଜୀବ ଏବଂ ଯଥାଯଥ କରିବା, ଯେଉଁ ସବୁ ଚରିତ୍ର ସାହାଯ୍ୟରେ ପରିସ୍ଥିତି କଳ୍ପିତ ହୋଇଛି, ସେଇ ସେଇ ଚରିତ୍ରର ପ୍ରତ୍ୟକ୍ଷ ଅସ୍ତିତ୍ୱ ବର୍ଣ୍ଣନା କରି ସେମାନଙ୍କର ପାରସ୍ପରିକ ଆଚରଣକୁ ଲୌକିକ ବ୍ୟବହାରର ନିକଟବର୍ତ୍ତୀ କରି ଉପସ୍ଥାପିତ କରିବା ହେଉଛି ପ୍ରକୃତ ନାଟ୍ୟକାରର ଦାୟିତ୍ୱ । ଏହି ମନ୍ତବ୍ୟର ପରିପ୍ରେକ୍ଷୀରେ ଆଲୋଚ୍ୟ କାବ୍ୟ-ନାଟ୍ୟ ଖଣ୍ଡିକୁ ବିଶ୍ଳେଷଣ କରି ଦେଖିଲେ, ତାହାର ନାଟ୍ୟଧର୍ମିତା ସହଜରେ ବାରି ହୋଇ ପଡ଼ିବ । ଛଅୋଟି ସର୍ଗ କିମ୍ବା ଅଙ୍କ ସାହାଯ୍ୟରେ ଏଠାରେ ଏକ ସୁସମ୍ବଦ୍ଧ କାହାଣୀ ବର୍ଣ୍ଣନା କରାଯାଇଛି । କାହାଣୀର ରୂପ ଏଥିରେ ଦ୍ୱିଧା ବିଭକ୍ତ । ଜାତୀୟତାର ଘୋର ଦୁର୍ଦ୍ଦିନରେ ଭୈରବର ଅଭୟ ଦୁନ୍ଦୁଭି ତୁଲ୍ୟ, ଚଣ୍ଡାଶୋକ ବିରୁଦ୍ଧରେ ଉତ୍କଳୀୟ ଶିଳ୍ପୀକୁଳର ଅଭ୍ୟୁତ୍‌ଥାନ ତଥା ଚିତ୍ରର ଆତ୍ମଦାନରେ ଚଣ୍ଡାଶୋକଙ୍କର ଧର୍ମାଶୋକ ରୂପରେ ପରିବର୍ତ୍ତନ, ଏହାହିଁ ହେଉଛି, କାହାଣୀର ଦୁଇ ଧାରା । ଅଶୋକଙ୍କ ସହିତ ଚିତ୍ରର ଯୋଗାଯୋଗ ଘଟାଇ ଦିଆଯାଇ, ଏଠାରେ ଉଭୟ ଧାରାକୁ କଳାତ୍ମକ ଭାବରେ ମିଳାଇ ଦିଆଯାଇଛି । କଳିଙ୍ଗ ବିରୁଦ୍ଧରେ ମଗଧର ଯୁଦ୍ଧ

ଘୋଷଣାରେ ସଙ୍କଟର ସୂଚନା, ଯୁଦ୍ଧର ବିଭୀଷିକା ବର୍ଣ୍ଣନାରେ ଏହାର ତୀବ୍ରରୂପ, ତଥା ଅଶୋକଙ୍କର ଆତ୍ମିକ ପରିବର୍ତ୍ତନରେ ଏହାର ଅବସାନ, ଏକାନ୍ତ ନାଟକୀୟ ହୋଇଛି । କଳିଙ୍ଗ ଯୁଦ୍ଧର ବିସ୍ତୃତ ଘଟଣା ପରମ୍ପରା ମଧ୍ୟରୁ କେବଳ ମାତ୍ର ଅଶୋକଙ୍କର ପରିବର୍ତ୍ତନ ସୂଚକ ଘଟଣାଗୁଡ଼ିକୁ ହିଁ ଇତିହାସରୁ ସଂଗ୍ରହ କରାଯାଇ ଏଠାରେ ବୃତ୍ତ କଳ୍ପନା କରାଯାଇଛି । ଇତିହାସକୁ ରସାଳ ଏବଂ ବର୍ଣ୍ଣାଢ୍ୟ କରିବା ନିମନ୍ତେ ଏଥିରେ ଚନ୍ଦ୍ର ଏବଂ ତାହାର ଦେଶପ୍ରେମବୋଧ ପ୍ରଭୃତି ସ୍ଥାନ ପାଇଛି । ଏସବୁ ହୋଇଛି ପୁଣି ମୂଳବୃତ୍ତର ଅଙ୍ଗ ସ୍ୱରୂପ । ତେଣୁ ଇତିହାସ ସହିତ କଳ୍ପନାର କଳାତ୍ମକ ସମନ୍ୱୟରେ ଏଠାରେ କବି ଯେଉଁ ବୃତ୍ତ ପ୍ରସ୍ତୁତ କରିଛନ୍ତି, ତାହା ଅତ୍ୟନ୍ତ ନାଟକୀୟ ହୋଇଛି ।

ଅନ୍ୟତ୍ର ସୂଚନା ଦିଆଯାଇଛି ଯେ, କାବ୍ୟନାଟିକା ସାଧାରଣତଃ, ପାଠ୍ୟ-ନାଟକ ହୋଇଥିବାରୁ ଏହାର ଅଭିନୟ ଯୋଗ୍ୟତା ସାଧାରଣ ମଞ୍ଚ ନାଟକ ଠାରୁ କମ୍ । ବର୍ଣ୍ଣନା ବିଳାସର ବାହୁଲ୍ୟ ହିଁ ଅଭିନୟ କ୍ଷେତ୍ରରେ ବାଧକ ସ୍ୱରୂପ ହୋଇଥାଏ । ମାତ୍ର ସାହିତ୍ୟିକମାନ ନିର୍ଦ୍ଧାରଣର ପ୍ରଶ୍ନ ଉଠିଲେ, କାବ୍ୟ-ନାଟିକା ସାଧାରଣ ମଞ୍ଚ ନାଟକର ବହୁ ଊର୍ଦ୍ଧ୍ୱକୁ ଉଠିଯାଏ । ମଞ୍ଚରେ ସାଫଲ୍ୟଲାଭ କରିବା ନିମନ୍ତେ ଯେଉଁ କେତେକ ଲଘୁ ମନୋରଞ୍ଜନାତ୍ମକ ଉପାଦାନ ମଞ୍ଚ ନାଟକ ନିମନ୍ତେ ନିତାନ୍ତ ଅପରିହାର୍ଯ୍ୟ, କାବ୍ୟ ନାଟିକାରେ ତାହା ନ ଥାଇପାରେ । ଏ ଦୃଷ୍ଟିକୋଣରୁ 'ଗୁରଣିକା' କିମ୍ବା 'ପାଷାଣ ଚରଣେ ରକ୍ତ'ର ଅଭିନୟ ଯୋଗ୍ୟତା ସମ୍ପର୍କରେ ପ୍ରଶ୍ନ ନ ଉଠାଇବା ହିଁ ଭଲ । ତେବେ କିଛି ପରିବର୍ତ୍ତନ ପରିବର୍ଦ୍ଧନ ଦ୍ୱାରା ଏହାକୁ ଅଭିନୟୋପଯୋଗୀ କରିବାରେ ବିଶେଷ କୌଣସି ବାଧା ମଧ୍ୟ ନାହିଁ । ରବୀନ୍ଦ୍ରନାଥଙ୍କର 'ବାଲ୍ମୀକି ପ୍ରତିଭା' କିମ୍ବା 'ଚଣ୍ଡାଳିକା' ଏବଂ ବୁଦ୍ଧଦେବଙ୍କର 'କାଳସନ୍ଧ୍ୟା' କିମ୍ବା 'ତପସ୍ୱୀ ଓ ତରଙ୍ଗିଣୀ' ଯଦି ମଞ୍ଚରେ ଉପସ୍ଥାପିତ ହୋଇପାରିଲା, ତେବେ କୁଞ୍ଜବିହାରୀଙ୍କ ପୂର୍ବୋକ୍ତ ଦୁଇ ନାଟ୍ୟ-କାବ୍ୟ ମଞ୍ଚରେ ଉପସ୍ଥାପିତ ହୋଇ ନ ପାରିବ କାହିଁକି ?

ଆଲୋଚନାକୁ ଏକମୁଖୀ କରିବା ନିମନ୍ତେ ପ୍ରସ୍ତୁତ ପ୍ରବନ୍ଧରେ କେବଳ ପୂର୍ବୋକ୍ତ କାବ୍ୟ-ନାଟ୍ୟ ଦୁଇଟିର ନାଟକୀୟତା ସମ୍ପର୍କରେ ହିଁ ସୂଚନା ଦିଆଯାଇଛି । କାବ୍ୟ-ରୂପରେ ଓଡ଼ିଆ ସାହିତ୍ୟରେ ଏହାର ସ୍ଥାନ, ଏଥିରେ କବିଙ୍କର ମୌଳିକତା, କାବ୍ୟ-ଶୈଳୀର ମାନ ପ୍ରଭୃତି ଆଲୋଚନାର ପରିସର ମଧ୍ୟକୁ ଆସୁ ନ ଥିବାରୁ, ସେ ସବୁକୁ ବାଦ୍ ଦିଆଯାଇଛି । ଏହି କାବ୍ୟଦ୍ୱୟରେ କୁଞ୍ଜବିହାରୀଙ୍କ ଉପରେ ପୂର୍ବଜ କବିମାନଙ୍କର ପ୍ରଭାବର ସ୍ପଷ୍ଟ ରୂପ ପରିଲକ୍ଷିତ ହୋଇଥିଲେ ହେଁ, ସେ ସବୁକୁ ମଧ୍ୟ ଆଲୋଚନାର ଅନ୍ତର୍ଭୁକ୍ତ କରାଯାଇ ନାହିଁ । କେବଳ ମାତ୍ର କାବ୍ୟ ନାଟିକା ହିସାବରେ ଏହାର ସଫଳତାର ଦିଗଗୁଡ଼ିକ ସମ୍ପର୍କରେ ସୂଚନା ମାତ୍ର ଦିଆଯାଇଛି ।

'ଗୁରଣିକା'ର ମୁଖବନ୍ଧରେ କବି ଗଠନାତ୍ମକ ରଙ୍ଗପ୍ରବେଶ ଘଟାଇ ଲେଖିଥିଲେ "ନୂତନ ଶୈଳୀରେ, ଘଟଣାର ଘନଘଟାରେ, ଦୃଶ୍ୟର ଚମତ୍କାରିତାରେ, ବର୍ଣ୍ଣନ

ଯୀବରତାରେ, ଫଳାଫଳରେ କାବ୍ୟ ନାଟକର ବହୁଳାଂଶ ଶବଳିତ; ଭାଷା ଓ ଧ୍ୱନିର ସଂଯୋଗରେ ଝଙ୍କାରିତ—ଯାହା କେବଳ ମହାକବି ଭବଭୂତିଙ୍କ ରଚନାରେ ସୁଲଭ—ଆମେ ତାଙ୍କ ସହିତ ପୂର୍ଣ୍ଣ ଏକମତ ହୋଇ ମନ୍ତବ୍ୟଟିକୁ 'ପାଷାଣ ଚରଣେ ରକ୍ତ' ନିମନ୍ତେ ମୁକ୍ତ ପ୍ରସାରିତ କରୁଛୁଁ । ବର୍ଣ୍ଣନା-ବିଳାସର ଯେଉଁ କାରୁକୌଶଳ କବି କୁଞ୍ଜବିହାରୀ ଉଭୟ କାବ୍ୟରେ ଦେଖାଇଛନ୍ତି, ନାଟକୀୟତା ସହିତ ଯୁକ୍ତ ହୋଇ, ତାହାହିଁ ପୁଣି କାବ୍ୟ-ନାଟିକାର ଯଥାର୍ଥ ଅନ୍ତଃ ସ୍ୱରକୁ ପାଠକମାନଙ୍କ ନିକଟରେ ପହଞ୍ଚାଇ ଦେଇଛି ।

ଏହାପରେ ନାଟ୍ୟକାବ୍ୟ ହିସାବରେ ଏହାର ଏକ ପ୍ରଧାନ ତ୍ରୁଟି ସମ୍ପର୍କରେ ସୂଚନା ଦେଇ ଆମେ ଏ ପ୍ରବନ୍ଧର ଉପସଂହାର କରିବୁ । ଉଭୟ ନାଟକରେ ସମାନ ଧରଣର ନୈତିକ ସମସ୍ୟା, ଦାର୍ଶନିକତାର ଶାନ୍ତ ସମାହିତ ଭାବଗମ୍ଭୀର ରସରେ ଜୀବିତ ହୋଇ ରୂପାୟିତ ହୋଇଛି ଫଳରେ ଉଭୟ କ୍ଷେତ୍ରରେ କଥାବସ୍ତୁର ଗତି ବେଗରେ ଶ୍ଳଥତା ଆସିଯାଇଛି । ଦ୍ୱିତୀୟ କଥା ହେଉଛି, ଉଭୟ ନାଟକ ମଧ୍ୟରେ ପରିକଳ୍ପନାଗତ କୌଣସି ଅଭିନବତା ମଧ୍ୟ ନାହିଁ । ଜାତୀୟତାର ଦୁର୍ଦ୍ଦିନରେ ଶିଳ୍ପୀ-ବାଳକର ଆତ୍ମତ୍ୟାଗ ଉଭୟ ନାଟକରେ ରହିଛି । ସେଠାରେ ଅଶୋକଙ୍କର ଅନ୍ତର୍ଦ୍ୱନ୍ଦ୍ୱ ଏଠାରେ ବିଶୁ ମହାରଣାର ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ ରୂପାୟିତ ହୋଇଛି । ଉଭୟ କାବ୍ୟକୁ ପାଖାପାଖି ଥୋଇ ପଢିଲେ, ଏହିଭଳି ଆହୁରି ଅନେକ ଶ୍ରେଷ୍ଠ ବିତ ସାମଞ୍ଜସ୍ୟ ମଧ୍ୟ ଆଖିରେ ପଡ଼ିବ । ତଥାପି ଓଡ଼ିଆ କାବ୍ୟ-ନାଟ୍ୟ ପରମ୍ପରାରେ ଏ ଉଭୟକୁ ମୂଲ୍ୟବାନ ସଂଯୋଗ ଭାବରେ ଥୋଇବା ଆଦୌ ଅଯୌକ୍ତିକ ହେବନାହିଁ ।

* ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ
ସାମନ୍ତଚନ୍ଦ୍ରଶେଖର କଲେଜ, ପୁରୀ



# ॥ ସାହିତ୍ୟ-ପ୍ରୀତି ଓ ସାହିତ୍ୟ-ବୃତ୍ତିର ସମନ୍ୱୟ : ଫଳଶ୍ରୁତି ॥

**ଶ୍ରୀ କୃଷ୍ଣଚରଣ ବେହେରା**

"ବୃତ୍ତିଜୀବୀ ହୋଇ ନୁହେଁ, ଭାବଜୀବୀ ହୋଇ ହେଲ ପ୍ରକୃତରେ ସୁଖୀ ।
ସଂସାରରେ ସୃଷ୍ଟିମୁଖୀ ଜୀବନରୁ ଅଧିକ ସୁନ୍ଦର କିଛି ନାହିଁ ।"

—ଶ୍ରୀମନ୍ତ (୧୯୬୦), ପୃଷ୍ଠା ୨୧

ଆପଣା ଜୀବନରେ ସାହିତ୍ୟ-ସାଧନାର ଉଦ୍ୟୋଗ ବେଳରେ ଏହାହିଁ ଥିଲା କୁଞ୍ଜବିହାରୀଙ୍କ ଆତ୍ମାର ଉଦାତ୍ତ ଉଚ୍ଚାରଣ । ଏହି ଉଚ୍ଚାରଣ ତୁଚ୍ଛା ସ୍ଲୋଗାନ୍ ବା କଥାର କଥା ହୋଇ ରହିଲା ନାହିଁ, ବାସ୍ତବ କାର୍ଯ୍ୟରେ ରୂପାୟିତ ହେଲା । ପରବର୍ତ୍ତୀ କାଳରେ କୁଞ୍ଜବିହାରୀ ସାହିତ୍ୟ-ଅଧ୍ୟାପନାକୁ ବୃତ୍ତି ବା ଜୀବିକା ରୂପେ ଗ୍ରହଣ କଲେ । ସାହିତ୍ୟ-ବୃତ୍ତି ତାଙ୍କ ସାହିତ୍ୟ-ପ୍ରୀତିର ପରିପୋଷକ ଓ ପରିପୂରକ ହୋଇ ଉଠିଲା । ଦୁଃଖର କଥା, ଏପରି ବ୍ୟାପାର ଆମ ରାଜ୍ୟରେ ବହୁବ୍ୟକ୍ତିଙ୍କ କ୍ଷେତ୍ରରେ ପରିଲକ୍ଷିତ ହୁଏନା । ସାହିତ୍ୟର ଆନୁଷ୍ଠାନିକ ଅଧ୍ୟୟନବେଳେ କେତେ ପ୍ରତିଶ୍ରୁତି—କେତେ ପ୍ରତିଜ୍ଞା ଓ ଅଙ୍ଗୀକାର ! ସାହିତ୍ୟ-ପ୍ରୀତିର ସେହି ଚମତ୍କାର ବିଜ୍ଞାପନ ନେପଥ୍ୟରେ ଯେ ବିଶ୍ୱବିଦ୍ୟାଳୟ ଡିଗ୍ରୀଲାଭର ଲାଳସା ରହିଛି, ତାହା ଅଚିରେ ଜଣା ପଡ଼ିଯାଏ । ସାହିତ୍ୟ-ବୃତ୍ତି ଗ୍ରହଣ କଲାମାତ୍ରକେ ସାହିତ୍ୟ-ପ୍ରୀତିକୁ ଜଳାଞ୍ଜଳି ଦିଆଯାଏ । ତେଣିକି ବ୍ୟକ୍ତି ବୃତ୍ତିଜୀବୀ ବା ବୃତ୍ତି-ସର୍ବସ୍ୱ । ଏହା ଯେପରି ଲକ୍ଷ୍ମୀ-ସରସ୍ୱତୀଙ୍କର ସପତ୍ନୀ-ବିବାଦ ! ଏ ବିବାଦରେ ଅଧିକାଂଶ ସ୍ଥଳରେ ସରସ୍ୱତୀ ହିଁ ହାର ମାନନ୍ତି !

ଆମ ରାଜ୍ୟଟି ଅନେକ ଦିନରୁ ଥିଲେ ହେଁ ଏଠାରେ ବିଶ୍ୱବିଦ୍ୟାଳୟଟିଏ ନ ଥିଲା । ବିଶ୍ୱବିଦ୍ୟାଳୟ ଅନେକ ଦିନ କାର୍ଯ୍ୟ କରିଥିଲେ ହେଁ ସେଠି 'ଉତ୍କଳ ଭାରତୀ' ବିଜେ କରି ନ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବାର ଚଉଠ ଶତାବ୍ଦୀ ପରେ ଯାଇ ସେଠାରେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗ ଫିଟିଲା । ଭାରତର ଜଣେ ମହାନୁଭବ ଅଣଓଡ଼ିଆ ରାଷ୍ଟ୍ରପତି ଏ ବିଷୟରେ ଖେଦୋକ୍ତି ପ୍ରକାଶ କରି ନ ଥିଲେ, ଏହା ଫିଟିବାରେ ହୁଏତ ଆହୁରି ବିଳମ୍ବ ହୋଇଥାନ୍ତା । ଗୋଟିକ ଜାଗାରେ ଏବେ ରାଜ୍ୟ ମଧ୍ୟରେ ତିନି ଗୋଟି ବିଶ୍ୱବିଦ୍ୟାଳୟ । 'ଉତ୍କଳ-ଭାରତୀ' ବର୍ତ୍ତମାନ ପ୍ରାୟ ସର୍ବତ୍ର

ବିରାଜମାନ । ବିଶ୍ୱଭାରତୀରେ ତ ପୂର୍ବରୁ ସେ ଆସନ ପକାଇଥିଲେ ! ପୁଣି କଲିକତା କାଳୀମାଟିଆଡ଼େ ଆସନ ପକାଇବାର ଉଦ୍ୟମ କରୁଛନ୍ତି । ସମ୍ପ୍ରତି ବହୁବ୍ୟକ୍ତି ତାଙ୍କ ଚରଣସେବାର ସୁଯୋଗ ପାଉଛନ୍ତି । ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ସ୍ନାତକସ୍ନାତକୀଙ୍କ ସଂଖ୍ୟା ଏବେ ବୃଦ୍ଧି ପାଇଛି—ବୃଦ୍ଧି ପାଇଛି ଗବେଷକଙ୍କ ସଂଖ୍ୟା—ଲେକଚରର୍, ରିଡର୍ ଓ ପ୍ରଫେସର୍‌ଙ୍କ ସଂଖ୍ୟା । କିନ୍ତୁ ହାୟ ହତୋସ୍ମି, ସେହି ପରିମାଣରେ ସାହିତ୍ୟ-ପ୍ରୀତି ବୃଦ୍ଧି ପାଇଥିବାର ତ ଜଣାଯାଉ ନାହିଁ ! ସାହିତ୍ୟ-ସ୍ରଷ୍ଟା ଓ ସାହିତ୍ୟ-ଶିକ୍ଷକଙ୍କ ମଧ୍ୟରେ ବର୍ତ୍ତମାନ ଜୀବିକାଭିମୁଖୀ ଓ ଜୀବିକା ସର୍ବସ୍ୱ ବ୍ୟକ୍ତିଙ୍କ ସଂଖ୍ୟା ଅତ୍ୟଧିକ । ଖୁବ୍ କମ୍ କ୍ଷେତ୍ରରେ ସାହିତ୍ୟବୃତ୍ତି ଓ ସାହିତ୍ୟ-ପ୍ରୀତି ମଧ୍ୟରେ ସାମଞ୍ଜସ୍ୟ ବିଧାନ କରାଯାଉଥିବାର ପରିଲକ୍ଷିତ ହେଉଛି । ତେଣୁ ଏ ବିଷୟସୂତ୍ରରେ କୁଞ୍ଜବିହାରୀ ଆମର ଏକ ଆଦର୍ଶ ।

ନିଜ ଭାଷାରେ କୁଞ୍ଜବିହାରୀ 'ଭବଜୀବୀ' ହୋଇ ରହିଛନ୍ତି—'ରସବିହାରୀ' ହୋଇ ଜୀବନ ଯାପନ କରିଛନ୍ତି । ତାଙ୍କ କ୍ଷେତ୍ରରେ ଲକ୍ଷ୍ମୀ-ସରସ୍ୱତୀଙ୍କ ସପତ୍ନୀ-ବିବାଦରେ ସରସ୍ୱତୀ ହିଁ ଜୟଯୁକ୍ତା ହୋଇଛନ୍ତି । ଦୀର୍ଘ ଅର୍ଦ୍ଧ ଶତାବ୍ଦୀ କାଳ ନିର୍ବାତ ନିଷ୍କମ୍ପ ଦୀପଶିଖା ପରି ସେ ସାହିତ୍ୟ-ସାଧନାରେ ନିମଗ୍ନ । ପ୍ରାୟ ସତୁରୀ ଖଣ୍ଡ ସାହିତ୍ୟଗ୍ରନ୍ଥ ଏଯାବତ ସେ ରଚନା କରିଛନ୍ତି—ସାହିତ୍ୟ-ସଙ୍ଗଠନ କାର୍ଯ୍ୟରେ ମଧ୍ୟ ସେ ନିଜର କିଛି ସମୟ ଓ ଶକ୍ତି ବ୍ୟୟ କରିଛନ୍ତି । ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ଜଣେ ସ୍ରଷ୍ଟା ତଥା ଅଧ୍ୟାପକ ଭାବରେ ତାଙ୍କର ଏହି ସାହିତ୍ୟପ୍ରୀତି ବାସ୍ତବିକ ଅସାଧାରଣ ଓ ଅତୁଳନୀୟ । ସେଥିପାଇଁ ଜାତୀୟ ଜୀବନରେ ଏହା ଆଦର୍ଶ ସ୍ଥାନୀୟ ହୋଇ ରହିବ ।

ଅଗ୍ନି ଯେ-କୌଣସି ଇନ୍ଧନରେ ଭାସ୍ୱର ହେଲା ଭଳି କୁଞ୍ଜବିହାରୀଙ୍କ ପ୍ରତିଭା ସାହିତ୍ୟର ବିଭିନ୍ନ ଶୈଳୀରେ ପ୍ରକାଶଲାଭ ପୂର୍ବକ ମହିମାନ୍ୱିତ ହୋଇ ଉଠିଛି । ଅବଶ୍ୟ, ସାଂସ୍କୃତିକ କ୍ଷେତ୍ରରେ ସର୍ଜନାତ୍ମକ ପ୍ରତିଭାର ସ୍ୱରୂପ-ପ୍ରକୃତି ଘେନି ମତ-ପାର୍ଥକ୍ୟ ରହିଛି । କେହି କେହି ପ୍ରତିଭାକୁ ପ୍ରକୃତିର ଦାନ, ବ୍ୟକ୍ତିବିଶେଷଙ୍କର ଜନ୍ମଗତ ଶକ୍ତି ବୋଲି କହିଥିଲାବେଳେ, ଆଉ କେହି କେହି ଏହାକୁ ସାଧନା-ସାପେକ୍ଷ ବୋଲି ଅଭିହିତ କରିଛନ୍ତି । ପ୍ରେରଣା, ପ୍ରତ୍ୟାଦେଶ ଦ୍ୱାରା ପ୍ରତିଭା ପ୍ରକଟିତ ହୁଏ ବୋଲି କେତେକଙ୍କର ମତ, ଅନ୍ୟ କେତେକ ମତ ଦିଅନ୍ତି ଯେ—ଏହା ଅଭ୍ୟାସ ଓ ଅଧ୍ୟବସାୟ ଦ୍ୱାରା ସାଧ୍ୟ । ଏହା ନବ ନବ ସୃଷ୍ଟିକାରିଣୀ ସୂକ୍ଷ୍ମ ବୁଦ୍ଧି ବୋଲି କେତେକଙ୍କର ଧାରଣା; କେତେକ ପୁଣି ଏହାକୁ ଅସାଧାରଣ ମାନବୀୟ ଶକ୍ତି ବୋଲି ମନେ କରି ଥାଆନ୍ତି । ଯେଉଁ ଦିଗରୁ ବିଚାର କଲେ ବି, କୁଞ୍ଜବିହାରୀ ଜଣେ ପ୍ରତିଭାଧର ସାହିତ୍ୟିକ, ଏବଂ ତାଙ୍କର ପ୍ରତିଭା ବହୁମୁଖୀ; ବିଭିନ୍ନ ଶୈଳୀରେ ତାହା ପ୍ରତିଭାତ । କାବ୍ୟକବିତା, ସାହିତ୍ୟାଲୋଚନା, ନାଟିକା, ପର୍ଯ୍ୟଟନ ସାହିତ୍ୟ, ଚରିତ ସାହିତ୍ୟ, ପ୍ରବନ୍ଧ, ରମ୍ୟରଚନା, ଶିଶୁ ସାହିତ୍ୟ, ଗଳ୍ପ, ଉପନ୍ୟାସ ଆଦି ବହୁବିଧ ଆଙ୍ଗିକରେ ସେ ଆପଣା କୃତିତ୍ୱର ପରିଚୟ ଦେଇଛନ୍ତି ।

ତାଙ୍କର ସାମଗ୍ରିକ କୃତିତ୍ୱର ଅବବୋଧ ବା ଅବଧାରଣା ପାଇଁ ଆମକୁ ତାହାର ଗୋଟିଏ ଦିଗ ବା ବିଭବ ସେନି ଆଲୋଚନା କରିବାକୁ ହେବ ।

ରମ୍ୟରଚନା ସମ୍ପ୍ରତି ଆମ ସାହିତ୍ୟର ଏକ ବଳିଷ୍ଠ ଦିଗ । ଫକୀରମୋହନ-ଗୋପାଳ ପ୍ରହରାଜଙ୍କଠାରୁ ଗୋବିନ୍ଦ ତ୍ରିପାଠୀ-ଭୁବନେଶ୍ୱର ବେହେରାଙ୍କ ପର୍ଯ୍ୟନ୍ତ ଆମର ବହୁ ଲେଖକ ବିଭିନ୍ନ ରମ୍ୟରଚନା ସୃଷ୍ଟିରେ କୃତିତ୍ୱ ଅର୍ଜନ କରିଛନ୍ତି । ପ୍ରବନ୍ଧର ସଗୋତ୍ର ଏହି ସାହିତ୍ୟିକ ଶୈଳୀଟି ସମ୍ପ୍ରତି ବେଶ୍ ଜନପ୍ରିୟତା ଅର୍ଜନ କରିଥିବାର ଦେଖାଯାଏ । ଏବେ ଭ୍ରମଣ ବୃତ୍ତାନ୍ତ, ଜୀବନୀ, ସ୍ମୃତିଚାରଣ, ଏପରିକି ଗଳ୍ପଗୁଡ଼ିକର ସ୍ଥଳ ବିଶେଷରେ ରମ୍ୟରଚନାର ଆଙ୍ଗିକ ପ୍ରକଟିତ ହୋଇ ପଡ଼ୁଛି । କୁଞ୍ଜବିହାରୀଙ୍କ ପର୍ଯ୍ୟଟନ ସାହିତ୍ୟ ଓ ଚରିତ ସାହିତ୍ୟ, ଯଥା—ଲଙ୍କାଯାତ୍ରୀ (୧୯୫୦), ମୋ ସ୍ୱପ୍ନର କାଶ୍ମୀର (୧୯୫୭), ପଥ ଓ ପଥିକ (୧୯୫୮), ଆମେରିକାରୁ ଇଉରୋପ-ଆଫ୍ରିକା (୧୯୬୮), ଦୁଇ ଦିଗନ୍ତର ଆକାଶ (୧୯୭୨), ମୋ କାହାଣୀ (୧୯୬୭), ଜୀବନୀ ଓ ଜୀବନ (୧୯୬୭), ଜୀବନାୟନ (୧୯୭୮) ପ୍ରଭୃତି ଗ୍ରନ୍ଥରେ ଅନେକତ୍ର ବିଭିନ୍ନ ସ୍ଥାନରେ ରମ୍ୟ-ରଚନାର ଧର୍ମ ସୁପରିସ୍ଫୁଟ । କିନ୍ତୁ ଏଯାବତ୍ ପ୍ରକାଶିତ ତାଙ୍କ ରମ୍ୟରଚନାର ଏକମାତ୍ର ସଂକଳନ ହେଉଛି—'ଶ୍ରୀମନ୍ତ' (୧୯୭୦) । ଏଥିରୁ କୁଞ୍ଜବିହାରୀଙ୍କ ସର୍ଜନାତ୍ମକ ପ୍ରତିଭାର ଏକ ବିଶେଷ ଦିଗ ଉଦ୍ଭାସିତ ହୋଇଥିବାର ଦେଖାଯାଏ ।

'ଶ୍ରୀମନ୍ତ' ବାରଗୋଟି ରମ୍ୟରଚନାର ଏକ ଶୋଭନୀୟ ସ୍ତବକ । ଏଥିରେ ସଂକ୍ଷିପ୍ତ ଜୀବନୀ ଓ ସ୍ମୃତିଚାରଣ ରହିଛି, ରହିଛି ଭ୍ରମଣ ବୃତ୍ତାନ୍ତ, ପ୍ରବନ୍ଧ ଓ ସାହିତ୍ୟାଲୋଚନା ମଧ୍ୟ ସ୍ଥାନଲାଭ କରିଛି । କିନ୍ତୁ ସକଳ ପ୍ରକାର ରଚନାରେ ଏକ ଲଘୁ ଲୋକପ୍ରିୟ ଶୈଳୀ ଅନୁସୃତ ହୋଇଛି; ବ୍ୟଞ୍ଜନାରେ, ରସିକତାରେ ବହୁ କଥା ବୋଲାଯାଇଛି । 'ମୋ ଜୀବନର ଗୋଟିଏ ଅଧ୍ୟାୟ'ରେ କୁଞ୍ଜବିହାରୀ ଆପଣା କିଶୋର ଓ ଯୌବନ ଅବସ୍ଥାର ସ୍ମୃତି ରୋମନ୍ଥନ କରିଛନ୍ତି । ବାଲ୍ୟକାଳରୁ କଲିକତାରେ ଏମ୍. ଏ. ପଢ଼ିବା ପର୍ଯ୍ୟନ୍ତ ବିଭିନ୍ନ ବଡ଼ୁ ବଡ଼ୁ ଘଟଣା ଏଥିରେ ବର୍ଣ୍ଣିତ ହୋଇଛି । ସ୍ୱୟଂ ଲେଖକଙ୍କ ଭାଷାରେ—ଆପଣା କବିତାର ମରମୀ ପାଠକଙ୍କ ଲାଗି ଲେଖା ଏହା ଏକ ସଂଗ୍ରାମୀ ଜୀବନର ସାମାନ୍ୟ ସୂଚନା ମାତ୍ର । 'ଗାଆଁର ବହୁ ପିଲାରେ ଜଣେ' ଥିବା ସେହି 'ଧୂଳି ଧୂସରିଆ କଳାହାଣ୍ଡି' ପ୍ରତିକୂଳ ପରିସ୍ଥିତି ସହ ସଂଗ୍ରାମ କରି କିପରି ଅଗ୍ରଗତି କରିଛି, ତାହାର ଏକ ମାର୍ମିକ ଚିତ୍ର ଏଥିରେ ପରିସ୍ଫୁଟ । ହାଇସ୍କୁଲରେ ଅଷ୍ଟମ ଶ୍ରେଣୀରେ ପଢ଼ିଲାବେଳେ (୧୯୩୧) ସେ କାବ୍ୟକବିତା ରଚନା ଆରମ୍ଭ କରନ୍ତି । ରାଧାନାଥ-କାବ୍ୟ ଓ ଲୋକ-କାହାଣୀ ପ୍ରଭାବରେ ରଚିତ ତାଙ୍କର କାବ୍ୟ 'ଲାବଣ୍ୟ-କୁସୁମ' (ଏବେ ବି ଅପ୍ରକାଶିତ) ଏହି ରମ୍ୟରଚନାରେ ଅଂଶତଃ ଉଦ୍ଧୃତ ହୋଇଛି । କବିଜୀବନ ପ୍ରାରମ୍ଭରେ ସେ ଏହାଦ୍ୱାରା କିପରି ହାତପାକଲ କରୁଥିଲେ, ତାହା ସହଜରେ ଜଣାପଡ଼ିଯାଏ । କଟକ ରେଭେନ୍ସା କଲେଜରେ ତାଙ୍କର ଛାତ୍ରଜୀବନ ଥିଲା ପ୍ରାୟ ଘଟଣାବହୁଳ—

"ବାସ୍ତବିକ, ମାନସିକ ଭାବରେ ମୁଁ ଥିଲି ଗୋଟିଏ ପଙ୍ଗୁ । ଆଧୁନିକ ସାହିତ୍ୟ ସହିତ ମୋର କୌଣସି ସମ୍ପର୍କ ନଥିଲା । କେତେଜଣ ହିତଭାଗୀଙ୍କ ସହିତ ଚୁକ୍ତିଚିକ କରିଥିଲି । ଭାତ, ଡ଼ାଲି ପାଣି ଖାଇ ଝିମେଇଯାଇ ଦୌଡ଼ିବାକୁ ହୁଏ—ତଳ ତେଲେଙ୍ଗା ବଜାରରୁ କଲେଜ । ଶ୍ରେଣୀର ସବା ପଛ ବେଞ୍ଚରେ ବସେଁ, ଡ଼େଙ୍ଗା ପିଲାଙ୍କ ପଛରେ, ଘୁମାଇବାକୁ ସୁବିଧା ହେବ ବୋଲି । ଅଧ୍ୟାପକ ଭାଗବତ ଗାଇ ଚାଲିଯାନ୍ତି । ମୋ କାନରେ କିଛି ପଶେ ନାହିଁ ।" କିନ୍ତୁ କଲିକତାରେ ତାଙ୍କର ସ୍ନାତକୋତ୍ତର ଛାତ୍ରଜୀବନ ଥିଲା ଘଟଣାମୁଖର—"ପ୍ରଥମେ କଲିକତାରେ ମୁଁ ବୃହତ୍ତର ଜୀବନର ଆସ୍ୱାଦ ଲାଭ କଲି । କଲେଜ ଆଲୋଚନା-ସଭାରେ ପାଟିରୁ ଛେପ ଶୁଖି ଯାଉଥିଲା । କଲିକତାରେ ପାଦ ଦେଉଁ ଦେଉଁ ହେଲି ଜଣେ ବକ୍ତା । ଓଡ଼ିଆ ବକ୍ତାଙ୍କ ଅଭାବ ହେବାରୁ ଅଗ୍ରାହ୍ୟ ହେବାର ଆଶଙ୍କା ନ ଥାଏ, ଏମିତି ଶ୍ରୋତା । ଶ୍ରୋତାକୁ ଖୋଜିଁ ବକ୍ତା । ବକ୍ତା ହେଉଁ ହେଉଁ ନେତା । ଡାକରା ଆସିଲା ନାନା ଆଡ଼ୁ—ପାଠାଗାର ଉନ୍ମୋଚନ, ନୈଶ ବିଦ୍ୟାଳୟ ଉଦ୍‌ଘାଟନ, ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଲାଗି 'ବାହିନୀ' ସଂଗଠନ ଇତ୍ୟାଦି । ସେବା ଅପେକ୍ଷା ନାମ କମେଇବାର ଭାବ ଏଥିରେ ଥାଏ ବେଶି । ଓଡ଼ିଶାର ଏବେ ନେତାମାନେ ମୋତେ ନ ଧରିଲେ ନୁହେଁ, ମୁଁ ନ ଗଲେ ସଭା ଯେମିତିକି ଅଚଳ । କେତେ ଆଦର ଅଭ୍ୟର୍ଥନା ପୁଷ୍ପମାଳା ; ନେତା ହେବାର ଲୋଭ ମୋର କମ୍ ନ ଥିଲା , ଯଦି ବା ଗୁଣ ନଥିଲା । ନିଜ ଅବସ୍ଥାକୁ ଖୋଜିଁ ଦିନେ ଭାବିଲି ଯେ—ନିର୍ଦ୍ଧନ ପକ୍ଷରେ ନେତାଗିରି ଏକ ଅବ୍ୟାପାର । ସେଥିରେ ନିଜତ୍ୱ ରଖି ଚଳିବା ଅସମ୍ଭବ ।"

ଏହି ପ୍ରଥମ ରମ୍ୟ ରଚନାଟି ଭଳି 'କୁନାଦାଶଙ୍କ ଡ଼ାଇରି', 'ତ୍ରୟୀ', 'ଶେଷ ଦେଖା', 'ମୁଁ କାହିଁକି ଲେଖେଁ ?' ପ୍ରଭୃତି ମଧ୍ୟ ଗୋଟିଏ ଗୋଟିଏ ସରସ ସ୍ମୃତିଚିତ୍ର । ପାଞ୍ଚ ବର୍ଷ ବୟସରେ ଆପଣା ଶିଶୁପୁତ୍ର କୁନା ଦାଶଙ୍କ ଡାଇରି ନିଜେ କୁଞ୍ଜବିହାରୀ ଲେଖିଛନ୍ତି । ଏଥିରେ କୁନାଦାଶଙ୍କ କଥାବାର୍ତ୍ତା, ଖିଆଲ, ଖେଳଚଳଣିର ବର୍ଣ୍ଣନା ମଧ୍ୟରେ ଶିଶୁ ମନସ୍ତତ୍ତ୍ୱର ପରିଚୟ ଦିଆଯାଇଛି । "କୁନାଦାଶ କୋଟି କୋଟି ଓଡ଼ିଆ ଶିଶୁର ପ୍ରତୀକ" ବୋଲି ଲେଖକ ଯାହା କହିଛନ୍ତି, ତାହା ଯଥାର୍ଥ । 'ତ୍ରୟୀ'ରେ ତିନି ଜଣ ଗ୍ରାମୀଣ ନେତାଙ୍କ କୃତିତ୍ୱର ଉଲ୍ଲେଖ ରହିଛି । କୁଞ୍ଜବିହାରୀଙ୍କ ଭାଷାରେ—"ନଗରର କବି, ନେତା, ସୁଧୀ. ସେବକ ଆମ ଚକ୍ଷୁରେ ବଡ଼ ହୋଇ ଦିଶନ୍ତି । କିନ୍ତୁ ଦୁଇ ଚକ୍ଷୁର ସାର୍ଥକତା ଲାଗି ଗୋଟିଏ ଅନ୍ୟ ଦିଗକୁ ପ୍ରସାରିତ ହେବା ଦରକାର । ଭାରତୀୟ ଜନତାର ଅଧିକାଂଶ ପଲ୍ଲୀରେ । ଭାରତୀୟ ସଂସ୍କୃତିର କର୍ଣ୍ଣଧାର କେବଳ ନଗରରେ ନାହାଁନ୍ତି ; ଲୋକକବି ମନକୁ ସରସ ରଖନ୍ତି, ଲୋକ ସୁଧୀ ଦିଅନ୍ତି ସୁଚିନ୍ତିତ ପରାମର୍ଶ, ଲୋକନେତା ନିୟନ୍ତ୍ରଣ କରନ୍ତି ଜୀବନର ଗତି, ଲୋକସେବକ ବତାଇ ଦିଅନ୍ତି ପରଲାଗି ପ୍ରାଣ ଢାଳିବାର ପନ୍ଥ ।" ଅବଶ୍ୟ, ଏବେ ନିର୍ବାଚନ-ମୁଖ୍ୟ ରାଜନୀତି ପ୍ରବର୍ତ୍ତିତ ହେବା ଫଳରେ ଗ୍ରାମୀଣ ନେତାମାନେ ଟାଉଟର୍‌ରେ ପରିଣତ

ହୋଇଛନ୍ତି । ତଥାପି ବୀର ମହାନ୍ତି, ରାମ ମହାନ୍ତି, ଚନ୍ଦ୍ରମଣି ଦାଶଙ୍କ ଭଳି ଲୋକ ଯେତା ଯେ କେଉଁଠି କେଉଁଠି ନଜରରେ ନ ପଡନ୍ତି, ନୁହେଁ । ଏମାନେ କେବଳ ନିଜ ପାଇଁ ବଞ୍ଚନ୍ତି ନାହିଁ ; ନେକେନେକ ପରିମାଣରେ ଅପର ପାଇଁ—ପାଖପଡ଼ୋଶୀଙ୍କ ପାଇଁ ବଞ୍ଚିଥାଆନ୍ତି ମଧ୍ୟ । ସେଥିପାଇଁ ମନକୁ ମନକୁ ଆସେ "ସେମାନେ ମୂର୍ତ୍ତି ହୋଇଛନ୍ତି । ଅଗଣିତ ଦେହିଁ ସେମାନଙ୍କର ଝଟ୍କଲ, ସ୍ମୃତ — ନତ୍ୟ ସ୍ତବନ, ଅର୍ଘ୍ୟ — ପ୍ରାତଃ ନମସ୍କାର ।" 'ଶେଷ ଦେଖା' କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ସମ୍ପର୍କୀୟ ଏକ ନ୍ଦୃ ଘଟଣା । କାନ୍ତକବିଙ୍କ ସାହିତ୍ୟସୃଷ୍ଟିର 'ଧ୍ୟାନରେ ସନ୍ତୁଷ୍ଟ ନ ହୋଇ' କୃଷ୍ଣବଲ୍ଲଭ ତେହି ଦୃଷ୍ଟିକୋଣରେ 'ହତ ହେଉଥିଲା ଦେ ଜାନକୁ' ଭଦ୍ରକ ଯାଇ କାନ୍ତକବିଙ୍କୁ ସାକ୍ଷାତ କରିଛନ୍ତି । କାନ୍ତକବି ସେତେବେଳେ ଜୀବନର ଅନ୍ତିମ ଲଗ୍ନରେ ଆପଣାର ଭଙ୍ଗା ଭଙ୍ଗା ଗଣ୍ଡିକ କେହିଁ ଅଜଣା ଗନ୍ତବ୍ୟ ଉଦ୍ଦେଶ୍ୟରେ ଭସାଇ ଦେଇଛନ୍ତି । ଦୁଇଟି କବି ପ୍ରାଣର ମିଳନ ତଥା ବିଚ୍ଛେଦ ଉଭୟ ହୋଇଛି ଅତି ମର୍ମସ୍ପର୍ଶୀ । କୃଷ୍ଣବଲ୍ଲଭଙ୍କ ଭାଷାରେ ବିଦାୟ ବେଳାର ଚିତ୍ର ଅଙ୍କିତ ହୋଇଛି ଏହିପରି —"ଫଗୁଣ ମଧ୍ୟାହ୍ନ ଅଗ୍ନି ଛଳଛଳ ଝିମା ଗୋଧୂଳି ପରି ବିବର୍ଣ୍ଣ ଦିଶୁଥିଲା । ବିଦାୟ ଦେଇ ଆସିଲା ବେଳେ କାନରେ ପଡେ ସଙ୍ଗୀତ ମନେପଡ଼ିଲା—ଦେ ମୋତେ ବାଇଆ କରି ! ଅର୍ଥାତ୍ ଘୋର ପ୍ରତିକୂଳ ପରିବେଶ ମଧ୍ୟରେ ବି ମୁଁ ଯେପରି ସଂସ୍କୃତି ପ୍ରତି ବୀତଶ୍ରଦ୍ଧ ନ ହୁଏ । ସମୟ ବା ସୁଯୋଗ ମିଳୁ ନାହିଁ ବୋଲି ବାହାନା ନ କରେଁ । ହେ ପ୍ରଭୁ, ସଂସ୍କୃତି ଲାଗି — ସାହିତ୍ୟ ଲାଗି ମୋତେ ବାଇଆ କରିଦେ !" 'ମୁଁ କାହିଁକି ଲେଖେଁ ?' କୃଷ୍ଣବଲ୍ଲଭଙ୍କ ଲେଖନୀର ଏକ ସଫଳ ରମ୍ୟ ରଚନା ! କଇଶୋର ବୟସରୁ ସାହିତ୍ୟ ସାଧନାର ବିବରଣୀ ଏଥିରେ କୃଷ୍ଣବଲ୍ଲଭ ପ୍ରଦାନ କରିବାର ସଙ୍ଗେ ସଙ୍ଗେ କବି ଓ କବିତା ସଂପର୍କୀୟ କେତେକ ତାତ୍ତ୍ୱିକ କଥାକୁ ସରଳ ତଥା ସୁରସ କରି ଥୋଇଛନ୍ତି — "କବିତା ନବବଧୂ, ବଡ଼ ଲାଜକୁଳୀ । ଡାକିଲେ ଆସେ ନାହିଁ ; ମନର ପାତଳ ପରଦା ଖୋଲି ଗୋଟିଏ ମାତ୍ର ମୁହୂର୍ତ୍ତ ଦେଖାଦିଏ । ସେ ଖୋଜେ ସ୍ନେହାଦର, ତାର ଅଛି ଆଭିଜାତ୍ୟବୋଧ । ଅବଜ୍ଞା କଲେ, ଅଭିମାନରେ ସେହି ମୁହୂର୍ତ୍ତରେ ଅନ୍ତର୍ହିତ ହୁଏ । ନେହୁରା ହୋଇ ପଛରେ ଯେତେ ଡାକିଲେ, ଫେରେ ନାହିଁ । ଭେଣ୍ଡ୍ରା ପ୍ରହରର ଆଳସ୍ୟ ଅଷ୍ଟମଣୀସ୍ତ ।" କୃଷ୍ଣବଲ୍ଲଭଙ୍କ ଛାତ୍ର-ଜୀବନର ଏକ କ୍ରାନ୍ତିକାଳୀ ଘଟଣା—"୧୯୪୨ ଅଗଷ୍ଟ ବିପ୍ଳବ ବେଳେ ମୁଁ ରାଞ୍ଚିରେ ଗୋଟିଏ ହୋଷ୍ଟେଲ୍‌ରେ ଥାଏଁ । ଦିନେ ସମସ୍ତ ଛାତ୍ର-ଜନତା ବେରିଗଲେ । କେତେ ମାସ ଯାଏ ଭାତ ରୁଚିଲା ନାହିଁ, ନିଦ ହେଲା ନାହିଁ । ଆକସ୍ମିକ ଦୁର୍ଘାତରେ ସମସ୍ତ ସନ୍ତାନ ହରାଇଲେ, ପିତାର ମନ ଯାହା ହୁଏ, ମୋ ମନ ସେହିପରି ହୋଇଥିଲା । ପ୍ରାଚୀନ ପନ୍ଥାରୁ ମୁକ୍ତ କରିବା ଲାଗି ଭଗବାନ ବୋଧେ ମୋତେ ଏହି କଲ୍ୟାଣମୟ ଶାସ୍ତି ଦେଲେ । ରାଞ୍ଚି ପରି ସହରରେ ଏ ଖାଜାଗୁଡ଼ିକ ଗୁଆ ଗୁଣ୍ଡି ବନ୍ଧାରେ ଲାଗିଥିବ । ସେହିଦିନଠାରୁ ବନ୍ଧ ଛପେଇବା ସଂକଳ୍ପ ମନରେ ଆସିଲା ।

'ପରିଚୟ' ରମ୍ୟରଚନାରେ କୃଷ୍ଣଚନ୍ଦ୍ରଙ୍କ ଆପଣା ବାଲ୍ୟ କ୍ରୀଡ଼ାର ସାଥୀ, ସ୍କୁଲ କଲେଜ ଜୀବନର ପଢ଼ାସାଙ୍ଗ ଏବଂ କର୍ମକ୍ଷେତ୍ରରେ କେତେକ ପରିଚିତ ବନ୍ଧୁଙ୍କ ବିଷୟ ଅବତାରଣା କରିଛନ୍ତି । ଏ ସମ୍ପର୍କରେ ସେ ନିଜର ତିକ୍ତ-ମଧୁର ସ୍ମୃତି ରୋମନ୍ଥନ କରିଛନ୍ତି । ଏ ବିଷୟରେ ତାଙ୍କର ଶେଷୋକ୍ତି—"ମନୁଷ୍ୟର ପ୍ରକୃତ ପରିଚୟ ସେ ନିଜକୁ ଆତ୍ମୀୟଜନ ସାଧନାରେ କାଳ ବକ୍ଷରେ ଯେ ନିଜ ମହତ୍ତ୍ୱ ଆତ୍ମାର ଶାଶ୍ୱତ ଲିପି ଲେଖି ଯାଇ ନାହିଁ, ସେ ପରିଚିତ ହୋଇ ବି ଚିର ଅପରିଚିତ ।"—ବେଶ୍ ମନୋଜ୍ଞ ଓ ହୃଦ୍ୟସ୍ପର୍ଶୀ । 'ଗୋପବନ୍ଧୁ ଓ ଶାନ୍ତିନିକେତନ' ଏକ ବର୍ଣ୍ଣନାତ୍ମକ ରମ୍ୟରଚନା । ଏଥିରେ ପଣ୍ଡିତ ଗୋପବନ୍ଧୁଙ୍କର ୧୯୨୪ ମସିହାରେ ଶାନ୍ତିନିକେତନ ପର୍ଯ୍ୟଟନ ଚମତ୍କାର କବିତ୍ୱପୂର୍ଣ୍ଣ ଶୈଳୀରେ ବର୍ଣ୍ଣିତ ହୋଇଛି — "ଗୋପବନ୍ଧୁ ଦ୍ରୁତମନ୍ଥର ପଦରେ ଶାଳ ତାଳ ତମାଳ ଆମ୍ର ପଳାଶ ବକୁଳ ମାଳତୀ କୃଷ୍ଣଚୂଡ଼ା ବୃକ୍ଷ ଲତାଦି ଦର୍ଶନ କରି କରି ଗତି କରିବାକୁ ଲାଗିଲେ । ହୃଦ୍‌ପଞ୍ଜରର ମର୍ମରେ ତାଙ୍କ ଅନ୍ତରରେ ଆଣିଲା ଅପୂର୍ବ ଶିହରଣ । ଜୀବନ ଏଠି ନିର୍ଝରିଣୀ ପରି ସ୍ୱଚ୍ଛନ୍ଦ, କଳ୍ପନା ଏଠି ମେଘ ପରି ମୁକ୍ତ, ସ୍ୱପ୍ନ ଏଠି ଆଡ଼ମ୍ବରମୟ, ଗୋଧୂଳି ଶ୍ରୀ ପରି ରଙ୍ଗୀନ୍ । ଉତ୍କଳର ଶ୍ରେଷ୍ଠ ତପସ୍ୱୀ, ଶ୍ରେଷ୍ଠ ସାଧକ ଗଣଦେବତା ମହାପୁରୁଷ ଗୋପବନ୍ଧୁଙ୍କ ମୁହୂର୍ତ୍ତେ ବକ୍ଷରେ ଯେପରି ଅନ୍ତଃକୁଞ୍ଜ ଶାଳବୀଥି ହସି ଉଠିଥିଲା ।" ରବୀନ୍ଦ୍ରନାଥ ଓ ଗୋପବନ୍ଧୁଙ୍କ ତୁଳନା ଏହି ଲେଖାଟିର ଶ୍ରେଷ୍ଠାଂଶ—ଏହା କୃଷ୍ଣଚନ୍ଦ୍ରଙ୍କ ପ୍ରତିଭାଶାଳୀ ରଚନାଶୈଳୀର ପରିଚାୟକ —"ଦୁଇ ମହାସାଗର ପରି ଦୁଇ ମହା ହୃଦୟର ମିଳନ ହେଲା । ଜଣେ ହିମାଦ୍ରି ପରି ଉତ୍ତୁଙ୍ଗ ଗମ୍ଭୀର; ବେଦ ଋଷିଙ୍କର ବର୍ଣ୍ଣିତ ବିପୁଳ ଆତ୍ମା ବିକଶିତ; ଆଭିଜାତ୍ୟ ଓ ଜ୍ଞାନ ଗୌରବ ନିଷ୍ଠାରେ ପ୍ରଦୀପ୍ତ । ଆଉ ଜଣେ ଶିଶୁ ପରି ସରଳ, ଖରଦୀପ୍ତ ବୃକ୍ଷ ପରି ବିନମ୍ର, ଶ୍ରାବଣ ପରି ଅଶ୍ରୁଧାରାରେ ଉଚ୍ଛ୍ୱସିତ, ପଲ୍ଲୀପ୍ରାଣ ପରି ନିରାଡ଼ମ୍ବର, ପ୍ରଭାତ କିରଣ ପରି ସତେଜ । ରବୀନ୍ଦ୍ରନାଥ ଓ ଗୋପବନ୍ଧୁ ! ଜଣଙ୍କର କଳ୍ପନା ମୁକ୍ତ ବିହଙ୍ଗ ପରି ଆକାଶରେ କ୍ରୀଡ଼ା କରୁଛି ଆଉଜଣଙ୍କର କଳ୍ପନା ନାହିଁ—ଭାବନା ; ସ୍ୱପ୍ନ ନାହିଁ—ବାସ୍ତବତା । ମାଟିର କୁଟୀରେ କୁଟୀରେ ଘୂରି ବୁଲୁଛି ତାଙ୍କର ହୃଦୟ, ପୋଛୁଛି କୃଷକର ସ୍ୱେଦ, ବ୍ୟାଧି ପୀଡ଼ିତର ଅଶ୍ରୁ ; ଜଣେ କଳ୍ପନାର କବି ଆଉ ଜଣେ ଜୀବନର କବି ।' ଶାନ୍ତିନିକେତନର ସମ୍ବର୍ଦ୍ଧନାର ଉତ୍ତର ଦେଇ ପଣ୍ଡିତ ଗୋପବନ୍ଧୁ, ଶାନ୍ତିନିକେତନ ଆଶ୍ରମ ଓ ସତ୍ୟବାଦୀ ବନବିଦ୍ୟାଳୟର ତୁଳନା କରିଥିଲେ । ୧୯୨୪ ମସିହା ବେଳକୁ ସତ୍ୟବାଦୀ ବନ ବିଦ୍ୟାଳୟର ଜୀବନ-ସନ୍ଧ୍ୟା ଉପଗତ ହୋଇଥିଲା । ତାହାର ପ୍ରତିକ୍ରିୟା ସମ୍ଭବତଃ ଗୋପବନ୍ଧୁଙ୍କ କଣ୍ଠରେ ଧ୍ୱନିତ ହୋଇଥିଲା—ଶାନ୍ତିନିକେତନ ରାଜରାଜୁଡ଼ା କାରଖାନା, ସତ୍ୟବାଦୀ ବିଦ୍ୟାଳୟ ଏକ ଗରିବ ଅନୁଷ୍ଠାନ ।

'ଡଷ୍ଟୋଭସ୍କି' ଊନବିଂଶ ଶତାବ୍ଦୀର ରୁଷୀୟ ଲେଖକଙ୍କ ଉତ୍ଥାନ-ପତନ-ମୟ ଜୀବନର ମାର୍ମିକ ଚିତ୍ର । ଅପଣା ସଂଘର୍ଷମୟ ଜୀବନ ସହିତ ଡଷ୍ଟୋଭସ୍କିଙ୍କ

ଜୀବନର କେତେକ ସାଦୃଶ୍ୟ ଥିବାରୁ କୃତ୍ତିବାସ ତାଙ୍କ ଜୀବନକୁ ବୋଧହୁଏ ରମ୍ୟ-ରଚନା ପାଇଁ ବାଛିଛନ୍ତି । "ଜୀବନର ନିର୍ମମ ବାସ୍ତବର ସମ୍ମୁଖୀନ ହୋଇ ସେ ବୁଝିଛନ୍ତି ଜୀବନକୁ ଜଣେ ମଣିଷ ହୋଇ ;ସେ ମଣିଷରୁ ହୋଇଛନ୍ତି କଳାକାର । + + ସାହିତ୍ୟ ତାଙ୍କ ଜୀବନରୁ ଭିନ୍ନ ନୁହେଁ—ଯାହା ଆପାତ ଦୃଷ୍ଟିରେ ଦିଶେ ।" ଏହି କଥା ଡଷ୍ଟୋଭସ୍କିଙ୍କ ଜୀବନ ପକ୍ଷରେ ଯେପରି, କୃତ୍ତିବାସଙ୍କ ଜୀବନ ପକ୍ଷରେ ମଧ୍ୟ ସେହି-ପରି ସତ୍ୟ । ଘୋର ପ୍ରତିକୂଳ ପରିସ୍ଥିତିରେ ସାହିତ୍ୟ ସାଧନା ଅବ୍ୟାହତ ରଖିବା ଡଷ୍ଟୋଭସ୍କିଙ୍କ ମହତ୍ତ୍ୱ । ଏହି ଦୃଷ୍ଟିରୁ ଆମର ବହୁ ଲେଖକ-ଲେଖିକାଙ୍କୁ ଡଷ୍ଟୋ-ଜୀବନୀ ଅନୁପ୍ରାଣିତ କରିବ । 'ମେଦିନୀପୁରର ଗୋଟିଏ ଗ୍ରାମ' ଏକ ଭ୍ରମଣ ବୃତ୍ତାନ୍ତ ହେଲେହେଁ ଏଥିରେ 'ଖାଲସିଉଳୀ' ଗ୍ରାମର ଘୋଷାଲବାବୁଙ୍କ ପରିବାର ଏବଂ ଲୋକ-କବି ଶଶୀ ତଥା ମୁଖ୍ୟ ସ୍ଥାନ ଲାଭ କରିଛି । ଶଶୀ ତୁଣ୍ଡରୁ କୃତ୍ତିବାସ କେତୋଟି ଲୋକଗୀତ ଓ ଗୋଟିଏ ଲୋକକାହାଣୀ ସଂଗ୍ରହ କରି ଲିପିବଦ୍ଧ କରିଛନ୍ତି । ପ୍ରସଙ୍ଗକ୍ରମେ ସେ ମେଦିନୀପୁରରେ ଲୋପ ପାଇ ଯାଉଥିବା ଓଡ଼ିଆ ସଂସ୍କୃତି ସମ୍ପର୍କରେ ମନ୍ତବ୍ୟ ପ୍ରଦାନ କରିଛନ୍ତି । ଏବଂ ଧାପାଲ ଗ୍ରାମର ଗୀତାଭିନୟ ଲେଖକ କୃପାସିନ୍ଧୁ ମିଶ୍ରଙ୍କ ବିଷୟ ଅବତାରଣା କରିଛନ୍ତି । ମିଶ୍ରଙ୍କ ଗୃହରେ ଓଡ଼ିଆ ଲିପିରେ ଲେଖା ବହୁ ଗୀତାଭିନୟର ପାଣ୍ଡୁଲିପି ସେ ଦେଖିଥିଲେ । ଆମ ଜାଣିବାରେ ତାହା ଏଯାବତ୍ ସଂଗୃହୀତ ଓ ସଙ୍କଳିତ ହୋଇ ପ୍ରକାଶ ଲାଭ କରିନାହିଁ । ପ୍ରାୟ ପଚିଶ ବର୍ଷ ପରେ ଏବେ ଆମ ସାହିତ୍ୟର ସେହି ସମ୍ପଦର କିଛି ଅବଶେଷ ଥିବ କି ?

'କବିତାର କଥା' 'ପଲ୍ଲୀ କବିତା ଓ କବି ଗୋଦାବରୀଶ' ଏବଂ 'ଗାଉଁଲି କବି ନାଗେନ୍ଦ୍ରଶାର୍'—ଏହି ତିନୋଟି ରମ୍ୟରଚନାରେ କୃତ୍ତିବାସ ମୁଖ୍ୟତଃ ସାହିତ୍ୟାଲୋଚନା କରିଛନ୍ତି । ଋଷି ଓ କବିଙ୍କର ସାଧନାକୁ ଅଭିନ୍ନ ବୋଲି କହି ସେ ଲେଖିଛନ୍ତି—"ମୁଖର ଜଗତକୁ ଅନ୍ତରରେ ରଖିବ, ଏଣେ ରହିବ ନୀରବ ନିଶ୍ଚଳ । ସଚେତନ ଅବସ୍ଥାରେ ପରିପାର୍ଶ୍ୱରେ ବୃତ୍ତ ରହିବ—ଏ ତାର ପ୍ରସ୍ତୁତି । ପୁଣି ନିଜକୁ ଦ୍ୱାର-ଗବାକ୍ଷ ଖୋଲି ସ୍ୱର୍ଗ ଉଦ୍ଦୁର୍ଗକୁ ଯେପରି ଆସିପାରିବ—ଏ ତାର ତପସ୍ୟା ।" ବିଶ୍ୱର ବିଭିନ୍ନ କବିଙ୍କର କବିତାରଚନା ପ୍ରକ୍ରିୟାର ମତଗତ କୃତ୍ତିବାସ ଚମତ୍କାର ଘଟଣାବଳୀ ସାହାଯ୍ୟରେ ବ୍ୟାଖ୍ୟା କରିଛନ୍ତି ଏବଂ ସ୍ୱଳ୍ପ ସିଦ୍ଧିରେ ସନ୍ତୁଷ୍ଟ ରହିଯାଉଥିବାରୁ ଆମର ବହୁ କବିଙ୍କର କିପରି ଅପମୃତ୍ୟୁ ହେଉଛି, ତାହା ଦର୍ଶାଇଛନ୍ତି—"ଯଶର କିଛି ପୁଞ୍ଜି ହୋଇଗଲେ ଅଧିକାଂଶ ତୁଷ୍ଟ ହୋଇଯାନ୍ତି । ତୁଷ୍ଟ କବି ମୃତ କବି । ଏମିତି ଜୀବନ୍ମୃତ ଥୁଣ୍ଟା ଗଛ । ବହୁ କବିଙ୍କ ଆୟୁ ଏ ଓଡ଼ିଶା ପ୍ରଦେଶରେ କୋଡ଼ିଏ ବର୍ଷରୁ ଅଧିକ ନୁହେଁ ।" କବି ଗୋଦାବରୀଶ ମିଶ୍ରଙ୍କର 'ଆଲେଖିକାର' ଗାଥାକବିତା ଗୁଡ଼ିକ କିପରି ଲୋକ ଗୀତିକାର ଚୁଧଭଙ୍ଗୀ ଅନୁସରଣ କରିଛି ଏବଂ ଗୋଦାବରୀଶ କିପରି ମୂଳତଃ ଜଣେ ପଲ୍ଲୀ

କବି, ତାହା କୃତ୍ତିବହାସ ଆଲୋଚନା କରି ଦର୍ଶାଇଛନ୍ତି । "ସାହେବୀ ଢଙ୍ଗରେ ଶାଣିତ ଶିକ୍ଷାଗୃହ ଅତିକ୍ରମ କରି ଭିତରେ ପ୍ରବେଶ କଲେ ଆବିଷ୍କୃତ ହୁଏ ଗୋଟିଏ ମନ—ଜାତୀୟତାରେ ଭାରତୀୟ, ଉଦାରତାରେ ବିଶ୍ୱଜନୀନ, କିନ୍ତୁ ଉପାଦାନରେ ଖାଣ୍ଟି ଓଡ଼ିଆ । ତାହାହିଁ ଗୋଦାବରୀଶଙ୍କ ମନ । ଗୋଦାବରୀଶଙ୍କ ଭଳି ନନ୍ଦକିଶୋର ବାହାରେ ସହରୀ, କିନ୍ତୁ ଭିତରେ ଏକାନ୍ତ ଗାଉଁଲୀ । ନଗର ନଗରୀର ବହୁ ରୂପ ଛବି-ଛାୟା ହୋଇ ତାଙ୍କ ମନରେ ଲିଭି ଯାଇଛି, ନିଜ ଭିତରେ ସେ ସୁନ୍ଦର ସରସ ଗାଆଁକୁ ଆବିଷ୍କାର କରିଛନ୍ତି । —ନିଜେ ବି ଆବିଷ୍କୃତ ହୋଇଛନ୍ତି" ଫକୀରମୋହନ ଯେପରି ଗଦ୍ୟରେ, ନନ୍ଦକିଶୋର ସେହିପରି ପଦ୍ୟରେ ଗାଉଁଲି କବି । କୃଷ୍ଣକୁମାରୀ ଶର୍ମିଷ୍ଠା କାବ୍ୟର କବିଙ୍କଠାରୁ ନିର୍ଝରିଣୀ-ନାନା ବାୟା ଗୀତର କବିଙ୍କ ସ୍ୱାତନ୍ତ୍ର୍ୟ କୃତ୍ତିବହାସ ଉଦାହରଣ ସହ ପ୍ରତିପାଦନ କରିଛନ୍ତି ।

ଭାଷାବିନ୍ୟାସ ଦିଗରୁ ବିଚାର କଲେ, ଏହି ରମ୍ୟ ରଚନା ଗୁଡ଼ିକ ମୁଖ୍ୟତଃ ସରଳ ଗଉଁଲି ଭାଷାରେ ରଚିତ କ୍ଷୁଦ୍ର କ୍ଷୁଦ୍ର ବାକ୍ୟ ଗୁଡ଼ିକ ଭାବ ଗର୍ଭିକ ଓ ପ୍ରଭାବ ଶାଳୀ । ଭାବାନୁସାରୀ ଶୁଦ୍ଧ, ମାର୍ଜିତ ଭାଷା ସ୍ଥଳ ବିଶେଷରେ ଯେ ବ୍ୟବହୃତ ନହୋଇଛି, ନୁହେଁ । ରମ୍ୟରଚନା ଶୈଳୀ ପାଇଁ ଏହି ଭାଷା ବିନ୍ୟାସ ଖୁବ ବେଶ୍ ଉପଯୋଗୀ । ତାଙ୍କ ରମ୍ୟରଚନା ପଢ଼ିଲାବେଳେ କବିତା ପଢ଼ୁଥିବାପରି ମନେ ହୁଏ । ଅନୁପ୍ରାସିକ ଶବ୍ଦସମ୍ଭାର ଓ ଆବେଗ ମୁଖର ଭାଷା ବିଭବରେ ତାଙ୍କ ରମ୍ୟରଚନା ଓଡ଼ିଆ ସାହିତ୍ୟରେ କେବଳ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଅନୁରୂପ ସୃଷ୍ଟି ସହିତ ସାମଞ୍ଜସ୍ୟ ରକ୍ଷାକରେ ।

* ମୁଖ୍ୟ ଅଧ୍ୟାପକ, ଫୁଲବାଣୀ ସରକାରୀ ମହାବିଦ୍ୟାଳୟ । ●●

ପୁସ୍ତକ ସମୀକ୍ଷା :

# ।। ମଶାଣି ତୁଳସୀ-ଏକ ଦୃଷ୍ଟିପାତ ।।

ଲକ୍ଷ୍ମୀଧର ନାୟକ

[ ମଶାଣି ତୁଳସୀ, ଉପନ୍ୟାସ । ଲେଖକ ଡକ୍ଟର କୃଷ୍ଣବିହାରୀ ଦାଶ । ପ୍ରକାଶକ-ଓଡ଼ିଶା ବୁକ୍ ଷ୍ଟୋର, ପ୍ରଥମ ପ୍ରକାଶ-୧୯୮୦, ମୂଲ୍ୟ-ସତର ଟଙ୍କା । ]

ଭାରତ ସ୍ୱାଧୀନ ହେବାର ତେତିଶ ବର୍ଷ ପରେ ଏ ଉପନ୍ୟାସଟି ଲେଖି, ପ୍ରକାଶ କରିଛନ୍ତି ଡକ୍ଟର କୃଷ୍ଣବିହାରୀ ଦାଶ । ଶ୍ରୀଯୁକ୍ତ ଦାଶଙ୍କୁ ଆମେ ଏ ପର୍ଯ୍ୟନ୍ତ ଜଣେ ବିଦଗ୍ଧ କବି, ଲୋକକାହାଣୀର ସଂଗ୍ରାହକ, ଓଡ଼ିଆ ଢଗଢମାଳି ସମ୍ପାଦକ, ପ୍ରାବନ୍ଧିକ, ସମାଲୋଚକ ଓ ଭ୍ରମଣ କାହାଣୀ ଲେଖକ ଭାବେ ଜାଣିଥିଲୁ । କିନ୍ତୁ ଔପନ୍ୟାସିକ ଭାବେ 'ମଶାଣି ତୁଳସୀ' କଥା ସାହିତ୍ୟ ରଚନା କରି, ସେ ଯେ ସାହିତ୍ୟର ସବୁ ବିଭାଗ ଉପରେ ତାଙ୍କର ଅସାଧାରଣ ଦକ୍ଷତା ପ୍ରମାଣିତ କଲେ, ଏହା ଓଡ଼ିଆ ପାଠକ ସାଧାରଣଙ୍କ ପାଇଁ ଏକ ଆନନ୍ଦ ଓ ଆଶ୍ୱାସନାର କଥା !

ଆନନ୍ଦ ଏଇଥି ପାଇଁ, ଓଡ଼ିଆ ପାଠକ, ଫକୀରମୋହନ ସେନାପତିଙ୍କ ପରେ ଦେଖିପାଇଛନ୍ତି ଜଣେ ଖାଣ୍ଟି ଓଡ଼ିଆ ପ୍ରାଣ ଔପନ୍ୟାସିକଙ୍କୁ, ଯିଏ କେବଳ ଗ୍ରାମ୍ୟ ଜୀବନର ଘଟଣା ପ୍ରବାହ ଭିତରୁ କେତୋଟି ଗାଉଁଲି ଚରିତ୍ରକୁ ବାଛିନେଇ ପଲ୍ଲୀସମାଜର ସ୍ଥୂଳ ଚଳଣି ଭିତରେ ସେମାନଙ୍କୁ ଜୀବନ୍ତ କରି କଥା ସାହିତ୍ୟରେ ଫୁଟାଇ ଏକ ଅନନ୍ୟ ସାଧାରଣ ସାଫଲ୍ୟ ଦେଖାଇ ନାହାନ୍ତି ବରଂ ମୁକ୍ତ କଣ୍ଠରେ କହିବାକୁ ଗଲେ ସ୍ୱୀକାର କରିବାକୁ ହେବ, ପଲ୍ଲୀଗାଁର ଯେଉଁ ସାମାନ୍ୟ ଆଉ ସାଧାରଣ ଚରିତ୍ର ଗୁଡ଼ିକ କଥା ଆମେ ପ୍ରାୟ ଭୁଲି ବସିଛୁ ସ୍ୱାଧୀନୋତ୍ତର ଭାରତରେ ସେଇଗୁଡ଼ିକୁ ସେ ଖୁବ୍ ବିରାଟ ଆକାରରେ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରି ଆମ ଆଗରେ ଆଣି ଠିଆ କରେଇଛନ୍ତି ଅନବଦ୍ୟ ଭାବରେ ରୂପାୟିତ କରି ।

ପ୍ରାକ୍ ସ୍ୱାଧୀନତାକାଳୀନ ଓଡ଼ିଆ ଉପନ୍ୟାସର ମୁଖ୍ୟ ସ୍ୱର ଥିଲା, ସାମାଜିକ କୁସଂସ୍କାର, ଛୁଆଁ ଅଛୁଆଁ ବାଛ ବିଚାର, ବାଲ୍ୟ ବିବାହ, ଜମିଦାରଙ୍କ ଅତ୍ୟାଚାର, ରଜା ମହାରାଜାଙ୍କ ମନମୁଖୀ ଶାସନ, ଗାଁ ମହାଜନମାନଙ୍କ ଧାନ, ଟଙ୍କା,ର ନେଣ-ଦେଣ କାରବାର, ଗରିବ ଖଟିଖିଆ ମୂଲିଆ-ମୋପୁଡ଼ାଙ୍କୁ ଶୋଷଣ କରିବାର ନାନାନ୍ ଚିତ୍ର । ଏବଂ ଏଇ ସବୁ ଅତ୍ୟାଚାର ବିରୁଦ୍ଧରେ କୌଣସି କୌଣସି ଲେଖାରେ ଥିଲାବାଲାଙ୍କ ପ୍ରତି ନିଃସ୍ୱ ନିଗୃହୀତର ପ୍ରତିବାଦ ଏବଂ ପ୍ରତିକାରର ସ୍ୱର ବି ଶୁଣାଯାଉଥିଲା ।

'ମଶାଣି ଭୁଲସୀ' ଉପନ୍ୟାସର ଭୂମିକାରେ ଶ୍ରୀ ଦାଶ ଲେଖିଛନ୍ତି—"ମଶାଣି ଭୁଲସୀ ଗ୍ରାମୀଣ ପ୍ରତଭୂମିର ଏକ ପ୍ରତୀକ । ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧର ଓଡ଼ିଆ ପଲ୍ଲୀ ଜୀବନ ଉପରେ କେନ୍ଦ୍ରିତ ।"

୧୯୪୭ରେ ତାଙ୍କର ପ୍ରଥମ ପ୍ରୟାସ ଥିଲା ଏକ ଉପନ୍ୟାସ ଲେଖା । କିନ୍ତୁ ତାହା ପୃଷ୍ଠିତା ଲାଭ କରି ପାରି ନଥିଲା । ୧୯୮୦ରେ ତାଙ୍କର ଦ୍ୱିତୀୟ ପ୍ରୟାସ-ମଶାଣି ଭୁଲସୀ ।

କିନ୍ତୁ ୧୯୮୦ରେ ତାଙ୍କର ଦ୍ୱିତୀୟ ପ୍ରୟାସକୁ ସଫଳ କରିବାକୁ ଯାଇ ସେ ଯେ କାହିଁକି ଷାଠିଏ ବର୍ଷ ତଳର ଏକ ପଲ୍ଲୀ ଗାଁର ସାମାଜିକ ଚରିତ୍ର ଗୁଡ଼ିକୁ ଉପନ୍ୟାସର ନାୟକ ନାୟିକା ଓ ପାର୍ଶ୍ୱ ଚରିତ୍ର ଭାବେ ବାଛିଲେ ସେ କଥାର ଯଦି ସାମାନ୍ୟ ଆଭାସ ଦେଇଥାନ୍ତେ ତାଙ୍କର ଅଗ୍ରଲେଖରେ, ଆମପାଇଁ ସୁବିଧା ହୋଇଥାନ୍ତା ତାଙ୍କରି ଦୃଷ୍ଟିକୋଣରୁ ଉପନ୍ୟାସଟିର ସାହିତ୍ୟିକ ମୂଲ୍ୟାଙ୍କନ କରିବା ।

ତଥାପି ଗୋଟିଏ ଦୃଷ୍ଟିକୋଣରୁ ଶ୍ରୀଯୁକ୍ତ ଦାଶଙ୍କର ଏପରି ଗାଉଁଲି ଚରିତ୍ରକୁ ବାଛିବାର ଯଥାର୍ଥତା ଥାଇପାରେ—ଯୋଉ ଚରିତ୍ରମାନଙ୍କ ସମାବେଶ ଭିତରକୁ ଆସିଛନ୍ତି ଉତ୍କଳମଣି ଗୋପବନ୍ଧୁ, ତାହେଲେ—ଶ୍ରୀ ଦାଶ ମୁଖ୍ୟତଃ ଜଣେ ଓଡ଼ିଆ ଲୋକଗୀତର ସଂଗ୍ରାହକ ଓ ସମ୍ପାଦକ । ଏବଂ ଏଇ ଉପନ୍ୟାସର ବିଭିନ୍ନ ଚରିତ୍ର ମୁହଁରେ। ଅନେକ ଡଗଢମାଳୀ ଓ ଗାଉଁଲି ପ୍ରବଚନ ବି ଲୁଚାଇଛନ୍ତି ଯୋଉ ଗୁଡ଼ିକ ଆଜିକାଲିକ ସହରର ପରିବେଶ ଭିତରେ ଚଳଚଞ୍ଚଳ କରୁଥିବା ଚରିତ୍ରଗୁଡ଼ିକୁ ଉପନ୍ୟାସର ଘଟଣା ପ୍ରବାହ ଭିତରକୁ ଆଣି ସେମାନଙ୍କ ମୁହଁରେ କୁହାଇବା ହୁଏତ ଯୁକ୍ତିଯୁକ୍ତ ହୋଇ ନଥାନ୍ତା ।

ଫକୀରମୋହନ ସେନାପତି ଥିଲେ ଓଡ଼ିଆ କଥା ସାହିତ୍ୟର ଗୁରୁ । ତାଙ୍କ ଉପନ୍ୟାସ ଗୁଡ଼ିକରେ ଭାବ-ଧର୍ମ ଓ ସାମାଜିକ ଚରିତ୍ରର ଆଦର୍ଶ ନିସ୍ପନ୍ଦିତ ଭାବ ମୂର୍ତ୍ତିର ବିଶ୍ଲେଷଣ ଦେଖାଯାଏ । ସେଇ ପରିପ୍ରେକ୍ଷୀରେ ଶ୍ରୀ ଦାଶଙ୍କର ଶଂସିତ ଉପନ୍ୟାସର ମୁଖ୍ୟ ତିନୋଟି ଚରିତ୍ର; ପାଣୁଆଁ, କଲୀ ମକଦ୍ଦମ, ବୀର ମହାନ୍ତିଙ୍କୁ ବିଚାର କରାଯାଇପାରେ ।

ଉପନ୍ୟାସର କଥାବସ୍ତୁ ଅତି ସାଧାରଣ । ପାଣୁଆଁ, କୁସୁମପୁର ଗାଁର ଗୋଟିଏ ଗାଈଜଗା ପିଲା । "କଳା ମିଚ ମିଚ ଆଖି । ଶାବଳ ପରି ଜଦା । ଚକ୍ ଚକ୍ ଆଖି । କଅଁଳା ବାଳୁଙ୍ଗା ପରି ଛନ ଛନ, କନ କନ ।"

ସେ ଗୁହାଳ ପୋଛେ । ଦାଆରେ ବଲ ଦୁଙ୍କା ମୁଣ୍ଡା ଘମ୍ପୁଡ଼େ । ଝଡ଼ ପଡ଼େ ବଡ଼ ବଡ଼ ଗେଣ୍ଡା । ଛେଚି ଖୋଲପା ବାହାର କରି ସେ ଗେଣ୍ଡା ଦେଶର ପାଣି କରି ଖାଏ ।

ଏପରି ସାଦାସିଧାନିରୀହ ପିଲାଟି ଉପରେ ନଜର ପଡ଼ିଲା ମଙ୍ଗ ମକଦ୍ଦମଙ୍କର । ମକଦ୍ଦମେ ଦ'ପଇସା ଦୋଳ ଖର୍ଚ୍ଚ ଦେଲେ । ପାଣୁ ମୂଳିଆର ହେଲା । ବର୍ଷକୁ ପାଞ୍ଚ ଟଙ୍କା ଦରମା । ଦ ଖଣ୍ଡ ଗାମୁଛା ।

ପାଣ୍ଡୁଆ ଓଁଲେଇ ଗାଈଙ୍କ ଉପରେ ନଜର ରଖେ । ଘଟଣା ଭିତରେ ପାଣ୍ଡୁଆ ସହିତ ଆସିଛନ୍ତି କପିଳା, ଗଧୁଆ, ଗୁରୁନ୍ଦା, ଅଗାଧୁଆ, ନାରଣ ଓଁଡା, ଲେଙ୍କା, ଲଖିଆ, ଗୁଣିଆ ପ୍ରଭୃତି ଗାଉଁଲି ଚରିତ୍ର ଗୁଡ଼ିକ । ଏମାନଙ୍କ କଥା ପ୍ରସଙ୍ଗରେ ଗାଉଁଲି ଢଗ ଢ଼ମାଳି ସୁଅ ଛୁଟିଛି ଉପନ୍ୟାସର ଆରମ୍ଭରୁ ଶେଷ ଯାଏଁ । ମୁହଁର କଥାକୁ ସେମାନେ କହୁଛନ୍ତି ଗୀତ ମାଧ୍ୟମରେ । ମନର ଭାବ ବ୍ୟକ୍ତ କରିଛନ୍ତି ଓଡ଼ିଶାର ପଲ୍ଲୀଜୀବନରେ ଶହ ଶହ ବର୍ଷ ଅଗରୁ ଚଳି ଆସୁଥିବା ପ୍ରବଚନ ଓ "ବୋଲି" ଗୁଡ଼ିକୁ ନଜିର ଦେଇ ।

ପାଣ୍ଡୁଆ ଏକ ମାମୁଲି ଚରିତ୍ର । ଏକ ନଗଣ୍ୟ ଚରିତ୍ର କୁସୁମପୁର ଗାଁର । କିନ୍ତୁ ଔପନ୍ୟାସିକ ଶ୍ରୀ ଦାଶ ସେଇ ନଗଣ୍ୟ ପାଣ୍ଡୁଆକୁ ଛିଡ଼ା କରେଇଛନ୍ତି ଏକ ବିଗ୍ରହବନ୍ତ ମଣିଷ ଭାବେ । ଗାଈ ଜଗା ଟୋକା ପାଣ୍ଡୁଆ, ସାଧାରଣ ଭିତରେ ଅସାଧାରଣ, ତାର ଚିନ୍ତା ଅଉ ଭଲ ମନ୍ଦ ତଉଲି ଦେଖିବାର ବୁଦ୍ଧି ବୃତ୍ତି ଯୋଗୁ ।

ହଳ ହୁଲ କରିବା ଭିତରେ, ଗାଈ ଗୋଠ ଜଗିବା ଭିତରେ, ମକଦ୍ଦମଙ୍କ ବୋଲ ହାକ କରିବା ଭିତରେ ପାଣ୍ଡୁଆ ଭାବେ—"ଆମେ ତ ଖ୍ରୀଷ୍ଟିଆନ ନୋହୁଁ କି ମୁସଲମାନ ନୋହୁଁ । ଆମେ କାହିଁକି ଗୋପିନାଥଙ୍କ ଛତ୍ରନାସ ଧରୁନାହୁଁ କି ଚଉଦୋଳି କାନ୍ଧଉ ନାହୁଁ । ଆମ ଦୁଆରେ କାହିଁକି ଠାକୁର ଭୋଗ ଖାଆନ୍ତି ନାହିଁ ? ଠାକୁରେ କ'ଣ ଜାତି ମାନନ୍ତି ? ସେ ସବୁ ସୃଷ୍ଟି ଭିଆଣ କରିଛନ୍ତି; ତାଙ୍କ ଅଗରେ ବଡ଼ ସାନ କିଏ ? ଜାତି ଅଜାତି କ'ଣ ? (୭୬ ପୃଷ୍ଠା)

ଏ ପ୍ରଶ୍ନ ଷାଠିଏ ବର୍ଷ ତଳର କୁସୁମପୁର ଗାଁର ବାଉରି ପିଲା ପାଣ୍ଡୁଆର ନୁହେଁ, ତା ଅଞ୍ଚଳର ଲକ୍ଷ ଲକ୍ଷ ଅଛୁଆଁ ଜାତିର ଗରିବ ଗୁରୁବାଙ୍କ କଥା । ସ୍ୱାଧୀନୋତ୍ତର ଭାରତ ବର୍ଷରେ ଅଜି ଯୋଉ ପ୍ରଶ୍ନର ଯଥାର୍ଥ ଉତ୍ତର ନ ପାଇ ହଜାର ହଜାର ହରିଜନ ଗିରିଜନ, ମୁସଲମାନ ବା ଖ୍ରୀଷ୍ଟିୟାନ ହେଉଛନ୍ତି * ହିନ୍ଦୁ ଧର୍ମର ବିଷମୟ ଫଳ ଅମେ ଭୋଗିଲୁଣି, ତଥାପି ପାଣ୍ଡୁଆଁ ଜାତିର ଲକ୍ଷ ଲକ୍ଷ ଭାଇ ବିରାଦରଙ୍କର ଏଇ ପ୍ରଶ୍ନ—"ଆମ ଘରେ କାହିଁକି କିଛି ପରବ ହୁଏ ନାହିଁ ? ସାଆନ୍ତ ଘରେତ ବାର ମାସକୁ ତେର ପରବ ଲଗିଚ, ସବୁବେଳେ ପିଠା ପଣା, ଖିରି ଖେଚେଡ଼ି, ଚୁଡ଼ାଘସା ଖିରି । ଆମର ଖାଲି ସିଗଧ । ବଡ଼ ବଡ଼ୁଆ ତାଳ । ସାଆନ୍ତେ ଘିଅ ବଉଡା ଟେକନ୍ତି—ଆମେ ଟେକୁ ଜଳନ୍ତା କାଉଁଶିଆ କାଠି ।""

"ବାଉରି ଘରେ ତ ସବୁବେଳେ ଅନ୍ଧାର, ବାଇଶି ପାହାଚରେ ବସି ତୋଉ ବାଉରି ମହାପ୍ରସାଦ ପାଇଚ !"

"ଜଗନ୍ନାଥ ଦାସିଆ ହାତରୁ ନଡ଼ିଆ ନେଲେ କେମିତ ? ସେ ଛୁଆଁ ଅଛୁଆଁ ମାନୁଥିଲେ ଏକଥା ହୋଇଥାନ୍ତା କେମିତ ?

* ୩୧।୭।୧୯୮୧ର "ସମାଜ" ସମ୍ବାଦ ପତ୍ରରେ ପ୍ରକାଶିତ 'ଧର୍ମ ପରିବର୍ତ୍ତନ ବୃନ୍ତ'

ଷାଠିଏ ବର୍ଷ ତଳେ ବାଉଶ୍ରି ପିଲ୍ ପାଣୁଆ ମନରେ ଯେଉଁ ଦୁଃଖ, ଯେଉଁ ଦ୍ୱନ୍ଦ୍ୱ, ଯେଉଁ ଅଭିଯୋଗ ଥିଲା, ତା'ର କ'ଣ ସମାଧାନ ହୋଇଛି ସ୍ୱାଧୀନୋତ୍ତର ଭାରତବର୍ଷରେ ? ଯଦି ନ ହୋଇଛି ତେବେ ଏଇ ଉପନ୍ୟାସଟିର କଥାବସ୍ତୁ ସେଇ ଦୃଷ୍ଟିରୁ ଚିରନ୍ତନ ଏବଂ ଉପନ୍ୟାସର ନାୟକ 'ପାଣୁଆ' ସେଇ ଦୃଷ୍ଟିରୁ ଏକ ସର୍ବକାଳୀନ ଚରିତ୍ର ବୋଲି ଆମେ କାହିଁକି ନ କହିବା ?

ଔପନ୍ୟାସିକ ଶ୍ରୀ ଦାଶ ପାଣୁଆକୁ ଏକ ବିପ୍ଳବ ଭାବାପନ୍ନ ଚରିତ୍ର ଭାବେ ଫୁଟେଇ ତୋଳିଛନ୍ତି ଗୋଟିଏ ଦୁଇଟି ଧାଡ଼ିରେ—ଗାଈଜଗା ଟୋକା ପାଣୁଆ ମନରେ ଏଇ ଘଟଣାଟି ଆନ୍ଦୋଳନ ସୃଷ୍ଟି କରେ । "ଥରେ ଅଛୁଆଁ ଚଣ୍ଡାଳଙ୍କୁ ଘେଞ୍ଚିଆ କଳାରୁ ଲକ୍ଷ୍ମୀ ଠାକୁରାଣୀ ବଳଦେବ ଜଗନ୍ନାଥଙ୍କୁ ପାନେ ଦେଇଥିଲେ ।"

ଏଇ ଘଟଣାଟିକୁ ଯେଉଁ ଚରିତ୍ର ସ୍ମରଣ କରେ ସେ ଚରିତ୍ର ଜଣେ ନିରୀହ ଗାଈଜଗା ଟୋକା ନା ଏକ ସାଙ୍ଘାତିକ ବିପ୍ଳବୀ-ଯେ ରକ୍ତ ଗୁହାଳ ଗେହ୍ଲାଏ ପ୍ରତିଶୋଧ ନେବାପାଇଁ ସମାଜର ନୀତି ବାଗୀଶଙ୍କଠୁଁ-ତା' ଅନୁଧ୍ୟାନ କରିବା କଥା ।

ମଙ୍ଗୁ ମକଦ୍ଦମେ ଯାତ୍ରୀ ବ୍ୟବସାୟ କରନ୍ତି । ସେ କାନପୁର ଯାତ୍ରା କଲେ । ପାଣୁଆଁ ମକଦ୍ଦମଙ୍କ ଘର ଛାଡ଼ିଲା ।

ପାଣୁକୁ ତା ବାପା ମହିନା ବନ୍ଧି କରାଇଲା ନେତକୁ ।

କାଳ ମନ୍ୱନ୍ତର ପଡ଼ିଲା ।

ବଳୀ ମକଦ୍ଦମଙ୍କ ପାଖାଚ ଛୁଇଁଲା ପାଣୁଆଁ । ବଳୀ ମକଦ୍ଦମେ ଗାଁ ଲୋକଙ୍କୁ ଧାନ କରଜ ଦେଇ କାଳ ମନ୍ୱନ୍ତରରେ ସାହା ଭରସା ହୁଅନ୍ତି ।

"ପାଣୁଆ ମକଦ୍ଦମଙ୍କ କଥାରେ କଥାରେ କାମ କରିଯାଏ । ଘରେ ପହଞ୍ଚୁ ପହଞ୍ଚୁ ସାଆନ୍ତଙ୍କ ବରାଦ୍ ବର ଓଳିଆ ଝାଡ଼ି ଦେ । ନଳା ମୁହଁଟା ଓଲେଇ ଦେ ।

ବଳୀ ମକଦ୍ଦମଙ୍କୁ ଡ଼ରି ମରି ପାଣୁଆଁ ସବୁ କରୁଥାଏ । କିନ୍ତୁ ମକଦ୍ଦମଙ୍କ ଅନ୍ୟାୟ ଅତ୍ୟାଚାରର ସୀମା ଟପିବାରୁ ପାଣୁଆଁ ଆଉ ସହି ପାରିଲା ନାହିଁ । ସେ ତା'ର ବିରକ୍ତି ଭାବ ପ୍ରକାଶ କଲା । ପ୍ରତିବାଦର ସ୍ୱର ଉଠାଇଲା ନିର୍ଭୀକ ଭାବରେ ।

କୋଠିରୁ ପ୍ରାୟ ପାଞ୍ଚ ଭରଣ ଧାନ କଢା ହେଲା । ଆଉ ଗୋଟିଏ କୋଠିରୁ ପାଞ୍ଚ ଭରଣ କଣ୍ଟା ଅଗାଡ଼ି ସବୁ ଗୋଳେଇ ପୋଳେଇ ଏକାଠି କରିବାକୁ ପାଣୁଆକୁ ହୁକୁମ ଦେଲେ ବଳୀ ମକଦ୍ଦମେ (୧୪୭ ପୃଷ୍ଠା) ।

ପାଣୁଆ କହିଲା "କୁଲା କୁଲେଇ ବାଛେଇ କଣ୍ଢା, ଅଗାଡ଼ି, ଧୂଳି ଅଲଗା କରି କୋଠିରେ ଧାନ ଭର୍ତ୍ତି କଲୁ । ସେଥିକୁ ଏବେ ମିଶାଇଲେ ପୁଣି ସେ ପାଛୁଡ଼ିବାକୁ ପଡ଼ିବ । କେତେ ମଣିଷ ଖଟିବେ ।"

ବଳୀ କହିଲେ; "ଆରେ ତୁ ସବୁ କଥା ମତେ ପଚାରୁଚୁ କାହିଁକି ? ଯାହା କହୁଚି କରଯା ।"

ପାଣୁଆଁ କହିଲା; ଆଗିଆଁ ମୁଁ କିଛି ପଚାରୁ ନାହିଁ । ମତେ ଲାଗୁଚି ଗୋଟାଏ ଦୋହରା କାମ । ଖଟା ବଢ଼ି ଥୋଡ ।

ବିରକ୍ତ ହେଲେ ବଳୀ ମକଦ୍ଦମେ । କହିଲେ, ତୁ'ଟା କେତେ ବୁଝା କୋହଳ କରେ ? କିଛି ବୁଝି ପାରୁନାହୁଁ । ଆରେ, ଧାନ ଆଉ କାହିଁ ? ଉପାସ ଭୋକରେ ଏତେ ଲୋକ ଯେ ଅଖା ଟୋକେଇ ଘେନି ପହଞ୍ଚୁଛନ୍ତି ତାଙ୍କୁ ଦେବ କ'ଣ ?"

କିଛି ଉତ୍ତର ଦେଲା ନାହିଁ ପାଣୁଆଁ । କିନ୍ତୁ ଭାବିଲା ମନକୁ ମନ—ସ୍ୱର୍ଗକୁ ନିଶୁଣି ନାହିଁ, ବଡ ଲୋକଙ୍କୁ ଜବାବ ନାହିଁ । କିଏ ଯେ ଆମ୍ବ ମାଗିଲା ତାକୁ ଆମ୍ବତା ଦେବ ? ହୁକ୍ ଟଙ୍କାଟ ଦେଲା, ତାକୁ ଧାନ ନ ଦେଇ ଦବ ଅଗାଡ଼ି, କଣ୍ଢା !

ପାଣୁଆର ଗାଈଜଗା ସହଜ, ସରଳ, ନିଷ୍ପାପ ମନ ଭିତରେ ଦେଖା ଦେଇଚି, ସର୍ବହରା ଶ୍ରେଣୀର ସେଇ ବିପ୍ଳବ-ଧର୍ମୀ ପ୍ରଶ୍ନ—ଥିଲା ବାଲାଏ କ'ଣ ଏତେ ନିଷ୍ଠୁର, ନିର୍ମମ, ଖଟିଖିଆ ମୂଲିଆଙ୍କ ପ୍ରତି ?

ହତାଶାରେ ଭାଙ୍ଗି ପଡ଼ିଲା ପାଣୁଆଁ । "କିଏ ଯେମିତି ଗ୍ରୁଡ ଟାଣ ସବୁ ବୁଦ୍ଧି ବିବେକ କାଢ଼ି ନେଇଚି, ତା'ର ମନେ ହେଲା । ସେ ଯେମିତି କ ପୁଳାଏ ଶୁଖିଲା ପିଠା ।"

ପାଣୁଆର ମନ ତାତି ଉଠିଲା, ବିଦ୍ରୋହର ନିଆଁ ଜଳି ଉଠିଲା ତା ଶିରା ପ୍ରଶିରାର ରକ୍ତେ ରକ୍ତେ । ସେ ପ୍ରଶ୍ନ କରୁଚି, ଚିତ୍କାର କରୁଚି, ଆର୍ତ୍ତନାଦ କରୁଚି "ଏଇ ଛି ଛୁଆକର କାମ କରି ଲୋକେ ବଡ ଲୋକ ହୁଅନ୍ତି ? ଯେ ଖାଇଲା ପତରରେ ଧୂଳି ଦିଏ କୋଉ ମୁହଁରେ ସେ ପୁଣି ଭଗବାନଙ୍କୁ ଡାକେ

ସମାଜର ଦୁଇଟି ଶ୍ରେଣୀ! ଥିଲା-ବାଲା ନ ଥିଲା-ବାଲା । ଧନୀ, ନିର୍ଦ୍ଧନ । ଅମୀର ଫକୀର ।

ଏଇ ଦୁଇ ଶ୍ରେଣୀର ଭାବନାରେ, ଚିନ୍ତାରେ ଆଉ କାର୍ଯ୍ୟ କଳାପରେ କପଟ ଦ୍ୱନ୍ଦ୍ୱ ଆଉ ସଂଘର୍ଷ ସୃଷ୍ଟି ହୋଇଛି ଔପନ୍ୟାସିକ ଶ୍ରୀ ଦାଶ ତାହା ବଡ଼ ଚତୁରତା

ସଂହତ ସହଜ ସରଳ ଭାଷାରେ, ଖୁବ୍ (ଡାଇନାମିକ୍) ଜୋରଦାର ବାକ୍ୟ ଦେଇ ଧାଡ଼ିରେ ବର୍ଣ୍ଣନା କରିଛନ୍ତି ।

ପାଣୁଆ ମନରେ ଯେତେବେଳେ ବଳୀ ମକଦ୍ଦମଙ୍କ କାର୍ଯ୍ୟ କଳାପରେ ଅବଶୋଷ ଆଉ ବିଦ୍ରୋହଭାବ ସେତିକିବେଳେ ବଳୀ ମକଦ୍ଦମଙ୍କ ମନରେ ଅପର୍ଯ୍ୟାପ୍ତ ଆନନ୍ଦ ଉଲ୍ଲାସ । ବୁଢିଆଣୀ ବସା ବୁଣୁଥାଏ । ନିଜ ସୂତା ଉପରେ ଥେଇ ଥେଇ ନାଚ ଗଲେ ପଡ଼ିଯାନ୍ତି କେତେ ନିରୀହ ପୋକ ମାଛି । ସେ ମନେ କଲେ ପାଣୁଆଁ ସେଥିରୁ ଗୋଟିଏ । ସେ ଲହୁ ଶୋଷିବା ଲାଗି ଦାନ୍ତ ଦେଖାଇ ଦିଏ । ବଡ଼ ଲୋକଙ୍କ ଧନ ବଢାନ୍ତି ଏମିତି ଲୋକ ( ପୃଷ୍ଠା-୧୪୭ ) ।

ଏଇ ଲେଖକଙ୍କର ମନେ ହୁଏ ଔପନ୍ୟାସିକ ଶ୍ରୀଯୁକ୍ତ ଦାଶ, ବୋଧହୁଏ ତାଙ୍କ ଅଜାଣତରେ ଏଇଠି ମାର୍କସବାଦୀ ହୋଇ ପଡ଼ିଚନ୍ତି । ଯଦି ଜାଣତରେ ହୋଇଥାନ୍ତି ତେବେ ଆମକୁ ସ୍ୱୀକାର କରିବାକୁ ପଡ଼ିବ ଯେଉଁ କୁନ୍ତଳବାବୁ ଆଜି ପର୍ଯ୍ୟନ୍ତ କବିତାର ସ୍ୱପ୍ନ ବିଳାସରେ, ଭ୍ରମଣ ପରିକ୍ରମାର ଆନନ୍ଦ ଉଲ୍ଲାସ ଭିତରେ, ଏବଂ ଗାଁଉଳି ଢଗ ଢମାଳିର ସାମନ୍ତ ଯୁଗୀୟ ହାସ ପରିହାସ ଭିତରେ ଅଳସ ଆରାମରେ ଶୋଇ, ବସି, ଧୀରେ ସୁସ୍ଥେ ଉଠି, ପାଦ ଗଣିଗଣି ଚାଲୁଥିଲେ, ହଠାତ୍ ଯେପରି ସେ ଚମକି ଉଠିଛନ୍ତି ଗୋଟାଏ ଟାଇମ୍ ବମ୍ବର ଆଓ୍ୱାଜ୍‌ରେ ।

କାରଣ, ଯାହା ଲେଖନୀରେ ଏଇ ମାର୍କସ୍‌ବାଦୀୟ ଚିନ୍ତାଧାରାର ବିସ୍ଫୋରଣ, ସେ ଯେ ଆଉ ସ୍ୱପ୍ନ ବିଳାସୀ କବି ହୋଇନାହାଁନ୍ତି, ଏହା ଏକ ଦୃଢ ନିଶ୍ଚିତ କଥା । ଏବଂ ସମାଜରେ ଏଇ ଶ୍ରେଣୀ ବୈଷମ୍ୟର ସାଙ୍ଘାତିକ ଭୋଡ଼ପାଡ, ଘଣ୍ଟା-ଚକଟା, ବିବାଦ ବିରୋଧର ନିର୍ମମ ସତ୍ୟକୁ ଉପଲବ୍ଧି କଲାପରେ ସେ ନିଶ୍ଚିତରୂପେ ଜଣେ ପହିଲା ନମ୍ବର ସଂଗ୍ରାମୀ ଭାବରେ ତାଂର ଯୁଦ୍ଧଂ ଦେହି କଦମ୍ ଉଠେଇଚ, ଏଥିରେ ବି ଆଦୌ ସନ୍ଦେହ ନାହିଁ ।

ଅବଶ୍ୟ ଶ୍ରୀ ଦାଶ, କାହାଣୀର ଶେଷ ପର୍ଯ୍ୟନ୍ତ ପାଣୁଆଁର ପ୍ରତିଦ୍ୱନ୍ଦ୍ୱିତାକୁ ବିପ୍ଳବ ଧର୍ମୀ କରି ଫୁଟେଇ ନାହାନ୍ତି ।

ବଳୀ ମକଦ୍ଦମଙ୍କ ପାଖରୁ ପାଣୁଆଁ ଚାଲିଯାଇଚ ।

କୁସୁମପୁର ଗାଁକୁ ଆସିଚନ୍ତି ଉତ୍କଳମଣି ଗୋପବନ୍ଧୁ । ସେତେବେଳେ ନିଅଙ୍କର କାରୁଣ୍ୟ ଘରିଆଡେ । ଗୋପବନ୍ଧୁ ଚୁଡା, ଚାଉଳ ଆଣି ବାଣ୍ଟୁଥିଲେ କୁସୁମପୁର ଗାଁର ଗରିବ ଗୁରୁବାଙ୍କୁ । ମହାତ୍ମା ଆସିଚନ୍ତି ବୋଲି ହୁରି ପଡ଼ିଲା । ସେଇ ଗାଁର ବୀରମହାନ୍ତି ଜଣେ ସମାଜ ସଂସ୍କାରକ । ଗୋପବନ୍ଧୁ ପ୍ରଶଂସା କଲେ ବୀର ମହାନ୍ତିଙ୍କୁ । ତାଙ୍କର ବାଗ୍ ବଗିଚା ଦେଖିଲେ, ତାଙ୍କ ବାଳିକା ସ୍କୁଲଟି ଦେଖିଲେ । କହିଲେ ପୁଣି ଝିଅଙ୍କର

କୋଉ ଗାଁକୁ ଯାଇନାହିଁ ? ଗୋଟେ ବାଳିକା ବିଦ୍ୟାଳୟ କରିବା ସାହସ ତ କେହି କରିନାହିଁ । ତୁମେ କେମିତି କଲ ?” ମହାନ୍ତିଙ୍କ ବଚିଗ୍ରି ଦେଖି କହିଲେ “ସତେ କ'ଣ ନନ୍ଦନ୍ନବନ ଓଲ୍ଟାଇ ଆସିଚ । ମୋ ସତ୍ୟବାଦୀରେ ତ ମୁଁ ଏମିତି ବଗିଚାଟିଏ କରିପାରି-ନାହିଁ । ତମେ କେମିତି କଲ ?” (ପୃଷ୍ଠା ୧୯୧)

ଏ ମହାତ୍ମାଙ୍କୁ ଦେଖିଲାକ୍ଷଣି ପାଣୁଆଁ ମନ କ'ଣ ହେଇଗଲା । × × ପାଣୁଆଁ ଆଉ ନେତ ଲମ୍ବି ହୋଇ ଗୋଡ଼ତଳେ ପଡ଼ିଗଲେ । ମହାତ୍ମା ହାତ ଧରି ଉଠାଇବା ବେଳେ ବୁଝିଆ କହିଲା—ଭେଇ ନୋକ, ଛୁଅଁ ନାହିଁ ଆଗିଆଁ । “ଛୁଆଁ ଛୁତ ମାନେ ନାହିଁ । ମୋ ଆଖିରେ ସବୁ ମଣିଷ ସମାନ । କେହି କାହାଠାରୁ ଶ୍ରେଷ୍ଠ ନୁହେଁ କି ବଡ ନୁହେଁ ।”-(ପୃଷ୍ଠା ୧୮୫) ମହାନ୍ତି ନଜେ ପାଣୁକୁ ଡାକ ବାଉଁଶ କଲା ଛଆଁରେ କରାଇଲେ (ପୃଷ୍ଠା ୧୯୩) ।

ପାଣୁଆଁର ମନ ପରିବର୍ତ୍ତନ ହେଇଥିଲା ଗୋପବନ୍ଧୁଙ୍କ ହାତର ସ୍ପର୍ଶ ପାଇ ।

ଗାଁର ସମାଜ ସଂସାରକ ବୀର ମହାନ୍ତିଙ୍କ ପାଖରେ ପାଣୁଆଁ ପାଇଲା ସ୍ନେହ, ମାୟା, ମମତା ।

ବୀର କୀର୍ତ୍ତନ ଗୀତ ଲେଖନ୍ତି । ଦେଖୁ ଦେଖୁ ବନିଗଲେ ଜଣେ କବି ଆଉ କୀର୍ତ୍ତନିଆଁ । ହାତେ ଝାଞ୍ଜ ଧରି ଗୀତ ବୋଲୁ ବୋଲୁ ସେ ଭାବରେ ଭୋଳ ହୋଇ କୀର୍ତ୍ତନ ମଣ୍ଡଳୀ ମଧ୍ୟରେ ଅଚେତା ହୋଇ ପଡ଼ିଯାନ୍ତି । କୃଷ୍ଣ ଭକ୍ତିରେ ପାଗଳ । (ପୃଷ୍ଠା ୨୧୬)

ପାଣୁଆଁକୁ ଏଇ ଧର୍ମ ଗୋଷ୍ଠୀ ପ୍ରଭାବିତ କଲା (ପୃଷ୍ଠା ୨୧୯) । ସେ ଦେଖିଲା ଗାଆଁରେ ଦୁଇଟି ମୁଖିଆ ଲୋକ । ଜଣେ କହୁଛୁ—ଧନ, ଧନ । ଧନରୁ ବଡ଼ କିଛି ନାହିଁ । ଧନ ଥିଲେ ସବୁ ଅଛି । ଧନ ଅର୍ଜିଲା ବେଳେ ପାପ ପୁଣ୍ୟ ଚିନ୍ତା ତାର ରହୁନାହିଁ । ବହୁତ ପାପ ହେଲେ ଧନ ଥିଲେ ପ୍ରାୟଶ୍ଚିତ କରିହୁଏ । ଏ ହେଉଛନ୍ତି ବଳୀ ମକଦ୍ଦମେ ।

ଆଉ ଜଣେ କହୁଛୁ-ଧର୍ମ ବଡ଼ । ଧର୍ମ ଅର୍ଜିଥିଲେ ନଜେ ସ୍ୱର୍ଗର ଦେବତା ମର୍ତ୍ତ୍ୟର ମଣିଷ ଘରକୁ ଆସନ୍ତି । ଇଏ ହଉଛନ୍ତି ସଂସ୍କାରକ ବୀର ମହାନ୍ତି ।

ଇଏ ଦୁଇଜଣଙ୍କ କଥା ପାଣୁଆଁ ଭାବେ । ବଗିଚାରେ କାମ କରୁ କରୁ ସେ ଭାବେ, “ଦାସିଆ ବାଉରି ପରି ଭଗତ ତା'ର କାହିଁ ଯେ ଭଗବାନ ଦେଉଳ ଭିତରୁ ଆସି ମୋ ହାତରୁ ନଡ଼ିଆ ନେଇ ଯିବେ ।”

ସେ କ'ଣ ସେମିତି ଭାଗ୍ୟବାନ ହୋଇ ପାରିବ ?

ତା'ପରେ ପାଣୁଆ ଭାବଚ; “ମୋ ଜୀବନର ଅର୍ଥ କ'ଣ ଦୁଃଖ ଭୋଗିବା ? ସମସ୍ତେ ଗୋଟିଏ ଦରିଦ୍ର ନାଆରେ ବସିଛନ୍ତି । ସବୁବେଳେ ଯାହାର ପେଟ ପୋଡ଼ି ଯାଉଚ, ସେ ଭଗବାନଙ୍କୁ ଡାକିବ କେମିତି ?

ଏଠି ପାଶୁଆ ଜଣେ ସାମ୍ୟବାଦୀ ।

"ଏ ଲୋକଙ୍କ ଦୁଃଖ ଯଦି ଦୂର କରି ପାରନ୍ତି" ।

ସାମ୍ୟବାଦୀ ପାଶୁଆର ସମାଜବାଦୀ ପ୍ରାଣମଯ୍ତା ଏବଂ ସେଇ ପ୍ରାଣମଯ୍ତା, ସେଇ ଦରଦୀ ମରମୀ ଅବୋଲ୍ଲା ଭିତରେ ପାଶୁଆ ଖୋଜିବ ଏ ଅନ୍ଧାରରେ କିଏ ମତେ ବାଟ ଦେଖାଇବ ?

—ବାଟ ଦେଖାଇବ ଏଇ ମାଟି !

ପାଶୁଆ ମୁହଁରେ ଔପନ୍ୟାସିକ ଶ୍ରୀ ଦାଶ ନିଜ ମନ ନିଜ ମତବାଦ କହିଛନ୍ତି; ଜିନ୍ନ କଥା ହେଲା ଦିନୁ ଲୋଟୁଚି ତା ଉପରେ । ଖଣ୍ଟି ଖଣ୍ଟି ମାଟି ସଙ୍ଗେ ମାଟି ହେଇଚି ।

"ଏ ଜୀବନ କାହାପାଇଁ ବୋହୁଚ ? ସୂରୁଯ ଦେବ କାହାପାଇଁ ଉଦେ ହେଉଚନ୍ତି ।"

—ସବୁ ପର ପାଇଁ । ସବୁ ଯଦି ପର ପାଇଁ, ମୁଁ କାହିଁକି ବଞ୍ଚିବ ନିଜ ପାଇଁ ?

ପାଶୁଆର ଆସିଚି ବୈରାଗ୍ୟ । "ଦ୍ୱିନ ନିବେଣି ପନ୍ତୀ ପାଣେ, ଅଥବା ଚଳିବ ସନ୍ନ୍ୟାସେ"

ପାହାନ୍ତାରୁ ଉଠି ଘରୁ ଗ୍ଲଲି ଯାଇଚି ପାଶୁଆଁ । ଶ୍ରୀ କ୍ଷେତ୍ରରେ ଜଗନ୍ନାଥ ଦର୍ଶନ ପରେ, ସେ ଭ୍ରମି ଗ୍ଲଲିଚି ତୀର୍ଥରୁ ତୀର୍ଥ ।

ତା' ପରେ ଦିନେ ଫେରି ଆସିଚି ସେଇ କୁସୁମପୁର ଗାଁକୁ ବାବା ପ୍ରାଣବନ୍ଧୁ ଦାସ ହେଇ ।

ଗାଁ ଲୋକେ ତଟସ୍ଥ ହୋଇଚନ୍ତି । ସେଦିନର ଗାଈ ଜଗା ଟୋକା, ବାଡ଼ି ବଟିଗ୍ଲର ମାଳୀ, ଏବେ ସିଦ୍ଧ ପୁରୁଷ, ମହାତ୍ମା" ।

ପାଶୁଆଁ ଚରିତ୍ରର ପରିଣତି ଦେଖାଇଚନ୍ତି ଔପନାସିକ-ତାକୁ ଜଣେ ମହାତ୍ମା କରି ।

ଇଏ ହେଲା ଆଦର୍ଶର କଥା !

ଉପନ୍ୟାସଟିକୁ ବାସ୍ତବମୁଖୀ କରି ଲେଖି ଆଣି, ଚରିତ୍ରଗୁଡ଼ିକୁ ଖୁବ୍ ଜୀବନ୍ତ କରି ଗଢିଆଣି, ବଳୀ ମକଦ୍ଦମଙ୍କୁ ଏକ ଚନ୍ଦ୍ରାନ୍ତକାରୀ ଶୋଷକ ରୂପେ ଛିଡ଼ାଦେଇ ଶ୍ରୀ ଦାଶ ଯେତକ ବାସ୍ତବଧର୍ମୀ ଲେଖକରୂପେ ଆତ୍ମ ପ୍ରକାଶ କରିଚନ୍ତି—ଗାଈ ଜଗା ପାଶୁଆଁକୁ ଏକ ମହାତ୍ମା ରୂପେ ଆବିର୍ଭାବ କରାଇ ତା ଚରିତ୍ରର ଅସାଧାରଣ ବ୍ୟକ୍ତିତ୍ୱକୁ ବଡ଼ କରି ଥୋଇ ସେତକ ଆଦର୍ଶବାଦର ଜୈନିବାନା ଉଡ଼ାଇବା ଭିତରେ ଏକ ପୋଖତ ଶିକ୍ଷାବିତ୍ତର ଭୂମିକାରେ ଅବତୀର୍ଣ୍ଣ ହେଇଚନ୍ତି, ଏ ଲେଖକର ଏହାହିଁ ଅନୁଶୀଳନ, ଏହାହିଁ ବିଶ୍ଳେଷଣ ।

ଦ୍ୱିତୀୟ ଉପନ୍ୟାସ :

# ।। ମଣିମା ଶୁଣିମା ହେଉ !

# ଉପନ୍ୟାସର କଥା ।।

**ଶ୍ରୀ ସୁଧୀର ଚନ୍ଦ୍ର ବେହୁରା**

[ 'ମଣିମା ଶୁଣିମା ହେଉ !', ଉପନ୍ୟାସ । ଲେଖକ—ଲୋକରତ୍ନ ଉତ୍କଳ କୁଞ୍ଜବିହାରୀ ଦାଶ, ପ୍ରକାଶକ : ଓଡ଼ିଶା ବୁକ୍ ଷ୍ଟୋର୍, ବିନୋଦବିହାରୀ, କଟକ-୨; ପ୍ରକାଶକାଳ—୧୯୮୧, ମୂଲ୍ୟ—ଚବିଶ ଟଙ୍କା ମାତ୍ର । ]

"କୃଷକ ତରୁଣୀ ଗୋଟିଏ ଯେ, ବଡ ଅସ୍ଥିର କରୁଛି ମୋତେ,—ସବୁ ଗ୍ରନ୍ଥ ତାର ଚର୍ଚ୍ଚା ନ କଲେ ।"

'କୈବଲ୍ୟ' ପୃଷ୍ଠାରେ ପ୍ରକାଶିତ ଆଲୋଚ୍ୟ ଉପନ୍ୟାସର କେତୋଟି ପରିଚ୍ଛେଦ ପଢ଼ି ବାଲେଶ୍ୱରର 'ଜଣେ ପାଠକ'ଙ୍କ ମନ୍ତବ୍ୟର ଉତ୍ତର ମାତ୍ର ନୁହେଁ, କଥାକାର କୁଞ୍ଜବିହାରୀଙ୍କର ଏହା ମରମ କଥା । କାବ୍ୟ କବିତା, ସମାଲୋଚନା, ଚରିତ ସାହିତ୍ୟ ଓ ଭ୍ରମଣ କାହାଣୀ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜିଥିବା ସାହିତ୍ୟରଥୀଙ୍କର ସାହିତ୍ୟର ଆଉ ଗୋଟିଏ ନୂଆ କ୍ଷେତ୍ର ଉପନ୍ୟାସରେ ପ୍ରବେଶର ଆଦ୍ୟ ପର୍ଯ୍ୟାୟର ବିନମ୍ରୋକ୍ତି । ଏହା ତାଙ୍କର କଥାସାହିତ୍ୟ ରଚନାର ଆଦ୍ୟ ଉଦ୍ୟମ କହିଲେ ଭୁଲ୍ ହେବ । ଏ କ୍ଷେତ୍ରରେ କୁଞ୍ଜବିହାରୀ ଏଥି ପୂର୍ବରୁ ଦୁଇଟି ଉଦ୍ୟମ କରିଛନ୍ତି । ପରିସ୍ଥିତିର ଗୁପ୍ତରେ ଗୋଟିଏ ଅସଫଳ, ଅନ୍ୟ ଦୁଇଟି ସଫଳତାର ଶୀର୍ଷ ଚୁମ୍ବିବା ଦିଗରେ ଅଗ୍ରଗାମୀ ।

ଆଦ୍ୟ ଯୌବନରେ ଗ୍ରାମରେ ଅବସ୍ଥାନ କାଳରେ କବି ୧୯୪୦ ମସିହା ବେଳକୁ 'କର୍ମଫଳ' ନାମରେ ଉପନ୍ୟାସଟିଏ ଲେଖିଥିଲେ । 'ମୋ କାହାଣୀ'ରୁ 'କର୍ମଫଳ'ର ପରିଶିଷ୍ଟ ଓ ଔପନ୍ୟାସିକଙ୍କ ସ୍ୱୀକାରୋକ୍ତିରୁ ଜଣାଯାଏ, "ଏଥିରେ ଅଛନ୍ତି ଗାଆଁର ଜମିଦାର, ଦୁଃଖୀ ଗରିବ ପ୍ରଜା, ଠାକୁର ଗୋପୀନାଥ, ପଞ୍ଚାୟତରେ ବସୁଥିବା 'ଭଲଲୋକ', ଗାଆଁ ସ୍କୁଲ ମାଷ୍ଟ୍ରେ, ସାହୁକାର ଖାତକ, ୧୯୨୧ର ଦୁର୍ଭିକ୍ଷ, ଉତ୍କଳମଣିଙ୍କ ସେବା" ଇତ୍ୟାଦି ନାନା କଥା । ଲେଖକଙ୍କ କଲିକତା ଜୀବନର ଚିତ୍ର ଓ ତତ୍କାଳୀନ ସମାଜର ଦୁରବସ୍ଥାକୁ ସେ ଏଥିରେ ରୂପ ଦେଇଛନ୍ତି । ଧନିକର ଅଙ୍ଗୁଳି ଇଙ୍ଗିତରେ ଶୃଙ୍ଖଳିତ ସମାଜକୁ ବଦଳାଇବାକୁ ଚାହିଁଛନ୍ତି । ଅତ୍ୟାଚାରୀର ଶାସ୍ତିବିଧାନ, ସତ୍ୟ ନ୍ୟାୟ-

ଧର୍ମର ପ୍ରତିଷ୍ଠା ହୋଇଛି ଏଥିରେ । ସେ କାଳର ଉପନ୍ୟାସକୁ ଆଖିରେ ରଖିଲେ, ଏଥିରେ ବିଷୟବସ୍ତୁର ସେତେ ନୂତନତା ନ ଥିଲେ ବି ଅନୁଭୂତିନିଷ୍ଠତା ଓ ମନୋରମ ପ୍ରକାଶ ଶୈଳୀ ଲକ୍ଷ୍ୟ କରିବାର କଥା । ପ୍ରକାଶକଙ୍କ ନିକଟରେ ଏହାର ଓଜନ ଉଠିଲା ନାହିଁ । କଲିକତା ଉପନ୍ୟାସର (ବିକଟ ଯୌନଚର୍ଯ୍ୟା, ଜନାକାଣ୍ଡ, ଚୌର୍ଯ୍ୟ, ମଣିଷମାରୁ, ହରଣଚାଲ ଆଦି ଶସ୍ତା ବିଷୟ-ଗର୍ଭିତ ଲଘୁ ପାଠକଙ୍କ ପାଇଁ ଉଦ୍ଦିଷ୍ଟ ଉପନ୍ୟାସକୁ କୁଞ୍ଜବିହାରୀ ଏହି ନାଁ ଦେଇଛନ୍ତି) ପ୍ରକାଶକ ଏହା ଛାପିଲେ ନାହିଁ ।

ପ୍ରଥମ ପ୍ରୟାସର ଏପରି ଦୁର୍ଦ୍ଦଶା, ସେ ହତପ୍ରଭ କୁଞ୍ଜବିହାରୀଙ୍କ ମନ ଛୁ' କରିଦେଲା । ନୂଆକରି ସାହିତ୍ୟ ସାଧୁଥିବା ସାଧକଟିଏ କେତେ ସରାଗରେ ଉପନ୍ୟାସର ବାତାୟନ ଦେଇ ଦୁନିଆଁକୁ ଦେଖୁଥିଲା—ନୂଆ କରି ଠୁକୁରୁ ଠୁକୁରୁ ଚାଲି ଶିଖୁଥିବା କୁନି ଛୁଆଟିଏ କଅଁଳ ମନରେ ଅସରନ୍ତି ସରାଗ ନେଇ ଦୁନିଆଁ ଦେଖିଲା ପରି । ଅବିବେକୀ ପ୍ରକାଶକ-ବାପର ନିଷ୍ଠୁର ହାତ ଆସି ସେ ଦୁଆର ଧଡ଼୍ କରି ବନ୍ଦ କରିଦେଲା । ସେହି ଗୋଟିଏ ଦୁଆର ନୁହେଁ, ଜଣିଏ ବାପର ଯୋଡ଼ିକ ହାତ ନୁହେଁ, ସରାଗୀ ସାହିତ୍ୟିକ-ଶିଶୁର କୁନି କୋଠରିଟିରେ ସହସ୍ର ବାତାୟନ···ତାକୁ ଖୋଲିବାକୁ ସାରା ଦୁନିଆଁର ଅଗଣନ ଶୁଭଚିନ୍ତକଙ୍କ ଅସୁମାରି ହାତ ଲମ୍ବି ଆସେ । ଚଗଲା ପୁଅର ମନ ଆକଟ ମାନେ ନାହିଁ । ଲୋଡ଼ା ପଡ଼ୁଥିବା ଅସଲ କଥା ହେଲା—ସରାଗକୁ ଜିଆଇ ରଖିବା । କୁଞ୍ଜବିହାରୀ ତାହା ପାରିଲେ । ସରାଗ ଛୁ'କୁ ଛପେଇ ଦେଲା; ମନ ତଳେ ଚାଆଁଳି ଦେଲା ନିଜକୁ, ଜଗତକୁ ଦେଖିବାର, ଲେଖିବାର ଚମକଛୁଆଁ ତାଗିଦା ।

କଥା ସାହିତ୍ୟର ଦୁଆର ସିନା ମନା ହେଲା, କାବ୍ୟକବିତା ରଚନା, ଲୋକ-ସାହିତ୍ୟ ସଂଗ୍ରହ ଓ ସମୀକ୍ଷାରେ ଆପଣାକୁ ନିୟୋଜିତ କଲେ କୁଞ୍ଜବିହାରୀ । ଗାଆଁ-ଗହଳୀର ପ୍ରାଣ ଉଚ୍ଛୁଳା ଜନଜୀବନରୁ ଅସଂଖ୍ୟ କଥାକାହାଣୀର ମଣିମୁକ୍ତା ସାଉଁଟିଲେ । କଥାଟିଏ କହୁଁ (ଦୁଇଖଣ୍ଡରେ, ୧୯୫୭) ଓ ଲୋକଗଳ୍ପ ସଞ୍ଚୟନ (୧୯୬୭)ରେ ସେ ସବୁ ସ୍ଥାନ ଘେନିଲା । କଥା ସାହିତ୍ୟର ମଧୁରିଆ ସୁଆଦ ଏହି ସଂଗ୍ରହ ଓ ସଂକଳନ ମାଧ୍ୟମରେ ସେ ଚାଖିଲେ, ଖୋଇଲେ ଜନସମାଜକୁ । ଅଭାବୀ ନିମ୍ନ ମଧ୍ୟବିତ୍ତ ପରିବାରରେ ଜନ୍ମି ଥିଲେ, ପୁଣି ଯାବତୀୟ ଗୃହକର୍ମ ଅବସରରେ ଶୈଶବ ଓ କୈଶୋର କାଳରେ ଗାଆଁ ମାଟି ସହ ନିବିଡ଼ ସମ୍ପର୍କ ଆସିଥିଲେ । ପ୍ରବାସରେ ବଙ୍ଗବାସ କାଳରେ କଲିକତାରେ ପ୍ରବାସୀ ଓଡ଼ିଆ, ଜୀବନ ସଂଗ୍ରାମ ପଥରେ କଲିକତା ବ୍ରଜବନ୍ଧୁ ନୈଶ-ବିଦ୍ୟାଳୟ, ବାରିପଦା ଉଚ୍ଚବିଦ୍ୟାଳୟର ଶିକ୍ଷକତା ଓ ତାଳଚେର ରାଜପୁତ୍ରମାନଙ୍କର ଗୃହଶିକ୍ଷକ ଥିବା ଯୋଗୁଁ ରାଜସାନ୍ନିଧ୍ୟ ଏବଂ ସଂସ୍କୃତ ବିଭାଗର ସୁପରିଣ୍ଟେଣ୍ଡେଣ୍ଟ ଭାବରେ ଓ ଲୋକସାହିତ୍ୟ ସଂଗ୍ରହ ଲକ୍ଷ୍ୟରେ ସାରା ଓଡ଼ିଶା-ଭ୍ରମଣ ଏ ମାଟି ସହ ତାଙ୍କର ସମ୍ପର୍କକୁ ନିବିଡ଼ତର କଲା । ଜନଜୀବନ ସହ ଏହି ନିବିଡ଼ ସମ୍ପର୍କ ତାଙ୍କୁ ଆଧୁନିକ

ମାନବର 'ଜୀବନବେଦ' ରଚିବାକୁ ପ୍ରେରଣା ଯୋଗାଇଲା । ଜୀବନର ଲମ୍ବା ଚଲାବାଟରେ ବହୁରଙ୍ଗୀ ବିଚିତ୍ର ଅନୁଭୂତିର ରତ୍ନ ସାଉଁଟି ଆପଣାର ଆତ୍ମକାହାଣୀରେ ସଞ୍ଚୟ କଲେ । ଆପଣା ଅଜାଣତରେ ପାଲଟି ଗଲେ 'ଗଳ୍ପ-ସାଗର'ଟିଏ । ଅଗଣିତ ପାଠକ ଅବୋଲକରା'ଏ ଏହି ପ୍ରିୟ କଥାକାର ସାଆନ୍ତଙ୍କ କଥାର କମ୍ବଳ ପକାଇ, ବାକ୍‌ଚାତୁରୀର ଛଡା ଯୋଡି ବହୁବାର ବସାଇଲେ, ଯେଉଁଭଳି ବସାଇଥିଲେ ସେମାନଙ୍କ ବାପେ ଗୋସାଇଁବାପେ ଗୋପାଳ ପ୍ରହରାଜ ଆଉ ଫକୀରମୋହନଙ୍କୁ । ଜୀବନର ପଡନ୍ତ ପହରରେ ଜୀବନ ଓ ଜଗତ୍ ସମ୍ପର୍କରେ ସାମଗ୍ରିକ ଅନୁଭବକୁ ଫକୀରମୋହନ ପ୍ରକାଶ କରିଥିଲେ କଥା ସାହିତ୍ୟ ମାଧ୍ୟମରେ । ଆତ୍ମଜୀବନୀ ମଧ୍ୟରେ ଯେଉଁ ଅନୁଭୂତି ପ୍ରକାଶିବାର ସୁଯୋଗ ପାଇ ନ ଥିଲେ, ତହିଁରୁ ମରମଛୁଆଁ କେତୋଟିକୁ ନେଇ କଥାସାହିତ୍ୟର ବଉଦଛୁଆଁ ସଉଧ ନିର୍ମାଣିଲେ; ବ୍ୟାସକବି ପାଲଟିଲେ କଥାସମ୍ରାଟ୍ । ସେଇ ଇତିହାସର ପୁଣି ପୁନରାବୃତ୍ତି ଘଟିଛି କବି କୃଷ୍ଣବିହାରୀଙ୍କଠାରେ । ଫକୀରମୋହନଙ୍କଠାରୁ ଆହୁରି ପରିଣତ ବୟସରେ, ପ୍ରାକ୍ ସତୁରିର ଶିଥିଳ ଲଗ୍ନରେ, ବିପୁଳ ଅନୁଭୂତି ଓ ବିଶ୍ୱସ୍ତ ଅନୁଭବକୁ ପୁଞ୍ଜି କରି କୃଷ୍ଣବିହାରୀ ରଚନା କଲେ ହସକାନ୍ଦର ଗପ (୧୯୭୮), ମଶାଣି ତୁଳସୀ (୧୯୮୦) ଓ ମଣିମା ଶୁଣିମା ହେଉ (୧୯୮୧) ।

କୃଷ୍ଣବିହାରୀଙ୍କ ପ୍ରଥମ ପ୍ରକାଶିତ ଉପନ୍ୟାସ 'ମଶାଣି ତୁଳସୀ'ର ନାୟକ ପାଣୁଆର ଆତ୍ମୋପଲବ୍ଧି ଓ ଆତ୍ମୋନ୍ନତି ଆଧ୍ୟାତ୍ମିକ । ଦାରିଦ୍ର୍ୟର ତାଡନା, ସମାଜରେ ଥିଲା-ନଥିଲାବାଲା ମଧ୍ୟରେ ଆର୍ଥନୀତିକ ବୈଷମ୍ୟ ଓ ଉଚ୍ଚଜାତି-ନୀଚଜାତି ମଧ୍ୟରେ ଥିବା ସାମାଜିକ ବାଧାବନ୍ଧନ ତାକୁ ବିପ୍ଳବୀ କରିଛି । ତା' ଆଖି ଖୋଲିଛି । ଆମେ ଯେଉଁମାନେ ତଥାକଥିତ ପାଠୁଆ, ପଢୁଆ, ଆପଣାର ଜାଣିବା ପଣର ଉଚ୍ଚତା ମାପି ବାହାଦୁରୀ ମାରୁଁ; ଗାଁ ଗଣ୍ଡାର ଶ୍ରମଜୀବୀ ଉପରେ ଅଶିକ୍ଷିତ, କିନ୍ତୁ ଜୀବନର ବିପୁଳାୟତନ ଶିକ୍ଷା କ୍ଷେତ୍ରରେ ଆମ ଠାରୁ ବହୁଗୁଣରେ ଶିକ୍ଷିତ 'ରାମା ଦାମା-ଶାମା'ଙ୍କୁ ହୀନ ମଣୁଁ, ସେମାନେ ଆମ ପରି ଗ୍ରୁମୁ ମଣିମାମାନଙ୍କର ଶୋଷଣ ସମ୍ପର୍କରେ କିଛି ବୁଝିପାରୁ ନାହାନ୍ତି, ହୁଣ୍ଡା ବୋଲି ହେୟ ଭାବୁଁ, ସେମାନଙ୍କର ଯେ ଜୀବନବୋଧ ଅଛି, ଆମଠାରୁ ବହୁ ଗୁଣର ଉଚ୍ଚମାନର ଅନୁଭବବାର, ଅଙ୍ଗୀକାର କରିବାର, ଆତ୍ମବିଶ୍ୱାସକୁ ଆପଣାର କରିବାର ଓ ସେହି ମାର୍ଗରେ ଚାଲିବାର ସତ୍‌ସାହସ ଅଛି—ତାହା ହେଲା 'ମଶାଣି ତୁଳସୀ'ର ପ୍ରାଣବାଣୀ । ସ୍ୱୟଂ ଔପନ୍ୟାସିକଙ୍କ ମତରେ—ଆତ୍ମପ୍ରଚେଷ୍ଟାରେ ହରିଜନର ଦ୍ୱିଜତ୍ୱ ଏହି ଉପନ୍ୟାସର ନିର୍ଯ୍ୟାସ ।

କୃଷ୍ଣବିହାରୀଙ୍କ ଆଲୋଚ୍ୟ ଦ୍ୱିତୀୟ ଉପନ୍ୟାସ 'ମଣିମା ଶୁଣିମା ହେଉ' ସେହି କାହାଣୀର ଏକ ଅପରାନ୍ତ ଅଂଶ । ଆଉ ଏକ ଭିନ୍ନ ପୃଷ୍ଠଭୂମିରେ ପାଣୁଆ ଭଳି ଆଉଜଣେ ନିରୀହ ଗ୍ରାମୀଣ ଶ୍ରମଜୀବୀ ରତନାର ଦ୍ୱିଜତ୍ୱର କାହାଣୀ । 'ମଶାଣି ତୁଳସୀ'ର

ମଙ୍ଗୁ ମକଦ୍ଦମ, ବଳୀ ମକଦ୍ଦମ, ବୀରମହାନ୍ତି, ଗୋପବନ୍ଧୁ ପାଣ୍ଡିଆଙ୍କୁ ହରବୋଲ ବାବାରେ ପରିଣତ କରିଛନ୍ତି, ମଣିମା ଶୁଣିମା ହେଉ'ରେ ତାଳମୂଳ ଦେଶର ବୁଢ଼ା ସାଆନ୍ତଙ୍କ ମୂଲିଆ— ରତନା; ତା ମଣିମା ବୁଢ଼ା ହାଟନୁଆଣିଠାରୁ ତାଙ୍କ ନେଣିମା ରଜା-ଜମିଦାରଙ୍କ ସତ ଜୀବନ କାହାଣୀ ଓ ତା' ଗାଁ ଭାଇଙ୍କର ସତ-ମିଛ ମିଶା ଲୋକକାହାଣୀରୁ ରଜାମହାରାଜାଙ୍କ ସମ୍ପର୍କରେ ଯେଉଁ ଧାରଣା ଜନ୍ମାଇଛି, ତାକୁ ଚର୍ଣ୍ଣି ଧନ କରି ଏବର ଗ୍ରାମ୍ୟ ମଣିମା ମନ୍ତ୍ରୀମାନଙ୍କର ଜୀବନଧାରାକୁ ଚିତ୍ରିଛି । ସ୍ୱାଧୀନ ଭାରତରେ ପ୍ରଜାତନ୍ତ୍ର ନାମରେ ଯେଉଁ ଛଦ୍ମ ରାଜତନ୍ତ୍ର ଚାଲିଛି, ତାହାର ଉଦ୍ଭବକଥା ଲେଖିଛି ସେ । ପେଟପାଳିବାକୁ କ୍ଷେତମୂଲିଆରୁ ଖଣି-ମଜୁରିଆ ସାଜିଛି ସେ । କୋଇଲା ଖଣିର ନାକଭୁଙ୍ଗା ପରିବେଶ ତା ଜୀବନ ପ୍ରତି ବିପଦ ହୋଇଛି ସିନା, ଗାଁର ସେନେହ-ସରାଗ-ସପନରେ ତା ମନ ଭୁଙ୍ଗା ହୋଇଯାଇଛି । ଯା' ମୁହଁରେ ଖଇବାଣ ଫୁଟୁଥିଲା, ସଙ୍ଗୀମୂଲିଆରୁ ମଣିମା-ସାଆନ୍ତଙ୍କ ଯାଏ ଯିଏ ଗଳ୍ପସାଗରର ସନମାନ ପାଉଥିଲା, ଘୋର ଦୁଃଖ ଭିତରେ ନିଜ ଗାଆଁରେ ଯିଏ କେତେ କେଜାଣି ସୁଖ ଭୋଗୁଥିଲା, ଲୁହ ଭିତରେ କି ରସ ଥିଲା ଯେ ସେଥିରେ ତା ଜୀବନ ଉଲ୍ଲାସରେ ଉବୁଟୁବୁ ହେଉଥିଲା, ସେଇ ଜୀବନରୁ ସବୁ ସରସତା ଉଭେଇ ଗଲା ଖୁଲୁବୁଲୁ ପାଟିରେ ତାର ଶିଳ୍ପ ସଭ୍ୟତା ଓ ଜନ ହୁଭଂତାର ତାଲି ପଡ଼ିଲା । ଏଇମତ ଶୃଙ୍ଖଳା ଠକଠକ ଜୀବନରୁ ସିଏ ମୁକ୍ତି ଖୋଜିଲା । ବିପ୍ଳବୀ ହେଲା ପାଣ୍ଡି ଦାସ ପରି ନରମପନ୍ଥୀ ଅଧ୍ୟାତ୍ମବାଦୀ 'ହରବୋଲ ବାବା' ନୁହେଁ, ମଣିଷମାରୁ ହେବା ସିଦ୍ଧାନ୍ତ ନେଲା··· ···ମଣିମା (ମନ୍ତ୍ରୀ) କାନରେ ତା ଗୁହାରି ନ ବାଜିଲେ ବି ବନ୍ଧୁକର ଆବାଜ ବାଜିଲା ।

'ମଣିମା' କେବଳ ଶୁଣନ୍ତି ନାହିଁ । ଶୁଣିବା ପାଇଁ ମଣିଷ ହେବା ଲୋଡ଼ା ।ମଣିମା ସବୁବେଳେ ମଣିମା । ମଣିଷ ହେଲେ ବି ମଣିମା ଥିବାଯାଏ ସେମାନେ ନିଜକୁ ମଣିଷ ବୋଲି ଭାବନ୍ତି ନାହିଁ । ଭାବନ୍ତି ମଣିଷ ଠାରୁ ଆହୁରି ବଡ଼, ସମସ୍ତଙ୍କ ଭାଗ୍ୟନିୟନ୍ତା । ସେ ସାଆନ୍ତ ହୁଅନ୍ତି, ମକଦ୍ଦମ ହୁଅନ୍ତି: ରଜା, ସମ୍ରାଟ, ମନ୍ତ୍ରୀ, ହାକିମ କେତେ ନାଁ ଧରି ଆପଣାର କରଣୀ ଖଟାନ୍ତି । ସିଆଣିଆ ମଣିଷ ବୋଲି ଆପଣାର ଭିଆଣ ବଳରେ ଶାସନ, ବ୍ୟସନ, ଦୈନନ୍ଦିନ ଜୀବନଯାପନ—ସବୁଥିରେ ଆପଣାର ବଡ଼ିମାପଣ, ଜଘନ୍ୟ ସ୍ୱାର୍ଥପରତା ପ୍ରକଟାନ୍ତି । ଏ ସମସ୍ତ ଆଡ଼ମ୍ବର ବିଡ଼ମ୍ବନାରେ ପରିଣତ ହୁଏ । ସମସ୍ତ ସମ୍ଭ୍ରମ ସତ୍ତ୍ୱେ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ମଣିଷ ନ କହି ଅମଣିଷ କହିବାକୁ ମନ ବଳେ ।

ଏ ମର୍ମକଥାକୁ 'ମଣିମା ଶୁଣିମା ହେଉ'ର ସାରକଥାଭାବେ ଔପନ୍ୟାସିକ ବଖାଣିଛନ୍ତି । କପିଳେନ୍ଦ୍ର ଶାସିତ ସ୍ୱାଧୀନ ଓଡ଼ିଶାଠାରୁ ମରହଟ୍ଟା, ଇଂରେଜ-ପଦାନତ ଏବଂ ସ୍ୱାଧୀନ ଭାରତର ଅଂଶବିଶେଷ ଭାବରେ ଗଡ଼ଜାତ ରାଜ୍ୟ-ଶାସକମାନଙ୍କର ରାଜତ୍ୱର, ବିଶେଷ କରି ରାଜାମାନଙ୍କର ଜୀବନର ବିଶେଷ ଘଟଣାବଳୀ ଉପନ୍ୟାସରୁ କଥାଭାବ । ତାଳମୂଳ ରାଜ୍ୟର ପ୍ରତିଷ୍ଠାତା ପୃଥ୍ୱୀରାଜସିଂହଠାରୁ, କ୍ଷେତ୍ରବର ଲୋକନାଥ,

ଢୋଲଗୋବିନ୍ଦ, ସୁରେନ୍ଦ୍ର, ମହାବୀର, ପ୍ରୀତିଚନ୍ଦ୍ର, ପୂର୍ଣ୍ଣଚନ୍ଦ୍ର, ଈଶ୍ୱରଚନ୍ଦ୍ର, ଉଦୟଚନ୍ଦ୍ର, ଓ କୀର୍ତ୍ତିଚନ୍ଦ୍ର ଯାଏ ସମସ୍ତଙ୍କ ଶାସନର ସ୍ମରଣୀୟ ଘଟଣା ପ୍ରସଙ୍ଗକ୍ରମେ ଉପନ୍ୟାସର ପରିସର ଭିତରକୁ ଆସିଛି । ପ୍ରାୟ ସବୁ ରାଜପରିବାରରେ ଘଟୁଥିବା ବୃଥା ଆଡମ୍ବର, କୂଟକପଟ, ଷଡ଼ଯନ୍ତ୍ର, ବୀରତ୍ୱ ପ୍ରଦର୍ଶନ ଲିପ୍ସା, ମନମୁଖୀ ବିଚାରର ଚିତ୍ର ସନ୍ନିବେଶିତ ହୋଇଛି । ଲୋକନାଥଙ୍କ ତାଳମୂଳେଶ୍ୱରୀ ଥାପନା, ଢୋଲଗୋବିନ୍ଦଙ୍କ ପ୍ରଜାପ୍ରୀତି ଯଜ୍ଞ ଓ ପୂର୍ଣ୍ଣଚନ୍ଦ୍ରଙ୍କ ସୁଶାସନ ଏ ରାଜବଂଶ ପ୍ରତି ଯେତିକି ଶ୍ରଦ୍ଧା ଆଣେ, ସୁରେନ୍ଦ୍ରଙ୍କ ବିମାତା ଉଦୟମଂଜରୀଙ୍କ କୂଟ ଓ ସେଥିଯୋଗୁଁ ତାଙ୍କ ପ୍ରତିହିଂସାପରାୟଣତା ସେତିକି ଅଶ୍ରଦ୍ଧା ଜନ୍ମାଏ । ଦଣ୍ଡସ୍ୱରୂପ ବାଙ୍କିଆଣୀ ରାଣୀମା ଲାବଣ୍ୟମଂଜରୀଙ୍କୁ ବହିଷ୍କାର, ଦାସୀ ମଦନକାଳୀର ଏକ ଦିନ କର୍ତ୍ତନର ଦଣ୍ଡବିଧାନ ରାଜମହଲର ସୂଚନା ଦିଏ । ଗୁଣସାଗର ମହାବୀର କେଶରୀଙ୍କ ଇଂରେଜ ରାଜଭକ୍ତି ଦୋହଲା ରାଜ ଅସ୍ତିତ୍ୱର ନିଶାଣ । ଏହିଭଳି ରାଜାଙ୍କ ପ୍ରତି ଔପନ୍ୟାସିକଙ୍କ ଉଚିତ ଆକ୍ଷେପୋକ୍ତି: "ରାଜାମାନେ ଦେଶୀୟଙ୍କ ଆଗେ ଥିଲେ କଟାସ ମହାବଳ, ଇଂରେଜ ଶାସକଙ୍କ ଆଗେ ଲାଙ୍ଗୁଳ ଜାକି ଶିଆଳ ।" ଏଣିକି ମହାବୀର କେଶରୀଙ୍କ ପରବର୍ତ୍ତୀ ରାଜାମାନେ ହେଲେ "ବିଦେଶୀ ଶୋଷଣର ଗୋଟିଏ ଅସ୍ତ୍ର......ଇଂରେଜଙ୍କ ପୋଷା ଗେଦନମୂଷା ଗୃହିଏ—ଗୃହର ନୁହନ୍ତି କବାଟର ନୁହନ୍ତି, ଗୃହିଏ ଖାଅନ୍ତି ଖେଳନ୍ତି ।" ଈଶ୍ୱରଚନ୍ଦ୍ରଙ୍କ ଅମଳକୁ ପ୍ରଜାମଣ୍ଡଳ ଆନ୍ଦୋଳନ ଚାଲିଲା । ଈଶ୍ୱରଚନ୍ଦ୍ର ଯେଉଁ ଦେହୁରିଘର ଗାଈଜଗା ଟୋକା ଗୋବରାକୁ ଦୟା କରି ପାଳିଥିଲେ, ସେ ପୂର୍ଣ୍ଣ ହେଲା ପ୍ରଜାମଣ୍ଡଳ ନେତା ଗୋବର୍ଦ୍ଧନ ବାବୁ । ପ୍ରଜାତନ୍ତ୍ରର ବିଜୟ ହେଲା ରାଜା କୀର୍ତ୍ତିଚନ୍ଦ୍ରଙ୍କ ଶାସନକାଳରେ । ରାଜୁତି ଗଲା । ସ୍ୱାଧୀନ ଭାରତରେ ଗଣତନ୍ତ୍ର ଦଳରୁ ରାଜା କୀର୍ତ୍ତିଚନ୍ଦ୍ର ଓ କଂଗ୍ରେସ ଦଳରୁ ଗୋବର୍ଦ୍ଧନ ବିଧାୟକ ପଦ ପାଇଁ ନିର୍ବାଚନ ଲଢ଼ିଲେ । ଗୋବର୍ଦ୍ଧନ ସ୍ୱାଧୀନତା ସଂଗ୍ରାମୀ ହାଓ୍ୱାରେ ଜୟୀ ହେଲେ । 'ମଣିଷ' ଗୋବର୍ଦ୍ଧନ 'ମଣିମା'(ମନ୍ତ୍ରୀ) ହେଲେ । ତାଙ୍କର ସମସ୍ତ ତ୍ୟାଗ କ୍ରମେ ଭୋଗରେ ପରିଣତ ହେଲା । ସ୍ୱାଧୀନତା ସଂଗ୍ରାମର ସହକର୍ମିଣୀ କରବୀଙ୍କୁ ପଚାଶତ ବୟସରେ ପରିଣୀତ ହେଲେ । ବଡ଼ମନ୍ତ୍ରୀ (ମୁଖ୍ୟମନ୍ତ୍ରୀ)ଙ୍କ ବିଶ୍ୱସ୍ତ ହେଲେ । ରାଜନୀତିର ଖେଳକରେ ବିବେକକୁ ବଳି ଦେଲେ । ପୁଣି ରାଣୀ ସୁରଙ୍ଗିଣୀଙ୍କ ଠାରୁ ପରବର୍ତ୍ତୀ ନିର୍ବାଚନରେ ପରାଜୟ ଲାଭ କଲେ । ଭୋଟଦାତା ସାଧାରଣ ଜନତା ରାଜା-ମନ୍ତ୍ରୀ ଭିତରେ ଫରକ ବାରିପାରିଲେ ନାହିଁ । ସାଧାରଣ ଜନତା ଆଶା କରିଥିଲେ ସ୍ୱାଧୀନ ଭାରତରେ ତାଙ୍କ ଦଶା ମେଣ୍ଟିବ । ସେମାନେ ଯେଉଁ ଢମରରେ ଥିଲେ ସେହି ଢମରରେ ରହିଲେ । ରତନା, ସପନା ପରି ମୂଲିଆ ଖଣି-କାରଖାନାରେ ଶ୍ରମିକ ହେଲେ । ତଥାପି ଦୁଃଖ ଘୁଞ୍ଚିଲା ନାହିଁ । ନକ୍ସଲ ଓ ଆନନ୍ଦମାର୍ଗୀ ଭଳି ସନ୍ତ୍ରାସବାଦୀଙ୍କ ଦଳ ଆଦର ନେଲେ । ପ୍ରବଞ୍ଚିତ ନିରାଶ ରତନାମାନେ ଧୂର୍ତ୍ତ ଓ ଭଣ୍ଡ ଦେଶସେବୀ ଗୋବର୍ଦ୍ଧନମାନଙ୍କୁ ହତ୍ୟା କରିବାକୁ ଆଗଭର ହେଲେ । ତେବେ ବି ବିବେକ ବାଣୀ ଦେଲା । ଆପଣାକୁ

ସଂଶୋଧନକରି ସୁନାଗରିକ ହେଲେ ଦେଶର ସୁନେଲି ଭବିଷ୍ୟତ ଅବା ସମ୍ଭବ ହେବ—ଏଇ ଆଶା ରତନାର ମନ ଝଲସାଇ ଦେଲା ।

କଳାଟଙ୍କାର କାରବାର, କାଳଚକ୍ର, କଳାବଜାରର କାଳିମାକ୍ତ ଅପଚରିତ୍ର ତଥା ବର୍ଧିତ ମଣିମାମାନଙ୍କର ବ୍ୟୂହବଦ୍ଧ ଧ୍ୱଂସପ୍ରବୃତ୍ତିରୁ ସମାଜ ମୁକ୍ତ ହେବ । ଏଇ ପ୍ରଚ୍ଛନ୍ନ ଆଶାବାଦ ତଥା ମର୍ମବାଣୀକୁ ‘ରତନା’ ମାଧ୍ୟମରେ ଔପନ୍ୟାସିକ ବ୍ୟଂଜିତ କରିଛନ୍ତି—ଉପସଂହାରରେ, ଲେଖକଙ୍କ ଶୈଳୀର ସ୍ୱାତନ୍ତ୍ର୍ୟରେ ।

ପ୍ରକଟିତ କଥାବସ୍ତୁର ବିଶେଷ ଦିଗଟି ହେଲା ସେକାଳ ମଣିମା ଓ ଏକାଳ ମଣିମାଙ୍କ ମଧ୍ୟରେ ସମତା ନିରୂପଣ । ବୃଦ୍ଧ ସାଆନ୍ତ ଓ ରତନାର କଥୋପକଥନ ଭିତରେ ରାଜତନ୍ତ୍ର ଓ ପ୍ରଜାତନ୍ତ୍ର ନାମରେ ଏବେ ଚାଲୁଥିବା ଛଦ୍ମ ରାଜତନ୍ତ୍ରର ସମଗ୍ର ଭିତିରି ରୂପ ପ୍ରକଟ ହୋଇଛି । ସାଆନ୍ତେ କହୁଛନ୍ତି—“ହେଲା ହେ, ରାଜା ନହୋଇ ତାଙ୍କ ନାଁଟା ଏବେ ମନ୍ତ୍ରୀ ହେଲା ନାଆଁରେ କଣ ଅଛି ? କାମ ତ ଏକା !” ଉପନ୍ୟାସରେ ବର୍ଣ୍ଣିତ ରାଜା କାର୍ତ୍ତିଚନ୍ଦ୍ରଙ୍କ ଆଡମ୍ବରପୂର୍ଣ୍ଣ ଅଭିଷେକଠାରୁ ସ୍ୱାଧୀନ ଓଡ଼ିଶାର ବଡ଼ମନ୍ତ୍ରୀଙ୍କ ପଟ୍ଟାଭିଷେକ ଉତ୍ସବ ଭିତରେ କିଛି ପାର୍ଥକ୍ୟ ମିଳେନା । ଆୟୋଜନର ବୃଥା ବଡ଼ିମାରେ, ଦାଡ଼ାପଣରେ ଉଭୟେ ସମାନ । ଠିକ୍ ସେହିପରି ୧୭୮ ପୃଷ୍ଠାରେ ରାଜା ଈଶ୍ୱରଚନ୍ଦ୍ରଙ୍କ ବିବାହ ଓ ମୂର୍ତ୍ତି ମନ୍ତ୍ରୀ ଗୋବର୍ଦ୍ଧନଙ୍କ ବିବାହ ବର୍ଣ୍ଣନାରେ କିଛି ବିଷମତା ନାହିଁ । ସଞ୍ଜା-ପଞ୍ଜା-ଭେଦା-ଚାନ୍ଦା-ମାଗଣ-ବେଠି ରାଜତନ୍ତ୍ରରେ ପ୍ରକାଶ୍ୟରେ ଦାବି କରାଯାଏ ! ନୀରବରେ, ନେପଥ୍ୟରେ । ପ୍ରଜାତନ୍ତ୍ରରେ ଗ୍ରହଣ କରାଯାଏ ? ରାଜାଏ ଅନ୍ତଃପୁର-ଗାଈ ଗୋଠରେ ବୃଷଭ ; ମନ୍ତ୍ରୀଏ ଓ ମନ୍ତ୍ରୀଙ୍କ ଚେଲାଏ—ଉପରେ ବ୍ରହ୍ମଚାରୀ, ଭିତରେ ଗଣ-ଧର୍ଷଣକାରୀ । (୨୬୮ ପୃଷ୍ଠାର ‘ନଳିତା’ ପ୍ରସଙ୍ଗ) । ନା ବଦଳିଲେ ବି ଶାସନର ରୀତି ବଦଳେ ନାହିଁ, ଚିରକାଳ ଶୋଷକ ‘ମଣିମା’ ଶ୍ରେଣୀ, ସବୁବେଳେ ନିରୀହ ରତନା ପରି ‘ଗୁହାରିଆ’ ଶ୍ରେଣୀଙ୍କୁ ଶୋଷିବାରେ ଲାଗିଥାନ୍ତି । ଏହି ସତ୍ୟ ଲକ୍ଷ୍ୟ କରି ଔପନ୍ୟାସିକଙ୍କ ଖେଦୋକ୍ତି ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ— “ବାହାରକୁ କେତେ ଉନ୍ନତ ଦିଶେ + + + ଦେଶ କେତେ ଉଜ୍ଜ୍ୱଳ ଦିଶେ ; କିନ୍ତୁ କି ବିକୃତ ଭାବେ ମଳିନ, କେତେ ସମୃଦ୍ଧି ଭିତରେ କି ଦାରିଦ୍ର୍ୟ ! ପ୍ରଚଣ୍ଡ ଆଲୋକ ମଧ୍ୟରେ କି ବିକଟ ଅନ୍ଧକାର ! ଜାତୀୟ ଚରିତ୍ର ମଧ୍ୟରେ ମୂଳରୁ ଚୂଳ କି କାଳିମା ଘୋଟିଯାଇଛି ।”

ଏହି କଥାବସ୍ତୁର ବିସ୍ତାର ବେଳେବେଳେ ପାଠକକୁ ଅବାକ୍ କରିଦିଏ । ରାଜତନ୍ତ୍ରର କେତେ ବିଚିତ୍ର ଦିଗ ; ଏହି ଯେମିତି ଦାସଦାସୀଙ୍କର ଉଥସର ବିଳାସିତାପୂର୍ଣ୍ଣ ଜୀବନ, ହାତୀଖେଦା, ଜଙ୍ଗଲ ଖେଦା, ଅରଣ୍ୟ ସମ୍ପଦ ଓ ଶୋଷଣ, କିଛି ବ୍ରାହ୍ମଣ ସମାଜର ଅଧଃପତନ ଏବଂ ସାମ୍ପ୍ରତିକ ଗଣତନ୍ତ୍ରର ମୁଖାଖୋଲା ମୁହଁଟେକା, ଲୋଭ, କଳହ, ଧର୍ଷଣ, ଦୁର୍ନୀତି ଆଦିର ବିସ୍ତାରିତ ଚିତ୍ର ଲେଖକ କାଢ଼ି ଦେଇଛନ୍ତି । ବଡ଼ ମଜାର କଥା ହେଉଛି, ଏସବୁ ବର୍ଣ୍ଣନା ପଢ଼ିଲାବେଳେ ଆମର ଘରପାଖରେ ଘଟୁଥିବା ଦୁର୍ଘଟଣା ଓ

ସାମ୍ପ୍ରତିକ ମଣିଷଙ୍କର କେତେକ ଐତିହାସିକ ଜୀବନ୍ତ ଚରିତ୍ରଙ୍କ ମୂର୍ତ୍ତି ଆଖି ଆଗରେ ଭାସିଯାଏ ।

ଏହି ସନ୍ଦର୍ଭମୁଖୀ କଥାବସ୍ତୁର ଛବିକୁ ପ୍ରକାଶର ଝୁଙ୍କ କିନ୍ତୁ ବଳି ପଡ଼ିଛି । ଲୋକକଥନ ଭଙ୍ଗୀର ପ୍ରୟୋଗ ଉପନ୍ୟାସର ବିଶେଷତ୍ୱ । ମୂଳରୁ ଲୋକ କଥାର କଥଣୀରେ ଉପନ୍ୟାସର ଆରମ୍ଭ—

"କଥାଟିଏ କହୁଁ
କି କଥା ?
ରଜା କଥା
କି ରଜା ?"

ଧାନ ଭାଣ୍ଡୁ ଭାଣ୍ଡୁ ରତନା ତା' ମାମୁ-ଭଉଜ-ସଙ୍ଗୀ ଧାନକୁଟାଳୀ ସପନାକୁ ଲୋକକଥାର, କଳ୍ପନାର, ଯାତ୍ରାର, ତାସ୍ ଖେଳର ରଜା କଥା କହୁଛି । ବୁଢ଼ୀ ସାଆନ୍ତ ହୁଡ଼ମୁଣ୍ଡରେ କାମ ତଦାରଖ କଲ୍ବାଲ । ସେ ବି କଥାରେ ଭାଗ ନେଇଛନ୍ତି । ସେ କହୁଛନ୍ତି ତାଙ୍କ ଆଖିଦେଖା ରାଜନଅରର ମଣିମାନଙ୍କ କଥା । ଏହିପରି କଥୋପକଥନ ମାଧ୍ୟମରେ ଉପନ୍ୟାସର କଥାଭାଗ ଗତିଶୀଳ ହୋଇଛି । ବୁଢ଼ୀ ସାଆନ୍ତେ ବି ରାଜଜୀବନ କଳି ପାରୁ ନଥିବା ରତନା ଆଉ ତା ସଙ୍ଗୀ ଧାନକୁଟାଳୀ-ମାନଙ୍କୁ କହୁଛନ୍ତି—"ତୁମ ଚଳଣି ତାଙ୍କ ଚଳଣି ପ୍ରକୃତରେ କଥା । ସେ ସ୍ୱାମୀ, ତୁମେ ତୁ ବା ଆପଣ ; ତାଙ୍କ ଶୋଇବା—ପହୁଡ଼, ଖାଇବା—ମଣୋହି, ଗାଧୁଆ—ମାଜଣା, ପୋଖରୀ ପାଣି - ଶୁଣ୍ଠଲିଇ ବିଜେ । + + ସେ 'ମଣିଷରୂପୀ' ଦେବତା, ଦେବତା ପୂଜାରେ ଯେତିକି ସିଦ୍ଧି, ତାଙ୍କ ସେବାରେ ସେତିକି ସିଦ୍ଧି ।"

ଏଭଳି ହେଉପଦ କଥାରୁ ରତନା ଆଉ ତା ସଙ୍ଗୀ ମୂଲିଆମାନେ ନିଜର ଦାରିଦ୍ର୍ୟ ଭିତରେ ଓ ରାଜକୀୟ ଆକାଶୀ କଳ୍ପନାରେ ମ୍ରିୟମାଣ ହୋଇଛନ୍ତି । ଦିନ ପରେ ଦିନ କଥାର ସୁଅ ଛୁଟିଛି । ତାଳମୂଳ ରାଜବଂଶର ସମ୍ପୂର୍ଣ୍ଣ ଇତିହାସକୁ ସରସ କାହାଣୀ ଭଳି କୁହାଯାଇଛି ବୁଢ଼ୀ ସାଆନ୍ତଙ୍କ ମୁଖରେ—ରାଜା କାର୍ତ୍ତିଚନ୍ଦ୍ରଙ୍କ ମାଧ୍ୟମରେ ।

ରାଜା କାର୍ତ୍ତିଚନ୍ଦ୍ର ଜଣାପଡ଼ନ୍ତି ଗାଉଁଲି ଗାଉଁଲି । ତାଙ୍କ କଥାରେ ଆଡ଼ମ୍ବର ନାହିଁ, ପାଣ୍ଡିତ୍ୟର ବାହାସ୍ଫୋଟ ନାହିଁ । ଲୋକ ସଂସ୍କୃତିର କଥିତ ଭାଷା, ବଡ଼ ସାଦାସିଧା ବେଶ, ମୂଳଏମ୍ । ରାଜବଂଶର ଗୌରବ ଯାଇଛି । ଉଦୟଚନ୍ଦ୍ରଙ୍କ ମୃତ୍ୟୁ ପରେ କାର୍ତ୍ତିଚନ୍ଦ୍ରଙ୍କ ଅଭିଷେକ ଉତ୍ସବ ହୋଇଛି । ଅଭିଷେକ ଉତ୍ସବର ଯାକଯମକ ପରେ ସେ ମ୍ରିୟମାଣ । ରାଣୀ ପୂର୍ବତରଙ୍ଗିଣୀ ସ୍ୱାମୀଙ୍କର ଏତେ ପ୍ରାପ୍ତି ଭିତରେ ଅପ୍ରାପ୍ତି ଜନିତ ଅବସାଦର କାରଣ କଳି ପାରୁନାହାନ୍ତି । ପତ୍ନୀର କର୍ତ୍ତବ୍ୟ ତାଡ଼ନାରେ ରାଣୀ

ସୁରତରଙ୍ଗିଣୀ ରାଜା କୀର୍ତ୍ତିଚନ୍ଦ୍ରଙ୍କ ଠାରୁ ଶୁଣିବାକୁ ଚାହିଁଛନ୍ତି ବଡ଼ବଡ଼ୁଆଙ୍କ କାହାଣୀ । ରାଣୀହଂସ ପୁରର ଉଦାସ ପରିବେଶ । ତୂଳୀତଳ୍ପ ଶେଯରେ ରାଜା-ରାଣୀ । ପରିବେଶକୁ ଆହୁରି କରୁଣତର କରିଛି ଉଦାସୀ ବ୍ରାହ୍ମଣୀ ନଈର ନୀଳ ଜଳରାଶି ଉପରେ ବିଷାଦ-କାଳିମାମୟ ଜହ୍ନ । ରାଜା ନିଜ ପୂର୍ବପୁରୁଷଙ୍କ କାହାଣୀ କହିଲେ ରାଣୀଙ୍କି—"ଆମ ଏ ତାଳମୂଳ ଗୋଟିଏ ପାହାଡ଼ୀ ମୁଲକ । ତାକୁ ଘୋର ଜଙ୍ଗଲ ଘୋଡ଼ାଇ ରଖିଥିଲା ; ଏଠି ବାଘ କହୁଥିଲା ମୁଁ, ଭାଲୁ କହୁଥିଲା ମୁଁ । ଇତ୍ୟାଦି । "ଏଠି ବାଘ କହୁଥିଲା ମୁଁ, ଭାଲୁ କହୁଥିଲା ମୁଁ" ର କାଉଁରି କାଠିର କୁହୁକରୁଆ କେବଳ ରଚନାକୁ ନୁହେଁ, ଆମଭଳି ଅସଂଖ୍ୟ 'ରାଜ ସିକଚଲି, ଗୃହ ଚଳଣୀର ଅନ୍ତ ପାଇ ନଥିବା ପାଠକଙ୍କ ମନକୁ ବାନ୍ଧି ରଖେ । ଏହିପରି କୌଶଳ ଉପନ୍ୟାସ ସାରା ଅବଲମ୍ବନ କରିଥିବାରୁ ଲେଖକ ନୀରସ ନିରୁତା ଇତିହାସର ବର୍ଣ୍ଣନାରେ (ଯାହା ଉପନ୍ୟାସର ଦୁଇତୃତୀୟାଂଶ ମଣ୍ଡନ କରୁଛି) ସରସତା ଭରି ପାରିଛନ୍ତି, ନୋହିଲେ ଅନେକାଂଶ (ଈଶ୍ୱରଚନ୍ଦ୍ରଙ୍କ ରାଜତ୍ୱ ପ୍ରସଙ୍ଗରେ ୧୪୯ପୃ ରେ ଅରଣ୍ୟ ସମ୍ପଦ ତାଲିକା, ରାଜନିମନ୍ତ୍ରଣ ସଭାଦ୍ୱର ଦଲିଲ୍ ଶ୍ରେଣୀସ୍ଥ ବ୍ୟାବହାରିକ ଗଦ୍ୟନମୁନାର ସଂଖ୍ୟାଧିକ୍ୟ). ବିବରଣୀଧର୍ମୀ ବକ୍ତବ୍ୟ ଉପନ୍ୟାସର ଗତିକୁ ମନ୍ଥର କରିଦେଇଥାନ୍ତା । ସେଇ ମନ୍ଥରତାକୁ ଭାଙ୍ଗିଛି ଔପନ୍ୟାସିକଙ୍କ କାବ୍ୟିକତା ବ୍ୟଙ୍ଗୋକ୍ତି ଓ ବର୍ଣ୍ଣନା ଚାତୁରୀ । ମଦନକାର ସ୍ତନକର୍ତ୍ତନ ଅବକାଶରେ ଦୁଇ "ନଅଁ-ଗିଲା ମୁହଁକୁହା" ବ୍ରାହ୍ମଣଙ୍କ ପ୍ରତିବାଦ ପରିବର୍ତ୍ତି ରାଜାଙ୍କ ସମର୍ଥନ-ଉକ୍ତି ପୂର୍ଣ୍ଣଚନ୍ଦ୍ର ଙ୍କ ରାଜ୍ୟାଭିଷେକ କାଳରେ ଡାକୁଆ ବ୍ରାହ୍ମଣମାନଙ୍କର ଦୟନୀୟ ଅବସ୍ଥା ହସର ଖୁବ୍ ଖୋରାକ ଯୋଗାଏ । ସେହିଭଳି କଂଗ୍ରେସ କର୍ମୀ ଓ ନେତାଙ୍କ ଆପ୍ୟାୟନ ପ୍ରସଙ୍ଗରେ "ଅହିଂସମାନଙ୍କ ପଲେଉ ପାଇଁ କେତେ ବୋଦା ପଡ଼ିଲେ" ଉକ୍ତି ମାଧ୍ୟମରେ ସ୍ୱାଧୀନ ଭାରତର ରାଜନୈତିକ ନେତାମାନଙ୍କ ବଚନ ଓ ଜୀବନ ମଧ୍ୟରେ ପରିଲକ୍ଷିତ ପ୍ରଭେଦ ପ୍ରତି ବୁଦ୍ଧିଦୀପ୍ତ ଶାଣିତ ବ୍ୟଙ୍ଗର ସୂଚନା ମିଳେ ।

ବିବୃତିଧର୍ମୀ ବର୍ଣ୍ଣନାଠାରୁ ରସଧର୍ମୀ ବର୍ଣ୍ଣନା ଏ ଉପନ୍ୟାସର ସଂପଦସୀମାକୁ ବିସ୍ତୃତତର କରିଛି । ଉପନ୍ୟାସର ଦ୍ୱିତୀୟ ପରିଚ୍ଛେଦରେ ରଚନାର ଦାରିଦ୍ର୍ୟ ଓଡ଼ିଆ ସାହିତ୍ୟରେ ଅନନ୍ୟ ଦୁର୍ଲ୍ଲଭ । କେଡ଼େ ସରସ ନ ପଢ଼ିଲେ ଜାଣିହେବ ନାହିଁ । ତାହା ଏହିପରି—"ବାସୀ ଓଳିକ ଦାନା ନାହିଁ, ହାଣ୍ଡି ମାଙ୍କଡ଼ ଚିତ୍ ମାରୁଚି । ଓଳିଆ ଗୃହ, ଅଲୁର ବାଲୁର ଭାରିଜା, ଅସଣା ମସଣା କେଉଟୁଣୀ ଛୁଆ । ଦୁଆରେ ତାଲା ପଡ଼େ ନାହିଁ, ରହିଣିବାକୁ କଛି ନାହିଁ ବୋଲି । କାନ୍ଥ ଅଲୁଗୁଣି, ଟପେଟ ଭଣ୍ଡାର ଘର ।"

ଏହି ମାନର ଉତ୍କୋଟୀର ବର୍ଣ୍ଣନା—ରାଜା ଉଦୟ ଚନ୍ଦ୍ରଙ୍କ ମୁଖରେ ରାଣୀଙ୍କ ଗେଲା ଭଣ୍ଡାରୁଣୀ ରାଣ୍ଡକରିବାର ଦୃଶ୍ୟ (ପୃ ୨୫) । ପୃଷ୍ଠାଟିଏ ପୂର୍ଣ୍ଣ ଅଳଙ୍କାର ଅସାଧାରଣର ବର୍ଣ୍ଣନା ଚାଲିଛି ରାଣୀଙ୍କ ଅଙ୍ଗ ପ୍ରତ୍ୟଙ୍ଗରୁ । ପଢ଼ିଲେ ରାଜ ସୌନ୍ଦର୍ଯ୍ୟର ଛବି, କାରୁଣ୍ୟ ମିଶି ଏକ ଅପୂର୍ବ ଶୀତ୍କାର ମନରେ ସଞ୍ଚରିଯାଏ ।

ଏହିଭଳି ଅସଂଖ୍ୟ ପ୍ରସଙ୍ଗକୁ ଉପୋଦ୍ଧୀର୍ଣ୍ଣ କରିଛି କୃଷ୍ଣବାବୁଙ୍କ ଲୋକସାହିତ୍ୟ ଓ ସଂସ୍କୃତ ସାହିତ୍ୟର ଅବଗାହୀ ବ୍ୟକ୍ତିତ୍ୱର ବାକ୍‌ବୈଦଗ୍ଧ୍ୟ ।

ରାଣୀ ଲାବଣ୍ୟମୟୀଙ୍କ ଦାସୀ ମଦନକାର ସ୍ତନକଣ୍ଠିନ ରାଜଦଣ୍ଡରେ ଦଂଧିତା । ସେ ଏଭଳି ଦୁର୍ଦ୍ଦଶ୍ଚ ଦଣ୍ଡର କାରଣ ଖୋଜି ପାଉନାହାନ୍ତି । ତାଙ୍କ ବିସ୍ମୟୋକ୍ତି— "ଯୌବନର ସୁନାର କଳସୀଟି, ମାତୃ-ସୌଭାଗ୍ୟର ସ୍ନେହର ଝରଣାଟି ! ଆହା, କ'ଣ ହେଲେ ?" ଏହାଠାରୁ ଜ'ଣ ଅଧିକ ବିଦଗ୍ଧ ବାକ୍‌ଶୈଳୀ ଲୋଡ଼ା ସାହିତ୍ୟର ଦ୍ୟୁତି ଉକୁଟିଉଠିବା ପାଇଁ ?

ବିଦଗ୍ଧ ପ୍ରକାଶଭଙ୍ଗୀଠାରୁ ଲୋକ ବାକ୍‌ଭଙ୍ଗୀ ବିନିଯୋଗ ନିପୁଣତା ଏ ଉପନ୍ୟାସର ବିଶେଷ ଲକ୍ଷଣୀୟ । 'ନାକରେ ଫୁଟି କାନରେ ବାହାରୁଚ,' 'ଅଜଣା ଗଛଲ ଭାତ ଖାଉଚ', 'ସୂତା ମାଜିଲେ ମରୁ' କଥା ମାଜିଲେରୁ, 'ପଣ୍ଡେ ପଢ଼ିଲେ ପାଠ, ଧନାଢ଼ଗୁଣେଅଠ', 'କେନାମଣି ସାଆନ୍ତାଣୀଙ୍କ ହାତର ଧାଣ୍ଡି ସେ କାନରଗଣ୍ଡି', 'ଅଣ୍ଡୁଆ ଭିତରେ ମୁଣ୍ଡୁଲି ପଶିଯିବା' ଭଳି ଉକ୍ତି ବକ୍ତବ୍ୟରେ ଗ୍ରାମୀଣ ସ୍ପର୍ଶ ଦିଅନ୍ତି ।

କୃଷ୍ଣବାବୁଙ୍କ 'ମଣିମା ଶୁଣିମା ହେଉ' ଅଧୁନା ଅବ୍ୟବହୃତ ଲୋକସଂସ୍କୃତି ସିଦ୍ଧ ଶବ୍ଦ ସମ୍ଭାରର ଏକ ସମନ୍ୱିତ ସମୃଦ୍ଧ ଭଣ୍ଡାର । ଦୋଶରଡ଼ା, ସିକ୍‌ଚଲି, ହେଣ୍ଟି, ଡଅଁର, ସିଧା, ବଡନଟୋହିବା, ହୟାନ୍ତି, ଅଞ୍ଜଲ, ମେଖ, ଅଥାଡା, ଆପତଳି, ଅନ୍ତର ପୁଅ, ଗମ୍ଭୀର ସାଅନ୍ତ, ପେସ୍‌କସ୍ ଅହିଆ, ଖାସ୍, ପଲାଡ଼, ନାଲିଗ୍ରପଣ, ଗିଡ଼ଦା, ହାଉଦା, ବସ୍ତି, ଛଟିପିଳ, ଗୋଦା, ଅଗଡ଼ମ୍ ବଗଡମ୍, ତରଡ଼ା, ରଗଡ଼ ଆଲଜା, ମୁଦୁସୁଲି, ବଗିବଲତା, ସୁକଟ, ଅବେଇ ଛଡର ଆଦି ଅସଂଖ୍ୟ ଶବ୍ଦ ଔପନ୍ୟାସିକଙ୍କ କୃପା ପାଇ ନ ଥିଲେ ହୁଏତ ଆମ ସାହିତ୍ୟର କୋଳ ମଣ୍ଡିପାର ନ ଥାନ୍ତା । ଉପନ୍ୟାସର ପରବର୍ତ୍ତୀ ସଂସ୍କରଣରେ ଏହିଭଳି ଶବ୍ଦର ଟୀକା ଆମ ଭଳି ସଂସ୍କୃତିଛଡ଼ା ହୀନକପାଳଅଙ୍କ ପାଇଁ ହୁଏତ ଲୋଡ଼ା ପଡ଼ିବ ।

କେବଳ ଲୋକ-ପ୍ରଚଳିତ ବାକ୍ୟ ବା ଶବ୍ଦ ନୁହେଁ, ଲୋକଗୀତ ଓ ଚଗଢ଼ିମାଳି ଅବିକଳ ବା ଅନୁସୃତ ଢଙ୍ଗରେ 'ମଣିମା ଶୁଣିମା ହେଉ' ସମୃଦ୍ଧ । ସୁଯୋଗ ପାଇବା ମାତ୍ରେ ଔପନ୍ୟାସିକ ତାହା ମଣ୍ଡି ଦେଇଛନ୍ତି । ଅବିକଳ ଢଙ୍ଗର ପାଠକଙ୍କୁ ଦେଖାଇଦେବା ଲୋଡ଼ାନାହିଁ ; ଅନୁସୃତ ଉଙ୍ଗର ଦୃଷ୍ଟାନ୍ତଟିଏ ଉଦାହରଣ ସ୍ୱରୂପ ଗ୍ରହଣ କରାଯାଉ । ଉପନ୍ୟାସର ଉତ୍ତର ପର୍ବରେ ଦେଉଳର ଘର ଗାଈକଗା ପିଲା ଭୋକରୀ ଗ୍ରାଳଉଆସରେ ଅଶ୍ୱସ୍ତି ଅନୁଭବ କରନ୍ତି । ସେଇ ପ୍ରସଙ୍ଗରେ ଉକ୍ତି—"କେଡ଼େ ଓଲ୍‌ଟାଏ ମୁଁ ! ସୁଷୁରକ ପାଚଲି ହେଲୀ ଗନ୍ଧଉଚ । ସେଥିରୁ ଅନ୍ଧାରିଆ କୋଇଡ଼ ଭବ ଜାଣୁଚ ?" ମନେ ପକେଇଦିଏ ସେଇ ଜନପ୍ରିୟ ଲୋକଗୀତଟିକୁ—

"ଘୁଷୁରିକ ଭାହିଁ ପାଟଳି କଦଳୀ
ଅନ୍ନ ହାତେ ରହି ମୁଦ୍ଧ,
ପେଟ୍ଟ ଚଢେଇକି ସୁବର୍ଣ୍ଣ ପଞ୍ଜୁରି
କୋରଡ଼ ସୁମରି କାନ୍ଦ ।"

ଉପନ୍ୟାସରେ ବିଶେଷତଃ ରାଜାରାଜୁଡ଼ା ବା ମନ୍ତ୍ରୀ-ସାଆନ୍ତଙ୍କ କାହାଣୀ କୁହାଯାଇ ଥିଲେ ବି ଲୋକ-ବିଶ୍ୱାସ-ଗର୍ଭିତ ଗ୍ରାମ୍ୟସଂସ୍କୃତିର କଥା ବାଦ୍ ଯାଇନାହିଁ । ରାଣୀ ରାଣ୍ଡି ହେଲେ, ରାଜାପୁଅ ବାଧିକ ପଡ଼ିଲେ ଯେଉଁ ଉପଦ୍ରବ ହୁଏ, ଯେ କୌଣସି ଗାଉଁଲି ପରିବାରରେ ତାହା ପ୍ରତ୍ୟକ୍ଷ କରିହୁଏ । ତାଳମୂଳ ରାଜ୍ୟରେ କୋଇଲା ଖଣିର ଆବିଷ୍କାରଟିକୁ ହିଙ୍ଗୁଳା ଠାକୁରାଣୀଙ୍କ ଆବିର୍ଭାବ ରୂପେ ଚିତ୍ରିତ କରିବା ମଧ୍ୟ ସେହି ବିଶ୍ୱାସର ଏକ ଜ୍ୱଳନ୍ତ ନିଦର୍ଶନ ।

ଶ୍ରୀ କୃଷ୍ଣବିହାରୀ ସ୍ୱୀକାର କରିଛନ୍ତି—କଥା-ସାହିତ୍ୟ କ୍ଷେତ୍ରରେ ସେ ବୃଦ୍ଧ, ଉପନ୍ୟାସ ତାଙ୍କର ତରୁଣୀ ଭାର୍ଯ୍ୟା । କଥାରେ ଅଛି—

"ଗାଆଁ ମୁଣ୍ଡ ଘର ଗୈରିକୁ,
ବୁଢାକାଳ ବାହା ପରିକୁ ।"

ଏହି ଡରେ ବୋଧେ କୃଷ୍ଣବିହାରୀ ବୁଢାକାଳରେ ତରୁଣୀ ଭାର୍ଯ୍ୟା ତଥା ସୁକୁମାରୀ ଉପନ୍ୟାସ ବଧୂଟିର ଏ ପରିଚର୍ଯ୍ୟାରେ ବ୍ୟସ୍ତ । ତାଙ୍କ ଚର୍ଯ୍ୟା ଓ ପରିଚର୍ଯ୍ୟା ବିଫଳ ହୋଇନାହିଁ । କେଜାଣି କେମିତି ଯେ ସୁକୁମାରୀ ମୁହଁ ଫୁଲାଇ ନାହିଁ, ଚର୍ଯ୍ୟାରେ ତ୍ରୁଟି ହେଲା ବୋଲି ମନ ଉଣା କରିନାହିଁ, ତା ନୁହେଁ; କିନ୍ତୁ ସେ ମନ ଉଣା କ୍ଷଣିକ । କାବ୍ୟ ଓ କାମିନୀ ସବୁବେଳେ ଅତୃପ୍ତା । ତରୁଣୀ ଭାର୍ଯ୍ୟା ଆହୁରି ନାକ କାନ୍ଦୁରା । ତାଳମୂଳ ରାଜବଂଶର ଇତିହାସ ବର୍ଣ୍ଣନା ବେଳେ ଏକବାଗିଆ ବିରକ୍ତିକର ବର୍ଣ୍ଣନାକୁ ବିବୃତିଧର୍ମୀ ନ କରି ଆଉ ଟିକିଏ ରସପୂର କରିବା ପାଇଁ ସେ ଅଳି କରୁଥିଲା । ତା'ର କଅଁଳ ଛନ-ଛନ ଚଞ୍ଚଳ ମନ ପରି ଉପନ୍ୟାସର ଗତି ଆଉ ଟିକିଏ ମନ୍ଥରତା ଲୋଡ଼ୁଥିଲା । ନଖରୁ ଶିଖ ଯାଏ କୃଷ୍ଣବିହାରୀ ତରୁଣୀ ଭାର୍ଯ୍ୟାକୁ ସଜେଇଲେ, ନିଜ ଢାଙ୍ଗରେ ମନେଇ ଆପଣାର ଏକାନ୍ତ ବଶମ୍ବଦା କରିନେଲେ । ସବୁଦିନା ମନ ରୁଚିଲା, ହେଲେ କେଶବିନ୍ୟାସ ଟିକିଏ ମନ ମାନିଲା ନାହିଁ । ଆପଣା ନାୟିକାକୁ କୃଷ୍ଣବିହାରୀ ଗ୍ରାମ୍ୟ ବଧୂଟିଏ କଲେ; ଦେହରେ ଦେଲେ ପାଟ ପୀତାମ୍ବରୀ, ହାତରେ ସୁବର୍ଣ୍ଣ ବାହୁ, ଅଙ୍ଗରେ ଚନ୍ଦନ ହଳଦୀର ସ୍ନିଗ୍ଧ ପ୍ରଲେପ; ଏତେ ସ୍ନେହ ସୋହାଗ, ଏତେ ଚର୍ଯ୍ୟା, ଏତେ ମନଯୋଗ କ'ଣ ଅତୃପ୍ତ କଲା ନବବଧୂଟିକୁ ! ମଥାରେ ମଥାମଣିଟିଏ ଦେଲେ ନାହିଁ, ଚନ୍ଦନ ଟିପା ଯୋଗାଇଲେ ନାହିଁ, ସିନ୍ଦୁରି ସଜାଡ଼ିଲେ ନାହିଁ; ସାଂସ୍କୃତିକ ଲଗାଇ ଦେବାକୁ ଯାଇ, ଦେଖିଲେ ଯେ ବାଳ ଫୁରୁ-ଫୁରୁ କରି ନାୟିକା ଉଠିଗଲା । ସେ ଯୋଗ୍ୟା ପତ୍ନୀ, ଯେ ପତି ମନ ଯୋଗେ; ସେ ଯୋଗ୍ୟ ପତି, ଯେ ପତ୍ନୀ ଉପରେ ନିଜର ସବୁଯାକ ରୁଚି ଲଦି ଦିଏ ନାହିଁ—ଏଇ କଥାଟିକୁ କୃଷ୍ଣବିହାରୀ ବେଶ୍ ବୁଝି ପାରିଛନ୍ତି । ଏହି ବୁଝାମଣା, ଏହି ସହାବସ୍ଥାନ ଯୋଗୁଁ ହିଁ ଔପନ୍ୟାସିକଙ୍କ ତରୁଣୀ ଭାର୍ଯ୍ୟାଟି ପୁରାତନୀ ହୋଇ ବି ଆଧୁନିକା ।

At & P.o' Rahania, Via—Kuanpal, Dt.—Cuttack,

## ।। 'କି କଥା ? କଲିକତା' ।।

### ସମୀକ୍ଷା : ଡକ୍ଟର୍ ପ୍ରତିଭା ଶତପଥୀ

['କି କଥା କଲିକତା' ଉପନ୍ୟାସ—ପ୍ରକାଶକ—ନାଳନ୍ଦା, ପ୍ରକାଶକାଳ—୧୯୮୨ ମୂଲ୍ୟ—୨୦ '୦୦ ]

ବହୁଳକବିତା, ସରସଭ୍ରମଣକାହାଣୀ ଓ ହୃଦୟସ୍ପର୍ଶୀ 'ମୋକାହାଣୀ' ଜୀବନୀଗ୍ରନ୍ଥର ରଚୟିତା ଡକ୍ଟର କୁଞ୍ଜବିହାରୀ ଦାଶଙ୍କର ଉପନ୍ୟାସ ରଚନା ଏକ ଅଭିନବ ଉଦ୍ୟମ । ଓଡ଼ିଆ ସରସକାହାଣୀର ଅଦ୍ୱିତୀୟ ସ୍ରଷ୍ଟା ଲେଖକ ଡକ୍ଟର ଦାଶଙ୍କର ଆଗ୍ରହ— ଏ ଉପନ୍ୟାସର ସମୀକ୍ଷା ମୁଁ ପ୍ରସ୍ତୁତ କରିବି । ବୟସରେ ଯଥେଷ୍ଟ କନିଷ୍ଠା ମୁଁ—ତାଙ୍କର ରଚନାଟିଏ ପାଠକଲା ବେଳକୁ କଳାସୃଷ୍ଟି ସହ ତାଙ୍କର ବ୍ୟକ୍ତିତ୍ୱ ସ୍ୱଗତରୂ ମୋ ସାମ୍ନାରେ ଉଦ୍ଭାସିତ ହୋଇଉଠେ—ସରଳ ପଣି ଗାମ୍ଭୀର୍ଯ୍ୟ ପରିହାସ ଭଙ୍ଗୀରେ ଜୀବନର ଜଟିଳତାକୁ ଫୁଙ୍କି ଉଡ଼େଇ ଦେବାର ତାଙ୍କର ପ୍ରୟାସକୁ ମୁଁ ଉପଭୋଗ କରେ । ପୂର୍ବରୁ ପଢ଼ିଥିଲି ଲେଖକଙ୍କ 'ମଶାଣି ତୁଳସୀ' ଉପନ୍ୟାସ—ତାହାର ଗ୍ରାମୀଣ ପରିବେଶ ଓ ଦୃଶ୍ୟରଜିର ସଜୀବତା ମତେ ଅଭିଭୂତ କରିଥିଲା । ଏହି ଉପନ୍ୟାସରେ କାହାଣୀ-ସଂଭାରସହ ଗ୍ରାମ୍ୟ ପରିବେଶର ଚିତ୍ର ଅନୁରୂପ ଭାବେ ଆକର୍ଷଣୀୟ ହୋଇପାରିଛି । ପୁସ୍ତକଟିର ନାମକରଣରୁ କାହାଣୀର ପ୍ରାଥମିକସ୍ୱର ସହଜରେ ଶୁଭିଯାଏ । ଏହା ଯେମିତି କାହାଣୀ ବୟାନ କରୁଥିବା ଓ ଶୁଣୁଥିବା ସେଇ ଚରିତ୍ରମାନଙ୍କର ଚରିତ୍ରଗତ କଥୋପକଥନ—

"କି' ପଣ ? କଣ୍ଢାବଣ ।"

"କେ କଣ୍ଢା ? କାନଢୋଲକଣ୍ଢା ।"

'କି କଥା ? କଲିକତା । " ଗୋପବନ୍ଧୁ ନୈଶ ବିଦ୍ୟାଳୟର ଛାତ୍ରମାନଙ୍କ ପ୍ରଶ୍ନର ଉତ୍ତର ଦେଇଛନ୍ତି ଗୁରୁ ଗୌରି ଶଂକର । ପୂର୍ବରୁ ମଉସା ଓ 'ନଣ୍ଡା'ଙ୍କ ମଧ୍ୟରେ ସେଇ କଥୋପକଥନ ଏହାର ସରସ କାହାଣୀ ଧର୍ମକୁ ପ୍ରଥମରୁ ସୂଚାଇଦିଏ ।

ଏହାପରେ ଆସେ ଉପନ୍ୟାସର ଆଖ୍ୟାନବିଭାଗ—ମୁଖ୍ୟତଃ କାହାଣୀର ଧାରାବାହିକତା—ଆଲି ବର୍ଦ୍ଦୀଖାଁ, ଜବଗୃର୍ଣ୍ଣିଜ, ସତୀଦାହ ପ୍ରଥା ଇତ୍ୟାଦି କଲିକତାର ବିକାଶର ପୃଷ୍ଠପଟରେ ରହିଥିବା ଇତିହାସ ଓ କମ୍ପାନୀ ସମ୍ବନ୍ଧିତ ଘଟଣାବଳୀ । ପରବର୍ତ୍ତୀ ସମୟରେ ନାୟକ ନରୁର ଜୀବନ—ଭିଣରେଣ୍ଡୁର ବ୍ରାହ୍ମଣଶାସନରୁ କଲିକତାର ରାନ୍ଧୁଣିଆ, ମୋଟିଆ ଓ ଧନୀଲୋକର ଜୀବନ ପର୍ଯ୍ୟନ୍ତ ବିସ୍ତୃତ । ତା'ମଧ୍ୟରେ ଯାଦୁଘର, ଚିଡ଼ିଆଖାନା, ହାଡ଼କଟାଗଲି, ଜଗନ୍ନାଥ ଓଡ଼ିଆ ପାଠାଗାର ଇତ୍ୟାଦିର ସ୍ଥିତି ଏହି ସରସତାକୁ ଅଧିକ ହୃଦୟସ୍ପର୍ଶୀ କରେ । ମନେହୁଏ ଚମତ୍କାର କେତୋଟି କାହାଣୀ

ଶଶିଭୂଷଣ ଦେ ଷ୍ଟ୍ରିଟ୍ ୭୮ ନମ୍ବର ବାଡ଼ିରେ ପହଞ୍ଚିଲେ । ଘର କ'ଣ ? ବାବାରେ ବାବା, ଗାଆଁ ଠାଏ ତ ଏ । ଚଉଦ ପନ୍ଦର ଖପୁରୁଲି ଘର ଗୃହକର୍ତ୍ତାଙ୍କ ଘେରାଚ । ମଝିରେ ଅଗଣା । ହୁଙ୍କା ଭିତରେ ଯେମିତି ଭଇ, ସେମିତି ମଣିଷ ଖୁନ୍ଦାଖୁନ୍ଦି, ପ୍ରତିଘରେ ଚିଉଣ, ଗୃହଳଣ । × × ବାଁଏଁ ଓସାର, ବାଁଏ ଲମ୍ବ ଘର, ଅଧା କାନ୍ଥରେ ପଟାଖଣ୍ଡା । ତା ଉପରେ ଥାକକୁଥାକ ଟ୍ରଙ୍କ ବାକ୍ସ ସଜ୍ଜା । ପୃ ୫୫ ।

କୁଳନାମ ପାଇଁ ପ୍ରାର୍ଥୀ ନରସିଂହର ନୈଶ ବିଦ୍ୟାଳୟରେ ପଢିବା କାଳରେ ଦୈବଯୋଗକୁ ଏକ ଧନୀପରିବାରର କୃପାଦୃଷ୍ଟିରେ ପଡ଼ିବା ଘଟଣାର ସ୍ରୋତକୁ ଆକସ୍ମିକଭାବେ ବଦଳାଇ ଦେଇଚ । ଗ୍ରାମ୍ୟ ଜୀବନ ଓ ସହରି ଜୀବନର ଚିତ୍ରଣ କଲାବେଳେ ଲେଖକ ଗ୍ରାମ୍ୟଜୀବନକୁ ଅଧିକ ଜୀବନ୍ତ କରିପାରିଛନ୍ତି । ନରୁର ଗ୍ରାମ ରଣରଣପୁର—ତାର ପାରିବାରିକ ତଥା ପାରିପାର୍ଶ୍ୱିକ ଚିତ୍ର ହୃଦୟକୁ ଛୁଇଁଯାଏ—ଚିହ୍ନା, ଚିହ୍ନା ଆପଣାର ଆପଣାର ମନେ ହୁଏ । ଏକାନ୍ନବର୍ତ୍ତୀ ପରିବାରର ଚିତ୍ର, ଭାଇଭାଗ, ପଲ୍ଲୀର ବ୍ରାହ୍ମଣ ଘରର ଶବ ସତ୍କାରର ବର୍ଣ୍ଣନା, ଆଗୃହ ବଗୃହ, ସ୍ୱାଡ଼, ଚଳଣି ମିଶି ଆଖି ଆଗରେ ସତେଜ ଚିତ୍ରପଟଟିଏ ଖୋଲି ଧରେ । ପଲ୍ଲୀ ଜୀବନର ସ୍ୱାଭାବିକତାଦ୍ୱାରା ସମୁଦାୟ ଉପନ୍ୟାସର ସ୍ୱାଦ ଓ ଗନ୍ଧ ଯେମିତି ନିୟନ୍ତ୍ରିତ ହୋଇଥାଏ । ପଲ୍ଲୀର ନୀରିତମୂର, ଆନ୍ତରିକ ଜୀବନଧାରା ଓ ପରିବେଶର ସୂକ୍ଷ୍ମବିଶ୍ଳେଷଣରେ ଲେଖକ ସିଦ୍ଧହସ୍ତ । ମନେହୁଏ ଲେଖକଙ୍କ ପ୍ରାଣଟି ଅବା ପଲ୍ଲୀର ନର୍ଯ୍ୟାସରେ ଗଢା । ସହରର ଜୀବନ ମଧ୍ୟରେ ନରୁର ଦୁର୍ଦ୍ଦଶା ଓ ଆକସ୍ମିକଭାବେ ତାର ବିବାହ, ପୁଣି ଧନର ପ୍ରାଚୁର୍ଯ୍ୟରେ ତାର ବାଟ ହୁଡ଼ିବା—ସବୁକିଛୁ ମଣିଷ ଜୀବନର ବୈଚିତ୍ର୍ୟକୁ ସୂଚାଏ । ନରୁ ପତ୍ନୀ ପ୍ରତି ଅବହେଳା ପ୍ରଦର୍ଶନ କରେ, ରାଜକୁମାରୀ ଶଶିକଳାର ମୋହିନୀ ମାୟାରେ ସଂସାରକୁ ଭୁଲିଯାଏ । ମାତ୍ର ଏ ସବୁଥିରେ ତା'ର ଅନ୍ତର୍ଦ୍ୱନ୍ଦ୍ୱର ସ୍ପଷ୍ଟ ଆଲେଖ୍ୟ ପ୍ରାୟ ନାହିଁ । ତାର ମାନସିକତାର ଏକ ବର୍ଣ୍ଣନାମାତ୍ର ଏଥିରୁ ମିଳିଥାଏ ।

ମୁଖ୍ୟ କାହାଣୀଟି ସହ ଆଉ କେତୋଟି କାହାଣୀ ସଂଯୋଜିତ—ଯେଉଁଗୁଡ଼ିକ ବାସ୍ତବ ଏବଂ ଆତ୍ମୋଦ୍ଦୀପକ । କଣ୍ଟ୍ରାକ୍ଟର ଅସଂଯତ ବିଭିନ୍ନ ପାରିବାରିକ ଜୀବନ, ନରୁର ବଦଖର୍ଚ୍ଚି ଅପେସ୍ଥିତର ଦୂକାଶ୍ୱ ଜ୍ୟାଇଁଟାର ମନମୁଖୀ ଛିନ୍ତ, ପ୍ରବାସୀ ଓଡ଼ିଆଙ୍କ ବିକାଶନିମିତ୍ତ ଯଦୁମଣି ଲେଙ୍କା ଓ ଜୟକୃଷ୍ଣ ପରିଜାଙ୍କ ଉଦ୍ୟୋଗ—ଏସବୁ ଗୋଟିଏ ଗୋଟିଏ ତଥ୍ୟ ସମ୍ବଳିତ ଧାରା, ଯାହା କାହାଣୀର ମୂଳସ୍ରୋତକୁ ଅଧିକ ଘଟଣାମୟ କରିପାରିଛି ।

ଏହି ଉପନ୍ୟାସଟିରେ ଯାହା ସବୁଠୁ ଆକର୍ଷଣ କରେ, ମନକୁ ରସସିକ୍ତ କରେ, ତାହା ହେଉଛି ଲେଖକଙ୍କର ବିମଳହାସ୍ୟମୟ ସରସ ପ୍ରକାଶଭଙ୍ଗୀ । ଆତ୍ମୀୟସ୍ୱଶ୍ୱତରେ

କାହାଣୀର ଉପସ୍ଥାପନା, ଭାଷାରେ ଓ ବର୍ଣ୍ଣନାରେ ବେଳେବେଳେ ଏଇ ଭଙ୍ଗୀ ସେନାପତି ଫକୀରମୋହନଙ୍କ ରଚନା ସହ ଯୋଗାଯୋଗ ସ୍ଥାପନ କରିପାରେ । ଗ୍ରାମ୍ୟ ପରିବେଶର ଏକ ଚିତ୍ର ଲେଖକଙ୍କ ସୂକ୍ଷ୍ମ ଦୃଷ୍ଟି ମଧ୍ୟରେ ପ୍ରକଟିତ—"ପାଣିରେ ମୁହଁ କାଢିଥିବ ଧଣ୍ଡ୍ରାସାପ, ପହଁରିଯାଉଥିବେ ମହିଁଆପୋକ, ଶିଟୁ ବଣରେ ମୁଣ୍ଡ ଝୁଙ୍କାଉଥିବ ଏଣ୍ଡୁଅ, ଚିଁ ଚିଁ ଚିତ୍କାର ଗୁଡ଼ ଚଛରୁ ଉଇମାଟି ଝଡେଇ ଧାଇଁଥିବ ଗୁଣ୍ଡୁଚି ମୂଷା, କିଆବାଡରୁ ମୁହଁ କାଢିଥିବ ବିଲୁଆ, ନଇଲେ ଗଧିଆ, ଗଛରୁ ଗଛ ଡେଇଁଯାଉଥିବ ଓଧ । କାମୁଡ଼ା କାମୁଡ଼ି ହେଉଥିବେ ମାଙ୍କଡ, ନଇଲେ ବୁଲା କୁକୁର; ଅଳ୍ପଦୂରରେ ଉଠୁଥିବ ଧୂଆଁ — ନୁଇଗାଡ଼ରୁ, ନଇଲେ ଦଳକୁଦଳ ମାଟିଆ ଶାଗୁଣା ଉଡ଼ୁଥିବେ ମଲାଗୋରୁର ଅନ୍ତବୁଜୁଳାକୁ ।"

ଶବ୍ଦବ୍ୟବହାରରେ ଲେଖକଙ୍କର ପରମ୍ପରାପ୍ରୀତି ଜନିତ ଆତ୍ମୀୟତା ସ୍ପଷ୍ଟ ହୁଏ । ବହୁ ଗାଉଁଲି ଶବ୍ଦ, ବସ୍ତୁତନ୍ତ୍ରାସ୍ତ୍ର ଓ ଅର୍ଥବାହୀ ଶବ୍ଦସଂଯୋଜନା ବକ୍ତବ୍ୟର ଶ୍ରୀବୃଦ୍ଧିରେ ସାହାଯ୍ୟ କରେ । ଉଦାହରଣ ସ୍ୱରୂପ—ସୁକୁଟ, ପୁନାଦ, ଆରେବା, କାଠଚନ୍ଦବାଣ, କୋଡ଼ିଗ ପଡ଼ିବା, ଆପ୍ସା ମାରିବା, ବଁଏ, କମାହତ୍ ଇତ୍ୟାଦି । ଏହି ପୁସ୍ତକଟିର ଅନ୍ୟ ଏକ ବିଶେଷତ୍ୱ ହେଉଛି ଏଥିରେ ସଂଯୋଜିତ ଢଗଢମାଳି ଓ ଛଟା ସମୂହ । ଏଥିରୁ କେତେକ ଓଡ଼ିଶାରେ ଓ କେତେକ ବଙ୍ଗଳାରେ ପ୍ରଚଳିତ । ଓଡ଼ିଆ ଢଗଢମାଳି-ମାନ ବସ୍ତୁତିର ଗହ୍ୱରରୁ ଆପଣାର ସବୁଜତା ନେଇ ଆମର ସାମ୍ନାସାମ୍ନି ହେଇଯାଆନ୍ତି । ଓଡ଼ିଆ ଓ ବଙ୍ଗାଳୀଙ୍କ ଜୀବନର ତୀକ୍ଷ୍ଣ ନିରୀକ୍ଷଣ ହେତୁ ଲେଖକ ଏସବୁର ସଂଯୋଜନା କରିବାରେ ସଫଳ ହୋଇଛନ୍ତି ।

ଉପନ୍ୟାସର ଶେଷାଂଶରେ ମୈତ୍ରୀସଙ୍ଘର ପ୍ରଭାବ—ଦୁଃଖୀ, ନିଆଶ୍ରୀ, ଅନାଥଙ୍କ ସେବାରେ ନିୟୋଜିତ ଏହି ସଙ୍ଘର ସଂସ୍ଥାପକ ଶଙ୍କର ସାର୍‌ଙ୍କ ଉଦାରତାର ପ୍ରଭାବ-ବହୁ ଚରିତ୍ରରେ ପରିବର୍ତ୍ତନ ଘଟାଇଛି । ନରୁ ତାର ବିପଥଗାମୀ ଜୀବନରେ ଉପଯୁକ୍ତ ମାର୍ଗର ଆଲୋକ ପାଇଛି । ଶଙ୍କର ସାର୍‌ଙ୍କ ଅଭିଜ୍ଞତାସିଦ୍ଧ, କ୍ଷମାଶୀଳ ଦୃଷ୍ଟି ସମ୍ମୁଖରେ ସେ ନିଜର ନୂତନ ଆଗ୍ରହ ଫେରିପାଇଛି । ଶେଷକୁ ଲେଖକଙ୍କର ବାର୍ତ୍ତା—"ଧନୀ ଆଉ ଦରିଦ୍ରର ମିତ୍ରତାରେ ହିଁ ସୁଖୀ ପୃଥିବୀ ଗଢାଯାଇ ପାରିବ" ପରେ ପରେ ଭୀମ ଭୋଇଙ୍କର ଶ୍ଳୋକଟିକୁ ଉଦ୍ଧାର କରାଯାଇଛି—"ଏ ଜୀବନ ପଛେ ନର୍କେ ପଡ଼ିଥାଉ···" ଏଥିରେ ମାନବସମାଜ ପାଇଁ ଲେଖକଙ୍କର ସୁମନାସ ପ୍ରକଟିତ ।

ଓଡ଼ିଆ ସାହିତ୍ୟରେ ଉପାଦେୟ ଓ ଉପଭୋଗ୍ୟ କାହାଣୀର ସ୍ରଷ୍ଟାଭାବେ ଲେଖକ ସୁପ୍ରତିଷ୍ଠିତ । ଏହି "କି କଥା ? କଲିକତା" ଟି ତାର ନିଦର୍ଶନ । ପାଠକ ହୃଦୟକୁ ଆକର୍ଷଣ କରିବାର ସ୍ୱତନ୍ତ୍ର କ୍ଷମତା ଏହି ପୁସ୍ତକଟିର ରହିଅଛି । ରୁଚିକର ପ୍ରଚ୍ଛଦ ଓ ମୁଦ୍ରଣ ପରିପାଟୀରେ ପୁସ୍ତକଟି ବାସ୍ତବିକ ମର୍ଯ୍ୟାଦାବନ୍ତ ।

* ଅଧ୍ୟାପିକା, ଓଡ଼ିଆ ବିଭାଗ, ରମାଦେବୀ ମହିଳା କଲେଜ, ଭୁବନେଶ୍ୱର 

## ॥ 'ଆମେରିକାରୁ ଇଉରୋପ ଆଫ୍ରିକା' – ଏକ ଦୃଷ୍ଟିପାତ ॥

**ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)**

ଓଡ଼ିଆ ଭ୍ରମଣ ସାହିତ୍ୟର ଇତିବୃତ୍ତିକୁ ଖୁବ୍ ପ୍ରାଚୀନ ଅଥବା ସୁସମୃଦ୍ଧ କୁହାଯାଇ ନପାରେ । ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଶାର ବହୁ ବ୍ୟକ୍ତିଙ୍କ ବିଦେଶ ଯାତ୍ରା ଓ ସେମାନଙ୍କ ଅଭିଜ୍ଞତାର ଲିପିବଦ୍ଧ ବିବରଣୀ ଯୋଗୁ ଓଡ଼ିଆ ଭ୍ରମଣ ସାହିତ୍ୟର କଳେବର କେବଳ ପରିମାଣରେ ସମୃଦ୍ଧ ହୋଇଅଛି । ଏ କ୍ଷେତ୍ରରେ ଅଧ୍ୟାପକ କୁଞ୍ଜବିହାରୀ ଦାଶଙ୍କର କୃତିତ୍ୱ ସର୍ବାଧିକ ଦୃଷ୍ଟି ଆକର୍ଷଣକାରୀ, ଏହା କହିଲେ ବୋଧେ ଅସଂଗତ ହେବ ନାହିଁ । କବି, ଓଡ଼ିଆ ଲୋକ ସାହିତ୍ୟର ସଂଗ୍ରାହକ ଓ ଗବେଷକ ଭାବେ ସୁବିଦିତ । ଜୀବନ ସଂଗ୍ରାମ ଓ ଆତ୍ମୋନ୍ନତି ପ୍ରୟାସ ତାଙ୍କୁ ବିଭିନ୍ନ ସମୟରେ ଓଡ଼ିଶା ଓ ଓଡ଼ିଶା ବାହାରର ବିଭିନ୍ନ ସ୍ଥାନକୁ ଟାଣି ନେଇଛି । ଲୋକ ସାହିତ୍ୟର ସଂଗ୍ରହ ଲାଗି ସେ ଓଡ଼ିଶା ଓ ଭାରତର ବିଭିନ୍ନ ସ୍ଥାନକୁ ଯାଇଛନ୍ତି । ଓଡ଼ିଶା ଓ ଶାନ୍ତିନିକେତନର ଛାତ୍ର ମାନଙ୍କ ଗହଣରେ ଭାରତ ଓ ଶ୍ରୀଲଙ୍କାର ବିଭିନ୍ନ ସ୍ଥାନ ପରିଦର୍ଶନ କରିଛନ୍ତି । ଦେଖିଛନ୍ତି କାଶ୍ମୀରରୁ କୁମାରିକା ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନ । ଆପଣା ଅନୁଭୂତିରେ ରସାଣିତ କରି ସେ ତାହାକୁ ବିଭିନ୍ନ ଗ୍ରନ୍ଥରେ ମଧ୍ୟ ରୂପାୟିତ କରିଯାଇଛନ୍ତି । ମାତ୍ର ଭ୍ରମଣ ସାହିତ୍ୟ ଭାବରେ ଆମେରିକାରୁ ୟୁରୋପ୍ ଆଫ୍ରିକା ବହିଟି ହେଉଛି ତାହାଙ୍କର ସର୍ବଶ୍ରେଷ୍ଠ କୃତି । ସାଢେ ଆଠଶହ ପୃଷ୍ଠା, ଆକାରରେ ବିଶାଳ । ଓଡ଼ିଆ ସାହିତ୍ୟରେ ଏତେ ବଡ ଭ୍ରମଣ ଗ୍ରନ୍ଥ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ ।

କେବଳ ଆକାର ଦୃଷ୍ଟିରୁ ନୁହେଁ ଗୁଣାତ୍ମକ ଦୃଷ୍ଟିରୁ ଏହାର ମହତ୍ତ୍ୱ ସ୍ୱୀକୃତ । କବି କୁଞ୍ଜବିହାରୀ ମୁଖ୍ୟତଃ ଭ୍ରମଣ ବିଳାସୀ । ଏକ ସୀମିତ ଶିଳାଚୃହର ଆବେଷ୍ଟନୀ ଅଥବା ପରିଚିତ ଜନ ଗୋଷ୍ଠୀର ଗହଣରେ ସନ୍ତୁଷ୍ଟ ହେବା ତାଙ୍କର ଧର୍ମ ନୁହେଁ । ଅନେକଙ୍କ ମଧ୍ୟରେ ହଜି ଯିବାକୁ ଓ ଅନେକଙ୍କ ମେଳରେ ଆପଣାକୁ ଖୋଜି ପାଇବାକୁ ସେ ନିରନ୍ତର ଅଭିଳାଷୀ । ଅନେକଙ୍କ ସହ ସଖ୍ୟ, ମମତାର ବଂଧନରେ ସେ ଆପଣାକୁ ବାନ୍ଧିଛନ୍ତି । ଅନେକ ଆକାଶ ତଳୁ ସେ ସଂଗ୍ରହ କରିଛନ୍ତି ବହୁ ଭାବ, ଅନୁଭବ ଓ ଅଭିଜ୍ଞତା । ସେଥିପାଇଁ ପରିଣତ ବୟସରେ ସେ ଗୋଟିଏ ନୁହଁ, ତିନିଗୋଟି ମହାଦେଶରେ ଆପଣାକୁ ଖୋଜିଛନ୍ତି, ଖୋଜିଛନ୍ତି ବହୁ ଦେଶର ବହୁ ବିଚିତ୍ର ଅଭିଜ୍ଞତାକୁ । ଅବଶ୍ୟ ଏଥିପାଇଁ ଲୋକ ସାହିତ୍ୟର ବିଶିଷ୍ଟ ଗବେଷକ ଭାବେ ଆମେରିକାରୁ

ବ୍ଲୁମିଙ୍ଗଟନ ଠାରେ ଅନୁଷ୍ଠିତ ଏସିଆ ଲୋକ ସଂସ୍କୃତି ସମ୍ମିଳନରେ (୧୯୬୬ ଜୁନ)ଭାରତର ପ୍ରତିନିଧି ଭାବରେ ଯୋଗ ଦେବାକୁ ତାଙ୍କୁ ଏକ ସୁଯୋଗ ମିଳିଥିଲା । ସେ ତା'ର ସଦୁପଯୋଗ କରିବାସଙ୍ଗେ ରଚନା କରିଛନ୍ତି ଏଇ ଭ୍ରମଣ-ସାହିତ୍ୟ । ଏଥିପାଇଁ ତାଙ୍କୁ ଅଧିକ ସାହାଯ୍ୟ ଓ ସୁଯୋଗ ଦେଇଛନ୍ତି ତାଙ୍କର ଅନୁଜ, ଓଡ଼ିଶାର ଅନ୍ୟତମ କୃତି ସନ୍ତାନ ଉଦାର ହୃଦୟ ଡ଼କ୍ଟର ଉଦୟନାଥ ଦାଶ ଓ ତାଙ୍କର ସହଧର୍ମିଣୀ ଡକ୍ଟର ଇରା ଦାଶ । ନିଜେ କାର୍ ଚଳାଇ ସେ ତାଙ୍କୁ ଆମେରିକାର ହଜାର ହଜାର ମାଇଲ ବୁଲାଇ ଦେଖାଇଛନ୍ତି ।ଆମେରିକାରୁ ୟୁରୋପ ଓ ଆଫ୍ରିକା ବାଟେ ଭାରତକୁ ଫେରିବା ସମୟରେ ସେ ଶେଷୋକ୍ତ ଦୁଇ ମହାଦେଶର ଅନେକ ସ୍ଥାନମଧ୍ୟ ଦେଖିଛନ୍ତି । ସବୁଠାରୁ କୌତୂହଳର ବିଷୟ, ଟ୍ରେନ୍, ବସ୍ ବା ପ୍ଲେନ୍‌ରେ ଯାତ୍ରାକରୁଥିବା ବେଳେହିଁ ସେ ଆପଣାର ଏଇ ଅଭିଜ୍ଞତା ସମୂହକୁ ଲିପିବଦ୍ଧ କରିଥିଲେ । ତାଙ୍କର ଏତାଦୃଶ ଧୈର୍ଯ୍ୟ, ଅଭିନିବେଶ ଓ ନିଷ୍ଠା ଫଳରେହିଁ ସ୍ୱଳ୍ପକାଳ ମଧ୍ୟରେ ( ଜୁନ ୧୯୬୬ରୁ ଅଗଷ୍ଟ ୧୯୬୭ ) ଏହି ସୁବୃହତ୍ ଗ୍ରନ୍ଥଟି ପୂର୍ଣ୍ଣାଙ୍ଗ ରୂପ ଲାଭକରି ପାରିଥିଲା । ପ୍ରତ୍ୟହ ଡାଇରି ଆକାରରେ ଲିଖିତ ତାଙ୍କର ଭ୍ରମଣ ଅଭିଜ୍ଞତାକୁ ମାତ୍ର ଏକବର୍ଷ ମଧ୍ୟରେ ସୁସଜ୍ଜିତ କରାଇବା କିପରି ଧୈର୍ଯ୍ୟ ଓ ନିଷ୍ଠା-ସାପେକ୍ଷ ଏହା ସହଜରେ ଅନୁମେୟ ।

ଭ୍ରମଣ ଅନୁଭୂତି ଓ ଅଭିଜ୍ଞତାସବୁ ଶରତ ସନ୍ଧ୍ୟାର ଗଙ୍ଗଶିଉଳି ଫୁଲ ପରି ଫୁଟି ବାସ ଚହଟାଇ ସକାଳ ହେବା ସଙ୍ଗେ ସଙ୍ଗେ ତାହା ଝରିଯାଏ । ସଙ୍ଗେ ସଙ୍ଗେ ସେଗୁଡ଼ିକୁ ଲିପିବଦ୍ଧ ନକଲେ ତାହା ବିସ୍ମୃତି କୋଳରେ ହଜିଯାଏ । ପରେ ସେଗୁଡ଼ିକୁ ସ୍ମୃତିରୁ ଉଦ୍ଧାର କରିବା ସମ୍ଭବ ହୁଏ ନାହିଁ ; ସ୍ମୃତିରେହିଁ ବିଲୀନ ହୋଇଯାନ୍ତି ଅନେକ ନୂଆ ମଣିଷ ଓ ବହୁ ବିଚିତ୍ର ଅଭିଜ୍ଞତା । କବି ରାଧାନାଥ ସେଥିପାଇଁ ସବୁବେଳେ ଗୋଟିଏ ଟିପା ଖାତା ରଖି ପରେ ତାହାର ସଦୁପଯୋଗ କରୁଥିଲେ । ଆମର ସୌଭାଗ୍ୟ କବି କୁଞ୍ଜବିହାରୀ ସେହିପରି ତାଙ୍କର ଭ୍ରମଣ ଅଭିଜ୍ଞତାକୁ ଲିପିବଦ୍ଧ କରିଯାଇଛନ୍ତି ଏ ଯୁଗର ପାଠକ ଓ ଆଗାମୀ ଯୁଗର ପାଠକମାନଙ୍କ ପାଇଁ ।

ଏହି ବିରାଟ କୀର୍ତ୍ତିର ମୂଲ୍ୟାଙ୍କନ କଷ୍ଟସାଧ୍ୟ । ଏହା ପ୍ରତି ଏକ ମୁଗ୍ଧ ଦୃଷ୍ଟିପାତହିଁ ଶ୍ରେୟ । ଥରେ ପଢ଼ିଥିଲି, ଆଉଥରେ ପଢ଼ିଲି । ବିରାଟତା ଦୃଷ୍ଟିରୁ ଏହା ନିଶ୍ଚୟ ଧୈର୍ଯ୍ୟ ସାପେକ୍ଷ । ତଥାପି ଭଲ ଲାଗିଲା । ଏହାତ ଭ୍ରମଣର ଏକ ସ୍ଥୂଳ ବିବରଣୀ ନୁହେଁ—ଏହା ଯେ ଏକ ରସ ପିପାସୁ ରୂପପ୍ରାଣ ବ୍ୟକ୍ତିର ଆତ୍ମାନୁଭୂତି । ଅନେକ ଚରିତ୍ର ଅନେକ ଘଟଣା, ଅନେକ ସମ୍ପର୍କର ସୂତ୍ର କାହାଣୀ ଭଳି ପାଠକର ମନକୁ ଆକୃଷ୍ଟ କରି ରଖେ । ବିପୁଳା ଧରଣୀର ଦେଶେ ଦେଶେ କେତେ ରୂପ, କେତେ ବୈଚିତ୍ର୍ୟ କେତେ କୋଳାହଳ, ଅହର୍ନିଶି କେତେ ଛାଇ ଆଲୁଅର ଖେଳ । ସବୁ ଜୀବନ୍ତ ହୋଇଉଠିଛି ଏଇ ଭ୍ରମଣ ବୃତ୍ତାନ୍ତରେ । ଗଳ୍ପ ଉପନ୍ୟାସ ଭଳି ହୋଇଛି ସୁଖ ପାଠ୍ୟ । ଅବଶ୍ୟ

ଆମେରିକା, ଇଉରୋପ ଅପେକ୍ଷା ଆଫ୍ରିକାର ଭ୍ରମଣ ଅଭିଜ୍ଞତାର ଚିତ୍ର ସ୍ୱଳ୍ପହେବା ସ୍ୱାଭାବିକ । ତଥାପି କୌଣସି ପ୍ରସଙ୍ଗଟି ତ ଅନାକର୍ଷଣୀୟ ହୋଇନାହିଁ । ଏଣୁ ଏ ସଂପର୍କରେ କେବଳ ଏତିକି କୁହାଯାଇପାରେ 'ସୁନ୍ଦରେ ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଏ ।'

ଏହି ଗ୍ରନ୍ଥରେ ଆମେ କେବଳ ଯେ ଆମେରିକା ୟୁରୋପ ଓ ଆଫ୍ରିକାକୁ ଦେଖୁ ଏହା ମଧ୍ୟ ଯଥାର୍ଥ ନୁହେଁ । ଏଥିରେ ମଧ୍ୟ ପ୍ରତିଫଳିତ ହୋଇଛି ପଲ୍ଲୀମାଳିନୀ ବନ୍ୟା ଦୁର୍ଭିକ୍ଷ-ପୀଡ଼ିତ ଅନୁନ୍ନତ ଓଡ଼ିଶା । ଶ୍ରୀଯୁକ୍ତ ଦାଶଙ୍କ ସ୍ୱଦେଶାନୁରାଗ ସ୍ୱଳ୍ପନୁହେଁ । ବିଦେଶରେ ସେ ସବୁବେଳେ ସ୍ମରଣ କରିଛନ୍ତି ସ୍ୱଦେଶକୁ, ଆପଣାର ଅତୀତ ଅଭିଜ୍ଞତା ସମୂହକୁ । ତାହାଙ୍କର ତ୍ୱକ୍ ଉପରେ କଳା ଗୋରା ପିଲାଙ୍କୁ ଏକତ୍ର ଦେଖି ସେ ଯେପରି ଲେଖିଥିଲେ 'ଚଳ ତନ୍ତ୍ରୁଳିତ ଚେହେରା—ସତେ ଯେପରି ପ୍ରତ୍ୟୁଷ ; ରାତ୍ରି ପାହି ନାହିଁ । ଠିକ୍ ସେହିପରି ଏଇ ଭ୍ରମଣ ବୃତ୍ତାନ୍ତଟି । କ୍ଷୋଭର ସହିତ ସେ ଏଣୁ ଲେଖିଛନ୍ତି "କେବେ ମୋ ଦେଶ ଗଢ଼ା ହେବ ଇଉରୋପ, ଆମେରିକା ଭଳି ? କେବେ ସେ ସବୁ ଦେଶ ପରି ଅର୍ଜନ କରିପାରିବ ବୈଦେଶିକ ମୁଦ୍ରା ?" ରୋମାଣ୍ଟିକ କବି ଭଳି ବିଭିନ୍ନ ପ୍ରାକୃତିକ ପରିବେଶରେ ପ୍ରକୃତିର ବିଭିନ୍ନ ଦୃଶ୍ୟ ତାଙ୍କୁ ଭାବବିହ୍ୱଳ କରିଛି । ଅଭାବ ଯୋଗୁ ମଣିଷ ଏଠି ପ୍ରକୃତି ସହ ଆତ୍ମିକ ଯୋଗ ସ୍ଥାପନ କରିପାରୁ ନାହିଁ ବୋଲି ତାଙ୍କର ପ୍ରଚୁର ବେଦନାବୋଧ ।

କୌତୂହଳୀ ଶିଶୁର ମନ ନେଇ ସେ ବିଦେଶର ବିଭିନ୍ନ ସ୍ଥାନକୁ ପରିଦର୍ଶନ କରିଛନ୍ତି । ସେଥିପାଇଁ ସେ ବିଦେଶରେ ଚର୍ଚ୍ଚ, ପାର୍କ, ପ୍ଲାନେଟୋରିଅମ, ଚିଡ଼ିଆଖାନା, କଳ, କାରଖାନା, ସ୍କୁଲ, ବିଶ୍ୱବିଦ୍ୟାଳୟ, ଆର୍ଟ ଗ୍ୟାଲେରି, ଅଷ୍ଟିତର ରାଜ ପ୍ରାସାଦ, ଠାରୁ ଆରମ୍ଭ କରି ବହୁବିଧ ନରନାରୀଙ୍କ ସହ ସଂପର୍କ ସ୍ଥାପନ କରିଛନ୍ତି, । ଯୋଗ ଦେଇଛନ୍ତି, ସେ ଦେଶର ଆମୋଦ ପ୍ରମୋଦ. ମେଳା, ମହୋତ୍ସବରେ । ତାହାର ଜୀବନ୍ତ ଓ ସରସ ବର୍ଣ୍ଣନାରେ ଏହି ଭ୍ରମଣ ସାହିତ୍ୟଟି ହୋଇଛି ମନମୁଗ୍ଧକର । ତାହାର ମହତ୍ତ୍ୱ ଅଥବା ମାଧୁର୍ଯ୍ୟ କେବଳ ତାହାକୁ ପାଠ କଲେହିଁ ଅନୁଭବ କରିହେବ । ବିଦେଶର ବହୁ ଗୀତ ନାଚ ଚଳଚିତ୍ର ତାଙ୍କୁ ଯେପରି ମୁଗ୍ଧ କରିଛି ସେହିପରି କେତେ ବିଷୟରେ ମଧ୍ୟ ତାଙ୍କୁ ବୀତସ୍ପୃହ କରିଛି । ଉଦାହରଣ ସ୍ୱରୂପ ମଦ୍ୟ ପାନ, ଉଲଗ୍ନ ନୃତ୍ୟ, ପ୍ରମତ୍ତ ଭୋଗ-ଲିପ୍ସା ପ୍ରସଙ୍ଗ ଏଠାରେ ସ୍ମରଣୀୟ । ଆପଣାର ପ୍ରତିକ୍ରିୟା ପ୍ରକାଶ କରିବାରେ ସେ ସର୍ବଦା କୁଣ୍ଠାହୀନ ଓ ନିର୍ଭୀକ । ରକ୍ଷଣଶୀଳତା ପରିବର୍ତ୍ତେ ଉଦାର ବିଶ୍ୱ ମାନବିକତା ବୋଧରେ ସେ ହୋଇଛନ୍ତି ଉଦ୍‌ବୁଦ୍ଧ ।

ଲେଖକଙ୍କ ସୌନ୍ଦର୍ଯ୍ୟାନୁଭୂତି ଓ ବିଦଗ୍ଧତାର ସ୍ପର୍ଶ ପୁସ୍ତକର ଛନ୍ଦେ ଛନ୍ଦେ ବିଦ୍ୟମାନ । ତାହାର ଉଦ୍ଧୃତି ଦ୍ୱାରା ଏଇ ରଚନାର କଳେବର ବୃଦ୍ଧି କରିବା ଅନାବଶ୍ୟକ ବୋଧ କରୁଅଛି । ଗ୍ରନ୍ଥଟିରେ ଲେଖକଙ୍କ କେତୋଟି କବିତାଂଶ ସ୍ଥାନ

ପାଇଥିଲେହେଁ ଏଥିର ବର୍ଣ୍ଣନା ଶୈଳୀ ବହୁ ସ୍ଥାନରେ ହୋଇଛି କବିତ୍ୱ ପୂର୍ଣ୍ଣ । କଳ୍ପନା ସଂଯୋଗରେ ସେ ତାହାକୁ ଅଧିକ ଚିତ୍ତାକର୍ଷକ କରି ଅଛନ୍ତି । ଆମେରିକାର ଟିଲସ୍‌-ପାର୍କରେ ସାମାନ୍ୟ ବର୍ଷାକୁ ବର୍ଣ୍ଣନା କରି ଲେଖକ ଲେଖିଛନ୍ତି–

"ବର୍ଷା ! ଦୁଇଗୃହ ବନ୍ଧୁ ମାତ୍ର ପଡ଼ିଲା ଆଶୀର୍ବାଦ ଜଳପରି । ମୌସୁମୀ ଦେଶର ସେ ଜୁଆରିଆ କଳ ହାଣ୍ଡିଆ ଚେହେରା ନାହିଁ, ସେ ବକାଳିକା ମାଳିକା ନାହାଁନ୍ତି, କଣ୍ଟା ବିଜୁଳିର ସେ ଘନ ଘନ ଚମକ ନାହିଁ, ଅଧା ଖରା ଅଧା ବର୍ଷାର ସେ ଦଗଦଗନ୍ତଲମ୍ବୀ ଇନ୍ଦ୍ରଧନୁ ନାହିଁ । ମଣ୍ଡୁକର ସେ ସପ୍ତ ସ୍ୱର ନିନାଦ ନାହିଁ, ଗୃତକ ବା ବୃଷୀର କଲୋଚ୍ଛ୍ୱାସ ନାହିଁ । ସେ ରିକ୍ତ ବିଶ୍ୱାସିନୀ କୃଷକ କନ୍ୟାର ଅଭିନନ୍ଦିତ ଅତିଥି ନୁହେଁ, ବିରହୀ ବିରହିଣୀର ବିଶ୍ୱସ୍ତ ଆକାଶ ଦୂତ ନୁହେଁ ।" (ପୃ ୬୫)

ବିଦଗ୍‌ଧତା ଓ ସରସ ବର୍ଣ୍ଣନାର ଆଉ ଏକ ଦୃଷ୍ଟାନ୍ତ ସଂକ୍ଷିପ୍ତ ଓ ସୂଚନାତ୍ମକ ଶାଣିତ ବାକ୍‌ଭଙ୍ଗୀ କୁଞ୍ଜବିହାରୀଙ୍କ ଗଦ୍ୟ ଶୈଳୀର ଅନ୍ୟ ଏକ ଦିଗନ୍ତ । ଲଣ୍ଡନର ଯୁଆଖେଳ, କ୍ୟାସିନୋର ବର୍ଣ୍ଣନା ସଂପର୍କରେ ଲେଖକଙ୍କ ଅଭିମତ ଦେଖନ୍ତୁ । 'ଲଣ୍ଡନ ଲୋକେ ପଶା ଖେଳନ୍ତି; ବୁଝିଲେ ସାତ ସମୁଦ୍ରରେ ସେମାନଙ୍କ ପଶାପାଲି ବିସ୍ତୃତ ହୋଇ ରହିଛି । ସବୁ ଜାତିର ଜୀବନକୁ କାଟି କରି ସେମାନେ ଗଡ଼ାଇ ଆସିଛନ୍ତି, ବେଳେବେଳେ ଶକୁନି ଭଳି; ଧନମାନ ମର୍ଯ୍ୟାଦା ସବୁ ଯାଇଛି—ଯୁକେଷ୍ଟିମାନଙ୍କ ନିଦ୍ରା ଭାଙ୍ଗିଲା ବେଳକୁ ଗଡ଼ ଫଟେ ।' (ପୃ ୫୯୩) । ମୁହୁର୍ମୁହୁ ପରିବର୍ତ୍ତନଶୀଳ, ବର୍ଷା ପ୍ରବଣ ଲଣ୍ଡନର ପ୍ରକୃତି ପ୍ରସଙ୍ଗରେ ଲେଖକଙ୍କ ବର୍ଣ୍ଣନା ଏହିପରି—'ଏଠା ପ୍ରକୃତିକୁ ବିଶ୍ୱାସ ନାହିଁ, ତାର ଏ ଆଖିରେ ହସ, ଆର ଆଖିରେ ଲୁହ । ସେ ହସି ହସି ଗଡ଼ୁଥିବ, ପୁଣି ହଠାତ୍ ମୁହଁକୁ କୁହୁଳେଇ ପକେଇବ । ବର୍ଷାଠୁ ଅପେକ୍ଷା ଛତାର ବ୍ୟବହାର ଏଠି ଅଧିକ ।' (ପୃ ୫୯୪ ।

ଉପର୍ଯ୍ୟୁକ୍ତ ଉକ୍ତିମାନଙ୍କରୁ ଲେଖକଙ୍କ ଭାଷାର ବୈଶିଷ୍ଟ୍ୟ ଅନୁମେୟ । ସରଳ, ଲୋକ ପ୍ରଚଳିତ କଥ୍ୟ ଭାଷାରେ ହିଁ ଏହି ଅନୁଭୂତି ଓ ଅଭିଜ୍ଞତା-ସମୃଦ୍ଧ ଭ୍ରମଣ ବୃତ୍ତାନ୍ତଟି ରଚିତ; ଆଡମ୍ବରପୂର୍ଣ୍ଣ ପରିପାଟୀ ନ ଥାଇ ବି ସରସ, ସୁନ୍ଦର ଓ ସ୍ୱାଭାବିକ, କୃତ୍ରିମତାମୁକ୍ତ ।

ପରିଶେଷରେ ଏହି ଗ୍ରନ୍ଥଟି ବହୁ ତଥ୍ୟ, ତତ୍ତ୍ୱ, ବିଚାର, ଆଲୋଚନାରେ ଯେ ସମୃଦ୍ଧ ହୋଇଛି ଏହା ଅବଶ୍ୟ ସ୍ୱୀକାର୍ଯ୍ୟ । ତିନିଗୋଟି ମହାଦେଶରେ ଭ୍ରମଣ ଲେଖକଙ୍କୁ ନିଶ୍ଚିତଭାବେ ଅଧିକ ପରିପକ୍ୱ, ପ୍ରବୀଣ ଓ ବହୁଦର୍ଶୀ କରିଛି । ଏହାର ସରସ ବିବରଣୀ ପାଠକଙ୍କୁ ଯେ ଅଧିକ ରସବୋଧ ସଂପନ୍ନ ଅଭିଜ୍ଞ ଓ ଉଚ୍ଚାଭିଳାଷୀ କରିବ ଏ ବିଷୟରେ ସନ୍ଦେହର ଅବକାଶ ନାହିଁ ।

* ଜାନକୀ ବଲ୍ଲଭ ମହାନ୍ତି, ଜୟଦେବ ନଗର, ଭୁବନେଶ୍ୱର—୨

# ।। 'କୁଞ୍ଜବିହାରୀ : ମାନସ ଦୀକ୍ଷା ଓ ସାହିତ୍ୟ ଦୀକ୍ଷା' ।।

ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ

"ଆଧୁନିକ ଓଡ଼ିଆ ସାହିତ୍ୟ କେତେଜଣ ବୁଭୁକ୍ଷୁଙ୍କ ସୃଷ୍ଟି । ଅବସରକୁ ଲାଭଜନକ ବ୍ୟବସାୟରେ ନ ଖଟାଇ ସେମାନେ ସାହିତ୍ୟ ରଚନାରେ ଅପବ୍ୟୟ କରନ୍ତି । ଏହା ବ୍ୟବହାରୀଙ୍କ ଦୃଷ୍ଟିରେ ପାଗଳାମି, ଆଦର୍ଶବାଦୀଙ୍କ ଦୃଷ୍ଟିରେ ମହତ୍ତ୍ୱ । ଶିକ୍ଷିତ ଦୃଷ୍ଟିରେ ସାହିତ୍ୟିକ କୃପାର ପାତ୍ର—ଆହା ବିଚରା କବିଟିଏ ।"—(୧) ସମକାଳୀନ ଓଡ଼ିଶାରେ ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକର ଦୁର୍ଗତି ଦେଖି କୁଞ୍ଜ ବିହାରୀଙ୍କ କ୍ଷୋଭ ଅମୂଳକ ନୁହେଁ । ଏ ଯୁଗରେ ସାହିତ୍ୟିକ ସତେକି ତୃତୀୟ ପାହାଚରେ ଠିଆ ହୋଇଥିବା ମଣିଷଟିଏ । ସେ ନିର୍ବାକ୍, ନିସ୍ପନ୍ଦ ଏକ ବ୍ୟକ୍ତିସତ୍ତା । ତାର ସ୍ୱରରେ ଏ ଜାତିର ସ୍ୱୀକାର୍ଯ୍ୟତା ନାହିଁ । ଏଣୁ ସେ ଶାଣିତ କଣ୍ଠରେ କହନ୍ତି—"ଓଡ଼ିଆ ସାହିତ୍ୟ ପ୍ରତି ଦୃଷ୍ଟିପାତ କଲେ, ମନେ ହେଉଛି, ଏହା ଯେପରି ଅନ୍ୟ କାହା ଭାବର ପ୍ରତିଧ୍ୱନି । ଅବଶ୍ୟ ଖାଲି ଓଡ଼ିଆ ସାହିତ୍ୟିକ ଅପରାଧୀ ନୁହେଁ, ସମଗ୍ର ଭାରତ ଯେପରି ପାଶ୍ଚାତ୍ୟ ଲେଖମାନଙ୍କ ଗୃହିଁ ବସିଛି । ଓଡ଼ିଆ ବଙ୍ଗାଳୀଙ୍କଠାରୁ ଭାବ ଝାମ୍ପି ଆଣିଲେ ବି ବଙ୍ଗାଳୀ ଇଂରେଜୀ, ଫରାସୀ, ଜର୍ମାନୀ ଭାଷାରୁ ଲୁଟ୍ କରୁଛନ୍ତି; କିନ୍ତୁ ଓଡ଼ିଶାରେ ଗୌଣ ମନୋବୃତ୍ତି ଯୋଗୁଁ ଏଇ ପରମୁଖାପେକ୍ଷିତା ବଢ଼ି ଚାଲିବାର ଦିଶୁଛି । ଏହାଠାରୁ ମୌଳିକତାର ବଡ଼ ଶତ୍ରୁ କିଛି ନାହିଁ ।" ଏ ଉକ୍ତିଟିରେ କୁଞ୍ଜବିହାରୀଙ୍କ ସୃଷ୍ଟିମାନସର ଭୂମି ଓ ଭୂମିକା ସମ୍ପର୍କରେ କେତେକ ସଙ୍କେତ ମିଳେ । (କ) ଡକ୍ଟର ଦାଶଙ୍କ ସାରସ୍ୱତ ମନୋଭୂମି ହେଉଛି ଏ ଦେଶର ଐତିହ୍ୟ ଓ ବିପୁଳ ପଲ୍ଲୀଜୀବନ । (ଖ) ସେ ପାଶ୍ଚାତ୍ୟ ଅନ୍ଧାନୁସରଣର ପକ୍ଷପାତୀ ନୁହଁନ୍ତି । କିନ୍ତୁ ସେ ଲେଖକର ଅହଂମନ୍ୟତା ବା ଆତ୍ମବିକୃତିକୁ ବରଦାସ୍ତ କରି ପାରନ୍ତି ନାହିଁ । 'ହାମବଡ଼ାଭାବ' ଲେଖକର ଅଗ୍ରଗତିର ପ୍ରତିବାଧକ ବୋଲି ସେ ଉଦ୍‌ଘୋଷଣା କରି ବସନ୍ତି । ସେ ପୁଣି ନିଃସଙ୍କୋଚରେ କହିପାରନ୍ତି—ଓଡ଼ିଶାର ପ୍ରଥମ ଶ୍ରେଣୀର ଲେଖକ ଜଣେ ହେଲେ ଉତୁରି ନାହାନ୍ତି । ଯେଉଁ କେତେଜଣ ଦ୍ୱିତୀୟ ଶ୍ରେଣୀର ଲେଖକ ଅଛନ୍ତି, ସେମାନଙ୍କ ଲେଖା ଯଥେଷ୍ଟ

---

୧ । ଡକ୍ଟର କୁଞ୍ଜବିହାରୀ ଦାଶ ଓଡ଼ିଆ ସାହିତ୍ୟର ଗତିଦୁର୍ଗତି : ଏକ ସମୀକ୍ଷା । ସାହିତ୍ୟ ଓ ସମାଲୋଚନା—୩୯୧

ପରିମାଣରେ ଅନୁବାଦିତ ହୋଇନାହିଁ । ଫଳରେ ଓଡ଼ିଆ ଭାଷା ଓ ସାହିତ୍ୟ ତାର ଅନ୍ଧକାରଶାଳାରେ ଗୁରୁଣ୍ଡୁଛି ।'—ଏ ବକ୍ତବ୍ୟରେ ଲେଖକଙ୍କ ମମତ୍ୱବୋଧ ଓ ସ୍ୱଦେଶାନୁରାଗ ପ୍ରକଟିତ । ସେ ଏ ଦେଶର ସାରସ୍ୱତ ଜଗତକୁ ନିରପେକ୍ଷ ଦୃଷ୍ଟିରେ କଳନା କରିବାକୁ ଚେଷ୍ଟା କରିଛନ୍ତି । ପରମ୍ପରାର ଭିଟାମାଟିରେ ଠିଆ ହୋଇ ସେ ବର୍ତ୍ତମାନର ସାହିତ୍ୟକାରଙ୍କୁ ନିରେଖିଛନ୍ତି । ସେ ଦେଖନ୍ତି—"ସ୍ୱଳ୍ପ ସାଧନାରେ ଲୋକ ଏଠି ସାହିତ୍ୟିକ ନାମରେ ପରିଚିତ ହୁଏ, ବିକାଶ ନୋହୁଣୁ ମଉଳି ଯାଏ । ସାମାନ୍ୟ ପରିଚେଷ୍ଟା ହେଲେ ବିଶ୍ୱରେ, ସେ ଯାହା ବିଳବିଳେଇବ ବେଦ ହୋଇଯିବ । ଲେଖକ, ନିଜ ଲେଖାକୁ ପ୍ରାଧାନ୍ୟ ନ ଦେଲେ ପାଠକ ଦେବ କାହିଁକି ?" ଏଣୁ ଆମ ସାହିତ୍ୟିକମାନଙ୍କ କୂପମଣ୍ଡୂକତ୍ୱ ଦେଖି ଲେଖକ ଖେଦ ପ୍ରକାଶ କରନ୍ତି । ଏ ଜାତିର ତମିରବୋଳା ଅହଂସର୍ବସ୍ୱ ସାହିତ୍ୟାନୁରାଗ କଳି ଲେଖକ କମ ବେଦନା ଅନୁଭବ କରିନାହାନ୍ତି । ତଥାପି ସମସାମୟିକ ସାହିତ୍ୟକୁ ସମୀକ୍ଷା କଲାବେଳେ ସେ ନିରାଶ ହୁଅନ୍ତି ନାହିଁ; ଦୃଢ଼ଭଙ୍ଗୀରେ କହି ପାରନ୍ତି—'ଆଶା ମୋର ଭାଷା, ଆଶାହିଁ ମୋର ପ୍ରାଣ । ଜୀବନ ମୋର ଲକ୍ଷ୍ୟ ।" ଏଣୁ ଜାତି ସଚେତନ ଶିଳ୍ପୀ ମନର ଚିତ୍ରଭୂମିକୁ ଚିହ୍ନିବାରେ ଆନନ୍ଦ ଅଛି ।

କୁଞ୍ଜବିହାରୀ ମୁଖ୍ୟତଃ ଜଣେ ଦରଦୀ ସମୀକ୍ଷକ । ତାଙ୍କର ସାହିତ୍ୟ ସମୀକ୍ଷାରେ ନିଷ୍ଠୁର ମନ୍ତବ୍ୟ ଅପେକ୍ଷା ମମତାବୋଳା ସ୍ନେହପ୍ରବଣ ଚିତ୍ତର ଖେଳା ଅଧିକ ଦୃଷ୍ଟିପଡ଼େ । ସେ ସାହିତ୍ୟିକର ନିଃସଙ୍ଗ, ଏକାକୀ ସାଧନାକୁ ଅଙ୍ଗେ ନିଭାଇଛନ୍ତି; ସାହିତ୍ୟ ସେବକଙ୍କ ପ୍ରତି ତାଙ୍କର ଦରଦ ଓ ସ୍ନେହପଣିଆ ଅଭିବ୍ୟକ୍ତ । ସେ ସମୀକ୍ଷକ ହୋଇମଧ୍ୟ ବନ୍ଧୁ ସମୀପରେ ମେଘ ଝରି ଅମ ଅମ; ଆକାଶ ପରି ଉଦାର ଏବଂ ଇନ୍ଦ୍ରଧନୁ ପରି ସୋହାଗ-ବୋଳା ଦୃଷ୍ଟି ଢାଳି ପକାନ୍ତି । ଫଳତଃ ତାଙ୍କର ଦାଶ ସମୀକ୍ଷକର ଖଣ୍ଡାଧାରରେ ଝୁଲୁ ଝୁଲୁ ଲୁହ ଢାଳନ୍ତି; ଅନୁକମ୍ପାର ହାକଲା ମେଘଟିଏ ସୃଷ୍ଟି କରି ଦିଅନ୍ତି : କବି ଚିନ୍ତାମଣି ମହାନ୍ତିଙ୍କ ପ୍ରତି ଦରଦୀ ସୁର ଖେଳାଇ କହିପାରନ୍ତି—"ସେ ଭୁବନେଶ୍ୱରର ଖରାଖିଆ ବୈଦ୍ୟନାଥଙ୍କ ପରି; ପୂଜକ ଟୋପାଏ ପାଣି, ଗୋଟାଏ ବେଲପତ୍ରୀ ଫୋପାଡ଼ି ଦେଇ କର୍ତ୍ତବ୍ୟ ଶେଷ କରିଛି । ବୈଦ୍ୟନାଥ ବିଚଳିତ ହୋଇ ନାହାନ୍ତି, ସେମିତି ଖରାବର୍ଷା ଖାଇ ପଡ଼ିଛନ୍ତି । ତାଙ୍କ ଉପରେ କାଳ ବୋହିଯାଉଛି । ଆଜୀବନ ଦୁଃଖୀ, ମୃତ୍ୟୁପରେ ମଧ୍ୟ ତାଙ୍କ ଭାଗ୍ୟରେ କୌଣସି ପରିବର୍ତ୍ତନ ଘଟିନାହିଁ । (୨) ବାସ୍ତବରେ ଚିନ୍ତାମଣି ଏବେ ଏକ ବିସ୍ମୃତ କାବ୍ୟପୁରୁଷ । ସେ ଆଜି ଜନମାନସରେ କବି ଶେଖର ନୁହନ୍ତି । ତାଙ୍କର କାବ୍ୟ କବିତା ମୃତ ବସ୍ତା ଗାଣ୍ଠି ପରି ଆପାଙ୍‌କ୍ତେୟ । ବିନ୍ଦୁ ପଂକ୍ତିଭୋଜନ ଦେଲେ ଯେ ଜଣେ କବି ସ୍ମରଣୀୟ ହେବ, ତାର କୌଣସି ହେତୁ ନାହିଁ । କଠୋର ସାଧନା ତାଙ୍କ କବି ଜୀବନର ଭୂମିକା ହୋଇପାରେ । କିନ୍ତୁ ସାଧନାର

୨ । 'ହାଳନ୍ଧୀ' କାବ୍ୟ ଓ କବି ଚିନ୍ତାମଣି : ଏକ ସମୀକ୍ଷା

ଇଲାକାରେ ରହି କେହି କବି ହୁଏ ନାହିଁ । ସ୍ୱକୀୟ ପ୍ରତିଭା ବ୍ୟତିରେକେ ସ୍ରଷ୍ଟାର ଭାଗ୍ୟ ଯାହା ହେବାର କଥା; ଚନ୍ଦ୍ରାମଣି ସେଥିରୁ ବାଦ ପଡନ୍ତେ କିପରି ? ତଥାପି କୁଞ୍ଜବିହାରୀଙ୍କ ଦରଦୀ ମନରେ ସେ ନିପୁଣ ଭାସ୍କର ପରି । ସେ ଭଙ୍ଗା ଜୀବନକୁ ଗଢିଛନ୍ତି ଓ ଚର୍ଚ୍ଚି ଛନ୍ତି । 'ଅଗଣିତ 'ଗଣ' ମଧ୍ୟରେ ସେ ଜଣେ ନମସ୍ୟ, ଉପାସ୍ୟ ଜୀବନଶିଳ୍ପୀ ।' ଚନ୍ଦ୍ରାମଣିଙ୍କ ସମ୍ପର୍କରେ ଏପରି ଉଦାରଦୃଷ୍ଟି କ୍ୱଚିତ୍ ଲକ୍ଷିତ ହୁଏ । ଉତ୍କଳର ଦାଶ ଚନ୍ଦ୍ରାମଣିଙ୍କୁ 'ନିଜ ଚଷମାଟି ଫିଙ୍ଗିଦେଇ ରାଧାନାଥଙ୍କ ବହୁ ଶକ୍ତି ସମ୍ପନ୍ନ ଚଷମାରେ ଦେଖିଲେ, ଫଳରେ ସେ ଦୃଷ୍ଟିଶକ୍ତି ହରାଇଲେ' ବୋଲି କହିବା ସତ୍ତ୍ୱେ ସମାଲୋଚକ-ଭାବେ ସ୍ୱୀକୃତି ଦେଇ କହନ୍ତି—'ତ୍ରୁଟି ସତ୍ତ୍ୱେ ସେ କବି । ରାଧାନାଥଙ୍କ ପରିଧି ମଧ୍ୟରେ ରାଧାନାଥଙ୍କ ରାଜ୍ୟର ସେ ଉତ୍ତୁଙ୍ଗ ପର୍ବତ, ଯେଉଁଥିରେ ନବ ନବ ଉଦ୍ଭିଦ ଅଛି, ନବ ନବ ପ୍ରାଣୀ ଅଛନ୍ତି, ରାଧାନାଥ ଯୁଗ-ସାହିତ୍ୟକୁ ବହୁ ଶାଖାୟିତ, ବହୁ ରୂପାୟିତ, ବହୁ ରଙ୍ଗରେ ରଙ୍ଗାୟିତ କରିବାରେ ସେ ଅପ୍ରତିଦ୍ୱନ୍ଦ୍ୱୀ, ବହୁ ଅଜଣାକୁ ଜଣାଇବାରେ, ଅଶୁଣାକୁ ଶୁଣାଇବାରେ, ଅନୁଭୂତକୁ ଅନୁଭବ କରାଇବାରେ ସେ ମହାନ୍, ସେ କବି ।' ଲେଖକଙ୍କ ଏ ମନ୍ତବ୍ୟରେ କେବଳ ସେହି ସ୍ନେହସ୍ନିଗ୍ଧ ଦୃଷ୍ଟି ଅଛି; କିନ୍ତୁ ସମୀକ୍ଷକର ବସ୍ତୁନିଷ୍ଠ ମନ ଓ ମନନର ପ୍ରତିଫଳନ ନାହିଁ । କବିର ଯେଉଁ ତୃତୀୟ ନୟନ ବିନା କାବ୍ୟଜଗତ ଧୂସର ଦିଶେ, ଚନ୍ଦ୍ରାମଣିଙ୍କର ସେହି କ୍ରାନ୍ତଦୃଷ୍ଟି ନଥିଲା; ତାହା ହୁଏତ କୁଞ୍ଜବିହାରୀ ଅନୁଭବ କରିଛନ୍ତି, ତଥାପି ସେ ସ୍ନେହ ଜରଜର ମନ ନେଇ ଚନ୍ଦ୍ରାମଣିଙ୍କର ସମୀକ୍ଷା କରିଛନ୍ତି ।

କୁଞ୍ଜବିହାରୀଙ୍କ ବହୁ ସମାଲୋଚନାରେ ଏହି କବିଜନ ସୁଲଭ ମମତ୍ୱବୋଧ ପ୍ରକଟିତ । ସେ ଅନେକ ସମୟରେ ସମୀକ୍ଷକର ନୈର୍ବ୍ୟକ୍ତିକ ଦୃଷ୍ଟି ସଂପାତ ନ କରି ପ୍ରୀତିବୋଳା ଲେଖଣୀରେ କବିର ଜୀବନ ଓ ସୃଷ୍ଟିକୁ ତଉଲି ବସନ୍ତି । ଏହି ପରିପ୍ରେକ୍ଷୀରେ କାନ୍ତସାହିତ୍ୟ ପରିଚୟ, ଗୋଦାବରୀଶଙ୍କ କବିତାର କେତୋଟି ଆଭିମୁଖ୍ୟ, କୁନ୍ତଳା-କୁମାରୀଙ୍କ ଉପନ୍ୟାସ : କାଳ ଓ ତାର କଳନା, 'ଗଣ' କବି ନନ୍ଦକିଶୋର; ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ଓ ଯଦୁମଣି ଏବଂ ସୁଚିଳଦେବଙ୍କ ବ୍ୟକ୍ତିତ୍ୱ ଓ ବାଣୀବିଳାସ ପରି ସମାଲୋଚନାକୁ ବିଚାରକୁ ନିଆଯାଇପାରେ । ଉତ୍କଳର ଦାଶ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରର ମୂଲ୍ୟାୟନ କରିବା ପର୍ଯ୍ୟାୟରେ କହିଛନ୍ତି—"ଊନବିଂଶ ଶତାବ୍ଦୀର ଏହା ଖଣ୍ଡିଏ ଶ୍ରେଷ୍ଠ କାବ୍ୟ, ସଙ୍ଗୀତ ମୁଖରିତ ଧାରା ଭିତରେ, କାବ୍ୟବିରଳ ଯୁଗରେ ଏହା ଆଙ୍କିକ ବଡ଼ ହୋଇ ଦିଶେ । ସଂସ୍କୃତିର ଅନ୍ଧକାରମୟ ଯୁଗରେ ଏହାର ଦୀପ୍ତି ମନକୁ ଚମକାଇ ଦିଏ ।' ଏ ଯୁଗରେ କେତେକ ଗୀତିକାବ୍ୟ ଲେଖା ହୋଇଛି ଓ ହେଉଛି । ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ସଙ୍ଗେ ତୁଳନୀୟ ହେବା ସ୍ପର୍ଦ୍ଧା କାହାର ନାହିଁ ।" ଏଥିରେ ମଧ୍ୟ କୁଞ୍ଜବିହାରୀଙ୍କ ମମତାମେଦୁରିତ କବି ଦୃଷ୍ଟି । ସଂସ୍କୃତିର ଅନ୍ଧକାରମୟ ଯୁଗରେ ଏହାର କେଉଁ ଦୀପ୍ତି ମନକୁ ଚମକାଇ ଦିଏ, ତାର କୌଣସି ସଂକେତ ନାହିଁ । ଏ ରଚନାରେ ଓଡ଼ିଆ

ସାଂସ୍କୃତିକ ବଳୟର କେଉଁ ଦିଗନ୍ତ ସଂମୁଖ ହୋଇଛୁ, ତାହା ସମୀକ୍ଷକ ଦେଖାଇ ନାହାନ୍ତି । ବରଂ କବିଙ୍କର ସ୍ୱତମାନସର ଚର୍ଚ୍ଚା କରି ସତ୍ୟବାକ୍ ବାଣୀ-ସମୀକ୍ଷକଭାବେ ମନ୍ତବ୍ୟ ଦିଅନ୍ତି—'ବକ୍ରୋକ୍ତି ଯଦୁମଣିଙ୍କ କାବ୍ୟର ଆତ୍ମା । ସୂକ୍ଷ୍ମଗୁରୁତ୍ୱ ମନକୁ ଚମତ୍କୃତ କରେ । ନିବିଡ଼ ରସରେ ନିମଗ୍ନ କରିନାହିଁ କବିଦୃଷ୍ଟି, ଏହି ଦୃଷ୍ଟିରେହିଁ ତାଙ୍କ ସୃଷ୍ଟିର ବିଶେଷତ୍ୱ ନିହିତ ।' ଏଣୁ (କୁଞ୍ଜବିହାରୀଙ୍କ ସାରସ୍ୱତ ମନ ସମାଲୋଚନା କଲାବେଳେ ଶରତ ଆକାଶ ପରି ସତତ ପ୍ରଶାନ୍ତ ଧବଳ ହେଲେହେଁ ତହିଁରେ ଧଳା ଧଳା ମେଘ ଖଣ୍ଡର ସ୍ଥିତି ଯେ ନାହିଁ, ତାହା ବୋଲାଯାଇ ନ ପାରେ । ଏହି ହଳକା ମେଘ ଖଣ୍ଡ ପରି କାବ୍ୟିକ ସତ୍ତାର ନିଛକ ମନ୍ତବ୍ୟ ଲେଖକଙ୍କ ସ୍ନେହାଚ୍ଛନ୍ନ ସାରସ୍ୱତ ଆକାଶକୁ ହୃଏତ ବୈଚିତ୍ର୍ୟ ମଣ୍ଡିତ କରିଛୁ । କୁଞ୍ଜବିହାରୀଙ୍କ ସମାଲୋଚନା ଏକ ସ୍ନେହସିକ୍ତ ଧାରା ଓ ଧୀରତାର ସୂଚନା ଦେଇଥାଏ ।

କୁଞ୍ଜବିହାରୀ ମୁଖ୍ୟତଃ ପଲ୍ଲୀଜୀବନ ଓ ପଲ୍ଲୀ ସଂସ୍କୃତିର ଏକନିଷ୍ଠ ସାଧକ । ଲୋକ ଜୀବନ ଓ ସାହିତ୍ୟ ସହିତ ତାଙ୍କର ଯୋଗାଯୋଗ ଏକାନ୍ତ ଗଭୀର । ତାଙ୍କ ସାରସ୍ୱତ ଜୀବନର ସର୍ବୋତ୍ତମ ସିଦ୍ଧି 'ଓଡ଼ିଆ ଲୋକଗୀତ ଓ କାହାଣୀ' । ସେ ଏହି ନିବନ୍ଧ ଲେଖି ବିଶ୍ୱଭାରତୀରୁ ଡକ୍ଟରେଟ୍ ଡ଼ିଗ୍ରୀ ପ୍ରାପ୍ତ ହୋଇଥିଲେ । ଓଡ଼ିଆ ଲୋକ-ସାହିତ୍ୟକୁ ବିଶ୍ୱଦରବାରରେ ପରିଚିତ କରାଇବାକୁ ସେ 'A study of Orissan Folklore' ପରି ଇଂରାଜୀରେ ସମୀକ୍ଷାଗ୍ରନ୍ଥ ଲେଖନ୍ତି । ଓଡ଼ିଆ ସାହିତ୍ୟର ଆକାଶ ବିଶ୍ୱସାହିତ୍ୟର ଆକାଶରେ ସମୀଭୂତ ହେଉ—ଏହାହିଁ ଡକ୍ଟର ଦାଶଙ୍କର ହୃଏତ ଆଭିମୁଖ୍ୟ । ଏଣୁ 'ଓଡ଼ିଆ ସାହିତ୍ୟର ଗତି । ଦୁର୍ଗତି, ଏକ ସମୀକ୍ଷା' ଶୀର୍ଷକ ଆଲୋଚନାରେ କହିଛନ୍ତି—"ଏ ଯୁଗରେ ଖାଲି ପ୍ରତିଭା ଯୋଗେ କେହି ଯଶସ୍ୱୀ ହୋଇ ପାରିବ ନାହିଁ । ପୃଥିବୀର ପ୍ରତ୍ୟେକ ବିଶିଷ୍ଟ ଲେଖକ ସେ ଯୁଗର ଚିନ୍ତାର ପ୍ରତିନିଧି, ଜଣେ ଶ୍ରେଷ୍ଠ ମନୀଷୀ । ନାନା ବିଦ୍ୟାରେ ପ୍ରବୀଣ, ନାନା ଶାସ୍ତ୍ରରେ ଧୂରୀଣ ହେବାକୁ ପଡ଼ିବ । ଓଡ଼ିଶାରେ ପ୍ରତିଭା ଅଛି, କେତେକଙ୍କର ଯଥେଷ୍ଟ ଲେଖିବାର ଅଭ୍ୟାସ ଅଛି, କିନ୍ତୁ ଗଭୀର ଅଧ୍ୟୟନ ନାହିଁ ବୋଲି ଚିନ୍ତାର ବିସ୍ତୃତି ହେଉନାହିଁ, ଗୁଣ-ଗ୍ରାହକତା ଆସୁନାହିଁ, କ୍ଷୁଦ୍ର ଈର୍ଷା ପକ୍ଷ ବିସ୍ତାର କରୁଛି । ଜାତୀୟ ଅଧୋଗତିର ଏହା ଗୋଟିଏ ପ୍ରଧାନ ହେତୁ ।" ଏ ବକ୍ତବ୍ୟରେ ଡ଼କ୍ଟର ଦାଶ ଓଡ଼ିଆ ସାହିତ୍ୟସ୍ରଷ୍ଟାଙ୍କୁ ବିଶ୍ୱ ସାହିତ୍ୟର ବୃହତ୍ତର ପରିଚିତ ହେବାକୁ ଅଲକ୍ଷିତରେ ଆହ୍ୱାନ କରିଛନ୍ତି । ଆଜିର ସାହିତ୍ୟିକପୃଥ୍ୱୀ ଦେଶକାଳରେ ଆବଦ୍ଧ ନୁହେଁ । ଜଗତର ବାଣୀ ହେଉଛି କବିର ବାଣୀ, ମାନବ ଜୀବନର କାକଳି ହେଉଛି କବିର ହୃଦୟର ଦୃପ୍ତ କାକଳି । ନଚେତ୍ କବି ପରିତ୍ୟକ୍ତ ଏବଂ ଗୋଷ୍ଠୀଛଡ଼ା ହେବାର ସମ୍ଭାବନା ରହିଛି । ଏ ପର୍ଯ୍ୟାୟରେ ବୋରିସ୍ ପାସ୍ତରନାକ୍ଙ୍କ ଉକ୍ତିକୁ ସ୍ମରଣ କରାଯାଇପାରେ । "We have forgotten that it is in our Power to do one thing, and that is not

to distort the living voice of life" ଅର୍ଥାତ୍ ସ୍ରଷ୍ଟାର ସ୍ୱର ଜଗତର ସ୍ୱର ହେବା ବିଧେୟ । ତେଣୁ ଓଡ଼ିଆ ସାହିତ୍ୟିକ ବିଶ୍ୱର ଭାବସମୁଦ୍ରରେ ଅବଗାହନ ନ କଲେ; ଜାଗତିକ ସ୍ରୋତରୁ ବିଚ୍ଛିନ୍ନ ହେବାର ବିପଦ ବିଦ୍ୟମାନ । ଏଣୁ ଓଡ଼ିଆ ଜାତିର ଜ୍ଞାନ ଗବାକ୍ଷରେ ବିଶ୍ୱର ପ୍ରତିଫଳନ ନ ହେଲେ ଆମେ ଅନଗ୍ରସର ହୋଇ ରହିବା, ଲେଖକ ଏହା ମର୍ମେ ମର୍ମେ ଅନୁଭବ କରିଛନ୍ତି । ଡକ୍ଟର ଦାଶ ଆଧୁନିକତାର ପରିପନ୍ଥୀ ନୁହଁନ୍ତି । ତାଙ୍କ ବିବେଚନାରେ ଆଧୁନିକ ଯୁଗରେ ଥାଇ ଆଧୁନିକ ହେବା ଗୋଟିଏ ଗୁଣ, ମଧ୍ୟ ସତ୍‌ଗୁଣ, କିନ୍ତୁ ମନୁଷ୍ୟର ଶ୍ରେଷ୍ଠ ଗୁଣ ନୁହେଁ । ନିତ୍ୟନୂତନ ଆଧୁନିକତାହିଁ ତାଙ୍କର ଧ୍ୟେୟ । ନବ ନବ ସୃଜନରେ ସେ ବିଶ୍ୱାସୀ । ଅଧ୍ୟାପକ ଦାଶ କବିତାରେ ଆଧୁନିକତାର ସ୍ୱରୂପ ନିର୍ଦ୍ଧାରଣ କଲାବେଳେ ଉଚ୍ଚାରଣ କରନ୍ତି—"ଆଧୁନିକ ମିତବାକ୍; ବର୍ଣ୍ଣନା ନୁହେଁ, ସୂଚନାହିଁ ତା କବିତାର ଧର୍ମ । ସେ ଶବ୍ଦରୁ ନୂତନ ଶକ୍ତି ବାହାର କରେ ତାର କୌଶଳପୂର୍ଣ୍ଣ ପ୍ରୟୋଗରେ । ଅତୀତରେ ଉପଳ ପରି ଅବହେଳିତ ଶବ୍ଦକୁ ଶାଣିତ କରି ସ୍ୱାପ୍ନିକ ଝଟକ ପ୍ରଦାନ କରେ, ଗୋଟିଏ ପ୍ରତୀକ ଶବ୍ଦରେ ମନକୁ ଗୋଟିଏ ଯୁଗରେ ପ୍ରବେଶ କରାଇ ଦେଇପାରେ । ଶବ୍ଦରେ ଅଭିନବ ଶକ୍ତି ସଞ୍ଚାର ତା କଳା ଦୃଷ୍ଟିର ଏକ ବୈଶିଷ୍ଟ୍ୟ' ।" (୩) ଏଣିକି ଶବ୍ଦ ଆଉ ବ୍ରହ୍ମ ନୁହେଁ । ସେ ଘସରା ହୋଇଗଲେ, ତାହା ଅଚଳନ୍ତି ହୁଏ । ତହିଁରେ ନୂତନ ବ୍ୟଞ୍ଜନା ଭରିଦେବାକୁ ହୁଏ । 'ସୃଜନାତ୍ମକ ପରୀକ୍ଷଣ' ଶୀର୍ଷକ ଗ୍ରନ୍ଥରେ ଅଧ୍ୟାପକ ବାଉରା ମଧ୍ୟ ସେହି କଥା କହିଛନ୍ତି । ସେ ଦୃଢ଼ତାର ସହି କହନ୍ତି—'କବିତାର ପ୍ରଥମ କାମ୍ୟ ହେଉଛି ତାର ଭାଷାଗତ ପରିବର୍ତ୍ତନ । ପୁରୁଣା ଶବ୍ଦ ଓ ବାକ୍ୟାଂଶ ସବୁ ପରିତ୍ୟକ୍ତ ହେବା ଦରକାର । ନୂତନ ଶବ୍ଦର ସଂଯୋଜନାରେ କବିତାର ସୌନ୍ଦର୍ଯ୍ୟ ପ୍ରତିଷ୍ଠିତ ହୁଏ । ପୁଣି ଶବ୍ଦ ଚୟନ କଳାରେ ତୀକ୍ଷ୍ଣ ବୁଦ୍ଧିର କୌଶଳ ପ୍ରୟୋଗ କରାଯିବା ବିଧେୟ" (୪) କାରଣ ଶବ୍ଦମାନେ ବହୁଳପ୍ରୟୋଗ ହେଲେ ସେମାନଙ୍କର ବ୍ୟଞ୍ଜନାଧର୍ମିତା ହରାଇ ବସନ୍ତି । ଏହାକୁ ଶବ୍ଦ ଔଜଲ୍ୟ ହ୍ରାସ ବା Loss of mint quality ବୋଲାଯାଇ ପାରେ । ପୁଣି ପର୍ଯ୍ୟାୟକ୍ରମେ ଘସରା ଶବ୍ଦ ସମ୍ଭାର କଷ୍ଟିତ ହୋଇ ପରିଶେଷରେ କାବ୍ୟଜଗତରୁ ଉଚ୍ଛେଦିତ ହୋଇଯାଏ । ପୁଣି ଅଚଳ ଶବ୍ଦରେ ନୂଆ ବ୍ୟଞ୍ଜନା ଭରି ଦେଇ କବିତାକୁ ସମୃଦ୍ଧ କରାଯାଇଥାଏ । ଓଡ଼ିଆ ପଲ୍ଲୀ ଗୀତି ଓ ଗଳ୍ପସମ୍ଭାରରେ ବହୁ ଶବ୍ଦ ଓ ପଦାଂଶ ରହିଛି, ଡ଼କ୍ଟର ଦାଶ ତା'ର ଚୟନ କରିଛନ୍ତି । ଫଳତଃ ଚଳିତ ଶତକର ସପ୍ତମ ଅଷ୍ଟମ ଦଶକର କାବ୍ୟକବିତାରେ ସେହି ଅବହେଳିତ ଶବ୍ଦମାନେ ନୂତନ ବ୍ୟଞ୍ଜନା ନେଇ ବିକଶିତ ହେବାକୁ ଆରମ୍ଭ କଲେଣି, ଏହା ଏକ ଶୁଭଲକ୍ଷଣ ।

---

୩ । ଆଧୁନିକ କବିତା : ଆଦ୍ୟ ଏକ ଅଧ୍ୟୟନ ।
୪ । C. M. Bowra—The creative Experiment P 2.

କୁଞ୍ଜବିହାରୀଙ୍କ ପ୍ରାଣ ଭୂମି ହେଉଛି ଲୋକସାହିତ୍ୟ । ପଲ୍ଲୀ ଯେପରି ଯୁଗେ ଯୁଗେ ସ୍ୱଚ୍ଛ ଓ ସ୍ୱଚ୍ଛନ୍ଦର ବାର୍ତ୍ତାବହ, ତାର କବିତା, ତାର ଗଳ୍ପରେ ସେହିପରି ଯୁଗଯୁଗର ମଣିଷମନର ଅସଜଡା ହସହସ ଜୀବନର ଇଂଗିତ ବିଦ୍ୟମାନ । ଡକ୍ଟର ଦାଶ ଯଥାର୍ଥରେ କହିଛନ୍ତି– ଲୋକଗୀତ ଗୋଟିଏ ନିତ୍ୟ ପ୍ରବାହିତ ଝରଣାପରି । ପୁଷ୍କରିଣୀରେ ଆବଦ୍ଧ ହେଲେ ତାର ବିକାଶ ଧାରା ବ୍ୟାହତ ହେବ । ଅନୁଭୂତି, ବିବର୍ତ୍ତନ, ପରିବର୍ତ୍ତନର ଅଭାବରେ ଏହା ଲୋକପ୍ରିୟତା ହରାଇବା ବିଚିତ୍ର ନୁହେଁ । (୫) ତେବେ ଆଜି ଲୋକଜୀବନ ନାନା ସମସ୍ୟାଜଡ଼ିତ ହୋଇଉଠିଛି । ସହରୀ ଜୀବନର ସଂସ୍ପର୍ଶରେ ଆସି ଲୋକସାହିତ୍ୟର କ୍ରମ ବିଲୟ ଘଟୁଛି । ଏଣୁ ଲୋକସାହିତ୍ୟକୁ ସହଜ ସୁଲଭ ରୂପରେ ସୃଜନାତ୍ମକ କରାଯିବା ଆବଶ୍ୟକ । ଲୋକଗୀତକୁ ଟେପ୍ କିମ୍ବା ଅନ୍ୟ କୌଣସି ଯାନ୍ତ୍ରିକ ଉପାୟରେ ସଂଗ୍ରହ କରାଯାଇପାରେ; କିନ୍ତୁ ଲୋକକାହାଣୀକୁ ରୂପ ଦେବାରେ ଲୋକଗଳ୍ପ ସଂଗ୍ରାହକଙ୍କୁ ବହୁସାଧ୍ୟସାଧନା କରିବାକୁପଡେ । "ରୂପ ଦେଇ ନ ଜାଣିଲେ, ଏହା ଛିଡା ଫୁଲ ପରି ମଳିନ ଦିଶେ, ବେତାଳିଆ ସଙ୍ଗୀତପରି ଶୁଭାଯାଏ ଏହାର ସ୍ୱର, ଶୁଷ୍କ, ନୀରସ, ଖାପ୍ ଛଡା । ସତେଯେପରି ରସବନ୍ତ ଜୀବନର ଏହା ଏକ ସମାଧି ମନ୍ଦିର, ମାଙ୍କଡାପଥରରେ ଗଢା"–ଏଥିରେ ଲୋକକାହାଣୀ ସଂଗ୍ରାହକର ଦାୟିତ୍ୱବୋଧ ସଂପର୍କରେ ସୂଚନା ଦିଆଯାଇଛି । ଏହା ଲୋକଗଳ୍ପ ସଞ୍ଚୟନ ପରି ଗ୍ରନ୍ଥର ଭୂମିକାଭାଗ ହୋଇଥିବାରୁ ଏଥିରେ ଲୋକକାହାଣୀ ସଂପର୍କିତ ତାତ୍ତ୍ୱିକ ଆଲୋଚନା କରିବାର ପରିସର ସୀମିତ । ବସ୍ତୁତଃ ସମୀକ୍ଷକ ଡକ୍ଟର ଦାଶ ଓଡ଼ିଆ ଲୋକ କାହାଣୀରେ ଯେଉଁପରି ଏ ଜାତିର ଐତିହ୍ୟ କିମ୍ବା ଆଦିମ ପୁରାଣ କଳ୍ପନା ବା ଆର୍କେଟାଇପ୍ ଖୋଜିବାର କଥା ତାହା ଖୋଜି ନାହାନ୍ତି । ଡକ୍ଟର ଦାଶଙ୍କ ସାହିତ୍ୟ ଓ ସମାଲୋଚନାଗର୍ଭିତ ଓଡ଼ିଆ ଲୋକଗଳ୍ପ: ପ୍ରକୃତି ଓ ପ୍ରବୃତ୍ତି; ଲୋକସଂସ୍କୃତି; ଏବଂ ବେଢାବୁଲା ୧ ଓ ୨; ଓଡ଼ିଆ ଢଗଢମାଳି: ଏକ ଅଧ୍ୟୟନ; ଚଉତିଶା: ଓଡ଼ିଆ ସାହିତ୍ୟର ଏକ ଭିତ୍ତିଭୂମି; ପରି ସମାଲୋଚନାରେ ଆଲୋଚ୍ୟ ଉପାଦାନ ସଂପର୍କରେ ସାଧାରଣ ପରିଚୟମାତ୍ର ପ୍ରଦାନ କରିଛନ୍ତି । ତଥିରେ ତାତ୍ତ୍ୱିକ ବିଚାର ଆଲୋଚନା ଖୋଜିବା ହୁଏତ ଏକ ବିଡମ୍ବନା ହୋଇ ଉଠିଛି । ସମୟେ ସମୟେ ଡକ୍ଟର ଦାଶ ଲୋକଗଳ୍ପର ପ୍ରକୃତି ଓ ପ୍ରବୃତ୍ତି କଥା କହୁ କହୁ Myth ଓ legendର ସ୍ୱରୂପ ଉଦ୍‌ଘାଟନ କରିଛନ୍ତି ତାଙ୍କ ମତରେ Mythର ନାୟକ ବା ନାୟିକା ଦେବତା ବା ଦେବୀ । ଏହା ଧର୍ମାତ୍ମକ । ଦେବାଦେବୀ ନ ଥିଲେ Myth ଲୋକଗଳ୍ପ ହୋଇଯାଏ । legendର ନାୟକ ମନୁଷ୍ୟ; ମୁନିଋଷି, ଭକ୍ତ ସନ୍ନ୍ୟାସୀ ବା ମହାତ୍ମାଙ୍କ ଜୀବନ ଚରିତ ଏହାର ଉପଜୀବ୍ୟ । legend ସତ୍ୟ ଘଟଣା ଉପରେ ପ୍ରତିଷ୍ଠିତ, Myth ସତ୍ୟ ହୋଇପାରେ, ନ ପାରେ, ଏହା ସତ୍ୟ ବୋଲି ବିଶ୍ୱାସ

(୫) ଓଡ଼ିଆ ଲୋକଗୀତ ଓ କାହାଣୀ—ପୃ.୧୫

କରିଯାଏ ମାତ୍ର ।" । ୭ । ଏପରି ଆଲୋଚନାରେ ମିଥ୍ ବା ଲୋକକଣ୍ଠ (କିମ୍ବଦନ୍ତୀ)ର ମୂଳ ସ୍ୱରୂପ ବା ଉତ୍ସ ହୁଏତ ଉଦ୍‌ଘାଟିତ ହୋଇ ନ ପାରେ; କିନ୍ତୁ ସାଧାରଣ ଅବବୋଧ ପାଇଁ ହୁଏତ ଏପରି ସରଳ ସଂଜ୍ଞାପନ ଆବଶ୍ୟକ । ଏଠାରେ ସମୀକ୍ଷକ ଖୋଜିନାହାନ୍ତି, ମିଥ୍ କିମ୍ବା କିମ୍ବଦନ୍ତୀର ଜଟିଳ ଦିଗନ୍ତ । ଠିକଏ ସୂଚନ, ଠିକଏ ଧାରଣା ଦେବା ହୁଏତ ଶ୍ରେୟସ୍କର ମଣିଛନ୍ତି । Myth ଯେ ଗ୍ରୀକ୍ ଶବ୍ଦ Mythosରୁ ବ୍ୟୁତ୍ପନ୍ନ ଏହାର ମୂଳ ଅର୍ଥ ଯେ ମୁଖ ପ୍ରଚଳିତ କାହାଣୀ ଏବଂ ଏହା କିପରି ସଂପ୍ରତି ନାନା ଜଟିଳରୂପ ନେଇ ଚିନ୍ତାଚେତନାର ପରିବାହକ ହେଉଛି ସେ ସମ୍ପର୍କରେ ପୋଥିଏ କଥା କହି ତାତ୍ତ୍ୱିକତା ପ୍ରଦର୍ଶନ କରିବାରେ ମୂଳ ଉଦ୍ଦେଶ୍ୟ ପଣ୍ଡ ହୁଅନ୍ତା । ତେବେ ଲୋକ-ସଂସ୍କୃତିର ବିଗ୍ରହ କଲାବେଳେ ଦେଶବିଦେଶର ଲୋକସଂସ୍କୃତି ସ୍ୱରୂପ ଦେଖାଇ ଯେ ଓଡ଼ିଆ ଲୋକସଂସ୍କୃତିର ସ୍ଥିତି ଓ ବ୍ୟାପ୍ତି କଳନା କରିଛନ୍ତି । ଓଡ଼ିଆ ଢଗଢମାଳି ମଧ୍ୟରେ ଏ ଜାତିର ସୁଷ୍ଠୁ ପରିପ୍ରକାଶ । 'ଓଡ଼ିଆ ଜାତିର, ଓଡ଼ିଆ ସାହିତ୍ୟର ଇତିହାସ ଢଗରୁ ଆରମ୍ଭ; ଢଗ ଆଦ୍ୟ କବିତାର ବାଣୀ ଝଙ୍କାର, ଜୀବନର ଆଦ୍ୟ ସମାଲୋଚନା, ଯହିଁରୁ ସମାଜ ଓ ସଂସ୍କୃତିର କ୍ରମବିକାଶ ହୋଇଛି ? ଏ ଉକ୍ତିରେ ନୈର୍ବ୍ୟକ୍ତିକତା ଅପେକ୍ଷା ଭାବପ୍ରବଣତାର ସ୍ୱର ରହିଛି । ଲୋକଗୀତ ବା କାହାଣୀରେ ହୁଏତ ଓଡ଼ିଆ ପରିସ୍ଥିତିଙ୍କର ଆଦ୍ୟ ଅର୍ଚ୍ଚନା ହୋଇଥାଇ ପାରେ କିନ୍ତୁ ଢଗ ଢମାଳି ପରି ନୀତି ନିୟମ ଗର୍ଭିତ ଉକ୍ତି କିମ୍ବା ରୁଚି ଓ ସଂସ୍କୃତି ପ୍ରଖ୍ୟାପକ ବାଣୀ ପ୍ରେମ ବିରହ, ହସକାନ୍ଦ ଓ ଶିକାର ଆଦି ଗର୍ଭିତ ପଲ୍ଲୀ ଗୀତକାର ହୁଏତ ଅନୁଜ । ଏହା ମଣିଷର ଅବିକଶିତ ମନର ଅଭିବ୍ୟକ୍ତି ନୁହେଁ । ବରଂ ସଜ୍ଞାନ ମନର ପରିପ୍ରକାଶ । ଡକ୍ଟର ଦାଶଙ୍କ କଥାରେ କହିଲେ— 'କଳ୍ପନାର ଗ୍ରନ୍ଥିଚମକ ନାହିଁ, ଅଳସ, ଚିନ୍ତାବିଳାସର ଝଲସ-ଝଟକ ନାହିଁ, ସାଂସାରିକ ଓ ସାଧାରଣ ବୁଦ୍ଧିର ପରିଚୟ, ପ୍ରତୀକ, ସେ ସବୁ ମାନବର ସ୍ୱଭାବ, ପ୍ରସନ୍ନତା ଓ ବିଷଣ୍ଣତା, ସୌଜନ୍ୟ ଓ ଭଦ୍ରତା ବ୍ୟବହାର କୁଶଳତା, ଧର୍ମପ୍ରାଣତା, ସାହସିକତା ଓ ଭୀରୁତା, ଈର୍ଷାଦ୍ୱେଷ ସ୍ନେହଶ୍ରଦ୍ଧାର ଏହା ଗୋଟିଏ ରୂପକ । ଗୋଟାଏ ଜାତିର ଭବ-ଜୀବନର ଓ ବାସ୍ତବତା ଜ୍ଞାନର ଉତ୍କୃଷ୍ଟ ପରିଚୟ ମିଳିଥାଏ ଏଥିରୁ' । ୨ । ଏଣୁ ଏ ସବୁ ଲୋକ ସାହିତ୍ୟକୁ ସାହିତ୍ୟସୃଷ୍ଟିର ଆଦିଭାଗର କୃତି କହିବାରେ କୌଣସି ହେତୁ ନାହିଁ । ଏହାକୁ ସୁନିଶ୍ଚିତ ଭାବରେ ବ୍ୟକ୍ତିମାନସର ଆଦିମ ସ୍ତର ଅତିକ୍ରାନ୍ତ କରି ବିଦଗ୍‌ଧ ସ୍ତରମୁଖୀନ ହେବା ପର୍ଯ୍ୟାୟର ରଚନା ବୋଲିଯାଇପାରେ । ତେବେ ଓଡ଼ିଆ ଢଗଢମାଳି ସହ ପୃଥିବୀର ବିଭିନ୍ନ ଦେଶ ବିଦେଶର ଢଗଢମାଳି ସହ ତୁଳନା କରି ସମୀକ୍ଷକ ଓଡ଼ିଆ ଜନମାନସ କିପରି ତୀକ୍ଷ୍ଣ ବ୍ୟଙ୍ଗାଶ୍ରୟୀ ଓ ହାସ୍ୟୋଜ୍ଜ୍ୱଳ ତାହା ଚିହ୍ନ ବାଛିଛନ୍ତି । 'ଢଗଢମାଳି ସତେ ବା ବ୍ୟଙ୍ଗରେ ଢଳା; ହାସ୍ୟରେ ପୁଆଁ । ସତେ ବା

୬ । ସାହିତ୍ୟ ଓ ସମାଲୋଚନା—ପୃ୪୦
୭ । ଓଡ଼ିଆ ଢଗଢମାଳି—ଏକ ଅଧ୍ୟୟନ (୧)

ଏସବୁ ଜୀବନନାଟି । କୁଞ୍ଜବିହାରୀଙ୍କ ଏ ଉକ୍ତିଟି ସତ୍ୟର ନିକଟବର୍ତ୍ତୀ ବୋଲି କହିବାରେ କୌଣସି ଦ୍ୱିଧା ନାହିଁ ।

କୁଞ୍ଜବିହାରୀଙ୍କ ସାହିତ୍ୟ ସାଧନାର ଦିଗନ୍ତ ବହୁମୁଖୀ । ସେ ବହୁ କାବ୍ୟ-କବିତା ରଚନା କରିଛନ୍ତି । ଗଳ୍ପ, ଉପନ୍ୟାସ ବା ଭ୍ରମଣ କାହାଣୀ ରଚନାରେ ମଧ୍ୟ ନିଷ୍ଠା ପ୍ରଦର୍ଶନ କରିଛନ୍ତି । କିନ୍ତୁ ତାଙ୍କର ଜୀବନର ସର୍ବୋତ୍ତମ ସିଦ୍ଧି ହୁଏ ତ ଲୋକ ସାହିତ୍ୟ ସଙ୍କଳନ, ଯେନ୍ତୁ ଢ଼ଳ ଢ଼ଳ ନ ହେଲେ ଲୋକ ଜୀବନ ଓ ଲୋକ ପ୍ରବୃତ୍ତି ପ୍ରତି ଏ ଯୁଗର ମଣିଷ ଆକୃଷ୍ଟ ହେବ କିପରି ? ଏଣୁ କୁଞ୍ଜବିହାରୀଙ୍କ ସମାଲୋଚନାରେ ଅନୁକମ୍ପା ପ୍ରବନ୍ଧଟି ସ୍ଥାନ ପାଇବାରେ ଯଥେଷ୍ଟ କାରଣ ନିହିତ । ତେବେ ଉକ୍ତର ଦାଶ ଯେତେବେଳେ ସମାଲୋଚକର ମନ ଓ ମନନ ସମ୍ପର୍କରେ ସଚେତନ ସେତେବେଳେ ତାଙ୍କର ସମୀକ୍ଷକମାନସର ବିପ୍ରଙ୍ଗୀତା ଏକ ଲକ୍ଷଣୀୟ ବିଷୟ । 'ବୌଦ୍ଧାବତାର କାବ୍ୟ ଓ କବି ଫକୀରମୋହନ' କିମ୍ବା 'ପ୍ରକୃତ ଚରଣ ଶିଳ୍ପ ଓ ଶିଳ୍ପୀ ସୁଧାନାଥ ତୁଳ୍ୟ ରଚନାରେ ତାଙ୍କର ବସ୍ତୁନିଷ୍ଠ ସମାଲୋଚନାର ସ୍ୱରୂପ ଉଦ୍‌ଘାଟନ କରାଯାଇପାରେ । ଫକୀରମୋହନଙ୍କ କାବ୍ୟମାନସ ସମ୍ପର୍କରେ ମନ୍ତବ୍ୟ ଦେଇ କୁଞ୍ଜବିହାରୀ କହିଛନ୍ତି—'ତାଙ୍କ ପ୍ରତିଭା କାବ୍ୟର ପ୍ରତିଭା ନୁହେଁ—ଏହା ଜାଣି ବି ସେ କାବ୍ୟରଚନାରେ ଶିଥିଳତା ପ୍ରକାଶ କରିନାହାନ୍ତି । କାରଣ କବିତା ତାଙ୍କର ସ୍ନେହର, ଶ୍ରଦ୍ଧାର, ପ୍ରୀତିର, ଆନନ୍ଦର ବିଷୟ ଥିଲା । ତାଙ୍କ ସୁଖର ବିନୋଦିନୀ ଓ ଦୁଃଖର ସଙ୍ଗିନୀ ଥିଲା' (ଏଥିରେ ସମାଲୋଚକର ଅତିକଥନ ନାହିଁ; ସତ୍ୟ କଥନର ସୁନ୍ଦର ନମୁନା, ବସ୍ତୁନିଷ୍ଠତାର ଆଲେଖ୍ୟ)। ଫକୀରମୋହନଙ୍କ କାବ୍ୟଭାଷା ସମ୍ପର୍କରେ ବି ସେହିପରି କୁହାଯାଇଛି—'ଯେଥିରେ ଗୁରୁସ୍ୱର ଚମକ ନାହିଁ, ମନ୍ତ୍ରନର ବ୍ୟାକୁଳତା ନାହିଁ, କଳ୍ପନା ବିଳାସରେ କେଉଁଠି ସହଜ କଥାଟି ଡୁବି ଯାଇନାହିଁ, ସ୍ୱପ୍ନର କୁହେଳିକାରେ ବାସ୍ତବ ସତ୍ୟଟି ହଜିଯାଇନାହିଁ। ତାଙ୍କ କବିତା କବି ଓ ପାଠକର ମିଳନ ଭୂମି ହୋଇଅଛି, କବି ଅନ୍ତରର କଥାଟି ସ୍ୱଚ୍ଛ ଭାବରେ ପ୍ରକାଶ କରି ମୁଗ୍ଧ; ପକ୍ୱ ଫଳଟି ପାଇବା ଲାଗି ପାଠକଙ୍କୁ ବି ଉଦ୍‌ବାହୁ ବାମନ ହେବାକୁ ପଡ଼ିନାହିଁ ।" ଫକୀରମୋହନଙ୍କ କବିତାର ସ୍ଥୂଳ ପରିଚୟ ଦେଲା ପରେ ବୌଦ୍ଧାବତାର କାବ୍ୟର ଗଠନ ପରିପାଟୀ; ଉତ୍ସ ନିରୂପଣ, ଚରିତ୍ର ଚିତ୍ରଣ, ପ୍ରକୃତି ଚିତ୍ର ଓ ନୀତିଶିକ୍ଷା ବିବିଧ ବିଷୟର ଅବତାରଣା କରାଯାଇ କାବ୍ୟର ମୂଲ୍ୟାୟନ କରାଯାଇଛି । ଏଥିରେ ସମୀକ୍ଷକଙ୍କ ବସ୍ତୁନିଷ୍ଠମନ ସହ ପଠନନିଷ୍ଠତାକୁ ଲକ୍ଷ୍ୟ କରାଯାଇପାରେ ।

ଏ ରୂପେ ଆଲୋଚନା କଲେ କୁଞ୍ଜବିହାରୀଙ୍କ ସାରସ୍ୱତ ଜୀବନର ସମାଲୋଚନା ସମ୍ଭାରକୁ ଆମେ ମୁଖ୍ୟତଃ ବ୍ୟକ୍ତିପରକ ଓ ବସ୍ତୁପରକ ଏହି ଦୁଇଟି ସ୍ଥୂଳଭାଗରେ ବିଭକ୍ତ କରିପାରିବା । ସେ ଯୁକ୍ତିବିଧୃତ ସମାଲୋଚନା କଲା ବେଳେ ମଧ୍ୟ ସ୍ନେହସିକ୍ତ ଓ ମମତା ମେଦୁରିତ । ଏହା ହୁଏତ ତାଙ୍କର ପଲ୍ଲୀ ସାହିତ୍ୟ ଅନୁଶୀଳନର ଫଳ

ହୋଇପାରେ; ନଚେତ୍ କବି ବା କବିପ୍ରବଣ ମନଟିଏ ସମାଲୋଚନା କଲାବେଳେ ଯେଉଁ ବିପଦର ସମ୍ମୁଖୀନ ହୁଏ, ସେଥିରୁ କୃଷ୍ଣବିହାରୀ ଦାଶ ମୁକ୍ତ ହୋଇ ପାରିନାହାନ୍ତି । ତାଙ୍କର ସମାଲୋଚନାରେ ଆହରଣ ଓ ଆତ୍ମୀକରଣ ପ୍ରକ୍ରିୟାର ଯୁଗପତ୍ ପ୍ରବାହକୁ ଧରିବାରେ ପରାଙ୍ମୁଖ ନୁହଁନ୍ତି । ଏହା ଯେ କୌଣସି ସମୀକ୍ଷକର ଏକାନ୍ତ କାମ୍ୟ । ଏଥିରେହିଁ ତାର ମୌଳିକତା ଫୁଟେ । ଏଥିପାଇଁ ରବୀନ୍ଦ୍ରନାଥ କହିଥିଲେ -"ସାର୍ବଜନୀନତାକୁ ସାହିତ୍ୟ ଓ କଳାରେ ଆତ୍ମୀଭୂତ କରିବାର କ୍ଷମତାରେହିଁ ସାହିତ୍ୟରେ ମୌଳିକତା ଆସେ । ଏହା ବିଭିନ୍ନ ପ୍ରତିଭା ଓ ପରମ୍ପରାର ଅଭିବ୍ୟକ୍ତି ଦ୍ୱାରା ବୈଶିଷ୍ଟ୍ୟ ମଣ୍ଡିତ ହୋଇଥାଏ" । କୃଷ୍ଣବିହାରୀଙ୍କ ସାହିତ୍ୟ ବୀକ୍ଷାରେ ଆହରଣ ଭିତରେ ମୌଳିକତା ରହିଛି । ଏ ପରିପ୍ରେକ୍ଷୀରେ 'ଓଡ଼ିଆ ଲୋକସଙ୍ଗୀତ ଓ ବଉଳା ଗାଈ ଗୀତ' ଶୀର୍ଷକ ଆଲୋଚନାକୁ ଦୃଷ୍ଟାନ୍ତ ସ୍ୱରୂପ ନିଆଯାଇପାରେ । ଭାରତର ବିଭିନ୍ନ ଭାଷାରେ ଏ କାହାଣୀର ଉତ୍ସ; ବିଭିନ୍ନ ପ୍ରାନ୍ତରେ ତାର ବିବର୍ତ୍ତନ ଏବଂ ଏ କାହାଣୀ ସହିତ ବୌଦ୍ଧ ଜାତକର ସମ୍ପୃକ୍ତି ନିର୍ଦ୍ଧାରଣ କରାଯାଇଛି । ପରିଶେଷରେ ଓଡ଼ିଆ ଭାଷା ଓ ସାହିତ୍ୟରେ ଏହା କ୍ରମବିକଶିତ ହୋଇ ଜନମାନସରେ ସଞ୍ଚରିତ ହୋଇଛି ତାର ନିର୍ଘଣ୍ଟ ଦିଆଯାଇଛି । ଉପସଂହାରରେ ଏହା କିପରି ବୌଦ୍ଧ କରୁଣା ଆଧାରିତ କାହାଣୀ ଏବଂ ବୌଦ୍ଧ ପରମ୍ପରାରେ ପରିସ୍ଫୁଟ ଏକ ରୂପକ; ତାର ସବିଶେଷ ଆଲୋଚନା କରାଯାଇଛି । ଏ ଆଲୋଚନାରେ ଡକ୍ଟର ଦାଶଙ୍କ ଅଧ୍ୟାପକସୁଲଭ ଗବେଷଣା- ଦୃଷ୍ଟି ଏବଂ ଉତ୍ସ ନିରୂପଣ ସ୍ପୃହା ଦେଖିବାକୁ ମିଳେ । ସେ ସତ୍ୟ ସନ୍ଧାନୀ ଦାର୍ଶନିକର ଭୂମିକା ନେଇ ଠିଆ ହୁଅନ୍ତି । ପ୍ଲାଟୋଙ୍କ ରିପବ୍ଲିକ୍‌ରେ ସତ୍ୟଦ୍ରଷ୍ଟା ଓ ସତ୍ୟ ପ୍ରେମୀମାନଙ୍କୁ ଦାର୍ଶନିକ ବୋଲି ଅଭିହିତ କରାଯାଇଛି । ପ୍ରଜ୍ଞାଦୀପ୍ତ ବା a lover of sophia ନ ହେଲେ ସମୀକ୍ଷକର ମନୀଷା ଫୁଟେ ନାହିଁ । କୃଷ୍ଣବିହାରୀଙ୍କ ଆଲୋଚନା କବି ସୁଲଭ ମମତାରେ ବୋଳା ଯେତେବେଳେ ସେ ପ୍ଲାଟୋଙ୍କ ଡାଇଲଗର ସମ୍ଭାବନାଶୂନ୍ୟ ବନ୍ଧ୍ୟା ଧାତ୍ରୀଟିପରି ଉଦାରଭାବାପନ୍ନ ଶିକ୍ଷକଟିଏ ହୋଇଛନ୍ତି । ପ୍ଲାଟୋଙ୍କ ଦୃଷ୍ଟିରେ କବିତା ମାନବର ଅନୁକୃତ : ଏହା ସ୍ୱତଃସ୍ଫୂର୍ତ୍ତି କିମ୍ବା ବାଧ୍ୟବାଧକତାରୁ ସଞ୍ଜାତ । ସମୀକ୍ଷକ କୃଷ୍ଣବିହାରୀ ବିଭିନ୍ନ ସମାଲୋଚନା ଲେଖିଲାବେଳେ ହୁଏତ କେତେବେଳେ ବୃତ୍ତିପାଇଁ ଅବା କେତେବେଳେ ଆପଣାର ମନସନ୍ତୋଷରେ ଲେଖିଥିବେ । ଏଣୁ ତାଙ୍କ ସମାଲୋଚନାରେ ସ୍ନେହାଚ୍ଛନ୍ନ ମନଟିଏ ଦେଖିଲେ ତାଙ୍କର ସାରସ୍ୱତ ସ୍ଥିତି ଦୋହଲି ଯିବାର କୌଣସି ହେତୁ ନାହିଁ । ରସିକ ଗ୍ରାହକ କୋଟି କବି ଆସୁ ଯେନ ବର୍ତ୍ତି ଥିଲେ କବିର କବିତ୍ୱ ମ୍ଳାନ ହୁଏ ନାହିଁ, ଏହି ଦୃଷ୍ଟିରୁ ହିଁ ଡକ୍ଟର ଦାଶଙ୍କୁ ହୁଏତ ସମ୍ବେଦୀ ସମାଲୋଚକ କରିଛି । ତାଙ୍କର ଶିକ୍ଷକସୁଲଭ ଉଦାରମନ ହିଁ ତାଙ୍କ ସମାଲୋଚନାରେ ପ୍ରତିଫଳିତ । ଏଣୁ ଡକ୍ଟର କୃଷ୍ଣବିହାରୀ ଦାଶ ଓଡ଼ିଆ ସମାଲୋଚନା କ୍ଷେତ୍ରରେ ଜଣେ ଦରଦୀ ସମୀକ୍ଷକ, ଏଥିରେ ମତାନ୍ତର ନାହିଁ ।

## ॥ କବି କାହାଣୀ ॥

ଅଧ୍ୟାପିକା—**ଶ୍ରୀମତୀ ଲାବଣ୍ୟ ନାୟକ**

"ଗାନ୍ଧିଜୀଙ୍କ ଦାଣ୍ଡି ଯାତ୍ରା ନୁହେଁ, ବିନୋବାଜୀଙ୍କ ଭୂଦାନ ସଂଗ୍ରହ ଯାତ୍ରା ନୁହେ, ସିକନ୍ଦରଙ୍କ ଦିଗ୍ବିଜୟ ଯାତ୍ରା ନୁହେଁ, ତଥାପି ଏହା ଏକ ଅଭିନବ ଯାତ୍ରା, ଜଣେ ସାହିତ୍ୟପ୍ରେମୀର, କାନ୍ଧରେ ତାର ଝୁଲାମୁଣି, ମର୍ମରେ ତାର ଚିରନ୍ତନ ସଂସ୍କୃତିର ସଙ୍ଗୀତ, ନବଧର୍ମ ପ୍ରଚାରକର ଉନ୍ମାଦନା, ଚେତନାର ଏକ ତଡ଼ିତ୍ପ୍ରବାହ, ପ୍ରେମିକର ସଂସାର ଭୁଲାଭାବ ଓ ତେ ସାମୀ ସ୍ପନ୍ଦନ ଯେମିତି ମୁଁ ବାହାରିପଡ଼ିଲି ଜର୍ଜରିତା ଅହଲ୍ୟା ଉଦ୍ଧାରରେ। ଗ୍ରାମରୁ ଗ୍ରାମାନ୍ତର ମୋର ପଦଯାତ୍ରା, ମୋ ଜାତିର ସଂସ୍କୃତିର ଗବେଷଣା ଆବିଷ୍କାର ଲାଗି, ମୋ ଜାତିର ଜୀବନ କେତେ ବିସ୍ତୃତ, ତାର ରସର ଧାରା କେତେ ଗମ୍ଭୀର, ତାର ପ୍ରାଣ ପ୍ରାଚୁର୍ଯ୍ୟ କେତେ ଦିଗଦିଗନ୍ତ ବ୍ୟାପୀ, ତାର ଅନୁଭବ କେତେ ସୂକ୍ଷ୍ମ, ତାର ମାନବିକତା କେତେ ସ୍ୱଚ୍ଛନ୍ଦ; ତାର ଅନ୍ତର୍ଲୋକ କେତେ ଉଜ୍ଜ୍ୱଳ ହୃଦୟଙ୍ଗମ କଲି।" ( ପୃ-୬୮୯ )

ଓଡ଼ିଶାର ଲୋକଗୀତ ଓ କାହାଣୀ ସଂଗ୍ରହ ଲାଗି ତତ୍ପର ହୋଇ ବାହାରି ପଡ଼ିଥିବା "ମୋ କାହାଣୀ"ର ଲେଖକ ଡ଼ଃ କୁଞ୍ଜବିହାରୀ ଦାଶଙ୍କର ଏହି ଉକ୍ତିରେ ସୂଚିତ ଏକ ମାର୍ମିକ ଉପଲବ୍ଧି— ହୃଦୟଖୋଲା ଏକ ଉଚ୍ଛାସ । ଓଡ଼ିଆ ଜାତିର ମର୍ମ ବୁଝିଥିବା ଜଣେ ସାରସ୍ୱତ ପଥଗ୍ରନ୍ଥର ପ୍ରଚାରଦାତା ଏହା ନୁହେଁ, ଏହା ହେଉଛି ସଂସ୍କୃତି ପ୍ରୀତ ଜଣେ ଶିଳ୍ପୀର ଗଭୀର ଆତ୍ମ ଜିଜ୍ଞାସା । ବାସ୍ତବିକ ଆଗ୍ରହ ନ ଥିଲେ ପ୍ରଚାର ମୂଲ୍ୟହୀନ ହୋଇପଡ଼େ ନାହିଁ କି ? ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତି ପ୍ରୀତି ହେଉଛି "ମୋ କାହାଣୀ" ଲେଖକଙ୍କ ହୃଦୟର ଭୂଷଣ । ପ୍ରକୃତରେ ପ୍ରୀତି ସିନା ଗତି ବଢ଼େଇଦିଏ । ପ୍ରୀତି ନ ଥିଲେ ଯେ କୌଣସି କ୍ଷେତ୍ରରେ ମନୁଷ୍ୟ ପାଦେ ଆଗେଇ ପାରେ ନାହିଁ । ହୃଦୟର ଅଖଣ୍ଡ ଶ୍ରଦ୍ଧା ଓ ଅସୀମ ପ୍ରୀତି ନେଇ ସେ ଆବାଲ୍ୟ ସାରସ୍ୱତ ସାଧନା କରି ଆସିଛନ୍ତି । ସମୁଦାୟ "ମୋ କାହାଣୀ"ରେ ଫୁଟିଛି ଜଣେ ତପନିଷ୍ଠ ସାଧକର ବ୍ୟକ୍ତିତ୍ୱ । ପୁଷ୍ପର କଳିକାଟି ପ୍ରଥମେ ପ୍ରସ୍ଫୁଟିତ ହୋଇ ସୌରଭ ମଣ୍ଡିତ

ହେବାପରି ଲେଖକଙ୍କ କବି ଶକ୍ତି କୈଶୋରାବସ୍ଥାରୁ ଜନ୍ମଲଭ କରି ପ୍ରତିଭା ରଞ୍ଜିତ ହୋଇଯାଉଛି ପରବର୍ତ୍ତୀ ସମୟରେ । ଏହି କ୍ରମ ବର୍ଦ୍ଧିତ ଶକ୍ତିର ଲୀଳାଛି "ମୋ କାହାଣୀ"ରେ ବିଶେଷ ପ୍ରଣିଧାନର ବିଷୟ ।

ଲେଖକ ଆପଣା ଗ୍ରନ୍ଥ ସମ୍ପର୍କରେ ମନ୍ତବ୍ୟ ଦେଇ କହିଛନ୍ତି ଯେ ତାଙ୍କଠାରେ ବିପୁଳ ଜୀବନର ଅନୁଭୂତି, ରାଜନୈତିକ ଘଟଣା ବହୁଳତା, ସମାଜସେବାର ତତ୍ପରତା ବା ବୈଜ୍ଞାନିକର ପରୀକ୍ଷା ନିରୀକ୍ଷା ନାହିଁ । ତେଣୁ ତାଙ୍କ ଜୀବନ ବିରାଟ ନାସ୍ତିବାଚକ । କିନ୍ତୁ ବକ୍ତବ୍ୟଟିର ସତ୍ୟତା ସେତେ ଥିବାର ଜଣାଯାଏ ନାହିଁ । ତାହା ବୋଧହୁଏ— ଚରିତକାରଙ୍କ ବିନୟଭାବ । କାରଣ କବି ବା ସାହିତ୍ୟକଙ୍କ ଛଡ଼ା ଜୀବନକୁ ଅଧିକ କିଏ ଅନୁଭବ କରିପାରେ ? "ମୋ କାହାଣୀ"ରେ ତାର ଦୃଷ୍ଟାନ୍ତ କ'ଣ ଅଭାବ ଅଛି ? ଓଡ଼ିଆ ଜାତିର ଭାଷା, ସାହିତ୍ୟ, ସଂସ୍କୃତି, ତାର ଧର୍ମ, ଦର୍ଶନ ଓ କଥାଠାରୁ ଆରମ୍ଭ କରି କବି, ପ୍ରଫେସର ଓ ଲୋକରଙ୍କ ଜୀବନ କାହାଣୀ ପର୍ଯ୍ୟନ୍ତ ବିପୁଳ ସମ୍ଭାରରେ "ମୋ କାହାଣୀ" ପରିପୂର୍ଣ୍ଣ । ପଲ୍ଲୀଚିତ୍ର ତଥା ଲୋକ ଜୀବନର ବାସ୍ତବ ରୂପାୟନରେ ଲେଖକଙ୍କ ସଫଳତା କେତେ. ଗୋଟିଏ ଦୁଇଟି ଦୃଷ୍ଟାନ୍ତରୁ ତାହା ଅନୁମାନ କରାଯାଇ ପାରେ । ଉତ୍ତର ଅଞ୍ଚଳର ଉତ୍କଟ ଦୁର୍ଭିକ୍ଷ କାଳର କଥା । ମୁଢ଼ି, ଚୁଡ଼ା ଅଭାବରୁ କେତେଦିନ ଧରି ପିଲାମାନଙ୍କର ପାଟି ବୁଲୁ ନ ଥିଲା । ଅବସ୍ଥା ସମ୍ପର୍କରେ ଲେଖକ ଉଲ୍ଲେଖ କରିଛନ୍ତି, "ସେଇ କରଜ ଧାନରୁ ଗଣ୍ଡିଏ ଘେନି ମୁଁ ଗୁଡ଼ିଆ-ଘରକୁ ମୁଢ଼ି ଆଣିବାକୁ ଯାଇଥିଲି, ଗ୍ରେଟୀ ଗୁଡ଼ିଆଣୀ ଅଡେଇ ହାତ ଲମ୍ବା ବୁଢ଼ୀଟିଏ, ଫୁଙ୍କିଦେଲେ ପଡ଼ିଯିବ—ଏମିତି ଚେହେରା, ଗ୍ରେଟୀର ହାତଟି ପିଲାଙ୍କ ହାତପରି ଗ୍ରେଟ । ମୁଁ ନେଇ-ଥିବା ଧାନ ଗଣ୍ଡିକ ତା ହାତରେ ପୋଷେ ହେଲା । (ସେ ଦୃଶ୍ୟ ନାଚିଯାଉଛି, ଆଖି ଛଳ ଛଳ ହୋଇ ଯାଉଛି । )

ବି'କାଳରେ ସେତକ କୁଆଡ଼େ ମିଳାଇଗଲା । ଗ୍ରେଟୀର ଗୁଡ଼ଲିଆ ମୁଢ଼ି ସୁଆଦ, ଆଜିର ରସଗୋଲା, ସନ୍ଦେଶ, ଖିରି କାକରା ମଧ୍ୟରେ ମୁଁ ତାକୁ ଭୁଲି ପାରିନାହିଁ । ଆଜି ଗ୍ରେଟୀ ନାହିଁ, ତା ସ୍ୱାମୀ ମାଇଗୁଲିଆ ହଟିଆ ନାହିଁ, ତା ଶାଶୁ କଲହୁଡ଼ୀ ଦୁଲୀ ନାହିଁ, ତାର ସେ ମାରଣା ହଡ଼ାଟା ନାହିଁ । ତା'ର ସେ ଗୁଳୀ ଖଣ୍ଡକ ବି ମାଟିରେ ମିଶିଯାଇଛି । କିନ୍ତୁ ସେ ବାଟରେ ଗଲାବେଳେ ସେ କାଳମହିରଗ ବେଳର ଗୁଡ଼ଲିଆ ମୁଢ଼ି ଗଣ୍ଡାକ କଥା ମୋର ମନେ ପଡ଼ିଯାଏ, ପାଟି ପାଣେଇ ଉଠେ । ଜଣ ଜଣଙ୍କ ହାତରେ ଗୋଟିଏ ଗୋଟିଏ ଜିନିଷର ପାଗ ଭଲ ଉତୁରେ, ଯୋଗଜନ୍ମା ସେ । ତା ହାତ ଯଶ ପୃଥିବୀରେ ପ୍ରତିଷ୍ଠା ପାଏ—କଲା କବିତାରେ ହେଉ ବା କୋରା ଖଇରେ ହେଉ ।" (ପୃ-୮୪) ଉକ୍ତିଟିରୁ ଲେଖକଙ୍କ ଆବେଗପ୍ରବଣ ଦରଦୀ କବି ହୃଦୟ ସହିତ ଲୋକଜୀବନ ଅଧ୍ୟୟନ ପାଇଁ ଲୋଡ଼ା ସୂକ୍ଷ୍ମ ଦୃଷ୍ଟିଶକ୍ତିର ପରିଚୟ ମିଳେ । ଜୀବନକୁ

ଅନୁଭବ କରିବାର ପ୍ରବଣତା ନ ଥିଲେ, ଏପରି ବାସ୍ତବଧର୍ମୀ ଜୀବନାଲେଖ୍ୟ ଅଙ୍କନ କରିବା ସମ୍ଭବ ହୁଅନ୍ତା ନାହିଁ । ବହୁ ସ୍ଥଳରେ ଏପରି ଦୃଷ୍ଟାନ୍ତ ଥାଉଁ ଥାଉଁ ଏହା କହିବା କ'ଣ ବିଶ୍ୱାସ ଯୋଗ୍ୟ ଯେ ଲେଖକଙ୍କର ବିପୁଳ ଜୀବନର ଅନୁଭୂତି ନାହିଁ ?

ସେହିପରି ଲେଖକଙ୍କ ବକ୍ତବ୍ୟ ଅନୁସାରେ 'ମୋ କାହାଣୀ'ରେ ରାଜନୀତିକ ଘଟଣାର ବହୁଳତା ନାହିଁ—ଏହି ଉକ୍ତିଟିର ସତ୍ୟତା ଅନୁଭବ କରିହୁଏ ନାହିଁ । ଲେଖକ ରାଜନୀତିକ ନେତା ନୁହଁନ୍ତି ସତ । ତେଣୁ ସ୍ଥୂଳ ଅର୍ଥରେ ଏପରି ସମାଜସେବୀ ବା ରାଜନୀତିକମାନଙ୍କର ବିପ୍ଳବ, ଆନ୍ଦୋଳନ, ଭାଷଣ, ପ୍ରଚାର ବା କାରାଗାରର ଘଟଣା ଭିନା ନାହିଁ, କିନ୍ତୁ ମରମୀ ପାଠକମାନଙ୍କ ପାଇଁ ରହିଛି ଆବେଗପ୍ରବଣ, ଜୀବନଧର୍ମୀ ନାଟକୀୟ ଘଟଣାଗୁଡ଼ିକ କ'ଣ ଏହାଠାରୁ ଅଧିକ ଚମତ୍କପ୍ରଦ ? ତାଙ୍କର ସଂଗ୍ରାମୀ ଜୀବନରେ ଯେଉଁ ଘଟଣା ସବୁ ଅଭିନୟ ପରି ଗ୍ରୁଏଁ ଗ୍ରୁଏଁ ଘଟି ଯାଉଥିଲା, ସେଥିରୁ ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କରାଯାଇପାରେ ।

ଲେଖକ ଥିଲେ ଜଣେ ସାଧାରଣ କୃଷୀଘରର ପିଲା । ଦଶ ବାରବର୍ଷ ପର୍ଯ୍ୟନ୍ତ ଗାଁର ସବୁ ପିଲାଙ୍କ ପରି ଲଙ୍ଗଳା ହୋଇ ବୁଲୁଥିଲେ । ତାଙ୍କ ଭାଇନା ପାଠ ପଢ଼ିବାକୁ ଯିବାରୁ ଚାଷ ସମ୍ଭାଳିବା ଭାର ନିଜ ଉପରେ ପଡ଼ିଲା । କେମିତି ତାଙ୍କର ଜୀବନ ମୂଳରୁ ଗତି ବଦଳାଇ ଗଢ଼ା ହେଲା, ସେ ସମ୍ପର୍କରେ ଗ୍ରନ୍ଥଟିରେ ଲେଖାଅଛି—"ପ୍ରଥମେ ପ୍ରଥମେ ପାହି ପଡ଼ୁଆ ହେଉଥିଲା । ପରେ ଅଭ୍ୟାସରେ ସବୁ ଦୋରସ୍ତ ହୋଇଥିଲା । ମୁଗ, ବିରି, ରାଶି, ସୋରିଷ ବୁଣି ଜାଣିଲି, ଝାଡ଼କ ଖୋଳି ଖମ୍ବ ଆଳୁ ପକାଇଲି । ସାରୁରେ ପିଢ଼ିଆ ଦେଇ ହୁଡ଼ା ଉଠାଇଲି । କୋଳଥ ପୁଞ୍ଜି ଦେଇ ଜାଣିଲି, ବିଲରୁ ତଳି ଉପାଡ଼ି ରୋଇଲି । କଡ଼ି କୋଡ଼ମାଟିଆ କଲି, ଗୃକର ନ ଆସିବା ଦିନ ଗାଈ ଚରାଇଲି, ଗୁହାଳ ପୋଛିଲି । କୋଳଥ ରଗଡ଼ିଲି, କୁଳୁଚ କୁଟିଲି । ଗୋରୁପାଣି ତତେଇ ଗୋରୁ ମୋହିଁଲି, କାଠ ଚିରିଲି, ମାଛ ମାରିଲି । ଗଛରେ ଚଢ଼ି ଆମ୍ବ ପାରିଲି, ଭାଇ ସାଙ୍ଗରେ କୁଣିଆ ହୋଇ ବନ୍ଧୁ ଘରକୁ ଗଲି । କାନ୍ଧରେ ଚୁଡ଼ାଭଜା ଉଖୁଡ଼ା ଯାଉଁଳି ପକାଇ ନାନୀଙ୍କ ଦେଖିବା ପାଇଁ ଗଲି । ନିମ୍ନ ମଧ୍ୟବିତ୍ତ ପରିବାରରେ ସାଆନ୍ତ ହୋଇ ବସିଲେ ଚଳେ ନାହିଁ । ଲୋକଙ୍କ ସାଙ୍ଗରେ ମିଶି ବାଡ଼ବୁଜାରୁ ଘର ଛପର, ଦଉଡ଼ିବୋଲାରୁ ଓଳିଆବନ୍ଧା, ମାଟି ବୁହାରୁ ବେଙ୍ଗଳା ପକା ପର୍ଯ୍ୟନ୍ତ ସବୁକାମ କରିବାକୁ ହୁଏ ।" (ପୃ-୧୧୦) ବିପୁଳ ଜୀବନର ବିଚିତ୍ର ସାଜସଜ୍ଜା ଭିତରେ ଆପଣାକୁ ଖୋଜି ପାଇବା'ର ନିରବଚ୍ଛିନ୍ନ ସାଧନା କରିଛନ୍ତି ଲେଖକ । ସାଧାରଣ ମୂଳଆର ଅନୁଭୂତି କମ୍ବା ଏକ ଶ୍ଳୋକସେଇଆ ବ୍ରାହ୍ମଣ ବାଳକର ଅସ୍ଥିରତା ଓ ଅନିଚ୍ଛାର ଆତ୍ମସଙ୍ଗୀତ ଶୁଣୁ ଆମେ ଯେତେବେଳେ ଜଣେ ବିଚିତ୍ରକର୍ମୀ ସାରସ୍ୱତ ପୁରୁଷର କୀର୍ତ୍ତିମୟ ସଂଗ୍ରାମ ଓ ସାଧନାର ସ୍ୱାକ୍ଷର ପ୍ରତ୍ୟକ୍ଷ କରୁ କମ୍ବା ବ୍ୟକ୍ତି କାହାଣୀର ଉତ୍ଥାନ ପତନ ମଧ୍ୟରେ ପ୍ରବହମାନ

ଓଡ଼ିଆ ଜାତୀୟ ଜୀବନର ସ୍ରୋତ ଓ ପଲ୍ଲୀମୟ ଭାରତୀୟ ଆତ୍ମାର ସ୍ଫୁଟ-ଅସ୍ଫୁଟ କାହାଣୀର କାକଳୀ ଶୁଣୁଁ, ସେତେବେଳେ "ମୋ କାହାଣୀ"ର ଲେଖକଙ୍କ ବିପୁଳ ଅନୁଭୂତି ସହିତ ଆମେ ପରିଚିତ ହେଉ ନାହିଁକି ?

ପ୍ରତ୍ୟେକ ମଣିଷର ଜୀବନ ଗୋଟିଏ ଗୋଟିଏ ନାଟକ । କିନ୍ତୁ ଆଲୋଚ୍ୟ ଲେଖକଙ୍କ ଜୀବନ ଏକ ମହାନାଟକ । ଏହାର ବିବିଧ ଘଟଣା ଯେପରି ଚମକପ୍ରଦ, ସେହିପରି ସମ୍ବେଦନପୂର୍ଣ୍ଣ । ଘଟଣାବଳୀର ବୈଚିତ୍ର୍ୟହିଁ ଏହାର ପ୍ରାଣ । ଲେଖକଙ୍କ ଜୀବନ ପ୍ରବାହର ଆୟତନ ସୀମିତ ହୋଇଥିଲେ ଏପରି ବ୍ୟାପ୍ତି ହୁଏତ ସମ୍ଭବ ହୋଇ ନଥାନ୍ତା । କିନ୍ତୁ ଜଣେ ରାଜନୀତିକ କର୍ମୀର ଉତ୍ଥାନ ପତନମୟ ଜୀବନର ଘଟଣା-ବଳୀ ପରି ଏବଂ ଜଣେ ପରିବ୍ରାଜକ ସମାଜସେବୀର ଅଙ୍ଗୀକାରବଦ୍ଧ କାର୍ଯ୍ୟାନୁଷ୍ଠାନ ପରି ଲେଖକଙ୍କ ଜୀବନଯାତ୍ରା ବହୁବିଗଦିଗଶାଖି ହୋଇଛି । ଜଣେ ରାଜନୀତିକ ନେତା, ସମାଜସେବୀ ଓ ଜଣେ ବିଜ୍ଞାନୀର ଧରାବନ୍ଧା ସାଧାରଣ ଜୀବନଠାରୁ ଏହା ବେଶ୍ ରୋମାଞ୍ଚକର । ଏହି ରୋମାଞ୍ଚକର ଘଟଣାବହୁଳ ଜୀବନଯାତ୍ରାର ଆଭାସ ଲୋକଗୀତ ଓ କାହାଣୀ ସଂଗ୍ରହ କାଳରେ ଲେଖକ ଅଙ୍ଗେ ଲିଭାଇଥିବା ବିଭିନ୍ନ ଘଟଣାବଳୀରୁ ଆମେ ଅନୁଭବ କରିଥାଉଁ । ଲୋକ ତୁଣ୍ଡର ବିବିଧ ସାରସ୍ୱତ ରତ୍ନକୁ ସଂଗ୍ରହ କାଳରେ ଲେଖକଙ୍କ ଯାତ୍ରା-ମୟୂରଭଞ୍ଜର ଖିଚିଂ, ମାଛକୁଣ୍ଡ ନଦୀର ଧାର, ମଞ୍ଜୁଷାର ମହେନ୍ଦ୍ରଗିରି, ଚାନ୍ଦିପୁର ସମୁଦ୍ର, ସପ୍ତନଦୀ ସମନ୍ୱିତ ଧାମରା ଓ କନକା ଆଳର ଗ୍ରାମ ପ୍ରଭୃତି ଓଡ଼ିଶାର ଦୂର ପ୍ରାନ୍ତରରୁ ଲାଭ କରିଥିବା ଅନୁଭୂତିର ଅକପଟ ଅଭିବ୍ୟକ୍ତି ଅନ୍ତରାଳରେ ଜଣେ ସମାଜସେବୀର ବ୍ରତନିଷ୍ଠା, ବିଜ୍ଞାନୀର ଅନ୍ତର୍ଦୃଷ୍ଟି ଓ ଜଣେ ସାରସ୍ୱତ ସାଧକର ତପଶ୍ଚର୍ଯ୍ୟାର ସଙ୍କେତ ବିଦ୍ୟମାନ । ଜୀବନର ପରିଧି ଏତେ ବ୍ୟାପ୍ତ ଓ ବିସ୍ତୃତ ହୋଇ ସୁଦ୍ଧା ଏବଂ ତହିଁରେ ବୁଦ୍‌ବୁଦ୍‌ମୟ ବହୁ ଘଟଣାର ଉଦ୍‌ଭାସନ ସତ୍ତ୍ୱେ ଲେଖକ ତାହାକୁ ଆପଣା ଜ୍ଞାନ, କର୍ମ, ତ୍ୟାଗର ଏକ ବଳିଷ୍ଠପଦଯାତ୍ରା ବୋଲି ଡକାପକାଇ କହିନାହାନ୍ତି । ସ୍ୱୀକାର କରିଛନ୍ତି ଯେ ଏଥିରେ ଜ୍ଞାନର ଗରିମା ବା ତ୍ୟାଗର ମହିମା ନାହିଁ, ଜ୍ଞାନର ଅହମିକା ନାହିଁ ସତ; କିନ୍ତୁ ଗରିମା ନାହିଁ ବୋଲି କହିହେବନାହିଁ । ଜ୍ଞାନପିପାସୁ ହୋଇ ନ ଥିଲେ କୃଷୀ ପରିବାରର ଧରାବନ୍ଧା ଚଳଣୀ ଭିତରେ ସେ ହୁଏତ ଗତୁରିଥାଆନ୍ତେ, ତାଙ୍କ ଜୀବନ ଠିକ୍ ଗଡ଼ି ଚାଲିଥାନ୍ତା ଶଗଡ ଗୁଳାରେ ଗାଡ଼ି ଗଡ଼ିଲା ପରି । ମୋଗ ଘରପଟରେ ବୁଲୁଥିବା ବଳଦମାନଙ୍କ ପରି ତାଙ୍କ ଜୀବନର ଚାରଣଭୂମି ଥାନ୍ତା ସୀମିତ । ସେହି ବୃତ୍ତିକୁ ଟପି ଯଦି ସେ ଅନ୍ୟ ସୀମାକୁ ସ୍ପର୍ଶ କରିଥାନ୍ତି, ତେବେ ତାହା ହେଉଛି କେବଳ ଜ୍ଞାନର ପିପାସା ହେତୁ । ଗୃହୀ ସଂସାରତ ତାଙ୍କୁ ସବୁବେଳେ ଆହ୍ୱାନ କରୁଥିଲା । କିନ୍ତୁ ସେ ଆହ୍ୱାନକୁ ସେ ସ୍ୱାଗତ କରିପାରିଲେ ନାହିଁ । ବହୁ ଦୂରରୁ ନୀଳଚକ୍ରରେ ଜ୍ଞାନର ପତିତ-ପାବନ ବାନା ସତେ ଯେପରି ତାଙ୍କୁ ହାତଠାରି ଡାକୁଥିଲା । ସେଇ ପ୍ରେରଣାକୁ ସମ୍ବଳ କରି ସେ ଅମଡ଼ା ମାଡ଼ି ଚାଲିଲେ । ସେ ଥିଲେ ଉନ୍ମୁକ୍ତପାଦ । ତେଣୁ ଝାଡ ଜଙ୍ଗଲକୁ

ଭେଟିବା ବା ଦୁର୍ଗମ ଗିରି ଲଙ୍ଘନ କରିବାରେ ଆଉ ବାଧା କେଉଁଠି ? ଯଦିଚ ପଥ ଥିଲା ଶ୍ୱାପଦ ସଙ୍କୁଳ ଓ ବିପଦପୂର୍ଣ୍ଣ ।

ତାଙ୍କର ଜୀବନ ଥିଲା ସଂଘର୍ଷମୟ । ନିମାପଡା ସ୍କୁଲର ଛାତ୍ର ଥିବାବେଳେ ନିଜେ ବର୍ତ୍ତି ଛାତ୍ର ଜୀବନକୁ ବଜାୟ ରଖିବାପାଇଁ ସେ ପ୍ରବଳ ସଂଗ୍ରାମ କରିଛନ୍ତି । ସ୍କୋଲେରି ଓ ଟ୍ୟୁସନ୍ ହୋଇଛି ତାଙ୍କର ଅବଲମ୍ବନ । ଏହି ସଂଘର୍ଷମୟ ଜୀବନର ଉଲ୍ଲେଖ, ଅନୁଭୂତିର ଅକପଟ ଅଭିବ୍ୟକ୍ତି ହେତୁ ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଛି । ଲେଖକ ଏ କ୍ଷେତ୍ରରେ ଆପଣାକୁ ଗୁପ୍ତ ରଖିନାହାନ୍ତି । ଭିତର ମନକୁ ଓ ତାର ସକଳ ଆଲୋଡନକୁ ପରସ୍ତ ପରସ୍ତ ଖୋଲି ଦେଇଥିନ୍ତି । ଏଇ ଆତ୍ମମୁକ୍ତି ଓ ନିଷ୍କପଟ ଅଭିବ୍ୟକ୍ତି ହେଉଛି ଆତ୍ମଚରିତ ରଚନା-କଳାର ଶ୍ରେଷ୍ଠ ଅବଲମ୍ବନ । ରେଭେନ୍‌ସା କଲେଜରେ ପଢ଼ିବାବେଳେ ତାଙ୍କର ଟ୍ୟୁସନ୍ ଛାତ୍ରଟି ହଠାତ୍ ବାପାଙ୍କ ବଦଳି ହେତୁ କଟକରୁ ହଜାରିବାଗ ଚାଲିଯିବାରୁ ମଝି ଦରିଆରେ ଭାସିବା ଅବସ୍ଥା ପହଞ୍ଚିଲା ତାଙ୍କର । ଏହାର ବର୍ଣ୍ଣନାଟି ଅତି ଆବେଗଧର୍ମୀ ଓ ହୃଦୟସ୍ପର୍ଶୀ । "ଭୁବନେଶ୍ୱରକୁ ନେଇଥିଲି ଗୋଟିଏ ପେଟେରା—ସେତେବେଳକୁ ଟ୍ରଙ୍କ୍, ସୁଟ୍‌କେଶ୍ ସେତେ ଚାଲୁ ହୋଇ ନ ଥିଲା, କଟକରେ ପେଟେରା ଅଚଳ, ଆଣିଥିଲି ଗୋଟିଏ କାଠ ବାକ୍‌ସ, କେତେବର୍ଷ ତଳେ ଟଙ୍କାଟିଏ ଦିଆହୋଇ ମେଳଣରୁ କିଣା ହୋଇଥିଲା । ସେଇ ଛୋଟ କବ୍‌ଜାହୀନ କାଠ ବାକ୍‌ସଟି କାନ୍ଧେଇ ମୁଁ ରାସ୍ତା ଧାରରେ ଆସି ଛିଡା ହେଲି, ଉପରକୁ ଚାହିଁ ମନେ ମନେ ପଚାରିଲି ପ୍ରଭୁ, ଏବେ କୁଆଡେ ଯିବି ?

ବାଟତ ସବୁଆଡେ ପଡ଼ିଛି, ଲୋକେ ଯାଉଛନ୍ତି, ଆସୁଛନ୍ତି, ସମସ୍ତଙ୍କ ପଥ ସ୍ଥିର, ଲକ୍ଷ୍ୟ ନିର୍ଦ୍ଦିଷ୍ଟ ଯେପରିକି । ହାତରେ ପଇସାଟିଏ ନାହିଁ, ଭିତରେ କାନ୍ଦୁଥାଏ—ଲୋକ ଲଜ୍ଜାକୁ ଆଖିରୁ ଲୁହ ଗଡାଉ ନ ଥାଏ ଯାହା" (ପୃ-୧୫୦) ଏହାର ଆବେଦନଶୀଳତା ସହଜରେ ଅନୁଭୂତ ହୁଏ ।

ଗ୍ରନ୍ଥ ସମ୍ପର୍କରେ ଲେଖକଙ୍କ କୈଫିୟତ୍ ହେଉଛି "ମୋ କାହାଣୀ" ଅହଙ୍କାରର ଆତ୍ମପ୍ରସାଦ ନୁହେଁ, ନିଜ କୃତି ବା କୀର୍ତ୍ତିର କୀର୍ତ୍ତନ ନୁହେଁ । ଗ୍ରାମୀଣ ଓ ନାଗରିକ ପରିପ୍ରେକ୍ଷୀରେ ମୋ କ୍ଷୁଦ୍ରତା, ଅଧଃପାତ, ବୈଫଲ୍ୟ, ସଂଗ୍ରାମ ଓ ସଫଳତାର ଏକ ରୂପାୟନ ମାତ୍ର । ଏହା ମୋ ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ବହୁ କ୍ଷୁଦ୍ର ଓ ମହତ୍ ଜୀବନର କାହାଣୀ, ସମସାମୟିକ ସମାଜଜୀବନର କାହାଣୀ, କାରଣ ଅନେକଙ୍କ ଯେମିତି ଏକର ବିକାଶ—ଆଗରେ ପଛରେ, ଚତୁର୍ଦ୍ଦିଗରେ ମୋର ଶ୍ରଦ୍ଧା ଅଶ୍ରଦ୍ଧା ବହୁ ଜୀବନ ଅତୀତ ଓ ବର୍ତ୍ତମାନ ଉପରେ ଛାୟା ବିସ୍ତାର କରିଛନ୍ତି । ସେହି ସମସ୍ତଙ୍କ କାହାଣୀ ଯେମିତି "ମୋ କାହାଣୀ ।" (ପୃ 'କ') ବସ୍ତୁତଃ ଏହାହିଁ ହେଉଛି "ମୋ କାହାଣୀ"ର ବିଭବ । ଲେଖକଙ୍କ ଏହି ଉକ୍ତିର ସତ୍ୟତା ଗ୍ରନ୍ଥ ଅଧ୍ୟୟନରୁ ମର୍ମେ

ମର୍ମେ ଅନୁଭବ କରନ୍ତୁଏ । "ଅନେକଙ୍କୁ ଯେମନ ଏକର ବକାଣ" ଏହି ଉପପାଦ୍ୟର ଭୂମିକା ଉପରେ ଆତ୍ମଚରିତକାରଙ୍କ ବ୍ୟକ୍ତିତ୍ୱର ଦର୍ଶନ ଆକାର ଯେନଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଚରିତକାର ଜୀବନପାଇଁ, ସାହିତ୍ୟପାଇଁ କରିଥିବ ଯାବତୀୟ କୃଚ୍ଛ୍ରସାଧନା ଓ ସିଦ୍ଧିର କାହାଣୀ ଏଥିରେ ଲିପିବଦ୍ଧ ହୋଇଛି; କିନ୍ତୁ ସେ ସିଦ୍ଧିପାଇଁ ଆତ୍ମଗାରିମା ନାହିଁ । ସେ ଜୀବନ ସାରା ନିଜର କୃତି ଓ କୀର୍ତ୍ତିର ସୌଧ ନିର୍ମାଣ କରିଛନ୍ତି ସତ, ମାତ୍ର ନିଜର ଭର୍ତ୍ତି ମ ପିଟିବା ପାଇଁ ପଟୁଆରର ଆୟୋଜନ କରିନାହାନ୍ତି । ଜଣେ ବିଶିଷ୍ଟ କବି, ସାହିତ୍ୟିକ ତଥା ଗବେଷକ ଭାବରେ ମନରେ ଅହମିକାକୁ କୌଣସି ସମୟରେ ସେ ସ୍ଥାନ ଦେଇନାହାନ୍ତି; ବରଂ ନିଜଠାରେ ଦେଖା ଦେଇଥିବା ତ୍ରୁଟି ଦୁର୍ବଳତାକୁ ନିଃସଙ୍କୋଚରେ ପ୍ରକାଶ କରିଛନ୍ତି । ଗବେଷଣାରେ ମନୋନିବେଶ କରିବା ପୂର୍ବରୁ ଶାନ୍ତିନିକେତନରେ ଡକ୍ଟର ବାଗ୍‌ଚୀଙ୍କ ସହିତ ତାଙ୍କର ଯେଉଁ ସଂଳାପ ଏବଂ ପରୀକ୍ଷାର୍ଥୀ ଗବେଷକ ଶ୍ରୀ କୁଞ୍ଜବିହାରୀଙ୍କର ପ୍ରବନ୍ଧ ଲେଖାର ପରିଣାମର ଅକପଟ ସୂଚନା ଗ୍ରନ୍ଥଟିରେ ଯେପରି ପ୍ରଦତ୍ତ ହୋଇଛି, ତହିଁରୁ ଗବେଷକ ଓ ଗବେଷଣାର ଧର୍ମ ସମ୍ପର୍କରେ ଏକ ମୂଲ୍ୟବାନ ମନ୍ତବ୍ୟ ମିଳିବା ସଙ୍ଗେ ସଙ୍ଗେ ଲେଖକଙ୍କର ଅହମିକା ଶୂନ୍ୟ ମନର ଆଭାସ ମିଳିଥାଏ । ଲେଖକ ଆତ୍ମବିଶ୍ଳେଷଣ କରିଆରେ ଆପଣାର ଅପାରଗତାକୁ ହିଁ ବୁଝି ପାରିଛନ୍ତି, ଅତ୍ମଶକ୍ତିକୁ ସତେଜ କରିଛନ୍ତି । ମନେ ମନେ ଭାବିଛନ୍ତି "କି ଗବେଷଣା କରିବି ? ଇଂରାଜୀରେ ପ୍ରବନ୍ଧଟିଏ ତ ଲେଖିଆସୁନାହିଁ, ବହି ଲେଖିବି କିପରି ? ଯାହାକୁ ଖେଳନାଟିଏ ତିଆରି କରି ଆସୁ ନାହିଁ ତାକୁ କୋଣାର୍କ ଗଢ଼ିବାର ଦାୟିତ୍ୱ ଦେଲପରି ହେଲାଏ ।" (ପୃ ୨୧୮)

"ମୋ କାହାଣୀ"ର ସଫଳତା ପାଇଁ ସାହାଯ୍ୟ କରିଛି ଲେଖକଙ୍କ ସମ୍ପର୍କରେ ଆସିଥିବା ବହୁ ସାଧାରଣ ଓ ବିଶିଷ୍ଟ ଲୋକଙ୍କ କାହାଣୀ । ଏ ବାବଦରେ ଅଧିକ କହିବା ବାହୁଲ୍ୟ । ଗ୍ରେଟୀ ଗୁଡ଼ିଆଣୀଠାରୁ ଆରମ୍ଭ କରି ହରିମାଷ୍ଟ୍ରଙ୍କ ପର୍ଯ୍ୟନ୍ତ ଏବଂ ପଣ୍ଡିତ ବିନାୟକ ମିଶ୍ର ଓ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଠାରୁ ଆରମ୍ଭ କରି ଡଃ ବାଗ୍‌ଚୀ, ରାଜା କିଶୋର ଚନ୍ଦ୍ର ହରିଚନ୍ଦନ ଜଗଦ୍ଦେବ ଓ ମହାମାନ୍ୟ ନନ୍ଦଲାଲ ବୋଷ ସାହିତ୍ୟିକ ଅନ୍ନଦାଶଙ୍କରଙ୍କ ପର୍ଯ୍ୟନ୍ତ ବହୁବ୍ୟକ୍ତି ଏହାର ପରିସରଭୁକ୍ତ ହୋଇଛନ୍ତି । ପୁନଶ୍ଚ ତତ୍କାଳୀନ ଗ୍ରାମ୍ୟ ଚାଟଶାଳୀର ପଠନ ରୀତିଠାରୁ ଆରମ୍ଭକରି ଶାନ୍ତିନିକେତନର ଶିକ୍ଷା ପଦ୍ଧତି ଓ ସମକାଳୀନ ସମାଜର ରୀତି ନୀତି, ଚଳଣି, କୁସଂସ୍କାର ଆଦି ବହୁ ବିଷୟର ସୂଚନା ଏଥିରେ ସ୍ପଷ୍ଟ ବିଶେଷ ଭାବରେ ଗ୍ରାମ୍ୟ ଜୀବନର ସାମଗ୍ରିକ ପରିଚୟ ଏଥିରୁ ମିଳେ । ଓଡ଼ିଆ ଘରର ବିବାହ ବ୍ରତ, ଯାନିଯାତ୍ରା, ପର୍ବପର୍ବାଣୀ, ଓଡ଼ିଆମାନଙ୍କ ଘରେ ଘରେ ପ୍ରଚଳିତ କଥାଭାଷା, ଢଗଢମାଳି ଇତ୍ୟାଦିର ବିସ୍ତୃତ ଉଲ୍ଲେଖ ଏହାର ମୌଳିକତା । ଘରର ସତ୍ୟନାରାୟଣ ପୂଜାର ସିରିଣିଖିଆ, ଷଠୀ ପୂଜାରେ ମା'ମାନଙ୍କ ହାତରୁ ବିଲ୍ୱମୂଳୀର

ମାଡ଼ଣିଆ ଇତ୍ୟାଦି ବିଷୟ ଗୁଡ଼ିକରୁ ଓଡ଼ିଆ ଜାତିର ନିଜସ୍ୱ ସଂସ୍କୃତିର ପ୍ରମାଣ ମିଳିଥାଏ ।
ମନେହୁଏ, ଏତେ ଯେପରି ଓଡ଼ିଆ ଆତ୍ମ ର କାହାଣୀ ହିଁ, "ମୋ କାହାଣୀ"ରେ ଲିପିବଦ୍ଧ ହୋଇଛି । ଫକୀର ମୋହନଙ୍କ ଆତ୍ମ ଚରିତ ଭଳି ଏହା ଓଡ଼ିଆ ଜୀବନ ଗାଥାର ଏକ ମାର୍ମିକ ଲିପି ।

ଏତଦ୍‌ବ୍ୟତୀତ ଚରିତକାରଙ୍କ ବ୍ୟକ୍ତିଗତ ଜୀବନ କାହାଣୀକୁ ଏଥିରେ ଯଥା ସମ୍ଭବ ପୂର୍ଣ୍ଣାଙ୍ଗ କରାଯାଇଛି । ଲେଖକଙ୍କ ବ୍ୟକ୍ତିତ୍ୱ, ସଂଗ୍ରାମ ଓ ସାଧନା, ଦର୍ଶନ ଓ ଧର୍ମ ଧାରଣା ଆଦି ପ୍ରତ୍ୟେକ ବିଷୟରେ ସବୁମନ୍ତେ ଜାଣିବାର ପ୍ରଭୂତ ସୁଯୋଗ ଏହା ଯୋଗାଇ ପାରିଛି । ବହୁ ଘାତ ପ୍ରତିଘାତ ଓ ସଂଘର୍ଷ ମଧ୍ୟରେ ଲେଖକ ଗତି କରିଥିଲେ ମଧ୍ୟ କୌଣସି କ୍ଷେତ୍ରରେ ମାନସିକ ବଳ ହରାଇ ନାହାନ୍ତି କିମ୍ବା ଧ୍ୱଂସୀ ଶକ୍ତିକୁ ଅସ୍ୱୀକାର କରିନାହାନ୍ତି । ଜୀବନ ତାଙ୍କ ପାଇଁ କେବେହେଲେ ଅସହ୍ୟ ମନେ ହୋଇ ନାହିଁ । ବରଂ ଜୀବନ ତାଙ୍କୁ ଏକ ସୁଲଳିତ ସଙ୍ଗୀତ ତୁଲ୍ୟ ଧରା ଦେଇଛି । ଏଥିପାଇଁ ତାଙ୍କର ଜୀବନସାର୍ଥୀ କଲମ ହିଁ ଦାୟୀ ।

ଅବସର ଗ୍ରହଣ କରିବା ପରେ ତାଙ୍କ ମନରେ ସାମାନ୍ୟ ଅସ୍ଥିରତା ଦେଖା ଦେଇଥିଲା । ସେ ସମ୍ପର୍କରେ ଲେଖକ ଉଲ୍ଲେଖ କରିଛନ୍ତି, "ଏକ ସପ୍ତାହର ମନସ୍ତାପ ପରେ କଲମଟି ଧରିଲି—ଏଇ ମୋ କଳ୍ପବୃକ୍ଷ, ଅକ୍ଷୟବଟ, ମନକୁ ଏହାର ମୁନରେ ଥୋଇ ପାରିଲେ ଦୁଶ୍ଚିନ୍ତାରୁ ଛାଡ଼ି ମିଳିବ ।

ହେ ମୋର ପ୍ରିୟ କଲମ, ମୋ ତାରୁଣ୍ୟ ମୋତେ ଫେରାଇ ଦେ । ଜୀବନାର୍ଣ୍ଣବର କାତ ତୁ, ତୁ ହାତରେ ଥିଲେ କେଉଁ ସରକାର ମୋତେ ବୃଦ୍ଧ କରି ପାରିବ ? ପୀତ ନୁହେଁ, ଧୂସର ନୁହେଁ, ସବୁକାଳେ ସବୁଜର ପୂଜାରୀ ମୁଁ । × × × ଜୀବନ ତ ଏକ ପଥଚଲା—ଅସରନ୍ତି ସଙ୍ଗୀତ ତା'ର । ସେ ସଙ୍ଗୀତ ନୂଆ ସ୍ୱରରେ ଆରମ୍ଭ ହେଉ ଆଜି, ସତେ ଜୀବନ ଅର୍ଥ ସଙ୍ଗୀତ (ପୃ-୩୭୫) ଏହାହିଁ ଥିଲା ଲେଖକଙ୍କର ଜୀବନ ପ୍ରତି ଦର୍ଶନ ଓ ବାଣୀ ।

ଲେଖକଙ୍କ ବ୍ୟକ୍ତିତ୍ୱ ଓ ଦର୍ଶନକୁ ଚିହ୍ନିବା ପାଇଁ ଗ୍ରନ୍ଥ ଶେଷରେ ସଂଯୋଜିତ ଡାଏରୀ ଅଂଶଟି ବିଶେଷ ସାହାଯ୍ୟ କରିଛି । ଚରିତ ରଚନା କ୍ଷେତ୍ରରେ ଡାଏରୀର ଉପଯୋଗିତା ସର୍ବଦା ଅନୁଭୂତ ହୋଇଥାଏ । ଲେଖକ ନିଜ ଡାଏରୀ ସମ୍ପର୍କରେ ଉଲ୍ଲେଖ କରିଛନ୍ତି—"ଡାଏରୀରେ ମୋ ଜୀବନର ସଂକଳ୍ପ, ସୌନ୍ଦର୍ଯ୍ୟବୋଧ ଓ କେତେକ ଉଚ୍ଚଚିନ୍ତା ସ୍ଥାନ ପାଇଛି । × × × ଆତ୍ମପ୍ରକାଶଦ୍ୱାରା ମାନବ ଜାତିର ପ୍ରକାଶ କରିବାକୁ ହେବ । ବୁଦ୍ଧି ଶକ୍ତିକୁ ଉତ୍ତେଜିତ ନ କଲେ ତା' କର୍ମକ୍ଷମ ହୁଏନାହିଁ । ନୈରାଶ୍ୟ ଉନ୍ନତି ପଥର କଣ୍ଟକ । ଏତିକି ମୁଁ ଶିକ୍ଷା କରିଛି । କର୍ମନିଷ୍ଠା ଦ୍ୱାରା ଦେଶ

ସେବାବ୍ରତ ଧାରଣ କରିବ ବୋଲି କୃତପ୍ରତିଜ୍ଞ ହୋଇଛୁ ।" (ପୃ-୪୦୫) ବର୍ଣ୍ଣନାଟି ଲେଖକଙ୍କ ନିଷ୍ଠା, ସଙ୍କଳ୍ପ ଓ ବ୍ୟକ୍ତିତ୍ୱ ସହିତ ଦର୍ଶନର ସୂଚନା ବହନ କରିଛି । ଆଶା ଉନ୍ନତ ପଥର ସହାୟକ । ଏହାହିଁ ହେଉଛି ତାଙ୍କ ଜୀବନ ଦର୍ଶନର ବାଣୀ । ସେ ଆତ୍ମଶକ୍ତି ଓ ଆଶାବାଦକୁ ଜୀବନରେ ଗୁରୁତ୍ୱ ଦେଇଥିଲେ ମଧ୍ୟ ପୂର୍ବଜନ୍ମ କର୍ମଫଳ ଓ ଐଶୀ ଶକ୍ତି ଉପରେ ବି ଆସ୍ଥାବାନ ହୋଇ ଉଠିଛନ୍ତି । ଏହାକୁ ଜଣେ ପୂର୍ଣ୍ଣକାୟ ମଣିଷର ସ୍ୱାଭାବିକ ପରି ପ୍ରକାଶ ବୋଲି ଧରାଯାଇପାରେ । ଦେଶ, ଜାତି, ସମାଜ ଓ ବ୍ୟକ୍ତିତ୍ୱର ବାସ୍ତବ ରୂପାଲେଖ୍ୟ ସୃଷ୍ଟି କରି "ମୋ କାହାଣୀ" ଯଥାସମ୍ଭବ ଗୌରବ ଅର୍ଜିଥିଲେ ମଧ୍ୟ ଏହାର ଶିଳ୍ପ କଳାହିଁ ଗ୍ରନ୍ଥଟିକୁ ସାହିତ୍ୟିକ ବିଭବରେ ଭୂଷିତ କରିଛି ।

ସ୍ପର୍ଶମଣି ପଥର ଲୁହାକୁ ସୁନାରେ ପରିଣତ କଲାପରି ଗୋଟିଏ ସାଧାରଣ ବିଷୟ ଜଣେ ଦକ୍ଷ ସାହିତ୍ୟ ଶିଳ୍ପୀ ହାତରେ ରମଣୀୟ ରୂପଧାରଣ କରିଥାଏ । 'ମୋ କାହାଣୀ'ର ଲେଖକ ସେହିପରି ଜଣେ ସାରସ୍ୱତ ବିଜ୍ଞାନୀ ହୋଇଥିବାରୁ ତାଙ୍କ ଲେଖନୀ ସ୍ପର୍ଶରେ ଆତ୍ମ କାହାଣୀଟି ଏକ ଉତ୍କୃଷ୍ଟ ସାହିତ୍ୟ କୃତିରେ ପରିଣତ ହୋଇପାରିଛି । ଲେଖକଙ୍କ କବିତ୍ୱପୂର୍ଣ୍ଣ ଭାଷା ଘଟଣା ସଜ୍ଜା ଓ ବିନ୍ୟାସ ରୀତିରେ ଚମତ୍କାରିତା ଏବଂ ରସସ୍ନିଗ୍ଧ ସରଳ ଅଭିବ୍ୟକ୍ତି ଯୋଗୁଁ ହିଁ ଏହି କୃତିଟି ସାହିତ୍ୟ ଗୁଣରେ ଗୁଣୀ । ଅଭିବ୍ୟକ୍ତିର ମାନରେ ସାହିତ୍ୟର ମୂଲ୍ୟ ବଢ଼େ । ନନ୍ଦନତତ୍ତ୍ୱରେ ଏହି ଅଭିବ୍ୟକ୍ତି ଶକ୍ତିକୁ ମର୍ଯ୍ୟାଦା ଦିଆଯାଏ । କହିଜାଣିଲେ କଥା ସୁନ୍ଦର ପରି, ଲେଖି ଜାଣିଲେ ସାହିତ୍ୟ ସୁନ୍ଦର । ଏହାର ଏକ ସଫଳ ଦୃଷ୍ଟାନ୍ତ ହେଉଛି, ଆଲୋଚ୍ୟ ଗ୍ରନ୍ଥ । ଆପଣା ଜୀବନରେ ଅଳ୍ପ ବୟସୀ ନାରୀର ବୈଧବ୍ୟ ଅବସ୍ଥାକୁ ଲକ୍ଷ୍ୟକରି ଲେଖକ ଲେଖିଛନ୍ତି—"ଶିଶିର କୁହୁଡ଼ିରେ ପଦ୍ମବନ ପରି ତା'ର ଦେହେରି ପୋଡ଼ିଜଳି ଭସ୍ମ ହୋଇଗଲା । ଝଲୁଥିଲା ସେ । ଝଲ ଝଲ ଗ୍ଳୁଥିଲା ଅଳଜ୍ଞକ ଜୀବନ ସ୍ୱପ୍ନ । ବିଧାତା କିପରି ନିଜର ରଙ୍ଗୀନ୍ ଛବି ଉପରେ କାଳି ଢାଳିଦିଏ, ସ୍ୱରଚିତ ଗୀତିକବିତାକୁ କାଟିକୁଟି ଦୋରସ୍ତ କରିଦିଏ ? ଦୁଃଖର ସମୁଦ୍ର କେତେ ଗମ୍ଭୀର ଅଶ୍ରୁର ସ୍ରୋତ କେତେ ଉତ୍ତପ୍ତ, କାଳର କବିତ୍ୱ କେତେ କୋମଳ, କେତେ ଜୀବନ୍ତ ତା'ଠାରୁ ମୁଁ ପହିଲି ବୁଝିଥିଲି, ଯାହାକୁ ଦେଖିଲେ ମନ ଫୁଲି ଉଠୁଥିଲା, ସେ ଛୁଡାହେଲି ଗୋଟିଏ ପୋକକଟା ଗଙ୍ଗଶିଉଳି ଝାଟିପରି, ଶରତର ଝଡ଼ ଝଡ଼ାଇ ନେଇଥିଲା ତାର ସବୁ ସ୍ଫଟିକ, ସବୁ ପ୍ରବାଳ ।" (ପୃ-୩୦-୩୧) ବର୍ଣ୍ଣନାଟି ଆବେଗ ଉଚ୍ଛଳ ଓ ହୃଦୟ ସଂବେଦ୍ୟ । ଅଭିବ୍ୟକ୍ତି ବେଶ କବିତ୍ୱପୂର୍ଣ୍ଣ ଓ ବ୍ୟଞ୍ଜନାଧର୍ମୀ । ଜୀବନକୁ ତନଖି ଦେଖିବାର ସୂକ୍ଷ୍ମଦୃଷ୍ଟି, ସମସ୍ତ ସହିତ ମୁକାବିଲା କରିବାର ସଂଗ୍ରାମୀ ଅଭିଜ୍ଞତା ଏଥିରେ ପ୍ରଚ୍ଛନ୍ନ । ଇଚ୍ଛାକୃତ ଶବ୍ଦ ସଜ୍ଜାରେ ଏଇ ସରିପାଟୀ ଆସିବ ନାହିଁ । ମନକୁ ଛୁଇଁଲାପରି ନରାନ୍ତମୂର ସମ୍ବେଦନ ସେଇଠି ହୁଏତ ମିଳିପାରେ, ଯେଉଁଠି ହୃଦୟର ସମସ୍ତ ନିବୁଜ କୋଠରୀ ଉନ୍ମୁକ୍ତ କରି ବାହାରର ଅଗଣିତ ମଣିଷଙ୍କ କାକଳିକୁ ଆପଣାର ବୋଲି ମଣିବାର ପ୍ରବଣତା ଚହଲୁଥାଏ । ସେଇ ଅବସ୍ଥା ହିଁ

କାବ୍ୟିକ ଅବସ୍ଥା । "ମୋ କାହାଣୀ"ର ଛନ୍ଦେ ଛନ୍ଦେ କାବ୍ୟିକ ଶିଳ୍ପ ଗୁରୁତ୍ୱର ଲକ୍ଷଣ ବିଦ୍ୟମାନ । ଏହି ଗଦ୍ୟଲେଖାଟି ଏତେ କବିତ୍ୱମୟ ଯେ, ମନେହୁଏ, ସତେ ଯେପରି ଏହା ଲେଖକଙ୍କ ଜୀବନର ଏକ ଗଦ୍ୟ-କାବ୍ୟ ।

କିନ୍ତୁ ବ୍ୟତିକ୍ରମ ହେଉଛି—ଆଲୋଚ୍ୟ ଗ୍ରନ୍ଥଟିର ପ୍ରଥମାର୍ଦ୍ଧ, ଯେଉଁଥିରେ କି ଲେଖକଙ୍କ ବାଲ୍ୟ ଏବଂ କୈଶୋର ଜୀବନାଲେଖ୍ୟ ଏବଂ ପଲ୍ଲୀ ସଂସ୍କୃତିର ଅଜ୍ଞାତ ଜୀବନ-ଧାରାର ଜୀବନ୍ତ ସୂତ୍ର ଖୋଜୁଥିବା ଜଣେ ଜିଜ୍ଞାସୁ ପରିବ୍ରାଜକର କାହାଣୀ ଉତ୍କୀର୍ଣ୍ଣ ହୋଇଛି, ତାହା ଯେପରି ମର୍ମସ୍ପର୍ଶୀ ଓ ଆବେଗ ସଞ୍ଚାରୀ ହୋଇପାରିଛି, ଅପରାଂଶ ସେପରି ହୋଇ ପାରିନାହିଁ । ତଥ୍ୟ ବହୁଳତା ଏବଂ ବକ୍ତବ୍ୟଧର୍ମୀ ଅଭିବ୍ୟକ୍ତି ଏହି ଅଂଶକୁ ସେତେ ରସସ୍ନିଗ୍ଧ କରିପାରିନାହିଁ । ହୁଏତ ଇତିହାସ ପାଇଁ ଏହା ଉପାଦାନ ଯୋଗାଇପାରେ । ମାତ୍ର ସାହିତ୍ୟର ଚିରଚମତ୍କାରୀ ଭାବଭୂକ୍ତି ପାଇଁ ଏହା ସାହାଯ୍ୟ କରିପାରିବ କି ?

ତେବେ ଏକଥା ସତ ଯେ, ଶିଳ୍ପକଳା ଦୃଷ୍ଟିରୁ "ମୋ କାହାଣୀ"ର ପରିସର ଅତି ବ୍ୟାପକ । ଏହା କେବଳ ଏକ ଚରିତ ରଚନା ନୁହେ । ଏକାଧାରରେ ଏହା ଏକ ଉପନ୍ୟାସ, ଭ୍ରମଣ କାହାଣୀ, ଗଦ୍ୟ ମହାକାବ୍ୟ ଏବଂ ଗବେଷଣା ଓ ସମାଲୋଚନା ଗ୍ରନ୍ଥ । କାରଣ ଏଥିରେ ପୂର୍ଣ୍ଣାଙ୍ଗ ଗୋଟିଏ ଜୀବନର ଚିତ୍ର ଅଙ୍କନ କରିବା ପାଇଁ ଉପନ୍ୟାସ ସୁଲଭ ବହୁ ଘଟଣାର ଆଣ୍ଟ ଧାଡ଼ି ବାନ୍ଧିଛନ୍ତି । ଏହା ଏକ ଭ୍ରମଣକାହାଣୀ, କାରଣ ଏଥିରେ ଲିପିବଦ୍ଧ ପରିବ୍ରାଜକର ଯାତ୍ରା ସ୍ୱଦେଶରୁ ଆରମ୍ଭ କରି ବିଦେଶ ପର୍ଯ୍ୟନ୍ତ ନୁହେଁ, ଏହାର ଗତି ବାଲ୍ୟରୁ ପରିଣତ ବୟସକୁ ଓ ଅତୀତରୁ ବର୍ତ୍ତମାନକୁ । ସେହିପରି ଏହି ଗ୍ରନ୍ଥଟି କବିର ମାର୍ମିକ ଉଚ୍ଚାଚରେ ସଙ୍ଗୀତମୟ-ଗବେଷକର ଅନ୍ୱେଷା ଓ ସମାଲୋଚକର ଭିର୍ଣମାରେ ଏହା ପ୍ରଜ୍ଞାଦୀପ୍ତ । ସର୍ବଭାରତୀୟ ସ୍ତରରେ ଏହି ଗ୍ରନ୍ଥ ଉଚ୍ଚ-କୋଟୀର ସାରସ୍ୱତ କୃତି ରୂପେ ୧୯୭୧ ମସିହାରେ ସମ୍ମାନିତ ହୋଇ ଆମ ଚରିତ ସାହିତ୍ୟକୁ ସମୃଦ୍ଧ କରିଛି ।

* ସାରସ୍ୱତ ନିଳୟ

ଶ୍ରୀ ଅରବିନ୍ଦ ନଗର, ମଧୁପାଟଣା, କଟକ-୧୦



କବି କୁଂଜବିହାରୀଙ୍କ ସହିତ ଏକ ସାକ୍ଷାତ୍‌କାର :

# ।। ସାହିତ୍ୟିକର ପରୀକ୍ଷା ।।

ପ୍ରଶ୍ନକର୍ତ୍ତା-ଡକ୍ଟର ଅସିତ କବି

୧ ପ୍ରଶ୍ନ—ସାର୍; ଆତ୍ମ ଜୀବନୀ ମାତ୍ରେ ଅସମ୍ପୂର୍ଣ୍ଣ । ଏହି ଦୃଷ୍ଟିରୁ ଆପଣ ଆତ୍ମଜୀବନୀର ଦ୍ୱିତୀୟ ପର୍ବ ସମ୍ପର୍କରେ କୌଣସି ପରିକଳ୍ପନା କରୁଛନ୍ତି କି ?

ଉତ୍ତର— ନା; ମୋତେ ବର୍ତ୍ତମାନ ୭୭ ବର୍ଷ । ଆଉ ଯୋଉ କେତେ ଦିନ ବଞ୍ଚିବି, 'ମୋ କାହାଣୀ'ର ଦ୍ୱିତୀୟ ସଂସ୍କରଣରେ ୧୯୮୦ ପର୍ଯ୍ୟନ୍ତ ଯାବତୀୟ ଘଟଣା ଉଲ୍ଲେଖ କରିଛି । କାହାଣୀର ତୃତୀୟ ସଂସ୍କରଣ ଯଦି ହୁଏ, କିଛି ନୂତନ ଉପାଦାନ ଦେବା ପ୍ରଶ୍ନ ଉଠିବ ନଇଲେ—

ମୋ କାହାଣୀ ଏତିକି
ଫୁଲ ଫୁଟିଚି କେତକୀ ।

୨— ଆପଣ କେବେ ଲେଖାଲେଖି ଆରମ୍ଭ କଲେ ? ଏଥିପାଇଁ ଅନ୍ତରର ପ୍ରେରଣା କିମ୍ବା ଆତ୍ମୀୟ ଓ ବନ୍ଧୁବାନ୍ଧବଙ୍କ ପ୍ରେରଣା ଆପଣଙ୍କୁ ଉଦ୍‌ବୁଦ୍ଧ କରିଥିଲା ?

ଉତ୍ତର—'ମୋ କାହାଣୀ' ଦେଖନ୍ତୁ । ପ୍ରଶ୍ନର ଉତ୍ତର ପାଇଯିବେ । ଯାହା ଲେଖିଛି ପୁନରୁକ୍ତି କରିବି କାହିଁକି ?

ମୁଁ ଲେଖିବା ଆଗରୁ ମୋର ଯେ କିଛି ଶକ୍ତି ଅଛି ଜାଣି ନଥିଲି । ମୁଁ ନିଜକୁ ଜାଣି ନଥିବା ସ୍ଥଳେ ଆତ୍ମୀୟ ବା ବନ୍ଧୁବାନ୍ଧବ ମୋତେ କେମିତି ଜାଣନ୍ତେ ଯେ ଉତ୍ସାହିତ କରନ୍ତେ ।

ପ୍ରତି ଲେଖକ ଜଣେ ଜଣେ ଆତ୍ମ ଆବିଷ୍କାରକ । ଆତ୍ମ ରାଜ୍ୟର ବିସ୍ତାର ବା ବ୍ୟାପକତା କେତେ, ନାନା ଲେଖାରେ ନିଜକୁ ପରୀକ୍ଷା ନିରୀକ୍ଷା କରୁ କରୁ ସେ ବୁଝନ୍ତି । ମୋର ଆତ୍ମ ଆବିଷ୍କାର ଶେଷ ହୋଇନାହିଁ, ଶେଷ ନିଃଶ୍ୱାସ ଯିବା ଭିତରେ ବି ଶେଷ ହେବନାହିଁ ।

୩— ଆପଣଙ୍କ ପ୍ରଥମ କବିତାର ନାମ, ତାର ରଚନା ତଥା ପ୍ରକାଶ କାଳ ସଂପର୍କରେ ଦୟାକରି କହିବେ କି ?

ଉତ୍ତର—ବହୁ ବିଫଳତାରୁ ସଫଳତାକୁ ମୋର ଗତି । ପ୍ରଥମ ଲେଖା ମୋର ଏକ ଅନୁକରଣ ଓ ବିଫଳ ପ୍ରୟାସ । ଦ୍ୱିତୀୟ, ତୃତୀୟ ଓ ପରବର୍ତ୍ତୀ ସବୁ କବିତା ଓ ଉପନ୍ୟାସର ଫସଲ ନଷ୍ଟ ହୋଇଯାଇଅଛି । ଅଷ୍ଟମ ଶ୍ରେଣୀରେ ରଚିତ କବିତାର ନମୁନା କାହାଣୀରେ ଦେଇଛି । ସେଥିରୁ ଆଦ୍ୟ କବିତାର ମାନ କଳନା କରିହେବ । ମୁଁ ଗାଉଁଲି ଲୋକ । ଆଇ. ଏ ପଢ଼ିବାକୁ ଆସି କଟକ ଦେଖିଲି । ସେତେବେଳେ ଅନ୍ୟମାନଙ୍କ ଦେଖା ଦେଖି କବିତାକୁ ଯୁଗୋପ-ଯୋଗୀ କରିବାକୁ ଚେଷ୍ଟା କଲି । 'ସହକାର'ରେ ପ୍ରକାଶିତ ମୋର ପ୍ରଥମ କବିତାର ନାମ 'କଇଁଫୁଲ'- ପ୍ରକାଶ କାଳ ୧୯୩୭ । ସେହି ମାସରେ ଶିଶୁପତ୍ରିକା 'ଜହ୍ନମାମୁଁ'ରେ ମୋର ଆଉ ଗୋଟିଏ କବିତା ପ୍ରକାଶ ପାଇଥିଲା । କେଉଁଟି କି ପ୍ରଥମ ବୋଲି ଧରିବେ ? କାହାଁଲା ବୋଲି ଧରନ୍ତୁ । ପାଠକଙ୍କ ମତ ଜାଣେ ନାହିଁ । ପ୍ରଥମ ପ୍ରକାଶିତ ଶିଶୁ କବିତାଟି ମୁଁ ଏବେ ବି ପଢେ; ମୋତେ ଭଲଲାଗେ । କାରଣ ଏଇଟି ସ୍ୱତଃସ୍ଫୂର୍ତ୍ତି ଓ ସ୍ୱାଭାବିକ । ପ୍ରଥମଟିରେ ଛନ୍ଦପାତ ପାଇଁ ବହୁ, ପ୍ରୟାସକ୍ଲିଷ୍ଟତା ପଦେ ପଦେ । ମୋର ବିଶ୍ୱାସ, ନୂତନ ଲେଖକଙ୍କୁ ଉତ୍ସାହିତ କରିବା ପାଇଁ ସମ୍ପାଦକ ବାଳକୃଷ୍ଣ କର ଏଇଟି ପ୍ରକାଶ କରିଥିଲେ । କାହାଣୀରେ ଉଦ୍ଧୃତିରୁ ତାର ମାନ ବୁଝି ପାରିବେ ।

୪— ଆପଣ ସାହିତ୍ୟ ସାଧନା ଆରମ୍ଭ କଲାବେଳେ ଆପଣଙ୍କ ତତ୍କାଳୀନ ବୟସରେ କେଉଁ କେଉଁ ବ୍ୟକ୍ତି ସାହିତ୍ୟ ସାଧନା କରୁଥିଲେ ?

ଉତ୍ତର—ସଚ୍ଚି ରାଉତରାୟ ମୋର ସହପାଠୀ, ଚିନ୍ତାରେ ଅଗ୍ରଗାମୀ । ବିନୋଦ ନାୟକ ବି ଶ୍ରେଣୀ ପଢ଼ୁଆ ସାଙ୍ଗ; ତାଙ୍କ ଚିନ୍ତା ମଧ୍ୟ ଭିନ୍ନ ମାର୍ଗରେ । ଦୁହେଁ ସାଙ୍ଗ ହେଲେ ବି ଚିନ୍ତାରେ ମୋ ଠାରୁ ଦୂରବର୍ତ୍ତୀ ଥିଲେ । ଏ ଦୁହିଁଙ୍କ ଭିତରୁ ମୁଁ କାହା ବାଟ ନ ଧରି ମୋ ନିଜ ବାଟରେ ଗଲିଲି ।

୫— ସେ ସମୟରେ କେଉଁ ପ୍ରବୀଣ କବିଙ୍କ ଲେଖା ଆପଣଙ୍କୁ ବିଶେଷ ଭାବରେ ଉଦ୍‌ବୁଦ୍ଧ କରୁଥିଲା ?

ଉତ୍ତର—ମାୟାଧର ମାନସିଂହ ସେତେବେଳେ ଦିକ୍‌ପାଳ । ପତ୍ରିକା ଖୋଲିବା ମାତ୍ରେ ତାଙ୍କ ଲେଖାଟି ପାଇଲେ ପଢୁଥିଲି । ସରଳ ଶବ୍ଦ ତାଙ୍କ କବିତ୍ୱର କୁହୁକ କାଠିରେ ଅଭୁତ ଭାବେ ସରସ, ସୁନ୍ଦର ଓ ଶକ୍ତିଶାଳୀ ହୋଇ ଉଠୁଥିଲା । ରାଧାମୋହନ ଗଡ଼ନାୟକ ଛନ୍ଦର ମୋହନ ମାଧୁରୀରେ ଚିତ୍ତକୁ ଯାଦୁଗ୍ରସ୍ତ କରୁଥିଲେ ।

ଗୋଦାବରୀଶ ମହାପାତ୍ରଙ୍କ ବ୍ୟଙ୍ଗ କବିତା ଓ ଗଳ୍ପ, ବୈକୁଣ୍ଠନାଥ ପଟ୍ଟନାୟକଙ୍କ କବିତା, କାଳନ୍ଦୀଚରଣ ପାଣିଗ୍ରାହୀ, କାହ୍ନୁଚରଣ ମହାନ୍ତି ଓ ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସ ଖୁବ୍ ଆକର୍ଷଣୀୟ ବୋଧ ହେଉଥିଲା ।

୬— ଆପଣ ମୋଟ କେତୋଟି କବିତା, ପ୍ରବନ୍ଧ, ଜୀବନୀ ଲେଖିଛନ୍ତି ?

ଉତ୍ତର—ଏହା ଏକ ବିଦଗ୍ଧଜନୋଚିତ ପ୍ରଶ୍ନ ନୁହେ । ଲେଖାର ସଂଖ୍ୟାସୂଚନ କରିବା ମୋର କାର୍ଯ୍ୟ ନୁହେ ଓ କୌଣସି ମହତ୍ତ୍ୱ ଉଦ୍ଦେଶ୍ୟ ଏହା ସାଧନକରି ନପାରେ । ମୋ ଲେଖା ସହିତ ପରିଚିତ ପାଠକେ ଏ ସଂଖ୍ୟା ନିର୍ଣ୍ଣୟ କରିବେ ।

୭— ଏ ଯାବତ୍ ଆପଣ କେତୋଟି ଗ୍ରନ୍ଥ ଲେଖିଛନ୍ତି ?

ଉତ୍ତର—ମୋ କାହାଣୀ, ଦ୍ୱିତୀୟ ସଂସ୍କରଣ ଦେଖନ୍ତୁ । ମୋ ସମ୍ପର୍କରେ ପଢ଼ିଥିଲେ ଅନେକ ଉତ୍ତର ପାଇପାରିଥାନ୍ତେ । ପ୍ରଶ୍ନ ଅବାନ୍ତର ବୋଧ ହୁଅନ୍ତା ନାହିଁ ବା ଉତ୍ତରର ପୁନରୁକ୍ତି ଘଟି ନଥାନ୍ତା ।

୮— ଲୋକସାହିତ୍ୟର ଅଧ୍ୟୟନ ଓ ଗବେଷଣା ଲାଗି ଆପଣ କିପରି ଓ କାହିଁକି ଉଦ୍‌ବୁଦ୍ଧ ହେଲେ ।

ଉତ୍ତର—ପ୍ରତି କଥାରେ 'କିପରି', 'କାହିଁକି' ପଚାରିଲେ ଅଡ଼ୁଆ ଭିତରେ ମୁଣ୍ଡ ଲୁଚି ପଶିଗଲା ପରି ଲାଗେ, ବିଶେଷତଃ ଭଲ ପାଇବାରେ; କିପରି ଭଲ ପାଇଲି, କାହିଁକି ଭଲ ପାଇଲି, ପଚାରିଦେବା ସହଜ; କିନ୍ତୁ ଉତ୍ତର ଦେବା କଷ୍ଟକର । ଯେମିତି କିଛି ନଭାବି ପଚାରିଛ, ମୁଁ ସେମିତି କିଛି ନଭାବି ଉତ୍ତର ଦେଉଛି— ମୁଁ ଲୋକସାହିତ୍ୟକୁ ଭଲପାଏ; ଏହା ସ୍ୱାଭାବିକ, ସୁନ୍ଦର ଓ ମଧୁର ବୋଲି ଭଲପାଏ । ଯାହା ଭଲଲାଗେ, ତାହାର ଅଧ୍ୟୟନ, ଗବେଷଣା କରିବି ନାହିଁ ତ କାହାର କରିବି ? ରୁଚିର ଅନୁକୂଳ କାର୍ଯ୍ୟ ଏ । ଏଥିରେ ଅତ୍ମପୀଡ଼ନ ନାହିଁ । ମୁଁ ସେ ଦିଗରେ ଯାହା କରିଛି, ସେଥିଲାଗି ବୋଧେ ଏ ସବୁ ପାଠକଙ୍କୁ ଭଲ ଲାଗୁଛି ।

୯— ଆପଣ ଏହି ଅଧ୍ୟୟନ ଓ ଗବେଷଣା ସଂପର୍କରେ କିଛି କହିବେ କି ?

ଉତ୍ତର—ଆଗରୁ ତ ବହୁତ କହିଛି । ଫେର୍ କହିବି କଣ ? ଓଡ଼ିଆ ଲୋକଗୀତ ଓ କାହାଣୀ ସନ୍ଦର୍ଭରେ ଯାହା ଗୁଡ଼ି ଯାଇଥିଲି 'ମୋ କାହାଣୀ'ରେ କହିଲି । ତାପରେ ଲୋକଗୀତ ଓ କଥାର ପ୍ରୟୋଗ ଦେଖାଇଲି 'ମଣିଣି ତୁଳସୀ'

ଆଜି 'ମଣିମା ଶୁଣିମା ହେଉ' ଉପନ୍ୟାସରେ । ଏ ସବୁ ପଢ଼ିସାରିଲା ପରେ ଯଦି କିଛି ପ୍ରଶ୍ନ ମନରେ ଉଠେ ପଚାରିବେ ।

୧୦— ସ୍ୱଦେଶୀୟ ଓ ପାଶ୍ଚାତ୍ୟ କେଉଁ କେଉଁ କବି ଓ ଲେଖକଙ୍କର କୃତି ଆପଣଙ୍କର ବିଶେଷ ଆଦରଣୀୟ ?

ଉତ୍ତର—ମୁଁ ବହୁପାଠୀ ନୁହେଁ; ଯୋଉ ବୟସରେ ଯାହା ପଢ଼ିବାର କଥା ସୁଯୋଗ ଅଭାବରୁ ପଢ଼ିପାରି ନାହିଁ । ଅବସର ଜୀବନରେ ଯେତେବେଳେ ପଢ଼ିବାକୁ ଅବକାଶ ମିଳିଲା, ସେତେବେଳେ ଦୃଷ୍ଟିଶକ୍ତି କମିଗଲା । ପଢ଼ିବାକୁ ପ୍ରବଳ ଇଚ୍ଛା, ବହୁ ଉପାଦେୟ ପୁସ୍ତକ ବି ହାତ ପାଆନ୍ତାରେ । ଦୀର୍ଘଶ୍ୱାସ ଛାଡୁଛି । କେତେ କେତେ ସାହିତ୍ୟ ରାଜ୍ୟ ମୋ ଦୃଷ୍ଟି ପରିସର ବାହାରେ ରହିଗଲା । କଣ ପଢ଼ିଛି ତାର ଏକ ଲମ୍ବା ତାଲିକା ଦେଇ ନପାରେ । ଯୋଉ ବହି ଭଲ ବୋଲି ଶୁଣିଛି, ପଢ଼ିଛି । ଜଗତର ଅତି ଜଣାଶୁଣା ଲେଖକ ସେମାନେ । ମୋ ପରି ଅନ୍ୟ ଲେଖକଙ୍କୁ ଏହି ପ୍ରଶ୍ନ ପଚାରିଲେ ଉତ୍ତରଟା ଏକାପରି ହୋଇଯିବ ।

୧୧— କେଉଁ କେଉଁ କବି ବା ଲେଖକଙ୍କର ପ୍ରଭାବ ଆପଣଙ୍କ ଉପରେ ପଡ଼ିଛି ? କିପରି ପଡ଼ିଛି ?

ଉତ୍ତର—ମୁଁ ବହୁତ ପଢ଼ିନାହିଁ, ମୋ ଉପରେ କୌଣସି କୃତିର ପ୍ରଭାବ ଅନୁଭବ କରି ନାହିଁ । ମୋର ନିଜସ୍ୱ ଅନୁଭୂତି ସ୍ୱଚ୍ଛନ୍ଦଭାବେ ପ୍ରକାଶ କରି ଯାଇଛି । ମୋର ନଥିଲେ ମୁଁ ଧାର୍ କରେନାହିଁ । ମୋର ସ୍ୱଳ୍ପ ଅନୁଭୂତିରେ ଯେତିକି ହୋଇଛି ସେତିକି । ସୁନ୍ଦର୍ ଦିଶିବ ବୋଲି ଦୁରାକାଂକ୍ଷୀ ବାୟସ ପରି ଦେହରେ ମୟୂର ପୁଚ୍ଛ ଖଞ୍ଜି ଉପହାସାସ୍ପଦ ହୋଇନାହିଁ । ଯଦି କେବେ କୌଣସି ପ୍ରଭାବ ପଡିଥାଏ ତାହା ବାହାର କରିବା ପାଠକ ବା ସମାଲୋଚକର କାମ, ମୋର ନୁହେଁ ।

୧୨— ଆପଣ ଓଡ଼ିଶାର ଜଣେ ବିଶିଷ୍ଟ କବି । ଆଜିକାଲି କବିତା କଣ ଜନଜୀବନ ଠାରୁ ଦୂରେଇ ଯାଇନି ? ଆଧୁନିକ କବି କାହା ପାଇଁ ଲେଖୁଛି ? କଣ ତାର ଲକ୍ଷ୍ୟ ?

ଉତ୍ତର—ମୁଁ ଓଡ଼ିଶାର ବିଶିଷ୍ଟ କି ଅବିଶିଷ୍ଟ କବି, ଜାଣେନାହିଁ । ଅନ୍ତରର ରସ ଉତ୍ସରୁ ଯେତେ ଆନନ୍ଦ ପାଏ, ଆଉ କୋଉଥିରୁ ପାଏ ନାହିଁ । ସେହି ଆନନ୍ଦରୁ ସବୁ

କିଛି କାମ୍ୟ ମିଳିଯାଏ । ପାଠକ ଯଦି ମୋ ଆନନ୍ଦରେ ଅଂଶୀଦାର ହୋଇ ପାରିଲେ ଓ ସ୍ରଷ୍ଟାକୁ ବଧେଇ ଦେଲେ ମୁଁ ମଥାପୋଡ଼ି ଗ୍ରହଣ କରିବି ।

ଆଧୁନିକ କବିତାର ପ୍ରକାଶ ଭଙ୍ଗୀ ଅଧିକାଂଶ କ୍ଷେତ୍ରରେ ବିଦେଶୀୟ ହୋଇ ଯାଉଛି; ସ୍ୱଦେଶୀୟ କରିବା ଲାଗି ଅବଶ୍ୟ ଚେଷ୍ଟାର ଅନ୍ତ ନାହିଁ । ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ଅପେକ୍ଷା ଆଧୁନିକ କବିତା ଜନଜୀବନଠାରୁ ଅଧିକ ଦୂରବର୍ତ୍ତୀ, ସ୍ୱୀକାର କରିବାକୁ ହେବ ।

ଆଧୁନିକ କବି କାହାପାଇଁ ଲେଖୁଛି, କଣ ତାର ଲକ୍ଷ୍ୟ, ତାଙ୍କୁ ପଚାରନ୍ତୁ । ମୋ ଅପେକ୍ଷା ସେ ଭଲ ବୁଝାଇ ପାରିବେ ।

୧୩— ମୌଳିକ ପ୍ରବନ୍ଧ ଅପେକ୍ଷା ଆଜିକାଲି ସମାଲୋଚନାହିଁ ଅଧିକ ଲେଖାଯାଉଛି । ଆପଣଙ୍କ ମତରେ ଏହାର କାରଣ କଣ ? ଅଧିକାଂଶ ସମାଲୋଚନା ମଧ୍ୟ ଏକାନ୍ତ ଭାବରେ ଲେଖକଙ୍କର ବ୍ୟବସାୟାତ୍ମିକ ମନୋବୃତ୍ତିର ପରିଚୟ ଦେଉନି କି ?

ଉତ୍ତର— ପ୍ରଶ୍ନର ପ୍ରଥମାଂଶର ଉତ୍ତର ପ୍ରଶ୍ନର ଦ୍ୱିତୀୟାଂଶରେ ପ୍ରକାରାନ୍ତରେ ଆପଣ ଦେଇସାରିଛନ୍ତି । ହଁ କି ନାହିଁ ମାରିଦେଲେ ମୋର କାମ ସରିବ । ପ୍ରବନ୍ଧ ପଢ଼ିବାର ମନୋବୃତ୍ତି ଏ ପ୍ରଦେଶରେ ସୃଷ୍ଟି ହୋଇନାହିଁ । ଆଧୁନିକ କବିତା ପରି ଏହାର ପାଠକ ସ୍ୱଳ୍ପ ବିଚରା । ପ୍ରବନ୍ଧ ସୋପାନ, ସାମାଜିକ ପ୍ରବନ୍ଧ ( ଅଧ୍ୟାପକ ବିପିନ ବିହାରୀ ରାୟ), ପ୍ରବନ୍ଧ ପ୍ରକାଶ (ରତ୍ନାକର ପତି)ର ପ୍ରଥମ ସଂସ୍କରଣ ପାଠ୍ୟ ପୁସ୍ତକ ନ ହୋଇଥିଲେ ଶେଷ ହୋଇଥାନ୍ତା କି ନାହିଁ; ସନ୍ଦେହ । ବି.ଏ ଏମ୍. ଏ ପିଲାଙ୍କ ପରୀକ୍ଷାର୍ଥୀଙ୍କରୁ ଉଦ୍ଧାରିବା ଅଧିକାଂଶ ସମାଲୋଚକଙ୍କର ଉଦ୍ଦେଶ୍ୟ । ଫଳରେ ବ୍ୟକ୍ତିନିରପେକ୍ଷ, ଉତ୍କୃଷ୍ଟ ସମାଲୋଚନା ଓଡ଼ିଆ ସାହିତ୍ୟରେ ବିରଳ ।

୧୪— ଓଡ଼ିଶାରେ ଅଧିକାଂଶ ପତ୍ର ପତ୍ରିକାରେ ଉଦାରତା ଅପେକ୍ଷା ଗୋଷ୍ଠୀ ସୃଷ୍ଟିର ମନୋଭାବ ଦେଖା ଦେଇଛି ବୋଲି କେତେକ କହନ୍ତି । ଏ ସଂପର୍କରେ ଆପଣଙ୍କ ପ୍ରତିକ୍ରିୟା କଣ ?

ଉତ୍ତର— କୌଣସି ପତ୍ରିକା ପଛରେ ଗୋଷ୍ଠୀଭାବ ଥିବା କଥା ମୁଁ ଜାଣେନାହିଁ । କ୍ରିୟା ନ ଥିବା ସ୍ଥଳେ ପ୍ରତିକ୍ରିୟା ହେବ କଣ ?

୧୫—ବର୍ତ୍ତମାନ ଆପଣ କେଉଁ ନୂଆ ଲେଖାରେ ହାତ ଦେଇଛନ୍ତି ?

ଉତ୍ତର—'ଜି କଥା କଲିକତା' ଉପନ୍ୟାସଟି ପ୍ରାୟ ଶେଷ ହେବା ଉପରେ ।

୧୬— ଉତ୍ତର ଦାୟାଦଙ୍କ ସାଧନା ବିଷୟରେ ଆପଣଙ୍କ ମତାମତ କଣ ?

ଉତ୍ତର— ସାଧକଙ୍କ ସଂଖ୍ୟା ନଗଣ୍ୟ । ଆମ ସାହିତ୍ୟକୁ ଉନ୍ନତତର କରିବା ଲାଗି ଗୋପୀନାଥ ନନ୍ଦ, ବିଶ୍ୱନାଥ କର ବା ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପରି ସାଧକ ବାହାରିବା ଆବଶ୍ୟକ । ସଂସ୍କୃତି ଓ ସାହିତ୍ୟ ପାଇଁ ପ୍ରାଣ ଉତ୍ସର୍ଗ ଲାଗି ଦୃଢ଼ ସଂକଳ୍ପବଦ୍ଧ ତରୁଣ ନ ବାହାରିଲେ ଓଡ଼ିଆ ସାହିତ୍ୟ ତୋଟାକେ ପି ଦଣ୍ଡେ ଖାଡ଼ା ହୋଇ ବଞ୍ଚିପାରେ, କିନ୍ତୁ ଭାରତୀୟ ବା ବିଶ୍ୱଦରବାରରେ ତାର ଉଜ୍ଜ୍ୱଳ ସ୍ୱାକ୍ଷର ରଖିପାରିବ ନାହିଁ ।

ଏ ଯୁଗର ଅଧିକାଂଶ ତରୁଣ ଲେଖକ ସୌଖିନ ସ୍ୱପ୍ନବିଳାସୀ; ସହଜ ଉପାୟରେ ଆଶୁ ପ୍ରତିଷ୍ଠା ଅର୍ଜନର ତୀବ୍ର କାମନା ଯେମିତି ସେମାନଙ୍କର ଗତି । ବିପୁଳ ଅନୁଭୂତି ସ୍ୱଚ୍ଛନ୍ଦ ସାବଲୀଳ ପ୍ରକାଶ ଶକ୍ତି ଅର୍ଜନ ଲାଗି ଯେଉଁ କଠୋର ସାଧନା ଅଧ୍ୟବସାୟ,ନିଷ୍ଠା ଓ କଷ୍ଟସହିଷ୍ଣୁତା ଆବଶ୍ୟକ,ତାହା ତାଙ୍କର ନାହିଁ । ସ୍ୱଳ୍ପସନ୍ତୁଷ୍ଟ ଆତ୍ମ ସ୍ତୁତିକାଙ୍କ୍ଷୀ ଦଳ ବିଜ୍ଞାପନ ଉପରେ ଦୃଷ୍ଟି । ବିନା ବିଜ୍ଞାପନରେ ଯେଉଁ ପୁସ୍ତକ ପାଠକର ମୁଖେ ମୁଖେ ପ୍ରଶଂସିତ ହୋଇଥାଏ । ସେ ପୁସ୍ତକର ରଚୟିତା ଧନ୍ୟ । ଡିଟେକ୍‌ଟିଭ୍ ଉପନ୍ୟାସ ଏ ପର୍ଯ୍ୟାୟଭୁକ୍ତ ନୁହେ । ତାର ଲୋକପ୍ରିୟତା ସାମୟିକ । 

* ରୀଡର, ଓଡ଼ିଆ ବିଭାଗ, ରେଭେନ୍ସା କଲେଜ ।

## ଲେଖକଙ୍କ ରଚିତ ଓ ସଂକଳିତ ପୁସ୍ତକାବଳୀର ସ୍ୱମସ୍ତ୍ର ସୂଚୀ

| ନାମ | | ରଚନାକାଳ |
|---|---|---|
| ୧ । ଛିନ୍ନମସ୍ତା (କବିତା) | ... | ୧୯୪୩ |
| ୨ । ପ୍ରଭାତ (କବିତା) | ... | ୧୯୪୪ |
| ୩ । ପାଷାଣ ଚରଣେ ରକ୍ତ (କାବ୍ୟ ନାଟିକା) | ... | ୧୯୪୫ |
| ୪ । ଢ଼ୂଢ଼ୂମା (କାବ୍ୟ) | ... | ୧୯୪୬ |
| ୫ । କଳ କଲ୍ଲୋଳ (କବିତା) | ... | ୧୯୪୬ |
| ୬ । ଖେଳସାଥୀ (ଶିଶୁକବିତା) | | ୧୯୪୬ |
| ୭ । ବାଗ୍ରା (କାବ୍ୟ) | | ୧୯୪୮ |
| ୮ । ପଲ୍ଲୀପୁଷ୍ପ (ଲୋକଗୀତ) | ... | ୧୯୪୮ |
| ୯ । ଗୃହିଣୀକା (କାବ୍ୟ ନାଟିକା) | ... | ୧୯୪୮ |
| ୧୦ । ସାରଣୀ (କବିତା) | ... | ୧୯୪୯ |
| ୧୧ । କଙ୍କାଳର ଲୁହ (କାବ୍ୟ) | | ୧୯୪୯ |
| ୧୨ । ପଲ୍ଲୀ ଝରଣା (ଲୋକଗୀତ) | | ୧୯୫୦ |
| ୧୩ । ଲଙ୍କାଯାତ୍ରୀ (ଭ୍ରମଣକାହାଣୀ) | ... | ୧୯୫୦ |
| ୧୪ । ନବମାଳିକା (କବିତା) | ... | ୧୯୫୧ |
| ୧୫ । ଡାକ୍ ଡ଼ମା ଡମ୍ ଡମ୍ (ଶିଶୁକବିତା) | ... | ୧୯୫୨ |
| ୧୬ । A study of Orissan folklore | ... | ୧୯୫୩ |
| ୧୭ । ସେ ଏକ ଲୋମଶ ନାଲ ହାତ (କବିତା) | ... | ୧୯୫୪ |
| ୧୮ । ପଲ୍ଲୀଗୀତ ସଞ୍ଚୟନ, ୧ମ ଭାଗ | ... | ୧୯୫୪ |
| ୧୯ । ମାଟି ଓ ଲାଠି (କାବ୍ୟ) | ... | ୧୯୫୫ |
| ୨୦ । ମୋ ସ୍ୱପ୍ନର କାଶ୍ମୀର (ଭ୍ରମଣକାହାଣୀ) | ... | ୧୯୫୬ |
| ୨୧ । କଥାଟିଏ କହୁଁ, ୧ମ ଭାଗ (ଲୋକଗଳ୍ପ) | ... | ୧୯୫୬ |
| ୨୨ । କଥାଟିଏ କହୁଁ, ୨ୟ ଭାଗ (ଲୋକଗଳ୍ପ) | | ୧୯୫୬ |
| ୨୩ । କୁଞ୍ଜବିହାରୀ ସଞ୍ଚୟନ, ୧ମ ଭାଗ (କବିତା) | ... | ୧୯୫୬ |
| ୨୪ । ପଥ ଓ ପଥିକ (ଭ୍ରମଣ କାହାଣୀ) | ... | ୧୯୫୮ |
| ୨୫ । ଓଡ଼ିଆ ଲୋକଗୀତ ଓ କାହାଣୀ ପିଏଚ୍.ଡ଼ି ସନ୍ଦର୍ଭ) | ... | ୧୯୫୮ |
| ୨୬ । କୁନମୁନ (ଶିଶୁ କବିତା) | | ୧୯୫୯ |
| ୨୭ । ପଲ୍ଲୀଗୀତ ସଞ୍ଚୟନ, ୨ୟ ଭାଗ | | ୧୯୫୯ |
| ୨୮ । ଶ୍ରୀମନ୍ତ (ରମ୍ୟ ରଚନା) | | ୧୯୬୦ |
| ୨୯ । କୁଞ୍ଜବିହାରୀ ସଞ୍ଚୟନ. ୨ୟ ଭାଗ | | ୧୯୬୦ |

୩୦ । ସମାଲୋଚନା ୧୯୬୨
୩୧ । କୁନ୍ତିବହାଗ୍ର ସଞ୍ଚୟନ, ୩ୟ ଭାଗ ୧୯୬୩
୩୨ । ଲୋକଗଳ୍ପ ସଞ୍ଚୟନ ୧୯୬୪
୩୩ । ସାହିତ୍ୟକ (ସମାଲୋଚନା) ୧୯୬୬
୩୪ । ଆମେରିକାରୁ ଇଉରୋପ ଆଫ୍ରିକା (ଭ୍ରମଣକାହାଣୀ) ୧୯୬୮
୩୫ । ଦୁଇ ଦିଗନ୍ତର ଆକାଶ (ଭ୍ରମଣକାହାଣୀ ୧୯୭୨
୩୬ । ଲୋକବାଣୀ ସଞ୍ଚୟନ (ଢଗଢ଼ମାଳି) ପ୍ରଥମ ଭାଗ ୧୯୭୩
୩୭ । ପଲ୍ଲୀଗୀତ ସଞ୍ଚୟନ, ୩ୟ ଭାଗ ୧୯୭୪
୩୮ । ଲୋକବାଣୀ ସଞ୍ଚୟନ, ୨ ଭାଗ (ଢଗଢ଼ମାଳି) ୧୯୭୬
୩୯ । ମୋ କାହାଣୀ (ଆତ୍ମଚରିତ) ୧୯୭୬
୪୦ । ଲୋକଗଳ୍ପ ସଞ୍ଚୟନ, ୨ୟ ସଂସ୍କରଣ, (ବର୍ଦ୍ଧିତ) ୧୯୭୭
୪୧ । ଜୀବନ୍ତ ଓ ଜୀବନ (ଜୀବନଚରିତ) ୧୯୭୬
୪୨ । ଲୋକବାଣୀ ସଞ୍ଚୟନ (ଢଗଢ଼ମାଳି), ୩ୟ ଭାଗ ୧୯୭୮
୪୩ । ଜୀବନାୟନ (ଜୀବନଚରିତ) ୧୯୭୮
୪୪ । ସାହିତ୍ୟ; ଏକ ଆଲୋକ, ଆଲୋକନ (ସମାଲୋଚନା) ୧୯୭୮
୪୫ । ହସ କାନ୍ଦର ଗପ (କ୍ଷୁଦ୍ରଗଳ୍ପ) ୧୯୭୯
୪୬ । ଅପରାହ୍ନର କେତୋଟି ସ୍ୱର (କବିତା) ୧୯୭୯
୪୭ । Folklore of Orissa ୧୯୭୯
୪୮ । ମଶାଣିତୁଳସୀ (ଉପନ୍ୟାସ) ୧୯୮୦
୪୯ । ମୋ କାହାଣୀ, ଦ୍ୱିତୀୟ ସଂସ୍କରଣ(ବର୍ଦ୍ଧିତ) ୧୯୮୦
୫୦ । ଲୋକବାଣୀ ସଞ୍ଚୟନ (ଢଗଢ଼ମାଳି) ୪ର୍ଥ ଭାଗ ୧୯୮୦
୫୧ । ତୁମର ଆମର ଲାଲ୍ ପଇଞ୍ଚ (ପଲ୍ଲୀ ଶିଶୁ କବିତା) ୧୯୮୦
୫୨ । ସାହିତ୍ୟ ଓ ସମାଲୋଚନା (ସମାଲୋଚନା) ୧୦୮୦
୫୩ । ମଣିମା ଶୁଣିମା ହେଉ (ଉପନ୍ୟାସ) ୧୯୮୧
୫୪ । ଲୋକବାଣୀ ସଂଚୟନ (୫ମ ଭାଗ) ୧୯୮୧
୫୫ । ଲୋକବାଣୀ ସଂଚୟନ (୬ଷ୍ଠ ଭାଗ) ୧୯୮୨
୫୬ । କି କଥା କଲ୍‌କତା (ଉପନ୍ୟାସ) ୧୯୮୨

## ଅନୁବାଦ

୫୭ । ବୈଦିକ ଗୀତମାଳା ୧୯୬୨
୫୮ । କୁଡ଼ି ଓ ଲକ୍ଷ୍ମୀ ୧୯୫୯
୫୯ । ପୃଥିବୀର ଶ୍ରେଷ୍ଠ ଗାଉଁଲି ଗଳ୍ପ ୧୯୫୨

# ।। ଜଣେ ପ୍ରକୃତ କବି ।।

ଅଧ୍ୟାପକ କୃଷ୍ଣବିହାରୀଙ୍କ ସଙ୍ଗେ ପ୍ରଥମ ସାକ୍ଷାତ୍ ୧୯୫୧ ଖ୍ରୀଷ୍ଟାବ୍ଦରେ ମୋର ଶାନ୍ତିନିକେତନ ଆସିବା ପରେ । ଏଥର ମୁଁ ଆସିଲି ବରାବର ଶାନ୍ତିନିକେତନରେ ରହିବା ପାଇଁ । କୃଷ୍ଣବାବୁ ବିଶ୍ୱଭାରତୀ ଓଡ଼ିଆ ବିଭାଗର ଅଧ୍ୟକ୍ଷ । ତାଙ୍କ ଛାତ୍ରମାନଙ୍କ ମଧ୍ୟରେ ଥିଲେ ଶ୍ରୀମାନ ନରେନ୍ଦ୍ର ମିଶ୍ର । ସେ ପରେ ଅଧ୍ୟାପକ ହୋଇ ବିଶ୍ୱଭାରତୀରେ ରହିଲେ । ଆଉର ଯେଉଁ କେତେଜଣ ଥିଲେ, ସେମାନେ ଓଡ଼ିଶା ଫେରିଗଲେ ।

କୃଷ୍ଣବାବୁ ଛାତ୍ରମାନଙ୍କୁ ଘେନି ପ୍ରାୟ ପ୍ରତିଦିନ ଅପରାହ୍ଣରେ ବୁଲିବାକୁ ବାହାରୁଥିଲେ । ମୁଁ ମଧ୍ୟ ମଝିରେ ସେମାନଙ୍କ ସଙ୍ଗେ ଯୋଗ ଦେଉଥିଲି । ସେ ଓ ତାଙ୍କ ଛାତ୍ରମାନେ ସାହିତ୍ୟ ସଭା କରୁଥିଲେ, ମୋତେ ଡାକୁଥିଲେ । କ୍ରମେ କ୍ରମେ ସମସ୍ତଙ୍କ ସହି ମୋର ଘନିଷ୍ଠତା ହେଲା ।

କୃଷ୍ଣବାବୁଙ୍କର ଗୋଟିଏ ବଡ଼ ଗୁଣ ଥିଲା । ସେ ତାଙ୍କ ଉତ୍ସାହ ଛାତ୍ରମାନଙ୍କ ଭିତରେ ସଞ୍ଚାର କରି ପାରୁଥିଲେ । ସେ ନିଜେ ଲୋକ ସଂସ୍କୃତି ବିଷୟରେ ଗବେଷଣା କରୁଥିଲେ । ଗବେଷଣା ସମାପ୍ତ ହେବାରୁ ସେ ପି.ଏଚ୍. ଡ଼ି. ଉପାଧି ପାଇଲେ । ତା'ପରେ ସେ ହେଲେ ଡକ୍ଟର କୃଷ୍ଣବିହାରୀ ଦାଶ । ମୁଁ ତାଙ୍କ ବସାକୁ ଯାଇ ବାହାରୁ ଡାକୁଥିଲି—ଡ଼ାକ୍ତର ବାବୁ ଘରେ ଅଛନ୍ତି । ତାଙ୍କ ସ୍ତ୍ରୀ ପ୍ରେମଲତା ମଧ୍ୟ ନିଜେ ଜଣେ ଲେଖିକା ଥିଲେ । ମୋତେ ଦେଖିଲେ ସେ କହୁଥାନ୍ତି—କବି ଆସିଛନ୍ତି । ମୁଁ କେବେ ଓଡ଼ିଆ ଭାଷାରେ କବିତା ଲେଖିଥିଲି ! ଓଡ଼ିଶା ଲୋକେ ସେ କଥା ମନେ ରଖିଛନ୍ତି ! !

କୃଷ୍ଣବାବୁ ମଧ୍ୟ ଜଣେ କବି । ତାଙ୍କ କବିତା ବହି ସବୁ ମୁଁ ପଢ଼ିଛି । ତାଙ୍କ ଆତ୍ମଜୀବନୀ ଗୋଟିଏ ଅତି ମୂଲ୍ୟବାନ ଗ୍ରନ୍ଥ । ସେଥିରେ ସେ ତାଙ୍କ ଜୀବନର ଶାନ୍ତି-ନିକେତନ ପର୍ବ ବର୍ଣ୍ଣନା କରିଛନ୍ତି । ସେଥିରେ ମୋର ଉଲ୍ଲେଖ ଅଛି । ମୋ ସହିତ ତାଙ୍କର କଥୋପକଥନ ପ୍ରସଙ୍ଗର ଟିକିନିଖି କଥା ମୁଁ ନିଜେ ଭୁଲି ଯାଇଥିଲେ ହେଁ ତାଙ୍କର ମନେଥିଲା । ସେ ସବୁ ବିଷୟ ପଢ଼ି ମୁଁ ଉପକୃତ ହୋଇଛି ।

କୃଷ୍ଣବାବୁ ସବୁ ପ୍ରକାର ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ । ସେ ଧର୍ମାନ୍ଧ ନୁହନ୍ତି । ପ୍ରାଦେଶିକତା ତାଙ୍କୁ ଆଚ୍ଛନ୍ନ କରିନାହିଁ । ସାମାଜିକ ବିଷୟରେ ମଧ୍ୟ ସେ ଉଦାର । ସାହିତ୍ୟିକ ବିଚାରରେ ମଧ୍ୟ ତାଙ୍କର ସମଦୃଷ୍ଟି ପ୍ରକାଶ ପାଏ । ତାଙ୍କ ସହିତ ଆଲୋଚନାରୁ ମୋର ପ୍ରତ୍ୟୟ ହୋଇଥିଲା, ସେ ଜଣେ ରସଜ୍ଞ ବ୍ୟକ୍ତି । ସାହିତ୍ୟର ମୂଳ କଥା ହେଉଛି ରସ । ବାକ୍ୟଂ ରସାତ୍ମକଂ କାବ୍ୟଂ । ତାଙ୍କୁ ଜଣେ ପ୍ରକୃତ କବି କୁହାଯାଇ ପାରେ । ସେ ନିଜ ସାଧନାରେ ବହୁଦୂର ଅଗ୍ରସର ହୋଇଛନ୍ତି । ସେଇ ସାଧନା ସାର୍ଥକ ହେଉ । ସେ ଦୀର୍ଘ ଜୀବନ ଲାଭ କରନ୍ତୁ ।

ଅନ୍ନଦାଶଙ୍କର ରାୟ

ତା ୧୪-୧-୮୪ରିଖ

# ॥ କୁଞ୍ଜବାବୁ ॥

—ଫତୁରାନନ୍ଦ

ପ୍ରଫେସରପଡ଼ାସ୍ଥ କୁଞ୍ଜବାବୁଙ୍କ ଉଦୟଶ୍ରୀ ବାସଭବନର ଫାଟକ ପାଖରେ ମୁଁ ଯେତେବେଳେ ଡାକେ—କୁଞ୍ଜ ବାବୁ ଅଛନ୍ତି, ଅଛନ୍ତି ? ମୋ ମନକୁ ଉତ୍ଫୁଲ୍ଲେଇ ଦେଇ ଭିତରୁ ମୋର ଅତି ପରିଚିତ ଓ ଅତି ମଧୁର ଉତ୍ତର ଆସେ—ଅଛନ୍ତି, ଅଛନ୍ତି । ସେ ଯାଦୁକରୀ ଶବ୍ଦଟି ମୋତେ ଫାଟକ ବାଟେ ଭିତରକୁ ଟାଣି ନେଇଯାଏ; ସ୍ମିତହାସ ମୁହଁରେ ଖେଳାଇ କୁଞ୍ଜ ବାବୁ ବାରଣ୍ଡାକୁ ବାହାରି ଆସି ମୋତେ ଚଉକିରେ ବସାଇ ଦେଇ ଗପିବା ଆରମ୍ଭ କରିଦିଅନ୍ତି । ସେ କେବଳ କାହିଁ ଗୋଟାଏ କଥା ଉଖାରି ଦିଅନ୍ତି । ବାସ୍ ମୋ ପେଟରୁ ଅସରନ୍ତି ଧୂଆଁ ଛୁଟିବାରେ ଲାଗିଥାଏ । ଜନ୍ମରୁ ମୁଁ ଜଣେ ପକ୍କା ହାମସାହିଆ ଥିଲି । ଆଗେ 'ଶଳା' ଏବଂ ଆଉ କେତୋଟି ଆପତ୍ତିଜନକ ହାମସାହିଆ ଶବ୍ଦ ମୋ ପାଟିରେ ବସା ବାନ୍ଧିଥିଲା । କୌଣସି ଏକ ମନ୍ଦଲୋକର ଚର୍ଚ୍ଚା କରୁଥିଲାବେଳେ ମୋ ମୁହଁରୁ ସେ ସବୁ ଶବ୍ଦ ବିଶେଷ କରି 'ଶଳା' ଶବ୍ଦଟି ବାହାରି ପଡ଼ିବାମାତ୍ରେ ସେ ମୁରୁକି ହସା ଦେଇ କହୁଥିଲେ—ହଇହୋ ଏହା ଭିତରେ ତୁମେ କେତେବେଳେ ବାହାହୋଇ ଶଳାଟିଏ ଆମଦାନି କରିସାରିଲଣି, ମୁଁ ତ ଜାଣି ପାରିଲି ନାହିଁ । ତାଙ୍କ କଥାର ମର୍ମ ବୁଝିପାରି ମୁଁ ଭୁଲ ସ୍ୱୀକାର କରେ ଏବଂ ଦୁହେଁ ହସୁ । ଆଠ ଦଶଥର ଏହିପରି ଠୋକର ଦେଇ ସେ ମୋ ପାଟି ସଫା କରିଦେଲେ । ମାସେ ଦିମାସ ଭିତରେ ମୋ ପାଟିରୁ ଆଉ ହାମସାହିଆ ଶବ୍ଦ ବାହାରିଲା ନାହିଁ । ମୋତେ ବଡ ସହଜ ପନ୍ଥାରେ ଭଦ୍ରଲୋକ କରିଦେଲେ । ଏହିପରି ମଉଜିଆ କଥାବାର୍ତ୍ତା ଚାଲିଥିଲାବେଳେ ହୃଦୟରେ ବିପୁଳ ସ୍ନେହର ଭଣ୍ଡାର ମୁହଁରେ ହସ ଓ ହାତରେ ଜଳଖିଆ ଥାଳି ଧରି କୁଞ୍ଜବାବୁଙ୍କ ସହଧର୍ମିଣୀ ଘରଭିତରୁ ବାହାରି ଆସନ୍ତି ଏବଂ ମୋ ପାଖରେ ଥୋଇ ଦେଇ ମଉଜିଆ କଥାରେ ଯୋଗ ଦିଅନ୍ତି । କୁଞ୍ଜ ବାବୁଙ୍କ ପାଟିକୁ ଟିକିଏ ଅବସର ମିଳେ । ଘଣ୍ଟା କଣ୍ଟା ଯେ ଲୁଚି ଛପି ଦୁଇ ତିନିଘର ଡେଇଁଯାଏ ତାହା ଜଣାପଡେ ନାହିଁ । ମୋ ପରି ଜଣେ ଦୁଃଖୀକୁ ସନ୍ତୁସ ରଖିବା ପାଇଁ ସ୍ୱାମୀ ସ୍ତ୍ରୀ ଉଭୟେ ନିଜ ନିଜର ମୂଲ୍ୟବାନ ସମୟରୁ ବହୁତ ଅକାତରରେ ଖର୍ଚ୍ଚ କରିଦିଅନ୍ତି । ଉଭୟଙ୍କ ସ୍ନେହ ବାରିଧିରେ ବୁଡ଼ବୁଡ଼ୁ ହୋଇ ମୁଁ ମୋ ଘରକୁ ଫେରେ । ମନ ଓ ପେଟରେ ସମ୍ପୂର୍ଣ୍ଣ ତୃପ୍ତ ହୋଇ ଯାଇଥାଏ ।

ଷାଠିଏ ଶ୍ଳୋକ ପଢଉ ଶୁଆ, ବଗ୍‌ଡ଼ି ଦେଖିଲେ ଅଗୃବୁଆ !" କୁଞ୍ଜବାବୁ ଓ ପ୍ରେମଲତା ଦେବୀଙ୍କ ପାଖରେ ସିନା ମୁଁ ପ୍ରଗଳ୍‌ଭତାର ଶେଷସୀମାରେ ପହଞ୍ଚି ଯାଇଥାଏ, ହେଲେ ସଭା ନାଆଁ ଶୁଣିଲେ ମୋ ତଣ୍ଟି ଶୁଖିଯାଏ, ଗୋଡଆଣ୍ଠୁ ଥରି ଆରମ୍ଭ ହୋଇଯାଏ । ମୁଣ୍ଡ ଭିତରର ଭାବନାନାଳଗୁଡ଼ିକ ବାଲିରେ ପୋତି ହୋଇଯାଏ, ଚନ୍ଦ୍ରାଲୋକ ଲୋପ ପାଇଯାଏ । କୁଞ୍ଜବାବୁ ରେଭେନ୍‌ସା କଲେଜରେ ପ୍ରଫେସର ଥିଲାବେଳେ ମୁଁ ତାଙ୍କ କ୍ୱାର୍ଟରରେ ପହଞ୍ଚିଲି । ଗୋଟାଏ ବଡ କୋଠରୀରେ ସେ ବସିଥିଲେ । କୋଠରୀଟା ଅନ୍ଧାରୁଆ ଥିଲା । ସେ ମୋ ହାତ ଧରି ପାଖରେ ପଡ଼ିଥିବା ଏକ ଚଉକୀରେ ବସାଇ ଦେଲେ । ମୋ ମୁହଁରୁ ଅନର୍ଗଳ ବକ୍ତୃତାର ସୁଅ ଛୁଟିବାକୁ ଲାଗିଲା । ଟିକିଏ ଦୂରେଇ କାନ୍ଥଆଡକୁ ପ୍ରାୟ ଛଅ ସାତ ଜଣ ଅଧ୍ୟାପକ ବସିଥିବା କଥା ମୁଁ ଆଦୌ ଜାଣି ପାରି ନ ଥିଲି, ମୋତେ କିଛି ଦିଶୁ ନ ଥିଲା । ମୁଁ ପ୍ରାୟ ଘଣ୍ଟାଏଯାଏ କୁଞ୍ଜ ବାବୁଙ୍କ ଆଗରେ ଜଣେ ନାମଜାଦା ବକ୍ତାପରି ବଡ ଜୋର୍‌ରେ ଗପିବାକୁ ଲାଗିଲି । କିଛି ଅବାନ୍ତର ବା ନୀରସ କଥା କହୁ ନ ଥିଲି, ବାଧା ପାଇ ନ ଥିଲେ ଆହୁରି ଘଣ୍ଟାଏ କି ଦୁଇଘଣ୍ଟା ଗପି ପାରିଥାନ୍ତି । ପାଟି ଖୋଲେଇ ହୋଇ ନ ଥାନ୍ତା । ମୋ କଥା ଭିତରେ ଟିକିଏ ଫାଙ୍କ ପାଇ କୁଞ୍ଜବାବୁ କହିଦେଲେ—ଏତେବେଳଯାଏ ଏତେ ସୁନ୍ଦର ଭାବରେ ବେଶ୍ ଭଲ ଭଲ କଥା କହିପାରୁଛ, ସଭାରେ ଏହାର ଚଉଠ କଥା କହିଦେଲେ କାହିଁରେ କଅଣ ହୋଇ ଯାଆନ୍ତା ? କାନ୍ଥ ପାଖରେ ବସିଥିବା ଅଧ୍ୟାପକମାନେ ହୋ ହୋ ହୋଇ ହସି ଉଠିଲେ । ମୁଁ ଅବାକ୍ ହୋଇଯାଇ କାନ୍ଥଆଡକୁ ନିରେଖି ଚାହିଁଲି । କୁଞ୍ଜବାବୁ କହିଦେଲେ—ସେଠି କେତେଜଣ ଅଧ୍ୟାପକ ବସିଛନ୍ତି । ହୁଁ କୁହ କୁହ, ସେଇଠୁ କଅଣ ହେଲା ? ଆଉକି ମୋ ପାଟିରୁ କଥା ବାହାରେ ! ଠାପୁଆ ବଳଦ ପରି ଶୋଇ ପଡ଼ିଲି, କୁଞ୍ଜବାବୁ—ହି-ହି-ହି, ଇଃ-ଇଃ-ଇଃ କହି ମୋ ଦେହରେ ଯେତେ ଡ଼ାହି ମାରିଲେ ବି ମୁଁ ଆଉ ନ ଉଠେ, ସମସ୍ତେ ଆହୁରି ହୋ ହୋ ହୋଇ ହସି ଉଠିଲେ । ସେଠାରୁ କେମିତି ପଳେଇ ଆସିବାଯାଏ ମୋର ବାର୍ ସହିଲାନାହିଁ, ମୋର ସଭା-ଛେରୁଆ ପଣ ଛଡେଇବାକୁ କୁଞ୍ଜବାବୁ ବଦ୍ଧପରିକର ହେଲେ । ସେ ଏବଂ ତାଙ୍କ ଗୁରୁ ନିତ୍ୟାନନ୍ଦ ଶତପଥୀ ଥରେ ମିଷ୍ଟର ଦାସଙ୍କ ଜୟନ୍ତୀ ଉପଲକ୍ଷେ ସତ୍ୟଭାମାପୁରକୁ ଗଲାବେଳେ ମୋତେ ସାଙ୍ଗରେ ନେଇଗଲେ । ତାଙ୍କର ଇଚ୍ଛା ଥିଲା, ସେଠା ସଭାରେ ମୋ ପାଟିରୁ କିଛି କଢେଇବେ ! ସଭାରେ ମୋତେ କହିବାକୁ ସେ ସଭାପତି ଭାବରେ ନିର୍ଦ୍ଦେଶ ଦେଲେ ଓ ଉତ୍ସାହ ଦେଲେ । ନାଗସାପ ପାଖରେ ପଦ୍ମତୋଳା ବୋଲାଇଲେ ସେ ଫଣା ଟେକିବ, ଧଣ୍ଡ ସାପ ଉଠିବ କୁଆଡ଼ୁ ? ମୋର ସଭା-ଛେରୁଆ ପଣ ଦେଖି ସେ ଓ ନିତ୍ୟାନନ୍ଦ ନିରସ୍ତ ହେଲେ । ନିତ୍ୟାନନ୍ଦ ମୋତେ ଖୋଷଡ଼ା ଓଟରି କରି କାଣ୍ଡୁଆ କରିଦେଇଥିଲେ । ମୋର ଏକପକ୍ଷରେ ଭଉଣୀଜ୍ୱାଇଁ ଅନ୍ୟପକ୍ଷରେ ସହପାଠୀ ଚକ୍ରଧର ଶତପଥୀର ଝିଅ ପ୍ରତିଭା ସେ ସଭାରେ ବସିଥିଲା । ତା ଘର ସେଇଠି । ସଭାପତି ଅଭିଭାଷଣ ଦେଇ ଦେଇ କୁଞ୍ଜ ବାବୁ କହିଲେ ଆଜକାଲି ପ୍ରତିଭାକୁ କେହି ଚିହ୍ନିଲେ

ନାହିଁ । ମୁଁ ପ୍ରତିବାଦ କରିପାରି କହିଦେଲି—ନିତ୍ୟାନନ୍ଦ ପ୍ରତିଷ୍ଠାକୁ ଟହଲି ଛନ୍ତି । ସଭାରେ ହାସ୍ୟରୋଳ ଉଠିଲା । ପ୍ରତିଷ୍ଠା ଲାଜରେ ସଭାରୁ ଉଠି ପଳେଇ ଗଲା ଓ ମହିଳାମାନେ ବସିଥିବା ସ୍ଥାନରେ ଆତ୍ମଗୋପନ କଲା । ଅସଲ କଥାଟି ଥିଲା ନିତ୍ୟାନନ୍ଦ ସଙ୍ଗେ ପ୍ରତିଷ୍ଠାର ବାହାଘର ମାତ୍ର ବର୍ଷକ ତଳେ ହୋଇଯାଇଥିଲା । ସେଠାର ସମସ୍ତେ ଏହା ଜାଣିଥିଲେ । ମଞ୍ଚରେ ନ ହେଉ ପଛକେ ସଭା ଭିତରେ ଏତିକି କହିପାରିଥିବା ହେତୁ କୁନ୍ତବାବୁ ଆଶା ଛାଡ଼ିଲେ ନାହିଁ ।

ଆଉଥରେ ସେ ଦୁହେଁ ମୋତେ ଶୁଦ୍ରମୁନି ଶାରଳା ଦାସଙ୍କ ଜୟନ୍ତୀ ଉପଲକ୍ଷେ ଝଙ୍କଡ ଘୋଷାଡ଼ି ନେଇଗଲେ । ମୋର ହିତ ପାଇଁ ଦୁଇଜଣ ଯେ ଗୋଟାଏ ଷଡ଼ଯନ୍ତ୍ର କରିସାରିଛନ୍ତି ତାହା ମୁଁ ଜାଣିବି କିପରି ! କୁନ୍ତ ବାବୁଙ୍କ ସଭାପତିତ୍ୱରେ ସେଠାରେ ସଭା ଆରମ୍ଭ ହେଲା । ହଠାତ୍ ନିତ୍ୟାନନ୍ଦ ସଭାରେ ଘୋଷଣା କରିଦେଲେ—ବର୍ତ୍ତମାନ ହାସ୍ୟରସ ସ୍ରଷ୍ଟା ଫତୁରାନନ୍ଦ କିଛି କହିବେ । କଥା ସଙ୍ଗେ ସଙ୍ଗେ କାମ । ବଡ଼ପାଟିଆଟା ମୋ ଆଗରେ ଥୋଇ ଦେଇ ଗୋଟାଏ ମଡ଼ା ଟେକିଲା ପରି ମୋତେ ଟେକି ଠିଆ କରିଦେଲେ । କୁନ୍ତ ବାବୁ ପଛରୁ ଅଣ୍ଡଉଥାଆନ୍ତି—ହଁ କୁହ କୁହ, କିଛି ଚିନ୍ତା ନାହିଁ ସଂକ୍ଷେପରେ କୁହ, କହିଯାଅ । ମୋର କଣ୍ଠ ତୋଟି ଶୁଖିଗଲା । ଉଜ୍ଜ୍ୱଳ ଆଲୋକ ଚାରିଆଡ଼େ ବିଛେଇ ହୋଇ ପଡ଼ିଥିଲେ ସୁଦ୍ଧା ମୋତେ ଚାରିଆଡ଼ ଅନ୍ଧାର ଦେଖାଗଲା । ମୋ ପାଟିରୁ ସାପ ବାହାରିବ କି ବେଙ୍ଗ ବାହାରିବ ତାହା ଦେଖିବାପାଇଁ ଶ୍ରୋତାମାନେ ଏକାବେଳେକେ ଚୁପ୍ ହୋଇ ବସିଯାଇଥାନ୍ତି । ମୁଁ ମୋର ବକ୍ତବ୍ୟ ନ ଭାବି ଭାବୁଥାଏ, ନିତ୍ୟାନନ୍ଦ ଏ କଅଣ କଲେ ! ସତ୍ୟଭାମାପୁରର ପ୍ରତିଶୋଧ ନେଲେ କି ଆଉ ? ଏହା ଭିତରେ ପ୍ରାୟ ୩ ମିନିଟ୍ ଗଡ଼ିଗଲା । ଶ୍ରୋତାମାନେ ବୋଧହୁଏ ଭାବିଥିବେ—ବାବାଜୀ ମନେ ମନେ କଅଣ ମନ୍ତ୍ର ବୋଲୁଛି । ସରିଲେ କଥା କହିବ । କୁନ୍ତ ବାବୁ ପଛରୁ ପୁଣି ଅଣ୍ଟେଇଲେ—ହୁଁ, ଲେଖକମାନଙ୍କ ବିଷୟରେ ପଦେ ଅଧେ କହିଦିଅ । ଚମକି ପଡ଼ିଲି, ମନେ ପଡ଼ିଗଲା ଗଲାଦିନ ଖବର କାଗଜରୁ ଜାଣିଥିଲି ଆନ୍ଧ୍ର ସରକାର ଜଣେ ମୃତ ବିଖ୍ୟାତ କବିଙ୍କର ସ୍ମୃତିରକ୍ଷା ପାଇଁ ଏକ ଦୁର୍ଗମ ସ୍ଥାନରେ ଥିବା ତାଙ୍କ ଘରକୁ ଏକ ତୀର୍ଥ ସ୍ଥାନ କରି ସେଠାକୁ ଏକ ପକ୍କା ସଡ଼କ କରି ଦେଇଛନ୍ତି ଓ ଦୈନିକ ଯାତାୟତ ପାଇଁ ଏକ ବସ୍ ଖଞ୍ଜି ଦେଇଛନ୍ତି । କାହାକୁ କିଛି ସମ୍ବୋଧନ ନ କରି ସେଇ କଥାଟା କହିଦେଲି ପରେ କହିଲି ଶାରଳା ଦାସ ଆମ ସାହିତ୍ୟର ଜନକ, ଅଥଚ ଏଠିକି ଭଲ ରାସ୍ତାଟାଏ ନାହିଁ । ଆମ ବସ୍ ଆସିଲାବେଳେ ୩ଥର ଓଲଟି ପଡ଼ୁ ପଡ଼ୁ ରକ୍ଷା ପାଇଗଲା, ସରକାର ଏଥିପ୍ରତି ଦୃଷ୍ଟି ଦେବା ଉଚିତ୍ । ଏତିକି କହି ବସି ପଡ଼ିଲି । ଦେହରୁ ଗମ୍‌ଗମ୍ ଝାଳ ବୋହି ଲୁଗା ପଟା ତିନ୍ତେଇ ଦେଲା । କୁନ୍ତବାବୁ ପଛରୁ ବଧେଇ ଦେଲେ । ବାଃ ! ବଢ଼ିଆ କହିଲ । ସେହି ଦିନ ଶାରଳାଙ୍କ ପୀଠରେ ମୋ ମୁହଁରେ ବକ୍ତୃତା ପୂରେଇ ପରମ ସନ୍ତୋଷ ଲାଭ କଲେ, ଫେରିବା ବାଟରେ

ମୋତେ ଖୁବ୍ ଉତ୍ସାହ ଦେଇ କହୁଥାଆନ୍ତି—ଆଉ ଚିନ୍ତା ନାହିଁ । ପାଟି ଫିଟିଗଲା । ତା ମଧ୍ୟ ଭଲ ସ୍ଥାନରେ ଫିଟିଛି । ଆଉ ପଛେଇବା ଉଚିତ୍ ନୁହେଁ, ମୁଁ କିନ୍ତୁ ଭାବୁଥାଏ, ଛୁଆପିଲା ପଡ଼ିଗଲେ ବଡ଼ମାନେ ତାକୁ ଉତ୍ସାହ ଦେଇ କହନ୍ତି—ଆରେ ବାଃ, ବଢ଼ିଆ ଡେଇଁ ପଡ଼ିଲୁ । ମୁଁ ନିଜେତ କେତେ ଛୁଆଙ୍କୁ ଏମିତି ଭଣ୍ଡିଛି । ବକ୍ତୃତାରେ ମୁଁ ଶିଶୁ ସତ, କିନ୍ତୁ ଚିନ୍ତା କରିବାରେ ତ ବୁଢ଼ା ହେଲିଣି । ସେ ତାଙ୍କ କାମରେ କିନ୍ତୁ ଅଟଳ ଥାଆନ୍ତି । ଏବେସୁଦ୍ଧା ମୁଁ ବାଧ୍ୟ ହୋଇ କେତେକ ସ୍ଥାନରେ ଯେଉଁ ଏକ ବା ଦୁଇ ମିନିଟିଆ ବକ୍ତୃତା ଦେଇଛି ତାକୁ ସେ ଖୁବ୍ ତାରିଫ୍ କରିଛନ୍ତି ଆଉ କହିଛନ୍ତି ଆଉ ଚିନ୍ତା ନାହିଁ । ପାଟି ଫିଟି ଗଲାଣି । ଏଗୁଡ଼ାକ ତାଙ୍କର ମୋ ଉପରେ ଅଯାଚିତ ସ୍ନେହର ବର୍ଷଣ । ଜଣେ ଅପଦାର୍ଥକୁ ପଦାର୍ଥ କରିବାରେ ଏକ ପ୍ରବଳ ଉଦ୍ୟମ । ଯେଉଁଠି ସେ ସାମାନ୍ୟ ଅଗ୍ନିକଣାଟିଏ ଦେଖନ୍ତି, ତାକୁ ପଙ୍ଖାରେ ବିଞ୍ଚି ବିଞ୍ଚି ଏକ ପ୍ରଖର ଅଗ୍ନିରେ ପରିଣତ କରିବାରେ ଲାଗିପଡନ୍ତି ।

ତାଙ୍କର କେତେଜଣ ବନ୍ଧୁ ତାଙ୍କର ଜନ୍ମଦିନ ପାଳନ କରିବାକୁ ଅନୁରୋଧ କଲେ । ଅନୁରୋଧ ଏଡ଼ାଇ ନପାରି ସେ ସେମାନଙ୍କୁ ଏକ ଅଭିନବ ସର୍ତ୍ତ ଦେଲେ ଯେ ସେହିଦିନ ଜଣେ ବାହାରକୁ ଜଣା ପଡ଼ି ନ ଥିବା ସାହିତ୍ୟରଥୀଙ୍କୁ ସମ୍ବର୍ଦ୍ଧନା ଦେବା ଏକ ମୁଖ୍ୟ କାର୍ଯ୍ୟ ହେବ । ତାଙ୍କ ନିଜ ସମ୍ବର୍ଦ୍ଧନାଟା ଏକ ଗୌଣ କର୍ମ ହେବ । ସମସ୍ତେ ରାଜି ହେଲେ । ପ୍ରଥମ ବର୍ଷ ବହୁ ଗଣ୍ୟମାନ୍ୟ ସାହିତ୍ୟିକଙ୍କ ଗହଣରେ ଏହା କରାଗଲା, ସମସ୍ତେ ଏହି ଅଭିନବ ବିଷୟଟିକୁ ଉଚ୍ଛ୍ୱସିତ ପ୍ରଶଂସା କଲେ ।

ମୁଁ ଦିନେ ଶାରଳା ଦାସଙ୍କ ଉପରେ ହେଉଥିବା ଏକ ସଭାରେ ଯୋଗ ଦେବାକୁ ରାଜାବଗିଚାସ୍ଥ ଆଦିକନ୍ଦ ବାବୁଙ୍କ ଘରକୁ ଯାଇଥିଲି । କୁଞ୍ଜ ବାବୁ ମଧ୍ୟ ଯାଇ-ଥିଲେ । ଶାରଳା ଦାସଙ୍କ ଉପରେ ମୁଁ ଗୋଟିଏ ଏକମିନିଟିଆ ଭାଷଣ ଦେଇ ବସିବା ପରେ ପରେ ପ୍ରଥମ ଥର ପାଇଁ ହୃତ୍‌ଯନ୍ତ୍ରଣା ଆରମ୍ଭ ହୋଇଗଲା । ବନ୍ଧୁ ବିଜୟାନନ୍ଦ ସିଂହଙ୍କ ସାହାଯ୍ୟରେ ଘର ଭିତରୁ ବାହାରି ଆସିଲି । ଦ୍ୱାର ଦେଶରେ ଚଳନ୍ତ୍ ଶକ୍ତି ରହିତ ହୋଇ ତଳେ ପଡ଼ିଗଲି । ମୋତେ କାର୍‌ରେ ନେଇ ଆସି ଡଗର ପ୍ରେସରେ ଶୁଆଇ ଦିଆଗଲା । ଘଣ୍ଟାଅଧ ବେଳକୁ ଯନ୍ତ୍ରଣା କମିଗଲା । ଏ ଘଟଣାରେ କୁଞ୍ଜ ବାବୁ ବଡ଼ ବିବ୍ରତ ହୋଇ ଓ ଏଇଟା ଗାଡ଼ି ଛାଡ଼ିବାର ପ୍ରଥମ ଘଣ୍ଟାଧ୍ୱନି ହୋଇପାରେ ଭାବି ଚିନ୍ତିତ ହୋଇପଡ଼ିଲେ । ମନ କଥା ମନରେ ରଖି ସେ ବର୍ଷ ମୋର ସମ୍ବର୍ଦ୍ଧନା କାମଟା ସାରିଦେବା ଲାଗି ମୋତେ ବୁଝେଇବାଝେଇ ରାଜି କରାଇଦେଲେ । ମୋ ପାଳିଟା ଏତେ ଚଞ୍ଚଳ କିପରି ପଡ଼ିଗଲା ତାହା ଭାବି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ପରେ ତାଙ୍କ ଅନ୍ତରର କଥାଟା ମୁଁ ଠଉରେଇ ନେଇଥିଲି । ତାଙ୍କର ମୋ ପ୍ରତି ଆନ୍ତରିକ ସ୍ନେହର ଆଉ ଗୋଟିଏ ନମୁନା ମୁଁ ସେଦିନ ପାଇଥିଲି ।

ଜଣେ ଉଗ୍ର ସାହିତ୍ୟିକ ତାଙ୍କର ଅଯଥା ଶତ୍ରୁ ଥିଲେ । ସେ ଉଣ୍ଠି ଉଣ୍ଠି କୁଞ୍ଜ ବାବୁ ସଭାପତି ହୋଇଥିବା ସଭାକୁ ଯାଉଥିଲେ ଏବଂ କୌଣସି କାରଣ ନ ଥାଇ ଅତି ଉଗ୍ର ଭାଷାରେ ଅଯଥା ଗାଳି ଗୁଲଜ କରୁଥିଲେ । କୁଞ୍ଜ ବାବୁ ତା'ର ଉତ୍ତର ଦିଅନ୍ତି ନାହିଁ । ତାଙ୍କଠାରେ କୌଣସି ପ୍ରତିକ୍ରିୟା ମଧ୍ୟ ପରିଲକ୍ଷିତ ହୁଏନାହିଁ । ନୀଳକଣ୍ଠ ଗରଳ ପାନ କଲା ପରି ସେ ଉଗ୍ର ସାହିତ୍ୟିକଙ୍କ ସମସ୍ତ ଅଯଥା ଗାଳି ହଜମ କରିଦିଅନ୍ତି । ଏହାଦ୍ୱାରା ଅଧିକାଂଶ ସଭାସ୍ଥ ଶ୍ରୋତାଙ୍କର ସହାନୁଭୂତି କୁଞ୍ଜ ବାବୁଙ୍କ ଆଡକୁ ଯାଏ, ଆଉ ଘୃଣା ଓ ବିରକ୍ତି ଉଗ୍ର ସାହିତ୍ୟିକଙ୍କ ଆଡକୁ ଯାଏ । କ୍ରମେ କୁଞ୍ଜ ବାବୁ ଅଧିକରୁ ଅଧିକ ଲୋକଙ୍କ ପ୍ରିୟଭାଜନ ହୁଅନ୍ତି । ଆଉ ଉଗ୍ରସାହିତ୍ୟିକ ଅଧିକରୁ ଅଧିକ ଲୋକଙ୍କର ବିରକ୍ତି ଭାଜନ ହୁଅନ୍ତି । ଭ୍ରମାତ୍ମକ ସନ୍ଦେହ କରି ଅଯଥାରେ ଜଣେ ଭଲଲୋକଙ୍କୁ ଗାଳି ଗୁଲଜ କଲେ ତାହା ବୁମେରାଙ୍ଗ ପରି ନିଜ ଉପରକୁ ଲେଉଟି ଆସେ । ଗାଳିଗୁଲଜର ଶକ୍ତି ଯଦି ଉଦ୍ଦିଷ୍ଟ ବ୍ୟକ୍ତିର ଦେହରେ ଶୋଷିତ ନ ହୁଏ, ତେବେ ତାହା ରାଡର୍ ତରଙ୍ଗ ପରି ଉଦ୍ଦିଷ୍ଟ ବ୍ୟକ୍ତି ଦେହରେ ବାଜି ପ୍ରେରକ ପାଖକୁ ଫେରିଆସେ ଏବଂ ତା'ର ଉପରେ ସବୁ କ୍ଷତି ସାଧନ କରେ । ଏତକ ନ ବୁଝିଲେ ଉଗ୍ର ସାହିତ୍ୟିକଙ୍କ ଗୋଡ ତଳକୁ ତଳକୁ ଯାଉଥିବ ।

କୁଞ୍ଜ ବାବୁଙ୍କ ସହ କଥାବାର୍ତ୍ତାବେଳେ ତାଙ୍କ ଜୀବନର ବହୁ ବର୍ଣ୍ଣାଢ୍ୟ ଛବି ମୁଁ ଦେଖିଥିଲି । ବନ୍ଧୁ ରଘୁନାଥ ମହାପାତ୍ରଙ୍କ ସହ ଯାଇ ତାଙ୍କୁ ଜୀବନୀ ଲେଖିବାକୁ ପ୍ରବର୍ତ୍ତାଇଲୁ । ଅନୁରୋଧ ଏଡାଇ ନ ପାରି ସେ ଲେଖିଲେ ଏବଂ ତାହା ଡଗରରେ ଧାରାବାହିକ ଭାବରେ ପ୍ରକାଶ ପାଇଲା । ପୁସ୍ତକାକାରରେ ତାହାପରେ ପ୍ରକାଶିତ ହୋଇ ଯେତେବେଳେ ଆକାଡେମି ପୁରସ୍କାର ପାଇଲା, ସେତେବେଳେ ତାଙ୍କ ଅପେକ୍ଷା ଆମେ ଅଧିକ ଖୁସି ହୋଇଗଲୁ । ସେ ମଧ୍ୟ ଉତ୍କଳ ସାହିତ୍ୟ ସମାଜକୁ ତାହା ଦାନ କରି-ଦେଲେ ଯାହାକି ଆଗରୁ କେହି କରି ନ ଥିଲେ । ଭବିଷ୍ୟତରେ ମଧ୍ୟ କାହାରି କରିବାର ସମ୍ଭାବନା ଦିଶୁନାହିଁ ।

ଜୀବନର ବହୁ ସମୟ ଦେଇ ବହୁ ପରିଶ୍ରମ କରି ସେ ଯେଉଁ ବିଶାଳ ଲୋକ ସାହିତ୍ୟର ସଙ୍କଳନ କରିଥିଲେ ତାହା ସ୍ୱୀକୃତ ଓ ଚିହ୍ନିତ ହେଲା ଏବଂ ସେ ଲୋକରତ୍ନ ପଦବୀରେ ଭୂଷିତ ହେଲେ । ମୋ ପାଇଁ ସେଇଟା ଜୀବନର ସବୁଠାରୁ ବଡ ଆନନ୍ଦ-ଦାୟକ ଖବର ଥିଲା ।

ଉଚ୍ଚ ଶରୀର, ମନ ଓ ଯଶ ବିଶିଷ୍ଟ କୁଞ୍ଜ ବାବୁ ମୋ ଭଳିଆ ଗୋଟିମା ଉପରୁ କେବେହେଲେ ଦୃଷ୍ଟି ଅପସାରିତ କରିନାହାନ୍ତି, କି ସ୍ନେହ ଦାନରୁ ବଞ୍ଚିତ କରିନାହାନ୍ତି । ସେ ମୋଠାରୁ ମାତ୍ର ବର୍ଷେ ବଡ଼ କିନ୍ତୁ ମୋ ପ୍ରତି ତାଙ୍କର ଗଭୀର ସ୍ନେହ ମାପି ମୁଁ ଅନୁଭବ କରେ ଯେପରି କି ସେ ମୋର ବାପା ଓ ବୁଢା ବାପାଙ୍କୁ ଟପି ଯାଇଛନ୍ତି । ମୋ ମନ ଭିତରେ ଥିବା ତାଙ୍କ ମୂର୍ତ୍ତିର ଦୁଇ ପାଦ ଦେଶରେ ମୋ ଦୁଇ ଆଖିରୁ ଦୁଇ ଟୋପା ଆନନ୍ଦାଶ୍ରୁ ଗଳିପଡେ । ଓଁ ଶାନ୍ତିଃ ଓଁ ଶାନ୍ତିଃ ଓଁ ଶାନ୍ତିଃ ।

* ଡଗର ପ୍ରେସ, ପିଠାପୁର, କଟକ-୧

●●

# ॥ କୁଞ୍ଜବିହାରୀଙ୍କ କାବ୍ୟବ୍ୟକ୍ତିତ୍ୱ ॥

ମହାପାତ୍ର ନୀଳମଣି ସାହୁ

ଏ ଜୀବନରେ ବହୁ ନରନାରୀଙ୍କ ସଂସ୍ପର୍ଶରେ ଆସିଛି—ସମ୍ପର୍କରେ ଆସିଛି—ସମ୍ବନ୍ଧରେ ଆସିଛି । ତା ଫଳରେ ମୋତେ ମିଳିଛି କେତେ ତିକ୍ତ ମଧୁର ଉଷ୍ମ ଓ ଶାନ୍ତ ଅଭିଜ୍ଞତା । ମନୀଷୀ ସମ୍ପର୍କରେ ଆସିବା ଏତେ ବଡ଼ କଥା ନୁହେଁ—କିନ୍ତୁ ମନୀଷୀ ସଙ୍ଗେ ସମ୍ବନ୍ଧାନ୍ୱିତ ହେବା ସମସ୍ତଙ୍କ ଭାଗ୍ୟରେ ସମ୍ଭବ ହୁଏ ନାହିଁ । ମୋ ଭାଗ୍ୟ ଏମିତି ଯେ, ଲୋକଙ୍କ କୋଳାହଳମୁଖର ଜୀବନଟିଏ ମୋତେ ବଂଚିବାକୁ ପଡ଼ୁଛି । ମୋର ସମ୍ପର୍କିତ ବ୍ୟକ୍ତିମାନେ ପୁଣି ବିଭିନ୍ନ ବର୍ଗର, ବିଭିନ୍ନ ସ୍ତରର ଓ ବିଭିନ୍ନ ସ୍ୱଭାବ ପ୍ରକୃତିର । ସେଥିପାଇଁ ମୋତେ କେତେ ଏପଟ ସେପଟ ହେବା'ର ଓ ଉପରତଳ ହେବାର କଷ୍ଟ ସାଧନା ବରଣ କରିବାକୁ ପଡ଼ୁଛି । କେତେ ଲୋକ ମୋର ପିଲାଦିନରୁ ଏ ପର୍ଯ୍ୟନ୍ତ ମୋ ଜୀବନକୁ ଆସି ପୁଣି କୁଆଡ଼େ ଚାଲି ଗଲେଣି । କେତେ ପୁଣି ନୂଆ ଆସିଲେଣି । କେତେ କୁଆଡ଼େ ଖସି ଗଲେଣି । ମୁଁ ମଧ୍ୟ ସେମିତି କେତେ ଲୋକଙ୍କ ଜୀବନରୁ ଖସି ଗଲିଣି । ମୋର ଧାରଣା, ମାନବିକ ସମ୍ପର୍କର ରୀତି ବୋଧେ ଏହିପରି । ଜୀବନର ଗତିପଥରେ ଯେତେବେଳେ ଯେଉଁମାନେ କୌଣସି ପ୍ରକାରେ ସହାୟକ ହୋଇଥାଆନ୍ତି—ଅଥବା ଯେତେବେଳେ ଯେଉଁମାନେ ଅମକୁ ଅନନ୍ଦ ବା ଆଲୋକ ଦେଉଥାନ୍ତି—ବଂଚିବାର ସାର୍ଥକତା ପ୍ରତିପାଦନ କରୁଥାନ୍ତି—ଜୀବନକୁ ମୂଲ୍ୟବାନ କରୁଥାନ୍ତି—ସେତେବେଳେ ସେହିମାନଙ୍କ ସହିତ ଅମେ ସମ୍ପର୍କିତ ହୋଇ ଯାଉ । ତା ପରେ ଜୀବନ ଯେତେବେଳେ ଆଗକୁ ମାଡ଼ିଚାଲେ—ଅଥବା ଆଉ ଗୋଟାଏ ଅଡ଼େ ମୋଡ଼ ନେଇ ମୁହାଁଇ ଯାଏ, ସେତେବେଳେ ସେଇ ପୂର୍ବର ପ୍ରିୟଲୋକମାନେ ଯଦି ଶ୍ରମ ସହିତ ସମତାଳରେ ନ ଯାଇ ପାରନ୍ତି—ତା'ହେଲେ ସେମାନେ ଛାଏଁ ଛାଏଁ ପଛରେ ରହିଯାଆନ୍ତି । ସତକୁ ସତ କିନ୍ତୁ କେହି କାହାକୁ ଠେଲିଦିଏ ନାହିଁ । ଏହି ମାୟା ମମତା ମଧୁର ଗତିଶୀଳ ସଂସାରରେ କେହି ଯଦି ସତକୁସତ କାହା ମାୟାରେ ପଡ଼ିଥାଏ—ତେବେ ସେ ସମ୍ପର୍କ ହୁଏତ ଦିନେ ଏମିତି ଏମିତି କାରଣରୁ ଶିଥିଳ ହୋଇ ଯାଇ ପାରେ—କିନ୍ତୁ ସତକୁସତ ମାୟାଗ୍ରସ୍ତ ଲୋକମାନେ, ପ୍ରୀତି କରୁଥିବା ଲୋକମାନେ, ଭକ୍ତି କରୁଥିବା ଲୋକମାନେ, କେହି କାହାକୁ ଦାରୁଣ ପଣରେ ପଛକୁ ଠେଲି ଦିଅନ୍ତି ନାହିଁ । ଅନେକେ ଏକଦା ପ୍ରିୟଲୋକ ଛାଏଁ ଛାଏଁ ପଛରେ ରହିଯାଆନ୍ତି—ପଛକୁ ପଡ଼ିଯାଆନ୍ତି । କିନ୍ତୁ ଆମ ଜୀବନରେ ଏମିତି ବି ଲୋକ ଅଛନ୍ତି—ଯେଉଁମାନେ ହୁଏତ ଆମ

ସଙ୍ଗେ ସଙ୍ଗେ ଏବେ ମଧ୍ୟ ଆମର ବାଟରେ ଚାଲୁନାହାନ୍ତି—କିନ୍ତୁ ଦିନେ ଯେବେ ସେମାନେ ଆମ ହୃଦୟ ଭିତରକୁ କବାଟ ଖୋଲି ପଶି ଆସିଥିଲେ, ଆପଣାର ସୁଗୁଣ ଗୌରବରେ, ଆପଣାର ସ୍ନେହ ପ୍ରୀତି ବାତ୍ସଲ୍ୟରେ, ଆପଣାର ପ୍ରତିଷ୍ଠା ମହିମାରେ, ସେମାନେ ଆମଠାରୁ ପ୍ରେମ ଓ ଭକ୍ତିର ଅର୍ଘ୍ୟ ଛାଏଁ ଗ୍ରୁଏଁ ଲାଭ କରିଥିଲେ—ସେହିଭଳି ବ୍ୟକ୍ତିମାନଙ୍କ ପ୍ରତି ଆମର ମନ ଶେଷ ପର୍ଯ୍ୟନ୍ତ ସେହିପରି ଆବେଗ ପ୍ରବଣ ଥାଏ—ଭକ୍ତି ପ୍ରବଣ ଥାଏ—ପ୍ରୀତିପ୍ରବଣ ବି ଥାଏ। ନାନାଦି କାରଣରୁ କୃତଜ୍ଞତାବୋଧର ଭାବ ଆବେଗରେ ଜୁଡୁବୁଡ଼ି ହୋଇ ରହିଥାଏ।

ଡକ୍ଟର କୁଞ୍ଜବିହାରୀ ଦାଶ ମୋ ଜୀବନରେ ସେହିପରି ଜଣେ ପରମ ଶ୍ରଦ୍ଧେୟ ବ୍ୟକ୍ତି—ନିରନ୍ତର ପୂଜ୍ୟବ୍ୟକ୍ତି—ନିରନ୍ତର ପ୍ରୀତିଆବେଗରେ ସମ୍ବୃଦ୍ଧିତ ବ୍ୟକ୍ତି। ମୋ ଅନ୍ତରରେ ସେ ତାଙ୍କର ଜାଜ୍ଜ୍ୱଲ୍ୟମାନ ମହିମାରେ ଯେଉଁ ଆସନଟିରେ ଖୁବ୍ ଦୃଢ଼ ଭାବରେ ବସିରହିଛନ୍ତି—ସେ ଆସନଟି କନକାସନ। ମୋ ଅନ୍ତରରେ ବହୁବିଧ ଆସନ ପଡ଼ିଛି। କିନ୍ତୁ ସୁବର୍ଣ୍ଣାସନର ସଂଖ୍ୟା ଅଙ୍ଗୁଳିମେୟ। ମୋ ଅନ୍ତରର ଅନେକ ଆସନରେ ବହୁ ଗୁଣୀ ମାନୀ ଓ ପ୍ରିୟ ନରନାରୀ ସ୍ୱକୀୟ ମର୍ଯ୍ୟାଦାନୁସାରେ ଆସୀନ ରହିଛନ୍ତି। କିନ୍ତୁ ସୁନାର ଆସନରେ ବସିଛନ୍ତି ଖୁବ୍ ମୁଷ୍ଟିମେୟ ଲୋକ। ସ୍ୱର୍ଣ୍ଣାସୀନଙ୍କ ମଧ୍ୟରେ କୁଞ୍ଜବିହାରୀ ଦାଶ ଅନ୍ୟତମ।

ବିଭିନ୍ନ ନରନାରୀଙ୍କ ସହିତ ମୋ ସଂପର୍କର ସୂତ୍ର, ମାଧ୍ୟମ ଓ ଅବଲମ୍ବନ ପୃଥକ୍। କୁଞ୍ଜବାବୁଙ୍କ ସହିତ ମୋ ସମ୍ପର୍କର ମାଧ୍ୟମ ହେଲା ସାହିତ୍ୟ—ନା,ନା, ଓଡ଼ିଆ ସାହିତ୍ୟ। ସେହି ସାହିତ୍ୟ ସୂତ୍ରରେ ପୁଣି ଓଡ଼ିଆଜାତି—ଓଡ଼ିଆଭାଷା—ଓଡ଼ିଆ ସଂସ୍କୃତି, ସେଇ ସୂତ୍ରରେ ପୁଣି ଓଡ଼ିଆ ପୁରପଲ୍ଲୀ—ଓଡ଼ିଶାର ନଈନାଳ—ହ୍ରଦ ସମୁଦ୍ର ବଣ ପାହାଡ଼—ପ୍ରାନ୍ତର, ସେଇ ସୂତ୍ରରେ ପୁଣି ଓଡ଼ିଶାର ଷଡ଼ଋତୁ—ବାର ମାସରେ ତେର ପର୍ବ—ତେପନ ପର୍ବାଣି। ସେଇ ସୂତ୍ରରେ ପୁଣି ଓଡ଼ିଆଙ୍କ କାକରା, ଆରିସା, ସାଇଶାଗ କାନଚା ଅମାଲୁ, କାଞ୍ଜି ଖୁଦୁପିଠା, ବେସର,ମହୁର। ସେଇ ସୂତ୍ରରେ ପୁଣି ଓଡ଼ିଶାର ଶିଆଳ ଚଧୁଆ, କୋକ ଗୁଡ଼ୁଖାଇ, ନେଉଳ ବଣଭୁଆ; ଓଧ ଆଉ ଶାଳିଆ ପତନି—ସେଇ ସୂତ୍ରରେ ପୁଣି ଓଡ଼ିଶାର ବଗବଗୁଲି, କୁଆ କୋଇଲି ଗଙ୍ଗେଇ ଚଳ ବଣି ଗୁହକାଳିକା। ସେଇ ସୂତ୍ରରେ ପୁଣି ଜଗନ୍ନାଥେ, ଲିଙ୍ଗରାଜେ, ଚନ୍ଦ୍ରଭାଗା, ନୃସିଂହନାଥ, ହରିଶଂକର, ଶାରଳା, ମଙ୍ଗଳା, ବିରଜା, ବିମଳା, ସମଲେଶ୍ୱରୀ ଆଉ ଭଗବତୀ। ସେଇ ସୂତ୍ରରେ ପୁଣି ଓଡ଼ିଶାର ଅଗ୍ନାଅଗ୍ନି ବନସ୍ତରେ ରଜାପୁଅ, ମନ୍ତ୍ରୀପୁଅ, ସାଧବପୁଅ ଓ କୋଟୁଆଳପୁଅ କଂବା ପାଟୁଆ, ଦଣ୍ଡନାଟ, ଚଇତିଘୋଡ଼ା ଓ ବାଉଁଶରାଣୀ—ଏମିତି ଏମିତି କେତେ ସୂତ୍ରରେ ଓଡ଼ିଶାର ଦେହସଂଗେ, ମନସଂଗେ ଆଉ ଆତ୍ମାସଙ୍ଗେ କୁଞ୍ଜବାବୁ ଭକ୍ତିଡୋରରେ ବନ୍ଧା। ଆଉ ମୁଁ ମଧ୍ୟ ସେଇ ଡୋରରେ ବନ୍ଧା।

କୁଞ୍ଜବାବୁ ଆଉ ମୁଁ ଏହି ପୂର୍ବରୁହିଁ ଏକାଠି ବନ୍ଧାବନ୍ଧ—କୁଣ୍ଟି ଆକୁଣ୍ଟି ହୋଇଯାଉଁ ଜାଉଁଳା, ଜାଆଁଳା ଭାଇ ।

ନା-ନା- ଜାଆଁଳା ଭାଇ ନୁହଁ । ତାଙ୍କୁ ଦେଖିଲେ ମନେ ହୁଏ ସ୍ନେହମୋର ଏକା ମାଆ ପେଟର ଭାଇ । କିନ୍ତୁ ବଡ଼ ଭାଇ —ଖୁବ୍ ବଡ଼ଭାଇ, ଭକ୍ତିଗତପ୍ରାଣ ରାମଙ୍କ ଭଳି-ଖାଲି ବୟସରେ ନୁହେଁ-ଗୁଣରେ ବଡ଼,ବଳରେ ବଡ଼, ସ୍ନେହ ବାତ୍ସଲ୍ୟରେ ତତ୍-ତ୍ୟାଗରେ ବଡ଼-ଉଚ୍ଚତାରେ ବଡ଼-ସାଧନାରେ ବଡ଼-ସିଦ୍ଧିରେ ବଡ଼, ସବୁଥିରେ ବଡ଼ । ତାଙ୍କର ବିଶାଳ ଆକୃତି ପାଖରେ ଠିଆହେଲେ ଭାରି ସାନ ସାନ ଲାଗେ । କିନ୍ତୁ ଭାରି ଭଲ ଲାଗେ । ସାନ ଲାଗେ ବୋଲି ପାନଲାଗେ ନାହିଁ,ହୀନଲାଗେ ନାହିଁ-ବରଂ ଖୁବ୍ ଐଶ୍ୱର୍ଯ୍ୟବନ୍ତ ଲାଗେ । ପ୍ରାକ୍ରମବନ୍ତ ଲାଗେ । ସେ ସ୍ନେହ ବାତ୍ସଲ୍ୟରେ କାନ୍ଧରେ ହାତ ପକାଇ ଦେଲେ ମନେହୁଏ ସେ ସେହିକ୍ଷଣି ଆପଣା ଅର୍ଜିତ ଐଶ୍ୱର୍ଯ୍ୟ ସାଙ୍ଗେ ସାଙ୍ଗେ ଭାଗଭାଗ ଦେଇଦେଲେ । ଆପଣାଅର୍ଜିତ ପ୍ରାକ୍ରମରୁ ସାଙ୍ଗେ ସାଙ୍ଗେ ସାନଭାଇଙ୍କୁ କିଛି ଦାନ ଦେଲେ । ବଢେଇ କରି କହୁ ନାହିଁ—ଆମ କାଳରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତାଙ୍କଭଳି ସତକ୍ରସତ ଏମିତି ଜଣେ କଲ୍ୟାଣକାମୀ ଭାତୃବତ୍ସଳ ବଡଭାଇ ଅଉ କିଏ ଅଛନ୍ତି କେହି କହୁତ ? ଏଭଳି ସ୍ନେହ ମଧୁର ବଚନ ମୋ କାନ ଆଉ କେଉଁ ବୟସ୍କଙ୍କ ତୁଣ୍ଡରୁ ଶୁଣିନାହିଁ । ସ୍ନେହଭଳି ସ୍ନେହସ୍ନିଗ୍ଧ କଲ୍ୟାଣମେଦୁର ଦୃଷ୍ଟିପାତ ତାଙ୍କ ଛଡ଼ା ଆଉ କେଉଁ ବୟସ୍କଙ୍କ ଆଖିରୁ ମୋ ଉପରେ ଝରିପଡ଼ିବାର ମୁଁ ଅନୁଭବ କରିନାହିଁ । ତାଙ୍କ କଥାରେ ଖାଲି ମଧୁରତା ନଥାଏ, ଆଶ୍ୱାସନା ବା ସହାନୁଭୂତି ନଥାଏ, ତାଙ୍କ କଥାରେ ଥାଏ ଗଭୀର ପ୍ରତ୍ୟୟ ଓ ଭରସା ("ଆରେ ଯାଃ କିଛି ଚିନ୍ତା କରନା, ମୁଁ ଅଛି,ମୁଁ ବଂଚିଥିବାଯାଏ ତୋର ଚିନ୍ତା କଣ ? ଅଭାବ କଣ ? ମୋ ଅର୍ଜିତ ସମ୍ପତ୍ତି ଆଉ କିଏ ଖାଇବକି ? ସ୍ନେହ ଯାହା ସବୁ ଦେଖୁଛୁ ସବୁ ତୋର ପାଇଁରେ ମୋ ଲକ୍ଷ୍ମଣ ସମାନ ଭାଇ" ।

ସତକହୁଛି ଏମିତି ରାମାୟଣୀ ବାକ୍ୟ କେବଳ କୁଞ୍ଜବାବୁଙ୍କ ପାଟିରୁହିଁ ବାହାରି ଥାଏ । ଆଉ କାହା ପାଟିରୁ ମୁଁ ଏ ଯାବତ ଏମନ୍ତ ଦୁର୍ଲଭ କର୍ଣ୍ଣମୋହନ ପଦ ମୁଁ ଶୁଣିନାହିଁ । ଯେଉଁମାନେ କୁଞ୍ଜବାବୁଙ୍କ ପାରିବାରିକ ଜୀବନର ଖବର ରଖିଛନ୍ତି— ଯେଉଁମାନେ ତାଙ୍କର ବେଦନା ମଧୁର ଅମୃତବାଣୀ ପଢିଛନ୍ତି, ସେମାନେ ଜାଣିଥିବେ- କୁଞ୍ଜବାବୁ ଓ ତାଙ୍କର ସ୍ୱର୍ଗତ ବଡ଼ଭାଇଙ୍କ ଭିତରେ କିପରି ଭାତୃଭାବ ଥିଲି ଏବଂ ତାଙ୍କର ଅମେରିକା ପ୍ରବାସୀ ପ୍ରଖ୍ୟାତଯଶା ଡ଼ାକ୍ତର ସାନଭାଇ ଉଦୟନାଥଙ୍କ ପ୍ରତି ତାଙ୍କର ଯେ ଗଭୀର ଭାତୃବାତ୍ସଲ୍ୟ ଯାହା ସ୍ମରଣ କଲେବି ଆଖିକୁ ଲୁହ ଆସିଯାଏ । କୁଞ୍ଜବାବୁ ହେଲେ ଶ୍ରୀରାମଚନ୍ଦ୍ରଙ୍କ ଚେତନାର ବ୍ୟକ୍ତିତ୍ୱ । ପାରିବାରିକ କ୍ଷେତ୍ରରେ ଯାହା ସାହିତ୍ୟ କ୍ଷେତ୍ରରେ ମଧ୍ୟ ତାହା । ତାଙ୍କ ପାଦର କଠଉକୁ ମସ୍ତକରେ ଧାରଣ କରି କୃତାର୍ଥ ହେବାର ଲୋଭକୁ ସମ୍ବରଣ କରିପାରେ ନାହିଁ ।

ଏହି ପ୍ରସଙ୍ଗରେ ମୋର ବହୁଦିନର କଥା ମନେ ପଡୁଛି । ୧୯୫୨ ମସିହା ବେଳର କଥା । ମୁଁ ରେଭେନ୍ସା କଲେଜରେ "ଓଡ଼ିଆ ସାହିତ୍ୟରେ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରଭାବ ଉପରେ ଗବେଷଣା କରୁଥିଲି । ଦଶମାସ ଗବେଷଣା କଲି ପରେ ନାନାଦି ପ୍ରତିକୂଳତାରେ ପଡ଼ି ଗବେଷଣା ଛାଡ଼ି ୧୯୫୩ ମସିହାରେ ଭଦ୍ରକ କଲେଜରେ ଅଧ୍ୟାପନା କାର୍ଯ୍ୟରେ ଯୋଗ ଦେଲି । ୧୯୫୬ ମସିହା ହେବ ବୋଧେ । କୁଞ୍ଜ ବାବୁ ଥାନ୍ତି ଶାନ୍ତିନିକେତନରେ ମୁଖ୍ୟ ଓଡ଼ିଆ ଅଧ୍ୟାପକ । ସେତେବେଳେ ମୋର ପୁନଶ୍ଚ ଗବେଷଣା କରିବାକୁ ମନ ହେଲା । କିନ୍ତୁ ବିଷୟଟି ବାଛିଲି-"ଓଡ଼ିଶାର ଲୌକିକ ଧର୍ମ ଧାରଣାର ପରମ୍ପରା" । ସେ ସମ୍ବନ୍ଧ କିଛି ସଂଗ୍ରହ ଓ ପଢ଼ାପଢ଼ି ମଧ୍ୟ କରୁଥିଲି । ଚିଠି ଲେଖିଲି କୁଞ୍ଜବାବୁଙ୍କୁ । ଅନୁରୋଧ କଲି ଗବେଷଣାରେ ମୋର ଗାଇଡ୍ ହେବାକୁ । ବିଚିତ୍ର, କଥା-ସେ ମୋ ପାଖକୁ ସ୍ନେହରେ ଲେଖିଲେ —"ନୀଳମଣି, ଗବେଷଣା ଫବେଷଣାରେ ବୃଥା ମାତ ନାହିଁ । ତୁମେ ତୁମର ସୃଜନଶୀଳ ସାହିତ୍ୟରେ ହିଁ ସାଧନା ଅବ୍ୟାହତ ରଖ । ତୁମର ସେଇ ପ୍ରତିଭା ସମ୍ବନ୍ଧରେ ମୁଁ ନିଶ୍ଚିନ୍ତ । ମନେରଖ, ଦିନେ ତୁମର ଲେଖା ଉପରେ ଅନ୍ୟମାନେ ଗବେଷଣା କରି ଡକ୍ଟରେଟ ପାଇବେ । ଗବେଷଣା କି ଗୋଟାଏ ବଡ଼କଥା"?

ଚିଠି ପଢ଼ି ଆଶ୍ଚର୍ଯ୍ୟ ହେଲି । ତାଙ୍କ ଚିଠିରେ କି ଶକ୍ତି ଥିଲା କେଜାଣି, କୋଉ ଭାଗ୍ୟବିଧାତାର ନିର୍ଦ୍ଦେଶ ଥିଲା କେଜାଣି, ମୁଁ ସେତିକିରେ ଭୁଲିଗଲି ଓ ଗବେଷଣା ପ୍ରସଙ୍ଗ ଚିରଦିନ ପାଇଁ ଭୁଲିଗଲି ଏବଂ ଗଳ୍ପ, ଉପନ୍ୟାସ, ରମ୍ୟରଚନାଦି ଲେଖିବାରେ ଲାଗିଗଲି । ଆଜି କିନ୍ତୁ ଭାବୁଛି, କୁଞ୍ଜବାବୁ ସତେ ମତେ ସେଦିନ ଗବେଷଣା କରିବାକୁ ମନାକଲେ କାହିଁକି ? ମନା କରି ମୋର ଭଲ କଲେ ନା ମନ୍ଦ କଲେ ? ଭଲ ହେଉ କି ମନ୍ଦ ହେଉ, ତାଙ୍କ ଚିଠିରେ ମୋ ଜୀବନବିଧାତାର ନିର୍ଦ୍ଦେଶ ସେଦିନ ଲିପିତ ହୋଇଥିଲା । ଯଦି ସେଦିନ ମୁଁ ଗବେଷଣାରେ ମାତି ଥାନ୍ତି- ତେବେ ଜୀବନଯାକ ମୁଁ କେବଳ ସେଇ ସବୁ କଥା ହିଁ ଲେଖୁଥାନ୍ତି । ଏତଦ୍ ସତ୍ତ୍ୱେ ବି ମୋ ହାତରୁ ଆଠଖଣ୍ଡି ପ୍ରବନ୍ଧ ଓ ରମ୍ୟରଚନା ବହି ବାହାରିଛି ଓ ଶହ ଶହ ସାମ୍ବାଦିକ ପ୍ରବନ୍ଧ ବି ବାହାରିଛି । ବହୁ ସମାଲୋଚନା ପ୍ରବନ୍ଧ ବି ବାହାରିଛି । ଯଦି ସୃଜନଶୀଳ ଲେଖା ଛାଡ଼ି ଗବେଷଣାରେ ମାତିଥାନ୍ତି- ତା ହେଲେ ମୁଁ ଖୁବ୍ ପଣ୍ଡିତ ହୋଇଥାନ୍ତି । ମୋ ଭିତରେ ସେ ପଣ୍ଡିତ ପ୍ରବଣତା ବି ଅଛି । ମୋ ହାତରୁ ଆଉ "ତାମସୀ ରାଧା", "ଅନ୍ୟରୂପ ରୂପାନ୍ତର" କି "ଅଭିଶପ୍ତ ଗନ୍ଧର୍ବ" ମାନେ ବାହାରି ନ ଥାନ୍ତେ । କିନ୍ତୁ କୁଞ୍ଜବାବୁ ନିଜେ ମଧ୍ୟ ଜଣେ ପ୍ରତିଭାବାନ୍ ସୃଜନଶୀଳ ଲେଖକ ଏବଂ ତା ସତ୍ତ୍ୱେ ବି ଗବେଷକ, ପିଏଚ୍ ଡ଼ି ଡ଼କ୍ଟରେଟ୍ ଉପାଧିଧାରୀ । ମୁଁ ବି କଣ ଏ ଦୁଇଟି କାମ କରିପାରି ନଥା'ନ୍ତି ? କେଜାଣି ? କୁଞ୍ଜବାବୁଙ୍କୁ ହୁଏତ ସେ କଥା ଜଣାଥିଲା । କୁଞ୍ଜବାବୁ ନିଜେ କିନ୍ତୁ ଜୟଦେବଙ୍କ ଭାଷାରେ ଜଣେ "ପଣ୍ଡିତକବି" ।

କେବଳ ସେହି କଥାରେ ନୁହେଁ- ଜୀବନର ବହୁ କ୍ଷେତ୍ରରେ ସେ ମୋର ବଡ଼ ଭାଇ ପରି ମୋତେ ସ୍ନେହ ଆଦର ଆଶୀର୍ବାଦ କରିଛନ୍ତି । କିନ୍ତୁ ମୁଁ କେବଳ ତାଙ୍କୁ ବଡ଼ ଭାଇ ରୂପେ ଦେଖିନାହିଁ, ଦେଖି ଆସିଛି, ମୋର ସାହିତ୍ୟ ସାଧନାର ସମ୍ମାନନୀୟ ଗୁରୁ ଆଉ ଅଧ୍ୟାପକ ରୂପରେ । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତାଙ୍କ ଭଳି ପଣ୍ଡିତ ଓ ଅଧ୍ୟାପକ ଖୁବ୍ କମ୍ ଅଛନ୍ତି । ଅଧ୍ୟାପନା ତାଙ୍କର ଏକ ବୃତ୍ତି ନଥିଲା, ପ୍ରକୃତରେ ସେ ହିଁ ହୋଇ ଥିଲେ ଜଣେ ଅଧ୍ୟାପକ । ଅଧ୍ୟାପନାରୁ ଅବ୍ୟାହତି ନେଲାପରେ ବି ତାଙ୍କର ବହୁ ସମୟ କଟେ ବିଭିନ୍ନ ଗ୍ରନ୍ଥ ଓ ପତ୍ର ପତ୍ରିକା ଅଧ୍ୟୟନରେ ଏବଂ ଲେଖାଲେଖିରେ ।

କିନ୍ତୁ ସେ କେବଳ ଜଣେ ଗ୍ରନ୍ଥ ବିଳାସୀ ବା ଭାବ-ବିଳାସୀ ସାହିତ୍ୟିକ ନୁହନ୍ତି । ସମାଜର ଉନ୍ନତି ପାଇଁ କଲ୍ୟାଣ ପାଇଁ ତାଙ୍କର ପ୍ରାଣ କାନ୍ଦୁଥାଏ । ସେ ଦୁଃଖୀ ଲୋକଟିଏ ଦେଖିଲେ ସହ୍ୟକରି ପାରନ୍ତି ନାହିଁ । ଗାଁକୁ ସେ ପ୍ରାଣ ଦେଇ ଭଲ ପାନ୍ତି । ତାଙ୍କ ନିଜ ଗ୍ରାମର ସମୁନ୍ନତି ଲାଗି ଓ କଲ୍ୟାଣ ଲାଗି ସେ ଓ ତାଙ୍କ ସାନ ଭାଇ ବହୁ କାର୍ଯ୍ୟ ଅଦ୍ୟାବଧି କରି ଚାଲିଛନ୍ତି । ଗାଁରେ ସ୍କୁଲ ଓ ଡାକ୍ତରଖାନା ସେ ନିଜେ ବସାଇଛନ୍ତି ଓ ସେହି କାର୍ଯ୍ୟରେ ତାଙ୍କୁ ବହୁ ଶ୍ରମ କରିବାକୁ ପଡ଼ିଛି । ଗତବର୍ଷ ଗ୍ରୀଷ୍ମକାଳରେ ଅତ୍ୟଧିକ ପରିଶ୍ରମ ଫଳରେ ତାଙ୍କୁ ମାରାତ୍ମକ ରୋଗରେ ପଡ଼ି ଡାକ୍ତରଖାନାରେ ଶଯ୍ୟାଶାୟୀ ହେବାକୁ ପଡ଼ିଥିଲା । ତାଙ୍କ ଜୀବନରେ ଜ୍ଞାନ, ପ୍ରେମ ଓ କର୍ମର ଚମତ୍କାର ସମନ୍ୱୟ ଦେଖିବାକୁ ମିଳେ । ବହୁ ସାହିତ୍ୟ, ସାଂସ୍କୃତିକ ଅନୁଷ୍ଠାନରେ ତାଙ୍କର ସଂଗଠନ ଦକ୍ଷତା ଓ କର୍ମ କୌଶଳର ଉଦାହରଣ ମିଳିସାରିଛି ।

ପ୍ରକୃତରେ ସେ ଶାନ୍ତ ପାଟହ୍ରାଣଟିଏ ଭଳି । ସେହିଭଳି ରଜକାନ୍ତ, ମୃଦୁଂଟନୁର, ମହିମାମୟ, ପ୍ରଶାନ୍ତ ସ୍ୱଭାବ ଓ ମାଧୁର୍ଯ୍ୟ ମଣ୍ଡିତ । କ୍ଷମା, ସହିଷ୍ଣୁତା, ଉଦାରଭାବ, ସତ୍ୟ ନିଷ୍ଠା, ନ୍ୟାୟ ପରାୟଣତା, କୃତଜ୍ଞତାବୋଧ, ସୌକୁମାର୍ଯ୍ୟ, ସୁରୁଚି, ସାରଲ୍ୟ, ଓ ଅମାୟିକତାରେ କୃଷ୍ଣବାବୁ ଓଡ଼ିଶାର ସ୍ୱଳ୍ପସଂଖ୍ୟକ ସଜ୍ଜନଗୋଷ୍ଠୀରେ ଅନ୍ୟତମ ସଜ୍ଜନ ଶିରୋମଣି । ତାଙ୍କ ଭଳି ବିଦଗ୍ଧ ରସିକ ବ୍ୟକ୍ତି ଆମ ଭିତରେ ବିରଳ । ସର୍ବଦା ହାସପରିହାସମୟତା ଭିତରେ ବି ତାଙ୍କ ହୃଦୟର ଅନୁକମ୍ପା ଶାରଦୀୟ ରଜାରକମଳର ଶିଶିର ବିନ୍ଦୁ ଭଳି ଅନ୍ୟ ଉପରେ ଝରି ପଡୁଥାଏ ।

ତାଙ୍କୁ ଯୋଉଦିନ ପ୍ରଥମ କରି ଦେଖିଥିଲି- ତାର ବହୁପୂର୍ବରୁ ମୁଁ ତାଙ୍କୁ ଜାଣିଥିଲି ଓ ମନେ ମନେ ତାଙ୍କର ଭାବରୂପ ଗଢ଼ି ତାଙ୍କୁ ଭଲ ପାଇ ସାରିଥିଲି । ଆମେ ସବୁ ପ୍ରଥମେ ପ୍ରଥମେ ତାଙ୍କର କବିତା ପୁସ୍ତକ ପଢ଼ୁଥିଲୁ । ପ୍ରଭାତୀ, ପାଷାଣେ ଚରଣେ ରକ୍ତ, ଝୁଞ୍ଜୁମା, ବାଗ୍ରା, କଂକାଳର ଲୁହ, ଗୃହିଣୀ ଇତ୍ୟାଦି କବିତାସଂକଳନ ଗୁଡ଼ିକ ସେକାଳେ ଖୁବ୍ ନାମ କରିଥିଲେ । କିନ୍ତୁ ତାଙ୍କ ପ୍ରତି ଆମର ଆଗ୍ରହ ବଢ଼ିଗଲା

ସେତେବେଳେ ଆମେ ଜାଣିଲୁ ଯେ ସେ ସାରା ଓଡ଼ିଶାର ଗାଁ ଗଣ୍ଡାରୁ ଗ୍ରାମ୍ୟ ଗୀତ ଓ କାହାଣୀ ଗୁଡ଼ିକ ସଂଗ୍ରହ କରିବାରେ ଲାଗିପଡ଼ିଛନ୍ତି । ଦୀର୍ଘ କୋଡ଼ିଏ ବର୍ଷ କାଳ ସେ ଏଇ କାମରେ ଲାଗି ରହିଲେ । ସେଥିପାଇଁ ସେ କି ଯେ କଷ୍ଟ ଭୋଗିଛନ୍ତି ତାହା ତାଙ୍କ ନିଜ ମୁହଁରୁ ଶୁଣିଛି- ଏବଂ ଅପରଙ୍କ ମୁହଁରୁ ବି ଶୁଣିଛି । ଓଡ଼ିଶା ସରକାରଙ୍କ ପି.ଡ଼ି ଡିପାର୍ଟମେଣ୍ଟରେ ଅଣ୍ଡର ସେକ୍ରେଟାରୀ ଓ ସ୍ପେଶାଲ୍ ଅଫିସର ମୋର ପିତୃ ଶ୍ରୀ ଜଗନ୍ନାଥ ପଣ୍ଡାଙ୍କ ମୁହଁରୁ ଶୁଣିଛି- ଥରେ କୁଞ୍ଜବାବୁ ତାଙ୍କୁ ଧରି କନିକା ଅଞ୍ଚଳକୁ ଯାଇଥିଲେ ଏହି ସଂଗ୍ରହ କାର୍ଯ୍ୟରେ । ବୈତରଣୀ ନଦୀରେ ଡଙ୍ଗାରେ ଗଲାବେଳେ ଅକସ୍ମାତ୍ ଘୋର ବାତ୍ୟାର ସମ୍ମୁଖୀନ ହୋଇ ସେ ମରଣ ହାତରୁ ଶ୍ରୀ ଜଗନ୍ନାଥଙ୍କ କୃପାରୁ କିପରି ସେ ଥରକ ପାଇଁ ବଞ୍ଚିଗଲେ-ସେ କଥା ଶୁଣି ହୃତ୍କମ୍ପ ହୋଇଥିଲା ।

ଆଜିକାଲି ଅଧ୍ୟାପକ ମାନଙ୍କ ପାଇଁ ଗବେଷଣା ହୋଇଛି ବୃତ୍ତିରକ୍ଷକ ଓ ସଂରକ୍ଷକ ଏକ ବାଧ୍ୟତାମୂଳକ କର୍ତ୍ତବ୍ୟ ମାତ୍ର । ପିଏଚ୍.ଡ଼ି ନଥିଲେ ଚାକିରିରେ ପ୍ରମୋସନ୍ ମିଳିବ ନାହିଁ । ସେଥିପାଇଁ ଯେ କୌଣସି ଗୋଟାଏ ବିଷୟ ନେଇ, ଯାହି ତାହି କିଛି ଲେଖିଦେଇ ଡକ୍ଟରେଟ୍ ଡିଗ୍ରୀଟାଏ ହାସଲ କରିବା ହେଲା ଅଧିକାଂଶଙ୍କର ମତଲବ । ଗବେଷଣାର ବିଷୟ ବସ୍ତୁ ପ୍ରତି ସମସ୍ତଙ୍କର ଅନୁରାଗ ନ ଥାଏ କି ସରାଗ ନଥାଏ । କିନ୍ତୁ କୁଞ୍ଜବାବୁ କୌଣସି ମତଲବ ରଖି ଗବେଷଣା କରୁନଥିଲେ । ଓଡ଼ିଶାର ଗ୍ରାମ୍ୟ ସଂସ୍କୃତିକୁ ସେ ହୃଦୟ ଭରି ଭଲ ପାଉଥିଲେ । ତା'ରି ଭିତରେ ସେ ଦେଖିଥିଲେ ପୁରାଣ ଭାରତବର୍ଷର ଜାତୀୟ ଆତ୍ମାକୁ । ଓଡ଼ିଆ ଜାତିର ଆତ୍ମକେନ୍ଦ୍ରକୁ ସେ ଆବିଷ୍କାର କରିଥିଲେ ଓଡ଼ିଶାର ଗାଁ ଗହଳରେ ବାସ କରୁଥିବା ଲକ୍ଷଲକ୍ଷ କୃଷକ, ଶ୍ରମଜୀବୀ ଅନାବିଳ ହୃଦୟ ନିଃସୃତ ଗୀତ, ଗାଥା ଓ କଥା କାହାଣୀ ଭିତରେ । ସେଇ ଜାତୀୟ ଆତ୍ମା ସଙ୍ଗେ ତାଙ୍କର ଥିଲା ନିବିଡ଼ ପରିଚୟ, ଘନିଷ୍ଠ ସଂପର୍କ ଓ ଜଡ଼ା ଜଡ଼ି ପ୍ରାଣର ସମ୍ବନ୍ଧ । ଏଇ ଭଲ ପାଇବାର ସମ୍ବେଗ ନେଇ ସେ ଦୀର୍ଘ କୋଡ଼ିଏ ବର୍ଷ କାଳ ହଜାର ହଜାର ଲୋକଗୀତ ଓ ଲୋକବାଣୀ ସଂଗ୍ରହ କରିବାରେ ଓ ସେଗୁଡ଼ିକୁ ବର୍ଗୀକରଣ କରିବାରେ ନିଜକୁ ଧ୍ୟାନମଗ୍ନ ଋଷି ଭଳି ନିୟୋଜିତ ରଖିଥିଲେ । ସେଗୁଡ଼ିକର ସାହିତ୍ୟିକ ଓ ନାନ୍ଦନିକ ମୂଲ୍ୟ ନିର୍ଦ୍ଧାରଣ କରିବାଲାଗି ସେ ସେଗୁଡ଼ିକୁ ଅଧ୍ୟୟନ କରିଥିଲେ । ତା'ଉପରେ ସନ୍ଦର୍ଭ ରଚନାକରି ଡକ୍ଟର ଉପାଧି ପାଇଥିଲେ । ପରବର୍ତ୍ତୀକାଳରେ ତାଙ୍କର ଏହି ବିପୁଳ କୀର୍ତ୍ତି ତାଙ୍କୁ ଲୋକରତ୍ନ ଉପାଧିରେ ଭୂଷିତ କରାଇଲା । ଏହି ସଂଗ୍ରହ କାଳରେ ସେ ଓଡ଼ିଶାର ବହୁ ଲୋକଙ୍କ ସହିତ ହୃଦୟ ବିନିମୟ କରିଛନ୍ତି । ହରିଜନ ସାହିରୁ ବ୍ରାହ୍ମଣ ଶାସନ ପର୍ଯ୍ୟନ୍ତ ସର୍ବତ୍ର ତାଙ୍କର ଥିଲା ଅବାଧ ଗତି-ସହଜ ମିଳାମିଶା ଓ ଖବର ଦିଆନିଆ । ତା ନହେଲେ ଗାଁର ବୁଢ଼ୀଟିଏ ବା ଝିଅଟିଏ -ଶାଶୁଟିଏ ବା ବୋହୂଟିଏ କୃଷକଟିଏ ବା ଗଉଡ଼ିଆଟିଏ -ପାଟୁଆଟିଏ ବା ଚକୁଳିଆପଣ୍ଡାଟିଏ -ତାଙ୍କ ସମ୍ମୁଖସ୍ଥ ହୋଇ ତାଙ୍କର ସନ୍ନିଧସ୍ଥ ହୋଇ ତାଙ୍କ କାନରେ ତାଙ୍କ ହୃଦରେ କଡ଼ିଗୁଡ଼ିକୁ ବଜାଇ ଶୁଣାଇ

ନଥାନ୍ତା । ହଜାର ହଜାର ବର୍ଷଧରି ସେହିସବୁ ଗୀତ ବା କାହାଣୀ ଗୁଡ଼ିକ ବଣର ଫୁଲ ଭଳି ଏଠି ସେଠି ଫୁଟି ରହିଥିଲେ । କୁଞ୍ଜବାବୁ ଜଣେ ବିଧାତା ପ୍ରେରିତ ହିତବ୍ୟ ମାଲୀଟିଏ ଭଳି ସେଗୁଡ଼ିକୁ ଚୟନ କରି ଏବେସଗୁଡ଼ିଏ ମାଳା ଗୁନ୍ଥନ କରି ଉତ୍କଳ ଭାରତୀ ମା ଶାରଳାଙ୍କ ପାଦତଳେ ସମର୍ପଣ କରିଦେଲେ । ସେଥିପାଇଁ କଣ ମା ଶାରଳାଙ୍କରି ତାଙ୍କପ୍ରତି ଏତେ କୃପା । ମୁଁ ଯେତେବେଳେ ତାଙ୍କର ସ୍ପର୍ଶ ପାଏ ସେଥିରୁ ଅନୁଭବ କରେ ଏକ ସାରସ୍ୱତ ସ୍ପନ୍ଦନ । ମୋ ଭିତରେ ଚସ୍ତୁଜଗତର ସବୁ ଡାଙ୍ଗବନ୍ଧ ଭାଙ୍ଗି ଯାଇ ଭାବନଦୀ ଦୁଇକୂଳ ବୁଡ଼ାଇ ଉଛୁଳି ଉଠେ । ଓଡ଼ିଶାରେ ବର୍ତ୍ତମାନ ଖୁବ୍ କମ୍ ସାହିତ୍ୟିକ ଅଛନ୍ତି-ଯେଉଁମାନେ ଛୁଇଁଦେଲେ ମାତ୍ରେ ତୁମ ଦେହରେ ତଡ଼ିତ୍ ବେଗରେ ସାରସ୍ୱତ ଭାବାବେଗମାନେ ପ୍ରସରି ଯିବେ ।

ତାଙ୍କ କୀର୍ତ୍ତିର ଗୁରୁତ୍ୱ ସମ୍ବନ୍ଧେ ଆଉ ଗୋଟିଏ କଥା ଏଠି କହି ରଖୁଛି । ୧୯୫୦ ମସିହାଠାରୁ ୧୯୬୮ ମସିହା ପର୍ଯ୍ୟନ୍ତ ସମୟ ଭିତରେ କୁଞ୍ଜବାବୁ ଯଦି ଓଡ଼ିଶାର ଗ୍ରାମେ ଗ୍ରାମେ ବୁଲି ଓଡ଼ିଆଙ୍କର ଲୋକଗୀତ ଓ କାହାଣୀ ଗୁଡ଼ିକ ସଂଗ୍ରହ କରି ନଥାନ୍ତେ (ସେତେବେଳେ ପୁଣି ଆଜିପରି ପ୍ରତି ଜିଲ୍ଲାର ଗାଁ ଗହଳକୁ ଗମନାଗମନର ଏଭଳି ସୁବିଧା ସୁଯୋଗ ନଥିଲା !) ତେବେ ସେଗୁଡ଼ିକ ନଷ୍ଟ ହୋଇ ଚିରଦିନ ପାଇଁ ଲୋପ ପାଇ ଯାଆନ୍ତା । କାରଣ ଆଜି ସଭ୍ୟତା ଓ ସଂସ୍କୃତିର ଏଇ ତୁମୂଳ ପରିବର୍ତ୍ତନ ଭିତରେ ଲୋକଙ୍କର ରୁଚି ମଧ୍ୟ ଦ୍ରୁତ ଗତିରେ ବଦଳି ଚାଲିଛି । ସେ ଏଇସବୁ ଲୋକଗୀତ ଓ ଲୋକକାହାଣୀ ଗୁଡ଼ିକୁ ଯେଉଁ ସବୁ ବୃଦ୍ଧମାନେ ଲୋକମାନେ ସେତେବେଳେ ମନେ ରଖିଥିଲେ—ସେମାନେ ମଧ୍ୟ ଏତେବେଳକୁ ଇହଧାମରୁ ବିଦାୟ ନେଇ ଗଲେଣି । ସେତେବେଳେ ବିଧିପ୍ରେରିତ ହୋଇ ସେ ଯଦି ସେଗୁଡ଼ିକ ସଂଗ୍ରହ କରି ନଥାନ୍ତେ— ବର୍ତ୍ତମାନ ଆଉ ଆମେ ସେଗୁଡ଼ିକୁ ଲେଉଟାଇ ବି ପାଆନ୍ତୁ ନାହିଁ । ବିସ୍ମୃତିର ଅତଳ ଗର୍ଭରେ ସେଇ ସବୁ ଅମୂଲ୍ୟ ମଣିମୁକ୍ତାଗୁଡ଼ିକ କୁଆଡେ ଲୀନ ହେବାକୁ ବସନ୍ତାଣି । କୁଞ୍ଜବାବୁ ଜାଣି ସେଗୁଡ଼ିକର ଉଦ୍ଧାରକର୍ତ୍ତା । ଭଗବାନ ମୀନ ଅବତାରରେ ଶଂଖାସୁର ହାତରୁ ବେଦ ଉଦ୍ଧାର କରିଥିଲେ । କୁଞ୍ଜବାବୁ ଜାଣି ସେଇ ଭାବରେ ଆମ ଓଡ଼ିଶାର ଓଡ଼ିଆଜାତିର ଲୁପ୍ତପ୍ରାୟ ଲୋକବେଦର କର୍ତ୍ତା । ତେଣୁ ଆମେ କେତେଜଣ ଘନିଷ୍ଠ ତାଙ୍କୁ "ଲୋକବେଦଉଦ୍ଧାରକ କୃଷ୍ଣଦ୍ୱୈପାୟନ" ବୋଲି ଆଖ୍ୟା ଦେଉଁ । ଆମର ଗ୍ରାମ୍ୟଗୀତ, କାହାଣୀ, ନାଟକ ଇତ୍ୟାଦି ଯଥାର୍ଥରେ ଆମ ଜାତିର ଲୌକିକ ବେଦ ନୁହେଁକି ? ତାରି ଭିତରେ ଆମର ପ୍ରାକୃତ ଜନସମାଜର ହଜାର ହଜାର ବର୍ଷର ଅଭିଜ୍ଞତା ଓ ଅନୁଭୂତି ପ୍ରସୂତ ଜ୍ଞାନ, ବିଜ୍ଞାନ, ପ୍ରଜ୍ଞା ଓ ଭାବରାଶି ସଂଚିତ ହୋଇ ରହିଛି । ତାରି ଭିତରେ ସଂଚିତ ହୋଇ ରହିଛି – ଗୋଟାଏ ଜାତିର ଯଥାର୍ଥ ସାଂସ୍କୃତିକ ଚେତନାର ବିକାଶକ୍ଷମ ସାକାଙ୍କ୍ଷର ! ଆଉ ମଧ୍ୟ ଗୋଟାଏ ବିଶାଳ ପୌରାଣିକ ଓ ଐତିହାସିକ ଜାତିର ନୈତିକ ଓ ଆଧ୍ୟାତ୍ମ ଉପଲବ୍ଧିର ବାର୍ତ୍ତା ! କୁଞ୍ଜବାବୁଙ୍କ ଭାବାପ୍ଳୁତ ପ୍ରଜ୍ଞାଦୃଷ୍ଟି ସେଗୁଡ଼ିକ ଉପରେ

ନପଡ଼ିବା ପର୍ଯ୍ୟନ୍ତ ସେ ଘଡ଼ିକୁ ଓଡ଼ିଶାର ଏବଂ ଭାରତର ବିଦଗ୍ଧ ସମାଜ ମାନ୍ୟତାର ସହିତ ଦୃଷ୍ଟିପାତ କରି ନଥିଲେ । ଏତେ ଗୁରୁତ୍ୱ ମଧ୍ୟ ଦେଇ ନଥିଲେ । ଗୋଟାଏ କଥାରେ କହିଲେ – କୃଷ୍ଣବାବୁ ସେଇ ସବୁ ନିର୍ମମ ଚେତନା । ସଂଜାତ ସୁମଧୁର ବର୍ଣ୍ଣ ଓ ସୌରଭ ପରିପୂର୍ଣ୍ଣ ଗ୍ରାମ୍ୟ ପୁଷ୍ପଗୁଡ଼ିକ ଚୟନ କରି ମାଳା ଗୁଂଥି ନଥିଲେ ଏବଂ ସେ ମାଳାକୁ ସାରସ୍ୱତ ମଂଚରେ ମଣ୍ଡନ କରି ନଥିଲେ—ତାହା ଆଜି ଉତ୍କଳ ଭାରତୀଙ୍କ ହୃଦୟଦେଶରେ ଶୋଭା ପାଉ ନଥାନ୍ତା ! ଏହି ମହାନ ଐତିହାସିକ କର୍ମ ସଂପାଦନ କରି କୃଷ୍ଣବାବୁ କେବଳ ଯଶସ୍ୱୀ ହୋଇ ନାହାନ୍ତି—ଏକ ଅମର କୀର୍ତ୍ତିର ମଧ୍ୟ ଅଧିକାରୀ ହୋଇ ଯାଇଛନ୍ତି । ସେଥିପାଇଁ ସମଗ୍ର ଜାତି ତାଙ୍କ ପାଖେ ଋଣୀ ହୋଇ ରହିଲା ।

ତାଙ୍କ ସଂଗୃହୀତ ସହସ୍ର ସହସ୍ର ଗ୍ରାମ୍ୟଗୀତ ଓ କାହାଣୀ ଗୁଡ଼ିକର ଯଥାର୍ଥ ମୂଲ୍ୟାୟନ ଏବେ ହୋଇନାହିଁ । ଯଥାର୍ଥ ଉପଯୋଗ ମଧ୍ୟ ଏବେ ହୋଇ ନାହିଁ; କିନ୍ତୁ ଦିନ ଆସିବ, ଯେତେବେଳେ ଓଡ଼ିଶାରେ ବ୍ୟାପକ ଓ ଗଭୀର ଭାବେ ଜ୍ଞାନ ବିଜ୍ଞାନର ପ୍ରଭୂତ ଅନୁଶୀଳନ ହେବ, ଏବଂ ସେ କ୍ଷେତ୍ରରେ ବହୁ ଧୀମାନ୍ ବ୍ୟକ୍ତି କାର୍ଯ୍ୟାରମ୍ଭ କରିବେ—ସେତେବେଳେ ସାହିତ୍ୟ ସଙ୍ଗୀତ ନୃତ୍ୟ, ସମାଜତତ୍ତ୍ୱ, ଓ ମନସ୍ତତ୍ତ୍ୱାଦି ବିଭିନ୍ନ ଦିଗରେ ଗବେଷଣା ପାଇଁ ଓ ତତ୍ତ୍ୱ ପ୍ରତିଷ୍ଠା ପାଇଁ ସେଗୁଡ଼ିକ ଅତି ମୂଲ୍ୟବାନ ତଥ୍ୟ ରୂପେ ବ୍ୟବହୃତ ହେବ ।

ମୁଁ ଅନେକ ବେଳେ ଭାବେ –କୃଷ୍ଣବାବୁ ଯଦି ଏତେକ କୀର୍ତ୍ତି ପ୍ରତିଷ୍ଠାକର ଆଉ କିଛି କରି ନଥାନ୍ତେ—ତେବେ ସୁଦ୍ଧା ସେ ବର୍ତ୍ତମାନ ଯେଉଁ ଉଚ୍ଚାସନରେ ଅଧିରୂଢ଼ ହୋଇଛନ୍ତି ସେଥିରୁ ତାଙ୍କୁ ନ୍ୟାୟତଃ କେହି ଓହ୍ଲାଇ ଦେଇ ପାରି ନଥାନ୍ତେ । ସେହି ମହତୀକୀର୍ତ୍ତି ପରେ ସେ ଆଉ ଯୋଉ ସବୁ ସିଦ୍ଧି ଅର୍ଜନ କରିଛନ୍ତି, ସେସବୁ ମହାନ ନିଶ୍ଚୟ—କିନ୍ତୁ ସେଗୁଡ଼ିକ କେବଳ ସ୍ତୁତପଦ୍ଧତିଙ୍କର ଅବତାରତ୍ୱ ପ୍ରତିପାଦିତ ହେଲା ପରେ ତାଙ୍କର ମହିମ୍ନ ସ୍ତବର ବ୍ୟବହୃତ ଅପରାପର ଲୀଳାପ୍ରଖ୍ୟାପକ ବିଶେଷଣ ପଦଗୁଡ଼ିକ ସଦୃଶ—ଅଥବା ଉପପଦ ତତ୍ପୁରୁଷ ସମାସ ଗୁଡ଼ିକ ସଦୃଶ ।

କୃଷ୍ଣବାବୁ ତାଙ୍କ ମୂଳ ସ୍ୱଭାବରେ କବି । କେବଳ ହିଁ କବି । ତାଙ୍କର ବିଶାଳ ଆକୃତି ଭିତରେ ଫୁଟିଉଠେ ଏକ କବି-ସୁଲଭ ନମନୀୟତା, କମନୀୟତା ଓ ଏକ ପ୍ରସନ୍ନ ପ୍ରଫୁଲ୍ଲ ଆଚ୍ଛନ୍ନତା । ସେ ଯେତେବେଳେ ଆମ ଆଗରେ ଉଭା ହୁଅନ୍ତି —ଦିଶନ୍ତି ସମୁଦାୟ ବଉଳଯାଇଥିବା, ଫୁଙ୍ଗୁଳିଆ ଅମ୍ବଗଛଟିଏ ଭଳି । ଅମ୍ବଗଛ ବୃକ୍ଷ ନିଶ୍ଚୟ—କିନ୍ତୁ ତାକୁ ବୃକ୍ଷ ନକହି କବିମାନେ ସହକାର ଲତା ବୋଲି କାହିଁକି କହନ୍ତି—ସେ ସଂଶୟ କବି କୃଷ୍ଣବିହାରୀଙ୍କ ବିଶାଳ ପୁରୁଷାକୃତିକୁ ଦେଖିଲେ ମୋଚନ ହୋଇଯାଏ । ତାଙ୍କର ମୁଖ ମଣ୍ଡଳଟି ଦରଫୁଟା କଳା ପଦ୍ମଟିଏ ଭଳି । ତାଙ୍କ ଆଖିର ସ୍ନିଗ୍ଧ ଯାଦୁକରୀ ଚାହାଣୀରେ ଯାହା ଆଖି ମୁହୂର୍ତ୍ତକ ପାଇଁ ମିଶିଯିବ ସେ ତାଙ୍କର ବଶୀଭୂତ ନହୋଇ ରହି ପାରିବ ନାହିଁ ।

ମୁଁ ନିଜେ ତାଙ୍କ ପାଖରେ ଏହିଭାବେ ବଶୀଭୂତ ହୋଇଛି । କିନ୍ତୁ ମୁଁ ଏହା ମଧ୍ୟ ନିଧାର୍ଯ୍ୟ ଜାଣେ ଯେ, ସେ ତାଙ୍କର ସନ୍ଥକୁ ସତ ବଶୀଭୂତ ଲୋକଟିକୁ ନୀଚ ଉଦ୍ଦେଶ୍ୟ ରଖି ନିଜ ସ୍ୱାର୍ଥରେ ଲଗାନ୍ତି ନାହିଁ । ବରଂ ସେ ନିଜେ ତାଙ୍କର ବଶୀଭୂତ ଲୋକଟି ପାଖେ ବଶମ୍ବଦ ହୋଇ ରହିବାକୁ ସୁଖ ମଣନ୍ତି ଏବଂ ତାର ଲାଳନପାଳନରେ ଲାଗି ପଡନ୍ତି । ସେ ନିଜେ ଭାବ ଜଗତର ମଣିଷ, ବସ୍ତୁ ଜଗତର ମଣିଷ ନୁହନ୍ତି । ଭାବର ମଣିଷ ମାନେ ନିଷ୍କାମ ମଣିଷ । ସତ୍ କବିଟିଏ ବା ଭାବୁକୀ ମଣିଷଟିଏ ଏ ଜଗତରୁ ନିଜ ପାଇଁ ସତେ କଣ ବା ଗ୍ରହେଁ ? ଆଉ, ଏହା ମଧ୍ୟ ସତକଥା ଯେ ସତ୍ କବିଟିଏ ଏ ପୃଥିବୀରେ କୋଉ ଜିନିଷ ବା ଅପ୍ରାପ୍ତ ହୋଇଥାଏ ? କୁଞ୍ଜବାବୁ ମୋ ଜାଣିବାରେ ଏ ଜଗତରେ ସବୁ ପାଇଛନ୍ତି—ସବୁ ଭୋଗିଛନ୍ତି । ବସ୍ତୁ ଜଗତର ସବୁ ଅଭାବକୁ ସେ ନିଜଭାବରେ ପୂର୍ଣ୍ଣ କରିଦେଇ ଭୋଗ କରିଛନ୍ତି । ତାଙ୍କ ଜୀବନରେ କମ୍ ଖାଲ ଖମା ନାହିଁ । ମାତ୍ର ଜୀବନର ସବୁ ଖାଲ ଖମା ଭିତରେ ସେ ନିଜେ ପଶିଯାଇ ତାକୁ ସମତଳ କରି ଦେଇଛନ୍ତି । ତାଙ୍କ ଜୀବନ ନଦୀର ଶାଖାନଦୀମାନଙ୍କ ଭିତରେ ସେ ନିଜେ ବହିଯାନ୍ତି । ତାଙ୍କ ଜୀବନର କଣ୍ଟକମାନଙ୍କରେ ସେ ନିଜେ ଫୁଲହୋଇ ଫୁଟିଉଠନ୍ତି । ତାଙ୍କ ଜୀବନ ଆକାଶକୁ ସେ ନିଜେ ବୃଷ୍ଟିଜଳ ଭରିନ୍ତ କୃଷ୍ଣକଜଳ ମେଘମାଳ ହୋଇ ଢାଙ୍କି ରହନ୍ତି । ବହୁ ଅଭାବରେ ସେ ଜୀବନଜାଳ ପଡିଛନ୍ତି । ମାତ୍ର ଅଭାବବୋଧରେ ସେ କେବେ ଘାଣ୍ଟି ହୋଇ ନାହାନ୍ତି । ତାଙ୍କର ଆତ୍ମ-ଜୀବନୀ ପଢିଲେ ଏ କଥାର ସତ୍ୟତା ବୁଝି ହେବ ।

ପାରିବାରିକ ଜୀବନରେ ସେ ପରିପୂର୍ଣ୍ଣ ଗୃହସ୍ଥମଣିଷ । ଏ ପରିପୂର୍ଣ୍ଣତା ବସ୍ତୁର ନୁହେଁ, ଭାବର । ସ୍ୱାମୀଭାବରେ, ଭାଇଭାବରେ, ପୁତ୍ରଭାବରେ, ପିତାଭାବରେ, ବନ୍ଧୁଭାବରେ, ଶିକ୍ଷକଭାବରେ ସେ କୋଉଥିରେ ପରିପୂର୍ଣ୍ଣ ନୁହନ୍ତି ଭଲା ? ଯେଉଁମାନେ ଯୋଉଭାବ ନେଇ ତାଙ୍କ ସଙ୍ଗେ ସମ୍ପର୍କିତ ହୋଇଛନ୍ତି ସେ ସେଇ ଭାବର ମଧୁ ଦେଇ ସମ୍ପର୍କିତ ଲୋକଟିର ହୃଦୟସ୍ଥାନକୁ ପୂର୍ଣ୍ଣ କରି ଦେଇଛନ୍ତି । ମୋର ଅଭିଜ୍ଞତାରୁ କହୁଛି, ମତେ ଲାଗେ, ବହୁ ବଡ଼ ବଡ ଲୋକ ନିଜ ଭଣ୍ଡାରରୁ ତୁମକୁ କିଛି ଦିଅନ୍ତି ନାହିଁ—ବରଂ ତୁମ ଥଳୀରୁ ହାତ ପୁରାଇ କିଛି ନେଇଯାନ୍ତି । କିନ୍ତୁ କୁଞ୍ଜବାବୁଙ୍କ ସଙ୍ଗେ ଭାବରେ ଛନ୍ଦି ହେଲେ ତୁମେ ଅନୁଭବ କରିବ, ସତେକି ସେ ଅନୁକ୍ରମେ ନିଜର ଥଳୀମାନଙ୍କରୁ ଆଞ୍ଜୁଳା ଆଞ୍ଜୁଳା କଣ ସବୁ କାଢ଼ି ତୁମର ଥଳୀଗୁଡ଼ିକରେ ଭର୍ତ୍ତି କରି ଲାଗିଛନ୍ତି । ତାଙ୍କ ପାଖରୁ ଲେଉଟାଣି ଆସିଲାବେଳେ ନିଜକୁ ଭାରି ଓଜନିଆ ଲାଗେ । ନିଜ ଭିତରର ଅନେକ ଅଭାବୀ ସ୍ଥାନ ଭାବସ୍ଥ ହୋଇଗଲା ଭଳି ଲାଗେ ।

କୁଞ୍ଜବାବୁ ବହୁ କବିତା ଲେଖିଛନ୍ତି । ମୁଁ ତାଙ୍କର ବହୁ କବିତା ପଢିଛି । ଅନେକ କବିତା ତାଙ୍କର ଆମ କାବ୍ୟ-ସାହିତ୍ୟରେ ଅମର ହୋଇ ରହିବେ । କିନ୍ତୁ ମୁଁ ଏହା ମଧ୍ୟ ବାରମ୍ବାର କହେ ଯେ, କବି କୁଞ୍ଜବିହାରୀ କବିତା ଲେଖିବା ପାଇଁ ପଦ୍ୟକୁ କାହିଁକି

ମାଧ୍ୟମ କଲେ ? ସେ ତ ଅସଂଖ୍ୟ ଗଦ୍ୟ ରଚନା କରିଛନ୍ତି । ମୋ ମତରେ ତାଙ୍କର ଗଦ୍ୟକାବ୍ୟମାନେହିଁ ରସାତ୍ମକଂ ବାକ୍ୟଂ, ମାନେ କବିତା-ନିଛକ କବିତା । ତାଙ୍କର ଗଦ୍ୟର କବିତାର ଯାଦୁ ରହିଛି । ସେ ଓଡ଼ିଶାର ଉପକୂଳ ଅଞ୍ଚଳର ଗାଉଁଲି ଶବ୍ଦ ଓ ବାକ୍ୟାଂଶ ସହିତ ସାଧୁ ଶବ୍ଦମାନ ମିଶାଇ ଗଦ୍ୟ ବାକ୍ୟଟିଏ ଗଠନ କରନ୍ତି । ବେଳେ ବେଳେ ଖାଣ୍ଟି ଗାଉଁଲି ବାକ୍ୟଗୁଡ଼ିଏ ମଧ୍ୟ ଅବିକଳ ଗ୍ରାମ୍ୟ ଢଙ୍ଗରେ ପ୍ରୟୋଗ କରନ୍ତି । କିନ୍ତୁ ସେ ସବୁଥିରେ ଥାଏ, ଗ୍ରାମ୍ୟପ୍ରାଣର ସତେଜ୍, ସଜୀବ, ସରଳ, ଶୁଦ୍ଧ ଛନ୍ଦମାନଙ୍କର ଲଳିତ କଳିତ ପ୍ରାଣସ୍ପନ୍ଦନ। ତାଙ୍କର ବାକ୍ୟଗୁଡ଼ିକ ଗାଁଘରର ଚାଳଉପରେ ଲାଉ କଖାରୁ ଲଟାଭଳି ମାଡ଼ିଥାନ୍ତି । ଭାଡ଼ି ଉପରେ କନ୍ଦ୍ରି କାକୁଡ଼ି ଲଟା ଭଳି ମାଡିଥାନ୍ତି । ଛଣ-ଗଦାରେ ଛତୁଭଳି ଫୁଟିଥାନ୍ତି । ବାକ୍ୟଗୁଡ଼ିକ କେବେ ପ୍ରସାଦ ବା କେବେ ମାଧୁର୍ଯ୍ୟଗୁଣରେ ପରସ୍ପର ସଙ୍ଗେ ସ୍ପର୍ଦ୍ଧା କରି କରି ପୃଷ୍ଠାମଣ୍ଡନ କରି ଚାଲିଥାନ୍ତି । ତାଙ୍କର ଗଦ୍ୟବାକ୍ୟଗୁଡ଼ିକ ଶୁଦ୍ଧ କବିତାଭଳି ମନ ଭିତରେ ସ୍ୱପ୍ନର ମାୟାଲୋକ ସୃଷ୍ଟି କରି ଦିଅନ୍ତି, ପାଠକର କଳ୍ପନାରେ ଡେଣା ଲଗାଇ ଦିଅନ୍ତି । ସାଧାରଣତଃ ଗଦ୍ୟରେ ପ୍ରକାଶ ପାଏ ଲେଖକର ସୁଯୁକ୍ତି ଚାଳିତ ସୁସ୍ପଷ୍ଟ ଚିନ୍ତାଧାରା । ମାତ୍ର କୁଞ୍ଜବାବୁଙ୍କ ଗଦ୍ୟରେ ଅଧିକନ୍ତୁ ଥାଏ ତାଙ୍କ ହୃଦୟର ସ୍ପନ୍ଦନ । ତାଙ୍କର ଚିନ୍ତାରାଶି ଆବେଗର ବାହନ ଉପରେ ବସି ନୃତ୍ୟ କରିକରି ଚାଲିଥାନ୍ତି । ମୋଟ ଉପରେ ତାଙ୍କର କବିସତ୍ତା ସମ୍ପୂର୍ଣ୍ଣଭାବେ ତାଙ୍କ ଗଦ୍ୟ ଭିତରକୁ ଓହ୍ଲାଇ ଯାଏ । ତାଙ୍କର ଜୀବନ ଚରିତ ପଢନ୍ତୁ—ମନେହେବ ଗାଥାକାବ୍ୟଟିଏ ପଢ଼ୁଛନ୍ତି । ତାଙ୍କର ଭ୍ରମଣ କାହାଣୀ ଗୁଡ଼ିକ ପଢ଼ନ୍ତୁ — ମନେ ହେବ ଚାରଣ କାବ୍ୟଟିଏ ପଢୁଛନ୍ତି । ତାଙ୍କର ଗଳ୍ପ ଉପନ୍ୟାସ ଗୁଡ଼ିକ ପଢ଼ନ୍ତୁ— ମନେହେବ ତାଙ୍କର ଜୀବନ କାବ୍ୟ ପଢୁଛନ୍ତି । ସେ ଅନେକ ଗଦ୍ୟକାବ୍ୟ ଲେଖିଛନ୍ତି । ଅନେକ ପ୍ରବନ୍ଧ ଆଉ ସମାଲୋଚନା ଲେଖିଛନ୍ତି । ଲଙ୍କା ଯାତ୍ରୀ ମୋ ସ୍ୱପ୍ନର କାଶ୍ମୀର, ପଥ ଓ ପଥିକ, ଆମେରିକାରୁ ୟୁରୋପ ଓ ଆଫ୍ରିକା, ଜୀବନୀ ଓ ଜୀବନ, ଜୀବନାୟନ, ମୋ କାହାଣୀ, ମଶାଣୀ ତୁଳସୀ, ହସକାନ୍ଦର ଗପ, ମଣିମା ଶୁଣିମା ହେଉ, କି କଥା ? କଲିକତା ଇତ୍ୟାଦି ଅନେକ ପୃଷ୍ଠାର ଅନେକ ଗଦ୍ୟ ଚିତ୍ର । ସବୁଥିରେ ଅବଶ୍ୟ ପାଠକ ଶୁଣିବେ କୁଂଜବାବୁଙ୍କ କବିଆତ୍ମାର ଉଚ୍ଚାରଣ । ଜୀବନର ରୂପରସ ଗନ୍ଧ ଶବ୍ଦ ସ୍ପର୍ଶର ଆକର୍ଷଣ ସହିତ ଜୀବନର ସୁଖ ଦୁଃଖ, ଆନନ୍ଦ, ବିଷାଦ, ପ୍ରେମଘୃଣା, ଆସକ୍ତି ବିରକ୍ତି ସବୁ କିଛିର ପ୍ରାଣମୟ ଅଭିବ୍ୟକ୍ତି ତାଙ୍କ ଲେଖା ଗୁଡ଼ିକ ଭିତରେ ଅପୂର୍ବ କାବ୍ୟ ମହିମାରେ ଉଦ୍‌ଭାସିତ ହୋଇ ଉଠିଛନ୍ତି ।

ବହୁ କ୍ଷେତ୍ରରେ ଦେଖାଯାଏ, କବିଟିଏ ତାର କାବ୍ୟଠାରୁ ପୃଥକ । ଏପରିକି ବିପରୀତ ମଧ୍ୟ । କେହି କେହି ସ୍ଖଳିତ ପ୍ରବୃତ୍ତିଧର ବ୍ୟକ୍ତି ଗୋଟିଏ ଗୋଟିଏ ବିଶେଷ ପ୍ରତ୍ୟେଦନାମୟ ମୁହୂର୍ତ୍ତରେ ଏକ ବିଶେଷ ଅନୁପ୍ରେରଣାର ବଶବର୍ତ୍ତୀ ହୋଇ ହୁଏତ ଏକ ଚମତ୍କାର କାବ୍ୟ ଲେଖି ପକାଇଥାନ୍ତି । କିନ୍ତୁ ସେହି କାବ୍ୟର ଅନୁଭୂତ ବା ଭାବ ସହିତ

ତାର ରଚୟିତାର କୌଣସି ପ୍ରାଣଗତ ବା ଆତ୍ମଗତ ସମ୍ପର୍କ ନଥାଏ । କିନ୍ତୁ ତାଙ୍କ କ୍ଷେତ୍ରରେ ତାଙ୍କର ଲେଖା ଯାହା, ସେ ନିଜେହିଁ ତାହା । ସେ ନିଜେହିଁ ନିଜର ଏକ କାବ୍ୟ । ସେ ନିଜକୁ ମଧ୍ୟ କାବ୍ୟ ରୂପରେ ଓ କାବ୍ୟ ଛନ୍ଦରେ ରଚନା କରିଛନ୍ତି । ମୁଁ କେବେହେଲେ ବି, ଏପରିକି ତାଙ୍କର ନିପଟ ବ୍ୟାବହାରିକ ଜୀବନରେ ବି ତାଙ୍କୁ କବି ଧର୍ମରୁ ବିଚ୍ୟୁତ ହେବାର ଦେଖି ନାହିଁ । ତାଙ୍କର କବି-ବ୍ୟକ୍ତିତ୍ୱଟି ଉପରେ ଇତର ସାଧାରଣ ମଣିଷଟିଏ ସବାର ହୋଇଥିବାର ମୁଁ କେବେ ଲକ୍ଷ୍ୟ କରି ନାହିଁ ।

କୁଂଜବାବୁ ନିଜେ ତ ବହୁଗୁଣର ଆକର । କିନ୍ତୁ ତାଙ୍କ ଭଳି ଗୁଣଗ୍ରାହୀ ମଣିଷ ଭଲା ଏ ଓଡ଼ିଶା ମୂଲକରେ କେତେ ଜଣ ଅଛନ୍ତି ? କାହାଠାରେ ସାମାନ୍ୟ ଟିକିଏ ଗୁଣର ଉନ୍ମେଷ ଦେଖିଲା ମାତ୍ରେ ଇ ସେ ତା' ପିଠିରେ ପଡ଼ିଥାନ୍ତି । ତେଲ ଅଭାବରେ ଲିଭି ଆସୁଥିବା ଦୀପଟି ଭିତରେ ସେ ତେଲ ଭରି ଦିଅନ୍ତି । ବତାଶରେ ଲିଭିଆସୁଥିବା ଦୀପଟିର ସଳିତା ଦେହରେ ପୁଣିଥରେ ନିଆଁ ଧରାଇ ଦିଅନ୍ତି । ତାଙ୍କର ସମକାଳୀନ ବହୁ ବିଶିଷ୍ଟ ଲେଖକଙ୍କ ସହିତ ତାଙ୍କର ବହୁକଥାରେ ଅମେଳ ହୋଇଛି । ମନୋମାଳିନ୍ୟ ବି ହୋଇଛି । ଏପରିକି ସେ ବହୁ ପ୍ରତିଷ୍ଠିତ ଲେଖକଙ୍କ ବିରୋଧରେ କୌଣସି ଆଦର୍ଶ ବା ସତ୍ୟ ଅନୁରୋଧରେ ଲେଖନୀ ନିୟୋଜିତ କରିଛନ୍ତି । ମାତ୍ର ମୁଁ ଧ୍ରୁବ ଜାଣେ— ତା ସତ୍ତ୍ୱେପି ନିଜର ଶରବ୍ୟ ବ୍ୟକ୍ତିଟିର ସାରତ୍ୱକୁ ଓ ପ୍ରତିଷ୍ଠାକୁ ସେ ଅସ୍ୱୀକାର କରି ନାହାନ୍ତି, ତାଙ୍କର ସାଧନା ଓ ସିଦ୍ଧିକୁ ଲଘୁକରି ଦେଖି ନାହାନ୍ତି, କି ଦେଖାଇ ନାହାନ୍ତି ।

ବହୁ ଦୁଃଖ କଷଣ ଓ ଯାତନା ପିଲାଦିନୁଁ ସେ ଭୋଗି ଆସିଛନ୍ତି । ବହୁ ଲାଞ୍ଛନା ଓ ଅପମାନ ଭୋଗିଛନ୍ତି । ପିଲାଦିନେ କୁଆଡ଼େ ତାଙ୍କର ପ୍ରଶସ୍ତ ପିଠିଟି ଅନାୟାସରେ ବହୁ ପରପୀଡ଼କ ନୃଶଂସଙ୍କର ବିଧାମାରି ହାତସୁଖ କରିବା ଉଦ୍ଦେଶ୍ୟରେ ବ୍ୟବହୃତ ହେଉଥିଲା । ଅତି ନଗଣ୍ୟ ଅବସ୍ଥାରୁ ଆପଣାର ନିରବଚ୍ଛିନ୍ନ ଆତ୍ମ ବିଶ୍ୱାସ ପ୍ରଣୋଦିତ କଠୋର ସାଧନା ବଳରେ ସେ ଆଜି ଅସାମାନ୍ୟ ଯଶ, କୀର୍ତ୍ତି ଓ ଆସନର ଅଧିକାରୀ ହୋଇ ବସିଛନ୍ତି । ନିଜେ ଉଠିବାପାଇଁ ସେ ଆଉ କାହା କିଶୁଣିର ସାହାଯ୍ୟ ନେଇ ନାହାନ୍ତି । ଅପରକୁ କଳେବଳେ କୌଶଳେ ପଛକୁ ଠେଲି ଦେଇ ନିଜେ ଉପରକୁ ଉଠିଯାଇ ନାହାନ୍ତି । କିମ୍ବା କାହା ଉପରେ ଠିଆ ହୋଇ ଯାଇ ସେ ଆପଣାର ଉଚ୍ଚତା ଜାହିର୍‌କରି ନାହାନ୍ତି । ସହଜ ଭାବରେ ଅଥଚ ଅବିଶ୍ରାନ୍ତ ଉଦ୍ୟମ ବଳରେ ସେ ଆଜି ଓଡ଼ିଶାର ତିନିକୋଟି ଲୋକଙ୍କ ଭିତରେ ଅମୂଲ୍ୟ ରତ୍ନଟିଏ ଭଳି ଦାଉ ଦାଉ ଦିଶୁଛନ୍ତି ।

ପରାଜୟ ତାଙ୍କ ଜାତକରେ ନାହିଁ । ଦୁର୍ଭାଗ୍ୟ ପାଖେ ଆଣ୍ଠୁ ମାଡ଼ି ବସି ନିନ୍ଦା ସ୍ୱୀକାର କରିଯିବାର ଲୋକ ସେ ନୁହନ୍ତି । ବ୍ୟର୍ଥତାବୋଧ କଣ ତାହା ସେ ଜାଣନ୍ତି ନାହିଁ । ତାଙ୍କ କଣ୍ଠରୁ କେବେ ମୁଁ ହତାଶାର ବାଣୀ ଶୁଣି ନାହିଁ । କାହା ପାଖରୁ

ହତାଶାର ବାକ୍ୟଟିଏ ମଧ୍ୟ ସେ ବୁଝି ପାରନ୍ତି ନାହିଁ । ତାଙ୍କର ଧାରଣା— ଜୀବନରେ ସବୁ ସାଧନା ଦିନେ ସିଦ୍ଧିରେ ରୂପାନ୍ତରିତ ହେବାକୁ ବାଧ୍ୟ । ସବୁ ବୃକ୍ଷ ଫଳବତୀ ହେବଇ ହେବ । ସବୁ ଲତା ନିଶ୍ଚେ ଦିନେ ପୁଷ୍ପବତୀ ହେବେ । ସବୁ ନଦୀ ସମୁଦ୍ରରେ ପହଞ୍ଚିବେହିଁ ପଡ଼ିବେ । କୁଂଜବାବୁ ଜୀବନର ସାଫଲ୍ୟଡ଼ୁରେ କେବଳ ସିଡ଼ୀରେ ଉଠିବା କଥା ଜାଣିଛନ୍ତି । ସାପ ଗିଳିବାର ଅଭିଶାପକୁ ସେ ଦେଖନ୍ତି ନାହିଁ । ସେ ସନ୍ତୁଷ୍ଟ ବ୍ୟକ୍ତି । ଆପଣା କୁଟିରଦ୍ୱାର ଯାହା କିଛି ସନ୍ତୋଷ ତାକୁ ସେ ଉପଭୋଗ କରନ୍ତି । କିନ୍ତୁ ସେ ଆପଣା ସନ୍ତୋଷବୋଧର ସୀମା ଆରପଟକୁ କେବେ ଚାହିଁ ନାହାନ୍ତି ବୋଲି ମୋର ଧାରଣା ହୁଏ । ସେ ଜୀବନର ସାରବସ୍ତୁ ଦେଖି ଖୁବ୍ ମୁଗ୍ଧ । କିନ୍ତୁ ଜୀବନର ଅସାରବସ୍ତୁର ବ୍ୟର୍ଥତାବୋଧ ବା ହତାଶାରେ ସେ କେବେ ଘାରି ହେବାର ମୁଁ ଦେଖିନାହିଁ ।

କୁଂଜବାବୁଙ୍କ କବି ବ୍ୟକ୍ତିତ୍ୱରେ ମୁଁ ଏତିକି ମାତ୍ର ଅପୂର୍ଣ୍ଣତା ଲକ୍ଷ୍ୟ କରିଛି । "ବିଫଳତାର ବ୍ୟର୍ଥତାବୋଧ ବା ଅପୂର୍ଣ୍ଣତାର ବେଦନା ବା ଦୁର୍ଗତିର ହତାଶାକୁ ଯେ ବିଶ୍ୱାସ ନକରେ— ପ୍ରତ୍ୟକ୍ଷ ନକରେ— ସେ ଜୀବନର ଦୁଃଖ ବେଦନାର ଅତଳାନ୍ତିକ ଗଭୀରତାକୁ ସ୍ପର୍ଶ କରିବ କିପରି ? ସେ ନିଜେ ବୁଝି ପାରନ୍ତିନାହିଁ ଯେ, ମଣିଷ ଜାତି ସ୍ୱୟଂ ଏହି ଅନନ୍ତ ମହାକାଶର ରଙ୍ଗମଞ୍ଚ ଉପରେ ମହାକାଳର ନିର୍ଦ୍ଦେଶରେ ଅଭିନୀତ ହେଉଥିବା ଏକ ମହାନ୍ ଟ୍ରାଜେଡ଼ି ନାଟକରେ ଅବତୀର୍ଣ୍ଣ ହୋଇଛି 'ହିରୋ'ର ଭୂମିକାରେ ଏବଂ ସେହି ମହାନ୍ ଯୁଦ୍ଧରତ ବୀର ପ୍ରତିଟି ଦୃଶ୍ୟରେ ବାରମ୍ବାରଇ ଶତ୍ରୁ ହାତରେ ପରାଜୟ ବରଣ କରି ଚାଲିଛି; ଏବଂ ଏହି ଦୁଃଖାନ୍ତ ନାଟକଟିର ଶେଷଅଙ୍କ ଏ ପର୍ଯ୍ୟନ୍ତ ଲେଖା ମଧ୍ୟ ହୋଇ ସରି ନାହିଁ ?

ସାରାଜୀବନ କୁଞ୍ଜବାବୁ ଅସଂଖ୍ୟ ପ୍ରିୟଜନଙ୍କର ମୃତ୍ୟୁ ଦେଖିଛନ୍ତି । ମାତ୍ର ତାଙ୍କର ମୃତ୍ୟୁ-ବୋଧ ଏ ଯାବତ ହୋଇନାହିଁ । ସେ ଜୀବନଜାତ ବହୁ ରୂପ, ବହୁଶବ୍ଦ ଦେଖିଛନ୍ତି ଓ ଶୁଣିଛନ୍ତି । ମାତ୍ର ଅରୂପ ଓ ଅଶବ୍ଦକୁ ଦେଖିବା ବା ଶୁଣିବା ପାଇଁ ତାଙ୍କର ତୃତୀୟ ଚକ୍ଷୁ ଓ ତୃତୀୟ କର୍ଣ୍ଣ ଏ ଯାବତ ମଧ୍ୟ ଫିଟି ନାହିଁ, କି ଖୋଲି ନାହିଁ । ସେ ତାଙ୍କର ଦେହ, ପ୍ରାଣ ଓ ମନଦେଇ ଏ ଜୀବନକୁ ଅନୁଭବ କରିଛନ୍ତି । ମାତ୍ର ଆତ୍ମାଦେଇ ଉପଲବ୍ଧି କରି ନାହାନ୍ତି । ସେଥିପାଇଁ ମଧ୍ୟ ତାଙ୍କର ଶୋଚନା ଜାତ ହୋଇ ନାହିଁ କି ଅଭୀପ୍ସା ଜାଗ୍ରତ ହୋଇନାହିଁ ।(ଏକ ସୁଗଭୀର ବେଦନାବୋଧ ବା ଟ୍ରାଜିକ୍‌ବୋଧ ପାଇଁ ଯେ ଅଧ୍ୟାତ୍ମ ଚେତନା ଆବଶ୍ୟକ— କୁଂଜବାବୁ ଏ ଯାବତ ତାର ଅଧିକାରୀ ହୋଇ ନାହାନ୍ତି ବୋଲି ମୋର ଆଶଙ୍କା । ଏ ଯାବତ ସେ ଜୀବନର ରସକୁ ନେଇ ମାତିଛନ୍ତି—ରହସ୍ୟର ଆହ୍ୱାନକୁ କାନ ଡେରି ନାହାନ୍ତି । ସେ ଏପର୍ଯ୍ୟନ୍ତ ଏଇ ପୃଥିବୀର ପାଲଟରେଇ ପଡ଼ିଛନ୍ତି, ମହାକାଶର ଆକର୍ଷଣ ଅନୁଭବ କରି ନାହାନ୍ତି ।)

ଆଚ୍ଛା ! କୁଂଜବାବୁଙ୍କ ଜୀବନରେ ତାଙ୍କର ବିବାହିତା ପ୍ରିୟତମା ସହଧର୍ମିଣୀ ପ୍ରେମଲତାଙ୍କ ବ୍ୟତୀତ ଆଉ କେହି ନାରୀ ସହିତ କିଛି ଆବେଗଗତ ସମ୍ପର୍କ କେବେ ଥିଲା ବା ଅଛି କି ? କେଜାଣି ? ମତେ କିନ୍ତୁ ଜଣାପଡ଼େ ନାହିଁ । ଥିଲେ କିନ୍ତୁ ଆହୁରି ଭଲ ହୋଇଥାନ୍ତା ପରି ! ଅନ୍ତତଃ ଏତେ ବଡ଼ ମଣିଷଟିର ଅନ୍ତର ଭିତରେ କିଛି ଗୋଟାଏ ଦ୍ୱନ୍ଦ୍ୱର ଝଡ଼ ସୃଷ୍ଟି ହୋଇଥାନ୍ତା । କିଛି ଧରଣର ଦହନ ସୃଷ୍ଟି ହୋଇଥାନ୍ତା । କିଛି କିଛି ପ୍ଲାବନ ବି ଘଟି ଯାଇଥାନ୍ତା ! ମନ୍ଦ କଣ ହୋଇଥାନ୍ତା ? କାହା ପାଇଁ ହେଲେ ହୃଦୟ ଥରେ ଦି'ଥର ଫାଟିବା ଉଚିତ ! କିନ୍ତୁ କୁଞ୍ଜବାବୁଙ୍କ ହୃଦୟରେ କଣ କାହାର ଆଂଚୁଡ଼ା ଦାଗ ବି ପଡ଼ିନାହିଁ ? ଦୁର୍ଭାଗ୍ୟ ! ଏତେ ଭଲ ପିଲା ହେବା ଶିକ୍ଷକ ଅଧ୍ୟାପକଙ୍କ ପାଇଁ । କବି, ଲେଖକଙ୍କ ନୁହେଁ ।

କିନ୍ତୁ ଏଥିପାଇଁ ମୁଁ ବା ଆଉ କେହି କୁଂଜବାବୁଙ୍କୁ ଗ୍ରେପ୍ତ କରିଦେଇ ପାରିବେ ନାହିଁ । ବିପୁଳ-ପ୍ରାଣ-ଚେତନାର ଆନନ୍ଦ ଆହ୍ଲାଦ ତାଙ୍କ କବି-ବ୍ୟକ୍ତିତ୍ୱରେ ଭରି ରହିଛି ବୋଲି ସେ ଏତେ ଆକର୍ଷଣୀୟ ! ତାଙ୍କ ସାହିତ୍ୟ ମଧ୍ୟ ଘନନିବିଡ଼ ଜୀବନରସର ଅଫୁରନ୍ତ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟରେ ସମୃଦ୍ଧ ବିନ୍ଦୁ । ଓଡ଼ିଆ ଜାତିକୁ ଭଲ ପାଉଥିବା ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ଭଲ ପାଉଥିବା ଏବଂ ଓଡ଼ିଶା ଭୂଖଣ୍ଡକୁ ଭଲପାଉଥିବା କୌଣସି ବ୍ୟକ୍ତି ତାଙ୍କ-ଠାରେ ଓ ତାଙ୍କ ସୃଷ୍ଟି ପାଖରେ ସମ୍ଭ୍ରମରେ ମଥାନତ ନକରି ରହିପାରିବନାହିଁ ।

କୁଂଜବିହାରୀ ଦାଶ ଓଡ଼ିଶାର ଏକ ସମୁଜ୍ଜ୍ୱଳ ବ୍ୟକ୍ତିତ୍ୱ ଓ କବି । ଆଜି ଏହି ଶୁଭ ଅବସରରେ ମୁଁ ଏହି ବରେଣ୍ୟ କବିଙ୍କୁ ମୋର ବିନମ୍ର ପ୍ରଣତି ଜଣାଉଛି—ଏବଂ ଓଡ଼ିଆ ଜାତିର ଇଷ୍ଟ ଦେବତା ପୁରୁଷୋତ୍ତମ ଶ୍ରୀ ଜଗନ୍ନାଥଙ୍କ ପାଖେ ପ୍ରାର୍ଥନା କରୁଛି ଯେ, ସେ ତାଙ୍କୁ ସର୍ବଶୁଭରେ ଉଜ୍ଜଳ ସ୍ୱାସ୍ଥ୍ୟ, ସମ୍ପଦ ଓ ସୁଖ ପ୍ରଦାନ କରି ଶତାୟୁ କରନ୍ତୁ ।

❋ ମୁଖ୍ୟଅଧ୍ୟାପକ, ଓଡ଼ିଆ ବିଭାଗ, ବି. ଜେ. ବି. କଲେଜ ।

—୦—

## ।। ଅଳିଭା ସ୍ମୃତି ।।

**ଶ୍ରୀ ହରେକୃଷ୍ଣ ମହାନ୍ତି**

ଅର୍ଦ୍ଧ ଶତାବ୍ଦୀ ପଛକୁ ଦୃଷ୍ଟି ଫେରାଇଲେ ଦୂର ଚକ୍ରବାଳରୁ ଅସ୍ପଷ୍ଟ ଦିଶେ । ଚିହ୍ନା ପରିଚିତ ଅନେକ ମୁହଁ, ଅନେକ ସ୍ୱର ବାରି ହୁଏନା । କୁହେଳିକାଚ୍ଛନ୍ନ ଅତୀତ ଜୀବନର ଇତିହାସରୁ ଛାତ୍ର-ଜୀବନର ଅବିସ୍ମରଣୀୟ ସେହି ଅଧ୍ୟାୟଟି ଏ ଯାଏ ସୁସ୍ପଷ୍ଟ ହୋଇ ରହିଛି, ପ୍ରତ୍ୟେକ ପଂକ୍ତି ବେଦବାଣୀ ପରି ସ୍ମୃତି-ପଟକୁ ଝଂକୃତ କରୁଛି । ଗୋଧୂଳି ଲଗ୍ନରେ ନଈ ଘାଟରେ ବସି ସେ ସବୁ ବାଲ୍ୟ ଲୀଳାର ସ୍ମୃତି ଚାରଣ କରିବାକୁ ଭଲ ଲାଗେ । ଆହା ! କୁଆଡେ ଗଲା ସେ କାଳ, ସେ ବେଳ !

ସେ ବେଳର କଟକ ସହର ରୂପାନ୍ତର ଗ୍ରହଣ କରିଛି । ରାଜା ବଗିଚାର ନିର୍ଜନ ପ୍ରାନ୍ତର ଭିତରେ ଯେଉଁ ସବୁ ଚଲା ବାଟରେ ଆମେ ତ୍ରିମୂର୍ତ୍ତି—ଡକ୍ଟର ଦାଶ, ବନ୍ଧୁ ଲକ୍ଷ୍ମୀଧର ମହାପାତ୍ର, ଆଉ ସ୍ୱୟଂ ଲେଖକ—ନଗ୍ନପାଦରେ ତେଲେଙ୍ଗା ବଜାରରୁ ରାଣୀହାଟ ବାଟେ ରେଭେନ୍‌ସା କଲେଜ ଯାଏ ଅସୁଥିଲୁ ବୁଢ଼ା ନିମ୍ବଗଛଟାକୁ ପ୍ରଦକ୍ଷିଣ କରି, ସେ ବାଟକୁ ଖୋଜି ଠାବ କରିବା ଦୁଷ୍କର । ସବୁଆଡ ଜନାକୀର୍ଣ୍ଣ, ପ୍ରାସାଦ, ଅଟ୍ଟାଳିକାର ବିରାଟ ସମାବେଶ, ପ୍ରତିଦ୍ୱନ୍ଦ୍ୱିତା ।

ସେ ରହୁଥାନ୍ତି ପୁରୁଣାଘାଟ ଫାଣ୍ଡି ପାଖରେ, ସ୍ୱର୍ଗତ ଭୁବନମୋହନ ମିତ୍ର, ଡେପୁଟି କଲେକ୍ଟରଙ୍କ ଘରେ, ତାଙ୍କର ପୁତ୍ରର ଗୃହଶିକ୍ଷକ ଭାବରେ । ୧୯୩୬ରେ ନିମାପଡ଼ା ହାଇ-ସ୍କୁଲରୁ ମାଟ୍ରିକ୍ ପାଶ୍ କରି ଉଚ୍ଚଶିକ୍ଷା ପାଇଁ ସେ କଟକ ଦାଣ୍ଡ ଧରିଥିଲେ । ସେତେ-ବେଳେ ଗଡ଼ଜାତ ସମେତ ସମଗ୍ର ଓଡ଼ିଶାରେ ଗୋଟିଏ ମାତ୍ର କଲେଜ୍ ଥିଲା । ସେଠି କଳାହାଣ୍ଡି ମହାରାଜାଙ୍କ ପୁଅ ପାଠ ପଢୁଥିଲେ; ଆଉ ବି ପଢ଼ୁଥିଲା କଳାଗୁଡା ଗାଁର ନିଃସ୍ୱ ଦନେଇ ସ୍ୱାଇଁର ଛାତ୍ର-ବୃତ୍ତିଧାରୀ ପୁଅ ପ୍ରହ୍ଲାଦ । ସବୁ ଶିକ୍ଷାର୍ଥୀଙ୍କ ପାଇଁ ରେଭେନ୍‌ସା କଲେଜ୍ ଥିଲା 'ନାଳନ୍ଦା' । ରେଭେନ୍‌ସା କଲେଜ୍ ମାଡ଼ି ଆସିଛି ବୋଲି ଛାତ୍ର ଉତ୍ତର ଜୀବନରେ ଗୌରବ ବୋଧ କରୁଥିଲା । ଅନ୍ୟ ଆଗରେ ବଡ଼େଇ କରୁଥିଲା ଯେ ସେ କେଡ଼େ କେଡ଼େ ରଥୀ, ମହାରଥୀଙ୍କ ଚେଲା— ପ୍ରିନ୍‌ସିପାଲ୍ ତ୍ରିପାଠୀ ସାହେବ, ଡ଼ଃ. ପରିଜା, ଡ଼ଃ. ଆର୍ତ୍ତବଲ୍ଲଭ, ପ୍ରଫେସର୍ ନିୟୋଗୀ, ପ୍ରଫେସର ସିହ୍ନା, ପ୍ରଫେସର

କୃପାନାଥ ମିଶ୍ର ଇତ୍ୟାଦି ଇତ୍ୟାଦି । ସେ ଗୁରୁ କାହାନ୍ତି, ସେ ଭଲ ଛାତ୍ର ବି କାହାନ୍ତି ? ଆଜିକାଲି ଏ କି ପଢ଼ା ? ଏମିତି ସେ ବଢ଼ାଣିଆ କଥା କହି ଆତ୍ମ-ପ୍ରସାଦ ଅନୁଭବ କରିଥାଏ ।

କୁଞ୍ଜବାବୁଙ୍କର ପିତାଙ୍କର ଆର୍ଥିକ ଅବସ୍ଥା ସେତେ ସ୍ୱଚ୍ଛଳ ନଥିଲା, ଯଦିବା ମକଦ୍ଦମ ବୋଲି ତାଙ୍କର ସ୍ଥାନୀୟ ଖ୍ୟାତି ଥିଲା । ଦୁର୍ଦ୍ଦମନୀୟ ଉଚ୍ଚାକାଙ୍କ୍ଷା, ଅଟଳ ଆତ୍ମବିଶ୍ୱାସ, ଅସୀମ ଧୈର୍ଯ୍ୟ ଓ ସହିଷ୍ଣୁତାକୁ ପାଥେୟ କରି ସେ କଟକ ଆସିଥିଲେ, ଆଉ ସାଙ୍ଗରେ ଆଣିଥିଲେ ନିମାପଡ଼ାର ଖ୍ୟାତନାମା ବିଦ୍ୱାନ ତଥା ଗୁଣଗ୍ରାହୀ ସ୍ୱର୍ଗତ ମଧୁସୂଦନ ଦାଶଙ୍କ ଠାରୁ ଖଣ୍ଡିଏ ପରିଚୟ ପତ୍ର । ସ୍ୱର୍ଗତ ଭିବଗ୍ରାହୀ ମିଶ୍ର ୬ ମଧୁସୂଦନଙ୍କର ଜାମାତା । ତାଙ୍କରି ଘରେ ସେ ପୁଡ଼ା ପୋଟଳି ଥୋଇଲେ, ଆଶ୍ରୟ ନେଲେ । ସେଇଠି ରହି କଲେଜ୍‌ର ପ୍ରଥମ ବର୍ଷଟା ସେ କୌଣସି ମତେ କଟାଇ ଦେଲେ ।

ଦୋଳମୁଣ୍ଡେଇ ଛକରେ ଆମ ସାଙ୍ଗରେ ମିଶନ୍ତି ଧ୍ରୁବଚରଣ ସାହୁ (ଏଡ୍‌ଭୋକେଟ୍ ସ୍ୱର୍ଗତନ ଏମ୍. ଏଲ୍. ଏ.) ସେ ରହୁଥାନ୍ତି କାଳି ବଜାରର ଜମିଦାର ୬ ବିମଳାଚରଣ ରାୟ ଚୌଧୁରୀଙ୍କ ଘରେ । ସେଠୁ ସେ ଚାଲି ଚାଲି ଆସନ୍ତି । ଦୋଳମୁଣ୍ଡାଇ ଛକ ଧରିଲା ବେଳକୁ ତାଙ୍କର ଅଣନିଶ୍ୱାଣ ପବନ ବହୁଥାଏ । ଆମ ମାନଙ୍କର କାହାରି ଗୋଡରେ ଯୋତା କି ଚପଲ ନଥାଏ । ଖଣ୍ଡିଏ ଧୋତି, ଖଣ୍ଡିଏ ହାଫ୍‌ସାର୍ଟ ଏଇଥିଲା ଆମର ପରିଚ୍ଛଦ । କୁଞ୍ଜବାବୁ ଅଧିକରେ ଖଣ୍ଡିଏ ଏଣ୍ଡି ଚଦର କାନ୍ଧରେ ପକାଉଥାନ୍ତି । ଖରା, ବର୍ଷା, ଶୀତ, ବସନ୍ତ ସବୁ ଋତୁରେ ସେ 'ଅମ୍ଳାନ' ବସ୍ତ୍ରଟି ତାଙ୍କ କାନ୍ଧକୁ ଶୋଭା ପାଉଥାଏ ।

ସେତେବେଳେ କଲେଜ ଛାତ୍ର କେହି ପେଣ୍ଟ୍ ପିନ୍ଧୁନଥିଲେ । ଧନୀଘରର ପିଲାମାନେ ସେନ୍‌ଗୁପ୍ତ ମିଲ୍‌ର ସରୁ ଧୋତି, ଇଙ୍ଗ୍ଲିସ୍ କିମ୍ବା ଫୁଲ୍‌ସାର୍ଟ ଓ ହାଫ୍-ସୁ ପିନ୍ଧୁଥିଲେ । ଅନେକ ପ୍ରଫେସର ବି ଧୋତି ପଞ୍ଜାବୀ ପିନ୍ଧି ଆସୁଥିଲେ । ଆମ କ୍ଲାସରେ ପ୍ରଫେସର ଶାରଦାକାନ୍ତ ଗାଙ୍ଗୁଲିଙ୍କ ପୁଅ କେବଳ ମାତ୍ର ଖାକି ହାଫ୍ ପେଣ୍ଟ୍ ପିନ୍ଧୁଥିଲା । ଆଇ. ଏ, ଆଇ.ଏସ୍ ସି. ଏ ଦୁଇ ଶ୍ରେଣୀରେ ଜଣେ ମାତ୍ର ଛାତ୍ରୀ ପଢୁଥିଲେ ପ୍ରିନସ୍‌ପାଲ୍ ହୃଦୟରଞ୍ଜନ ବାଯେଜାଙ୍କ କନ୍ୟା କଳାବତୀ ବାଯେଜା । ସମସ୍ତ କଲେଜରେ ୪।୫ ଜଣ ମାତ୍ର ଛାତ୍ରୀ ପଢ଼ୁଥାନ୍ତି ।

ଏମିତି ମଫସଲିଆ ଧୂଳି ଧୂସରିଆ ବେଶ, ହେହେଉ ଧରି ଆମେ ଛତ୍ରବଜାର ବାଟେ ଯାଇ କଲେଜ୍ ପାଚେରୀ ଡେଇଁ ହତା ଭିତରେ ପଶୁଥିଲୁ । ବହିପତ୍ର ସେତେଣି କିଛି ନଥାଏ ଆମର । ଖାତା କେଇଖଣ୍ଡ, ପେନ୍‌ସିଲ୍‌ଟାଏ । ଏଇ ହେଲା ବିଦ୍ୟାର୍ଥୀର

ଶଳୁନ । ଫାଉଣ୍ଟେନ୍ ପେନ୍‌ର ବହୁଳ ପ୍ରଚ୍ଳନ ହୋଇ ନଥିଲା । ଥିଲାପରି ପିଲାମାନେ 'ବ୍ଲାକ୍‌ବାର୍ଡ', 'ସେଫାଇ' କଲମ ଖଣ୍ଡିଏ ଖଣ୍ଡିଏ ପକେଟ୍‌ରେ ଖୋସିଥିଲେ । କଲେଜରୁ ଶୂନ୍ୟ ଜଠରରେ ଫେରିଲା ବେଳେ ବନ୍ଧୁ ଲକ୍ଷ୍ମୀଧର ଖାତା ଖଣ୍ଡିକ ପେଁକାଲି ଭଳି ମୋଡ଼ି, "ଲଉଡ୍‌ସ୍ପିକର"ରେ ଗୀତ ଗାଏ—"ରଜନୀ ରାଣୀକି ଛୋଡ଼ି ଦେଲି ମେଲଣି—ପ୍ରେମ-ବାସ୍ତାଣୀ ।" ଶ୍ରେଣୀରେ ଓଡ଼ିଆପିଲା କେବଳ ଗୀତ ଗାଇପାରେ ସିନା !

ଆଇ. ଏ. ଦ୍ୱିତୀୟ ବର୍ଷକୁ ଆମକୁ ଘଟଣାକ୍ରମେ ତେଲେଙ୍ଗା ବଜାର ଛାଡ଼ିବାକୁ ପଡ଼ିଲା । ଗୃହରାହୀ ବାବୁଙ୍କର ବଦଳି ହେଲା, ଆଉ ମୁଁ ଆଶ୍ରୟଦାତା ପିତୃବ୍ୟଙ୍କର ଈର୍ଷାର ଶରବ୍ୟ ହୋଇ ତାଙ୍କଠାରୁ ଦୂରେଇ ରହିବାକୁ ଚେଷ୍ଟାକଲି ।

ବକ୍‌ସି ବଜାର ବଣିଆ ସାହିର ୺ କୃଷ୍ଣ ମହାନ୍ତିଙ୍କ ବାହାର ଘରେ ଶେଷକୁ ଆମକୁ ଆଶ୍ରା ଟିକିଏ ମିଳିଲା । କୃଷ୍ଣବାବୁଙ୍କର ସହୃଦୟତାର ପଟାନ୍ତର ନାହିଁ । କୁଂଜବାବୁଙ୍କ କଥାଭାଷା, ଭାବଭଙ୍ଗୀରୁ ସେ କଅଣ ଠଉରେଇଲେ, କଅଣ ଦେଖିଲେ ତାଙ୍କର ଚେହେରାରୁ କେ ଜାଣେ, ସେ ଉହ୍ଲେଇ ପାଖରୁ ଉଠି ଆସିଲେ, ଆମେ ବସାଘର ଖୋଜି ଖୋଜି ପଚାରି ପଚାରି ଯେତେବେଳେ ତାଙ୍କ ପିଣ୍ଡାତଳେ ଠିଆହେଲୁ । ସେ କରଣ କୁଳରେ ଜନ୍ମ ହୋଇଥିଲେ ବି, ସାଙ୍ଗ ସୁଖରେ ପିଲାଦିନୁଁ ସୁନାରି ବଣିଆ ପିଲାଙ୍କ ସାଙ୍ଗରେ ଅଳଙ୍କାର ଗଢ଼ିବା ଶିଖିଥିଲେ ଓ ସେହି କର୍ମଦ୍ୱାରା କର୍ମ ଚଳାଉଥିଲେ ଦୁଃଖେ କଷ୍ଟେ । ମନରେ ଶୋଚନା ନଥାଏ କେବେ ହେଲେ । ସେ ସୁନା ଚହ୍ଲୁଥିଲେ ଆଉ 'ଗୁଣ' ବି ଚହ୍ଲୁଥିଲେ ।

ତାଙ୍କ ବାହାର ଘରେ ପଡ଼ିଥାଏ ଖଣ୍ଡେ ଜବ୍‌ଜୀର୍ଣ୍ଣ ଦୋଳୁଳିମାନ ଗ୍ଣ୍ଡରପୋକ ପରିପୂର୍ଣ୍ଣ ଖଟିଆ ; କୁଂଜବାବୁ ତା ଉପରେ ତାଙ୍କର ହରିଣ ମାର୍କା ସପ ଖଣ୍ଡିକ ଓ ମୁଚଲାଟାଏ ପକାଇ ପଡ଼ିଯାନ୍ତି । ତାଙ୍କୁ ଗ୍ଣ୍ଡରପୋକ କାମୁଡ଼ା କାଟେ ନାହିଁ । କହନ୍ତି ଗ୍ଣ୍ଡ-ର୍ ପୋକ ଗୁଡ଼ାକ ପାଖରେ ମଣିଷ ହାରିଯିବ, ଆନ ଗ୍ଣ୍ଡଡ଼ିଦେବ ? ଦେଖିବ ଦେଖି ? ମୁଁ ସେହି ଖଟ ପାଖରେ ତଳେ ସପ ଖଣ୍ଡିକରେ ପଡ଼ିଯାଏ । "ଭୋଜନ ଯତ୍ର କୁତ୍ରାପି, ଶୟନ କୁଞ୍ଜ ମନ୍ଦିରେ "। ସେ ବାସୁଦେବ ରଥ, ବାଣକ୍ ମିସ୍ତ୍ରୀ ବାଲିହାର ଏସ୍. ଡ଼ି. ଓ. ଘରେ ଗୃହ ଶିକ୍ଷକ ଭାବରେ ଖାଉଥାନ୍ତି ଆଉ ମୋ ପାଇଁ ଗୋଟାଏ ସାର୍ବଜନୀନ ମେସ୍ ବା 'ପାନ୍ଥଶାଳା' ଠିକ୍ କରି ଦେଇଥାନ୍ତି । ଜଳଖିଆ ପାଇଁ ମୋ ପାଖରେ ପଇସାପତ୍ର କେତେବେଳେ ନଥାଏ । ତାଙ୍କ ସାଙ୍ଗରେ ବେଳବୁଡ଼େ ନଈ ଆଡ଼କୁ ବୁଲିଯାଏ । ବାଟରେ ଦ'ଖଣ୍ଡ ରୁଟି କିଣି ସେ ମୋତେ ଖଣ୍ଡିଏ ବଢାଇ ଦିଅନ୍ତି । ବାଟରେ ଘାଟରେ କେତେକେତେ ଅସହାୟ, ଦୀନ, ଅରକ୍ଷିତ ଲୁଆ ଆଖିରେ ପଡ଼ନ୍ତି । ସେମାନଙ୍କ ପାଖରେ ସେ ଠିଆ ହୁଅନ୍ତି, ତାଙ୍କ ମୁହଁକୁ ନିରେଖି ଚାହାନ୍ତି । ପାଖରେ ପଇସାଥିଲେ, ପଇସାଏ,

ଅଧଲାଏ ସେମାନଙ୍କ ହାତରେ ଦଅନ୍ତି, କହନ୍ତି—"ଟିକିଏ ହସିଲୁ।" ଶୁଷ୍କମୁହଁରେ ହସ ଟିକିଏ ଫୁଟିଉଠେ, କାନ୍ଦିବାରୁ ଆହୁରି କରୁଣ ସେ ଉକ୍ତି ହସ। ସେତିକି ଦେଖିଲେ ସେ ଉତ୍ଫୁଲ୍ଲ ହୁଅନ୍ତି। କହନ୍ତି ଅଲ୍ପଦେଇ ବହୁତ ପାଇଗଲି! ଲୁଚକାଉ ବେପାରୀଙ୍କ ଭଲିଏ କାଇଦା ମାଲୁମ୍ ଅଛି ? ଓଡ଼ିଆ ପିଲାଟି ! ହେଁ···

ସେବା-ତତ୍ପର, ଅଫୁରନ୍ତ ଦରଦଭରା ପ୍ରାଣ କୁନ୍ତଳାଙ୍କୁ ସବୁ କାଙ୍ଗାଳ, ଅରକ୍ଷିତ ଚହ୍ନି ପାରନ୍ତି; ତାଙ୍କ ସ୍ୱର, ତାଙ୍କର ପାଦର ଗନ୍ଧ ବାରି ପାରନ୍ତି। ଆମ ବସା ସାମନାରେ ଜଣେ ଚନ୍ଦା ମୁଣ୍ଡିଆ ସୁନାରି ବଣିଆର ଘର ଥାଏ। ସେ ଘର ଖଣ୍ଡିକ ସବୁବେଳେ ଅ-ଛପର। ଗ୍ରୀଷ୍ମ ବାଟେ ସୂର୍ଯ୍ୟ-ଚନ୍ଦ୍ରଙ୍କ କିରଣ ଘର ଭିତରେ ବୁଣି ପଡ଼େ। ଘର ଦୁଆରେ ଅଖା, କେରପାଲ ଝୁଲୁଥାଏ। ସେଇ 'ଘର' ଭିତରୁ ସଦାସର୍ବଦା ନାରୀ ଓ ଶିଶୁ କଣ୍ଠର ଆର୍ତ୍ତିସ୍ୱର ଶୁଭୁଥାଏ। ବୁଭୁକ୍ଷୁର ଚିତ୍କାର। ତେବେ ବି ପ୍ରତିବର୍ଷ ସେହି ଜୀର୍ଣ୍ଣ କୁଟୀରର ଅଭ୍ୟନ୍ତରରୁ ନବଜାତ ଶିଶୁର କୁଆଁ କୁଆଁ ସ୍ୱର ସେହି ଗଳିଟିକୁ ପ୍ରତିଧ୍ୱନିତ କରିଥାଏ। ଦିନେ ସକାଳେ ସେହି ଭଙ୍ଗାଘରୁ ତାଜା ଶିଶୁରବ ଶୁଭିଲା, ଆଗ ତାଙ୍କ କାନକୁ, ତା ପରେ ମୋତେ। କହିଲେ—ଫେର୍ ଗୋଟାଏ ଅଇଲାରେ! ସେ ଘରେ କି ଆକର୍ଷଣୀ ଶକ୍ତି ଅଛି କେ ଜାଣେ, ବର୍ଷକୁ ବର୍ଷ ଗୋଟାକୁ ଗୋଟା ପୁଅ ଆକାଶରୁ ଖସି ପଡ଼ୁଛି। କେତେ ଦିଅଁ ଦେବତା କରି ବି କାହାକୁ ପୁଅ ବଳଟେ ମିଳୁ ନାହିଁ। ହ୍ୟାପ ପୋଷିବାକୁ କୁ ନାହିଁ। ପ୍ରେମକୁ ଦେଖ।

ଅଳୀକ କ୍ରୋଧ ସଙ୍ଗେ ସଙ୍ଗେ ହସ। ତା' ପରେ ସେ ନିଜର କର୍ତ୍ତବ୍ୟ ପ୍ରତି ସଚେତନ ହୋଇ ପଡ଼ିଲେ। ସେ ତାଙ୍କ ଖଟିଆ ଉପରୁ ସପ ଖଣ୍ଡିକ, ଚଦରଟା ଉଠାଇ ନେଇ "ପ୍ରସୂତି ଶାଳାରେ" ଥୋଇ ଦେଇ ଆସିଲେ। ବଜାରକୁ ଗଲେ। ଚାଉଳ, କାଠ ଦି' ବୋଝ, ତେଲ, ଲୁଣ, ପଶରା, ସାଗୁ, ବାର୍ଲି, ଚିନି, ମିଶ୍ରି ରୁ କିଛି କିଛି କିଣି ତା ପିଣ୍ଡାରେ ରଖିଦେଇ ଆସି ଦୀର୍ଘ ନିଃଶ୍ୱାସଟିଏ ଗ୍ରାଡ଼ି କହିଲେ, ଜାହି ମଧୁସୂଦନ। ସତେ କି ସେ ଲୋକଟା ତାଙ୍କର କେହି ଆତ୍ମୀୟ ସ୍ୱଜନ !

ସେ ବେ-ଲଜ୍ଜ ଲୋକଟା ବି ଦାତାର ଦୁର୍ବଳତା ଠଉରିକରି ଯେତେବେଳେ ଘରେ କିଛି ଖାଇବାକୁ ମିଳେ ନା, ସେତେବେଳେ ନାନା ଭାବଭଙ୍ଗୀ ଦେଖାଇ ଅଣ୍ଟୁ ଝୁରାଇ କିଛି ପାଇବାକୁ ଅପେକ୍ଷା କରି ବସେ।

ପରମନ ଜଗି, ପରପିଲାଙ୍କ ସଙ୍ଗରେ ସଞ୍ଜେ ସକାଳୁ ବକର ବକର ହୋଇ ଯାହା ହାତଖର୍ଚ୍ଚ। ପାଆନ୍ତି, ତାକୁ ସେ ଏମେନ୍ତି ଖର୍ଚ୍ଚ କରି ଦଅନ୍ତି। ବହି ଖଣ୍ଡେ କିଣି ପାରନ୍ତି ନାହିଁ। ପରୀକ୍ଷାବେଳେ କଲେଜ୍ ହଷ୍ଟେଲ୍ରୁ ବହି ମାଗି ଆଣି ଆକୁଳ ପ୍ରାଣରେ

ସେଥିରୁ ବିଷୟ ନିର୍ବାଚନ କରି ଆମେ ମୁଖସ୍ଥ କରି ପକାଉ କିମ୍ବା ଟିପି ପକାଉ । ପରଦିନ ବହି ଫେରସ୍ତ ଦିଆଯାଏ । ଅବସର ସମୟରେ ସେ ସଂସ୍କୃତ ଶ୍ଳୋକମାନ ଘଣ୍ଟା ଧରି ଆବୃତ୍ତି କରନ୍ତି । ତାଙ୍କ ବାହୁନି ଗୁଣ୍ଡରେ 'ଅସ୍ତ୍ୟୁତ୍ତରସ୍ୟାଂ ଦିଶି ଦେବତାତ୍ମା ହିମାଳୟୋ ନାମଃ ନଗାଧି ରାଜଃ × × ' କବିବର ରାଧାନାଥ ରାୟଙ୍କର ଅନେକାନେକ କବିତା ତାଙ୍କର ମୁଖସ୍ଥ ଥାଏ । ତାଙ୍କ କବି-ଜୀବନରେ ରାଧାନାଥ ହିଁ ଥିଲେ ଆଦ୍ୟଗୁରୁ-ଦିଗ୍‌ଦର୍ଶକ ।

କଲେଜ୍‌ଜୀବନରେ ତାଙ୍କ ସହିତ ଲେଖକଙ୍କର ପ୍ରଥମ ପରିଚୟ । ସମଧର୍ମୀ ଭାବରେ ସେହି ପରିଚୟରୁ ନିବିଡ଼ ବନ୍ଧୁତା । ଗ୍ରୁପ ଜୀବନରେ ଆମେ ଦିହେଁ କବିତା ଲେଖା ଅଭ୍ୟାସ କରୁଥିଲୁ । ତାଙ୍କର ନିଜ ଉପରେ ଯଥେଷ୍ଟ ପ୍ରତ୍ୟୟ ଥିଲା । ନିଜ ରଚନାକୁ ସର୍ବ ସମ୍ମୁଖରେ ସେ ନିର୍ଭୟରେ ଆବୃତ୍ତି କରି ପାରୁଥିଲେ । ସେତିକି ସତ୍ସାହସ ମୋର ନଥିଲା । ଲୋକ-ଦୃଷ୍ଟିରୁ ମୁଁ ନିଜକୁ ସଦାସର୍ବଦା ଦୂରେଇ ରଖୁଥିଲି ! ଏହି 'ଲାଜୁକ' ସ୍ୱଭାବ ମୋର ଜୀବନରେ ଏକ ଦୁର୍ଲଂଘ୍ୟ ପ୍ରତିବନ୍ଧକ ହୋଇ ଠିଆ ହେଲା । ମୋତେ ସେ ବେଳେବେଳେ ପରିହାସରେ କୁହନ୍ତି—ଆଜି ପର୍ଯ୍ୟନ୍ତ ବି-"ମୁଣ୍ଡରେ ଓଢଣା ଟାଏ ଦେଉନ୍ତୁ ? ସେ ମୋତେ ଯେତିକି ଆଗକୁ ଭିଡନ୍ତି, ହାତଗୁଡ଼ ଦେଲେ ମୁଁ ସେତିକି ପଛକୁ ଖସିଆସେ । ଏମିତି ହାତ-ଛଡ଼ା ହୋଇ ମୁଁ ପଛକୁ ପଛ ଖସିଗଲି । ସେ ଏମ୍, ଏ, ପଢିବାକୁ କଲିକତା ଗଲେ; ମୁଁ ତାଙ୍କ ହାତର ସ୍ପର୍ଶ ଆଉ ପାଇ ପାରିଲି ନାହିଁ ! ଜୀବନର ମାର୍ଗ ବଦଳି ଗଲା ।

ଏମ୍.ଏ. ପାଶ୍‌ପରେ ସେ ତିନି ଚାରି ମାଇଲ୍ ବାଟ ଚାଲି ଚାଲି କଲିଟଙ୍ଗି କଟେଜ୍ ଯାଏ ଆସିଥିଲେ ତାଙ୍କର କୃତିତ୍ୱ ଜଣାଇବାକୁ । କଲିକତା ବିଶ୍ୱ ବିଦ୍ୟାଳୟରୁ ସେ ତିନୋଟି ସ୍ୱର୍ଣ୍ଣପଦକ ଲାଭ କରିଥିଲେ ।

ମୁଁ ଅଧାବାଟରୁ ଓହରି ଗଲି । 'ହର୍ଡଲ୍ ରେସ୍' ରେ ପାରି ଉଠିଲି ନାହିଁ । ପ୍ରତିକୂଳ ପରିସ୍ଥିତିର ଉର୍ଦ୍ଧ୍ୱକୁ ଉଠିଯିବାର, ଉତ୍ତାଳ ଫେନଚୂଡ଼ ଲହରୀକୁ ଡେଇଁ ଯିବାର ଶକ୍ତି ତାଙ୍କର ଥିଲା । କୌଣସି କାର୍ଯ୍ୟ ସାଧନ ପାଇଁ ସେ 'ମଧ୍ୟସ୍ଥ'ର ସହାୟତା ଲୋଡନ୍ତି ନାହିଁ । ଟିଉସନ୍, ଯାଦର ଖୋଜି ଖୋଜି ସେ କଟକ ସହର ପୂର୍ବ ପଶ୍ଚିମ, ଉତ୍ତର ଦକ୍ଷିଣ ପରିକ୍ରମା କରନ୍ତି ପଦ-ବ୍ରଜରେ । କ୍ଳାନ୍ତି,ଅବସାଦକୁ ସେ ସ୍ୱୀକାର କରନ୍ତି ନାହିଁ । ଏମିତି ଥରେ ଟିଉସନ୍ ଖୋଜି ଖୋଜି ମଙ୍ଗଳାବାଗ୍‌ରୁ ଓଡ଼ିଆ ବଜାର ଯାଏ ଯାଇଥିଲୁ । ଭଦ୍ରଲୋକ ଘର ବୋଲି ମନେ ହେଉଥିବା ସବୁଘରେ ସେ ସନ୍ଧାନ ନେଲେ, ପିଲାଙ୍କୁ ଡ଼ାକି ପଚାରିଲେ ହାଇସ୍କୁଲ ବାବୁ ! କେଉଁଠି ପଢୁଛ ? କିଏ ପଢ଼ାଉଛି ? ଘରେ ମାଷ୍ଟ୍ରେ ଅଛନ୍ତି ? ଏମିତି ପଚାରି ପଚାରି ଶେଷକୁ ନେତାଜୀ ସେବାସଦନ ପାଖରେ

ଜଣକ ଘରେ ସନ୍ଧାନ ମିଳିଲା । ଗୃହେଷ୍ଟି ପିଲା । ସନ୍ଧ୍ୟା ଛଅଟାରୁ ରାତି ନଅଟା ଯାଏ ପଢ଼ାଇବାକୁ ହେବ । ଦରମା ମାସକୁ ଦଶଟଙ୍କା । ଗ୍ରୀଷ୍ମାବତି ଛୁଟି ! ଯେତିକ ମିଳିଲା ଯଥେଷ୍ଟ ।

ତାଙ୍କ ଗୋଡ଼ କେଉଁଠି ଅଟକି ଯାଏ ନାହିଁ । ନିତାନ୍ତ ବାଧ୍ୟ ତାଙ୍କର ସେ ବଳିଷ୍ଠ ପାଦ ଦୁଇଟି ତାଙ୍କର ବିଶାଳ ବପୁଟିକୁ ବହନ କରି ଚାଲିଆସିଛି, ଅଭିଯୋଗରେ ବହୁ ବହୁ ଦୂର ଦୂରାନ୍ତକୁ ବହି ନେଇଛି, ଦୂରକୁ ନିକଟ କରିଛି—ଥକି ଯାଇ ନାହିଁ । ସେ ଗୋଡ଼କୁ କଣ୍ଟା ଫୁଟାଇ ପାରିନାହିଁ, ଟେମା ପଥର କ୍ଷତ ବିକ୍ଷତ କରି ପାରିନାହିଁ ।

ସବୁଠି ସବୁସମୟରେ ସେ ଲୋଡ଼ିବା ବେଳେ ପହୁଞ୍ଚିଯାଆନ୍ତି ।

କଲେଜ୍‌ରେ ତାଙ୍କୁ ଟପିଯିବା ଭଳି ବହୁ ବହୁ ମେଧାବୀ ଛାତ୍ରଥିଲେ । ମାତ୍ର ଅଧ୍ୟାପକ ଓ ଛାତ୍ର ସମାଜରେ ସେ ସମସ୍ତଙ୍କର ଅତି ଆପଣାର ଥିଲେ । ସମସ୍ତେ ତାଙ୍କୁ ଭଲ ପାଉଥିଲେ, ନିରାଡ଼ମ୍ବର, ନିର୍ଭୀକ ଓ ସେବା-ପରାୟଣ ବପୁବନ୍ତ ସେହି ବ୍ରାହ୍ମଣ ବିଦ୍ୟାର୍ଥୀଟିକୁ ।

ଆଇ. ଏ କ୍ଲାସରେ ପଢ଼ୁଥିବାବେଳେ ଡଃ.ପରିଜାଙ୍କର 'ଆପେଣ୍ଡିସାଇଟିସ୍' ଅପରେସନ୍ ହେଲା । ସିଭିଲ୍ ସର୍ଜନ୍ କ୍ୟାପ୍‌ଟେନ୍ ଓନିଲ୍ ମେଡ଼ିକାଲ୍ ସ୍କୁଲର ଅଧ୍ୟକ୍ଷ ଥାନ୍ତି । ରୋଗ ଅଣ-ଆୟତ୍ତ ଅବସ୍ଥାରେ ପହୁଞ୍ଚିଥିଲା । ଶଲ୍ୟଚିକିତ୍ସକମାନେ ଅସ୍ତ୍ରୋପଚାର କରିବାକୁ ସାହାସ କଲେ ନାହିଁ । ଓନିଲ୍ ସାହେବ ଅକ୍ଲାନ୍ତ ଶ୍ରମ ସ୍ୱୀକାର କରି ସଫଳ ଅପରେସନ୍ କରିଥିଲେ । ଡଃ. ପରିଜା ଡାକ୍ତରଖାନାରେ ବହୁଦିନ ରହିଥିଲେ । କୁଞ୍ଜବାବୁ ଦିନରାତି ତାଙ୍କର ସେବା କରିଛନ୍ତି, ଦେହପା ଆଉଁସି ଦେଇଛନ୍ତି, ଫଳ ଛଡ଼ାଇ ଖୁଆଇ ଦେଇଛନ୍ତି । ମଝିରେ ମଝିରେ ବିଭିନ୍ନ ଓ୍ୱାର୍ଡରେ ବୁଲନ୍ତି, ରୋଗୀଙ୍କ ପାଖରେ ବସନ୍ତି । ଆଶ୍ୱାସନା ଦିଅନ୍ତି । ମୋତେ ବି ସେଇ କାମରେ ଲଗାନ୍ତି । କହନ୍ତି-ଯା, ତାକୁ ଖୋଇଦେ, ତା ହାତଧରି ପାଇଖାନାକୁ ନେଇଯା । ସହପାଠୀ ହେଲେ ହେଁ ତାଙ୍କୁ ମୁଁ ଗୁରୁଭଳି ଭକ୍ତି କରି ଆସିଛି । ତାଙ୍କ କଥାରୁ ବାହାର ଯାଏ ନାହିଁ ।

ତାଙ୍କ କଥା ମାନି ଏମନ୍ତ ଥରେ ସାରା ରାତି ପାଣି ବୋହି ନୟାନ୍ତ ହେଲି । ବର୍ତ୍ତମାନର ସର୍ବୋଦୟ ଅଫିସ୍ ପାଖରେ ସେତେବେଳେ କେତେଗୁଡ଼ିଏ ଚାଳଘର ଥିଲା । ଥରେ ରାତି ଅଧରେ ସେଇଆଡ଼ୁ ହୋ—ହା ପାଟି ଶୁଭିଲା, ଲୋକେ ଦୌଡ଼ା ଦୌଡ଼ି କଲେ । ଘର ପୋଡ଼ିଗଲା, ଘର ପୋଡ଼ିଗଲା, ଧାଇଁପଡ଼, ଧାଇଁପଡ଼ । ସେ ଆଉ ଥୟ ଧରି ରହନ୍ତେ କେତେବେଳେ ? ସେ ଦଉଡ଼ିଲେ, ମୁଁ ତାଙ୍କ ପଛେ ପଛେ ଦୌଡ଼ିଲି ।

ଗୋଟିଏ ଆବର୍ଜନାପୂର୍ଣ୍ଣ ଗଡ଼ିଆରୁ ଗୃଳିଳ ପାଣି ବୁହା । ଗୋଟିପଣେ କାଦୁଅ, ପଙ୍କ ଓ ଚିଳ ସାଲୁସାଲୁ ହୋଇ ରାତି ପାହାନ୍ତା ସଗକ ସେ 'ଅଘୋର' ଅବଧୂତ ବେଶରେ ବସାରେ ପହଞ୍ଚିଲେ । ତାଙ୍କୁ ଜ୍ୱର, ଶର୍ଦ୍ଦି କିଛି ହେଲା ନାହିଁ । ମୁଁ କିନ୍ତୁ ଦି'ଦିନ ଯାଏ ଅଣ୍ଟା ସଳଖ କରି ପାରି ନଥିଲି ।

ନିଜେ ଅନ୍ୟର କୃପାର୍ଥୀ ହୋଇ ସେ ମୋ ଭଳି ବହୁ ବନ୍ଧୁ ଦୁଃସ୍ଥଗ୍ରସ୍ତଙ୍କୁ ଅହେତୁକୀ କୃପା ପ୍ରଦର୍ଶନ କରିଛନ୍ତି । କଲେଜରେ ବି. ଏ. ପଢ଼ୁଥିବା ସମୟରେ ସେ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ୍ ଅଧ୍ୟାପକ ଡଃ. ବଳଭଦ୍ର ପ୍ରସାଦଙ୍କ ଦୟାରୁ ପଶ୍ଚିମ ଛାତ୍ରାବାସ ସଲଗ୍ନ ପିଅନ୍ କ୍ୱାର୍ଟରରୁ ବଖରାକରେ ରହୁଥାନ୍ତି । ଛାତ୍ରାବାସର ଷ୍ଟୋପେଇଆର ଅନୁଗ୍ରହରୁ ଅଳ୍ପ ମୂଲ୍ୟରେ ଦିବ୍ୟ ସରୁଅନ୍ନ ଓ ବହୁବିଧ ବ୍ୟଞ୍ଜନ ସମେତ ଦି ଜଣଙ୍କ ଖାଇବା ମୁତାବକ ଥାଳିଟିଏ ମିଳିଯାଏ । ସେଇ ବେଳକୁ ମୁଁ ସେଠି ପ୍ରାୟ ପହଞ୍ଚିଯାଏ । ସେହି ଥାଳିରୁ ଅଧେ ସେ ମୋତେ କାଢ଼ି ଦିଅନ୍ତି । ପ୍ରସାଦ ଜ୍ଞାନରେ ମୁଁ ସେତକ 'ପାଇଦିଏ' ।

ବିଧି ନିର୍ଦ୍ଦେଶରେ ଆମ ଦୁହିଁଙ୍କର ଜୀବନର ମାର୍ଗ ଅଲଗା ଅଲଗା ହୋଇଗଲା । ପତ୍ରାଳାପ ମାଧ୍ୟମରେ ଦୂର ବିଦେଶରୁ ସେ ମଝିରେ ମଝିରେ ଉପଦେଶ ଦିଅନ୍ତି— ଲେଖା ଛାଡ଼ିବୁ ନାହିଁଟି । ଛାଡ଼ିଦେଲେ, ମୃତ୍ୟୁ ହେଲା ବୋଲି ଜାଣିବୁ । ସ୍ୱଳ୍ପ ସ୍ୱାସ୍ଥ୍ୟ ନିୟମିତ କିରାଣୀଗିରି କରୁଥିଲେ । ଫକୀର ମୋହନ ତ ବାଲେଶ୍ୱର ନିମକ ମହାଲରେ ଝାଳ ସିଲଇ କାମ କରୁଥିଲେ । ହତାଶ ହେବୁ ନାହିଁ । ତାଙ୍କ ପାଖକୁ ଚିଠି ଦିଏ । ଶେଷରେ ଲେଖେଁ-ହରି ମାହାନ୍ତି—ମରି ନାହାନ୍ତି । ତା ଅର୍ଥ, ମୁଁ ଲେଖା ଛାଡ଼ି ନାହିଁ ।

ସେ ଜୀବନରେ ବହୁ କୃଚ୍ଛ୍ର ସାଧନା କରିଛନ୍ତି, ଅପର୍ଣ୍ଣାଙ୍କ ଭଳି ଶୀତ ତାପ ସହ୍ୟ କରି ତପଃ ଆଚରିଛନ୍ତି ।

ବି. ଏ. ପଢ଼ିବା ଅବସ୍ଥାରେ ଏକଦା ଗ୍ରେ ଧୂଷ୍ଟ ବଜାରରେ ଏକ ଦାତବ୍ୟ କୋଠାଘରେ ରହୁଥିଲେ । ତାଙ୍କ ରହିବା କୋଠରୀଟିକୁ ଏକ ତମସାଚ୍ଛନ୍ନ ଅନ୍ଧକୂପ କହିଲେ ଅତ୍ୟୁକ୍ତି ହେବନାହିଁ । କାନ୍ଥରେ ଦକ୍ଷିଣ ପଟକୁ ଗୋଟିଏ ମାତ୍ର 'ଜାଲ୍ଲିକା' ଥାଏ । ସେଇବାଟେ ବାହାର ଆଲୋକ ଟିକିଏ ଅଭ୍ୟନ୍ତରକୁ ଯତ୍‌କିଞ୍ଚିତ୍ ଆଲୋକିତ କରିଥାଏ । ସେଇ ଜାଲ୍ଲିକା ପାଖରେ ବସି ସେ ବିଦ୍ୟାଭ୍ୟାସ କରୁଥିଲେ । ତାଙ୍କ ବସିବା ସ୍ଥାନ ନିରୂପଣ କରି ନପାରି, ତାଙ୍କ ସ୍ୱରକୁ ଅନୁସରଣ କରି ଗୋଡ଼ ପକାଇ ଯାଉ ଯାଉ ତାଙ୍କ ଉପରେ ଅଜାଡ଼ି ହୋଇ ପଡ଼ିଲି । କହିଲେ— କେଡ଼େ ଉପର ମୁହାଁଟାଏରେ । ତାଙ୍କର ଏ ମନ୍ତବ୍ୟଟି ଭଲ ଲାଗିଲା । ସମସ୍ତେ ମୋତେ 'ତଳମୁହାଁ' ବୋଲି କହୁଥିବା ବେଳେ ତାଙ୍କଠାରୁ ଅପ୍ରତ୍ୟାଶିତ ଭାବରେ ଏ ଉପାଧିଟି ମିଳିଲା । ତାଙ୍କର ଛଳୋକ୍ତି, ବେଳେବେଳେ ଆଶୀର୍ବାଦ ଭଳି କାମ କରିଥାଏ ।

ତାଙ୍କର ସାଧନା ନିଷ୍ଫଳ ହୋଇ ନାହିଁ । ସେ ନିଜକୁ ପ୍ରତିଷ୍ଠିତ କରି ପାରିଛନ୍ତି, ଦେଶର ପ୍ରତିଷ୍ଠା ଖ୍ୟାତି ବଢ଼ାଇ ପାରିଛନ୍ତି । ସେ ତଥାକଥିତ ଅଭିଜାତ ଓ ଶିକ୍ଷିତ ସମ୍ପ୍ରଦାୟର ଦୃଷ୍ଟିକୋଣକୁ ବଦଳାଇ ଦେଇଛନ୍ତି । ସେମାନେ ସମାଜର ନିମ୍ନସ୍ତରରେ ଥିବା ମୂକ ଜନତା-ଜନାର୍ଦ୍ଦନଙ୍କୁ ଭଲ ପାଇବାକୁ , ସମ୍ମାନ ଦେବାକୁ ଶିକ୍ଷା କରିଛନ୍ତି । ଲୋକ-ସାହିତ୍ୟ ଲୋକପ୍ରିୟତା ଅର୍ଜନ କରି ପାରିଛି ।

ତାଙ୍କର ବିରାଟ ବ୍ୟକ୍ତିତ୍ୱ ମୋ ଆଖିକୁ ଝଲସାଇ ଦିଏ । ଲୋକେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଲୋକରତ୍ନ ଡ଼ଃ. କୁଞ୍ଜବିହାରୀ ଦାଶଙ୍କ ପ୍ରତିଭାକୁ ପୂଜା କଲାବେଳେ ମୁଁ ତାଙ୍କର ପ୍ରାକ୍-କଲିକତା ଜୀବନର କାହାଣୀକୁ ମନେ ପକାଏ । ସେତେବେଳେ ସେ ମୋର ନିକଟତମ ହୋଇ ଯାଆନ୍ତି । ଆମେ ଦିହେଁ ଏକାକାର ହୋଇଯାଉଁ ।

ଅନେକାନେକ ସାଙ୍ଗସାଥୀ ବଡ଼ ବଡ଼ ପଦବୀରେ ଅଧିଷ୍ଠିତ ହୋଇଛନ୍ତି । ସେମାନେ ତାଙ୍କ ସ୍କୁଲ ଜୀବନର ଏକଦା ସହପାଠୀ ଏ ଦୀନ ଲେଖକକୁ ଦେଖି ମୁହଁ ବୁଲାଇ ନେଇଛନ୍ତି । ମାତ୍ର ଲୋକରତ୍ନ ଏ ଯାଏ ବି ଏ ଲାଜକୁଆ ଲୋକଟିକୁ ଦୀର୍ଘ ପଚିଶ ବର୍ଷ ତଳର କିଶୋର ସାଥୀ ଭାବରେ ଦେଖି ଆସୁଛନ୍ତି । ସେମିତି ବି ବେଳେବେଳେ ଛୁଗୁଲନ୍ତି, ପରିହାସ କରନ୍ତି । ତାଙ୍କର ହାସ୍ୟ ପରିହାସ ମନରୁ ପଦ୍ୱେଷ ହରିନିଏ । ତାଙ୍କ ପାଖରେ ମୁଁ ବୟସ ଭୁଲିଯାଏ, ପଚିଶ ବର୍ଷ ତଳକୁ ଫେରିଯାଏ ।

ଯଶୋଦା କୃଷ୍ଣଚନ୍ଦ୍ରଙ୍କୁ ସବୁବେଳେ ବାଳଗୋପାଳ ଭାବରେ ଦେଖିଲେ । ମୋ ଆଖିରେ ଲୋକରତ୍ନ ଡଃ ଦାସ ସ୍କୁଲ-ଜୀବନର ନିରାଡ଼ମ୍ବର, ନିରୁପାଧି କୁଞ୍ଜଦାଶ ରୂପରେ ଦେଖା ଦିଅନ୍ତି । ସେ ରୂପ ଭିତରେ ମୁଁ ବିଗତ ଅର୍ଦ୍ଧ ଶତାବ୍ଦୀର ଇତିହାସର ସୂଚନା ପାଏଁ । ତାଙ୍କର ବହିରଙ୍ଗତଳେ ମୁଁ ସେହି କୁଞ୍ଜ ଦାଶକୁ ଦେଖେଁ ଯେ ନିଜେ ମାଟିରେ ଗଢ଼ି ନିଜ ବିଛଣା ଖଣ୍ଡିକ ପଥ-ପ୍ରାନ୍ତର ଅବହେଳିତା ପ୍ରସୂତି ପାଖକୁ ପକେଇ ଦିଏ, ନିଜେ ଧୂଳି ଧୂସରିତ ହୋଇ ଯେ ଅନ୍ୟ ଦେହରୁ ଧୂଳି ଝାଡ଼ି ଦିଏ, ଯାହାର ଆର୍ଷିରେ ସୃଷ୍ଟିର ସବୁ ସୁନ୍ଦର, ସବୁ ମଣିଷ ଭଲ, ଯେ ଅସରନ୍ତି ଉତ୍ସାହର ଉତ୍ସ, ଯେ ମୂକକୁ ବାଚାଳ କରି ପାରନ୍ତି, ଯେ ଦ୍ୱାରକାର ଅଧିପତି ଭଳି ସମ୍ମାନର ଉଚ୍ଚାସନରୁ ଓହ୍ଲାଇ ଆସନ୍ତି ଜରାଜୀର୍ଣ୍ଣ ଶରୀର, ଏକଦା ସ୍କୁଲ ଜୀବନର ସାଥୀ ଦରିଦ୍ର 'ସୁଦାମା'କୁ ପାଖେଟି ନେବାକୁ ।

ତାଙ୍କୁ ପ୍ରଭୁ ମାର୍କଣ୍ଡେୟର ପରମାୟୁ ଦିଅନ୍ତୁ ।

# ବନ୍ଧୁବର

## ।। ଡକ୍‌ଟର ଶ୍ରୀକୁଞ୍ଜବିହାରୀ ଦାଶ ।।

ଡକ୍‌ଟର ଆଶୁତୋଷ ଭଟ୍ଟାଚାର୍ଯ୍ୟ

ଓଡ଼ିଶାର ପ୍ରସିଦ୍ଧ ଲୋକଶ୍ରୁତିବିତ୍ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ସଙ୍ଗେ ମୋର ପ୍ରଥମ ମୌଖିକ ପରିଚୟ ହୁଏ ୧୯୫୮ ଅକ୍ଟୋବର ମାସରେ । ସେତେବେଳେ ଏଲାହାବାଦରେ ନିଖିଳ ଭାରତ ଲୋକଶ୍ରୁତି ସମ୍ମେଳନ ଅନୁଷ୍ଠିତ ହୋଇଥିଲା । ଭାରତର ବହୁ ଗଣ୍ୟମାନ୍ୟ ପ୍ରତିନିଧିମାନଙ୍କ ସହ କଲିକତା ବିଶ୍ୱବିଦ୍ୟାଳୟରୁ ମୁଁ, ଏବଂ ଶାନ୍ତିନିକେତନ ବିଶ୍ୱଭାରତୀରୁ ଡ଼ଃ. କୁଞ୍ଜବିହାରୀ ଦାଶ ଓ ଶ୍ରୀ ଚିତ୍ତରଞ୍ଜନ ଦେବ ସହ ଅଧିବେଶନରେ ଯୋଗଦେବାକୁ ଆସିଥିଲେ । ସେଠାରେ କେତୋଟି ଦିନ ଏକତ୍ର ବାସ କରିବା ଫଳରେ ଯେଉଁ ଘନିଷ୍ଠତା ଆମମାନଙ୍କ ମନରେ ସୃଷ୍ଟି ହୋଇଥିଲା, ତାହା ଆଜି ଆତ୍ମୀୟତା ପର୍ଯ୍ୟାୟକୁ ଉନ୍ନୀତ ହୋଇଛି ।

ଏହା ପୂର୍ବରୁ ୧୯୫୩ ଖ୍ରୀଷ୍ଟାବ୍ଦରେ ଡ଼କ୍ଟର କୁଞ୍ଜବିହାରୀ ଦାଶଙ୍କ A Study of Orissan Folklore ଗ୍ରନ୍ଥ ଓ ୧୯୫୪ ଖ୍ରୀଷ୍ଟାବ୍ଦରେ ମୋର "ବାଂଲାର ଲୋକ ସାହିତ୍ୟ" ଗ୍ରନ୍ଥର ପ୍ରଥମ ଖଣ୍ଡ ପ୍ରକାଶିତ ହୋଇ ଥିଲା । ଡକ୍ଟର ଦାଶଙ୍କ ଇଂରେଜୀ ବହି ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ମୁଁ ତାହା ସଂଗ୍ରହକରି ଆଦ୍ୟୋପାନ୍ତ ପଢିବାର ସୁଯୋଗ ଗ୍ରହଣ କରିଥିଲି । ମୋ ଗ୍ରନ୍ଥରେ ମୁଁ ସର୍ବଦା ଭେରିୟର ଏଲ୍‌ୱିନଙ୍କ ନିର୍ଦ୍ଦେଶିତ ପଦ୍ଧତିରେ ଆଲୋଚନା କରିଥିଲି । କାରଣ ତାଙ୍କଠାରୁ ମୁଁ ଲୋକଶ୍ରୁତି ବିଷୟକ ଶିକ୍ଷା ଲାଭ କରିଥିଲି । ତଥାପି ଡକ୍ଟର ଦାଶଙ୍କ ଗ୍ରନ୍ଥରୁ କିଛି କିଛି ଉଦ୍ଧୃତି ଗ୍ରହଣକରି ବଙ୍ଗଳା ସଙ୍ଗେ ଓଡ଼ିଶାର ସାଂସ୍କୃତିକ ଐକ୍ୟ ନିର୍ଦ୍ଦେଶ କରିଥିଲି । ଏହି ସମୟରୁ ତାଙ୍କ ସଙ୍ଗେ ପରିଚିତ ହେବାର ଆଗ୍ରହ ଜନ୍ମିଥିଲା । କିନ୍ତୁ ମୁଁ ଅନ୍ୟ ଏକ ସରକାରୀ ବିଭାଗରେ କର୍ମରତ ଥିଲି । ଫଳରେ ଆମ ମଧ୍ୟରେ ଯୋଗାଯୋଗ ସମ୍ଭବ ନଥିଲା । ମୁଁ ସେତେବେଳେ ଭାରତ ସରକାରଙ୍କ ନୃତତ୍ତ୍ୱ ସମୀକ୍ଷା ବିଭାଗର ଜଣେ ଗବେଷଣା-କର୍ମୀ । କାର୍ଯ୍ୟାଳୟ ଥିଲା କଲିକତା ଯାଦୁଘର (museum) । କିନ୍ତୁ ବର୍ଷର ଅଧିକାଂଶ ସମୟ ମୋତେ ଡ଼କ୍ଟର ଭେରିୟର ଏଲ୍ ୱିନଙ୍କ ସଙ୍ଗେ ଓଡ଼ିଶା ଓ ମଧ୍ୟପ୍ରଦେଶ ଆଦିବାସୀ ଅଧ୍ୟୁଷିତ ଗାଆଁରେ ଘୂରିବାକୁ ହେଉଥିଲା ।

୧୯୫୫ରେ ମୁଁ କଲିକତା ବିଶ୍ୱବିଦ୍ୟାଳୟର ଆଧୁନିକ ଭାରତୀୟ ଭାଷା ବିଭାଗରେ ଅଧ୍ୟାପକ ପଦରେ ଯୋଗଦେଲି । ମୋ ଜୀବନରେ ଏକ ସ୍ଥିତି ଆସିଲା । ଏହି କଲିକତା ବିଶ୍ୱବିଦ୍ୟାଳୟ ପକ୍ଷରୁ ଏଲାହାବାଦ ସର୍ବଭାରତୀୟ ଲୋକସଂସ୍କୃତି ସମ୍ମେଳନରେ (୧୯୫୮) ଯୋଗ ଦେବାକୁ ଯାଇ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ସଙ୍ଗେ ପ୍ରଥମ ସାକ୍ଷାତର ସୁଯୋଗ ଘଟିଲା ।

୧୯୫୮ରେ ଏଲାହାବାଦଠାରେ ନିଖିଳ ଭାରତ ଲୋକ ସଂସ୍କୃତି ସମ୍ମେଳନର ଯେଉଁ ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା, ପରବର୍ତ୍ତୀ କାଳରେ ଏପରି ସାର୍ଥକ ଓ ସର୍ବାଙ୍ଗ ସୁନ୍ଦର ଲୋକ-ସଂସ୍କୃତି ଅଧିବେଶନ ଭାରତବର୍ଷରେ ଆଉ କେଉଁଠି ହୋଇନାହିଁ । ସେଇଥିଲାଗି ଏହି ସମ୍ମେଳନ ବିଷୟ ଟିକିଏ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇପାରେ ।

ଏହି ଅନୁଷ୍ଠାନର ଏକକ ସଂଗଠକ ଓ ଉଦ୍ୟୋକ୍ତା ଥିଲେ ଡକ୍ଟର କୃଷ୍ଣଦେବ ଉପାଧ୍ୟାୟ । ସେ ଉତ୍ତରପ୍ରଦେଶର କାନପୁର ଡିଗ୍ରୀ କଲେଜର ପ୍ରବୀଣ ହିନ୍ଦୀ ଅଧ୍ୟାପକ ଥିଲେ । ସେ ଇତିପୂର୍ବରୁ ଭୋଜପୁରୀ ଲୋକସାହିତ୍ୟ ସଂଗ୍ରହ ଓ ଗବେଷଣାରେ ଖ୍ୟାତି ଅର୍ଜନ କରିଥିଲେ । ସେ ନିଜର ଏକକ ସଂଗଠନ ଶକ୍ତିରେ କି ଭାବରେ ଏଇ ବିରାଟ ବ୍ୟୟସାଧ୍ୟ ଅନୁଷ୍ଠାନ ଆୟୋଜନ କରିଥିଲେ, ତାହା ମୁଁ ଆଜି ପର୍ଯ୍ୟନ୍ତ ମଧ୍ୟ କଳନା କରିପାରି ନାହିଁ ।

ଏହି ସମ୍ମିଳନୀର ସଭାପତି ଥିଲେ ସ୍ୱାମୀ ବିବେକାନନ୍ଦଙ୍କ କନିଷ୍ଠ ଭ୍ରାତା ଭୂପେନ୍ଦ୍ର ନାଥ ଦତ୍ତ । ଉଦ୍‌ବୋଧନ କରିଥିଲେ ଉତ୍ତରପ୍ରଦେଶର ତଦାନୀନ୍ତନ ମୁଖ୍ୟମନ୍ତ୍ରୀ ଡକ୍ଟର ସମ୍ପୂର୍ଣ୍ଣାନନ୍ଦ । ସମ୍ମେଳନର ସାଫଲ୍ୟ କାମନା କରି ଶୁଭେଚ୍ଛାବାଣୀ ପଠାଇଥିଲେ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁ, ମଧ୍ୟପ୍ରଦେଶ ରାଜ୍ୟପାଳ ଡଃ. କୈଳାସନାଥ କାଟ୍‌ଜୁ, ଭାରତର ପ୍ରାୟ ପ୍ରତ୍ୟେକ ବିଶ୍ୱବିଦ୍ୟାଳୟର କୁଳପତିଗଣ, ଇଉରୋପ ଆମେରିକା ବିଶ୍ୱବିଦ୍ୟାଳୟ ଗୁଡ଼ିକର ବିଶିଷ୍ଟ ଲୋକଶ୍ରୁତି ବିଷୟକ ବିଶେଷଜ୍ଞଗଣ ଓ ଆହୁରି ଅନେକ ।

ପ୍ରଥମ ଦିନର ମୂଳ ଅଧିବେଶନ ପରେ, ପରବର୍ତ୍ତୀ ତିନିଦିନ ତିନୋଟି ଶାଖା ଅଧିବେଶନ ହୋଇଥିଲା । 'ନୃତତ୍ତ୍ୱ ଓ ଲୋକ ସଂସ୍କୃତି' ଶାଖାରେ ମୋତେ ଓ 'ଲୋକ-ସାହିତ୍ୟ' ଶାଖାରେ ଡକ୍ଟର କୁଞ୍ଜବିହାରୀ ଦାଶଙ୍କୁ ସଭାପତିତ୍ୱ କରିବାକୁ ବଛା ହୋଇଥିଲା । ଏହି ଶାଖା ଅଧିବେଶନରେ ସାର୍ ଆଶୁତୋଷଙ୍କ ପୃଷ୍ଠପୋଷକତାରେ ଦୀନେଶ ଚନ୍ଦ୍ର ସେନ ଯେଉଁସବୁ ମୂଲ୍ୟବାନ କାମ କରିଥିଲେ ତାହା ବିଶଦ୍ ଭାବରେ ଆଲୋଚନା କରିଥିଲି । ଡକ୍ଟର ଦାଶ ନିଜର ବିଜ୍ଞ ସଭାପତି ଭାଷଣରେ ମୋତେ ଅକୁଣ୍ଠ ସମର୍ଥନ କରିଥିଲେ ।

ଏହାପରେ ଡକ୍ଟର କୃଷ୍ଣଦେବ ଉପାଧ୍ୟାୟଙ୍କ ସଂଗଠନ ମାଧ୍ୟମରେ ଆଉରି ଦୁଇ ଥର ଅଖିଳ ଭାରତୀୟ ଲୋକସଂସ୍କୃତି ସମ୍ମେଳନ ଅନୁଷ୍ଠିତ ହୋଇଥିଲା । ଗୋଟିଏ ୧୯୫୯ରେ ବୋମ୍ବାଇ ସହରରେ, ଅନ୍ୟଟି ୧୯୬୧ରେ ଉଜ୍ଜୟିନୀରେ । ଏଇ ଦୁଇ ସମ୍ମିଳନୀରେ ଆମେ ଦୁହେଁ ଯୋଗ ଦେଇଥିଲୁ । ଏହି ଦୁଇ ଅଧିବେଶନ ମଧ୍ୟ ପ୍ରଥମ ଅଧିବେଶନ ଭଳି ଆଡମ୍ବରପୂର୍ଣ୍ଣ ଓ ମହତ୍ତ୍ୱ ଲାଭ କରିଥିଲା । ବୋମ୍ବାଇ ଅଧିବେଶନରେ ସଭାପତି ଥିଲେ ବୋମ୍ବାଇ ପ୍ରଦେଶର ରାଜ୍ୟପାଳ ଶ୍ରୀ ଶ୍ରୀପ୍ରକାଶ । ଏଥିରେ ମଧ୍ୟ ତିନି ଗୋଟି ଶାଖା ଅଧିବେଶନ ହୋଇଥିଲା । ଗୋଟିଏ ଅଧିବେଶନରେ ଡକ୍ଟର ଦାଶ "The life motif-Index in Oriya Folk-literature" ନାମକ ଏକ ପ୍ରବନ୍ଧ ପାଠ କରିଥିଲେ; ମୁଁ ମଧ୍ୟ ଗୋଟିଏ ଅଧିବେଶନରେ The Serpents in Bengali Proverb ନାମରେ ଗୋଟିଏ ପ୍ରବନ୍ଧ ପାଠ କରିଥିଲି । ସମ୍ମିଳନୀ ଶେଷରେ ବମ୍ବେର ଦର୍ଶନୀୟ ସ୍ଥାନ ସକଳ ଡକ୍ଟର ଦାସ ଓ ତାଙ୍କର ଗୁରୁ ଗୁରୁଣୀଙ୍କ ଗହଣରେ ମୁଁ ମଧ୍ୟ ସାଙ୍ଗ ହୋଇ ଦେଖିଥିଲି । ଏଇଭଳି ଯୋଗାଯୋଗ ମଧ୍ୟ ଦେଇ ଆମମାନଙ୍କର ସମ୍ପର୍କ ଘନିଷ୍ଠତର ହୋଇଥିଲା ।

ମଝିରେ ଗୋଟିଏ ବର୍ଷ ବାଦ୍ ଦେଇ ପୁଣି ମଧ୍ୟ-ଭାରତର ପ୍ରାଚୀନ ପ୍ରସିଦ୍ଧ ସହର ଉଜ୍ଜୟିନୀ ମହାନଗରରେ ନିଖିଳ ଭାରତ ଲୋକସଂସ୍କୃତି ସମ୍ମିଳନୀର ତୃତୀୟ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଲା । ଏହା ୧୯୬୧ ଖ୍ରୀଷ୍ଟାବ୍ଦ । ଉଜ୍ଜୟିନୀରେ କାଳିଦାସ ସମାରୋହ ଲାଗି ମଧ୍ୟପ୍ରଦେଶ ସରକାର ଗୋଟିଏ ସୁସଜ୍ଜିତ ବିରାଟ ମଣ୍ଡପ ନିର୍ମାଣ କରିଥିଲେ । ସେଇ ମଣ୍ଡପରେ ଯେପରି ଲୋକ ସଂସ୍କୃତି ସମ୍ମିଳନୀ ଅନୁଷ୍ଠିତ ହୋଇପାରିବ କୃଷ୍ଣଦେବ ଉପାଧ୍ୟାୟ ସେଇ ବ୍ୟବସ୍ଥା କରିଥିଲେ । ସମ୍ମିଳନୀ ବସିଲା ୨୫,୨୬,୨୭ ନଭେମ୍ବର୍ ୧୯୬୧ । ଡକ୍ଟର କେ. ଏନ. କାଟ୍‌ଜୁ ସେତେବେଳେ ମଧ୍ୟପ୍ରଦେଶର ମୁଖ୍ୟମନ୍ତ୍ରୀ । ସେ କେବଳ କାଳିଦାସ ସମାରୋହ ମଣ୍ଡପରେ ଲୋକସଂସ୍କୃତି ସମ୍ମିଳନୀ ଅନୁଷ୍ଠାନର ସୁଯୋଗ ଦେଲେ, ତାହା ନୁହେଁ, ନିଜେ ସମ୍ମିଳନୀର ମୂଳ ସଭାପତି ହେବାକୁ ସମ୍ମତ ହେଲେ । ଯଥା ସମୟରେ ନିମନ୍ତ୍ରିତ ହୋଇ ମୁଁ ଓ ଡକ୍ଟର କୁଞ୍ଜ ବିହାରୀ ଦାଶ ଉଜ୍ଜୟିନୀରେ ପହଞ୍ଚିଲୁଁ । ଉଜ୍ଜୟିନୀ ଇତିପୂର୍ବରୁ ମୁଁ ଯାଇ ନଥିଲି । ସେଠାରେ ସମ୍ମିଳନୀରେ ଯୋଗଦେବା ସଙ୍ଗେ ସଙ୍ଗେ ଆମମାନଙ୍କର ତୀର୍ଥ ଓ ଦେଶ ଭ୍ରମଣର ଆନନ୍ଦ ଲାଭପାଇଁ ଇଚ୍ଛା ହେଲା । ପ୍ରକୃତ ପକ୍ଷରେ ସମ୍ମିଳନୀ ଶେଷରେ ବିଦିଶା, ସାଞ୍ଚୀସ୍ତୂପ ଓ ଆଉରି ଅନେକ ଦର୍ଶନୀୟ ସ୍ଥାନ ପରିଦର୍ଶନର ସୁଯୋଗ ପାଇଲି । ବହୁ ସ୍ଥଳରେ ଡକ୍ଟର ଦାଶଙ୍କୁ ମଧ୍ୟ ସଙ୍ଗୀରୂପେ ପାଇଥିଲି ।

ଉଜ୍ଜୟିନୀର ଅଧିବେଶନହିଁ ସେହି ପର୍ଯ୍ୟାୟରେ ଲୋକସଂସ୍କୃତି ସମ୍ମିଳନୀର ଶେଷ ଅଧିବେଶନ ଥିଲା । ଯଦିବା ଏଇ ଅଧିବେଶନ ଅନ୍ୟାନ୍ୟ ଅଧିବେଶନ ଭଳି

ସୁବ୍ୟବସ୍ଥିତ ହୋଇଥିଲା, ତଥାପି ଗୋଟିଏ ବିଷୟରେ ସମ୍ମିଳନୀ ପୂର୍ବ ଗୌରବରୁ ବଂଚିତ ହେଲା । ଅର୍ଥାତ୍ ମଧ୍ୟଭାରତ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ କୈଳାସ ନାଥ କାଟ୍‌ଜୁ, ଯିଏ ପୂର୍ବରୁ ସଭାପତି ପଦ ଗ୍ରହଣ କରିବାକୁ ସ୍ୱୀକୃତ ହୋଇଥିଲେ, ସେ ଅନ୍ୟ କୌଣସି ଜରୁରି କାମ ପଡ଼ିବାରୁ ନିର୍ଦ୍ଦିଷ୍ଟ ସମୟରେ ସଭାରେ ଉପସ୍ଥିତ ହୋଇ ପାରିଲେ ନାହିଁ । ବରଂ ଗୋଟିଏ ବାଣୀ ପଠାଇ ଅନୁପସ୍ଥିତି ଲାଗି ଦୁଃଖ ପ୍ରକାଶ କଲେ ।

ମୋ ଉପରେ ସଭାପତି ଭାର ଅର୍ପିତ ହେଲା । ମୁଁ ମନେ ମନେ ଇତସ୍ତତଃ ହେଉ ଥିଲି । ଏତେ ଦିନ ଧରି ମୁଁ ଓ ଡକ୍‌ଟର ଦାଶ ଶାଖାରେ ଶାଖାରେ ବିଚରଣ କରିଛୁଁ । ଏବେ ହଠାତ୍ ଶାଖା ଗ୍ରାହୀ ମୂଳକାଣ୍ଡକୁ ଓହ୍ଲାଇ ଆସିବା କଥା କୌଣସି ଦିନ ଭାବି ପାରି ନାହିଁ । ଆଜି ଅପ୍ରସ୍ତୁତ ଭାବରେ ଏଇ ନିର୍ଦ୍ଦେଶ ପାଇ ଏକାବେଳକେ ହତଭମ୍ବ ହୋଇଗଲି । ଉଜ୍ଜୟିନୀର ତଥା ସାରା ଦେଶର ବିଶାଳ ଏକ ପଣ୍ଡିତ ସମାଜ ସଭାରେ ସମବେତ ହୋଇଛନ୍ତି । ସମସ୍ତେ ସଭାରମ୍ଭପାଇଁ ପ୍ରସ୍ତୁତ । ମୁଁ ହତାଶ ଭାବରେ ଥରେ ଡକ୍‌ଟର ଦାଶଙ୍କ ଆଡ଼କୁ ଚାହୁଁଛି; ପୁଣିଥରେ ଡକ୍ଟର ଉପାଧ୍ୟାୟଙ୍କ ଆଡ଼କୁ । ସେ ଆଉ ମୁହୂର୍ତ୍ତେ ବିଳମ୍ବ ନକରି ଏକ ବିଶାଳ ବେଦୀର ସୁବିଶାଳ ତକିଆ ଆଗକୁ ମୋତେ ଘେନିଯାଇ ବସେଇ ଦେଲେ ଓ ବୈଦିକ ସ୍ତୋତ୍ର ଗାନ ଦ୍ୱାରା ସଭାକାର୍ଯ୍ୟ ଆରମ୍ଭ ହେଲା । ଶ୍ରୀଯୁକ୍ତା କମଳାଦେବୀ ଚଟ୍ଟୋପାଧ୍ୟାୟ ପ୍ରଧାନ ଅତିଥିରୂପେ ସେଠାରେ ଉପସ୍ଥିତ ଥିଲେ । ତାଙ୍କ ଆସନରେ କୌଣସି ପରିବର୍ତ୍ତନ ଘଟିଲା ନାହିଁ । କେବଳ ମୋର ପରିବର୍ତ୍ତନ ହେଲା ଶାଖାରୁ ମୂଳକାଣ୍ଡକୁ । ଭାବିଲି, କୌଣସି ପ୍ରକାର ସଭାକାର୍ଯ୍ୟ ଶେଷ କରିଯିବି । ଯଥା ସମୟରେ ଇଂରେଜୀରେ ଏକ ତାତ୍‌କ୍ଷଣିକ ମୌଖିକ ବକ୍ତୃତା ଦେଇ ସଭାପତି ଦାୟିତ୍ୱ ଶେଷ କଲି । ଭାବିଲି, ଆସନ୍ତା ବର୍ଷକୁ ଏଇ ଦାୟିତ୍ୱ ପାଳନ କରିବାପାଇଁ ଡକ୍‌ଟର ଦାଶଙ୍କୁ ପ୍ରସ୍ତୁତ ହୋଇ ଆସିବାକୁ କହିବି ।

ପରଦିନ ସକାଳ ବେଳା ଯେଉଁ ଶାଖା ଅଧିବେଶନ ହୁଏ, ସେଥିରେ ଡକ୍‌ଟର କୃଷ୍ଣଚନ୍ଦ୍ର ଦାଶ ସଭାପତିତ୍ୱ କରନ୍ତି । ଶାଖାର ନାମ ଲୋକସଙ୍ଗୀତ ଓ ଲୋକଶିଳ୍ପ । ବହୁ ପଣ୍ଡିତ ସେଥିରେ ସ୍ୱଲିଖିତ ପ୍ରବନ୍ଧମାନ ପାଠ କରିଥିଲେ । ଡକ୍‌ଟର ଦାଶ ସୁଷ୍ଠୁ ଭାବରେ ସଭା ପରିଚାଳନା କରିଥିଲେ । ମୁଁ ସମସ୍ତ ସମୟ ସ୍ଥିର ଭାବରେ ବସି ସଭା ପରିଚାଳନାରେ ତାଙ୍କର ଦକ୍ଷତାରୁ ଅଭିଜ୍ଞତା ସଞ୍ଚୟ କଲି । ଏହି ସଭାରେ ଅନ୍ୟ-ମାନଙ୍କ ମଧ୍ୟରେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ଡକ୍‌ଟର ଟି: ଏନ: ଦୀକ୍ଷିତ, ବରୋଦା ବିଶ୍ୱ-ବିଦ୍ୟାଳୟର ସଙ୍ଗୀତ ନୃତ୍ୟ ଓ ନାଟକ ମହାବିଦ୍ୟାଳୟର ଅଧ୍ୟକ୍ଷ ଶ୍ରୀ ରମେଶଚନ୍ଦ୍ର ମେହେଟା, ବାରାଣସୀ ହିନ୍ଦୁ ବିଶ୍ୱବିଦ୍ୟାଳୟର ଡକ୍‌ଟର ଶ୍ରୀଯୁକ୍ତା ପ୍ରେମଲତା ଶର୍ମା ଆଦି ପ୍ରବନ୍ଧ ପାଠ କରିଥିଲେ । ସଭା ଶେଷରେ ଡକ୍‌ଟର ଦାଶ ନିଜର ପାଣ୍ଡିତ୍ୟପୂର୍ଣ୍ଣ ଲିଖିତ

ସଭାପତି ଅଭିଭାଷଣଟି ପାଠ କଲେ । ଲୋକଶିଳ୍ପ ଓ ଲୋକସଙ୍ଗୀତର କ୍ରମବିକାଶର ଧାରା ଏଥିରେ ସୁନ୍ଦର ଭାବରେ ବିଶ୍ଳେଷିତ ହୋଇଥିଲା । ଲୋକ ସଙ୍ଗୀତର ଗବେଷଣା ଦିଗଟି ଆହୁରି ଗଭୀର ଓ ବିସ୍ତୃତ କରିବାପାଇଁ, ତଥା ଲୋକଶିଳ୍ପ ଓ ଉପକରଣ ଗୁଡ଼ିକୁ ଯଥାସମ୍ଭବ ଅବିକୃତ ଭାବେ ରକ୍ଷା କରିବାପାଇଁ ପରାମର୍ଶ ଦେଲେ ।

୨୭ ନଭେମ୍ବର ୧୯୬୧ ସକାଳ ବେଳା ଶ୍ରୀ ଆଗର ଚାଁନ୍ଦ ନାହ୍‌ଟାଙ୍କ ସଭାପତିତ୍ୱରେ 'ଲୋକସାହିତ୍ୟ' ଶାଖାର ଅଧିବେଶନ ଅନୁଷ୍ଠିତ ହେଲା । ଏଥିରେ ଡକ୍ଟର ଦାଶ ଓଡ଼ିଆ ଲୋକକଥାର ଅଭିପ୍ରାୟ ନିର୍ଦ୍ଦେଶ କରି ଗୋଟିଏ ପ୍ରବନ୍ଧ ପାଠ କଲେ । ତାଙ୍କର ଏହି ପ୍ରବନ୍ଧଟି ଅନେକ ଶିକ୍ଷଣୀୟ ବିଷୟରେ ପୂର୍ଣ୍ଣ ଥିଲା ।

୧୯୬୭ ଖ୍ରୀଷ୍ଟାବ୍ଦରେ ଡକ୍ଟର ଦାଶଙ୍କ ସଙ୍ଗରେ ମୋର ଯୁକ୍ତରାଷ୍ଟ୍ର ଆମେରିକା ଏକା ସଙ୍ଗରେ ଯିବାର ସମ୍ଭାବନା ଦେଖାଦେଇଥିଲା । କିନ୍ତୁ ଏକାବେଳକେ ଶେଷ ମୁହୂର୍ତ୍ତରେ ଉଭୟେ ଦିଲ୍ଲୀ ପର୍ଯ୍ୟନ୍ତ ଗଲୁଁ । ମୋ ଯିବାରେ ବାଧା ଉପୁଜିଲା । ଫଳରେ ଡକ୍ଟର ଦାଶ ଦିଲ୍ଲୀରୁ ଏକା ଆମେରିକା ଯାତ୍ରା କଲେ । ମୁଁ ଦିଲ୍ଲୀରୁ କଲିକତା ଫେରି ଆସିଲି । ଏଇ ବିଷୟଟି ଟିକିଏ ବିଶଦ ଭାବରେ କହେଁ ।

ଏହି ସମୟରେ ଯୁକ୍ତରାଷ୍ଟ୍ରର ଇଣ୍ଡିଆନା ବିଶ୍ୱବିଦ୍ୟାଳୟରେ "ଫୋକ୍‌ଲୋର୍ ଇନ୍‌ଷ୍ଟିଚ୍ୟୁଟ୍' ପ୍ରତିଷ୍ଠିତ ହୋଇଥିଲା । ଏହାର "ସୋସାଇଟି ଅଫ୍ ଏସିୟାନ୍ ଫୋକ୍‌ଲୋର୍" ପ୍ରତିଷ୍ଠାନର କାର୍ଯ୍ୟକାରୀ ସମିତିରେ ତିନିଜଣ ଭାରତୀୟ ସଦସ୍ୟ ନିର୍ବାଚିତ ହୋଇଥିଲେ । ଜଣେ ମୁଁ ନିଜେ; ଦ୍ୱିତୀୟ ଡକ୍ଟର କୃଷ୍ଣଦେବ ଉପାଧ୍ୟାୟ ଓ ତୃତୀୟ ଡକ୍ଟର କୁଞ୍ଜବିହାରୀ ଦାଶ । ୧୯୬୭ରେ "ସୋସାଇଟି ଫର୍ ଏସିଆନ୍ ଫୋକ୍‌ଲୋର୍' ପକ୍ଷରୁ ଏକ ଆନ୍ତର୍ଜାତିକ ସମ୍ମିଳନୀ ଅନୁଷ୍ଠାନ ପାଇଁ ତାରିଖ ଘୋଷଣା କରାଗଲା । ଆମ ତିନିଜଣଙ୍କୁ ଏଥିପାଇଁ ନିମନ୍ତ୍ରଣ ଆସିଲା । ଆମେ ତିନିଜଣ ସେଥିରେ ଯେପରି ନିଶ୍ଚିତ ଭାବରେ ଯୋଗ ଦେଇ ପାରିବୁଁ ସେଥିଲାଗି ଉଦ୍ୟୋକ୍ତାଗଣ ଦିଲ୍ଲୀ କର୍ତ୍ତୃପକ୍ଷଙ୍କୁ ଅନୁରୋଧ ଜଣାଇ ଚିଠିଦେଲେ । ଯାତାୟତ ଟଙ୍କା ଅବଶ୍ୟ ଆମ ନିଜକୁ ସଂଗ୍ରହ କରିବାକୁ ହେବ ।

ଡକ୍ଟର ଉପାଧ୍ୟାୟଙ୍କ ପୁଅ ଆଗରୁ ଯୁକ୍ତରାଷ୍ଟ୍ରରେ ଥିଲେ । ତାଙ୍କ ସାହାଯ୍ୟରେ ସେ ଇତିପୂର୍ବରୁ ସେ ଦେଶରେ ପହଞ୍ଚି ସାରିଥିଲେ । ଡକ୍ଟର ଦାଶଙ୍କ ଭାଇ ମଧ୍ୟ ଆମେରିକାରେ ଡାକ୍ତର ଥିଲେ; ତାଙ୍କ ଉପରେ କିଛି ପରିମାଣରେ ନିର୍ଭର କରି ସେ ଆମେରିକା ଯିବାର ବ୍ୟବସ୍ଥା ପକ୍କା କରିନେଲେ । ମୋର ଅର୍ଥ କଲିକତା ବିଶ୍ୱ-ବିଦ୍ୟାଳୟ ଅର୍ଦ୍ଧାଂଶ ଓ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ଅର୍ଦ୍ଧାଂଶ ବହନ କରିବାକୁ

ରଦ୍ଦହୋଇ ଚିଠିଦେଲେ । ସୁତରାଂ ମୋର ଆର୍ଥିକ ବ୍ୟବସ୍ଥା ହୋଇଗଲା । ଏବେ ବାଧା କେବଳ କେନ୍ଦ୍ରୀୟ ସରକାରଙ୍କ ଏକ ଅନୁମତି ପତ୍ର । ଅର୍ଥ ମନ୍ତ୍ରଣାଳୟ ଅଥବା ରିଜାର୍ଭ-ବ୍ୟାଙ୍କ୍ ସାଧାରଣତଃ ଏହା ଦେଇଥାନ୍ତି । ଏହା ପାଇଥିଲେ ଆମେରିକା ଯିବାରେ ମୋର କୌଣସି ବାଧା ଘଟି ନଥାନ୍ତା । କଲିକତାରୁ ଟେଲିଫୋନ୍ କରି କୌଣସି ଫଳ ହେଲା ନାହିଁ । ମୋର ଟ୍ରାଭେଲ୍ ଏଜେଣ୍ଟ ଦିଲ୍ଲୀଯାଇ ଚେଷ୍ଟା କରିବାକୁ ପରାମର୍ଶ ଦେଲେ । ଡକ୍ଟର ଦାଶଙ୍କ ସଙ୍ଗେ ଟ୍ରେନରେ ଦିଲ୍ଲୀ ଗଲି । ଡ଼କ୍ଟର ଦାଶ ଓ ମୁଁ ନିର୍ଦ୍ଦିଷ୍ଟ ଅଫିସରେ ପ୍ରାୟ ଦୁ'ଘଣ୍ଟା ଅପେକ୍ଷା କରି ଅଫିସର ମହାଶୟଙ୍କ ସାକ୍ଷାତ ପାଇଲୁଁ । କିନ୍ତୁ ସେ କଠୋର ଭାଷାରେ ମୋତେ ଜଣାଇ ଦେଲେ, ମୁଁ ଯାଇ ପାରିବି ନାହିଁ । ସେ କଲିକତାର ଆଉ ଜଣକ ନାମ କହିଲେ—ଯାହାଙ୍କୁ ପଶ୍ଚିମବଙ୍ଗ ସରକାର ଅର୍ଥ ଦେଉଛନ୍ତି, ତାଙ୍କର ଯିବାର ସ୍ଥିର ହୋଇଛି । ମୋ ଯିବାର ଗୁରୁତ୍ୱ, ମୋତେ ହୋଇଥିବା ବିଶେଷ ଆମନ୍ତ୍ରଣ ବିଷୟ ଯେତେ ବୁଝାଇଲେବି ସେ ବୁଝିଲେ ନାହିଁ । ତା ପରେ ସେ କଲିକତାର ଯେଉଁ ବ୍ୟକ୍ତିଙ୍କ ନାମ କହିଲେ, ମୁଁ ଧରିନେଲି ସିଏ ନିଶ୍ଚୟ ଯିବେ । ମୋର ଯିବା ଅସମ୍ଭବ । ମୁଁ ବିଶ୍ୱବିଦ୍ୟାଳୟର ଅଧ୍ୟାପକ, ଲୋକ ସାହିତ୍ୟରେ ସମ୍ମାନ ( ଡକ୍ଟରେଟ୍ ) ପାଇଛି । ତଥାପି କୌଣସି ପ୍ରକାରେ ଯାଇ ପାରିବି ନାହିଁ—ଏ ବିଷୟରେ ନିଶ୍ଚିତ ହୋଇ ଭଗ୍ନ ହୃଦୟରେ ଫେରିଲି । ଦିଲ୍ଲୀରେ ମୁହୂର୍ତ୍ତେ ବିଳମ୍ବ ନକରି ସେଇ ରାତିରେ କଲିକତା ଫେରି ଆସିଲି ।

କିନ୍ତୁ ମୁଁ ନ ଯାଇପାରିବା ହେତୁ ଦୁଃଖ କରି ଡକ୍ଟର ଦାଶ ଆମେରିକାରୁ ଚିଠି ଦେଲେ । ତାଙ୍କ ଚିଠିରୁ ଜାଣିଲି, ପଶ୍ଚିମବଙ୍ଗ ସରକାର ଟଙ୍କା ନଦେବାରୁ ଅନ୍ୟ ଜଣକ ଯାଇ ପାରିଲେ ନାହିଁ । ଦିଲ୍ଲୀରେ ଆଉ ଟିକିଏ ଧୈର୍ଯ୍ୟଧରି ଅପେକ୍ଷା କରିଥିଲେ ମୁଁ ନିଶ୍ଚୟ ଆମେରିକା ଯାଇ ପାରିଥା'ନ୍ତି । ଏହା ପରେ ଅବଶ୍ୟ ୧୯୭୫ ଖ୍ରୀଷ୍ଟାବ୍ଦରେ ମୁଁ ସମସ୍ତ ମାର୍କିନ୍ ମୁଲକ (କାନାଡ଼ା ଓ ହାୱାଇ ଦ୍ୱୀପ ସହ) ବୁଲିବାର ସୁଯୋଗ ପାଇଛି । ଯେଉଁରିକ ଯାଇଥିଲେ ମାତ୍ର ୧୪ ଦିନପାଇଁ ଭିସା ପାଇଥାନ୍ତି ।

ଡ଼କ୍ଟର ଦାଶ ମାର୍କିନ ଯୁକ୍ତରାଷ୍ଟ୍ର ଏକୁଟିଆ ଭ୍ରମଣ କଲେ, ଅବଶ୍ୟ ମାତ୍ର ୧୪ ଦିନ ନୁହେଁ, ନିଜ ଭାଇଙ୍କ ପାଖରେ ରହି ଦୀର୍ଘଦିନ ଆମେରିକା ବୁଲିଲେ । ଏବେ ତାଙ୍କର ଆମେରିକା ଭ୍ରମଣ ଅନୁଭୂତି ଘେନି ବିସ୍ତୃତ ଭ୍ରମଣ କାହାଣୀ ପ୍ରକାଶିତ ହୋଇଛି । ଏଇ ବହି ଖଣ୍ଡିଏ ସେ ମୋତେ ଉପହାର ଦେଇ ଅନୁଗୃହୀତ କରିଛନ୍ତି ।

୧୯୭୧ ଖ୍ରୀଷ୍ଟାବ୍ଦରେ ବିଶ୍ୱଭାରତୀ ଛାଡ଼ି ଡ଼କ୍ଟର ଦାଶ ଓଡ଼ିଶା ଫେରିଛନ୍ତି । ସରକାରୀ ଚାକିରିରୁ ଅବସର ଘେନି ଏବେ ନିଜ ଗୃହକର କଟକରେ ବାସ କରୁଛନ୍ତି । ଡ଼କ୍ଟର ଦାଶଙ୍କର ଓଡ଼ିଶା ରହଣୀ କାଳରେ ମଧ୍ୟ ଆଉଥରେ ମୋର ତାଙ୍କ ସଙ୍ଗରେ ଏକତ୍ର ଦୀର୍ଘଦିନ ବାସ କରିବାର ସୁଯୋଗ ଘଟିଛି ।

୧୯୬୦ ଖ୍ରୀଷ୍ଟାବ୍ଦରେ ସିମଲାର "ଇଣ୍ଡିୟାନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଏଡଭାନ୍‌ସ୍‌ଡ୍ ଷ୍ଟାଡ଼ିଜ୍"ର ଅଧ୍ୟକ୍ଷ ଡ଼କ୍‌ଟର ନୀହାରରଞ୍ଜନ ରାୟ ସିମଲାରେ ଭାରତର ବିଭିନ୍ନ ପ୍ରାଦେଶିକ ଆଧୁନିକ ସାହିତ୍ୟ ବିଷୟରେ ତିନି ସପ୍ତାହ ବ୍ୟାପୀ ଗୋଟିଏ ଆଲୋଚନା ଚକ୍ରର ଆୟୋଜନ କରିଥିଲେ । ଏଥିରେ ଭାରତର ବିଭିନ୍ନ ଅଞ୍ଚଳରୁ ବିଶିଷ୍ଟ ପଣ୍ଡିତଗଣ ଆସି ସିମଲାର ବିଶାଳ ପରିତ୍ୟକ୍ତ ରାଷ୍ଟ୍ରପତି ଭବନରେ ଏକାଠି ତିନି ସପ୍ତାହ କାଳ ବାସ କରି ଆଲୋଚନା ଚକ୍ରରେ ଯୋଗ ଦେଇଥିଲେ । ଏଥିରେ ଓଡ଼ିଶାରୁ ଡ଼କ୍‌ଟର କୁଞ୍ଜବିହାରୀ ଦାଶ ଓ ପଶ୍ଚିମ ବଙ୍ଗରୁ ଆଉ କେତେଜଣ ବିଶିଷ୍ଟ ପଣ୍ଡିତଙ୍କ ସଙ୍ଗେ ମୁଁ ମଧ୍ୟ ଯୋଗ ଦେଇଥିଲି ।

ଆଲୋଚନାଚକ୍ର ଶେଷରେ ଆମମାନଙ୍କର କାମ ଥିଲା ପ୍ରତିଦିନ ଅପରାହ୍ଣରେ ସିମଲାରୁ ଅନ୍ତତଃ ୩୦/୪୦ ମାଇଲ ମଧ୍ୟରେ ଥିବା ଦର୍ଶନୀୟ ସ୍ଥାନସବୁ ଗାଡ଼ିରେ ଯାଇ ଭ୍ରମଣ କରିବା । ଡ଼କ୍‌ଟର ଦାଶ ଓ ମୁଁ ପ୍ରାୟ ଏକା ସଙ୍ଗରେ ବାହାରି ପଡୁଁ । ପାଣ୍ଡିତ୍ୟ-ର ଜଗତରୁ ବିଦାୟ ଦେଇ ଲଘୁ ଆଲୋଚନା ଭିତରେ ମନର ଲଗାମ ଛାଡ଼ି ଦେଉଁ । ସେତେବେଳେ ଲକ୍ଷ୍ୟ କରିଛି ଡ଼କ୍‌ଟର ଦାଶଙ୍କ ମଧ୍ୟରେ ଶିଶୁ ସୁଲଭ ଏକ ସରଳ ମନ, ଯାହାର ସଂସ୍ପର୍ଶରେ ଆସିଲେ ସହଜରେ ସମସ୍ତଙ୍କ ମନ ପ୍ରସନ୍ନ ହୋଇ ଉଠିବ । ସେଥି-ଲାଗି ତାଙ୍କ ସାନ୍ନିଧ୍ୟ ମୋର ସର୍ବଦା କାମ୍ୟ ଥିଲା ।

ତାଙ୍କୁ ଦେଖିଲେ ମୋର ଢ଼ାକା ବିଶ୍ୱବିଦ୍ୟାଳୟର ଜଣେ ସହକର୍ମୀଙ୍କ କଥା ମନେ ପଡ଼ିଯାଉଥିଲା, ଯିଏ ସମସ୍ତଙ୍କଠାରେ ସୁପରିଚିତ । ସେ ପଲ୍ଲୀ କବି ଜସୀମୁଦ୍ଦିନ । ତାଙ୍କ ପ୍ରକୃତି ଥିଲା ଏମିତି ଶିଶୁ ଭଳି ସରଳ । ସେ ଥିଲେ ପ୍ରକୃତ କବି । ପଣ୍ଡିତ ଥିଲେ ନାହିଁ ବୋଲି ବେଶୀଦିନ ବିଶ୍ୱବିଦ୍ୟାଳୟ ଚାକିରି କରି ପାରିଲେ ନାହିଁ; ନିଜେ ହିଁ ଚାକିରି ଛାଡ଼ି ଚାଲିଗଲେ । ଡକ୍‌ଟର ଦାଶଙ୍କ ପ୍ରକୃତି ବହୁ ପରିମାଣରେ ଏହି ପରି; ତଥାପି ତାଙ୍କର ପାଣ୍ଡିତ୍ୟର ଅଭାବ ନାହିଁ । ତେବେ ପାଣ୍ଡିତ୍ୟ ତାଙ୍କ ଚରିତ୍ରର ସହଜ ସରଳତାକୁ ଆଚ୍ଛନ୍ନ କରିପାରେ ନାହିଁ । ସହଜ-ସଦା-ପ୍ରସନ୍ନ ମଣିଷପଣିଆ ସର୍ବଦା ତାଙ୍କ ଭିତରୁ ଝଟକି ଉଠେ ।

ନାନା କାରଣରୁ ଲୋକସଂସ୍କୃତି ଦିଗରୁ ଓଡ଼ିଶା ଅତ୍ୟନ୍ତ ସମୃଦ୍ଧ । ଏଇ ଆକର୍ଷଣରେ ମୁଁ ସମ୍ବଲପୁର ବିଶ୍ୱବିଦ୍ୟାଳୟର 'ଭିଜିଟିଂ' ଅଧ୍ୟାପକ ପଦରେ ଯୋଗ ଦେଇଥିଲି । ସେହି ସମୟରେ ପଶ୍ଚିମ ଓଡ଼ିଶା ଲୋକ ସଂସ୍କୃତି ବିଷୟରେ ଗବେଷଣା କରିବା ଲାଗି ଜଣେ ଛାତ୍ରଙ୍କୁ ଗୋଟିଏ ପରିକଳ୍ପନା କରି ଦେଇଥିଲି । ଏଇ ପରିକଳ୍ପନା ଅନୁସାରେ ଦୀର୍ଘ ଦିନ କାମ କରି ଗବେଷକ ଜଣକ ପି.ଏଚ୍.ଡ଼ି ଉପାଧିପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଥେସିସ୍ ଉପସ୍ଥାପନ କଲେ । ବିଭାଗୀୟ ମୁଖ୍ୟ ଡକ୍‌ଟର ଗୋପାଳଚନ୍ଦ୍ର ମିଶ୍ର ଡକ୍‌ଟର

ଦାଶ ଓ ମୁଁ ପରୀକ୍ଷକ ନିଯୁକ୍ତ ହେଲୁ । ଯଥା ସମୟରେ ଥେସିସ୍ ପରୀକ୍ଷାକରି ଆମ୍ଭେମାନେ ପ୍ରତିବେଦନ ଦାଖଲ କଲୁ । ମୌଖିକ ପରୀକ୍ଷା ବାକି । ଡକ୍ଟର ଦାଶ ଅସୁସ୍ଥ ହୋଇ ପଡ଼ିଲେ । ନାନା ସ୍ଥାନରେ ଭ୍ରମଣ କରିବା କେଳେ ମଧ୍ୟ ସେ ଥରେ ଥରେ ଆକସ୍ମାତ୍ରେ ଏକ ପ୍ରକାର ଶଯ୍ୟାଶାୟୀ ହୋଇପଡନ୍ତି । ଡ଼ାକ୍ତର ଆଣି ଇନ୍‌ଜେକ୍‌ସନ ଦେବାକୁ ହୁଏ । କିନ୍ତୁ ଏପରି ଅବସ୍ଥାରେ ମଧ୍ୟ କେବେ ତାଙ୍କ ଚଉର ପ୍ରଫୁଲ୍ଲତା ବିନଷ୍ଟ ହେବାର ଦେଖିନାହିଁ । ସାମାନ୍ୟ ସୁସ୍ଥ ହୋଇ ଉଠିବା ସଙ୍ଗେ ସଙ୍ଗେ ସେ ପୁଣି ହାସ୍ୟମୁଖରେ ଆମ ସଙ୍ଗରେ କାହାଣି ପଡ଼ନ୍ତି । ଏହା ଯେପରି ତାଙ୍କର ସହଜାତ ପ୍ରକୃତି ।

ଏଥର ·କିନ୍ତୁ ସେ ଏପରି ଅସୁସ୍ଥ ହୋଇ ପଡ଼ିଲେ ଯେ ଡାକ୍ତର ତାଙ୍କୁ ଘରୁ ବାହାରକୁ ଯିବାକୁ ବାରଣ କଲେ । ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରୟୋଜନରେ ସେ ମୌଖିକ ପରୀକ୍ଷା ନେବାକୁ ଯାଇ ପାରିଲେ ନାହିଁ । ଅବଶେଷରେ ସମ୍ବଲପୁର ଓଡ଼ିଆ ବିଭାଗ ପ୍ରଧାନ ଡକ୍ଟର ଦାଶଙ୍କ କଟକ ବାସଗୃହକୁ ଯାଇ ମୌଖିକ ପରୀକ୍ଷା ନେବାକୁ ମୋତେ ଅନୁରୋଧ କଲେ । ଯଦିବା ଡକ୍ଟର ଦାଶ ବୟସରେ ମୋଠାରୁ ପାଞ୍ଚ ବରଷ ସାନ, ତଥାପି ତାଙ୍କ ସଙ୍ଗେ ମୋର ଦୀର୍ଘଦିନର ସମ୍ପର୍କ ସ୍ମରଣକରି ମୁଁ ୧୯୮୩ ବିଜୟା ଦଶମୀ ଦିନ କଟକ ଯାଇ ଡ଼କ୍ଟର ଦାଶଙ୍କ ଘରେ ଗ୍ରନ୍ଥକାରର ମୌଖିକ ପରୀକ୍ଷା ନେଲି ।

ଦେଖିଲି ଡକ୍ଟର ଦାଶ ଆପାତତଃ ଦୃଷ୍ଟିରେ ଆଦୌ ଅସୁସ୍ଥ ନୁହନ୍ତି । ବରଂ ବେଶ୍ ସୁସ୍ଥ ଅଛନ୍ତି । ଠିକ୍ ପୂର୍ବପରି ସେ ମୋ ସଙ୍ଗେ ହାସ୍ୟ ପରିହାସ କଲେ, ପୂର୍ବମୁହୂର୍ତ୍ତ ପ୍ରେମପୂର୍ଣ୍ଣ କଲେ । ମୁଁ ବଡ଼ ଆଶାନ୍ୱିତ ବୋଧ କଲି । ମନେ ହେଲି, ଘରେ ରହି ଏମିତି କିଛିଦିନ ବିଶ୍ରାମ ନେଲେ ସେ ଦୀର୍ଘଆୟୁ ଲାଭ କରିବେ ।

ଡକ୍ଟର ଦାଶଙ୍କ ପରାମର୍ଶ ପାଇଁ ମୋର ଜଣେ ଗବେଷଣା ଗ୍ରନ୍ଥକୁ ତାଙ୍କରି ଥରେ କଟକ ପଠାଇଥିଲି । ସେ ପ୍ରଫୁଲ୍ଲ ମନରେ ଅକୁଣ୍ଠିତ ଭାବେ ପରାମର୍ଶ ଦେଇ ସାହାଯ୍ୟ କରିଛନ୍ତି । ସେ ନିଜେ କଲିକତା ବିଶ୍ୱବିଦ୍ୟାଳୟ ପକ୍ଷରୁ ପରୀକ୍ଷକ ନିଯୁକ୍ତ ହୋଇ ମୋର ଗବେଷଣା ଗ୍ରନ୍ଥକର ପି.ଏଚ୍.ଡ଼ି ଓ ଡ଼.ଲିଟ୍ ଥେସିସ୍ ପରୀକ୍ଷା କରିଛନ୍ତି । ଉପାଧି ଲାଭ ପାଇଁ ସୁପାରିଶ କରିଛନ୍ତି । ଏହି ଭାବରେ ଶିକ୍ଷକତାର ଜୀବନରେ ଆମେ ଦୁହେଁ ସର୍ବଦା ନିବିଡ଼ ସମ୍ପର୍କ ମଧ୍ୟରେ ଏତେଦିନ ବିତାଇଛୁ ।

ଏବେ ଆଉ ଗୋଟିଏ ବିଷୟ ଉଲ୍ଲେଖ କରିବି । ଦିଲ୍ଲୀର 'ନ୍ୟାସନାଲ ବୁକ୍ ଟ୍ରଷ୍ଟ' ମୋତେ 'ଫୋକଲୋର୍ ଅଫ ବେଙ୍ଗଲ' ନାମରେ ଗୋଟିଏ ବହି ଲେଖିବାକୁ ଅନୁରୋଧ କରନ୍ତି । ଯଥା ସମୟରେ ମୋ ବହି ଲେଖାହୋଇ ଛପା ହେଲା । କିଛିଦିନ ଭିତରେ ହିଁ ଦେଖିଲି ଡକ୍ଟର କୁଞ୍ଜବିହାରୀ ଦାଶ ଓ ଉତ୍କଳ ବିଶ୍ୱବିଦ୍ୟାଳୟ ନୃତତ୍ତ୍ୱ ବିଭାଗୀୟ ପ୍ରଫେସର ଡକ୍ଟର ଲକ୍ଷ୍ମଣ କୁମାର ମହାପାତ୍ରଙ୍କ ଯୁଗ୍ମ ରଚନାରେ "ଫୋକଲୋର ଅଫ୍

ଓଡ଼ିଶା” ନାମରେ ନ୍ୟାସନାଲ୍ ବୁକ୍‌ଟ୍ରାଷ୍ଟ୍ ପକ୍ଷରୁ ଅନୁରୂପ ଆକୃତିର ଗୋଟିଏ ବହି ପ୍ରକାଶିତ ହୋଇଲା। ଏହାପରେ ଟ୍ରାଷ୍ଟ କର୍ତ୍ତୃପକ୍ଷ ଡ଼କ୍‌ଟର ଦାଶଙ୍କ ବହି ଖଣ୍ଡିକ ବଙ୍ଗଳାରେ ଅନୁବାଦ କରି ଦେବାକୁ ମୋତେ ଅନୁରୋଧ କଲେ। ମୁଁ ୧୯୪୭ରେ ଦେଶ ବିଭାଜନ ପରେ ଢାକା ବିଶ୍ୱବିଦ୍ୟାଳୟ ଚାକିରି ଛାଡ଼ି ଭାରତ ସରକାରଙ୍କ ନୃତତ୍ତ୍ୱ ବିଭାଗ କାର୍ଯ୍ୟରେ ପ୍ରବେଶ କରେ। ସେଇ ସମୟରେ ଭେରିୟାର ଏଲୱିନ୍‌ଙ୍କ ସଙ୍ଗେ ଓଡ଼ିଶାର କୋରାପୁଟ ଜିଲାରେ କ୍ଷେତ୍ର ଗବେଷଣା କାର୍ଯ୍ୟ ଆରମ୍ଭ କରିଥିଲି। ଏହାପରେ କେତେ ବେଳେ ଏଲୱିନ୍‌ଙ୍କ ସଙ୍ଗେ, ଅଥବା ଏକାକୀ ସ୍ୱାଧୀନ ଭାବରେ ଓଡ଼ିଶାର ନାନା ଅଞ୍ଚଳରେ ବୁଲି ଗବେଷଣା କରିବାର ସୁଯୋଗ ପାଇଛି। ଡକ୍‌ଟର ଦାଶଙ୍କ ବହିଟି ଆନନ୍ଦରେ ପୁଙ୍ଖାନୁପୁଙ୍ଖଭାବେ ପଢ଼ିଲି ଓ ଅନୁବାଦ କରିବାକୁ ସମ୍ମତ ହେଲି।

ଅନୁବାଦ ଶେଷ କରି ବହିର ପାଣ୍ଡୁଲିପି ବୁକ୍ ଟ୍ରାଷ୍ଟ୍ ହାତରେ ଦେବା ସଙ୍ଗେ ସଙ୍ଗେ, ସେମାନେ ଦିଲ୍ଲୀର ଗୋଟିଏ ପ୍ରେସରେ ମୁଦ୍ରଣ କାର୍ଯ୍ୟ ଆରମ୍ଭ କରି ଦେଲେ। ତେବେ ଏ ପର୍ଯ୍ୟନ୍ତ ବହିଟି ପ୍ରକାଶ ପାଇ ନାହିଁ। ଏ ସମ୍ବାଦଟି ଡକ୍‌ଟର ଦାଶ ଜାଣି ନଥିଲେ। ମୁଁ ମଧ୍ୟ ଜଣାଇ ନଥିଲି। ଭାବିଥିଲି ବହିଟି ବାହାରି ଗଲେ ତାଙ୍କୁ ଏକାବେଳକେ ଅବାକ୍ କରିଦେବି। କିନ୍ତୁ କିଛି ଦିନ ପୂର୍ବେ କଟକରେ ତାଙ୍କ ଘରେ ସାକ୍ଷାତ୍ ସମୟରେ ଏ ସମ୍ବାଦଟି ମୋ ମୁହଁରୁ ବାହାରି ଗଲା।

ଡକ୍‌ଟର ଦାଶ ମୋଠାରୁ ବୟସରେ ପ୍ରାୟ ପାଞ୍ଚ ବରଷ ସାନ। ସେଇ ସୂତ୍ରରେ ସେ ମୋତେ ପ୍ରଥମରୁ ହିଁ "ଦାଦା" ବୋଲି ଡ଼ାକିଆନ୍ତି। ମୁଁ ମଧ୍ୟ ତାଙ୍କୁ ମୋର ସାନଭାଇ ଭଳି ଦେଖି ଆସିଛି। ଆମ ଦୁଇଜଣଙ୍କ ମନରେ ସେଥିଲାଗି କୌଣସି ସମୟରେ ପାଣ୍ଡିତ୍ୟର ପ୍ରତିଯୋଗିତା ଭାବ ନାହିଁ; ଅଛି କେବଳ ଦାଦା ଭାଇ ସମ୍ପର୍କର ଆନ୍ତରିକତା।

( ଅନୁବାଦ: ନ. ନା. ମି )

( ଡକ୍‌ଟର ଆଶୁତୋଷ ଭଟ୍ଟାଚାର୍ଯ୍ୟ କଲିକତା ବିଶ୍ୱବିଦ୍ୟାଳୟର ବଙ୍ଗଳା ଓ ଆଧୁନିକ ଭାରତୀୟ ଭାଷା ସାହିତ୍ୟ ବିଭାଗର ଭୂତପୂର୍ବ ରବୀନ୍ଦ୍ର ପ୍ରଫେସର। Research Institute of Folk-Gulture-West Bengalର ପ୍ରତିଷ୍ଠାତା ଓ ସଞ୍ଚାଳକ—ବର୍ତ୍ତମାନ ତାଙ୍କର ଠିକଣା 32 B. R. Chatterjee Road, Calcutta-34 )

—※—

## ॥ ଶୋଷପଏ ॥

### ଡକ୍ଟର ସୋମେନ୍ଦ୍ର ନାଥ ବନ୍ଦୋପାଧ୍ୟାୟ

ପ୍ରାୟ ଛବିଶ ବର୍ଷ ତଳର କଥା । ବିଶ୍ୱଭାରତୀରେ ସଦ୍ୟ ଯୋଗ ଦେଇଛୁ । ଅଳ୍ପ କେତେ ଦିନ ମଧ୍ୟରେ ଗୋଟିଏ ବିଶେଷ ଦୃଶ୍ୟ ପରିଚିତ ହୋଇ ଉଠିଲା । ଆଶ୍ରମର ଉତ୍ତରରେ ଗୋଆଲ୍‌ପଡ଼ା ଗାଁ ପଥରେ ଚାଲିଛି ଅପରାହ୍ନ ଭ୍ରମଣରେ ଗୋଟିଏ ଦଳ । ଛାତ୍ରଛାତ୍ରୀ ଅଧ୍ୟାପକମାନଙ୍କର । ଏମାନଙ୍କ କେନ୍ଦ୍ରରେ ଅଛନ୍ତି ଏକ ଦୀର୍ଘକାୟ ପ୍ରଶାନ୍ତ-ଦର୍ଶନ ପୁରୁଷ । କେବଳ ପଥରେ ନୁହେ, ଆଶ୍ରମ ମଧ୍ୟରେ ବି ଏଇ ବ୍ୟକ୍ତିପୁରୁଷଙ୍କୁ ପ୍ରାୟ ଏକୁଟିଆ ଯିବାର ଦେଖାଯାଏ ନାହିଁ । ସେ ସବୁବେଳେ ଥାଆନ୍ତି ଛାତ୍ରଛାତ୍ରୀ ପରିବୃତ୍ତ ହୋଇ । କ୍ରମଶଃ ଜାଣିଲି ଏଇ ହେଉଛନ୍ତି ଶ୍ରୀ କୃଷ୍ଣବିହାରୀ ଦାଶ—ବିଶ୍ୱଭାରତୀ ଓଡ଼ିଆ ବିଭାଗର ପ୍ରଧାନ ଓ ଜଣେ ପ୍ରତିଷ୍ଠିତ କବି ।

ଅଳ୍ପଦିନ ମଧ୍ୟରେ ସବୁ ଦୂରତ୍ୱ ଘୁଞ୍ଚିଗଲା । କୃଷ୍ଣଦା ଅତି ଆପଣାର ଲୋକ ହୋଇ ଉଠିଲେ । ତାଙ୍କର ପରିଚୟ ନିବିଡ଼ ହେଲା । ଏ ପରିଚୟ କେବଳ ତାଙ୍କର ଅସାଧାରଣ ପାଣ୍ଡିତ୍ୟ କିମ୍ବା ଗଭୀର ଜ୍ଞାନର ନୁହେ । ତାଙ୍କ ସମ୍ବେଦନଶୀଳ ସ୍ନେହପରାୟଣ ମନର ମଧ୍ୟ । ଏହି ମନର ଗୁଣରେ ହିଁ ସେ କେତେ ଅନାୟାସରେ ଗୋଟିଏ ପରିମଣ୍ଡଳ ନିଜ ଚଉଦିଗରେ ଗଢ଼ିନେଇ ପାରୁଥିଲେ । ତାଙ୍କୁ ଦେଖି ଏଇ କଥା ବାରମ୍ବାର ମନେ ହେଉଥିଲା—ଗୁରୁଦେବ ରବୀନ୍ଦ୍ରନାଥ ନିଜ ଆଶ୍ରମ ବିଦ୍ୟାଳୟରେ ଠିକ୍ ଏଇଭଳି ମଣିଷ ଚାହୁଁଥିଲେ । ଏମିତି ଶିକ୍ଷକ, ଯିଏ କେବଳ ଶୁଷ୍କ ପୋଥି ଜଗତରେ ବନ୍ଦୀ ବିଦ୍ୟାଦାତା ମାତ୍ର ନୁହନ୍ତି; ପ୍ରାଣରସରେ ସଞ୍ଜୀବିତ ଗୁରୁ, ଯିଏ ଛାତ୍ରଙ୍କୁ ଆକୃଷ୍ଟ କରନ୍ତି କେବଳ ପାଣ୍ଡିତ୍ୟ ବଳରେ ନୁହେଁ, ସଜୀବ ହୃଦୟର ଉଦାର ଆହ୍ୱାନରେ; ଯାହାଙ୍କ ସସ୍ନେହ ସାହଚର୍ଯ୍ୟରେ ତରୁଣ ହୃଦୟର ଉଦ୍‌ବୋଧନ ଘଟେ ଅତି ସହଜରେ ।

କୃଷ୍ଣଦାଙ୍କ ସଙ୍ଗେ ମନେ ପଡ଼େ ତାଙ୍କ ଗୃହିଣୀଙ୍କ କଥା । କାଳିଦାସଙ୍କ ଭାଷାରେ "ଛାୟେବାନୁଗତା" । କବି ଜାୟା ନିଜ ଘରେ ଏକ ସରସ ଆତିଥେୟତାର ପରିବେଶ ରଚନା କରି ରଖିଥିଲେ, ଯାହାର ଆକର୍ଷଣ ଥିଲା ଅପ୍ରତିରୋଧ୍ୟ ।

ରବୀନ୍ଦ୍ର ଶତବର୍ଷ ଉତ୍ସବ ଶାନ୍ତିନିକେତନରେ ବିପୁଳ ଉତ୍ସାହରେ ଉଦ୍‌ଯାପିତ ହେଲା । ଭାରତର ନାନା ଅଞ୍ଚଳରୁ କବି ସାହିତ୍ୟିକ ସୁଧୀ ମଣ୍ଡଳୀ ଆସିଥିଲେ, ପ୍ରତ୍ୟେକଟି ଭାଷା ପ୍ରତିନିଧିତ୍ୱ ପାଇଥିଲା । ଭାରତ ବାହାରୁ ଆସିଥିଲେ ରବୀନ୍ଦ୍ର ଅନୁରାଗୀ ବିଦେଶୀ ବନ୍ଧୁଗଣ ଓ ଭାରତର ନାନା ପ୍ରାନ୍ତରୁ ଶିଳ୍ପୀମାନେ । ଆଲୋଚନା, ନୃତ୍ୟ, ଗୀତରେ ଶାନ୍ତିନିକେତନର ଆଶ୍ରମ ପ୍ରାଙ୍ଗଣ ମାସାଧିକ କାଳ ମୁଖର ହୋଇଉଠିଥିଲା ।

ସେତେବେଳକୁ କୁଞ୍ଜଦା ବିଶ୍ୱଭାରତୀରୁ ବିଦାୟ ନେଇଛନ୍ତି । ସେଇ ଉତ୍ସବକୁ ଆସି ଆଲୋଚନାରେ ଭାଗ ନେଇଥିଲେ । ବିଷୟ "ରବୀନ୍ଦ୍ରନାଥ ଓ ପଲ୍ଲୀ ସାହିତ୍ୟ" । ଅନ୍ୟମାନେ ପ୍ରାନ୍ତୀୟ ଭାରତୀୟ ସାହିତ୍ୟ ଓ ରବୀନ୍ଦ୍ର ପ୍ରଭାବ ଆଲୋଚନା କରିଥିଲେ । ମାତ୍ର ନିଜର ଏଇ ମୂଲ୍ୟବାନ ତଥ୍ୟ ସମୃଦ୍ଧ ରସୋତ୍ତୀର୍ଣ୍ଣ ରଚନା ମାଧ୍ୟମରେ ଜନଦରଦୀ ପଲ୍ଲୀପ୍ରାଣ କବିଗୁରୁଙ୍କ ବିଶ୍ୱମାନବତାର ଯଥାର୍ଥ ରୂପ ଫୁଟି ଉଠିଥିଲା । ସେଇ ଉତ୍ସବ ମଧ୍ୟରେ ମୋ ମନରୁ ମ୍ଳାନ ହୋଇଯାଇନାହିଁ ଗୋଟିଏ ଘଟଣା; ଆଜି ବି ତାହା ସ୍ମୃତିରେ ଉଜ୍ଜ୍ୱଳ ହୋଇ ରହିଛି ।

ବିଶ୍ୱଭାରତୀରୁ କୁଞ୍ଜଦାଙ୍କ ବିଦାୟ ସଭାରେ ଉପାଚାର୍ଯ୍ୟ ସୁଧୀରଞ୍ଜନ ଦାସଙ୍କ ସଭାପତିତ୍ୱରେ ଆମ୍ଭେମାନେ ମିଳିତ ହୋଇଥିଲୁଁ । ବିଦାୟ ସମ୍ବର୍ଦ୍ଧନାର ଉତ୍ତରରେ ସ୍ୱଭାବତଃ ସେ ବିଶେଷ କିଛି କହି ପାରିନଥିଲେ । ତାଙ୍କ ମନ ଅଭିଭୂତ ହୋଇ ପଡ଼ିଥିଲା । ସିଏ ବକ୍ତବ୍ୟ ଶେଷରେ ସ୍ୱରଚିତ କବିତାଟିଏ ପାଠ କରିଥିଲେ—"ଶେଷପତ୍ର" । ଶାନ୍ତିନିକେତନରେ ମହର୍ଷି ଦେବେନ୍ଦ୍ରନାଥଙ୍କ ସାଧନା ପୀଠ 'ଛାତିମତଳା'ରେ ପ୍ରାଚୀନ ଛାତିମ (ସପ୍ତପର୍ଣ୍ଣୀ) ଗଛଟି ସେତେବେଳେ ଥିଲା— ତାର ଜୀର୍ଣ୍ଣ ଦେହରେ ଯଦିବା ପ୍ରାଣରସ ସ୍ତିମିତ ହୋଇ ଆସିଥିଲା । ସେଇ ମରଣୋନ୍ମୁଖ ବୃକ୍ଷର ଗୋଟିଏ ଶୀର୍ଣ୍ଣ ଶାଖାରେ ଥିଲା ଗୋଟିଏ ମାତ୍ର ପତ୍ରଗୁଚ୍ଛ—ଶ୍ୟାମଳିମାର ଶେଷ ନିଦର୍ଶନ । ଏହାର ସକରୁଣ ସୌନ୍ଦର୍ଯ୍ୟ କବି କୁଞ୍ଜବିହାରୀଙ୍କ ହୃଦୟକୁ ଉଦ୍‌ବେଳିତ କରି ଦେଇଥିଲା— କବିତାଟି ଥିଲା ତାର ସ୍ୱତଃସ୍ଫୂର୍ତ୍ତ ଅଭିବ୍ୟକ୍ତି । କବି କଣ୍ଠରେ ଶୁଣିଥିଲି ସେ ଦିନ ସେଇ କବିତାର ଉଦାତ୍ତ ଆବୃତ୍ତି ।

କୁଞ୍ଜଦା ବହୁ ଦିନରୁ ବିଶ୍ୱଭାରତୀରୁ ବିଦାୟ ନେଇ ଏବେ କଟକରେ ସ୍ୱଗୃହରେ ରହୁଛନ୍ତି । କିନ୍ତୁ ଆଜି ବି 'ଛାତିମତଳା'ର ପାଖ ଦେଇ ଯାଉଁ ଯାଉଁ କବି କଣ୍ଠର ସେହି ଆବୃତ୍ତିର ଅନୁରଣନ ମନର କାନରେ ସ୍ପଷ୍ଟ ଶୁଣିବାକୁ ପାଏଁ । ହୃଦୟ ଆନନ୍ଦରେ ଉଚ୍ଛୁଳି ଉଠେ । ଆଉ ମାନସ ପଟରେ ଭାସିଉଠେ ଅତୀତର ସେଇ ଜୀର୍ଣ୍ଣ ବୃକ୍ଷର ଶୀର୍ଣ୍ଣ ଶାଖାର ଏକ ନିଃସଙ୍ଗ ପତ୍ର— ଅନ୍ଧକାର ମଧ୍ୟରେ ଗୋଟିଏ ମାତ୍ର ସବୁଜର ଆଲୋକ ଦୀପ ଜଳାଇ ଠିଆ ହୋଇଛି— ପ୍ରାଣର ଆବେଗ, ମନର ଆନନ୍ଦ ଓ ଆତ୍ମାର ଶାନ୍ତି ବାଣୀ ବହନ କରି ।

* ଅଧ୍ୟାପକ, ବଙ୍ଗଳା ବିଭାଗ, ବିଶ୍ୱଭାରତୀ ।

( ଅନୁବାଦ : ଅଶୋକ ମିଶ୍ର )

# ।। ପରମ ବନ୍ଧୁ ।।

**ହୀରେନ୍ଦ୍ର ନାଥ ଦତ୍ତ**

ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ସପ୍ତତିତମ ଜନ୍ମଦିବସରେ ବନ୍ଧୁ ଓ ଶୁଭେଚ୍ଛୁମାନେ ଏକ ଅଭିନନ୍ଦନଗ୍ରନ୍ଥ ପ୍ରକାଶ କରୁଛନ୍ତି ଜାଣି ମୁଁ ଅତି ଆନନ୍ଦିତ । ଏଥିରେ କିଛି ଲେଖିବାକୁ ଅନୁରୋଧ କରି ସେମାନେ ମୋତେ ମଧ୍ୟ ସମ୍ମାନିତ କରିଛନ୍ତି, ଭାବୁଛି ।

ଶାନ୍ତିନିକେତନରେ ଡକ୍ଟର ଦାଶଙ୍କର ଦୀର୍ଘଦିନର ସାନ୍ନିଧ୍ୟ ଲାଭ ଥିଲା ମୋର ପରମ ସୌଭାଗ୍ୟ । ଏହା ପଚାଶ ଦଶକର କଥା । କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ପ୍ରାଥମିକ ଯୁଗ । କୌଣସି କିଛି ନୂଆ ଗଢିବାରେ ଏକ ସ୍ୱତନ୍ତ୍ର ଆନନ୍ଦ ଥାଏ । ଏହି ଆନନ୍ଦରେ ଡକ୍ଟର ଦାଶ ଥିଲେ ପୂର୍ଣ୍ଣ ଅଂଶୀଦାର । କାରଣ ପ୍ରାୟ କିଛି ନଥିବା ଅବସ୍ଥାରୁ ସେ ବିଶ୍ୱଭାରତୀ ଓଡ଼ିଆବିଭାଗ ଗଢ଼ିଥିଲେ । ସେ ଆସିବା ପୂର୍ବରୁ ନାମ ମାତ୍ର ଓଡ଼ିଆ ବିଭାଗ ଥିଲା । ଏହାକୁ ଏକ ପୂର୍ଣ୍ଣାଙ୍ଗ ସ୍ନାତକୋତ୍ତର ବିଭାଗର ରୂପ ସେ ଦେଲେ । ତାଙ୍କ ସଙ୍ଗରେ ଥିଲେ ଅଳ୍ପ କେତେଜଣ ଅଧ୍ୟାପକ ଓ ଛାତ୍ର; ମାତ୍ର ସମସ୍ତେ ମହତ୍ ସାଧନାରେ ବ୍ରତୀ । ଡକ୍ଟର ଦାଶ କେବଳ ବିଭାଗମୁଖ୍ୟ ନଥିଲେ, ସେ ଥିଲେ ସେମାନଙ୍କର ପଥ-ପ୍ରଦର୍ଶକ ବନ୍ଧୁ ଓ ଗୁରୁ ।

କୁଞ୍ଜବାବୁ କେବଳ ଜଣେ ବିଦଗ୍ଧ ପଣ୍ଡିତ ନଥିଲେ, ଥିଲେ ସୃଷ୍ଟିଶୀଳ ଲେଖକ ଓ କବି । ଏହା ଜାଣିବାକୁ ଆମକୁ ବେଶୀ ଦିନ ଅପେକ୍ଷା କରିବାକୁ ପଡ଼ି ନଥିଲା । ସେ ସେତେବେଳେ ତରୁଣ, ବୟସ ହୁଏତ ତିରିଶ ପରେ । ତଥାପି ଓଡ଼ିଆ ସାହିତ୍ୟରେ ଜଣେ ପ୍ରତିଶ୍ରୁତିବାନ୍ ପ୍ରତିଭା ଭାବରେ ନିଜକୁ ପ୍ରତିଷ୍ଠିତ କରି ସାରିଥିଲେ । ସାଧନାରେ ଅବିଚଳ ନିଷ୍ଠା ବଳରେ ସେ ଆଜି ଓଡ଼ିଆସାହିତ୍ୟର ପୁରୋଭାଗରେ ପ୍ରତିଷ୍ଠିତ ।

କୁଞ୍ଜବାବୁ ମୋଠାରୁ ବୟସରେ ଅନେକ ସାନ ଥିଲେ । ସାହିତ୍ୟ ଓ କାବ୍ୟ ଚର୍ଚ୍ଚାରେ ତାଙ୍କର ଅସୀମ ଆଗ୍ରହ ପାଇଁ ମୁଁ ତାଙ୍କ ପ୍ରତି ବିଶେଷ ଶ୍ରଦ୍ଧାଶୀଳ ହୋଇ ପଡ଼ିଥିଲି । ସମସ୍ତ ଶିଳ୍ପାତ୍ମକ ଓ ନାନ୍ଦନିକ ବିଷୟରେ ସେ ତରୁଣ କବିସୁଲଭ ଉତ୍ସାହ ଓ କୌତୂହଳ ପ୍ରକାଶ କରୁଥିଲେ । ତାଙ୍କର ଉତ୍ସାହ ଆମ ସମସ୍ତଙ୍କୁ ପ୍ରଭାବିତ କରିଥିଲା । ଶାନ୍ତିନିକେତନରେ ସେ କାଳର ତରୁଣ କବି ଓ ଲେଖକଗଣ ତାଙ୍କୁ କେନ୍ଦ୍ର କରି ଏକତ୍ର

ହେଉଥିଲେ । କୁଞ୍ଜବାବୁଙ୍କ ଘରେ 'ସାନ୍ଧ୍ୟ ଆସର ବସୁଥିଲା । କୁଞ୍ଜବାବୁ ଥିଲେ ଧ୍ରୁପଦୀ ରୁଚିସମ୍ପନ୍ନ । ତାଙ୍କ ଆଗ୍ରହ ଓଡ଼ିଆସାହିତ୍ୟ ମଧ୍ୟରେ ସୀମାବଦ୍ଧ ନଥିଲା । ହିନ୍ଦୀ, ବଙ୍ଗଳା ଏପରିକି ଇଂରେଜୀ ସାହିତ୍ୟ ପ୍ରସଙ୍ଗ ଏଇ ସାନ୍ଧ୍ୟ ଆସରରେ ଆଲୋଚିତ ହେଉଥିଲା । ମୋର ମନେ ପଡ଼ୁଚି- କୁଞ୍ଜବାବୁଙ୍କ ଅନୁପ୍ରେରଣାରେ ମୁଁ ମଧ୍ୟ ଏଇ ଆଲୋଚନାରେ ଯୋଗ ଦେଉଥିଲି ଓ ସମୟ ସମୟରେ ସମକାଳୀନ ବଙ୍ଗଳା ଓ ଇଂରେଜୀ ସାହିତ୍ୟ ବିଷୟରେ ବକ୍ତବ୍ୟ ଲେଖୁଥିଲି । ଗମ୍ଭୀର ଚର୍ଚ୍ଚା ପାଇଁ ସମସ୍ତଙ୍କର ନିଷ୍ଠା ଓ ଆଗ୍ରହ ଫଳରେ ଆସରର ଆଲୋଚନା ଜ୍ଞାନଗର୍ଭକ ଓ ସାରବାନ୍ ହେଉଥିଲା । ଆଲୋଚନା ବୈଠକରେ ଅନ୍ୟତମ ଆକର୍ଷଣ ଥିଲା ଗୁ ପାନ ଓ ଜଳଯୋଗ । ଅତିଥି ଚର୍ଚ୍ଚାରେ କୁଞ୍ଜବାବୁଙ୍କ ଘରେ କୌଣସି କୁଣ୍ଠା ନଥିଲା ।

କୁଞ୍ଜବାବୁ କବି ଥାଇ ମଧ୍ୟ ଥିଲେ ଉଚ୍ଚକୋଟୀର ବିଦ୍ୱାନ୍ । ଜ୍ଞାନଚର୍ଚ୍ଚା ପାଇଁ କଠୋର ଅଧ୍ୟବସାୟରେ ସେ କଦାପି କୁଣ୍ଠିତ ନଥିଲେ । ପ୍ରକୃତରେ ତାଙ୍କ ଶ୍ରମ ଓ ସାଧନାର ଅନ୍ତ ନଥିଲା । ଭାବିଲେ ଅବାକ୍ ଲାଗୁଥିଲା, ସେ କିପରି ଏକ ସଙ୍ଗରେ ଏତେ କାମ କରି ପାରୁଥିଲେ । ଗୋଟିଏ ଝିମିବିକଶିତ ସଦ୍ୟ ପ୍ରତିଷ୍ଠିତ ସ୍ନାତକୋତ୍ତର ବିଭାଗର କାର୍ଯ୍ୟରେ କୌଣସି ହେଳା ନକରି ମଧ୍ୟ ସେ ବିପୁଳ ଲୋକସାହିତ୍ୟ ସଂଗ୍ରହ କରିଥିଲେ, ଇଂରେଜୀରେ ଆଲୋଚନା ଗ୍ରନ୍ଥ ଲେଖିଥିଲେ, ଥେସିସ୍ ଲେଖି ବିଶ୍ୱଭାରତୀରୁ ପିଏଚ. ଡି. ଡିଗ୍ରୀରେ ସମ୍ମାନିତ ହୋଇଥିଲେ । ବିଶ୍ୱଭାରତୀରୁ ସେ କାଳରେ ପିଏଚ.ଡ଼ି ପାଇବାରେ ସେ ଥିଲେ ବୋଧହୁଏ ପ୍ରଥମ । ଉପାଧି ଲାଭ ପରେ ମଧ୍ୟ ଲୋକସାହିତ୍ୟର ନାନା ଦିଗରେ ବହୁ ଗ୍ରନ୍ଥ ରଚନା କରି ଲୋକସାହିତ୍ୟବିଦ୍ ଭାବରେ ଦେଶରେ ସୁପ୍ରତିଷ୍ଠିତ ହୋଇଛନ୍ତି ।

ଡ଼କ୍ଟର ଦାଶଙ୍କ ସାହିତ୍ୟସାଧନା ଓ ଜ୍ଞାନଚର୍ଚ୍ଚା ବିଷୟରେ ଅନ୍ୟ ଅଭିଜ୍ଞ ବ୍ୟକ୍ତି-ମାନେ ଲେଖିବେ । ତାଙ୍କ ପାଣ୍ଡିତ୍ୟରେ ନୁହେଁ,ବ୍ୟକ୍ତିତ୍ୱରେ ମୋ ନିଜର ଆଗ୍ରହ ବେଶୀ । ମୁଁ ଜାଣି ବିଶେଷ ଆନନ୍ଦିତ, ଡ଼କ୍ଟର ଦାଶ କେବଳ କବିତାରେ ବାନ୍ଧି ହୋଇ ରହି ନାହାନ୍ତି । ଗଳ୍ପ ଉପନ୍ୟାସ ବି ଲେଖିଛନ୍ତି । ସମାଜସେବାରେ ଅତନ୍ଦ୍ର ନିଷ୍ଠାର ପରିଚୟ ଦେଇଛନ୍ତି । ପ୍ରତିଭା ସବୁବେଳେ ପ୍ରକାଶର ନୂଆ ନୂଆ ପଥ ଖୋଜେ । ସତୁରି ଏମିତି କିଛି ବେଶୀ ବୟସ ନୁହେଁ । ମୋର ଦୃଢ଼ ବିଶ୍ୱାସ, ନାନା ନୂତନ କ୍ଷେତ୍ରରେ ପ୍ରବେଶ କରି ନୂତନତର ଗୌରବ ଲାଭ ପାଇଁ କୁଞ୍ଜବାବୁ, ନିଶ୍ଚୟ ଆହୁରି ଅନେକ ସମୟ ପାଇବେ । ତାଙ୍କର ଅବାରିତଗତି ଲେଖନୀ ଏ ପର୍ଯ୍ୟନ୍ତ ବହୁ ଗ୍ରନ୍ଥ ରଚନା କରିଛି, ତଥାପି ତାଙ୍କର ପ୍ରାଣବନ୍ତ ସାବଲୀଳ ଲେଖନୀଠାରୁ ଆହୁରି ଅନେକ ସୃଷ୍ଟି ଆଶା କରାଯାଇପାରେ ।

କୁଞ୍ଜବାବୁ ଦଶ ବର୍ଷରୁ ଅଧିକ କାଳ ଶାନ୍ତିନିକେତନରେ ଥିଲେ ମୋର ପ୍ରତିବେଶୀ । ଜଣେ ସୁପ୍ରତିବେଶୀହିଁ ଜୀବନରେ ବଡ ଆଶୀର୍ବାଦ । ପ୍ରତିଦିନ ସକାଳ ସନ୍ଧ୍ୟାରେ ତାଙ୍କ ସାଙ୍ଗରେ ଦେଖା ହୋଇଥିଲା । ପ୍ରସନ୍ନତା ତାଙ୍କ ମୁଖମଣ୍ଡଳକୁ ସର୍ବଦା ଆବୋରି ରହୁଥିଲା । ଅତି ଖୋଲା ହୃଦୟରେ ସେ କୁଶଳ ସମ୍ଭାଷଣ କରୁଥିଲେ । ଏଥିପାଇଁ ଶାନ୍ତିନିକେତନ ଆଶ୍ରମରେ ସେ ସମସ୍ତଙ୍କର ବଡ଼ ଆପଣାର ହୋଇ ପାରିଥିଲେ । ସମୟ ଆସିଲା, ସେ ଓଡ଼ିଶା ଶିକ୍ଷା ବିଭାଗରେ ଦାୟିତ୍ୱପୂର୍ଣ୍ଣ ପଦରେ ଯୋଗ ଦେବାକୁ ଶାନ୍ତିନିକେତନ ଛାଡ଼ିଗଲେ । ବିଶ୍ୱଭାରତୀ ଜଣେ ଶ୍ରେଷ୍ଠ ଜ୍ଞାନସାଧକଙ୍କୁ ହରାଇଲା ଓ ଆମେ ହରାଇଲୁଁ କେବଳ ଜଣେ ସହକର୍ମୀଙ୍କୁ ନୁହେ, ଜଣେ ଉଦାରହୃଦୟ ଅନ୍ତରଙ୍ଗ ବନ୍ଧୁଙ୍କୁ ।

ନିକଟରେ ଡକ୍ଟର ଦାଶ ଏଠାକୁ କିଛି ଦିନ ପାଇଁ ପରିଦର୍ଶକ ଅଧ୍ୟାପକ ହୋଇ ଆସିଥିଲେ । ତାଙ୍କ ମୋ ମଧ୍ୟରେ ପୁରୁଣା ବନ୍ଧୁତ୍ୱ ପୁଣି ନୂଆ ଜୀବନ ପାଇଲା । ବୟସ ତାଙ୍କ ମୁଖମଣ୍ଡଳର ଆନନ୍ଦକୁ ଟିକିଏ ବୋଲି ମ୍ଲାନ କରି ପାରି ନାହିଁ; ଆଦ୍ୟ ଯୌବନର ସେଇ ହସଖୁସି ଭାବ, ଶାନ୍ତିନିକେତନର ସେଇ ପୁରୁଣା ଯୁଗର ଆତ୍ମୀୟତାଭରି ବନ୍ଧୁତ୍ୱ — ସବୁ କିଛି ତାଙ୍କଠାରେ ଜୀବନ୍ତ ହୋଇ ରହିଛି ଦେଖି ଆନନ୍ଦରେ ଆତ୍ମହରା ହେଲି ।

( ହୀରେନ୍ଦ୍ର ନାଥ ଦତ୍ତ, ବିଶ୍ୱଭାରତୀ ଇଂରାଜୀ ବିଭାଗର ପୂର୍ବତନ ଅଧ୍ୟାପକ, ବଙ୍ଗଳାସାହିତ୍ୟର ବିଶିଷ୍ଟ ଲେଖକ । 'ଇନ୍ଦ୍ରଜିତେର ଖାତା' ନାମକ ରମ୍ୟରଚନା ପୁସ୍ତକ ତାଙ୍କୁ ବିଶେଷ ଯଶସ୍ୱୀ କରିଥିଲା । )

( ମୂଳ ଇଂରେଜୀରୁ ଅନୁବାଦ : ନରେନ୍ଦ୍ର ନାଥ ମିଶ୍ର ) 

# ॥ ପ୍ରିୟ ପରଶ ॥

**ଶ୍ରୀମତୀ ପ୍ରେମଲତା ଦାଶ**

"ତମେସବୁ ମୋପାଇଁ ଅଡୁଆ ଭିତରେ ମୁସ୍କିଲ ରଖି ଦେଲ,

ପ୍ରିୟ ପରମ ଲେଖିବାକୁ ଦେଇ"

"ପ୍ରିୟ, ପରମ ହୁଏ କେତେବେଳେ ?"

"ଯେତେବେଳେ ସେ ତା ପାଇଁ ଝୁରିମରେ ।"

କିନ୍ତୁ, ଯେତେବେଳେ ସେ ଖରା ଝାଞ୍ଜିରେ ଶିଝୁଥାଏ, ଅସରା ଅସରା ବରଷା ମାଡ ସହୁଥାଏ, କିମ୍ବା ସଂସାରଜଞ୍ଜାଳରେ କାଉଳୁ-ବାଉଳୁ ହନ୍ତସନ୍ତ ହେଉଥାଏ, ସେତିକିବେଳେ ସେ କଅଣ ବୁଝିପାରେ ତା ପ୍ରିୟ-ପରମକୁ ?

ଜାଣି ପାରେ କି, କୁସୁମ ପରଶରେ ପଞ୍ଚଟି ଯାକ ଦେବତା ମସ୍ତକ ମର୍ଦ୍ଦନ କରନ୍ତି ବୋଲି ?

ପ୍ରିୟପରମ ଲଭିବା ପାଇଁ ମୋତେ ଅପର୍ଣ୍ଣାଙ୍କ ପରି ପତ୍ର ଛେଇବାଇ, ନିଆଁ ଜାଳି ଏକଗୋଡ଼ିକିଆ ତପସ୍ୟା କରିବାକୁ ପଡ଼ି ନାହିଁ ।

ତେର ବରଷରୁ ବାପା ମହାବେଦୀ ଉପରେ ଶଙ୍ଖରେ ପାଣି ଟେକି ତାଙ୍କ ହାତ ସଙ୍ଗେ ମୋ "ହାତଗଣ୍ଠି" ପକାଇ ଦେଇଛନ୍ତି । ଚଉଦ ପୂରି ପନ୍ଦର ଚାଲିଲାବେଳକୁ ମୋର ପୁଆଣି ଘର । ସେତେବେଳେ ଆମ ବ୍ରାହ୍ମଣକୁଳରେ ଥରେ ବାହା, ଥରେ ପୁଆଣି ଚଳୁଥିଲା ।

ସେଇଦିନୁ ସ୍କୁଲର ପାଠପଢ଼ା ଛାଡ଼ିଲି । ଆପଣାର ଲୋକଙ୍କୁ ପର କରି ଦେଇ, ପରଙ୍କୁ ଆପଣାର କଲି । ସହର ଛାଡ଼ି ଆସିଲି, ନିପଟ ମଫସଲ ଗାଆଁକୁ ।

ଦୁଃଖକୁ ସୁଖ ମଣି ନେଇଥିବା ଅସାଧ ସାଧନା ଯାହାର, ସେଇଭଳି ଲୋକର ହାତ ଧରି ସୁଖସ୍ୱପ୍ନ ଦେଖୁଥିବା ପନ୍ଦର ବରଷର ଝିଅ ପକ୍ଷେ ଚଳିବା ଯେ କି ଦୁର୍ବିସହ, ସେକଥା ଯାହାର ଅଙ୍ଗେ ଅଙ୍ଗେ ଭେଦୁଛି, ସେଇ ଏକା ଜାଣେ ।

ଖଣ୍ଡାଧାରରେ ଚାଲୁଥିବା ଲୋକଟିର ପାଦ ହୁଏତ ରକ୍ତାକ୍ତ ହୁଏ ନାହିଁ, ଚାଲିବା କୌଶଳ ସେ ଜାଣେ । କିନ୍ତୁ ଖଣ୍ଡା ସଜାଡ଼ି ରଖୁଥିବା ଅନଭିଜ୍ଞ ଲୋକଟିର ହାତ କଟି ଧାର ଧାର ରକ୍ତ ଝରୁଥାଏ । ତା କଷଣ କିଏ ବୁଝେ ?

କିଏ ବୁଝିବ, ଗୋପବନ୍ଧୁଙ୍କ ତ୍ୟାଗ ପଛରେ ତାଙ୍କ ସ୍ତ୍ରୀଙ୍କର କେତେ ଲହୁ, କେତେ ଲୁହ, କେତେ ତ୍ୟାଗ ଥିଲା; ସମସ୍ତେ ଗୋପବନ୍ଧୁଙ୍କୁ ଝୁରନ୍ତି । ତାଙ୍କପାଇଁ ଜଳାଞ୍ଜଳି କରନ୍ତି । ସ୍ତ୍ରୀଙ୍କ ପାଇଁ ପାଣି ଆଞ୍ଜୁଳାଏ କିଏ ଦେଇ ଥିଏ କି ?

ସେଇପରି ଆଜି ଦୁଃଖ କହିବି ନାଁ ସୁଖ କହିବି ? ନାଁ ଯାହା ଅଙ୍ଗେ ନଭେଇଛି, ସେ କଥା କହିବି ?

ଆପଣା ଦହି ଖଟା କି ମିଠା, ସେକଥା କ'ଣ ମୁଁ କହିପାରିବି ? ଖଟା କହିବା ଯେପରି ଲୋକହସା କଥା, ମିଠା କହିଲେ ତ ବଡ଼େଇ କରୁଛି ବୋଲି ଲୋକେ ମୁରୁକି ମୁରୁକି ହସିବେ ।

ଆଜି ମୁଁ କହି ପାରିବି କି ସେ ଶୁଦ୍ଧ ସୁବର୍ଣ୍ଣ ? ସନ୍ଧିରେ ଏତେଟିକେ ଖାଦ ମିଶି ନାହିଁ ?

ଖାଲି ଏତିକି କହିପାରିବି, ସେ ଜଣେ ସତ୍ୟବନ୍ତ, କର୍ତ୍ତବ୍ୟନିଷ୍ଠ, ନିରଳସ ସାଧକ, ଯେ ମୁହୂର୍ତ୍ତଟିଏ ଅକାରଣରେ ପାଣିରେ ଫିଙ୍ଗି ଦିଅନ୍ତି ନାହିଁ । ଜଣେ ସ୍ନେହୀ, ସରଳ, ନିଷ୍କପଟ ନିରହଙ୍କାର ମଣିଷ, ଯେ ପରକୁ ଆପଣାର କରନ୍ତି । ପରର ଉନ୍ନତି ଦେଖିଲେ ଉଲ୍ଲସିତ ହୁଅନ୍ତି । ଗ୍ରାମମାନଙ୍କୁ ଆପଣାର ପୁଅ ଭଳି ଦେଖନ୍ତି । ସହକର୍ମୀ ବା କୁଟୁମ୍ବମାନଙ୍କର ଈର୍ଷା ଅସୂୟା ସବୁ ପଛକୁ ଫିଙ୍ଗି ଦେଇ, ସହାସ୍ୟ ବଦନରେ ସେମାନଙ୍କୁ କ୍ଷମା ଦିଅନ୍ତି ।

"ଅମୁକ ଦିନ ଅମୁକ ଲୋକ ସବୁ ତମକୁ ଅପମାନ ଦେଇ ଥିଲେ ?" ତମେ କ'ଣ ପାଶୋରି ଦେଲ ?

"ସେ ସବୁ ଆମ ଜମି ମାଡ଼ି ବସି ଥିଲେ ?"

"ଏଇ ଲୋକସବୁ ଚାକିରିବେଳେ ଶତ୍ରୁ ସଙ୍ଗେ ମିଶି ତମକୁ କେତେ ହଟହଟା କରୁଥିଲା ? ସେ ସବୁ ଭୁଲି ଭୁଲି ଆମ ନାଆଁରେ ବାରକଥା କହୁଥିଲା ?"

ମନରେ କାହାପ୍ରତି ରାଗରୋଷ ଟିକିଏ ନାହିଁ । ହସି ଦେଇ କହନ୍ତି— "କହୁ ! କୁକୁର କାମୁଡ଼ିଲା ବୋଲି ଆମେ କ'ଣ କୁକୁରକୁ କାମୁଡ଼ିବା ?"

ମୁଁ ରକ୍ତଗରଜିଲ ରୋହିବାଇ, ଦାନ୍ତରେ ଦାନ୍ତ ଚପି ରହେ । ସତକୁ ସତ । ଯେଉଁ କେତେ ଜଣ ପ୍ରଭାବଶାଳୀ ଗ୍ରାମ ବା ବ୍ୟକ୍ତି, ଆମ ବିରୁଦ୍ଧରେ ଲାଗିଥିଲେ, ସେମାନେ ଏଇନେ ସବୁଠାରୁ ପ୍ରିୟ ପୁତ୍ର ଭ୍ରାତାପ୍ରତିମ ପାଲଟି ଯାଇଛନ୍ତି । ମଣିଷ ସତ୍ ପଥରେ ଥିଲେ, ଦିନେ ନାଁ ଦିନେ ତାର ମହତ୍ତ୍ୱ ଫୁଟି ଉଠିବ ।

ଘଣ୍ଟାରେ ଠିକ୍ ଚାରି ବାଜିଲେ ଉଠିବେ । ଅନ୍ଧ ହେଲେ କହିଦେବ, ଘଣ୍ଟାରେ ଚାରି ବାଜୁଛି । ମିନିଟିଏ ଏପଟ, ସେପଟ ହୁଏ ନାହିଁ । ଦଶ ବାଜିଲେ ଶୋଇବେ । ତହିଁରେ ଓଲମ ବଲମ ନାହିଁ । ଏବେ ଅବଶ୍ୟ ସଭାସମିତି ମଝିରେ ମଝିରେ ଶୋଇବା ବେଳ ଅବେଳ କରିଦିଏ ।

ସାଇପାଖର ବିଦ୍ୟାର୍ଥୀ ଘର ଲାଇଟ ଦେଖି, ହେଇ ମଉସା ଉଠିଲେଣି, ଚାରି ବାଜିଲଣି ବୋଲି ଜାଣି ପାରନ୍ତି ।

ସାଇରେ ସେ ସମସ୍ତଙ୍କର "କୁଞ୍ଜ ମଉସା", ମୁଁ "କୁଞ୍ଜ ମାଉସୀ" ସାଇର ପାଣିବାବୁଙ୍କ ଝିଅ ଖୁକାଟି ବଡ ନଖୁରୀ । ସେଦିନ ବଡ଼ ଗମ୍ଭୀର ହୋଇ ଆସି କହିଲା, ମାଉସୀ ! କେତେ କେତେ ଲେଖକଙ୍କୁ ଶିଶୁ ସାହିତ୍ୟିକ କହନ୍ତି— ଆମ ମଉସାଙ୍କୁ କାହିଁକି ଶିଶୁ ସାହିତ୍ୟିକ କହନ୍ତି ନାହିଁ ?

ଗୁହାଳ, ଛୋଟ ପିଲାଙ୍କ ଭଳି ସେ କମିତି ଅଜାତ୍ ସଙ୍ଗେ ଲୁଚକାଳି ଖେଳୁଛନ୍ତି । କାଳିଆ ବଳଦ ଗଲା, ଗଲା କହି, କୁତୁ କୁତୁ କରୁଛନ୍ତି । କୁଇଁ କି କହୁଛନ୍ତି, ଆଲୋ କୁଇଁ, ମୁଣ୍ଡରେ କଅଣଟାଏ ବାନ୍ଧିଛୁ କି ? କୁଇଁ ତ କଟକଟାଟାଏ । ମୁହଁ ହଲାଇ କହୁଛି, ତମକୁ କଅଣ ଦିଶୁ ନାହିଁ କି ? ଏଇଟା ପରି ଫିତା ! ମଉସା କହୁଛନ୍ତି, ଆଲୋ ! ଆଲୋ ! ଏକି କଥା ? ଫିତାକୁ ତ ମୁଣ୍ଡ ଉପରେ ଥୋଇଚୁ, ଏବେ ପିତାଙ୍କୁ କୋଉଠି ରଖିବୁ ?

ସାଇ ବୋହୂ ଫୁଲ ଆସି କହେ, ମାଉସୀ ଦେଖିଲ ! ମଉସା ମୋତେ କଅଣ କହୁଛନ୍ତି ।

କହୁଛନ୍ତି, ଖୁଦୁରୁକୁଣୀରେ ଆମ ବାଡ଼ିର ସବୁ ଫୁଲ ହେଜିଗଲା । ମୁଁ ଭାବିଲି, ଆମ ଫୁଲକୁ କିଏ ଚୋରାଇ ନେଇଚ !

ଯାକୁ କିଏ ନେବରେ ବାପା ? ଯାହା ମୁଣ୍ଡରେ ବସିବ ତା ବେକ ଭାଙ୍ଗିଯିବ !

ବହେ ହସ ଲାଗେ ।

ଅନ୍ତରଙ୍ଗ ବନ୍ଧୁ, ହରେକୃଷ୍ଣ ମାହାନ୍ତି ଟିକେ ବୁଢ଼ା ଲୋକ । ଜଳଖିଆ ଯାଚଲେ କହନ୍ତି—

ନାହିଁ ମୁଁ ଖାଇବି ନାଇଁ, ମୋ ପେଟରେ ବାୟୁ ରଢୁଛି ।

ସଙ୍ଗେ ସଙ୍ଗେ ଉତ୍ତର ଦିଅନ୍ତି, ଆରେ ! ଆରେ ! କାଲି ତ ଏତେ ଜୋରରେ ପବନ ବହୁଥିଲା ! ଆଜି ମୋଟେ ପବନ ନାହିଁ । ମୋ ନିଶ୍ୱାସ ରୁଦ୍ଧ ହୋଇଯାଉଛି । ମୁଁ ଭାବିଲି, ପବନ ଗଲା କୁଆଡ଼େ ? ପବନ ଯାଇ ବାୟୁ ରୂପରେ ହରି ପେଟରେ ରହିଛି !

ଏଇଭଳି ସବୁରି ସାଙ୍ଗେ ଥଟ୍ଟା ତାମସା । ଇଙ୍ଗିତ ଟାପସ୍ରି । ସାନ ବଡ କିଛି ବାଛବିଚାର ନାହିଁ । ଠିକ୍ ତାଙ୍କ ବୋଉଙ୍କ କାଠ । ତାଙ୍କ ବୋଉ ଇମିତି ଥଟ୍ଟା-ତାମସାରେ ସମସ୍ତଙ୍କୁ ହସେଇ ହସେଇ ରଖୁଥିଲେ ।

କିନ୍ତୁ ଥଟ୍ଟା ପରିହାସ ଘଡ଼ିଏ । ଯେତେ ବଡ଼ ବନ୍ଧୁ ଆସୁ ପଛେ, ଟିକିଏ କଥାବାର୍ତ୍ତା ହୋଇ ତାକୁ ବିଦାକରି ଦେବେ । ନହେଲେ ମୋ ଆଡ଼କୁ ପଠାଇ ଦେବେ । ସବୁବେଳକୁ ହାତରେ ବହିଖଣ୍ଡେ । ନହେଲେ କଲମଟାଏ ଥିବ । ଲେଖା ପଢ଼ା ଚାଲିଥିବ ।

ଶାଶୁ କହନ୍ତି—କୁଞ୍ଜୁରି ! ସବୁବେଳକୁ ତୁ ବହିଟାରେ ମୁହଁ ମାଡ଼ିଦେଇ ବସିଛୁ ! ଆଖିରୁ ପାଣି ମରିଯିବ । ତତେ ମୋଅ ରାଣ । ମୋ ମୁଣ୍ଡ ଖାଆଟି ! ଆମର ଯେତିକି ପଇସା ହେଲା ପଛେ ସେତିକି ହେଇଆଉ ! ତୁ ଏତେ ନିରିଖି ନିରିଖି ପଢ଼ନାଆଁ । ସେ ଭାବୁଥିଲେ—ଯେତିକି ଯେତିକି ପଢୁଛନ୍ତି ସେତିକି ସେତିକି ରୋଜଗାର ବଢ଼ି ଯାଉଛି ।

ଆଉ ଶାନ୍ତିନିକେତନର ପୂର୍ବତନ ଅଧ୍ୟକ୍ଷ ପ୍ରବୋଧଚନ୍ଦ୍ର ବାଗଚୀ କହନ୍ତି—କୃଷ୍ଣବାବୁ ! ତୁମଭଳି ଅଧ୍ୟବସାୟୀ ଶାନ୍ତିନିକେତନକୁ ଆସିବା ଯଥାର୍ଥ ହୋଇଛି । ଏ ସାଧନାର ପୀଠ । ତୁମେ ଉପଯୁକ୍ତ ସାଧକ । ଅବଶ୍ୟ ଏଠି ତୁମର ଆର୍ଥିକ ଉନ୍ନତି ହେବ ନାହିଁ । କିନ୍ତୁ ଆତ୍ମ ଉନ୍ନତି ହେବ । ତୁମେ ଏଇଠି ରହିଯାଅ ।

ଡକ୍ଟର ବାଗ୍‌ଚୀଙ୍କ କଥାକୁ ଗୁରୁବାକ୍ୟ ମାନି ସେଇ ସାଧନାପୀଠରେ ଦୀର୍ଘ ବାରବର୍ଷ କଟିଗଲା ।

ଶାନ୍ତିନିକେତନରେ ଥିଲା, ସ୍ୱାଧୀନ ଜୀବନ । ସାଧନାର ଜୀବନ । ବିରାଟ ଗ୍ରନ୍ଥାଗାର, କେବଳ ଲେଖାପଢ଼ାରେ ଦିନ କଟୁଥିଲା ।

ବିଶ୍ୱଭାରତୀରୁ ପ୍ରକାଶିତ ହେଉଥିବା ପତ୍ରିକା ପାଇଁ ବିଶ୍ୱବିଦ୍ୟାଳୟର (କଲେଜ, ସଙ୍ଗୀତ ଭବନ କଳା ଭବନ, ସମେତ ) ସବୁ ପିଲାଏ ଲେଖା ଦିଅନ୍ତି । କିନ୍ତୁ ତହିଁରେ କେବଳ ବଙ୍ଗଳା ଲେଖା ପ୍ରକାଶିତ ହୁଏ । ବହୁ କାଳରୁ ଏହା ଚାଲି ଆସୁଥିଲା । ଗୁରୁଦ

ଭାବଗ୍ରାହୀ ଥିଲେ ଓଡ଼ିଶାର ଛାତ୍ରନେତା । ତତ୍କାଳୀନ କୁଳପତି ସୁଧୀରଞ୍ଜନ ଦାସଙ୍କୁ ଉକ୍ତ ପତ୍ରିକାରେ ହିନ୍ଦୀ ଓଡ଼ିଆ ଅହମୀୟା ଲେଖା ପ୍ରକାଶ କରିବାକୁ ଅନୁରୋଧ କଲେ । କୁଳପତି ଯୁକ୍ତିଟି ଯୁକ୍ତ ଭାବି ତହିଁରେ ସମ୍ମତ ହେଲେ ।

କିନ୍ତୁ ବଙ୍ଗାଳୀ ପିଲାଏ ଏ କଥାରେ ମଙ୍ଗିଲେ ନାହିଁ । କୁଳପତି ଭାବଗ୍ରାହୀଙ୍କୁ ଡାକି ମନା କରି ଦେଲେ । ଆଗପଛ କିଛି ନ ବିଚାରି ଭାବଗ୍ରାହୀ କୁଳପତିଙ୍କ ଦୁଆରେ ଅନଶନ କଲେ ।

ଶାନ୍ତିନିକେତନ ଇତିହାସରେ ଏ ଘଟଣା ଅଭିନବ । ଅନଶନ ବା ଧର୍ମଘଟ ଏହା ପୂର୍ବରୁ କେବେହେଁ ଘଟି ନଥିଲା । ତାପରେ ଆମେ ଦୁର୍ବଳ ପକ୍ଷ । ଚାଲିଲା ଘଣ୍ଟାଚକଟା ତୋଳପାଡ଼ । କୁଳପତି କୁଞ୍ଜବାବୁଙ୍କୁ ଡାକି, ଭାବଗ୍ରାହୀଙ୍କ ଅନଶନ ଭଙ୍ଗ କରାଇଲେ । କୁଳପତି ସୁପ୍ରିମ କୋର୍ଟର ଚିଫ୍ ଜଷ୍ଟିସ୍ ଥିଲେ । ଓକିଲ ଲୋକ । ଭାବିଲେ— କୁଞ୍ଜବାବୁଙ୍କ ପ୍ରରୋଚନାରେ ବୋଧହୁଏ, ଏଠି ଓଡ଼ିଆ ଆନ୍ଦୋଳନ ଚାଲିଛି । କାରଣ ପ୍ରତିଦିନ ଓପର ଓଳା ଅଧିକାଂଶ ଓଡ଼ିଆ ପିଲା କୁଞ୍ଜବାବୁଙ୍କ ସଙ୍ଗେ ବୁଲି ଯାଆନ୍ତି । ଖଚୁଆମାନେ ଏ କଥା ତାଙ୍କ କାନରେ ଫୋଡ଼ିଦେଲେ । ଓଡ଼ିଆମାନେ ଏଠି ଏକ ମେଣ୍ଟ ବାନ୍ଧିଛନ୍ତି । କୁଞ୍ଜବାବୁ ତହିଁର ମୁଖ୍ୟ ।

ଡକେଇଲେ—ଜେରା ଆରମ୍ଭ ହେଲା—

ଦେଖନ୍ତୁ ! ହିନ୍ଦୀ ଭବନ ଓ ଅହମୀୟା ପିଲାଙ୍କୁ (ବିଶ୍ୱଭାରତୀରେ ଆସାମର ବହୁତ ପିଲା ପଢ଼ନ୍ତି, କିନ୍ତୁ ଆସାମର ସ୍ୱତନ୍ତ୍ର ବିଭାଗ ନାହିଁ । ) ପଚାରିଲୁ; ସେମାନେ ସେମାନଙ୍କ ଭାଷାରେ କେହି ବିଶ୍ୱଭାରତୀ ପତ୍ରିକାରେ ଲେଖାଦେବାକୁ ଇଚ୍ଛା କରୁ ନାହାନ୍ତି । ତେବେ ଓଡିଆ ପିଲାଏ ଅଯଥା କଟାଳ କରୁଛନ୍ତି କାହିଁକି ? କୁଞ୍ଜବାବୁଙ୍କର ସ୍ପଷ୍ଟ ଉତ୍ତର—

ଓଡ଼ିଆ ସ୍କୁଲ କଲେଜରେ, ଜଣେମାତ୍ର ବଙ୍ଗାଳୀ ଛାତ୍ର ଥିଲେ, ତା ପାଇଁ ସ୍ୱତନ୍ତ୍ର ବଙ୍ଗଳା ବିଭାଗ ସୃଷ୍ଟି ହୋଇ ତା ଲେଖା ସ୍କୁଲ ମାଗାଜିନ୍‌ରେ ପ୍ରକାଶିତ ହୁଏ । ଏ ତ ବିଶ୍ୱଭାରତୀ ! ତେଣୁ ଆପଣମାନଙ୍କୁ ଉଦାର ହେବାକୁ ହେବ । ଏ ପତ୍ରିକାରେ ଭାରତର ସବୁ ଭାଷାର ଲେଖା ପ୍ରକାଶିତ ହେବା ଉଚିତ । ଏଠି ଭାରତର ସବୁ ଭାଷା-ଭାଷୀ ଛାତ୍ର ଅଛନ୍ତି ଓ ସବୁ ଭାଷାର ପିଲାଏ ପତ୍ରିକା ପାଇଁ ଚାନ୍ଦା ଦେଉଛନ୍ତି ।

ଅନ୍ୟ ଭାଷାଭାଷୀ ଛାତ୍ରମାନେ ନାହିଁ କରୁଥିବା ସ୍ଥଳେ ଆପଣ କାହିଁକି ଜିଦ୍ ଧରୁଛନ୍ତି ?

କୁଞ୍ଜବାବୁଙ୍କର ସ୍ପଷ୍ଟ ଉତ୍ତର—

ଆପଣ ନିଜ ତୁଣ୍ଡରେ ହଁ ଭରିଥିଲେ । ଆପଣଙ୍କ ବାକ୍ୟ ଆପଣ ରକ୍ଷା କରନ୍ତୁ, ଏବେ ବଙ୍ଗାଳୀ ପିଲାଏ ଆମ ପିଲାଙ୍କୁ ଆପ୍‌ଷା ମାରୁଛନ୍ତି— ଭାରତର କୌଣସି ଭାଷା ବଙ୍ଗଳା ଭାଷାର ସମକକ୍ଷ ନୁହେଁ, ପର୍ଯ୍ୟାୟ ମାନ ଦୃଷ୍ଟିରୁ ସ୍ଥାନ ପାଇ ପାରିବନାହିଁ ।

ଅନ୍ୟ କିଏ ନାସ୍ତି ବାଣୀ ଶୁଣାଇ ପାରେ । ହୁଏତ ତାଙ୍କ ମାତୃଭାଷା ପ୍ରତି ତାଙ୍କର ମମତା ନାହିଁ । ମୁଁ ଓଡ଼ିଶାର ଜଣେ ଲେଖକ । ଓଡ଼ିଆଭାଷା ମୋର ମାଆ । ମୋ ମାଆକୁ ଯୋତା ଦେଇ, ମୁଁ ଏଠି ଚାକିରି କରିବ ନାହିଁ । ଆପଣ ଆପଣଙ୍କ କଥା ନରଖିଲେ, ମୁଁ ଏଠୁ ଚାଲିଯିବି ।

ସେତେବେଳେ ପ୍ରାୟ ଦୁଇ ବର୍ଷରେ ଥରେ ଓଡ଼ିଶା ସରକାରଙ୍କ ତରଫରୁ ବିଶ୍ୱ-ଭାରତୀରେ ଆମ ଚାକିରି କାଳ ବଢା ଯାଉଥିଲା ।

ସେତେବେଳକୁ ଆମ କାର୍ଯ୍ୟକାଳ ସରି ଆସୁଥିଲା । ଆଉ ଅଧିକ ନ ବଢ଼ାଇ, ଆମେ ବିଶ୍ୱଭାରତୀର ମୋହ ତୁଟାଇ ମାନେ ମାନେ ସେଠାରୁ ବିଦାୟ ନେଲୁ । ସବୁ ଭାଷା ବିଭାଗ ଓ ସବୁ ଭାଷାଭାଷୀ ଗୁରୁମାନେ ଅନ୍ନଦାଶଙ୍କରଙ୍କ ସଭାପତିତ୍ୱରେ ଆମକୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନାରେ ବିଦାୟ ଦେଲେ । ୦

ଆମେ ଆସିବାର କିଛିଦିନ ପରେ ତାଲଚେରକୁ ବାଘ ଶିକାର କରିବାକୁ ଆସି ବାଘ ଆକ୍ରମଣରେ ଶ୍ରୀଯୁକ୍ତ ଦାସଙ୍କର ପୁତ୍ରଙ୍କର ମୃତ୍ୟୁ ହେଲା ।

ଦିନେ ସକାଳେ ହଠାତ୍ ଦେଖିଲିବେଳକୁ ସୁଧୀରଞ୍ଜନବାବୁ ଆମ ଦୁଆରେ ଠିଆ ହୋଇଛନ୍ତି । ପ୍ରଣାମ କରି ଘରେ ବସାଇଲୁ । ସଙ୍ଗେ ସଙ୍ଗେ ଲୁହରେ ଭାଙ୍ଗି ପଡ଼ି କହିଲେ—

ଆପଣ ସତ୍ ବ୍ରାହ୍ମଣ ! ସତ୍ ପୁରୁଷ ! ମୁଁ ଆପଣଙ୍କ ପାଖେ ଅପରାଧ କରିଥିଲି । ଆଜି କ୍ଷମା ମାଗିବାକୁ ଆସିଛି । ଯେଉଁ ପୁଅ ମୋର ସୁନ୍ଦରବଣର ରୟେଲ ବେଙ୍ଗଲ ଟାଇଗର ଗୋଟାକୁ ଗୋଟା ଗୁଳି ମାଡ଼ରେ ଟଳାଇ ଦେଉଥିଲା, ସେ ଆଜି ଓଡ଼ିଶାର ତାଲଚେର ଜଙ୍ଗଲରେ ବାଘ ଆକ୍ରମଣରେ ଟଳି ପଡ଼ିଲା ?

ତେଣୁ, ହଠାତ୍ ଏ ଭାବନା ମୋ ମନକୁ କୋରି କୋରି ଖାଉଛି । ବାରମ୍ବାର କହୁ ଥାଆନ୍ତି— "ଆପଣ ସତ୍ ପୁରୁଷ" ଆପଣ ସତ୍ ପୁରୁଷ !! ଆପଣ ଆସିବା ପରେ ଶାନ୍ତିନିକେତନର ବହୁ ଗୁଣୀ ଜ୍ଞାନୀ ଲୋକେ ଏକଥା ମତେ କହିଛନ୍ତି ।

ଦେଖିଥିଲୁ, ସେ ଦୁର୍ଦ୍ଦାନ୍ତ ଚେହେରା । ଶାଳ ଗଛ ପରି ବିଶାଳ ଦେହ । ଓଠ କଣରେ ସବୁବେଳକୁ କୁଟିଳ ହସ । ଦେଖିଲୁ, ଝଡ଼ରେ ଭଗ୍ନ ପଡ଼ିଥିବା ବିରାଟ ମହୀରୁହ ପରି ଏ ଅଧୀର ଅସ୍ଥିର ବିପର୍ଯ୍ୟସ୍ତ ଚେହେରା । ଆଖି କଣରେ ଆଖିଏ ଲୁହ । ହାତରେ ଧରାଇ ଦେଇଥିବା କଫି କପ୍‌ଟି ମଧ୍ୟ, ହାତରେ ଥର ଥର କମ୍ପୁଥାଏ ।

ମୁଁ କାଠିଟି ପରି ତାଙ୍କୁ ଚାହିଁ ରହିଥାଏ । କୁଞ୍ଜବାବୁ କହିଲେ— ଯଦି ସତ୍ ବ୍ରାହ୍ମଣ ବୋଲି ଆପଣ ମୋତେ ଭାବୁଛନ୍ତି, ତେବେ ଏତିକ ଜାଣନ୍ତୁ, ସତ୍ ବ୍ରାହ୍ମଣ କେବେଁ କାହାକୁ ଅଭିଶାପ ଦିଏ ନାହିଁ ।

ସେତେବେଳକୁ ସେ ଆଉ ଶାନ୍ତିନିକେତନର ଉପାର୍ଥୀ ନଥିଲେ । ତଥାପି ଆମକୁ ଶାନ୍ତିନିକେତନ ଫେରିଯିବାକୁ ସେ ବହୁତ ଅନୁରୋଧ କରିଥିଲେ । କିନ୍ତୁ ପିଲାଙ୍କ ପଢାପଢ଼ିର କ୍ଷତି ହେବ ବୋଲି ତାଙ୍କୁ ବୁଝାଇ ଦେଇଥିଲୁ । କାରଣ ଶାନ୍ତିନିକେତନରେ କେବଳ ବଙ୍ଗଳା ମାଧ୍ୟମରେ ପିଲା ପଢୁଥାଆନ୍ତି ।

ଯା ହେଉ ! ଏବେ ବିଶ୍ୱଭାରତୀ ପତ୍ରିକାକୁ ଦେଖିଲେ,ପଛକଥା ମନେ ପଡ଼ିଯାଏ, ତହିଁରେ ପ୍ରାୟ ଅଧାଅଧି ଓଡ଼ିଆ ଲେଖା ଗଳ୍ପ କବିତା ପ୍ରବନ୍ଧ ପ୍ରକାଶିତ ହେଉଛି ।

ଶାନ୍ତିନିକେତନରେ ଦୀର୍ଘ ଏଗାରବର୍ଷ ନୀରବ ସାଧନାରେ କଟିଥିଲା । ନିଜସ୍ୱ କବିତା, ପ୍ରବନ୍ଧ, ଥେସିସ୍ ଲେଖା ଛଡ଼ା, ବହୁ ଶ୍ରମ ବହୁ ଦୁଃଖ ବରଣ କରି ସୀମିତ ଆୟରୁ କାଟି (ସେତେବେଳେ ଟ ୧୨୫ରୁ ଦରମା ଆରମ୍ଭ) ନିଜ ଖବର ଓ ଗାଁ ଖବର ବୁଝି ମଧ୍ୟ ଲୋକସାହିତ୍ୟ ସଂଗ୍ରହ ପାଇଁ କିଛି କିଛି ବ୍ୟୟ ହେଉଥିଲା । ସାମାନ୍ୟ ଅର୍ଥ ଓ ଅକ୍ଲାନ୍ତ ପରିଶ୍ରମ ଫଳରେ ଓଡ଼ିଶାର ଗନ୍ଦାଗରେ ଯେଉଁ ଅମୂଲ୍ୟ ଲୋକଗୀତ, ଲୋକଗଳ୍ପ ଓ ଢଗ-ଢମାଳି ସାଇତି ରଖାଗଲା, ତାର ମୂଲ୍ୟ ଅମୂଲ୍ୟ । ସେତେବେଳେ ପାଖରେ ଅର୍ଥ ଥିଲେ, ଟେପ୍ ରେକର୍ଡଟିଏ କିଣି ସେସବୁ ଅପୂର୍ବ କଣ୍ଠସ୍ୱର ସାଇତି ରଖାଯାଇ ପାରିଥାଆନ୍ତା, କି ସାହାଯ୍ୟକାରୀଟିଏ ରଖି ଆହୁରି ବିପୁଳ ରତ୍ନ ସଂଗ୍ରହ ହୋଇ ପାରିଥାଆନ୍ତା ! ବହୁ ଗୀତ, ବହୁଗଳ୍ପ ଜାଣିଥିବା ଲୋକେ ଆଜି ମରିହଜି ଗଲେଣି ।

ରବୀନ୍ଦ୍ର ସାହିତ୍ୟ ଟୀକାଟିପ୍ପଣୀ ଓ ଜୀବନୀ ଲେଖିବା ପାଇଁ ବିଶ୍ୱଭାରତୀ ନବେବର୍ଷ ବୟସ୍କ ସାଧକ ପ୍ରଭାତ ମୁଖାର୍ଜୀଙ୍କୁ ଯେଉଁଭଳି ରାଜଜଣ ସ୍କୁଲର ଯୋଗାଇ ଦେଇଛନ୍ତି, ସେସବୁ ସୁବିଧା ଦେଖିଲେ ଈର୍ଷା ହୁଏ । ବିଦ୍ୟାର ଆଦର ବିଦ୍ୟାର ମୂଲ୍ୟ ଏକା ଦେଇ ଜାଣେ ବଙ୍ଗାଳୀ ଜାତି । ତେବେ ଏ ଯାଏଁ ଯାହା କିଛି ଆଦରଗୌରବ ତାଙ୍କୁ ମିଳିଛି, ସବୁ ଦେଇଛି ବଙ୍ଗାଳୀ ଜାତି, ବଙ୍ଗଳା ଦେଶ ।

ବିଶ୍ୱଭାରତୀରେ ଏଗାରବର୍ଷ ସାଧନାର କୃପା ପାଇଁ ବର୍ଷକ ଲାଗି ଭିଜିଟିଙ୍ଗ ପ୍ରଫେସର କରି ଭାରତର ବହୁ ବଡ଼ ବଡ଼ ସମ୍ମାନିତ ଅଧ୍ୟାପକଙ୍କ ସମଆସନରେ ନେଇ ବସାଇଛି ।

ବହୁ ଦୁଃଖକଷ୍ଟ ବରଣ କରି, ଓଡ଼ିଆ ଗନ୍ତାଘରେ ସାଇତି ରଖି ଦେଇଥିବା, ଅମୂଲ୍ୟ ଲୋକସମ୍ପଦର ସ୍ୱୀକୃତି ଏ ଯାଏଁ ଓଡ଼ିଶାରେ ମିଳିନାହିଁ । କିନ୍ତୁ ଚନ୍ଦ୍ରାର ଗ୍ରାହକ ବଙ୍ଗାଳୀ ଜାତି କରିଛି ତାର ମୂଲ୍ୟାୟନ । ବିଖ୍ୟାତ ଲୋକସାହିତ୍ୟବିତ୍ ଜର୍ମାନ୍ ପ୍ରଫେସର ହୃତ୍ ମୋଦେଙ୍କ ସଙ୍ଗେ ସମ ଆସନରେ ବସାଇ ଲୋକରତ୍ନ ଉପାଧିରେ ଭୂଷିତ କରିଛି ।

ଓଡ଼ିଶାରେ କର୍ମବଳରେ କେହି ସାହିତ୍ୟିକ ଯଥାର୍ଥ ମର୍ଯ୍ୟାଦା ପାଏ ନାହିଁ । ଖୁସାମତିଖୋର, କିମ୍ବା ରାଜନୀତି କରି ପାରୁଥିବା ସାହିତ୍ୟିକ ଏଠି ସୁବର୍ଣ୍ଣ ମୁକୁଟ ପିନ୍ଧେ । ତା ମୁଣ୍ଡରେ ରାଜଛତ୍ର ଟେକାଯାଏ । ସାହିତ୍ୟର ରାଜସୂୟ ଯଜ୍ଞରେ ପୁରୋଧା-ପଣରେ ସେମାନଙ୍କୁ ବରଣ କରାଯାଏ । ଏହା ମର୍ମେ ମର୍ମେ ଅନୁଭବ କରି ସେ ସବୁବେଳକୁ ତହିଁରୁ ବହୁ ଦୂରାନ୍ତରେ ରହି ଆସିଛନ୍ତି ।

ଶାନ୍ତିନିକେତନରୁ ସ୍ୱଦେଶକୁ ବାହୁଡ଼ି ଆସିଲେ । ଚାକିରୀରେ କୌଣସି ଉନ୍ନତି ହେଲାନାହିଁ । ରାଜନୀତି କୌଶଳଜାଣିଥିବା ଲୋକେ ବହୁତ ଚକ୍ରାନ୍ତ କଲେ । ଆଶା କରି ଆସିଥିବା ସବୁରି ତାଙ୍କରୁ ମୋଡ଼ି ଭାଙ୍ଗି ଦେଲେ । ବହୁ ଶତ୍ରୁ ଅଯଥା ଅପମାନିତ କରିବାକୁ ଧାଇଁ ଆସି, ଅବଶ୍ୟ ମନକୁ ମନ ନିଜେ ଅପମାନିତ ହୋଇ ପାଞ୍ଚ ପାହୁଣ୍ଡ ଘୁଞ୍ଚିଗଲେ ।

ବହୁ ପ୍ରଲୋଭନ ଫଣା ଟେକି କବଳିତ କରି ପାରିଲା ନାହିଁ । ପଇସା ପଛରେ ଗୋଡ଼ାଇବା ଯାହା ଜାତକରେ ନାହିଁ, ତାକୁ ଅବା ଅପମାନିତ କରିପାରିବ କିଏ ? କବଳିତ କରିପାରିବ କିଏ ?

ଆଜିଯାଏଁ ପରକୁ ହାତ ପତେଇ ନାହାଁନ୍ତି । ମାଆ ଲକ୍ଷ୍ମୀ ସାଆନ୍ତାଣୀ ଭାତ ଡାଲି ମୁଠାଏ ଯୁଟାଇ ଦେଉଛନ୍ତି । ମୁଣ୍ଡ ଗୁଞ୍ଜିବାକୁ ବାସ ଖଣ୍ଡିଏ ଦେଇଛନ୍ତି । ଅଭାବ-ଭାବରେ ପଛରେ ଧନୁ ଧରି ଠିଆ ହୋଇଛି ଲକ୍ଷ୍ମଣ ପରି ଭାଇ ଉଦୟନାଥ ।

ବାରବର୍ଷ ପରେ ଆମେରିକାରୁ ଆସି ଉଦୟ କହିଗଲା—ଭାଇନା, ପୁରୁଣା ଢଙ୍ଗର ତୁମର ଏ ଘର ଚଳିବ ନାହିଁ । ଏ ସାଜସଜା, ଆସବାବପତ୍ର ମଧ୍ୟ । ସବୁ ବଦଳାଇ ଦେବାକୁ ହେବ । ଭଲ ଘରଟିଏ ଅନୁସନ୍ଧାନ କର, କିମ୍ବା ତୋଳ ।

ଏକଥା ଶୁଣି ଶୁଣି ମୁଁ ଖୁସୀ ହୋଇଗଲି । ଯାହା ହେଉ, ଏତେ ଦିନକେ ମୋ ମନ ଭିତରେ ଲୁଚିଛପି ରହିଥିବା ଦୁଃଖ ଯିବ, ଘରେ ଘରେ ଫ୍ରିଜ, ଗଡ଼ରେଜ୍ ଆଲମୀରା, ସୋଫାସେଟ୍, ଡ୍ରାଇନିଙ୍ଗ୍ ଟେବୁଲ । ଆମର ହାଲ୍ ଫେସନର ମୋଜାଇକ୍ ଘରଟିଏ ହେବ ।

କିନ୍ତୁ ଦଣ୍ଡକେ ମୁହଁ ଫିକା ପଡ଼ିଗଲା ।

ତାଙ୍କ ତୁଣ୍ଡରୁ ଶୁଭିଲା—

ଆରେ ଭିଦ, ଘରଟିଏ ତୋଳିଦେଇ, ତାକୁ ଆଧୁନିକ କରି ସଜାଇ ଦେବୁ । ହେଲେ ତୋର ଏ ଗାଉଁଲି ଭାଇମାନଙ୍କୁ ସହରୀ କରିଦେଇ ପାରିବୁ କି ? ମୋର ଯେତିକି ରୋଜଗାର, ସେତିକିରେ ମୁଁ ଶାଗଭାତ ଖାଇ ସୁ-ସା ହେଉଛି ।

ତୋ ତୋଳା ଘରେ ରହିଲେ ମତେ ବାଧିବ । ଲକ୍ଷେ ଟଙ୍କା ଦେବୁ କହୁଚୁ, ( ଅବଶ୍ୟ କୋଡ଼ିଏ ବର୍ଷ ତଳର କଥା କହୁଚି । ଲକ୍ଷେ ଟଙ୍କାର ମୂଲ୍ୟ ସେତେବେଳେ ଯଥେଷ୍ଟ ଥିଲା ) ବରଂ ତୁ ଆଉ କିଛି ଅଧିକ ଟଙ୍କା ଦେ । ଗାଆଁରେ ହାଇ ସ୍କୁଲଟିଏ କରିବା । ପିଲାଦିନେ, କେତେ ପଙ୍କ କାଦୁଅ ଚକଟି ଆମେ ଦୂର ହାଇ ସ୍କୁଲକୁ ଯାଉଥିଲେ । ଚାଲି ଚାଲି ଗୋଡ଼ରେ ଗୋଡ଼ ଫୁଟି ଯାଇଛି । ତୋର ମନେ ଅଛି ତ ?

ସେ ଦିନର ସେଇ ଟଙ୍କାକୁ ମୂଳଧନ କରି ଗାଆଁରେ ଗଢ଼ି ଉଠିଲା ହାଇ ସ୍କୁଲ । ପିତୃ ସ୍ମୃତି "ଚିନ୍ତାମଣି ବିଦ୍ୟାପୀଠ", ଛଅ ଏକର ଯାଗାରେ ଚାରିଲକ୍ଷ ଟଙ୍କା ବ୍ୟୟରେ ତିନି ଏକର ପୋଖରୀ, ଶହ ଶହ ନଡ଼ିଆ ଗଛ, ଫୁଲ ବଗିଚା ଦେଖିଲେ ମନ ଭରିଯାଏ । ପେଟ ପୂରିଯାଏ । ତା ପଛକୁ ପଛ ଚାଲିଛି, ବଡ ଭାଇ "ଘନଶ୍ୟାମ ଦାଶ' ଙ୍କ ସ୍ମୃତିରେ "ଘନଶ୍ୟାମ ଆରୋଗ୍ୟ ନିକେତନ ।" ଚାରି ଏକର ଜାଗାରେ ପ୍ରାୟ ସାତ ଆଠ ଲକ୍ଷ ଟଙ୍କାର ଅଟକଳ ହୋଇଛି । ମନ ପ୍ରାଣ ଢାଳି ଦେଇ ପ୍ରାୟ ଯୁବକ ଭଳି ସେ କାର୍ଯ୍ୟରେ ଲାଗିଛନ୍ତି ।

ମୁଁ ତାଙ୍କ ସ୍ତ୍ରୀ ହୋଇପାରେ, କିନ୍ତୁ ତାଙ୍କ ସାହିତ୍ୟିକ ଜୀବନର ଅନୁପ୍ରେରଣା ନୁହେଁ ।

ଲେଖକ ତାର ସୁଖଦୁଃଖ ପ୍ରାଣ ଦେଇ ବ୍ୟକ୍ତ କରେ । ପ୍ରାଣ ବା ଆତ୍ମା ହେଉଛି ଜନଗଣର ଆତ୍ମା । ଜଣେ କବି, ବା ଲେଖକ ସନ୍ତୋଷ ପାଏ ତା ଲେଖା ସର୍ବଜନ ଆଦୃତ ବା ପ୍ରଶଂସିତ ହେଲେ ।

ଗାଁ ଗହଳରୁ ବାଛି ନେଇଥିବା 'ଧୀର ମାହାନ୍ତି' 'ବୁରୁନ୍ଦୀ ବାଉରୀ' ବା ଆପଣାର ବୋଉ, ନାନୀ, ମାନଭଉ ଉଦୟ, ଗାଆଁର ଗଛଲତା, ଧୂଳିମାଟିରୁ ତାଙ୍କର କାବ୍ୟ କବିତା ଉପନ୍ୟାସ ବା ଲିଖିତ ଜୀବନକାହାଣୀ, ଯିଏକି, କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଆଣି ଦେଇଛି ।

ଗାଁ ଗହଳର ଲୋକଙ୍କୁ ସେ ତାଙ୍କ ଉପନ୍ୟାସର ପ୍ରୀତି-ଭାଜନ ଚରିତ୍ର କରିଛନ୍ତି । ତାଙ୍କ ନାୟକନାୟିକା ବା ଚରିତ୍ରରେ ବା ଜୀବନରେ ଖୋଜିଛନ୍ତି, ଗ୍ରାମ ଜୀବନର ଅଫୁରନ୍ତ ଉତ୍ସ, ଯାହା ଓଡ଼ିଶାର ଆତ୍ମାକୁ ସଜୀବିତ କରିଛି । ତହିଁରେ ଦର୍ପଣ ପରି ଫୁଟିଛି ତାଙ୍କ ଜୀବନର ସ୍ୱଚ୍ଛତା । କେବଳ କଥାରେ ଲେଖାରେ ନୁହେଁ, କାର୍ଯ୍ୟରେ ମଧ୍ୟ ସେ ସେଇଆ ।

ଘରର ପୁରୁଣା କୋଠିଆ, ବୁରୁନ୍ଦୀ ଭୋଇ, ବଳିଆ ଭୋଇ ବା ଫୁଲ ଭୋଇଆଣୀ, ମଲ୍ଲୀ ଭୋଇଆଣୀ କଥା ମୋର ମନେ ପଡ଼େ । ବାବୁଙ୍କୁ ଦେଖିଲେ, ସେମାନେ ଯେପରି କୋଟିନିଧି ପାଇ ଯାଆନ୍ତି । ପେଟ ଭିତରୁ ସବୁ ଦୁଃଖ ସୁଖ ଖୋଲି କହନ୍ତି । ଅଭାବ ଅସୁବିଧାରେ ନିସଂକୋଚରେ ହାତ ପତେଇ ଦିଅନ୍ତି ।

ଦିନକର କଥା ମୋର ମନେ ପଡ଼ୁଛି । ମୁଁ ଗାଆଁରେ ଥାଏ । ବାଡ଼ି ଦୁଆରକୁ କାଚସି କାଚ ବିକା ଆସିଥାଏ । ମୁଁ ଓ ମୋ ପୁତୁରା ବୋହୂମାନେ ବାଛି ବାଛି କାଚ ପିନ୍ଧୁଥାଉ । ଫୁଲ ଭୋଇଆଣୀ କାଚ ପସରା ଆଡ଼େ ଲୁବ୍ଧକ ପରି ଚାହିଁଥାଏ । ମୋ ପୁତୁରା ବୋହୂମାନେ ତାକୁ ଦେଖି ଆଖିଠାର ମାରୁ ଥାଆନ୍ତି । ଉଦ୍ଦେଶ୍ୟ, ସତେ କି କାଚ ପିନ୍ଧି ପକେଇବ ! ଫୁଲ କାଚରେ ଟିକେ ହାତ ମାରି ଦେଉଥାଏ— ଏ କାଚମୁଠାକ କେତେ ? ପଚାରୁଥାଏ । ମୁଁ ମନେ ୨ ଟିକେ ତା ଉପରେ ଚିଡ଼ୁଥାଏ । ନୀରବରେ କହୁଥାଏ, ଦାମରୁ ତତେ କଅଣ ମିଳିବ ? କିଣି ପକେଇବୁ କି ?

ପୁତୁରା ବୋହୂଟିଏ ଢଗ ମେଲିଲା— "ହାତରେ ନଥାଏ ଧନ, ନାଁ ପୁଅ ବେହେରେ କରି ମନ ।"

ଫୁଲ ଟିକେ ସଂକୁଚିତ ହୋଇ କାଚପସରା ପାଖରୁ ଦୂରକୁ ଘୁଞ୍ଚିଗଲା ।

ଏତିକିବେଳେ ସେ ସେ ବାଟ ଦେଇ ବିଲଆଡ଼େ ଯାଉଥିଲେ । ଗାଆଁରେ ଥିଲାବେଳେ, ନଇତି ବିଲବାଡ଼ି ତଦାରଖ କରିବା ସ୍ୱାଙ୍କର ଏକ ଅଭ୍ୟାସ ।

ଫୁଲ ଉପରେ ନଜର ପଡ଼ିଗଲା । ଦେଖିଲେ ସମସ୍ତେ କାଚ ପିନ୍ଧିଛନ୍ତି, ଫୁଲ ବ୍ୟାକୁଳ ହୋଇ କାଚ ପସରାକୁ ଚାହିଁଛି । କହିଲେ— ଆଲୋ ଫୁଲ, କାଚ ପିନ୍ଧିବୁ କି ?

ଫୁଲ ନୀରବରେ ବସିଥାଏ । ଓଁ କି ଚୁଁ କିଛି କହୁନଥାଏ । ମନରେ ଭାବୁଥାଏ, ମୁଁ ପଇସା କାହୁଁ ପାଇବି ? କାଚେରୀକୁ କହିଲେ—ଆଗେ ତା ହାତରେ ମୁଠାଏ ଭଲ କାଚ ଦେଲୁ !

ବାବୁଙ୍କ ହୁକୁମ୍ । କାଚେରୀ ଅମକୁ ଗୁଡ଼ି ସୁନା ପାଣି ଦିଆ ଝିଲ୍ ମାଣିକ କାଚ ମୁଠାଏ ତାକୁ ପିନ୍ଧାଇ ଦେଲା । କାଚମୁଠିକ ତା ହାତରେ ଦାଉ ଦାଉ ହୋଇ ଝଟକି ଉଠିଲା । ଫୁଲ ଆଖିରୁ ଦଧାର ଲୁହ ବୋହିଗଲା । ବାବୁଙ୍କ ଗୋଡ଼ତଳେ ପଡ଼ିଯାଇ କହିଲା— ବାବୁଆଣୀଙ୍କ କାଚ ବଜର ହୋଇଥାଉ ।

ରାଗରେ, ହିଂସାରେ ମୋ ପୁରୁଣା ବୋହୂମାନେ ଫୁଲକୁ ମୁହଁ ମୋଡ଼ିଲେ । ହେଲେ ସେଦିନ ଲାଜରେ ମୋ ମଣିଷପଣିଆ ମଉଳିଗଲା ।

ଏ ତ ଗୋଟିଏ କଥା ଉଦାହରଣ ଦେଲି । ଏଇପରି ସେ ଚଢ଼େଇର ପେଟବିଆ ଜାଣିପାରନ୍ତି ।

ଓଷାବାଆ ପୁନଅଁ ପରବରେ କୋଠିଆମାନେ ଖାଇଲାବେଳେ ଆପେ ତାଙ୍କ ପାଖରେ ବସି ଦୁଃଖସୁଖ ହୁଅନ୍ତି । ହାନିଲାଭ ପଚାରି ବୁଝନ୍ତି, ସତେକି ବୁରୁନ୍ଦା ବା ବଳିଆର ସାନଭାଇ ବା ନିକଟ ଆତ୍ମୀୟ । ବାରମ୍ବାର ଆମକୁ ବରାଦ୍ ହେଉଥାଏ, ବୁରୁନ୍ଦାକୁ ମାଛ ଦିଅଣ ଦିଅ । ବଳିଆ ପତରରେ ଖେଚୁଡ଼ି ଦିଇଟା ଲାଗିବ । ତାପରେ ବିଦାକି ଦିଆହୁଏ, ଟଙ୍କାଏ ଆଠଣା ନହେଲେ କେବେ କେମିତି ଲୁଗା ଗାମୁଛା କି ଯୋଡ଼ହେଲା ଚାଦର । ଖାଲି ବୁରୁନ୍ଦା ନୁହେଁ, ଏବେ ମଧ୍ୟ ଗାଆଁରେ ବୁଲି ଆସିଲେ—କିଏ ଚାରଣା, କିଏ ଆଠଣା, କିଏ ଅବା ଲୁଗାପଟା ମାଗେ । ସମସ୍ତଙ୍କୁ ଦେବା ପାଇଁ ମନ । ନାହିଁ ପଦ ତୁଣ୍ଡରେ ନାହିଁ । ଯିମିତିକି ଗାଆଁଗୋଟାକ ତାଙ୍କ ପରିବାର । ସେଠି ସବୁରି ଦୁଃଖସୁଖରେ ଦୁଃଖୀ ବା ସୁଖୀ ସିଏ ।

ଘରେ କାହାର ଅଭାବଅସୁବିଧା ତାଙ୍କ ଆଖିରେ ପଡ଼େ ନାହିଁ । ଗାଆଁରେ କିଏ ମରି ଯାଇଛି, ତା ଭାରିଯା ଶୁଦ୍ଧ ହୋଇ ପାରୁନାହିଁ, କାହା ଝିଅ ବାହାହୋଇ ପାରୁ ନାହିଁ, କିଏ ରୋଗରେ ସଢ଼ୁଛି, ଡାକ୍ତରଖାନା ଯିବ ବା ପଥ୍ୟ ଖାଇବ, ସେଥିଲାଗି ପାଞ୍ଚ

ପଚଣିରୁ ପାଞ୍ଚଣ ଯାଏଁ ଖିଦ୍‌ଖାଦ୍ ବାହାର ପଡ଼େ । ସେଇଥି ଲାଗି ଘରେ ମୁହଁ ଫୁଲାଫୁଲି, ଶ୍ରଦ୍ଧାଭୁଷା ବ କମ୍ ହୁଏ ନାହିଁ । ଏଣେ ମାସିକ ବଜେଟକୁ ନଅଣ୍ଟ ହୁଏ ।

ବସନ୍ତ ଋତୁରେ ଆମ୍ବବଉଳର ବାସ୍ନା ଅରଣ୍ୟର କଣ୍ଠରୋଧ କରେ । ସେ ସୁଗନ୍ଧ ଏକାନ୍ତ ଅସହ୍ୟ । ତା ସହିବା, ବା ଫିଙ୍ଗିଦେବା ଦୁଇକଥା ସମାନ ଦୁର୍ବିସହ । ଯିମିତି ଜଣେ ସତ୍ୟନିଷ୍ଠ, ନିର୍ଭୀକ, ନିର୍ଲୋଭ ସାହିତ୍ୟିକର ସ୍ତ୍ରୀ ହେବା ଯେ କେତେ ବେଦନାଦାୟକ, ତା ନିଜେ ସେ ବୁଝି ପାରେ ନାହିଁ । ଢୋକି ପାରେ ନାହିଁ କି ଉଗାଳି ପାରେ ନାହିଁ ।

ସମସ୍ତେ ମତେ କହନ୍ତି, ଆଗେ ତ ଲେଖୁଥିଲ, ଏବେ ଲେଖୁନାହଁ କାହିଁକି ?

ସଂସାରଠାରୁ ଧାପେ ତଫାତରେ ରହିଲେ ହସ୍ତି କରିହୁଏ । କିନ୍ତୁ ସଂସାର ଭିତରେ ନିଜକୁ ବଳି ଦେଇଦେଲେ, ବୋଧହୁଏ, ନିଜର ସତ୍ତା ହଜିଯାଏ ।

ରାତି ପାଞ୍ଚବେଳୁ ଉଠି ରାତି ଦଶ ଯାଏଁ ଏ ସଂସାର ଆଖୁଖାଇରେ ମୁଁ ପେଡ଼ି ହେଉଥାଏ ।

ଜୀବନରେ ତାଙ୍କର ଆଉ କିଛି ସଉକ୍ ନାହିଁ ସିନା, ହେଲେ ଖାଇବା ନାଳଗୁଡ଼ିକ ରହି ଯାଇଛି । ନିତି ପ୍ରତି ପାଞ୍ଚ ସାତ ପ୍ରକାର ତିଅଣ ଶାଗ ଠାଆରେ ବଢ଼ା ହେବ । ସେ ପିତାଶାଗ, ଚୁନାପଡ଼ା ଶାଗ ବା କଣ୍ଟା କେଉଟିଆ ଶାଗ ହେଉ, କମ୍ବା ମଞ୍ଜାରାଇ ପାଣି କଖାରୁ ଅମ୍ବିଳ, କାଞ୍ଜି କି ମହୁରାଡ଼ି ମାଛ ଠୁକୁଠୁକା, ଝିଙ୍ଗା ମାଛ ମହୁର ବେସର ହେଉ, ଧନେ ଧନେ କାନିକା କାଳିଆ କୁର୍ମ ମାଂସ ଝୋଳ ବରାଦ ହୁଏ ।

କିନ୍ତୁ ଚକଉ ପିଠା, ଡାଲମା, ସରୁ ଚକୁଳି, ପୋଡ଼ ପିଠା, ଖିରି, ରସାବଳୀ ଚେନା ତାଡ଼ିଆ ପ୍ରଭୃତିରେ ଶରଧା ବେଶୀ ।

ଆଉ ସବୁବେଳକୁ ମୁଁ ହାଳନାଳ ହୋଇ, ରୋଷେଇ ଘରେ ନିସରପସର ହେଉଥାଏ । କାଲିକ ଠିକା ଗୃହକର୍ତ୍ରୀଟିଏ ନେଇ ବାଟି, କାଟି, ବାଛି ଦହିଗଞ୍ଜି ହେଉଥାଏ ।

କିନ୍ତୁ ଜାମାଯୋଡ଼ ହେବାର ଏ ଆଖି କେବେଁ ଦେଖିନି ନାହିଁ । ଘ ହଳରୁ ତିନି ହଳ ପ୍ୟାଣ୍ଟ ସାର୍ଟ କଣା ହୁଏ ନାହିଁ । ସେଇଆକୁ ଧୋଇ ଶୁଖେଇ ଇସ୍ତ୍ରୀ କରି ମୁଁ ନାକେଦମ୍ ହେଉଥାଏ ।

ଯୋତାର ତଳଚମ ନଉଠିଲା ଯାଏ ନୂଆ ଯୋତା ଘରକୁ ଆସେ ନାହିଁ । ସେଥିଲାଗି ବାରକଥା ମୁଁ ଛୁଗୁଲେଇ ଛୁଗୁଲେଇ କହୁଥାଏ । ଯେତେ ଯାହା ଛୁଗୁଲେଇ କହିଲେ—କିଛି ଶୁଣନ୍ତି ନାହିଁ । ନିର୍ବିକାର ପୁରୁଷ । କଥା କହି କହି ମୋ ତୁଣ୍ଡ ବଥାଏ । କେଉଁଠୁ ଉତ୍ତର ପଦଟିଏ ଆସେ ନାହିଁ । ବେଳେ ବେଳେ ମନକୁ ମନ ଚିଡ଼ି ଚିଡ଼ି ହୋଇ ମୁଁ କାନ୍ଦି ବସେ ।

ଦୁଃଖ ସୁଖରେ ଆସି ତିନି ପୋଷ କଟିଗଲଣି । ସ୍ୱା ଭିତରେ ବିଧାତା ପୁରୁଷ ଅନ୍ତୁନକ ଖିବେ ଶକ୍ତ ଗଣ୍ଠିଟାଏ ବସାଇ ଦେଇ ଗଲାଣି ।

ମନରେ ଆଜିଯାଏଁ ଚନ୍ଦ୍ରାଦ୍ୱିକ ନଥିଲା । ଏବେ ଗୁଡ଼ିରେ ଛନକା ପଶିଲାଣି ।

ଏଇନେ ମୋର କର୍ତ୍ତବ୍ୟ, କେବଳ ତାଙ୍କର ସ୍ୱାସ୍ଥ୍ୟ ଜଗି ରଖି, ବେଳ ସହଳରେ ରାନ୍ଧିବାଢ଼ି ଖୁଆଇବା । କଲମରୁ କାଳି ସରିଗଲେ, କାଳି ଟିକିଏ ଭରିଦେବା ।

ଦିନ ସରି ସରି ଆସିଲାଣି । ପଛକୁ ରହିଗଲା କେତେ ସ୍ମୃତି, ଯାହା ଆଜି ଅଥଳ ଦରିଆ ପାଲଟିଲାଣି । ଆଉ ସେ ଦରିଆ ପାରି ହୋଇ, ସେପାରିକି ଯାଇ ହେବନାହିଁ ।

ଯେତେ ଜଞ୍ଜାଳ ଛିଣ୍ଡେଇଲେ ମଧ୍ୟ ଜଣା ଯାଉଛି, ଯିମିତି କିଛି ସରିନାହିଁ । ଆହୁରି ବହୁତ ବହୁତ ଜଂଜାଳ । ମଣିଷ ମଲାଯାଏଁ ବୋଧହୁଏ ଜଂଜାଳ ତାକୁ ଜାବୁଡ଼ି ଧରିଥାଏ ।

ଭଗବାନଙ୍କ ପାଖେ, ମୋର ଆଉ କିଛି ମାଗୁଣି ନାହିଁ । କେବଳ ମାଗୁଣି ମାଗୁଛି, ପିଲାଏ ସୁଖରେ ଘର ଦୁଆର କରି ରହନ୍ତୁ ।

କାଚ ସିନ୍ଦୁର ଥାଇ ମୁଁ ଚାଲିଯାଏ । ଅହ୍ୟ ଢେଙ୍ଗୁରା ବାଜୁଥିବ । ମୋ କୋକେଇ ଆଗେ ଆଗେ ଲୁଆ କଉଡ଼ି ବିଞ୍ଚି ବିଞ୍ଚି ସେ ଚାଲୁଥିବେ । ● ●

* ଉଦୟଶ୍ରୀ, ନାରାୟଣ ମିଶ୍ର ଲେନ୍, କଟକ

ପ୍ରେରଣାର ଉତ୍ସ

# ।। ଭାଇନା ।।

ଡକ୍ଟର ଉଦୟନାଥ ଦାଶ

ମୁଁ ମୋ ଭାଇନାଙ୍କଠାରୁ ନଅ ବର୍ଷ ସାନ ହୋଇଥିବାରୁ ତାଙ୍କ ପିଲାବେଳ ବିଷୟରେ ବେଶୀକିଛି ଜାଣେନାହିଁ । ତେବେ ଗୋଟିଏ କଥା ମୋର ମନେ ଅଛି, ଭାଇନା ଯେତେବେଳେ ଭୁବନେଶ୍ୱରରୁ ଆସନ୍ତି, କୋରି ଆଣନ୍ତି । ଛୁଟି ଶେଷରେ ତାଙ୍କ ସହିତ ଭୁବନେଶ୍ୱର ଯିବାପାଇଁ ବରାବର ଅଳିକରେ । ମୁଁ ଭାବେ-ଭୁବନେଶ୍ୱରର ଯେ କୌଣସି ଗଛ ମୂଳେ ବୋଧହୁଏ କୋରିଗୁଡ଼ିକ ବଛେଇ ହୋଇ ପଡ଼ିଥିବ, କିନ୍ତୁ ଭାଇନା ତ ବେଶି ଆଣନ୍ତି ନାହିଁ । ଭାଇନା ଦୃଷ୍ଟିପଥରୁ ଅନ୍ତର୍ହିତ ହୋଇ ଯିବାଯାଏ ବୋଉ ମୋତେ ଜବରଦସ୍ତ ଅଟକାଇ ରଖୁଥିଲା । ସେ ଯେତେଥର ଘରକୁ ଆସୁଥିଲେ, ଏହା ହିଁ ସବୁଥର ଘଟୁଥିଲା ।

ମୁଁ ଶୁଣିଛି, ପ୍ରାଥମିକ ଶିକ୍ଷାପରେ ଭାଇନାଙ୍କ ଉଚ୍ଚ ଶିକ୍ଷାପାଇଁ ନନାଙ୍କର କୌଣସି ଯୋଜନା ବା ସମ୍ବଳ ନଥିଲା । ନନା (ବାପା) ଆମର ସୀମିତ ଭୂ-ସମ୍ପତ୍ତିର ଦାୟିତ୍ୱରେ ଗାଁର ଜଣେ ସାଧାରଣ କୃଷୀ ମାତ୍ର ଥିଲେ । ମୋ ବଡ଼ ଭାଇନା (୯ଘନଶ୍ୟାମ ଦାଶ) ଭୁବନେଶ୍ୱରର କୌଣସି ମଧ୍ୟ ଇଂରାଜୀ ସ୍କୁଲରେ ପଢୁଥିଲେ, ତାଙ୍କୁ ବେମାରି ହେବାରୁ ତାଙ୍କ ସେବାଶୁଶ୍ରୁଷା ପାଇଁ କୁଞ୍ଜଭାଇନାଙ୍କୁ ଯିବାକୁ ହୋଇଥିଲା । ସେହି ସମୟରେ ଜଣେ ଶିକ୍ଷକ ଭାଇନାଙ୍କୁ ପଚାରିଲେ— ତମେ କାହିଁକି ପାଠ ପଢୁନାହଁ ? ଭାଇନା କହିଲେ—“ଦୁଇ ଭାଇଙ୍କୁ ଭୁବନେଶ୍ୱରରେ ପଢ଼ାଇବା ପାଇଁ ନନାଙ୍କର ତ ସମ୍ବଳ ନାହିଁ, ମୁଁ କୃଷି କାମରେ ସାହାଯ୍ୟ କରୁଛି ।” ଶିକ୍ଷକ ଭାଇନାଙ୍କୁ ଆଉ କେତୋଟି ପ୍ରଶ୍ନ ପଚାରିଥିଲେ ଓ ତାଙ୍କର ଧାରଣା ହେଲା, ଭାଇନା ଜଣେ ମେଧାବୀ ଛାତ୍ର, ପରେ ତାଙ୍କର ସାହାଯ୍ୟରେ କୁଞ୍ଜଭାଇନା ମଧ୍ୟ ଭୁବନେଶ୍ୱର ମଧ୍ୟ ଇଂରାଜୀ ସ୍କୁଲରେ ନାମ ଲେଖାଇଲେ ।

ମୁଁ ଯେତେବେଳେ ନିମ୍ନ ପ୍ରାଥମିକ ସ୍କୁଲରୁ ବୃତ୍ତି ପାଇଲି, ଭାଇନା ଭାରି ଖୁସି ହୋଇଥିବା କଥା ଆଜି ମନେ ପଡ଼ୁଛି । ମୁଁ ଉଚ୍ଚ ପ୍ରାଥମିକ ବୃତ୍ତି ପାଇଲା ପରେ ଗୋପ ମାଇନର ସ୍କୁଲରେ ପଢ଼ିବା ପାଇଁ ଭାଇନା ମୋତେ ଉତ୍ସାହିତ କରିଥିଲେ । ସେତେବେଳେ ଜଗନ୍ମୋହନ ପଟ୍ଟନାୟକଙ୍କ ପରି ନାମଜାଦା ପ୍ରଧାନ ଶିକ୍ଷକ ଥିଲେ । ସେଠାରେ ପାର୍ଶି, ଉର୍ଦ୍ଦୁ, ଆରବୀ ଓ ଇଂରାଜୀ ଭାଷା ଶିକ୍ଷା ଦିଆ ଯାଉଥିଲା । ସେତେବେଳେ ଶ୍ରମ ମାଧ୍ୟମରେ ଶିକ୍ଷା ପଦ୍ଧତି ପ୍ରଚଳିତ; ଆମ ସ୍କୁଲ ବଗିଚ୍ଛିଟିଫୁଲ ଫଳରେ ହସି ଉଠୁଥିଲା । ପ୍ରଚୁର ନଡ଼ିଆ ଗଛ ଓ କଦଳୀ ଗଛ ଲଗା ଯାଉଥିଲା । ପିଲାମାନଙ୍କୁ କାଠ କାମ, ବେତ କାମ, ଲୁଗାବୁଣା, ଚିତ୍ରାଙ୍କନ ଏବଂ କୁଟୀର ଶିଳ୍ପ ଶିକ୍ଷା ଦିଆଯାଉଥିଲା । ବେଳେବେଳେ ଭାଇନା ଗାଁରୁ ମୋ ପାଇଁ ନିଜ ମୁଣ୍ଡରେ ବୋହି ଚୂଡ଼ା, ଗୁଡ଼ଲି ଦେଇଯାଉଥିଲେ । ଏପରିକି ମୋର ଖର୍ଚ୍ଚ ପାଇଁ ସେ ତାଙ୍କ ଟିଉସନ ଲବ୍ଧ ଅର୍ଥରୁ କିଛି କିଛି ପଠାଉଥିଲେ । ଆମେ ଯେତେବେଳେ ଗାଁରେ ଏକାଠି ହେଉ, ସବୁବେଳେ ମୋତେ ପଢ଼ିବା ପାଇଁ ବାଧ୍ୟ କରୁଥିଲେ । ମୁଁ କିନ୍ତୁ ବନଶୀରେ ମାଛ ମାରିବା ଓ ତାସ୍ ଖେଳିବାରେ ଭାରି ଆସକ୍ତ ଥିଲି । ଏପରିକି ଦିନେ ରାଗି ତାଙ୍କୁ କହିଥିଲି—"ତୁମେ ବୋକା ବୋଲି ବସି ପାଠ ପଢ଼ୁଛ, ମୁଁ ଥରେ ଯାହା ପଢ଼ୁଛି ମୋର ମନେ ରହିଯାଉଛି, ସବୁବେଳେ ଆଉ କାହିଁକି ପଢ଼ିବି ?" ସେ ହସି ହସି ଉତ୍ତର ଦେଲେ-ହଜାର ହଜାର ଲକ୍ଷ ଲକ୍ଷ ବହି ପଢ଼ିବାକୁ ଅଛି । ଜୀବନସାରା ବିତିଗଲେ ବି ସେ ସବୁ ବହି ପଢ଼ା ସରିବ ନାହିଁ । ମନେ ରଖିବା ତ ଦୂରର କଥା । ବଡ଼ ହେବାକୁ ହେଲେ ତୋତେ ବହୁତ ବହି ପଢ଼ିବାକୁ ହେବ । ଯେତେ ପାରୁ ପଢ଼ିଯା ।

ସେ ନିମାପଡ଼ା ହାଇସ୍କୁଲରେ ପଢୁଥିଲା ବେଳେ ମୁଁ ତାଙ୍କୁ ଥରେ ଦୁଇଥର ଭେଟିବାକୁ ଯାଇଛି । ତାଙ୍କର ଗୋଟିଏ କିରୋସିନ୍ ଷ୍ଟୋଭ୍ ଥାଏ ଓ ମୁଁ ପହଞ୍ଚିଲା ମାତ୍ରେ ମୋ ପାଇଁ ସୁଜିର ମହନ୍‌ଭୋଗ ତିଆରିକରି ଦିଅନ୍ତି । କିନ୍ତୁ ଭାଇନାଙ୍କଠାରୁ ଜାଣିବାକୁ ପାଇଲି, ପଇସା ଅଭାବରୁ ସେ ସବୁବେଳେ ମହନ୍‌ଭୋଗ କରି ଖାଇ ପାରନ୍ତି ନାହିଁ । ସକାଳ ଜଳଖିଆ ଭାବେ ସେ ବରାବର ଗଜାମୁଗ ଖାଉଥିଲେ ।

ମାଇନର ପାଶ୍ କଲାପରେ ଓଡ଼ିଶାର ଗୋଟିଏ ଭଲ ହାଇସ୍କୁଲରେ ମୋତେ ପଢ଼ାଇବା ପାଇଁ ସେ ଚାହିଁଥିଲେ । ସେତେବେଳେ ରେଭେନ୍‌ସା କଲିଜିଏଟ୍ ସ୍କୁଲ ସବୁଠାରୁ ବଳି ବିଖ୍ୟାତ ସ୍କୁଲ ଥିଲା । ମୁଁ କଟକ ଯିବାପରେ ମୋତେ ଗୁଡାଏ କାଛୁ ହେଲା । ଭାଇନା ବହୁ କଷ୍ଟ କରି କାର୍‌ବୋଲିକ୍ ସାବୁନ୍‌ରେ ମୋର କାଛୁ ଧୋଇ ଦେଉଥିଲେ । କାଛୁ ଭଲ ହେବାପାଇଁ ମଲମ ଲଗେଇ ଦେଉଥିଲେ । ସେ ବଣିଆ

ସାହେବ କୃଷ୍ଣବାବୁଙ୍କ ବସାରେ ରହୁଥିଲେ । ଏଡ଼େ ବଡ଼ କୋଠାରେ ରହୁଥିବାର ଦେଖି ମୋତେ ଭାରି ଖୁସି ଲାଗୁଥିଲା । କିନ୍ତୁ ଯେତେବେଳେ ଦେଖିଲି, ବୈଠକଖାନାର ଗୋଟିଏ କୋଣରେ ସପଟିଏ ପାରି ସେ ସେଥିରେ ଶୋଉଛନ୍ତି । ମୋ ମନରେ ଘୋର ଦୁଃଖ ଆସିଥିଲା । ସକାଳକୁ ସେ ତାଙ୍କର ବିଛଣା ଖୁବ୍ ଯତ୍ନର ସହିତ ଗୁଡ଼େଇ-ଗାଡ଼େଇ ଖୁବ୍ ସତର୍କତାର ସହିତ ଗୋପନୀୟ ସ୍ଥାନରେ ଲୁଚେଇ ରଖୁଥିଲେ । କାହାର ନଜର ଯେପରି ନପଡ଼େ ସେଥିପ୍ରତି ସେ ଭାରି ସତର୍କ ଥିଲେ । ମୁଁ ପହଞ୍ଚିବାରୁ ସେ କଟକସାରା ସବୁ ହାଇସ୍କୁଲ ବୁଲାଇ ଦେଖାଇଲେ । ରେଭେନ୍ସା କଲେଜିଏଟ୍ ସ୍କୁଲ୍ ମୋତେ କିଛି ଆର୍ଥିକ ସାହାଯ୍ୟ ଦେଇ ପାରିବ ନାହିଁ ବୋଲି ଶୁଣି ସେ ବହୁତ ଭାଙ୍ଗି ପଡ଼ିଥିଲେ । ସେତେବେଳେ ମାସକୁ ମାତ୍ର ପାଞ୍ଚଟି ଟଙ୍କା ମାଇନର ବୃତ୍ତିରୂପେ ମିଳୁଥିଲା । ସେ ମାତ୍ର ପନ୍ଦରଟି ଟଙ୍କା ଟିଉସନରୁ ପାଉଥିବାରୁ କଟକ ସହରରେ ଚଳି ମୋତେ ବେଶୀକିଛି ଦେବାର ଭରସା ନ ଥିଲା । କଲେଜିଏଟ୍ ସ୍କୁଲରେ ପଢ଼ିବାର ସମସ୍ତ ଆଶା ମୋର ମଉଳି ଗଲା । ବ୍ୟାପ୍‌ଟିଷ୍ଟ ମିସନ ହାଇସ୍କୁଲ କୋଠାଟି ସେତେ-ବେଳେ କେଜାଣି କାହିଁକି ମୋତେ ଭାରି ସୁନ୍ଦର ଦିଶୁଥିଲା ।

ସେହି ସ୍କୁଲରେ ମୋର ନାମ ଲେଖାଇ ଦେବାପାଇଁ ମୁଁ ଭାଇନାଙ୍କ ପାଖରେ ଜିଗର କଲି । ପ୍ରିନ୍‌ସିପାଲ ଇ. ଟି ରାଇଡର୍ ମୋତେ ହାତ ବଢ଼େଇ ସ୍ୱାଗତ କରିଥିଲେ । ସାଥେ ସାଥେ ସେ ମୋ ପାଇଁ ସବୁ ବ୍ୟବସ୍ଥା କରିଦେବେ ବୋଲି ଭାଇନାଙ୍କୁ ତତ୍‌କ୍ଷଣାତ୍ ପ୍ରତିଶ୍ରୁତି ଦେଇଥିଲେ । ମୋର ଦରମା ଛାଡ଼ହୋଇ-ଗଲା ଓ ସେ ମୋ ପାଇଁ ବହିପତ୍ର ମଧ୍ୟ ଯୋଗାଇ ଦେଲେ । ମୁଁ ବାର୍ଷିକ ପରୀକ୍ଷାରେ ପ୍ରଥମ ହୋଇ ପାଶ୍ କଲି । ମିଷ୍ଟର ରାଇଡର୍ ଯେବେ ଜାଣିଲେ ଯେ ମୋର ପ୍ଳୀହା ବଢ଼ିଛି ଓ ମୋତେ ବାରମ୍ବାର ମେଲେରିଆ ଜ୍ୱର ହେଉଛି । ତା'ପରଠୁ ତାଙ୍କ ଘରକୁ ଯାଇ ଗୋଟାଏ ଗ୍ଲାସରେ ଗ୍ଲାସେ ଦୁଧ ସହିତ ଏକ ଆଉନ୍‌ସ୍ କୁଇନାଇନ୍ ମିକ୍‌ଶ୍ଚର ଖାଇ ଆସୁଥିଲି । ପ୍ରଥମେ ପ୍ରଥମେ ମୁଁ ଭାଇନାଙ୍କ ସାଥିରେ ଯାଉଥିଲି । ପରେ ପରେ ଏକା ଏକା ନିଜକୁ ଯାଇକି ମିଷ୍ଟର୍ ଜାରିନେଲି । ଆମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରୁଥିବା ଛାତ୍ରର ମୋଠାରୁ ପ୍ରାୟ ୧୦୦ (ଶହେ) ନମ୍ବର ଊଣା ରହୁଥିଲା । ଭାଇନା କହିଲେ, ପ୍ରତିଯୋଗିତା ନହେଲେ ପାଠପଢ଼ାରେ ମନ ଲାଗିବନି । ତେଣୁ ପ୍ୟାରୀମୋହନ ଏକାଡେମୀକୁ ମୋତେ ଉଠାଇ ନେବାକୁ ସେ ସ୍ଥିର କଲେ । ସେତେବେଳର ପ୍ରଧାନ ଶିକ୍ଷକ ବସନ୍ତବାବୁ ମୋତେ କିଛି ଆର୍ଥିକ ସାହାଯ୍ୟ ଦେବାର ପ୍ରତିଶ୍ରୁତି ଦେଲେ । କିନ୍ତୁ ସେଠାରେ ନାଁ ଲେଖାଇଲା ପରେ ସ୍କୁଲରୁ କିଛି ସାହାଯ୍ୟ ନ ପାଇଲାରୁ ମୋତେ ଦାତବ୍ୟ ଅନୁଷ୍ଠାନ ଓ ଭାଇନାଙ୍କ

ସାହାଯ୍ୟ ଉପରେ ନିର୍ଭର କରିବାକୁ ହେଲା । ଭାଇନାଙ୍କ ସାଙ୍ଗରେ ଦିନେ ରେଭେନ୍‌ସା କଲେଜ ପ୍ରିନ୍‌ସିପାଲ ଡଃ ପ୍ରାଣକୃଷ୍ଣ ପରିଜାଙ୍କୁ ଭେଟିଲି ଏବଂ ମୁଁ ଯେ ଜଣେ ମେଧାବୀ ଛାତ୍ର ଓ ବଦାନ୍ୟ ବ୍ୟକ୍ତିମାନେ ମୋତେ ସାହାଯ୍ୟ କରିବା ଉଚିତ, ସେଥିପାଇଁ ସେ ଗୋଟିଏ ସୁପାରିଶ ପତ୍ର ମୋ ହାତରେ ଦେଲେ । ପ୍ରତି ରବିବାର ଦିନ ବଦାନ୍ୟ ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କୁ ଭେଟି ମୁଁ କିଛି କିଛି ସମ୍ବଳ ସଂଗ୍ରହ କରୁଥିଲି । ହାଇସ୍କୁଲର ଶେଷ ଛଅ ମାସ ପୁରାପୁରି ଭାଇନା ମୋ ଖର୍ଚ୍ଚ ବହନ କଲେ । ସେତେବେଳେ ସେ ରାଜ୍ୟରେ ପଢୁଥିବା ନୟାଗଡ଼ ଯୁବରାଜଙ୍କୁ ପଢ଼ାଇବା ପାଇଁ ନିଯୁକ୍ତି ପାଇଥିଲେ । ଏହି ସମୟରେ ଭାଇନା ଅନେକଗୁଡ଼ିଏ କବିତା ଲେଖି ଥିଲେ । ଦିନେ ମୁଁ ଓ ଘନଭାଇନା ବାକ୍‌ସପତ୍ର ଝାଡ଼ୁ ଝାଡ଼ୁ ଗୋଟିଏ ବଡ଼ ଖାତା ଦେଖି ବିସ୍ମିତ ହେଲୁ । ଖାତାଟିର ଉପରେ କେବଳ 'କୁଞ୍ଜବିହାରୀ ଗ୍ରନ୍ଥାବଳୀ' ବୋଲି ଲେଖାଥିଲା । କିନ୍ତୁ ଭିତରେ କିଛି ଲେଖା ନଥିଲା । ମନେହେଲା ସେତେବେଳୁ ସେ ସ୍ୱପ୍ନ ଦେଖୁଛନ୍ତି, ସେ ଜଣେ ବଡ଼ କବି ହେବାକୁ ଚାହାଁନ୍ତି । ଆମକୁ ଭାରି ମଜା ଲାଗି ଥିଲା ।

ଆଇ . ଏସ୍ . ସି ପାଶ୍ କଲାପରେ ଭାଇନା ମୋତେ ନୂଆ ଖୋଲିଥିବା ମେଡ଼ିକାଲ କଲେଜରେ ନାମ ଲେଖିବାକୁ ବହୁତ ଉତ୍ସାହିତ କଲେ । ସେ କହିଲେ, ଆମ ଅଞ୍ଚଳରେ ଏତେ ଯେ ରୋଗବ୍ୟାଧି, ଲୋକମାନଙ୍କର ଦୁଃଖକଷ୍ଟ, ଏ ସବୁଥିରୁ ତୁ କ'ଣ ସେମାନଙ୍କୁ ଉଦ୍ଧାର ପାରିବୁନି ? ମୁଁ ସେହି ଲକ୍ଷ୍ୟରେ ରେଭେନ୍‌ସା କଲେଜରେ ଆଇ . ଏସ୍ . ସି ରେ ନାମ ଲେଖାଇଥିଲି । ମୋ ଭାଗ୍ୟକୁ ଆଇ. ଏସ୍. ସି ପାଶ୍ କଲି ମାତ୍ରେ ମେଡ଼ିକାଲ କଲେଜରେ ପ୍ରଥମ ବ୍ୟାଚ ଛାତ୍ର ନିଆହେଲେ । ମେଡ଼ିକାଲ କଲେଜରେ ପଢ଼ିଲାବେଳେ ସେ ମୋତେ ବରାବର ଆର୍ଥିକ ସହାୟତା କରୁଥିଲେ ଓ ଘନ ଘନ ଚିଠି ଲେଖି ମୋତେ ଉତ୍ସାହ ଦେଉଥିଲେ ।

କୁଞ୍ଜଭାଇନା ଶାନ୍ତିନିକେତନରେ ଅଧ୍ୟାପନା କରୁଥିଲା ବେଳେ ମୁଁ ସେଠାକୁ ବୁଲି ଯାଇଥିଲି । ଶାନ୍ତିନିକେତନର ପ୍ରାକୃତିକ ଶୋଭା, ଧାଡ଼ି ଧାଡ଼ି ଗଛ, ପୁଷ୍ପ ଉଦ୍ୟାନ, ମୋତେ ଖୁବ୍ ଆସକ୍ତ କରିଥିଲା । ସେଠାରେ ଠାଏ ଠାଏ ବାଉଁଶ ଭାରତୀୟ ଭାଷାର ଅଧ୍ୟୟନ ନିମିତ୍ତ ବିଭାଗମାନ ତିଆରି ହୋଇଥାଏ, ଗଛପତ୍ରର ଗହଳି ମଧ୍ୟରେ ସେ କୋଠାଗୁଡ଼ିକ ମନରେ ଗ୍ରାମର ସ୍ମୃତି ଉଜ୍ଜୀବିତ କରୁଥିଲା । ଚୀନ, ଜାପାନ ସିଂହଳ, ତିବ୍ବତ, ଇଂରାଜୀ ଓ ଅନ୍ୟାନ୍ୟ ଇଉରୋପୀୟ ଭାଷାର ଅଧ୍ୟୟନପାଇଁ ସେଠାରେ ବ୍ୟବସ୍ଥା ଥିଲା । ମୁଁ ମନେ ମନେ ଆନନ୍ଦିତ ହେଉଥିଲି ଯେ ଭାଇନା ତାଙ୍କର ବୃତ୍ତିଗତ ଜୀବନରେ ବହୁବାର ସ୍ଥାନାନ୍ତରିତ ଓ ବ୍ୟତିବ୍ୟସ୍ତ ହୋଇ ଶେଷରେ ଭଲ ସ୍ଥାନରେ ପହଞ୍ଚିଛନ୍ତି । ସେଦିନ ଭାଉଜଙ୍କ ରନ୍ଧା ମୋତେ ଖୁବ୍ ଆମୋଦ ଦେଇଥିଲା । ଭାଇନା

ଥିଲେ ବଡ ଛାତ୍ରବତ୍ସଳ ଓ ତାଙ୍କ ଗୃହ ଛାତ୍ରମାନଙ୍କ ପାଇଁ ସର୍ବଦା ଉନ୍ମୁକ୍ତ ଥିଲା । ଶାନ୍ତିନିକେତନ ଥିଲା ବହୁବିଧ ଭାରତୀୟ ସଂସ୍କୃତିର ମିଳନ ପୀଠ । ପ୍ରାଣପ୍ରାଚୁର୍ଯ୍ୟରେ ସ୍ଥାନଟି ଫାଟି ପଡୁଥିଲା । ସବୁବେଳେ ଗୀତ, ନୃତ୍ୟ, ବାଦ୍ୟର ଆସର, ପୁନଶ୍ଚ ହସ୍ତଶିଳ୍ପ ଓ ଚିତ୍ରାଙ୍କନ ପାଇଁ ଏଠାରେ ପ୍ରଚୁର ସୁଯୋଗ ଥିଲା । ଭାଇନା ଶାନ୍ତିନିକେତନକୁ ପୂର୍ବରୁ ହିଁ ଆପଣାର କରି ସାରିଥିଲେ ।

କଟକ ମେଡ଼ିକାଲରେ ପଢ଼ି ଓ ହାଉସ୍‌ମେନସିପ୍ ଶେଷ ପରେ ମୁଁ ଯୁକ୍ତରାଷ୍ଟ୍ର ଆମେରିକା ଯାତ୍ରା କଲି ଏବଂ ୧୯୫୨ରେ ନ୍ୟୁୟର୍କରେ ଗୋଟିଏ ଛୋଟ ଚାକିରିରେ ଯୋଗ ଦେଲି । ବର୍ଷକ ପରେ ଭାରତକୁ ଫେରି ଆସିବା ପାଇଁ ବାରମ୍ବାର ଘରୁ ଚିଠି ପାଇଲି । ସ୍ୱାଭାବିକ ଭାବରେ ବୋଉ ମୋ ଫେରିବା ପାଇଁ ବେଶି ବ୍ୟାକୁଳ ହେଉଥିଲା । କିନ୍ତୁ ଭାଇନା ମୋତେ ଆମେରିକାରେ ମୋ ଜ୍ଞାନର ପୂର୍ଣ୍ଣ ଉପଯୋଗ କରି ଜଣେ ବିଶେଷଜ୍ଞ ହୋଇ ଫେରିବା ପାଇଁ ଚାହୁଁଥିଲେ । ୧୯୫୫ ରେ ମୋର ପଢ଼ା ଶେଷ ହେଲାପରେ, ମୋ ଫେରିବା ପାଇଁ ଭାଇନା ମଧ୍ୟ ବାରମ୍ବାର ଲେଖିଥିଲେ । ତାଙ୍କର ଏକମାତ୍ର ଯୁକ୍ତି ଥିଲା, ନିଜ ମାତୃଭୂମିର ସେବା ପ୍ରଥମ କର୍ତ୍ତବ୍ୟ । ୧୯୫୬ରେ ମୁଁ ଭାରତକୁ ଫେରିବାର ସମସ୍ତ ବନ୍ଦୋବସ୍ତ କରି ସାରିଥିଲି । କିନ୍ତୁ ଅକସ୍ମାତ ମୋ ବୋଉର ମୃତ୍ୟୁ ହେଲା । ତା'ରି ପାଇଁ ତ ମୁଁ ଫେରିବା ଲାଗି ଏତେ ବ୍ୟାକୁଳ ହେଉଥିଲି ! ତେଣୁ ନ ଫେରିବା ପାଇଁ ସ୍ଥିର କରି ନେଲି । ଭାଇନା ଓ ଘରର ଅନ୍ୟମାନେ ବୋଉର ମୃତ୍ୟୁରେ ଭୀଷଣ ବିଚଳିତ ହୋଇ ଯାଇଥିଲେ । ଭାଇନା ମଧ୍ୟ ଜାଣିଥିଲେ, ଯେଉଁ ବିଶେଷଜ୍ଞମାନେ ଭାରତ ଫେରୁଛନ୍ତି ଦେଶରେ ସେମାନଙ୍କର ବିଶେଷ ଆଦର ନାହିଁ । ବିଦେଶର ଆୟ ମଧ୍ୟ ଏଠାରେ ନାହିଁ । ତେଣୁ ଭାଇନା କ୍ରମେ ମୋ ନିଷ୍ପତ୍ତି ସହିତ ଏକମତ ହୋଇଗଲେ ।

୧୯୫୯ ମସିହାରେ ମୁଁ ଇରାକୁ ଭେଟିଲି ଓ ତାକୁ ବିବାହ କରିବାକୁ ସ୍ଥିର କରି ଭାଇନାଙ୍କୁ ଚିଠି ଲେଖିଲି । ମୋ ନିଷ୍ପତ୍ତିରେ ଭାଇନା କିନ୍ତୁ ବିଶେଷ ଖୁସି ହୋଇନଥିଲେ ; କାରଣ ଜଣେ ଓଡ଼ିଆ ଝିଅକୁ ମୁଁ ବିବାହ କରେ, ସେ ଏହା ହିଁ ଚାହୁଁଥିଲେ । କିନ୍ତୁ ଇରା ମହାରାଷ୍ଟ୍ରର ଝିଅ ଥିଲା । ସେ ଭାରତୀୟ ହୋଇଥିବାରୁ ଭାଇନା ଆଶ୍ୱସ୍ତ ହେଲେ । ଇରାର ବାପା ବୋଉଙ୍କୁ ଭେଟିଲା ପରେ ଭାଇନା ଖୁବ୍ ଆନନ୍ଦିତ ହୋଇଥିଲେ । ଡିସେମ୍ବର ୧୯୫୯ମସିହାରେ ଆମ ବିବାହ ହେଲା ଏବଂ ୧୯୬୩ମସିହାରେ ଆମର ବଡ ଝିଅ ଗୀତା ଓ ସାନଝିଅ ମୀରାକୁ ସାଙ୍ଗରେ ନେଇ ଭାଇନାଙ୍କ ରେଭେନ୍ସା କଲେଜ ବସାରେ ପହଞ୍ଚିଲୁ । ଭାଇନା ପ୍ରାୟ ବର୍ଷକ ପୂର୍ବରୁ ଶାନ୍ତିନିକେତନ ଛାଡ଼ି ଓଡ଼ିଶାକୁ

ଫେରି ଆସିଥିଲେ । ଯଦି ଇରି ଓ ପିଲାମାନଙ୍କର ଫଟୋ ସହିତ ସେମାନଙ୍କର ପରିଚୟ ହୋଇଥିଲା, ଏହାହିଁ ଥିଲା ସେମାନଙ୍କର ପ୍ରଥମ ପ୍ରତ୍ୟକ୍ଷ ସାକ୍ଷାତ । ଖୁବ୍ କମ୍ ସମୟ ଭିତରେ ପରିବାରର ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ଭଲ ପାଇ ବସିଲେ । ଇରିନାଙ୍କ ଦୀର୍ଘ ବପୁଷ୍ମାନ ଚେହେରା ଦେଖି ଆମ ଝିଅମାନେ ପ୍ରଥମେ ଡରି ଯାଇଥିଲେ, କିନ୍ତୁ କ୍ରମେ ତାଙ୍କର ଶିଶୁପ୍ରେମୀ ପ୍ରାଣପୂର୍ଣ୍ଣ ବ୍ୟବହାରରେ ସେମାନେ କିଣି ହୋଇଗଲେ । ମୋର ସ୍ତ୍ରୀ ମଧ୍ୟ ଇରିନାଙ୍କ ବିଦ୍ୱତ୍ତା ଓ କବି ପ୍ରତିଷ୍ଠାକୁ ଖୁବ୍ ତାରିଫ୍ କରୁଥିଲେ । ଦି' ଜାଆ ପରସ୍ପରର ଭାଷା ନ ବୁଝିଲେ ବି ପରସ୍ପର ସାନ୍ନିଧ୍ୟରେ ଖୁବ୍ ଆନ୍ତରିକତା ଉପଲବ୍ଧି କରୁଥିଲେ । ଆମେ ଯେତେଦିନ ରହିଲୁ ସେମାନେ ଏକାଠି ରନ୍ଧାବଢ଼ା ଓ ଆନନ୍ଦ କୋଳାହଳରେ ମାତିଗଲେ । ସାନଝିଅ ମୀରାକୁ ଡାଇରିଆ ହେବାରୁ ଇରି ଟିକିଏ ବିଚଳିତ ହୋଇ ପଡିଥିଲା ।

୧୯୭୭ ରେ ଇଣ୍ଡିଆନା ବିଶ୍ୱବିଦ୍ୟାଳୟର ନିମନ୍ତ୍ରଣରେ (ଏସିଆନ୍ ଲୋକସାହିତ୍ୟ ପ୍ରତିଷ୍ଠାନ) ର ଏକ ଅଧିବେଶନରେ ଯୋଗ ଦେବାପାଇଁ ଇରିନା ଆମେରିକା ଆସିଲେ । ତାଙ୍କ ଫେରନ୍ତା ରାସ୍ତାରେ ୟୁରୋପ ଓ ଆଫ୍ରିକାର କେତେକ ରାଜ୍ୟ ବୁଲାବୁଲି କରିବା ପାଇଁ ଆମେ ବ୍ୟବସ୍ଥା କରି ଦେଇଥିଲୁ । ସେତେବେଳକୁ ଆମର ତୃତୀୟ ସନ୍ତାନ ସାନ ପୁଅ ନିଖିଳର ଜନ୍ମ ହୋଇଥାଏ । ତିନିପିଲାଙ୍କ ସହିତ ଇରିନା ଖେଳ ଖୁସିରେ ଆମେରି-କାରେ ରହଣି ଦିନଗୁଡ଼ିକ କଟାଇ ଥିଲେ ଓ ତାଙ୍କୁ ଓଡ଼ିଆ ଶିଖାଇବା ପାଇଁ ଉଦ୍ୟମ କରିଥିଲେ । ଛୋଟ ପିଲାଙ୍କୁ ସୁନ୍ଦର ସୁନ୍ଦର ଲୋକକାହାଣୀ କହି ସେ ଭୁଲାଇ ପାରୁ-ଥିଲେ । ବିଶେଷତଃ ପିଲାଙ୍କ ପ୍ରତି ସେ ବେଶି ସମୟ ଦେଇ ପାରୁଥିବାରୁ ପିଲାମାନେ ତାଙ୍କୁ ଖୁବ୍ ଶୀଘ୍ର ଭଲ ପାଇଗଲେ । ଇରିନା ବେଶୀ ପରିମାଣରେ ଗରମ କ୍ଷୀର ଓ ଗୁଡାଏ ଫଳ ଏକାବେଳେ ଖାଉଥିବାରୁ ଆମ ପିଲାମାନେ ତାଙ୍କୁ ଥଟ୍ଟା କରୁଥିଲେ । ସେ ଏଠାରେ ତିନିମାସ ରହିଲେ ଏବଂ ଆମେ ଘୂର୍ଣ୍ଣିବାତ୍ୟା ପରି କାର୍‌ରେ ସମଗ୍ର ପଶ୍ଚିମ ଯୁକ୍ତରାଷ୍ଟ୍ର ବୁଲିବାରେ ଲାଗିଲୁ । [illegible] ସବୁମୋଟ ୫୨୦୦ ମାଇଲ ରାସ୍ତା ବୁଲିଥିଲୁ । ଯେ କୌଣସି ଜିନିଷ ଟିକିନିଖି ଦେଖିବାରେ ତାଙ୍କର ବିଶେଷ ଶ୍ରଦ୍ଧା ଥିଲା । ବିଶେଷତଃ ଆମେରିକାର ଏହି ପଶ୍ଚିମ ଉପକୂଳର ଶୋଭା ତାଙ୍କୁ ଅଭିଭୂତ କରୁଥିଲା । ପ୍ରତିଦିନ ରାତିରେ ସେ ତାଙ୍କ ଭ୍ରମଣର ବିବରଣୀ ଲିପିବଦ୍ଧ କରୁଥିଲେ । ଆମ ପିଲାମାନେ ସେ ଏତିକି ଲେଖୁଥିବାରୁ ଓ ପଢୁଥିବାରୁ ତାଙ୍କୁ [illegible] ଥଟ୍ଟା କରୁଥିଲେ । ଛଅ ବର୍ଷରୁ ସାନ ତିନୋଟି ପିଲା ଧରି ଏତେ ବୁଲାବୁଲି କରିବାରେ ଇରି କ୍ଳାନ୍ତ ହୋଇ ପଡୁଥିଲା । ମୁଁ ପ୍ରାୟ ସବୁବେଳେ ଗାଡ଼ି ଚଳାଉଥିବାରୁ ମୋତେ ବି କଷ୍ଟ ଲାଗୁଥିଲା । କିନ୍ତୁ ତାଙ୍କ ପାଇଁ ଏ ଯାତ୍ରା ଥିଲା ଖୁବ୍ ଉତ୍ତେଜନାପୂର୍ଣ୍ଣ ଓ ଆମୋଦ-

ଦାୟକ । ସେ ନୂଆ ନୂଆ ସ୍ଥାନ ଦେଖୁଥିଲେ ଓ ସେସବୁର ପ୍ରାକୃତିକ ଶୋଭା ତାଙ୍କୁ ବିହ୍ୱଳିତ କରୁଥିଲା । ଏ ସବୁ ବୁଲାବୁଲିରେ ତାଙ୍କର ଖାଇବା ଓ ଶୋଇବା ଅଭ୍ୟାସରେ ଠିକ୍ ଠିକଣା ରହୁ ନଥିଲେ ବି କୌଣସି ଆପତ୍ତି କରୁ ନଥିଲେ । ଯେତେବେଳେ ଭାରତକୁ ଫେରି ସେ ତାଙ୍କର ବୃହତ୍ତମ ଭ୍ରମଣ-କାହାଣୀ 'ଆମେରିକାରୁ ଇଉରୋପ ଆଫ୍ରିକା' ପ୍ରକାଶ କରି ଆମ ପାଖକୁ ଗୋଟିଏ କପି ପଠାଇଲେ, ସେତେବେଳେ ଆମେ ଉପଲବ୍ଧି କଲୁ ଯେ ତାଙ୍କର ଯାତ୍ରା ସଫଳ ଓ ଅର୍ଥପୂର୍ଣ୍ଣ ହୋଇଛି । ତା'ପରଠୁ ଆମେ ଯେତେଥର ତାଙ୍କୁ ସସ୍ତ୍ରୀକ ଆମେରିକା ଆସି ଆମେରିକାର ଆଉ ଏକ ଅଞ୍ଚଳ କାଲିଫର୍ଣ୍ଣିଆ—ଓ୍ୱାସିଂଟନ—ଓରେଗନ—ଆଲାସ୍କା ବୁଲି ଯିବା ପାଇଁ ଅନୁରୋଧ କଲେ ବି ତାହା ଆଉ ସମ୍ଭବ ହୋଇନାହିଁ ।

୧୯୭୩ରେ ଆମେ ଗ୍ରାମକୁ ଯାଇଥିଲାବେଳେ ଗ୍ରାମରେ ଭଲ ହାଇସ୍କୁଲଟିଏ ନଥିବା କଥା ଗ୍ରାମବାସୀମାନେ ଆପତ୍ତି କରିଥିଲେ । ଭାଇନା ମଧ୍ୟ କହିଲେ ଗ୍ରାମବାସୀଙ୍କ ପାଇଁ ହାଇସ୍କୁଲଟିଏ କରିଦେଲେ ସେମାନେ ଉପକୃତ ହେବେ । ବାପାଙ୍କ ନାଁରେ ଏହି ସ୍କୁଲଟି କରିବା ପାଇଁ ମୁଁ ରାଜି ହେଲି । ମୁଁ ପ୍ରଥମେ ଦୁଇ ହଜାର ଡଲାରର ଗୋଟିଏ ଚେକ୍ କାମ ଆରମ୍ଭପାଇଁ ପଠାଇ ଦେଲି । କିନ୍ତୁ ଦୁଃଖର କଥା, ଗ୍ରାମବାସୀଙ୍କ ମଧ୍ୟରେ ସ୍ଥାନ ନିର୍ଣ୍ଣୟ ଓ ସ୍କୁଲ ନାମକରଣରେ ମତବିରୋଧ ହେବାରୁ ଚେକ୍‌ଟି ମୋ ପାଖକୁ ଫେରି ଆସିଲା । ଘଟଣାକ୍ରମେ ପୁରାତନ ମାଟି ଓ ଚାଳଘରର ମାଇନର ସ୍କୁଲଟି ବାତ୍ୟାରେ ଭୂପୃଷ୍ଠ ପଡିବାରୁ ନୂତନ ସ୍ଥାନରେ ହାଇ ସ୍କୁଲ ଗଢିବାକୁ ଲୋକମାନେ ରାଜିହେଲେ । ଗାଁର ବିଶିଷ୍ଟ ଧନୀ ବ୍ୟକ୍ତିଙ୍କଠାରୁ ଦାନ ଓ ଖରିଦ ସୂତ୍ରରେ ସ୍କୁଲପାଇଁ ଜମି କିଣାହେଲା । ଭାଇନାଙ୍କ ନେତୃତ୍ୱରେ ସ୍କୁଲର ନୂତନ ପରିଚାଳନା କମିଟି ଗଠିତ ହେଲା । ସେହି ସ୍ଥାନରେ ଆମେ ପଠାଇଥିବା ସ୍ୱଳ୍ପ ଅର୍ଥଦାନକୁ ସମ୍ବଳ କରି ବର୍ତ୍ତମାନର ଚିନ୍ତାମଣି ବିଦ୍ୟାପୀଠ ଗଢ଼ିଉଠିଛି । ସାନଭାଇର କଷ୍ଟଲବ୍ଧ ସଞ୍ଚିତ ଧନ ଯେପରି ବିନବ୍ୟୟ ନହୁଏ ଓ ଅସାଧୁ ଲୋକମାନେ ତାକୁ ଚଳୁ କରି ନ ବସନ୍ତି, ସେଥିପାଇଁ ଭାଇନାଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ହୋଇଛି । ସ୍କୁଲର ଶ୍ରେଷ୍ଠ ଶ୍ରେଷ୍ଠ ବାଳକ-ବାଳିକାଙ୍କ ହସ ହସ ମୁହଁରେ ଆମର ଶ୍ରମର ସଫଳତା ଦେଖି ଆମେ ସ୍ୱାଭାବିକ ଖୁବ୍ ଆନନ୍ଦ ଉପଲବ୍ଧି କରୁଛୁ । ଆମ ଅଞ୍ଚଳରେ ଶିକ୍ଷା ବିସ୍ତାର ପାଇଁ ଭାଇନାଙ୍କ ଆଗ୍ରହ ଓ ଆକୁଳତା ହିଁ ଏହି ସଫଳତାର ମୂଳ କାହାଣୀ ବୋଲି କହିବାକୁ ହେବ ।

ସ୍କୁଲଟି ହୋଇଗଲା ପରେ ଭାଇ ଓ ମୁଁ ସ୍ଥିର କଲୁ, ଗାଁରେ ଗୋଟିଏ ଶ୍ରେଷ୍ଠ ଡାକ୍ତରଖାନା ଗଢ଼ିବୁ। ୧୯୭୯ରେ ଏଥିପାଇଁ ସ୍ଥାନ ସ୍ଥିର କରିବାକୁ ଭାଇ ଆମ ଗାଁକୁ ଗଲା । ଏଥିପାଇଁ ଟଙ୍କା ହାତରେ ଧରି ଯାଇଥିଲା, କିନ୍ତୁ ଯେଉଁ ସ୍ଥାନରେ ଆମେ ଡାକ୍ତରଖାନା

ବସାଇବାକୁ ଚାହୁଁଥିଲୁ, ତାହା ଅଠରଜଣଙ୍କର ସମ୍ପତ୍ତି ଥିଲା । କେହି କେହି ଜମି ବିକିବାକୁ ରାଜି ହେଉଥିଲେ; ଅନ୍ୟ କେହି କେହି ଅମତ ହେଉଥିଲେ । ଭାଇନା କହିଲେ, ମୁଁ ସେମାନଙ୍କୁ ବୁଝେଇ ଜାଗା ବ୍ୟବସ୍ଥା କରିଦେବି । ଦୁଇ ବର୍ଷର ଶ୍ରମ ପରେ ଶେଷକୁ ଡାକ୍ତରଖାନା ନାମରେ କିଛି ଜମି ରେଜେଷ୍ଟ୍ରି ହେଲା । ପୁନଶ୍ଚ ଭାଇନାଙ୍କ ଉତ୍ସାହ ଉଦ୍ୟମ ଓ ଶ୍ରମ ଫଳରେ ଡାକ୍ତରଖାନାର ବିରାଟ ପକ୍କାଘରଟି ନିର୍ମିତ ହୋଇଗଲା । ଏଥର ଆମେ ଉଦ୍‌ଘାଟନ ଉତ୍ସବ ପାଇଁ କଟକ ସ୍ଥିତ ଭାଇନାଙ୍କ ବସାରେ ପହଞ୍ଚିଲୁ । ପ୍ରତିଦିନ ଭାଇନା ଓଡ଼ିଶାର ବିଶିଷ୍ଟ ଡାକ୍ତରଙ୍କୁ ଭେଟି ଆମ ଅନୁଷ୍ଠାନର ଉତ୍ସବରେ ଯୋଗଦେବାକୁ ଅନୁରୋଧ କରୁଥିଲେ । ସେମାନଙ୍କଠାରୁ କିଛି କିଛି ଔଷଧ ମଧ୍ୟ ସଂଗ୍ରହ କଲେ । ଫଳରେ ଡିସେମ୍ବର ୧୬ତାରିଖ ୧୯୮୩ ଉଦ୍‌ଘାଟନ ଉତ୍ସବ ଦିନ ଓଡ଼ିଶାର ବିଶିଷ୍ଟ ଆଠଜଣ ଡାକ୍ତର ରୋଗୀଙ୍କୁ ପରୀକ୍ଷା କରି ତତ୍‌ସହିତ ପ୍ରଚୁର ପରିମାଣରେ ଔଷଧ ବାଣ୍ଟି ସେଦିନ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଏହି ଚିକିତ୍ସା ଗୃହଟିକୁ ଉତ୍ସର୍ଗ କରିଦେଲେ । ଭାଇନାଙ୍କ ସାମାଜିକ ପ୍ରତିଷ୍ଠା ବଳରେ ଆମେ ସେ ଦିନ ଏତେ ସଂଖ୍ୟାରେ ଡାକ୍ତରଙ୍କ ସହଯୋଗ ପାଇ ପାରିଲୁ । ଆମେରିକାରେ ଏଇଥି ପାଇଁ ହୁଏତ କୋଡ଼ିଏ ତିରିଶ ହଜାର ଟଙ୍କା ଖର୍ଚ୍ଚ ହୋଇ ଯାଇଥା'ନ୍ତା । ବଡ଼ ଭାଇନା ସ୍ୱର୍ଗତ ଘନଶ୍ୟାମ ଦାଶଙ୍କ ନାମରେ ଡାକ୍ତରଖାନାଟି ଉତ୍ସର୍ଗୀକୃତ ହେଲା । ସେ ଦିନ ମୁଁ କୁଞ୍ଜ ଭାଇନାଙ୍କୁ ପଚାରିଥିଲି-ତାଙ୍କର ସ୍ମୃତିରକ୍ଷା ପାଇଁ ଆମେ କ'ଣ କରି ପାରିବୁ ? ସେ କହିଲେ ଯେ ସେ କେବଳ ସାହିତ୍ୟ ଓ ତାଙ୍କ କୃତି ଭିତରେ ବଞ୍ଚିବାକୁ ଚାହାଁନ୍ତି । ତା ଠାରୁ ସ୍ମୃତିରକ୍ଷା ଲାଗି ଅଧିକ ଆଉ କ'ଣ କରାଯାଇ ପାରେ ? ମୋର ବିଶ୍ୱାସ, ଯେ କୌଣସି ସ୍ମୃତି ମନ୍ଦିର ଅପେକ୍ଷା ଓଡ଼ିଆ ସାହିତ୍ୟର ବାଣୀ ମନ୍ଦିରରେ ସେ ସବୁଦିନ ପୂଜା ପାଇବେ । ଡାକ୍ତରଖାନା ପୂର୍ଣ୍ଣାଙ୍ଗ ହୋଇ ସାରିଲେ ଆମେ ତାଙ୍କ ନାମରେ ପୁସ୍ତକାଗାରଟିଏ ସର୍ବସାଧାରଣଙ୍କ ପାଇଁ ଓ ସର୍ବସାଧାରଣ ସ୍ନାନାଗାରଟିଏ ନିର୍ମାଣ କରିବାକୁ ଚିନ୍ତା କରିବୁ କିମ୍ବା ତାଙ୍କର ମୂର୍ତ୍ତି ସ୍ଥାପନ ପାଇଁ ଯତ୍ନ କରିବୁ ।

ପିଲାବେଳୁ ବାପାଙ୍କର ଦେହାନ୍ତ ହୋଇଥିବାରୁ ଭାଇନା ମୋ ପାଇଁ ବାପାଙ୍କ ପରି ଥିଲେ । ପରେ ଯେତେବେଳେ ମୁଁ ମେଡ଼ିକାଲ କଲେଜରେ ପଢ଼ିଲି, ସେତେବେଳେ ତାଙ୍କଠାରୁ ଭାଇର ସାହସ ଓ ବନ୍ଧୁର ସହୃଦୟତା ଉଭୟ ପାଇଥିଲି । ବର୍ତ୍ତମାନ ମୋ ପାଇଁ ସେ ଜଣେ ଦାର୍ଶନିକ ବ୍ୟକ୍ତିତ୍ୱ ଭାବେ ପ୍ରତିଭାତ ହେଉଛନ୍ତି । ଆମ ଭିତରେ କେବେ ସାଧାରଣ ଅର୍ଥରେ ଘଟିଥିବା କଳହ ବିବାଦ କଥା ମନେ ପଡ଼ୁନାହିଁ । ସମସ୍ତ ନିଷ୍ପତ୍ତିରେ ଆମେ ଏକମତ ହେଉଥିଲୁ । ଆମର ପରିବାର ବା ଜନସାଧାରଣଙ୍କ ସେବାମୂଳକ ଅନୁଷ୍ଠାନ ଏ ସବୁ ପାଇଁ ଉଭୟଙ୍କ ଭିତରେ ମତୈକ୍ୟ ସବୁବେଳେ ରହିଛି ।

ଯଦିଓ ଆମର ଭବିଷ୍ୟତ କାର୍ଯ୍ୟକ୍ରମ ଏଯାଏ ସ୍ଥିର କରିନାହୁଁ, ମୋର ବିଶ୍ୱାସ, ମୋର ଓ ମୋ ପତ୍ନୀ ପାଇଁ ଭାଇନାଙ୍କ ନିର୍ଦ୍ଦେଶହିଁ ଯଥାର୍ଥଭାବେ ପାଳିତ ହେବ । ଭାରତକୁ ଫେରି ଆସି ଗାଁରେ ବସବାସ କରି ରହିବାକୁ ବୋଧହୁଏ, ସାରା ପରିବାରରେ କେହି ଗ୍ରହିବେନି, କିନ୍ତୁ ପ୍ରତିବର୍ଷ ଗ୍ରାମକୁ ଆସି କେତୋଟି ସପ୍ତାହ ରହି ଅନୁଷ୍ଠାନର ଭଲମନ୍ଦ ବୁଝିବା ଓ ଭାଇନାଙ୍କ ପରିବାରର ସାନ୍ନିଧ୍ୟ ଲାଭ କରିବା ଆମ ପାଇଁ ଖୁବ୍ ଆନନ୍ଦଦାୟକ ହେବ । ଆମେ ଯଦିଓ ବର୍ତ୍ତମାନ ଆମେରିକାର ନାଗରିକ, ଏଠାର ବାସିନ୍ଦାମାନେ ଆମକୁ ଆମେରିକାନ୍ ବୋଲି ଭାବନ୍ତିନାହିଁ କିମ୍ବା ଆମେ ମଧ୍ୟ ଆମେରିକାବାସୀ ବୋଲି ଅନ୍ତରରେ କୌଣସି ଉଲ୍ଲାସ ଅନୁଭବ କରିପାରି ନାହୁଁ । ଆମେ ଦୀର୍ଘ ଦିନ ଧରି ଆମେରିକାରେ ରହିବା ପରେ ଭାରତର ଚାଲିଚଳଣିଠାରୁ ବିଚ୍ଛିନ୍ନ ହୋଇ ପଡ଼ିଛୁ । ଏପରିକି ଭାରତର ବଡ଼ ବଡ଼ ଦୋକାନ ବଜାରମାନଙ୍କରେ କିଛି ଜିନିଷ କିଣିବାକୁ ଗଲାବେଳେ ସେମାନେ ଆମକୁ ବିଦେଶରେ ଥିବା ଭାରତୀୟ ବୋଲି ଭାବନ୍ତି ଓ ତତ୍‌କ୍ଷଣାତ୍ ଆମକୁ ବିଦେଶୀ ମନେ କରି ଜିନିଷପତ୍ରର ଦର ବଢ଼େଇ ଦିଅନ୍ତି । ଆମ ଭିତରେ ମିଶ୍ରିତ ଭାବାବେଗ କାମ କରେ । ଆମେ ଭାରତ ଓ ଭାରତୀୟଙ୍କୁ ଭଲ ପାଉ । ଆମର ପିଲାମାନେ ଯଦି କୌଣସି ଭାରତୀୟଙ୍କୁ ବିବାହ କରନ୍ତେ, ଆମେ ଅଧିକ ଆନନ୍ଦିତ ହୁଅନ୍ତୁ । କିନ୍ତୁ ସେମାନେ ଯଦି କୌଣସି ଉଚ୍ଚ ବଂଶର ଆମେରିକୀୟ ବା ଇଉରୋପୀୟଙ୍କୁ ଜୀବନର ସାଥୀଭାବେ ବାଛନ୍ତି, ତହିଁରେ ମଧ୍ୟ ଆମେ ଆପତ୍ତି କରିବୁ ନାହିଁ । ବେଳେବେଳେ ମନେହୁଏ, ଆମେ ପୃଥିବୀ ପରିବାରର ସନ୍ତାନ । ସବୁ ଧର୍ମପ୍ରତି ଆମର ସହନଶୀଳତା ରହିଛି । ବିବେକାନନ୍ଦଙ୍କ କଥାରେ କହିଲେ—"ଆମର ଧର୍ମ ହେଉଛି ପୃଥିବୀର ଧର୍ମ ।"

ପିଲାବେଳେ ମୁଁ ଅନୁଭବ କରୁଥିଲି, କେବଳ ପରିବାର ଲୋକଙ୍କ ଛଡ଼ା ମୋର ସେମିତି ଆଉ କାହା ସହିତ ନିବିଡ଼ ସମ୍ପର୍କ ନାହିଁ । ଏପରିକି ମୋର ବୁଢ଼ା ବାପା ଓ ବୁଢ଼ୀମା'ଙ୍କ କଥା, ଅଜା ଓ ଆଈଙ୍କ କଥା ମଧ୍ୟ ମନେ ପଡୁନାହିଁ । ମାମୁଁଙ୍କ କଥା ମନେ ପଡୁଛି । ସେ ଖୁବ ପ୍ରତିଭାବାନ୍ ଥିଲେ । ଆଉ ଅନ୍ୟମାନଙ୍କ ଭିତରେ ଗାଁର ଲୋକମାନେ; ଆମ ଗାଁରେ ଥିଲେ ଜଣେ ରାମ ମହାନ୍ତି । ସେ ବ୍ରାହ୍ମ ମୁହୂର୍ତ୍ତରୁ ଉଠି ତେତିଶ କୋଟି ଦେବାଦେବୀଙ୍କ ନାମ ନେଉଥିଲେ । ବୀର ମହାନ୍ତି, ତାଙ୍କର ଗୋରା ଦେହ, ସେ ସବୁବେଳେ ଲୋକମାନଙ୍କୁ ସାଧାରଣ ସେବାରେ ସ୍ୱାର୍ଥତ୍ୟାଗ କରିବା ଲାଗି ପ୍ରବର୍ତ୍ତାଉଥିଲେ । ଉଦୟନାଥ ମହାନ୍ତି, ଲୋକେ କହନ୍ତି ଯେ ଗ୍ରାମ-ପଞ୍ଚାୟତ ରାଜନୀତିରେ ଆମ ଘନ ଭାଇନାଙ୍କ ପାଖରେ ବସି ବୁଦ୍ଧି ଶିଖୁଥିଲେ । ବିଖ୍ୟାତ ଅଳତ୍ ଖାଁ, ଯାହାକୁ ଗୁଣ୍ଡାଦଳ ପାଇଁ ଗାଁ ଲୋକେ ଡରୁଥିଲେ, କିନ୍ତୁ ସେ ଘନଶ୍ୟାମ

ଭାଇନାଙ୍କ କଥା ପ୍ରତି କେବେହେଲେ ଅବଜ୍ଞା ଦେଖାଉ ନ ଥିଲେ । ବାରିକ, ଗଉଡ, ତେଲି, କୁମ୍ଭାର, ଗୋପୀନାଥ ଠାକୁର, ଠାକୁରାଣୀ ଓ ମହାଦେବଙ୍କ ପୂଜକମାନେ, ମାଳୀ, ବଢ଼େଇ, ଭୋଇ ହରିଜନମାନେ, ତନ୍ତି ଓ ଅନ୍ୟ ଜାତି ଏବଂ ବୃତ୍ତିର ପିଲାମାନେ ଏକଦା ମୋର ଖେଳସାଥୀ ଓ ପଢ଼ାସାଥୀ ଥିଲେ । ମୁଁ ସ୍କୁଲରେ ପଢ଼ିଲାବେଳେ ସେମାନେ ଅଧବାଟରେ ରହିଗଲେ, ମୋର ମନେ ଅଛି, ସେମାନଙ୍କୁ ଶିକ୍ଷାର ମର୍ଯ୍ୟାଦା ବିଷୟରେ କେତେ କଥା କହୁଛି, ମେଡ଼ିକାଲ୍‌ରେ ପଢିଲାବେଳେ ଗାଁକୁ ଛୁଟିରେ ଆସି ସେମାନଙ୍କୁ ସ୍ୱାସ୍ଥ୍ୟ ସମ୍ପର୍କରେ ବଡ ବଡ କଥା ଶୁଣାଉଥିଲି । ଆମେରିକାରେ ରହି ରୋଜଗାର କଲାପରେ ସେମାନଙ୍କୁ କିଛି କିଛି ଅର୍ଥ, ଔଷଧ ଓ ଲୁଗାପଟା ସାହାଯ୍ୟ କରିଛି । ସେମାନଙ୍କୁ ମୁଁ ପରବୋଲି କେବେ ଭାବିନାହିଁ । ବୟସ ବୃଦ୍ଧି ପରେ ବର୍ତ୍ତମାନ ଅନୁଭବ କରୁଛି ଯେ ସେମାନଙ୍କ ଭିତରୁ ଅନେକଙ୍କୁ ମୁଁ ଠିକ୍‌ଭାବେ ଚିହ୍ନିପାରୁନାହିଁ । କିନ୍ତୁ ସେମାନଙ୍କ ପିଲାକବିଲାମାନେ ତଥାପି ସେମିତି ଅଭାବରେ ସଢ଼ୁଛନ୍ତି । ବେଳେ ବେଳେ ମୁଁ ଦ୍ୱନ୍ଦ୍ୱରେ ପଡ଼େ ଯେ ସେମାନଙ୍କର ଅଭାବ ମେଣ୍ଟାଇବା ପାଇଁ ମୁଁ ସାହାଯ୍ୟ କରୁଛି, ନା ମୋ ନିଜର ପ୍ରାୟଶ୍ଚିତ୍ତ ପାଇଁ, ? ମୋ ଦେଶକୁ ଛାଡ଼ି ଚାଲି ଯାଇଥିବାରୁ ମୁଁ ବେଳେବେଳେ ନିଜକୁ ଅପରାଧୀ ମନେକରେ । ତା'ର ପାଣି ପବନରେ ଏତୁଟିରୁ ଏତୁଟିଏ ହେଲି, ପାଠସାଠ ପଢ଼ି ମଣିଷ ହେଲି, ଏହି ଦେଶର ଗରିବ ଦୁଃସ୍ଥ ଓ ରୋଗୀମାନଙ୍କର ସେବା କରିବା ମୋର ପ୍ରଥମ କର୍ତ୍ତବ୍ୟ ହୋଇଥାଆନ୍ତା, ବୋଧହୁଏ, ଏହି କାରଣରୁ ଗାଁର ଶିକ୍ଷା ଓ ସ୍ୱାସ୍ଥ୍ୟ ବ୍ୟବସ୍ଥା ପାଇଁ ମୋର ଅବଚେତନାରେ କର୍ତ୍ତବ୍ୟବୋଧ ଜାଗରିତ ହୋଇଥିଲା । ଭାଇନା ମୋର ସ୍ୱପ୍ନକୁ ସାର୍ଥକ କଲେ ଓ ଏତେ ବଡ ବଡ଼ ପକ୍‌କାଗୃହ ନିର୍ମାଣରେ ବହୁ ଶ୍ରମ ଓ ସମୟ ଦେଇ ପାରିଲେ । ବେଳେ ବେଳେ ସେ କହନ୍ତି, ମୁଁ ଆମେରିକାରେ ବସବାସ କରି ନ ଥିଲେ ଏତେ ବଡ ଉଦ୍ୟମ ସମ୍ଭବ ହୋଇ ନ ଥାନ୍ତା । ଅନୁଷ୍ଠାନ ମୁଣ୍ଡି ଟେକିବାରେ ଓ ତାର ଉତ୍ତରୋତ୍ତର ଉନ୍ନତିରେ ମୁଁ ଯେ ଦୂରରେ ଥାଇ ଏତେ ଆନନ୍ଦ ଅନୁଭବ କରୁଛି, ଏଥିପାଇଁ ଭାଇନାହିଁ ମୁଖ୍ୟ ବ୍ୟକ୍ତି, ଯାହାଙ୍କ ତତ୍ତ୍ୱାବଧାନ ଓ ସକ୍ରିୟ ସହଯୋଗ ମୋର ସ୍ୱପ୍ନକୁ ସାର୍ଥକ କରିଛି ।

ଭାଇନାଙ୍କ ପ୍ରତି ମୋ ପିଲାମାନଙ୍କର ବର୍ତ୍ତମାନ ପ୍ରଶଂସାର ସୀମା ନାହିଁ । ସେମାନଙ୍କର ଦଦେଇଙ୍କ ସହିତ ନିବିଡ଼ ସମ୍ପର୍କ ପାଇଁ କେବେ ସୁଯୋଗ ସୁବିଧା ନ ଥିଲା । କିନ୍ତୁ ୧୯୭୭ରେ ଆମ ସହିତ ସେ ଯେଉଁ କେତେ ମାସ ଥିଲେ, ଭାରତୀୟ ପରିବାର ସଂସ୍କୃତି କେତେ ମଧୁର ପରିବେଶ ସୃଷ୍ଟି କରିଛି, ଦଦେଇଙ୍କ ସାନ୍ନିଧ୍ୟରୁ ସେମାନେ ତାହା ଉପଲବ୍‌ଧି କରିଥିଲେ । ମୋ ସ୍ତ୍ରୀ ଭାଇନାଙ୍କ ବିପୁଳ କୃତିତ୍ୱ, ବିସ୍ତୃତ ଜନ ସମ୍ପର୍କ

ଏବଂ ଶିକ୍ଷା ଭାରତରେ ତାଙ୍କ ଆଦର୍ଶର ଅନୁସରଣ ଦେଖି ଖୁବ୍ ତାଜ୍ଜବ୍ କରନ୍ତି । ଭାଇନାଙ୍କ ସହ କେତୋଟି ସଭାସମିତିରେ ତଥା ଘରୋଇ ପରିବେଶରେ ବସି ସେ ତାଙ୍କର କଥା କହିବାର ଶୈଳୀ ଓ ପରିହାସପ୍ରିୟତା ଦେଖି ଖୁବ୍ ମୁଗ୍ଧ ହୁଅନ୍ତି । ସେ ଓ ପିଲାମାନେ ତାଙ୍କ ସମ୍ପର୍କରେ କେବେ ହୁଏତ ଭବିଷ୍ୟତରେ କିଛି ଲେଖିବେ । ମୋ ପାଇଁ ଆଜି ଏତିକି ।



※ Translated from English by Dr.N. Satpathy

※ 1, WINDNG BROOK LN.
SAINT LOUIS MO 63124 U. S. A.

## ।। ମୋ କଥା ।।

**ଡକ୍ଟର ପ୍ରତିଭା ରାୟ**

ମଣିଷ ନିଜେ ହସିବାକୁ ଭଲପାଏ । ତେଣୁ ଟିକିଏ ହସର ଉପାଦାନ ମିଳିଗଲେ ସେ ବେଶିକରି ବି ହସି ପକାଏ । କିନ୍ତୁ ଅନ୍ୟକୁ ହସାଇବା ପାଇଁ ବହୁତ କମ୍ ଲୋକ ଭଲ ପାଆନ୍ତି । କଥା କଥାକେ ଅନ୍ୟର ଓଠରେ ହସ ଫୁଟାଇବାର କଳା ସମସ୍ତଙ୍କ ପାଖରେ ନଥାଏ । ସର୍କସର ଜୋକର୍ ବା ନାଟକର ହାସ୍ୟରସର ଅଭିନେତା ବି ହସାଇ ପାରନ୍ତି । କିନ୍ତୁ ସେ ହସ, ଏ ହସ ଏକା କଥା ନୁହେଁ । ନାଟକୀୟ ପରିସ୍ଥିତି ନଥିବ, କଥାରେ ଅତିରଂଜନ ନଥିବ, ଭାବଭଂଗୀରେ ଅଭିନୟଚାତୁରୀ ନଥିବ, ଦୀର୍ଘ-ଦେହୀ, ସେଇ ସୌମ୍ୟ ପୁରୁଷ, ପ୍ରଶାନ୍ତ ଗମ୍ଭୀର ମୁଖରେ ସହଜ ସାବଲୀଳ ଭଂଗୀରେ ଆସ୍ତେକିରି ଏପରି ଏକ ମନ୍ତବ୍ୟ ଦେବେ, ଯାହା ସ୍ପର୍ଶ କରିବ, ହୃଦୟରେ ଆନନ୍ଦ ସୃଷ୍ଟି କରୁଥିବା ବିନ୍ଦୁଟିକୁ । ନିର୍ମଳ ଆନନ୍ଦର ସ୍ପନ୍ଦନ ସଂଚରି ଆସିବ ଓଠକୁ, ଆଖିକୁ, ସମଗ୍ର ଚେହେରାକୁ ଏବଂ ମନକୁ । ଯେତେ ସମୟ ପର୍ଯ୍ୟନ୍ତ ତାଙ୍କ ସଙ୍ଗେ ଆଳାପ ହେଉଥିବ, ବିସ୍ମରଣ ହେଉଥିବ ଦୈନନ୍ଦିନ ଜୀବନର କେତେ ଦୁଶ୍ଚିନ୍ତା, ବିରକ୍ତି, କ୍ଲାନ୍ତି ଓ ବ୍ୟସ୍ତତା । ତାଙ୍କର ପ୍ରସନ୍ନ ଚେହେରା ଯେମିତି ବିସ୍ତାରି ଯାଇଥିବ ଘରସାରା, ଆବୋରି ବସିଥିବ ଘରେ ବସିଥିବା ସମସ୍ତ ବ୍ୟକ୍ତିଙ୍କୁ । ସେ କଥା କହୁଥିବେ, ଆନନ୍ଦ ବାଂଟୁଥିବେ । ତା ବୋଲି ବେଶି ଗୁଡ଼ାଏ କଥା କହିବେନି, କହିବେ ଅଳ୍ପ, ସେଥିରେ ସନ୍ଦେଶ ଥିବ ବେଶି, ଆନନ୍ଦର ସଂକେତ ଥିବ ତାଠାରୁ ବେଶି । ଯାହାଙ୍କୁ ଦେଖି ଦେଲେହିଁ ମନ ଭିତରଟା ସକାଳର ଖରା ପରି ହସର ଆଲୁଅରେ ଭୋଫା ହୋଇଉଠେ— ସେ ପିତୃ-ପ୍ରତିମ ମଉସା, ଲୋକରତ୍ନ ଡାକ୍ତର କୁଞ୍ଜବିହାରୀ ଦାଶ ।

କୌଣସି ଦିନ ତାଙ୍କର ପ୍ରତ୍ୟକ୍ଷ ଛାତ୍ରୀ ନଥିଲେ ବି ତାଙ୍କୁ ମହାନ୍ ଗୁରୁ ଭାବରେ ପ୍ରଣାମ କରେ । ସେତେବେଳେ ରେଭେନ୍‌ସା କଲେଜ ପ୍ରାକ୍ ବିଶ୍ୱବିଦ୍ୟାଳୟ ବିଜ୍ଞାନ ଶ୍ରେଣୀର ଛାତ୍ରୀ ଥାଏ । ସେ ଆମର କ୍ଲାସ୍ ନେଉ ନଥାନ୍ତି । ତଥାପି ଦୂରରୁ ଆସୁଥିବାର ଦେଖିଲେ ଭାରି ଭୟ ଲାଗେ । ସାମ୍ନାସାମ୍ନି ହେବା ପୂର୍ବରୁ ବାଟ ଭଂଗି ଚାଲିଯାଏ ସମ୍ଭ୍ରମରେ । ଡେଙ୍ଗା, ଚଉଡ଼ା, ବିଶାଳଶରୀରଧାରୀ ବ୍ୟକ୍ତିମାନେ ଭୟଂକର ରାଗୀ ହୋଇଥିବେ ବୋଲି ପିଲାଦିନରୁ କେମିତି ବଦ୍ଧମୂଳ ଧାରଣା ଥାଏ । ସେଇଥିପାଇଁ ଅନେକଦିନ ଭ୍ରମ ବୁଝିଥିଲି ଏତେ ପ୍ରଶାନ୍ତ, ସ୍ନିଗ୍ଧ, ସ୍ନେହପ୍ରବଣ ବ୍ୟକ୍ତିଙ୍କୁ

'ସ୍ୱରଚିତ କବିତା ଆବୃତ୍ତି' ପ୍ରତିଯୋଗିତାରେ ଭାଗ ନେଇଥାଏ । ସେତେବେଳେ ପ୍ରାକ୍ ବିଶ୍ୱବିଦ୍ୟାଳୟ ବିଜ୍ଞାନ ଶ୍ରେଣୀର ଛାତ୍ରୀ । ପୁରସ୍କାର ପାଇବାର ଆଶା ଆଦୌ ରଖିନଥାଏ । ବିଚାରକ ଥାଆନ୍ତି ଡକ୍ଟର କୁଞ୍ଜବିହାରୀ ଦାଶ, ଡକ୍ଟର କାଳିନ୍ଦୀ ଚରଣ ପାଣିଗ୍ରାହୀ, ଅନ୍ୟ ଜଣେ ବିଚାରକଙ୍କର ନାମ ଭୁଲି ଯାଇଛି । ମୋର କବିତା "ଫାଶୁ ଅନାରେ ଫେରି" ଦ୍ୱିତୀୟ ପୁରସ୍କାର ପାଇବା ପରେ ଆଶ୍ଚର୍ଯ୍ୟ ହେଲି ଯେ ଏତେ ବିଶାଳ ( ବିଶେଷ କରି ଶରୀରରେ ) ବ୍ୟକ୍ତି ହୋଇ ମୋର ଏତେ କ୍ଷୁଦ୍ର କବିତାଟିକୁ ପୁରସ୍କୃତ କଲେ କିପରି ? ମତେ ସେତେବେଳେ ଚିହ୍ନିନଥାନ୍ତି । ପରେ ଡାକି କହିଲେ—"ଶ୍ରେଷ୍ଠ ପିଲା ହେଲେ ବି ଭଲ ଲେଖୁଛି । ଲେଖା—ଲେଖା—ସାଧନା ଅବ୍ୟାହତ ରଖିଲେ ନିଶ୍ଚୟ ଯଶସ୍ୱିନୀ ହେବ" । ପ୍ରକୃତରେ ଠିକ୍ ସେଇଦିନ-ଠାରୁ ନିଜକୁ "କବି" "କବି" ମନେହେଲା । କବିତା ପାଇଁ ମଞ୍ଚ ଉପରେ ପୁରସ୍କୃତ ହେବାର ସେ ଥିଲା ମୋ ଜୀବନର ପ୍ରଥମ ଅବକାଶ । ତେଣୁ ଅବିସ୍ମରଣୀୟ ହୋଇ ରହିଛି ସେଇ ଘଟଣା, ମଉସାଙ୍କର ସେଇ କେତେ ପଦ କଥା ।

ବାପା ଅବସର ଗ୍ରହଣ ପରେ ଆସି ରହିଲେ ଭଡାଘର ନେଇ କଟକରେ, ନାରାୟଣ ମିଶ୍ର ଗଳିରେ, ମଉସାଙ୍କ ଘର "ଉଦୟଶ୍ରୀ"ର ଠିକ୍ ସାମ୍ନାଘରେ । ଦିନ କେଇଟାରେ ବାପାଙ୍କ ସଙ୍ଗେ ମଉସାଙ୍କର ଘନିଷ୍ଠ ବନ୍ଧୁତା ହୋଇଗଲା । ବୋଉ ସଙ୍ଗେ ମାଉସୀଙ୍କର ବି । ସେଇଠି ମଉସାଙ୍କ ସଙ୍ଗେ ଘନିଷ୍ଠତା ବଢିଲା । ମଉସାଙ୍କ ଅନାବିଲ ସ୍ନେହ ପ୍ରବଣ ହୃଦୟର ପରିଚୟ ମିଳିଲା । ତାଙ୍କ ଉପରେ ଥିବା ଭ୍ରମାତ୍ମକ ଭୀତିଭାବ ବି ଦୂର ହୋଇଗଲା । ମୋର ବିବାହ ହୋଇ ଯାଇଥାଏ । ବାପାଙ୍କ ଘରକୁ ଆସିଲେ ମଉସାଙ୍କ ଘରକୁ ବି ଆସେ । ଦିନେ ମଉସା ଦେଖୁ ଦେଖୁ କହିଲେ—" ଆଉ କଣ ସେ ଆଗ ପ୍ରତିଭା ଅଛି ?" " ମୁଁ ଶଂକିଗଲି, ମଉସା ଏପରି କାହିଁକି କହିଲେ ? ମୋ ବ୍ୟବହାରରେ କେଉଁଠି କିଛି ତ୍ରୁଟି ହୋଇଗଲା କି ? ମୋର ଦ୍ୱନ୍ଦ୍ୱ ବୁଝିପାରି ମଉସା ପୁଣି କହିଲେ—"ଆଉ କଣ ତମର ସେ ଆଗ ପ୍ରତିଭା ଅଛି ? କୁଆଡ଼େ ଗଲା ତମର ଲେଖା-ଲେଖି ? ମୁଁ ସେଇ କଥା କହୁଥିଲି ।" ପ୍ରକୃତରେ ପାରିବାରିକ ଜଂଜାଳ ଭିତରେ ମୁଁ ସେତେବେଳେ ଲେଖାଲେଖି ପ୍ରାୟ ଛାଡ଼ି ଦେଇଥାଏ । ମଉସାଙ୍କର ସେଇ ପଦିକ କଥା ପୁଣିଥରେ ଲେଖିବାର ପ୍ରେରଣା ଦେଲା ।

ସୃଷ୍ଟି ପଥରେ ପ୍ରେରଣା ଅପରିହାର୍ଯ୍ୟ । ପ୍ରେରଣା ଦେବାରେ ମଉସାଙ୍କୁ କିଏ ବଳିଯିବ ? ଯାହାଠାରେ ଟିକିଏ ସର୍ଜନଶକ୍ତିର ସନ୍ଧାନ ପାଇବେ, ତା ପିଛୁରେ ଲାଗି ଯିବେ । ଲାଗି ଲାଗି ତାକୁ ସୃଷ୍ଟିଶୀଳ କରିବେ । ତାଙ୍କର ଜଣେ ବାଲ୍ୟବନ୍ଧୁଙ୍କ ପିଛା ଲାଗି ଲାଗି ତାଙ୍କ ଦ୍ୱାରା ଏକ ଉପନ୍ୟାସ ଲେଖାଇବାର କଥା ମୁଁ ଜାଣେ । ଯେତେବେଳେ

ଦେଖାହେବ କହିବେ—"ଲେଖିଯାଅ—କିଏ କଣ କହିଲା, କିଏ ପଛରୁ ଗୋଡ଼ ଟାଣିଲା, ମୋଟେ ମନରେ ଧରନାହିଁ । ସମୟ ତାର ବିଚାର କରିବ ।" "ଲେଖାଟିଏ ପଢ଼ିଲେ ଫୋନ୍ କରିବେ, ମତାମତ ଦେବେ, ଉତ୍ସାହ ଦେବେ, ସୃଷ୍ଟି ପଥରେ ଆଗେଇ ନେବେ, ଝଙ୍କାରରେ "ଶିଳାନ୍ୟାସ" ଗଳ୍ପଟି ଫୋନ୍ କଲେ । ଫୋନ୍‌ରେ ହସି ହସି ତାଙ୍କର ଧ୍ୱନି ଉଠିଲା । କହିଲେ—ଗଳ୍ପରେ ଏତେ ହସାଇଲ, ହସାଇ ହସାଇ ଶେଷକୁ ଲୁହ ବୁହାଏ ଝରାଇଦେଲ ଆଖିରୁ ।" ତାଙ୍କର କଥା ଏମିତି ଅକୃତ୍ରିମ, ହୃଦୟଛୁଆଁ । କେହି ଯଦି କହିବ—ଓଡ଼ିଶାରେ ଆଗେଇବା ବଡ଼ କଷ୍ଟ । ପାଦେ ଆଗେଇଲେ ପଛରୁ ଗୋଡ଼ ଟାଣିବା ପାଇଁ ଲୋକ ତିଆର ହୋଇଅଛନ୍ତି । ମଉସା ହସି ହସି କହିବେ—"ଗୋଡ଼ ଟାଣୁଛନ୍ତି କି ? କୋଉ ଲୋକଙ୍କର ଗୋଡ଼ ଛୁଆଁ ଯାଏ ? ଯାହାର କିଛି ମହତ୍ତ୍ୱ ଥାଏ, ବିଶେଷତ୍ୱ ଥାଏ । ଯାହି ତାହି ଲୋକଙ୍କର ଗୋଡ଼ କଣ କେହି ଛୁଏଁ ?" "ଶରୀର ଯେପରି ଦୀର୍ଘ, ମନ ସେମିତି ବିଶାଳ । ତାଙ୍କ ମୁହଁରୁ ଅତି କାହାରି ନିନ୍ଦା ଶୁଣେ ନାହିଁ । ମୁଁ କେବେ ଶୁଣି ନାହିଁ । ପରଚର୍ଚ୍ଚା କରନ୍ତି ନାହିଁ, ପ୍ରଶ୍ରୟ ବି ଦିଅନ୍ତି ନାହିଁ । ମାଉସୀ ସ୍ପଷ୍ଟବାଦିନୀ, ଫୁଟା ଫୁଲ ଭଳି ଉନ୍ମୁକ୍ତ ତାଙ୍କର ହୃଦୟ । ନିନ୍ଦା, ପ୍ରଶଂସା ଯାହା ଯେଉଁଠି ଶୁଣିବେ, କହିବେ । ମଉସା ମଝିରେ ମଝିରେ କହୁଥିବେ—"ମାଉସୀର ସବୁ କଥା ଶୁଣ, କିଛି ମନେ ରଖ ନାହିଁ । ମନେ ରଖିଲେ ଆଗେଇ ପାରିବ ନାହିଁ । ସବୁବେଳେ ଭଲକଥା ମନେରଖ, ମନ୍ଦକଥା ଭୁଲିଯାଅ ।" ଥରେ ମାଉସୀଙ୍କ ସଙ୍ଗେ ଫୋନ୍‌ରେ କଥାବାର୍ତ୍ତା ଚାଲିଥାଏ । କୌଣସି ଏକ ବିବାହ ଭୋଜିରେ କିଏ କେମିତି ଶାଢୀ ପିନ୍ଧିଥିଲା ଏବଂ କିଏ କାହା ଶାଢ଼ୀ ଉପରେ କଣ ମନ୍ତବ୍ୟ ଦେଲା, ସେଇ କଥା ଫୋନ୍‌ରେ କିଛି ସମୟ ଧରି ଚାଲିଥାଏ । କଥା ମଝିରେ ମୁଁ କହିଲି—ପ୍ରକୃତରେ ବଡ଼ ଦୁଃଖ ଲାଗୁଛି ଯେ ଶାଢ଼ୀ ସମ୍ପର୍କରେ ଆଲୋଚନା କରି ଲୋକେ ଏତେ ସମୟ ନଷ୍ଟ କରନ୍ତି, ଏତେ ମୂଲ୍ୟ ବି ଖର୍ଚ୍ଚ କରନ୍ତି !"

ସେ ପାଖରୁ ମାଉସୀଙ୍କ ସ୍ୱର ପରିବର୍ତ୍ତେ ମଉସାଙ୍କ ସ୍ୱର ଶୁଭିଲା—ମୁଁ ତ ସେଇ କଥା ଦଶ ମିନିଟ୍ ହେଲା ଶୁଣୁଛି । ମତେ ବି ଦୁଃଖ ଲାଗୁଛି ଯେ ଜଣେ ଲେଖକଙ୍କର ସ୍ତ୍ରୀ 'ଆଉ ଜଣେ ଲେଖିକାଙ୍କ ସହ ଫୋନ୍‌ରେ ପଇସା ଖର୍ଚ୍ଚ କରି ଶାଢୀ ବିଷୟରେ ହିଁ ଆଲୋଚନା କରୁଛନ୍ତି ।" ମୁଁ ଭାରି ଲଜ୍ଜିତା ହେଲି । ମଉସା ଏମିତି ଠିକଣା ଯାଗାରେ ଚେତେଇ ଦିଅନ୍ତି । ଥରେ ମାଉସୀ କହିଲେ—"ଏଣିକି ବୟସ ହେଲେ ପ୍ରତିଭା ଆସ୍ତେ ଆସ୍ତେ ଆଉରି ଭଲ ଲେଖିବ ଯେ—" ମଉସା ସଙ୍ଗେ ସଙ୍ଗେ କହିଲେ—"ମାଉସୀ କଥା ମୋଟେ ଶୁଣିବ ନାହିଁ । ଏଣିକି ବର୍ଷଟିଏ ଗଲେ ବୟସ ବର୍ଷଟିଏ ନବଢ଼ି ବର୍ଷଟିଏ କମିବ ବୋଲି ଭାବିବ । ତେବେ ଯାଇ ଭଲ ଲେଖିବ—ଲେଖାରେ ରହିବ ସ୍ପନ୍ଦନ,

ଆବେଗ । ଲେଖକ କେବେ ବୃଦ୍ଧ ହୁଏ ନାହିଁ । ଲେଖକର ମନ ଚିର ସବୁଜ । ଚିର ସୁନ୍ଦର ।”

ମଉସାଙ୍କର କଥା କଥାକେ ଢଗ, ଉଦାହରଣ, ପରିହାସ ଏବଂ ଉପଦେଶ । ସବୁ ଭିତରେ ପ୍ରଚ୍ଛନ୍ନ ଭାବରେ ଥାଏ ପ୍ରେରଣା, ଉତ୍ସାହ, ଆଗେଇ ନେବାର ଦିଗ୍‌ଦର୍ଶନ । ମଉସାଙ୍କ ସଙ୍ଗେ ଯେଉଁ ଦିନ ଦେଖା ହୁଏ, ଇଚ୍ଛା ହୁଏ ହ' ଧାଡ଼ି ଲେଖି ପକାଇବା ପାଇଁ । ପ୍ରେରଣା ଓ ଉତ୍ସାହ ସୃଷ୍ଟି ପଥରେ ଆବଶ୍ୟକ । ମଉସାଙ୍କର ସେଥିରେ କାର୍ପଣ୍ୟ ନଥାଏ । ବାପାଙ୍କ ମୃତ୍ୟୁ ପରେ ବାପାଙ୍କ ସ୍ଥାନରେ ଠିଆ ହୋଇ ମତେ ଅକାତର ପ୍ରେରଣା ଦାନ କରିଛନ୍ତି । ମଉସାଙ୍କ ଘରକୁ ଗଲେ, ତାଙ୍କ କଥା ଶୁଣିଲେ ବାପାଙ୍କ କଥା ମନେ ପଡ଼େ । ମତେ ଦେଖିଲେ ମଉସା ମଧ୍ୟ ବାପାଙ୍କୁ ମନେ ପକାନ୍ତି ।

କହନ୍ତି—ହେଡ୍‌ମାଷ୍ଟ୍ରେ କିଛି ଦେଖି ପାରିଲେନି ସିନା, ତାଙ୍କର ଆତ୍ମା ସବୁ ଜାଣୁଥିବ । ତମେ ଲେଖିଯାଅ—ବାପା ନାହାନ୍ତି ବୋଲି ହଟିଯାଅ ନାହିଁ—ବାପା ସିନା ଶରୀରରେ ନାହାନ୍ତି, ତାଙ୍କର ଆଶୀର୍ବାଦ ଝରୁଛି । ତା ନ ହୋଇଥିଲେ ତମେ ଲେଖୁଥାନ୍ତ କିପରି ? ମତେ ଆଶ୍ୱାସନା ଦେଉ ଦେଉ ସେ ବାପାଙ୍କୁ ସ୍ମରଣ କରି ଆଖି ଛଳ ଛଳ କରିବେ । ମୋର କଥାକାର ଜୀବନରେ 'ମଉସା'ଙ୍କର ଭୂମିକା କିଣ ସେ କଥା ମୋ ଛଡ଼ା କିଏ ବୁଝିବ ?

ମଉସାଙ୍କ ବିଷୟରେ ଦିପଦ ଲେଖିବାକୁ ଯାଇ ମୁଁ ନିଜକଥା ହିଁ ବଖାଣିଲି । ମୁଁ ତାଙ୍କୁ ଯେପରି ଦେଖିଛି, ସେପରି ଲେଖିବା ଛଡ଼ା ତାଙ୍କ ସାହିତ୍ୟକୃତିର ସମୀକ୍ଷା କରିବାର ଧୃଷ୍ଟତା କରିବି କିପରି ? ପୂର୍ବର ସେଇ ଭୀତି ଭାବଟା ମନରୁ ସଂପୂର୍ଣ୍ଣ ଯାଇନାହିଁ ଯେ ! ସେତେବେଳେ ତାଙ୍କୁ ଶରୀରରେ କେବଳ ବିଶାଳ ଦେଖିଥିଲି, ଏବେ ଯେତେ ବେଶି ବେଶି ଦେଖୁଛି, ସବୁ ଦିଗରୁ ମଉସା ଦିଶୁଛନ୍ତି କେତେ ବିଶାଳ ! ତାଙ୍କ ପାଖରେ ତିରିଦିନ ପ୍ରାକ୍ ବିଶ୍ୱବିଦ୍ୟାଳୟର ଛାତ୍ରଜୀବିଲି ମୁଁ କ୍ଷୁଦ୍ର, ନଗଣ୍ୟ ହୋଇଯାଏ ଏବଂ ତାଙ୍କର ଦୀର୍ଘ ନିରାମୟ ଜୀବନ ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରି ମୋ ମନର ଶ୍ରଦ୍ଧା ଓ ଭକ୍ତି ଅକାଡ଼ି ଦିଏ ।



❋ 'ଆଖ୍ୟାୟିକା' ତୁଳସୀପୁର, କଟକ ।

# ।। କି'ବା ଅସାଧ୍ୟ ଏ ମହୀମଣ୍ଡଳେ ।।

ସୁରେନ୍ଦ୍ର ନାଥ ଦ୍ୱିବେଦୀ

ଆମ ଦେଶରେ ଗୋଟାଏ ଅତି ପୁରାତନ କଥା ଏବେ ବି ଲୋକମନରେ ନାହିଁ ବୋଲି କହି ହେବ ନାହିଁ । ତାହା ହେଲା-ରଜାଘର ପୁଅ ସିନା ରଜା ହୋଇ-ପାରିବ ! ଯେ ଯେଉଁଠିକି ଯୋଗ୍ୟ, ତାହା ଆଗରୁ ଠିକଣା ହୋଇ ସେହି ଅନୁସାରେ ଜନ୍ମ ନିଅନ୍ତି । ସମାଜରେ କିମ୍ବା ଦେଶରେ କେହି ଆଗୁଆ ବା ନେତା ହେବାକୁ ହେଲେ ତାର ହୁଏତ ସେମିତି ପୂର୍ବ ପୁରୁଷର ପରମ୍ପରା ଥିବ କିମ୍ବା ବଡ ଧନାଢ୍ୟ ପରିବାରରେ ଜନ୍ମ ହୋଇଥିବା ଆବଶ୍ୟକ । ଏ ଗତାନୁଗତିକ ପରମ୍ପରାରୁ ଆମ ସମାଜ ମୁକ୍ତ ହୋଇନାହିଁ ।

ଏବେ ଆମେ ନିଜକୁ ଯେତେ ଆଧୁନିକ, ଶିକ୍ଷିତ ଓ ଉନ୍ନତ ବୋଲି ବିଚାରୁ ପଛକେ, ପ୍ରତ୍ୟେକ ସ୍ତରରେ କେବଳ ପ୍ରତିଷ୍ଠାବାନ୍, କ୍ଷମତାସୀନ ଓ ଧନବାନ୍ ବ୍ୟକ୍ତିମାନଙ୍କର ଆଦର ଓ ପୂଜା ଚାଲିଛି । ଲୋକଙ୍କ ଭିତରେ ନିଜ ନାମ ଓ କାମ ପ୍ରକାଶ କରିବାର ପ୍ରବୃତ୍ତି ଏତେ ବେଶି ପଶିଗଲାଣି ଯେ ସ୍ଥାନ କାଳଗୁଣ ବିବେଚନା ନ କରି ପ୍ରକାଶ-ମାଧ୍ୟମ ଯେଉଁମାନଙ୍କ ନିୟନ୍ତ୍ରଣରେ ରହିଯାଉଛି, ସେମାନଙ୍କୁ ଖୋଜି ଲୋଡ଼ି ଅଣାଯାଉଛି । ଆମର ସ୍ୱାଧୀନ ଚିନ୍ତା ଏପରି ଅବନତ ଅବସ୍ଥା ଧରିଗଲାଣି ଯେ କ୍ଷମତା-ପୂଜା ହିଁ ଯେପରି ଆମର ପରମ ଧର୍ମ ପାଲଟିଲାଣି । ଦେଖାଯାଉଛି-ଜଣେ ଯେତେ ଅଜ୍ଞାତ ଓ ଅପରିଚିତ ହୋଇଥାଉ ପଛକେ, ଥରେ କ୍ଷମତାପୀଠରେ ବସିଗଲେ, କୌଣସି ଅନୁଷ୍ଠାନ ତାଙ୍କ ବ୍ୟତିରେକେ କରିବା ଲାଗି କେହି ଯେପରି ପ୍ରସ୍ତୁତ ନୁହନ୍ତି । ଏ ଦୃଶ୍ୟ ବି ଦେଖିବାକୁ ମିଳୁଛି ଯେ ଜଣେ ଯଦି କ୍ଷମତା ଆସନରେ ବସିଗଲା, ତାଙ୍କର ଜନ୍ମଜୟନ୍ତୀ ପାଳନ ପ୍ରକ୍ରିୟା ଆରମ୍ଭ ହୋଇଯାଉଛି । ଅତି ବୟସ୍କ ବ୍ୟକ୍ତିମାନେ ଅପରିଣତ ବୟସର କ୍ଷମତାଧାରୀ ପାଖରେ ତାଙ୍କ ଜନ୍ମୋତ୍ସବରେ ଶିରନତ କରି ପୁଷ୍ପଗୁଚ୍ଛ ପ୍ରଦାନ କରିବାର ଫଟୋ ଚିତ୍ର ନିଃସଙ୍କୋଚରେ ସମ୍ବାଦପତ୍ର ସ୍ତରରେ ପ୍ରକାଶ ପାଉଛି । କାଲି ସକାଳେ ପଦଚ୍ୟୁତ ହୋଇଗଲେ ଲୋକେ ତାଙ୍କ ଜନ୍ମତାରିଖ ବି ଭୁଲିଯାଉଛନ୍ତି ।

ଆମ ସମାଜରେ ସେଇଥିଲାଗି, ଜନ୍ମ, ଐତିହ୍ୟ, ଓ ସାମାଜିକ ଓ ଆର୍ଥିକ ସ୍ଥିତିରେ ଅପେକ୍ଷାକୃତ ନ୍ୟୂନ ଅବସ୍ଥାରେ ରହିଥିବା ପ୍ରତିଭାଗୁଡ଼ିକ ମଉଳି ଯାଉଛି; ବିକାଶର

ସୁଯୋଗ ପାଉନାହିଁ କିମ୍ବା ସୁପ୍ତ ଲୁପ୍ତ ହୋଇ ରହିଯାଉଛି । ଏପରି ପରିସ୍ଥିତି ଭିତରେ ଜଣେ ସାଧାରଣ ବ୍ୟକ୍ତି ପକ୍ଷରେ ଫୁଟି ବିକଶିତ ହେବା ଏତେ ସହଜ ନୁହେଁ । ତା'ର ପ୍ରାଣରେ ସେହିପରି ଧୈର୍ଯ୍ୟ ଓ ସାଧନା ଲାଗି ବ୍ୟାକୁଳତା ରହିଥିଲେ, ସେ ଅସାଧ୍ୟ ସାଧନ କରିପାରେ ।

ଶ୍ରୀ କୁଞ୍ଜବିହାରୀ ଦାଶ ସେହିପରି ଶିକ୍ଷା ଓ ସାଂସ୍କୃତିକ ଜୀବନରେ ନିଜ ଚେଷ୍ଟାରେ ଫୁଟି ଉଠିଥିବା ଏକ ବ୍ୟକ୍ତିତ୍ୱ । ତାଙ୍କ ପଶ୍ଚାତ୍ତରେ ଧନ ବା ପରମ୍ପରାର ଗାରିମା ନାହିଁ । ଗାଁ ଗହଳିରେ ଜାତ । ଆମେ ମଫସଲ ବୋଲି ଯେତେ ନିନ୍ଦା କରୁପଛକେ, ଆମର ବାସ୍ତବ ସଂସ୍କୃତିପରମ୍ପରା ଗ୍ରାମରେ ହିଁ ଏବେ ବି ରହିଛି; ପୂରା ନିଭି ଯାଇନାହିଁ । ଏହାର ପୁନରୁଦ୍ଧାର କିମ୍ବା ଏହାକୁ ଲୋକଲୋଚନକୁ ଆଣିବା ବା ବଞ୍ଚାଇ ରଖିବା କିଛି କମ୍ କଷ୍ଟସାଧ୍ୟ ନୁହେଁ । ଆମର ଯେତେ ଉଚ୍ଚଶିକ୍ଷିତ ହେଉଛନ୍ତି, ତେତେ ଉପରମୁହାଁ ଧରୁଛନ୍ତି ଏବଂ ନିଜର ମୌଳିକତା ପାଶୋରି ଅଳୀକ ନବୀନତା ମୋହରେ ଭାସି ଯାଉଛନ୍ତି । ସାହିତ୍ୟ, କବିତା ଓ ପ୍ରବନ୍ଧସବୁ ତଥାକଥିତ ଆଧୁନିକତା ପରିଧାନରେ ଦିଗ୍‌ଭ୍ରାନ୍ତ ଓ ନିରୁଦ୍ଦେଶ ହୋଇଯାଉଛି । ଲୋକଜୀବନ ଓ ଲୋକଧର୍ମଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ଓ ବିଭ୍ରାନ୍ତ । ଅନ୍ୟମାନଙ୍କ ପରି କୁଞ୍ଜବାବୁ ନିଜ ପେଟପାଟଣା ଲାଗି ଉଚ୍ଚସ୍ଥ ପଦବୀ ଲାଭ କରିଛନ୍ତି ଓ ନିଜର ଦକ୍ଷତାର ପରିଚୟ ଦେଇଛନ୍ତି । ମାତ୍ର ତାଙ୍କ ଭଳି କେତେଜଣ ଆମ ଓଡ଼ିଶାର ଲୋକଜୀବନର ଏହି ଲୁପ୍ତ ରତ୍ନଗୁଡିକୁ ଗୋଟାଇ ଆଣି ସାଇତି ରଖି ପୁଣି ସମାଜ ସମ୍ମୁଖରେ ରଖି ପାରିଛନ୍ତି । ଏହା କରିବାଲାଗି ସରକାରୀ ସାହାଯ୍ୟ ବା ଅନ୍ୟ ସୁବିଧା ଲୋଡ଼ାଥିଲେ ତାହାର ଆଶ୍ରୟ ନିଆ ଯାଇନାହିଁ । ନିଜ ସାଧନାରେ ସେ ବଳୀୟାନ୍ ଏବଂ ସାଧାରଣ ଲୋକଙ୍କ ଭିତରୁ ଜଣେ ସେ । 'ଲୋକରତ୍ନ' ନାମଟି ପ୍ରକୃତରେ ଯଥାର୍ଥ । ତାଙ୍କର କୃତି ପ୍ରମାଣ କରୁଛି "କି' ବା ଅସାଧ୍ୟ ଏ ମହୀମଣ୍ଡଳେ" । ● ●

* ସୁରେନ୍ଦ୍ରନାଥ ଦ୍ୱିବେଦୀ, ଶହୀଦ୍ ନଗର ।

—○—

# ॥ କୁଞ୍ଜବାବୁଙ୍କ କୁଟୁମ୍ବ ଓ ମୁଁ ॥

—ରାମକୃଷ୍ଣ ନନ୍ଦ

ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶ ଦୁଇଟି କୁଟୁମ୍ବ ଗଢ଼ିଛନ୍ତି—ଗୋଟିଏ ସାଂସାରିକ, ଅନ୍ୟଟି ସାହିତ୍ୟିକ । ତାଙ୍କର ଏହି ଦ୍ୱିତୀୟ କୁଟୁମ୍ବ ଭିତରେ ମୁଁ କିପରି ପ୍ରବେଶ କଲି, କହୁଛି ।

କୁଞ୍ଜବାବୁଙ୍କଠାରୁ ମୁଁ ବୟସରେ ଆଠ ବର୍ଷ ବଡ଼ ହେଲେହେଁ ତାଙ୍କ ସଙ୍ଗେ ମୋର ପରିଚୟ ହେଲା ବହୁତ ବିଳମ୍ବରେ । କଟକ ବାହାରେ ଷୋଳ ସତର ବର୍ଷ ଚାକିରୀ ଜୀବନ କଟାଇ ମୁଁ ଯେତେବେଳେ ସ୍ଥାୟୀ ଭାବରେ କଟକରେ ରହିବାକୁ ଆସିଲି, ସେତେବେଳେ ସେ କଟକ ଛାଡ଼ିଲେ ଏବଂ ୧୯୫୦ ରୁ ୧୯୬୧ ମସିହା ପର୍ଯ୍ୟନ୍ତ ଶାନ୍ତିନିକେତନରେ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ହୋଇ ରହିଗଲେ ।

ବାରିପଦା ହାଇସ୍କୁଲରେ ମୁଁ ଏଗାର ବର୍ଷ ଶିକ୍ଷକତା କରିଥିଲି । କୁଞ୍ଜବାବୁ ମାତ୍ର କେତେମାସ ବାରିପଦାରେ ଶିକ୍ଷକ ଥିଲେ । ହେଲେ ସେଠାରେ ମଧ୍ୟ ତାଙ୍କ ସଙ୍ଗେ ପରିଚୟର ସୁଯୋଗ ମିଳିଲା ନାହିଁ, କାରଣ ସେ ଚାକିରୀରେ ଯୋଗ ଦେବା ପୂର୍ବରୁ ମୁଁ ସେଠାରୁ ବିଦାୟ ନେଇ ଚାଲି ଆସିଥିଲି ।

ଜୀବନସଂଗ୍ରାମ ଆମ ଉଭୟଙ୍କୁ ସେତେବେଳେ ବ୍ୟସ୍ତ ରଖିଥିଲା । ତାଙ୍କ ସଂଗ୍ରାମ ଯୋଗ୍ୟତା ଅନୁରୂପ ସରକାରୀ ଚାକିରୀ ପାଇଁ, ମୋର ସ୍ୱାଧୀନ ବୃତ୍ତି ଜରିଆରେ ଜୀବିକା-ର୍ଜନ ପାଇଁ ।

ତାଙ୍କର ଏହି ଅସ୍ଥିର ଜୀବନ କାଳ ଭିତରେ କେବେ କେମିତି ସଭାସମିତିରେ ତାଙ୍କୁ ଦେଖିବାର ସୁଯୋଗ ପାଇଥିଲି । ପରିଚୟ ହେଲା, ମାତ୍ର ଘନିଷ୍ଠତା ଆସି ନ ଥିଲା । ୧୯୬୮ ମସିହାରେ ସେ ସୁଯୋଗ ମିଳିଲା ।

ଓଡ଼ିଶା ମାଧ୍ୟମିକ ଶିକ୍ଷା ବୋର୍ଡର ଓଡ଼ିଆ ପାଠ୍ୟ ପୁସ୍ତକ ସମ୍ପାଦନାମଣ୍ଡଳୀରେ ମୁଁ ଥାଏ ଜଣେ ସାଧାରଣ ସଭ୍ୟ, ଡକ୍ଟର ଦାଶ ଥାନ୍ତି ସେହି ସମିତିର ସଭାପତି । ଦିନପରେ ଦିନ ସମିତିର ବୈଠକ ବସୁଥାଏ । ସେହିଠାରେ ହିଁ ଆମେ ଉଭୟ

ପରିଷ୍ଟରକୁ ଭଲ ଭାବରେ ଜାଣିବାର ପ୍ରଥମେ ସୁଯୋଗ ପାଇଲୁ । 'ମାମୁଲି' ପରିଚୟ ଘନିଷ୍ଟତାରେ ପରିଣତ ହେଲା ।

ମୁଁ ଜାଣେନା କାହିଁକି, ଦିନେ କମିଟିର ବୈଠକ ଶେଷରେ କୁଞ୍ଜବାବୁ ମୋତେ ଆତ୍ମଜୀବନୀ ଲେଖିବାକୁ କହିଲେ । ଛଅ ସାତ ବର୍ଷ ପୂର୍ବରୁ ମୁଁ ଜପରି ତାହା ଆରମ୍ଭ କରି ବନ୍ଦ କରି ଦେଇଛି ଏବଂ ଆଉ ସେଥିରେ ମନ ଦେଇନାହିଁ, ତାହା ତାଙ୍କୁ ଜଣାଇଲି । ମୁଁ କହିଲି—ମୋ ନିଜ ପିଲାଙ୍କ ପାଇଁ କିଛି ଅତୀତର ସାମଗ୍ରୀ ଲେଖି ରଖିଯିବି ଭାବି ତାହା ଆରମ୍ଭ କରିଥିଲି, ମାତ୍ର ଆଠ ଦଶ ପୃଷ୍ଠା ଲେଖିଲା ପରେ ଆଉ ସେଥିରେ ହାତ ଦେଇନାହିଁ । ପାରିବାରିକ ଜଞ୍ଜାଳ ଏବଂ ସମୟାଭାବ ।

ମୋ ଯୁକ୍ତିକୁ ଶୁଣିବାକୁ ସେ ପ୍ରସ୍ତୁତ ନ ଥିଲେ । ନିଜ ଜୀବନରୁ ନଜିର ଦେଖାଇ କହିଲେ, "ସବୁ ଜଞ୍ଜାଳ ଓ ମାନସିକ ଅଶାନ୍ତି ଭିତରେ ତ ପୁଣି ମୁଁ ୮୫୦ ପୃଷ୍ଠାର 'ଆମେରିକାରୁ ଇଉରୋପ, ଆଫ୍ରିକା' ବହିଖଣ୍ଡି ଲେଖି ଶେଷ କରିଛି । ପ୍ରତିଦିନ କିଛି କିଛି ଲେଖିବାକୁ ଅଭ୍ୟାସ କରନ୍ତୁ, ହୋଇଯିବ ।" ଉତ୍ତର ଦେବାର ବାଟ ନ ଥିଲା । 'ହଁ, ଚେଷ୍ଟା କରିବି' କହି ମେ ଦିନ ଘରକୁ ଫେରିଲି ।

ପରେ ପରେ ଉପହାର ସ୍ୱରୂପ ତାଙ୍କର ସେହି ବିରାଟ ଗ୍ରନ୍ଥଟି ମୋ ପାଖରେ ପହଞ୍ଚିଲା, ଯେପରିକି ମୋତେ ଚେତାଇଦେବା ପାଇଁ । ପରବର୍ତ୍ତୀ ବୈଠକରେ ସାକ୍ଷାତ-ମାତ୍ରେ ତାଙ୍କର ପ୍ରଥମ ପ୍ରଶ୍ନ—"କଣ ଆରମ୍ଭ କଲେ ?"

କେତେ ଦିନ ଏଣ୍ଡୁ ତେଣ୍ଡୁ କହି ଭୁଲେଇବି ? 'ଚେଷ୍ଟା କରିବି' ଉତ୍ତର ଥରେ ଦି ଥର ସିନା କାମ ଚଳାଇନିଏ, କିନ୍ତୁ ଯେଉଁଠି ବାରମ୍ବାର ଜିଜ୍ଞାସା ଓ ଅନୁରୋଧ, ସେଠି ଖସିଯିବାର ଉପାୟ କାହିଁ ? ସତ କହୁଛି, ତାଙ୍କରି ପ୍ରରୋଚନା ଓ ଚାପରେ ମୁଁ ମୋର ଆତ୍ମଜୀବନୀ ଲେଖା ଶେଷ କଲି ।

କିନ୍ତୁ ବହିଟିକୁ ସାଙ୍ଗେ ସାଙ୍ଗେ ଛାପିବାର ମୋର ଅଭିପ୍ରାୟ ନ ଥିଲା । ମୋର ଧାରଣା ଥିଲା, ଯଦି ଛପାଯିବ, ତେବେ ମୋ ମୃତ୍ୟୁ ପରେ । କୁଞ୍ଜବାବୁ ମୋର ଭ୍ରାନ୍ତ ଧାରଣା ଦୂର କରିବା ପାଇଁ ନାନା ଉଦାହରଣ ଦେଲେ । ମୁଁ ବୁଝିଗଲି । ୧୯୭୯ରେ 'ଜୀବନ-ତରଙ୍ଗ' ନାମରେ ସେ ବହିଟି ପ୍ରକାଶ ପାଇଲା ।

'କୁଞ୍ଜବାବୁ କାହାକୁ ଛାଡ଼ନ୍ତି ନାହିଁ'—ଥରେ କହିଥିଲେ ଫତୁରାନନ୍ଦ । ତାଙ୍କ ମନ୍ତବ୍ୟର ସତ୍ୟତା ମୁଁ ମର୍ମେ ମର୍ମେ ଉପଲବ୍ଧି କରିଛି ଏଇ ଘଟଣାରେ ।

ଏଥିମଧ୍ୟରେ ପନ୍ଦର ବର୍ଷ ବିତିଗଲାଣି । ଦୁହେଁ ଏବେ କଟକରେ ଅଛୁ । ମଝିରେ ମଝିରେ ଦେଖାସାକ୍ଷାତବେଳେ ମତେ ତାଙ୍କର ଆଉ ଏକ ନୂଆ ଦାବିର ସମ୍ମୁଖୀନ ହେବାକୁ ପଡ଼ୁଛି—"ଗ୍ରନ୍ଥାବଳୀ କେବେ ବାହାରିବ ?"

କେବଳ ମତେ ଏକା ନୁହେଁ, ମୁଁ ଶୁଣିଛୁ, ଯେଉଁମାନେ ତାଙ୍କ ସମ୍ପର୍କରେ ଆସିଛନ୍ତି, ସମସ୍ତଙ୍କ ପାଖରେ ତାଙ୍କର ଏହିପରି କିଛି ନା କିଛି ଫରମାସ ଥାଏ । ନିଜ ପାଇଁ ନୁହେଁ, ସାହିତ୍ୟ ପାଇଁ ଓ ସାହିତ୍ୟପ୍ରେମୀଙ୍କ ପାଇଁ । ସେ ଯଦି ଜାଣନ୍ତି କାହା ପାଖରେ କିଛି ସର୍ଜନଶୀଳ ଶକ୍ତି ଅଛି, ତେବେ କେବଳ ସାବାସ୍ ଦେଇ ସେ ଚୁପ୍ ରହନ୍ତି ନାହିଁ, ତାହାର ଯଥାଯଥ ବିନିଯୋଗ ପାଇଁ ତା ଉପରେ ଯେପରି ଚାପ ପ୍ରୟୋଗ କରନ୍ତି, ଯେପରି ପ୍ରୋତ୍ସାହନ ଦିଅନ୍ତି, ତାହା କ୍ୱଚିତ୍ ଲୋକଙ୍କଠାରେ ଦେଖିବାକୁ ମିଳିଥାଏ ।

ଲୋକରତ୍ନଙ୍କ ବାସଭବନ ସାହିତ୍ୟାଲୋଚନାର ଏକ କେନ୍ଦ୍ର ଏବଂ ସେ ନିଜେ ଏକ ଚଳନ୍ତି 'ସାହିତ୍ୟ କ୍ଲବ୍' କହିଲେ ଭୁଲ୍ ହେବ ନାହିଁ । ଏ କଥା ଲେଖିଲାବେଳେ ଇଂରାଜୀ ସାହିତ୍ୟର ତୁଙ୍ଗ ସାହିତ୍ୟରଥୀ ଡଃ. ସାମୁଏଲ ଜନସନଙ୍କ କଥା ସ୍ମରଣକୁ ଆସେ । ଜନ୍‌ସନ୍‌ଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ସୃଷ୍ଟି କରିଥିଲା ଏହିପରି ଏକ ସାହିତ୍ୟଆସର, ଯେଉଁଠାରେ ସମସାମୟିକ କବି ଓ ଲେଖକମାନେ ସମବେତ ହୋଇ ସାହିତ୍ୟାଲୋଚନା କରୁଥିଲେ ଏବଂ ସେଥିରୁ ପ୍ରେରଣାଲାଭ କରି ଇଂରାଜୀ ସାହିତ୍ୟକୁ ସମୃଦ୍ଧ କରିଥିଲେ । କିନ୍ତୁ ଅନ୍ୟ ଦିଗରୁ ଦେଖିଲେ ଡଃ. ଜନ୍‌ସନ୍‌ଙ୍କର ନିଜର ସେପରି କିଛି ଉଲ୍ଲେଖନୀୟ କୃତି ନ ଥିଲା । ସେଥିପାଇଁ ଜଣେ ସମାଲୋଚକ କହିଛନ୍ତି, 'ଜନ୍‌ସନ୍‌ଙ୍କୁ ତାଙ୍କ ବନ୍ଧୁ ବଡ଼ କରିନାହିଁ, ବରଂ ତାଙ୍କ ଯୋଗୁଁ ତାଙ୍କ ବନ୍ଧୁ ବଡ଼ ହୋଇଛି ।'

ମାତ୍ର ଲୋକରତ୍ନ ଏ ଦିଗରେ ଏକ ବ୍ୟତିକ୍ରମ । ସେ ନିଜେ ଜଣେ ଉଚ୍ଚକୋଟୀର ସ୍ରଷ୍ଟା । ତାଙ୍କ ସାହିତ୍ୟସାଧନାର ପରିସର ଅତି ବ୍ୟାପକ । ତାଙ୍କ ସାହିତ୍ୟିକ କୃତି-ଗୁଡ଼ିକ ଉପରେ ଥରେ ଆଖି ବୁଲାଇ ଆଣିଲେ ଏକ ପୁସ୍ତକପ୍ରଦର୍ଶନୀ ମଧ୍ୟରେ ବିଚରଣ କଲାପରି ଜଣାଯାଏ । କାବ୍ୟକବିତା, ଗଳ୍ପ, ଉପନ୍ୟାସ, ଭ୍ରମଣକାହାଣୀ, ଜୀବନୀ ସାହିତ୍ୟ, ସମାଲୋଚନା, ଆତ୍ମଜୀବନୀ, ସଂକଳନ, ଅନୁବାଦ, ଶିଶୁସାହିତ୍ୟ, ରମ୍ୟ-ରଚନା, କାବ୍ୟନାଟିକା—କଣ ନାହିଁ ତାଙ୍କ ସୃଷ୍ଟିଶାଳାରେ ? ସାହିତ୍ୟର ଗୋଟିଏ ଅଙ୍ଗ ଅଭାବ ରହିଯାଇଥିଲା ବୋଲି କି କଣ, ୭୫ ବର୍ଷ ବୟସରେ ସେ ପ୍ରକାଶ କଲେ ତାଙ୍କର ପ୍ରଥମ ଉପନ୍ୟାସ 'ମଣାଣିତୁଳସୀ' । ଲେଖନୀ ତାଙ୍କର ସଦା କ୍ରିୟାଶୀଳ, କ୍ଳାନ୍ତି ଯେପରି ତାଙ୍କୁ କେବେ ଅବଶ କରିନାହିଁ । ତାଙ୍କ 'ମୋ କାହାଣୀ' ଦ୍ୱିତୀୟ ସଂସ୍କରଣରେ ସର୍ବମୋଟ ୫୮ ଟି ଗ୍ରନ୍ଥର ତାଲିକା ସନ୍ନିବିଷ୍ଟ । କେବଳ ୧୯୮୦ ଗୋଟିଏ ବର୍ଷରେ ପାଞ୍ଚଟି ପ୍ରକାଶନ । ସବୁଗୁଡ଼ିକ ତାଙ୍କ ଏକନିଷ୍ଠ ସାଧନାର ସ୍ୱାକ୍ଷର ବହନ କରେ ।

ଅତିଥିମାନଙ୍କୁ ପେଟଭରି ଖୁଆଇବାରେ ଜଣେ ଜଣେ ବ୍ୟକ୍ତି ଅପାର ତୃପ୍ତି ଲାଭ କରିବାର ମୁଁ ଦେଖିଛି । ସାହିତ୍ୟର ଅମୃତ ରସ ନିଜେ ଆକଣ୍ଠ ପାନକରି ଅନ୍ୟକୁ ତାର ସ୍ୱାଦ ଚଖାଇବାରେ କୃଷ୍ଣବାବୁଙ୍କର ସେହିପରି ଆନନ୍ଦ । ନିଜ ଜନ୍ମଦିବସକୁ ସେ ଏକ ମଧୁର ସାହିତ୍ୟସମାବେଶରେ ପରିଣତ କରିଛନ୍ତି, ଯେଉଁଠି ନୂତନ ଓ ପୁରାତନ ଲେଖକମାନଙ୍କର ମିଳନ ଘଟେ ଓ ଭାବବିନିମୟ ହୁଏ । ଏହିଠାରେ ଜଣେ ବୟୋଜ୍ୟେଷ୍ଠ ସାହିତ୍ୟିକଙ୍କୁ ସମ୍ମାନିତ କରିବାର ରୀତି ସେ ପ୍ରବର୍ତ୍ତନ କରିଛନ୍ତି । ବିସ୍ମୃତ ଓ ଅବହେଳିତ ସ୍ରଷ୍ଟା ଏବଂ ସାଧକମାନଙ୍କୁ ଖୋଜି ଲୋକଲୋଚନକୁ ଆଣିବାରେ ତାଙ୍କର ଆନ୍ତରିକତା ପ୍ରଶଂସନୀୟ । ସାହିତ୍ୟିକଙ୍କୁ ବଞ୍ଚାଇବା ପାଇଁ ତାଙ୍କ ବ୍ୟାକୁଳତାର ଅନ୍ୟ ଏକ ନିଦର୍ଶନ ତାଙ୍କ ପ୍ରଣୀତ 'ଜୀବନୀ ଓ ଜୀବନ' ଏବଂ 'ଜୀବନାୟନ' । କୃଷ୍ଣବାବୁଙ୍କ ନିଜ କଥାରେ—'ସାହିତ୍ୟିକର କୁଟୁମ୍ବ ବଡ଼ କୁଟୁମ୍ବ' । ତାଙ୍କ ସେଇ କୁଟୁମ୍ବ ଭିତରକୁ ମୋ ଅଲକ୍ଷ୍ୟରେ ମୁଁ ଟାଣିହୋଇ ଯାଇଛି ଏବଂ ସେ ମୋତେ ସେଥିରେ ସ୍ଥାନ ଦେଇଛନ୍ତି । ଏହା ମୋ ପକ୍ଷରେ ପରମ ସୌଭାଗ୍ୟ ।

—o—

● ସମ୍ପାଦକ, 'ସଂସାର', ତେଲେଙ୍ଗାବଜାର, କଟକ

# ॥ ସିଏ ତାଙ୍କ ପରି ॥

**ଡାକ୍ତର ବିକ୍ରମ ଦାଶ**

ଯେ କୌଣସି ଭାଷାରେ ଗୋଟିଏ ବାକ୍ୟ ବା ବାକ୍ୟାଂଶରେ ଶବ୍ଦଗୁଡ଼ିକ ଏକା ଥାଇ ମଧ୍ୟ ଶବ୍ଦ ଯୋଜନାରେ ଏପଟ ସେପଟ ହେଲେ ଅର୍ଥ ଅନ୍ୟ ପ୍ରକାର ହୋଇଯିବାର ସମ୍ଭାବନା ଥାଏ ।

'ସିଏ ତାଙ୍କ ପରି' ସ୍ଥାନରେ 'ତାଙ୍କ ପରି ସିଏ' ପଢ଼ା ହେଲେ ମୋ ଅବସ୍ଥା ଅଠା-ଠିକ୍ ହୋଇଯିବ । 'ତାପରି ସିଏ ହୋଇଗଲେଣି'ର ଅର୍ଥ ଲୋକଟା ଅହଂକାରୀ ବା ସେହିପରି ଗୋଟାଏ କିଛି ଦୁର୍ଗୁଣର ଅଧିକାରୀ ହୋଇ ଗଲେଣି ବୋଲି ବୁଝାଯାଏ । ସେପରି ଅର୍ଥ କୁଞ୍ଜଭାଇନାଙ୍କ ପ୍ରତି ଆଦୌ ପ୍ରଯୁଜ୍ୟ ନୁହେଁ !

ଅହଙ୍କାର ଓ ପରଶ୍ରୀକାତରତା ଅଧିକାଂଶ ଲୋକଙ୍କ ଭିତରେ ଉଣା ଅଧିକେ ଆସ୍ଥାନ ଜମାଇ ବସିଥାନ୍ତି; କିନ୍ତୁ ସେ ଦୁଇଟି କୁଞ୍ଜଭାଇନାଙ୍କ ପିଣ୍ଡା ମାଡ଼ିବାକୁ କେବେ ସାହସ କରିନାହାନ୍ତି । ଅହଂକାର ସ୍ଥାନରେ ନମ୍ରତା ଓ ପରଶ୍ରୀକାତରତା ସ୍ଥାନରେ ପରଶ୍ରୀଆଦର ତାଙ୍କ କୋଳ ମାଡ଼ି ବସିଛନ୍ତି ।

ଆମ ଦେଶରେ, ସବୁ ଜିନିଷକୁ, ସମସ୍ତ ଲୋକଙ୍କୁ, ଓ ଲୋକଙ୍କ ଗୁଣକୁ, ତୁଳନାତ୍ମକ ଚକ୍ଷୁରେ ଦେଖିବା ସମସ୍ତଙ୍କର ଅଭ୍ୟାସ । କବି ଓ ସାହିତ୍ୟିକଙ୍କ କଥା ପଡ଼ିଲବେଳେ, କିଏ କାଳିଦାସଙ୍କ ପରି, କିଏ ବ୍ୟାସ, କିଏ ବାଲ୍ମୀକି, କିଏ ସେକ୍ସପିୟର, କିଏ ମିଲ୍ଟନ୍, କିଏ ଓ୍ୱାର୍ଡସ ଓ୍ୱାର୍ଥଙ୍କ ପରି ବୋଲି କୁହାଯାଏ । ଦର୍ଶନ, ରାଜନୀତି, ଅର୍ଥନୀତି ସବୁଥିରେ ମଧ୍ୟ ତୁଳନାତ୍ମକ ନାମ ବ୍ୟବହାର କରି ଉପାଧିମାନ ପ୍ରଦାନ କରାଯାଏ । ଆମ ଦେଶରେ ଏତେ କାଳିଦାସ ବାହାରିଥିଲେ ଯେ ପ୍ରକୃତ କାଳିଦାସ କିଏ, କିଏ କେଉଁ ଲେଖାଟା କେଉଁ ସମୟରେ ଲେଖିଛି, ସେକଥା ନିର୍ଣ୍ଣୟ କରିବାକୁ ଏବେ ବି ଗବେଷକମାନେ ଧନ୍ଦି ହେଉଛନ୍ତି ।

ସାଧାରଣ ଜୀବନରେ ମଧ୍ୟ ପିଲାଟାକୁ ଦେଖିଲେ କୁହାଯାଏ, ସେ ଠିକ୍ ତା ବାପ ପରି ଦିଶୁଛି, ବା ଅଜା ପରି କଳା, କିମ୍ବା ଜେଜେ ପରି ଚଡ଼ା ପ୍ରକୃତିର । ଅନ୍ୟମାନଙ୍କ ସଙ୍ଗେ ତୁଳନା କରି ଲୋକେ ତାଙ୍କର ବିଷୟରେ ମନ୍ତବ୍ୟ ପ୍ରକାଶ କରିଛନ୍ତି ।

ମୋ କ୍ଷୁଦ୍ର ବିଚାରରେ କୁଞ୍ଜଭାଇନାଙ୍କୁ ତାଙ୍କର ଯେ କୌଣସି ଗୁଣରେ ସେପରି କାହା ସଙ୍ଗେ ତୁଳନା କରିବା ଅସମ୍ଭବ । ମୁଁ ମନେ ମନେ ସେପରି କରିବାକୁ ଚେଷ୍ଟା କରିଛି । ତେଣୁ ମୋ ମତରେ ସେ କେବଳ ତାଙ୍କ ପରି ।

ମୋ ସ୍କୁଲ ପଢ଼ା ବେଳେ ସେ କଲିକତା କଲେଜର ଛାତ୍ର । ତାଙ୍କ ସଙ୍ଗେ ମୋର ପ୍ରଥମ ଦେଖା ନବଭାରତ ପ୍ରେସ୍‌ରେ । ତାଙ୍କ ଲମ୍ବା ଚଉଡ଼ା ଚେହେରା ଦେଖି ମୋର ମନେ ହେଲା, ସେ ନିଶ୍ଚୟ ଜଣେ ପହିଲିମାନ ବା Heavy weight champion ହୋଇଥିବେ ।

ନବଭାରତ ପ୍ରେସ୍‌କୁ ସାଧାରଣତଃ ସେତେବେଳେ, ଦୁଃସ୍ଥ ରାଜନୈତିକ କର୍ମୀ ବା ଅବହେଳିତ ନେତା କିମ୍ବା ଲେଖକ, କବି ଓ ଛାତ୍ରମାନେ ନନାଙ୍କ ସଙ୍ଗେ ରାଜନୀତି ଓ ପାଠ ବିଷୟରେ ଆଲୋଚନା କରିବାକୁ ଆସୁଥାନ୍ତି । ବ୍ୟାୟାମ କି କୁସ୍ତି କସରତର ନନା ଧାର୍ ଧାରନ୍ତି ନାହିଁ, ତେଣୁ ସେ ପହିଲମାନଙ୍କର ସେଠାରେ କଅଣ କାମ ବୋଲି ଭାବି ମୁଁ ତାଙ୍କ ଗତିବିଧି ଲକ୍ଷ୍ୟ କଲି ।

ନନା ତାଙ୍କୁ ଦେଖିଲାକ୍ଷଣି ଖୁସିହୋଇ ପାଖକୁ ଡାକି ପାଠଚର୍ଚ୍ଚାରେ ଲାଗିଗଲେ ଓ ସେ ଜଣେ ମେଧାବୀ ଛାତ୍ର ଓ ଗବେଷକ ବୋଲି ମୋତେ ଚିହ୍ନାଇଦେଲେ । ମୁଁ ବୁଝିଲି, ସେ ଖେଳ କସରତରେ ଗୋଲିଆଙ୍କୁ ଯାଇବା ଲୋକ; ନା ମୁଁ ଜାଣିଲି, ତାଙ୍କୁ ମୁଁ ପହିଲମାନଙ୍କ ସଙ୍ଗେ ତୁଳନାକରି ପର୍ବତ ପ୍ରମାଣ ଭୁଲ୍ କରିଛି । ତାଙ୍କ କସରତ କେବଳ ପାଠ ସାଙ୍ଗରେ ।

ତାଙ୍କ ସାନଭାଇ ଉଦୟନାଥ ମୋର ମେଡ଼ିକାଲ୍ କଲେଜସଙ୍ଗୀ ହେବାପରେ ତାଙ୍କ ସଙ୍ଗେ ମୋର ଆତ୍ମୀୟତା ବଢିଥିଲା । ଏହା ଭିତରେ ସେ ବିଦେଶରେ କେତେ କୁଆଡେ ଘିରି ଘିରି ହୋଇ ବୁଲି ବୁଲି ସେତେବେଳେ ଶାନ୍ତିନିକେତନରେ ଅଧ୍ୟାପନା କରୁଥିଲେ । ସେଠାରୁ ଆସୁଥିବା ଛାତ୍ରମାନଙ୍କଠାରୁ ତାଙ୍କ ପ୍ରଶଂସା ଶୁଣି ମୁଁ ବଡ଼ ଖୁସି ହେଉଥିଲି ।

ସେ ଯେତେବେଳେ ନବଭାରତ ପ୍ରେସ୍‌କୁ ଆସିଲେ, ତାଙ୍କର ଏକମାତ୍ର କାମ ଥିଲା—ନନାଙ୍କୁ କଅଁଳେଇ ଫଅଁଳେଇ ତାଙ୍କ ଆତ୍ମଜୀବନୀ ଲେଖାଇବା ପାଇଁ ସମ୍ମତ କରାଇବା । ସେ ଭାବୁଥିଲେ—ପଣ୍ଡିତ ନୀଳକଣ୍ଠ (ନନା)ଙ୍କ ଜୀବନୀ ଲେଖା ନ ହେଲେ ଓଡ଼ିଆ ସାହିତ୍ୟଜଗତରେ ଗୋଟାଏ କିଛି ବଡ଼ ସ୍ଥାନ ଖାଲି ରହିଯିବ ।

ସେ ବହୁତ କହିଲା ପରେ ନନା ରାଜି ହୁଅନ୍ତି, ସେ କର୍ଟକ ଛାତ୍ର ପ୍ରଫୁଲ୍ଲ, ନରେନ୍ଦ୍ର-ବାବୁଙ୍କ ଭଳି ତାଙ୍କର ଶାନ୍ତିନିକେତନର ମେଧାବୀ ଛାତ୍ରଙ୍କୁ ଗ୍ରୀଷ୍ମଛୁଟିରେ ତାଙ୍କ କଥା

ଝିପି ନବାପାଇଁ ତାଙ୍କ ପାଖରେ ଗ୍ରୁଡ଼ିଯାଆନ୍ତି । ବହୁ କଷ୍ଟରେ କିଛି-ଝିପା ହୁଏ, କିନ୍ତୁ ସେ ଗ୍ରନ୍ଥ ଚାଲିଗଲା ପରେ ସେ ଲେଖାତକ କି କୁଆଡେ ହଜିଯାଏ । ଏପରି ଅରକ୍ଷିତ ହୁଏ, କୁଞ୍ଜବାବୁ ବ୍ୟଥିତ ହୁଅନ୍ତି । କିନ୍ତୁ ଦବନ୍ତ ନାହିଁ । ଶେଷରେ ବହୁକାଳ ପରେ କୁଞ୍ଜଭାଇନା ଓଡ଼ିଶାକୁ ଫେରିବା ପରେ ପୁଣି ତାଙ୍କର ଆଉ ଜଣେ ପ୍ରିୟ ମେଧାବୀ ଗ୍ରନ୍ଥ ନିତ୍ୟାନନ୍ଦ ଶତପଥୀଙ୍କୁ ଲଗାଇ ନନା ରୋଗଶଯ୍ୟାରେ ପଡ଼ିଥିଲାବେଳେ ତାଙ୍କ ଆତ୍ମଜୀବନୀ ଲେଖାଇବାରେ କୃତକାର୍ଯ୍ୟ ହୋଇଥିଲେ । ସେ ଆତ୍ମଜୀବନୀ ମଧ୍ୟ ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲା ।

ନନାଙ୍କ ଉଦ୍ବୋଧନ ପରେ ମୁଁ ବ୍ରହ୍ମପୁର ମେଡ଼ିକାଲ କଲେଜର ଅଧ୍ୟାପକ ଥିବା ସମୟରେ ସେ ବ୍ରହ୍ମପୁର ଯାଇଥିବା ବେଳେ ମୋର ଅନୁରୋଧରେ ମୋର ଆତିଥ୍ୟ ଗ୍ରହଣ କରିବାକୁ ରାଜିହେଲେ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ତାଙ୍କ କାମ ସାରି ସେ ମୋ ଘରକୁ ଆସିଲେ । ସେ ଦେଖିବାକୁ ବଡ଼ ହୃଷ୍ଟପୁଷ୍ଟ, କାମ କରିବାରେ ମଧ୍ୟ ବାଧ ପରି । ମୁଁ ଭାବୁଥିଲି, ସେ ଜଣେ ନୀରୋଗ ଲୋକ, ତେଣୁ ଏତେ ବେଶୀ କାମ କରି ପାରୁଛନ୍ତି, ଆମଭିତରେ ଅନେକ ସମୟ ପର୍ଯ୍ୟନ୍ତ ନାନା ବିଷୟରେ ଆଲାପ ହେଲା । ରାତିରେ ଖିଆପିଆ ସରିବାପରେ ମୋ ଡାଣ୍ତ୍ରଘରେ ତାଙ୍କ ପାଇଁ ବିଛଣା ପଡ଼ିଲା, ସେ ଶୋଇଲେ ।

ମୁଁ ପାଖଘରେ ଶୋଇଥାଏ । ତାଙ୍କ ଶୋଇବା ଘରୁ ଖୁଡ଼୍ ଖାଡ଼୍, ସାଁ, ସାଁ ଶବ୍ଦସବୁ ଆସି ମୋ କାନରେ ବାଜିଲା । ସେ ନ ଶୋଇ ଛଟପଟ ହେଉଛନ୍ତି ବୋଲି ମୁଁ ଜାଣି ପାରିଲି । ସନ୍ଧ୍ୟାରେ ଏତେ ଭଲରେ ଆମେଦୁହେଁ କଥାବାର୍ତ୍ତା ହେଲୁ, ହଠାତ୍ ରାତିକୁ ତାଙ୍କର କଅଣ ହେଲା ? ହଠାତ୍ ପେଟଫେଟ ବୋଧେ ଖରାପ ହେଲା ବୋଲି ମୁଁ ଭାବିଲି ।

ଡାଣ୍ତ୍ରଘର ଖଡ୍ ଖାଡ୍ ଶବ୍ଦ ଶୁଣି ଆମ ଶାନ୍ତିନିକେତନ କବିଙ୍କର କଅଣ ହେଲା-ବୋଲି ମଚି ଦୁଆର ଫିଟାଇ ତାଙ୍କ ପାଖକୁ ଗଲି । ମୁଁ ଦେଖିଲି, ଶ୍ୱାସ ବାହାରି ସେ ଅଥୟ । ବସି ଶୋଇ ପାରୁ ନ ଥାନ୍ତି । ମୋଟା ବେଲୁନ୍ ଲଗା ଶୁଂଘା ଯନ୍ତ୍ରଟି ନାକ ପାଖରେ ଦେଇ ସାଁ ସାଁ ହୋଇ ଚିପିବାରେ ଲାଗିଥାନ୍ତି ।

ସେପରି ଚେହେରାର ଲୋକ କପରି ଶ୍ୱାସରୋଗୀ ହେଲେ ସେ କଥା ବିଚାରି ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଡାକ୍ତର ଜୀବନରେ ମୁଁ ଦେଖିବାରେ ଅଧିକାଂଶ ଶ୍ୱାସ ରୋଗୀଙ୍କ ଚେହେରା ଓଡ଼ିଆ ପାଞ୍ଜିରେ ଛପାହୋଇ ଥିବା 'ସଙ୍କ୍ରାନ୍ତି ପୁରୁଷ' ପରି କ୍ଷୀଣ

କାମ୍ୟ । କୁଞ୍ଜବିହାରୀଙ୍କ ଶ୍ୱାସରୋଗଟା ଯେପରି ସଂସ୍କୃତ ଗ୍ରନ୍ଥରେ ଏକ ଆର୍ଷ ପ୍ରୟୋଗ । ତେଣୁ କୁଞ୍ଜବିହାରୀଙ୍କ ସଂକ୍ରାନ୍ତ ପୁରୁଷ ବା ଅନ୍ୟ ଶ୍ୱାସରୋଗୀଙ୍କ ସଙ୍ଗେ ତୁଳନା କରିବାରେ ବି ମୁଁ ପୂରା ଫେଲ୍ ମାରିଲି ।

ଉତ୍କଳଭାରତୀଙ୍କ ତପୋବନର କୁଞ୍ଜବିହାରୀ ହିଁ ଶ୍ରେଷ୍ଠ ପୁଷ୍ପଚୟନକାରୀ । ଜୀବନସାରା ଅତନ୍ଦ୍ରିତ ଭାବରେ କେଉଁଠି କେଉଁ ଫୁଲ ପଡ଼ି ରହିଛି, କିଏ ଅଯତନରେ ଝଡ଼ିବାକୁ ବସିଛି, ସେ ସବୁ ଗୋଟାଇବାରେ ସେ ବ୍ୟସ୍ତ ।

କେଉଁ ଅଜଣା କବିର କେଉଁକାଳେ କି କବିତା ବା କି କଥା ପାଟିରୁ ବାହାରି ପଡ଼ିଥିଲା, ତାକୁ ଯିଏ ପୁରୁଷ ପୁରୁଷ ଧରି ମନେ ରଖିଛି,ତା ଦୁଆରେ କାଗଜ କଲମ ଧରି ସେ ଅମୂଲ୍ୟ ଫୁଲକୁ ଗୋଟାଇ ନେବାକୁ ଠିଆ ହୁଅନ୍ତି କୁଞ୍ଜବିହାରୀ ।

ସେଇଟା ଅବଶ୍ୟ କେତେକାଂଶରେ ତାଙ୍କର ମାତୃକ ସମ୍ପତ୍ତି । ତାଙ୍କ ମାଆ ଥିଲେ ଗୀତମାଳରେ ସୁପଣ୍ଡିତା । ତାଙ୍କର ଗୀତ ପିଲାଦିନୁ ଶୁଣି ଶୁଣି ତାର ଉତ୍କୃଷ୍ଟତା ହୃଏତ ଉପଲବ୍ଧି କରି ପାରିଥିଲେ କୁଞ୍ଜବିହାରୀ ।

ପଛରେ ଆସି ସେ ଚୟନରେ ସାହାଯ୍ୟ କରିଥିଲେ ତାଙ୍କ ସହଧର୍ମିଣୀ— ସେଇ ପୁରୀ ଜିଲାଟିଅ ହାସ୍ୟମୟୀ ପ୍ରେମଭୋଜନ । ବହୁ ଧକ୍କା ଖାଇ ଖାଇ ମଧ୍ୟ ଲୋକକଥା ଓ ଲୋକଗୀତକୁ ଆଶ୍ରା କରି ଏ ଜାତିଟା ଜୀଇଁ ରହିଛି । ରାଜା ଆଦେଶରେ ବା ରାଜାନୁଗ୍ରହ ପାଇଁ ଯୁଗ ଯୁଗ ଧରି ଏ ଜାତିର ଇତିହାସ ଲେଖାଯାଇଛି । ସେ ଇତିହାସରେ ବହୁ ସତ୍ୟର ଅପଲାପ କରାଯାଇଛି,ବହୁ ମିଥ୍ୟାଘଟଣାର ଅତିରଞ୍ଜିତ ବର୍ଣ୍ଣନା ତାର ପୃଷ୍ଠା ମଣ୍ଡନ କରିଛି । କିନ୍ତୁ ଲୋକକଥା ଓ ଲୋକଗୀତ ହିଁ ଜାତିର ପ୍ରକୃତ ଇତିହାସ ଓ ସଂସ୍କୃତିର ଦର୍ପଣ । ତାରି ଭିତରକୁ କରେଖି କରି ଚାହିଁଲେ ଜାତୀୟ ଜୀବନର ପ୍ରକୃତ ରୂପଟା ଜଳ ଜଳ ହୋଇ ଦିଶେ । ସେ ଲୋକଗୀତ ଓ କଥାର ପ୍ରଧାନ ଆବିଷ୍କାରକ କୁଞ୍ଜବିହାରୀ । କୁଞ୍ଜବିହାରୀଙ୍କ ସଙ୍ଗେ ତୁଳନା କରିବାକୁ ବା ଆଉ କାହା ସଙ୍ଗେ ତାଙ୍କୁ ତୁଳନା କରିବାକୁ ସୃଜନ ସାହିତ୍ୟ ସଙ୍ଗେ ଚୟନ ସାହିତ୍ୟର ସମନ୍ୱୟ ଓ ସମତା ରକ୍ଷାକରି ସାହିତ୍ୟ ସୃଷ୍ଟି କରିପାରିଥିବା ବ୍ୟକ୍ତି ଆଉ କେହି ନାହାନ୍ତି ।

ନିରଲସ ଅଧ୍ୟବସାୟର ସେ ପ୍ରତୀକ । ସେ ବହୁ ଗ୍ରନ୍ଥକୁ ବିଦ୍ୟାଦାନ କରିଛନ୍ତି,ବହୁ କବି ଓ ଲେଖକଙ୍କୁ ତାଲିମି କରିଛନ୍ତି ତାଙ୍କର ବକ୍ସି ଜଗବନ୍ଧୁ ପରି ଲେଖାରେ "ସ୍ୱାଧୀନତାଲଭେ କେଉଁଜାତି କେବେକରି ଶିଶୁ ସମନ୍ଦନ ଭଳି ଜାତୀୟ ଉଦ୍‌ବୋଧନ କବିତା ଦ୍ୱାରା ସେ ଗ୍ରନ୍ଥର ମନକୁ ଆଲୋଡ଼ିତ କରି ପାରିଛନ୍ତି । "ମାର୍ଗଶୀରଷ ଜନନୀ ଆସିବେ ଶିଶିର ଧବଳ ଭୂଷା"ରେ ପରି ପ୍ରକୃତିବର୍ଣ୍ଣନାରେ ସେ ପ୍ରକୃତିପୂଜକ କବିର ରସଗୀତ ଗ୍ରନ୍ଥମାନଙ୍କୁ ଶୁଣାଇଛନ୍ତି, ଭ୍ରମଣକାହାଣୀ, ଲୋକଗୀତ ଓ ଲୋକକଥା ସଙ୍କଳନ, ଆତ୍ମଚରିତ ପ୍ରଭୃତି ଗଦା ଗଦା ବହି ସେ ଲେଖିଛନ୍ତି । ଏବେ ଲୋକଗୀତର ଉପନ୍ୟାସ ଲେଖିବାରେ ଲାଗିଛନ୍ତି । ଦଶଟିଅ

ଦଶଦିଗକୁ ତାଙ୍କ ରଥ ଚଲାଇଲା ପରି ଗଦ୍ୟ ଓ କବିତାର ସବୁ ଦିଗରେ ସେ କଲମ ଚଲାଇଛନ୍ତି । ତାଙ୍କ କୃତିର ସମାଲୋଚନା ଅନ୍ୟମାନେ କରୁଛନ୍ତି, ମୋର ଏ କ୍ଷୁଦ୍ର ପ୍ରବନ୍ଧରେ ତାହା କରିବା ସମ୍ଭବ ନୁହେଁ ।

ବହୁ ଦୁଃଖକଷ୍ଟ ବାଧାବିଘ୍ନ ଭିତରେ ଜୀବନ ଅତିବାହିତ କରି ସେ ବଡ଼ ହୋଇଛନ୍ତି । ବଡ ହେବାପରେ ଲୋକ ତଳକୁ ନ ଚାହିଁ ଉପରକୁ ଚାହାନ୍ତି, ତଳଆ ଲୋକଙ୍କୁ ଭୁଲି ଯାଆନ୍ତି । କୁଞ୍ଜବିହାରୀ କିନ୍ତୁ ତାର ଏକ ବ୍ୟତିକ୍ରମ । କେଉଁଠି କିଏ ଅନ୍ଧାରରେ ଦରିଣ୍ଟି ହେଉଥିବା ବ୍ୟକ୍ତିର ସନ୍ଧାନ ପାଇଲେ ତାକୁ ହାତ ଧରି ଉଠାଇ ଆଣି ଆଲୋକରେ ଠିଆ କରାଇବାକୁ ସେ ତାର ପାଖକୁ ଦଉଡ଼ି ଯାଆନ୍ତି । ସେଇଟା ହିଁ ତାଙ୍କର ପ୍ରକୃତିଗତ ସ୍ୱଭାବ ।

ନିଜେ ଅଭିନନ୍ଦନ ପାଇବାକୁ ସମସ୍ତେ ନିଜର ଜନ୍ମଦିନ ପାଳନ କରନ୍ତି । କିନ୍ତୁ ସେ ତାଙ୍କର ଜନ୍ମଦିନ ବର୍ଷବର୍ଷି ପାଳନ କରନ୍ତି, ଅନ୍ଧକାରରେ ଛପି ଯାଉଥିବା ପ୍ରତିଭାକୁ ଉଜ୍ଜ୍ୱଳ ଆଲୋକ ଭିତରକୁ ଆଣି ଅଭିନନ୍ଦିତ କରିବାକୁ ।

ସେ ଶ୍ରେଷ୍ଠ ପିଲାଙ୍କଠାରୁ ବି ଆଉରି ସରଳ । କଥା କଥାକେ ଠୋ ଠୋ ହସି ଗଡ଼ି ଯାଆନ୍ତି । ସବୁବେଳେ ମଜା ମଜା କଥା କହନ୍ତି । ତାଙ୍କ ସଙ୍ଗରେ କିଛି ଦିନ କଥା ନହେଲେ କି ତାଙ୍କ ଦର୍ଶନ ନ ପାଇଲେ ମୋଭଳି ଲୋକଙ୍କ ମନ ଛଟପଟ ହୋଇ ଉଠେ । କିନ୍ତୁ ସେ ଯେତିକି କଅଁଳ, କର୍ତ୍ତବ୍ୟ ସାଧନରେ ସେ ସେତିକି କଠୋର । ମଣିଷ ଗଢିବାରେ ସେ ସିଦ୍ଧହସ୍ତ ।

ଏପରିକି ତାଙ୍କ ଘରେ ମଧ୍ୟ ଗୁରୁକୁଳର ଗୁରୁ ପରି, ନିଜ ପିଲାଙ୍କୁ କର୍ତ୍ତବ୍ୟଜ୍ଞାନ ଶିଖାଇବାରେ ସେ ବଡ଼ କଠୋର, ତେଣୁ ତାଙ୍କର ନିଜ ପିଲାମାନେ ଉନ୍ନତିପଥରେ ସୁରୁଖୁରୁରେ ଗତି କରି ଚାଲିଛନ୍ତି ।

ନିଜ ଲେଖା ଓ ପ୍ରତିଭା ପ୍ରଚାରରେ ସମସ୍ତେ ବ୍ୟସ୍ତ, କିନ୍ତୁ ଅନ୍ୟଙ୍କୁ ଲେଖାଇ ତାର ପ୍ରତିଭାକୁ ବାହାରକୁ ଆଣିବା ପାଇଁ ପ୍ରଗାଢ଼ ଉଦ୍ୟମ କଲାଭଳି ବ୍ୟକ୍ତି ତାଙ୍କ ଛଡା ଖୁବ୍ କମ୍ ଅଛନ୍ତି ।

ମୋ ନିଜର ଅନୁଭୂତି ତାର ପ୍ରଥମ ପ୍ରମାଣ । ଅଭିମନ୍ୟୁ ମାଆପେଟରୁ ଯୁଦ୍ଧ କଥା ଶୁଣି ଶୁଣି ଯୁଦ୍ଧବିଦ୍ୟା କିଛି ଶିଖି ଥିଲା ପରି, ନନାଙ୍କ ପାଖରେ ଲେଖକ କବି ଓ ସାହିତ୍ୟିକଙ୍କର ଆଲୋଚନା ଶୁଣି ଶୁଣି ସେଥିପ୍ରତି ମୋର ଟିକିଏ ଆଗ୍ରହ ବଢ଼ିଥିଲା । ମୁଁ ପିଲାଦିନେ ମେଡିକାଲ କଲେଜ ପାଠରେ ପୁରା ବୁଡ଼ିଯିବା ପୂର୍ବରୁ କିଛି ଲେଖାଲେଖି କରୁଥିଲି । 'ନବଭାରତ' ମାସିକ ଓ ଦୈନିକ ପତ୍ରିକାରେ ମୋର କେତୋଟି କବିତା ଓ ଅନ୍ୟ ଲେଖା ବାହାରିଥିଲା ।

ତାପରେ ମୋ କବିତା ଏଠିସେଠି ପତ୍ରପତ୍ରିକାରେ ପ୍ରକାଶିତ ହେଲା । ସବୁଠୁ ବେଶୀ ପ୍ରକାଶ ପାଇଲା ବିନା ନାମରେ ବା ଛଦ୍ମ ନାମରେ ଓଡ଼ିଶାର ସ୍ୱନାମଧନ୍ୟ ବ୍ୟଙ୍ଗପତ୍ରିକା ନିଆଁଖୁଣ୍ଟାରେ ।

ଚେଣିକ ମୋତେ ଦେଖିଲା ମାତ୍ରେ କୁଞ୍ଜଭାଇନା ପଚାରନ୍ତି—କିଓ କଅଣ ଲେଖିଛ, ଆଉ ଲେଖୁନ କାହିଁକି,ଲେଖ ଲେଖ । ତାଙ୍କ କଥାରେ ବ୍ୟତିବ୍ୟସ୍ତହୋଇ ମୁଁ କହେ— ମୁଁ ଡାକ୍ତର ପୁଣି, ଡାକ୍ତରୀ କଲେଜର ଶିକ୍ଷକ,ମୋର ବେଳ କାହିଁ ? ସାହିତ୍ୟ ମୋଠାରୁ କେଉଁଠୁ ବାହାରିବ ? ମୁଁ କଅଣ ଲେଖିବି ? ଲେଖିଲେ ବା ତାକୁ ପ୍ରକାଶ କରିବାପାଇଁ କେଉଁ ପ୍ରକାଶକର ଅନୁଗ୍ରହ ପ୍ରାର୍ଥନାକରି କାହାର ଓଳି ତଳେ ଯାଇ ଠିଆହେବି ? ତେଣୁ ଗବେଷଣାମୂଳକ ସୃଜନସାହିତ୍ୟ ଲେଖିବା ବର୍ତ୍ତମାନ ମୋ ପକ୍ଷରେ ସମ୍ଭବ-ପର ନୁହେଁ । ତେଣୁ ମନକୁ ପାଇଲେ ବେଳେବେଳେ ମୋ ମନ ଖୁସି କରିବାପାଇଁ ମୁଁ ଦୁଇ ଚାରି ଧାଡ଼ି ଲେଖି ନଜେ ପଢିସାରି ଫିଙ୍ଗିଦେଉଚି, କିଏ ଗ୍ରାହକ ଗୋଟାଇ ନେଇ ତା କାମରେ ଲଗାଇଲେ ମୁଁ ବି ଆପତ୍ତି କରୁ ନାହିଁ ।

କୁଞ୍ଜଭାଇନା କିନ୍ତୁ ଛାଡ଼ିବା ଲୋକ ନୁହଁନ୍ତି । ସେ ମୋ କଥାରେ ସନ୍ତୁଷ୍ଟ ନ ହୋଇ ସେଇ ଏକ କଥା ଧରି କହନ୍ତି— ଲେଖ, ଲେଖି ପକାଅ । ମୁଁ ବାଧ୍ୟ ହୋଇ ପ୍ରଥମେ ଗାଁଉଲି ଗପଗୁଡ଼ିଏ ଲେଖିଲି । ସେ ବହିଟିର ନାମ ଦେଲି 'ସାତତିରିକ୍ ସତର' । ତାର ମନସ୍ତାତ୍ତ୍ୱିକ ଭାବ ଓ ଗ୍ରାମୀସ୍ୱ ଜୀବନ ଓ ଭାଷାକୁ ପ୍ରଶଂସା କରି ସେ ଲେଖିଲେ ମୁଖବନ୍ଧ । ୧୯୭୫ରେ ସେ ବହି ଛପା ହେଲା, ତାର କାଟତି ମଧ୍ୟ ହେଲା; କିନ୍ତୁ ସେ ସବୁତ ପ୍ରକାଶକ ଚଳୁ କରିଦେଲେ ।

ଆଉ ମୁଁ କିଛି ଲେଖିଲି ନାହିଁ । ଚାକିରୀ ସରିଲା । କଟକ ଘରେ ଆସି ରହିଲି । କୁଞ୍ଜଭାଇନାଙ୍କ ଉପଦ୍ରବ ବେଶୀ ବଢ଼ିଲା । ସେ ମୋ ସାଙ୍ଗରେ ଲଗାଇଲେ— ତୁମେ ଭଲ ଐତିହାସିକ ଉପନ୍ୟାସ ଲେଖି ପାରିବ । ଆସ ଉପନ୍ୟାସ ଲେଖିବା, ମୁଁ ଲେଖୁଚି, ତୁମେ ଲେଖ ।

ମୁଁ ଖଣ୍ଡେ ପାଣ୍ଡୁଲିପି ଲେଖି ତାଙ୍କ ପାଖକୁ ପଠାଇଦେଲି । ମୋର ଫୋନ୍ ଘନ ଘନ ବାଜିଉଠିଲା । ଲେଖାଟା ଭାରି ବଢ଼ିଆ ହୋଇଛି, କିନ୍ତୁ ବହିଟା ଛୋଟ ହୋଇଗଲା, ବଡ଼ କର, ଆଉ ଐତିହାସିକ ତଥ୍ୟ ଦିଅ । ମୁଁ ଐତିହାସିକ ତଥ୍ୟ ସଂଗ୍ରହ କରି ବୁଲିଲି । ମାଦଳାପାଞ୍ଜିଠାରୁ କିମ୍ବଦନ୍ତୀ ସଂଗ୍ରହ କରୁ କରୁ ବର୍ଷେ ଲାଗିଗଲା । ଭାଲୁ ଲଙ୍ଗୁଡ଼ ତ ଧରିଛି, ଆଉ ଛାଡ଼େ କେମିତିକେ !

ମୋତେ କଥା ଦେଇଥିବା ଅନୁସାରେ ତାଙ୍କର ପ୍ରଥମ ଉପନ୍ୟାସ 'ମଶାଣି ତୁଳସୀ' ବହିଟି ପ୍ରକାଶିତ ହେଲା, ତା ପଛେ ପଛେ ମୋର 'ମହିମା ଡିହ' ଉପନ୍ୟାସ ।

ତାଙ୍କର 'ମଣିମା ଶୁଣିମା ହେଉ', ପରେ ମୋର 'ସେ ପଟ ଦୁନିଆ' ଔପନ୍ୟାସିକ ଛଟାରେ ଭ୍ରମଣକାହାଣୀଟି ପ୍ରକାଶ ପାଇଲା । ତାଙ୍କର 'କକଥା କଲିକତା'ପଛକୁ ମୋର 'ଅଲଗା ଇତିହାସ' ।

ଏପରି ତାଙ୍କ ଲଙ୍ଗୁଳରେ ବାନ୍ଧି ଟାଣିଲା ପରି ସେ ମୋତେ ଟାଣି ଚାଲିଛନ୍ତି । ମୁଁ ଝିଙ୍କି ହୋଇ ଚାଲିଛି । ଶକତ ଗଣ୍ଠି ପଡ଼ିଛି; ମୁଁ ତାକୁ ହୁଗାଳି ଖସାଇ ପଳାଇ ଯାଇ ପାରୁନାହିଁ ।

ଏବେ ସୁଦ୍ଧା ଦେଖିଲେ ସେଇ କଥା— ଲେଖ, ଲେଖି ପକାଅ । ମୋର ଯେ କେବଳ ଏଇ ଅଭିଜ୍ଞତା, ତା ନୁହେଁ, ଓଡ଼ିଶାର ବହୁ ଅନଛୁ ଲେଖକଙ୍କର ସେଇ ଅବସ୍ଥା । ଯାହାର ଲେଖା ତାଙ୍କୁ ରୁଚିକର ହେଲା, ତା ପିଠି ସେ ଯୋଡ ହୋଇ ଲାଗି ରହନ୍ତି । ଲେଖ ଲେଖ, ଆଉ କଅଣ ଲେଖିଲ ବୋଲି ପଚାରୁ ଥାଆନ୍ତି ।

ପଣ୍ଡିତ ନୀଳକଣ୍ଠଙ୍କ କୋଣାର୍କର 'ଖିଟ' କବିତା ଅନୁସାରେ

"ଗ୍ରାହକତା ବିନା କବି ସ୍ୱର୍ଗସୁଖ ଆନ ମୁଲେ ତାକୁ ତୋଷଇ କେହି" । କୁଞ୍ଜଭାଇନା ତାଙ୍କ ଗ୍ରାହକତା ପ୍ରଭାବରେ ଅସଂଖ୍ୟ ଲେଖକ ଓ କବିଙ୍କୁ ସ୍ୱର୍ଗସୁଖ ଦେଇ ସେଇ ପଥରେ ଟାଣିନେଇ ଚାଲିଛନ୍ତି ।

ଲୋକଗୀତ ଓ କଥାର ଶୁଖିଲା ଫୁଲ ଗୋଟାଇ ସେଥିରେ ବାସନା ଭରିବାଠାରୁ ଅଫୁଟନ୍ତ କଳିବାକୁ ଆଦର କରି ଫୁଟାଇବାକୁ ଯତ୍ନ କରିବାଭଳି ତାଙ୍କପରି ଆଉ କେହି ନାହିଁ ।

ଲୋକେ କବିରତ୍ନ, ସାହିତ୍ୟବାଗୀଶ, ବାଣୀ (ମୁନ୍ଦୁରି) ଭୂଷଣ ଏପରି କେତେ କଅଣ ଉପାଧି ପାଆନ୍ତି । କଲିକତାରୁ ସେ ପାଇଲେ ଲୋକରତ୍ନ ଉପାଧି ତାଙ୍କ ଲୋକ ଗୀତ ଓ ଲୋକକଥା ପାଇଁ ।

ଆମେ ଆଗରୁ ସେପରି ଉପାଧିର ନାମ ଶୁଣି ନଥିଲୁ । ଜୟପ୍ରକାଶ ଥିଲେ ଲୋକ-ନାୟକ, ଲୋକଙ୍କର ନାୟକ ବା ନେତା । କିନ୍ତୁ କୁଞ୍ଜ ଭାଇନାଙ୍କ ଲୋକ-ରତ୍ନ ଉପାଧି ପୂରା ସ୍ୱତନ୍ତ୍ର ।

ତାର ଯିଏ ଯେପରି ଅର୍ଥ କରନ୍ତୁ, ମୋ ବିଚାରରେ ସେ ଲୋକ ହିସାବରେ ରତ୍ନଟିଏ ବୋଲି ସେ ଉପାଧିଟି ତାଙ୍କୁ ମିଳିଛି ।

ସେହି ସ୍ୱତନ୍ତ୍ର ଉପାଧିଟି ମଧ୍ୟ ପ୍ରମାଣ କରୁଛି— ସେ ଆଉ କାହା ପରି ନୁହଁନ୍ତି । ସିଏ କେବଳ ତାଙ୍କ ପରି । 

* ତିନକୋଣିଆ ବଗିଚା, କଟକ-୧

# ଶୁଆ ମୂଲ ଶୁଆ ଜାଣେ

କାଳନ୍ଦୀ ଚରଣ ପାଣିଗ୍ରାହୀ

ଯଥାର୍ଥ କବିର ମୂଲ୍ୟାଙ୍କନ କେବେ ହେଲେ କାହାରି ସମ୍ଭବପର ନୁହେଁ । ଯୁଗେ ଯୁଗେ କବି "ଅନ୍ଧଦେଶକୁ ଦର୍ପଣ ବିକି" ଯାଇଥାଏ ମାତ୍ର । ରାଜ-ଶକ୍ତି-ଶାସିତ ରାଜ୍ୟକୁ 'ଅନ୍ଧ' ଆଖ୍ୟା ଦେଇ ସ୍ୱୟଂ ଶାସକଙ୍କୁ ମଧ୍ୟ ଗୋମାଂସ-ଭକ୍ଷକ "କନ୍ଧ" ବୋଲି ଭର୍ତ୍ସନା କରିପାରେ ସେ :—

"ଅନ୍ଧ-ଦେଶକୁ ଗଲି ଦର୍ପଣ ବିକି
କନ୍ଧ ହାତରେ ଦେଲି ଗୋଦାନ ଟେକି
ଜଡ଼ା ମଧ୍ୟରେ ଖଡ଼ା କଲି ଚନ୍ଦନ
କାମୁଡ଼ା ଘୋଡ଼ା ମୁଖେ ଦେଲି ଚୁମ୍ବନ
ହେ ରାଜା ! କି କଲି ?
ବିଷ୍ଣୁ-ପ୍ରତିମାକୁ ତଳେ ଥୋଇଲି !"

ଯୁଗଯୁଗାବଧି ଯଥାର୍ଥ କବିକଳାକାରମାନଙ୍କ ମୂଲ୍ୟାଙ୍କନ ରାଜଦ୍ୱାରରେ ନୁହେ —ଜନତା-ଦରବାରରେ ହିଁ ପ୍ରତିଷ୍ଠିତ । ଏକ ଆଶ୍ଚର୍ଯ୍ୟ ଦର୍ପଣର ବେପାରୀ ସେମାନେ, ଯାହା ଭିତରେ ଖାଲି ନିଜର ନୁହେଁ, ବିଶ୍ୱ ବ୍ରହ୍ମାଣ୍ଡର ମୁହଁ ଫୁଟି ଦିଶେ । ମହକି ଉଠେ ଅପୂର୍ବ ସୁବାସରେ ଯାର ଦିଗବିଦିଗ ।

ଚଳିତ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ପ୍ରାରମ୍ଭରେ "କୁଞ୍ଜବିହାରୀ-ସଞ୍ଚୟନ" ପ୍ରଥମ ଭାଗ ପ୍ରକାଶ ଲାଭ କରେ । ତାହା ପରେ ଦ୍ୱିତୀୟ ତୃତୀୟାଦିର ଆବିର୍ଭାବ ।

ପ୍ରଥମ ଭାଗ "ସଞ୍ଚୟନ"ର ପ୍ରଥମ କବିତାର ଶିରୋନାମା ହେଲା— "କଙ୍କାଳର ଲୁହ" । ସତେ ଅବା ସାରା ଓଡ଼ିଶା କେବଳ ନୁହେଁ ତ ! ସାରା ବିଶ୍ୱର ଲହୁଲୁହର ଧୁଅ ଉଚ୍ଛୁଳି ପଡ଼ୁଛି ଢେଉ ପରେ ଢେଉ ନାଚି ନାଚିକା ଉଠିଲା ପଡ଼ିଲା ଭଳି । କିମ୍ବା ବିଶ୍ୱପ୍ରାଣର ନିଃଶ୍ୱାସ-ପ୍ରଶ୍ୱାସ ପ୍ରତିଟି ମୁହୂର୍ତ୍ତରେ ଜନ୍ମ-ମୃତ୍ୟୁର ସଙ୍କେତ ସୁଚାଉଥିଲା ଭଳି ।

"କୁନ୍ତଳାବାଲିର ଉଶ୍ମରିନ" ପ୍ରାରମ୍ଭରେ "କଙ୍କାଳର ଲୁହ" ଯଥାର୍ଥ ସ୍ଥାନ ଲଭିଛି :—

"କୁଶଭଦ୍ରା ଗୋ ! ବନ୍ୟାରେ ତୋର
ଗ୍ଳଲବ ଆମର ନାଅ
ଚୁଡ଼ା ଚୁଡ଼ଲର ଅଖାପଟ ଘେନ
ଯିବୁଁ ଅଛ ଦୂର ଗାଁଆ
ରୁହିଁ ବସିଥିବେ ଲୋକ ଉପାସିଆ
ଭସି ଭସି ଆଖି ଲୁହେ
ପେଜ ପାଣି ଟୋପେ ପାଟିରେ ଦେବୁଁ ଗୋ
ବୋହି ନେଏ ତୋର ସୁଏ ।"
"ଗ୍ଳଲଅଛୁଁ ଆମେ ମଣିଷ ସେବାର
ମହାଭାବ ଘେନ ମନେ
ସ୍ୱାର୍ଥପରତା ଗନ୍ଧ ନାହିଁ ଗୋ
କାହାର ହୃଦୟେ କଣେ
ଅଜ୍ଞାନ ଆମେ ବାଲୁତ ବିପଦେ
ସାହା ହୁଅ ବାରେ ମାଆ
କୁଶଭଦ୍ରା ଗୋ ! ତରବର ହୋଇ
ବୋହିନେଏ ଆମ ନାଆ
ସେବା ସନ୍ଦେହ ନାହିଁ ତେର
ଭସି ଆସେ କେତେ କରୁଣ ବେଦନା ଶୁଣ ଶୁଣ କାନ ଡେର ।"

କାବ୍ୟ-କବିତା-ମାଧୁର୍ଯ୍ୟର ଅନ୍ତରାତ୍ମା ସବୁ ଭାଷା-ସାହିତ୍ୟରେ ହିଁ ସମାନ ରୂପେ ଛନ୍ଦାୟିତ —"Our sweetest songs are those that tell of saddest thoughts." ସବୁଠାରୁ ଦୁଃଖଦ ଭାବପ୍ରକାଶହିଁ ମଧୁରତମ ସଙ୍ଗୀତର ଉପାଦାନ । କୌଯାକାର ଅତି ବାସ୍ତବ ଜୀବନ୍ତ ବର୍ଣ୍ଣନା ସଙ୍ଗେ ଲକ୍ଷ୍ମୀଚନ୍ଦ୍ରର ପରମ ଆତ୍ମୀୟତା ମଣିକାଞ୍ଚନର ସଂଯୋଗ ପ୍ରତିଷ୍ଠାରେ ସହାୟକ ହୋଇଛି ।

କାବ୍ୟ କବିତା ହେଉ କିମ୍ବା ଗଳ୍ପଉପନ୍ୟାସ-ନାଟକାଦି ହେଉ, ସୃଷ୍ଟି-ସାହିତ୍ୟର ବିଭିନ୍ନ ଅଙ୍ଗ ନିତ୍ୟ ନୂତନର ପ୍ରକାଶ ଭଙ୍ଗୀରେ ନିଯୁକ୍ତ । ଅଖିଳ ପସୂର୍ଯ୍ୟ-ଚନ୍ଦ୍ର-ତାରା-ଗ୍ରହ-ଉପଗ୍ରହାଦି ଜଡ-ଜଗତ୍ ସମୁଦାୟ ଜୀବଜଗତକୁ

ଯେଉଁ ଯୁଗେ ଯୁଗେ ନବନବ ସାହିତ୍ୟ ସୃଷ୍ଟିରେ ସହାୟକ ହୁଏ, ପୁଣି ସାହିତ୍ୟକୁ ଆଦର୍ଶ ସମାଜଚରିତ୍ର ଗଢ଼ିବାରେ ଯେ ପ୍ରଧାନ ଉପାଦାନ ସ୍ତମ୍ଭ ସ୍ୱରୂପ, ତାହା ଅନସ୍ୱୀକାର୍ଯ୍ୟ ।

ଆଧୁନିକ ଓଡ଼ିଆ ସାହିତ୍ୟର ଯଥାର୍ଥ କବିବର ୰ ରାଧାନାଥ ରାୟଙ୍କ ତନୁଜ "ବିକ୍ଷିପ୍ତ ଚିନ୍ତା"ର ପ୍ରସିଦ୍ଧ ଲେଖକ ଶ୍ରୀଯୁକ୍ତ ୰ ଶଶିଭୂଷଣ ରାୟଙ୍କ ବନ୍ଦନାରେ କବି କୁଞ୍ଜବିହାରୀ ଯଥାର୍ଥରେ "ଗୁଣ ଚିହ୍ନେ ଗୁଣିଆ—ସୁନା ଚିହ୍ନେ ବଣିଆ" ପ୍ରବାଦଟିର ସ୍ୱୀୟ ସାର୍ଥକ ଲେଖନୀଦ୍ୱାରା ପରିଚୟ ଦିଅନ୍ତି—

"ଗୋଟିଏ ଆଖି ଗଲାଣି ନଭି
ଆଉ ଗୋଟିଏ ଅସ୍ତ ପ୍ରାୟ
ତଥାପି ତୁମ କଲମ ଚାଲେ
ସ୍ୱାଗତ ଶଶିଭୂଷଣ ରାୟ !
ଶରୀର ସାରା ଗ୍ରାସିଛି ଜରା
ମରମେ ପଶି ପାଶବ ପରା
ପରାସ୍ତ ଯେ କରିଛ ତୁମେ
ସର୍ବଜୟୀ ଦୁର୍ବଳତା
ଅସ୍ତାଚଳେ ଅଶ୍ରୁ ଜଳେ
ଫୁଟାଅ ଶେଷ ପୁଷ୍ପ ଲତା।

ଯଥାର୍ଥ କବିର ମୂଲ୍ୟାୟନ ଯେ କେବେହେଲେ କାହିଁ ସାର୍ଥକ ହୋଇ ନ ପାରେ; କବି କୁଞ୍ଜବିହାରୀଙ୍କ ପ୍ରତି ଏହି ମନ୍ତବ୍ୟର ଦ୍ୱିରୁକ୍ତି କଦାପି ଦୋଷାବହ ନୁହେ ବୋଲି ଦୃଢ଼ ଭାବରେ ପ୍ରକାଶ କରିବା ସାହସ ମୋର ରହିଛି । ବର୍ତ୍ତମାନ ଯୁଗରେ ଭାରତୀୟ ବିଶ୍ୱକବି ରବୀନ୍ଦ୍ରନାଥ-ପ୍ରତିଷ୍ଠିତ ସୁବିଖ୍ୟାତ "ଶାନ୍ତିନିକେତନ" ବିଦ୍ୟାଳୟରେ ଅଧ୍ୟାପନା କରୁଥିବା କାଳରେ ୪ । ୩ । ୧୯୫୬ ତାରିଖ ହେଲା ଏଇ କବିତାର ଜନ୍ମଦିନ । ଆଜିକି ତା'ର ବୟସ ହେଲାଣି ଠିକ୍ ୩୨ ବର୍ଷ । କିନ୍ତୁ କବିତାଟି ପଢ଼ି ଆଖି ଆଗରେ ମୋର ପୁଣି ନାଚିଯାଏ ଶଶିଭୂଷଣଙ୍କର ସେଇ ଗେରୁଆପିନ୍ଧା ସ୍ନେହସିକ୍ତ ଶୁଭ୍ର ରୂପଟି । ମୋ ଦ୍ୱାରରେ ମଧ୍ୟ ନବଉତ୍କଳର କବିବର ରାଧାନାଥଙ୍କ ତନୁଜଙ୍କର ଅନାହୂତ ପଦସ୍ପର୍ଶ ! କଟକରେ ମୁଁ ଏଇ ବାସଗୃହ ଖଣ୍ଡି ତୋଳାଇବା ବେଳେ ବାରମ୍ବାର ତାଙ୍କ ଦର୍ଶନଲାଭ ମଧୁର ସ୍ମୃତିରେ ସଞ୍ଚିତ ।

"କୃଷ୍ଣବହ୍ନାଣୀ-ସଞ୍ଚୟନ" ୧ମ ଭାଗ ଶେଷାଂଶରେ ରହିଛି—ଋଗ୍‌ବେଦର କବିତାନୁବାଦ ! ପୁଣି ଇନ୍ଦ୍ର, ବରୁଣ, ଅଗ୍ନି, ବାୟୁ, ଅଶ୍ୱିନୀକୁମାର ସ୍ତୁତି ଆଦିର ମୌଳିକ ଉଦ୍ଧୃତି ମଧ୍ୟ ।

ଆଧୁନିକ ଓଡ଼ିଆ ସାହିତ୍ୟରେ କବି-ଗାଳ୍ପିକ-ଔପନ୍ୟାସିକ ଓ ପ୍ରାବନ୍ଧିକ ରୂପେ ଡ଼କ୍ଟର କୃଷ୍ଣବହ୍ନାଣୀଙ୍କ ସ୍ଥାନ ସୁପ୍ରତିଷ୍ଠିତ । ଅଦ୍ୟାବଧି ଲେଖନୀ ତାଙ୍କର ବିଶ୍ରାମକୁ ପ୍ରଶ୍ରୟ ଦେଇନାହିଁ କି କେବେହେଲେ ଦେବନାହିଁ ବୋଲି ନିଶ୍ଚିତ ସଙ୍କେତ ମିଳି ସାରିଲଣି ।

ଲେଖନୀ ତାଙ୍କର ବିଜୟିନୀଶାଣ ଧରି ସାରଳା-ଜଗନ୍ନାଥ-ବଳରାମ-ଉପେନ୍ଦ୍ର-ଅଭିମନ୍ୟୁ-ଦୀନକୃଷ୍ଣ ତଥା ରାଧାନାଥ-ମଧୁସୂଦନ-ଫକୀରମୋହନ ଯୁଗର ସୁଯୋଗ୍ୟ ଉତ୍ତରାଧିକାରୀ ରୂପେ ଅଧିକରୁ ଅଧିକ ଅଗ୍ରସର ହେଉ, ଏହାହିଁ ଆନ୍ତରିକ କାମନା ଓ ପ୍ରାର୍ଥନା । 

# ଯଜ୍ଞଶାଳା

## ଜଷ୍ଟିସ୍ ହରିହର ମହାପାତ୍ର

ସତୁରି ବର୍ଷର ଯୁବକ,-ଦୈହିକ, ମାନସିକ ଓ ବୌଦ୍ଧିକ,-କୁଞ୍ଜବାବୁ ପୂର୍ଣ୍ଣ-କୁମ୍ଭତ୍ୱ ଲାଭ କରି ସାରିଛନ୍ତି, ଏହି ଅଳ୍ପ କେତେ ବର୍ଷ ଭିତରେ । ପୂର୍ଣ୍ଣକୁମ୍ଭ ସ୍ଥାପନରେ ଯଜ୍ଞର ଆରମ୍ଭ ମାତ୍ର ହୁଏ । ପୂର୍ଣ୍ଣାହୁତି ବହୁ ପରେ ଆସେ । କୁଞ୍ଜବାବୁ ଯଜ୍ଞକୁଣ୍ଡରେ ନିରୁତା ଗବ୍ୟଘୃତରେ ସାହିତ୍ୟାଗ୍ନିକୁ ଅକ୍ଷତ ଓ ବର୍ଦ୍ଧମାନ ରଖି ଚାଲିଛନ୍ତି । ଦେଶୀ ଗାଈ ଘିଅରେ ତାଙ୍କ ଆହୁତିର କ୍ଷିପ୍ରତା ବୋଧ ହେଉନାହିଁ । ଜର୍ସି, ହରିଆନା, ହୋଲଷ୍ଟିନ୍ ଲୋଡ଼ା ପଡ଼ୁଛି । ଲୋକଗୀତି ଢୋକ ଯାଇ ଜୀବନଚରିତ, ପ୍ରବନ୍ଧ, ଉପନ୍ୟାସର ଆହୁତି ପୂର୍ବ ଦମ୍‌ରେ ଚାଲିଛି । ଯଜ୍ଞଶାଳା ତାଙ୍କର ବିସ୍ତୃତ, ସଙ୍ଗୀ ଅମାପ, ଆଶା ଯେପରି ଅକୁଣ୍ଠ, ସାଧନା ସେପରି ଅକାତର ।

କୁଞ୍ଜବାବୁଙ୍କୁ କେବେ ପ୍ରଥମ ଜାଣିଲି, ଠିକ୍ କହିପାରୁ ନାହିଁ । ବୋଧହୁଏ, ସେ ଯେତେବେଳେ ଶାନ୍ତିନିକେତନରେ ଥିଲେ, ପ୍ରଥମ ସାକ୍ଷାତ ପରିଚୟ ଏକ ଆଲୋଚନା ସଭାରେ ହୋଇଥିଲା । ଦୋଲ ସମୟ, ଅନ୍ନଦାଶଙ୍କର ସପରିବାର ସେଠାରେ ଥାଆନ୍ତି । ମୁଁ ଯାଇଥାଏ ତାଙ୍କ ପାଖକୁ ଛୁଟିଦିନ ପାଇଁ । କୁଞ୍ଜବାବୁ ଦିନେ ସକାଳେ ଆସି କହିଲେ, ତାଙ୍କ ଓଡ଼ିଆ ବିଭାଗରେ ଏକ ଆଲୋଚନା ସଭାକୁ ଯିବାପାଇଁ । ଅନ୍ନଦା ଓ ମୁଁ ଗଲୁ ଓ ଦୁହେଁ ସେଥିରେ ଭାଗ ନେଲୁ ମଧ୍ୟ । ଗୋଟିଏ କଥା ସେଠାରେ ଲକ୍ଷ୍ୟ କରିଥିଲି, କୁଞ୍ଜବାବୁ ତାଙ୍କର ସହକର୍ମୀ ଓ ଛାତ୍ରମାନଙ୍କୁ ଆନ୍ତରିକତାର ସହିତ ଉତ୍ସାହିତ କରୁଥାଆନ୍ତି, ଆଲୋଚନାରେ ସକ୍ରିୟ ଅଂଶ ଗ୍ରହଣ କରିବାକୁ ଏବଂ ସେମାନଙ୍କ ପ୍ରତି ପ୍ରଶଂସାମୁଖର ହୋଇ ମନ୍ତବ୍ୟମାନ ପ୍ରକାଶ କରୁଥାଆନ୍ତି । ସାଧାରଣତଃ ଶ୍ରେଷ୍ଠ ପଦାଧିକାରୀ ନିଜକୁ ଆଗକୁ ପେଲନ୍ତି । କୁଞ୍ଜବାବୁ ସମସ୍ତଙ୍କୁ ଆଗକୁ ପେଲନ୍ତି । ଏହା ଏକ ଅସାଧାରଣ ଉଦାରତାର ପରିଚାୟକ ।

କୁଞ୍ଜବାବୁ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରିବା ପରେ ଅଧିକ କର୍ମକ୍ଷମ ଓ କର୍ମତତ୍ପର ହୋଇଛନ୍ତି । ସାହିତ୍ୟକ୍ଷେତ୍ରରେ ସ୍ୱୀୟ ଅଗ୍ରସରତାରେ ସେ କେବଳ ଆଗ୍ରହୀ ନୁହନ୍ତି, ସେଥିପାଇଁ ସର୍ବଦା ଯତ୍ନବାନ୍ । ସମସ୍ତଙ୍କୁ ଲେଖିବାପାଇଁ ଉତ୍ସାହ ଦେବାରେ ସେ ତତ୍ପର । ବୋଧହୁଏ ସେ ଭାବିଥିବେ, ଅନେକ ଲୋକ ଅନେକ କିଛି

ଲେଖିଲେ, ତାହା ମଧ୍ୟରୁ ଅବଶ୍ୟ କେତେକ ଉତ୍କୃଷ୍ଟ ସାହିତ୍ୟ ବାହାରିବ । ତାଙ୍କର ସାହିତ୍ୟାନନ୍ଦର ଅନ୍ୟ ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ, କେନ୍ଦ୍ର ସାହିତ୍ୟ ଏକାଡ଼େମୀରୁ ନିଜ ଜୀବନବୃତ୍ତାନ୍ତ "ମୋ କାହାଣୀ" ପାଇଁ ଯେଉଁ ପୁରସ୍କାର ଧନ ( ପାଞ୍ଚହଜାର ଟଙ୍କା ) ପାଇଲେ, ତାହା ଉପନ୍ୟାସ ପାଣ୍ଡୁଲିପି ( ଅପ୍ରକାଶିତ ) ପ୍ରତିଯୋଗିତା ପାଇଁ ଉତ୍କଳ ସାହିତ୍ୟ ସମାଜର ଗଚ୍ଛିତ ପାଣ୍ଠିରେ ଜମା ଦେଇଛନ୍ତି ।

ତାଙ୍କ ରଚନାରେ, ଯେ କୌଣସି ବିଷୟର ହେଉ, ପ୍ରତ୍ୟକ୍ଷଦର୍ଶିତା, କଳ୍ପିତ ହେଲେ ମଧ୍ୟ ଉଲ୍ଲେଖଯୋଗ୍ୟ । ଭାଷାର ପ୍ରାଞ୍ଜଳତା ପାଠକକୁ ଆକର୍ଷଣ କରେ । ଆଲୋଚନା ଓ ସମାଲୋଚନାରେ ସହୃଦୟତା ପ୍ରକାଶ ଯୋଗୁଁ ସେ କାହାର ବିରାଗ-ଭାଜନ ହୁଅନ୍ତି ନାହିଁ ।

ତାଙ୍କର କୃତି ଓ କୀର୍ତ୍ତି ଉପରେ ଫୁଲ ଚନ୍ଦନ ପଡ଼ୁ ଓ ଭଗବାନ୍‌ଙ୍କର ଆଶୀର୍ବାଦରେ ସେ ସୁସ୍ଥ, ସରସ ରହନ୍ତୁ, ଏହି ପ୍ରାର୍ଥନା କରୁଛୁ ।



# କବି ଜୀବନୀ

## ଲୋକରତ୍ନ କୁଞ୍ଜବିହାରୀଙ୍କ ବଂଶାବଳୀ

ଗୋବିନ୍ଦ ଦାଶ

- ପରଶୁ ଦାଶ
  - ଚିନ୍ତାମଣି ଓରଫ୍ ମାଗୁଣି (୧୮୮୨-୧୯୩୪)
    ସ୍ତ୍ରୀ. ତାରାମଣି···ମୃତ୍ୟୁ ୧୯୫୫
    - ସୁର୍ଯ୍ୟମଣି
    - ହୀରାମଣି
    - ଘନଶ୍ୟାମ (୧୯୧୨-୧୯୪୫)
    - କୁଞ୍ଜବିହାରୀ (୭ମାର୍ଚ୍ଚ ୧୯୧୪)
      - ପ୍ରିୟଦର୍ଶୀ ୧୯୪୯
      - ଭାନୁ ୧୯୫୨-୫୩
      - ଦେବପ୍ରିୟ ୧୯୫୭
      - ପୁଣ୍ୟଶ୍ଳୋକ ୧୯୫୯
    - ପଦ୍ମନାଭ (୧ ଜାନୁୟାରୀ ୧୯୨୩)
    - ଉଦୟନାଥ
      - ଗୀତା
      - ମିତ୍ର
      - ଅଖିଳ
  - ବିଦ୍ୟାଧର
    - ହରେକୃଷ୍ଣ
  - ଗଙ୍ଗାଧର
  - ଦୀନବନ୍ଧୁ

ପଶ୍ଚିମରେ ପୁରାଣ ପବିତ୍ର ଭୁବନେଶ୍ୱର, ପୂର୍ବରେ ଚାରୁକଳାମଣ୍ଡିତ କୋଣାର୍କ ମଧ୍ୟବର୍ତ୍ତୀ ଧନୁଆଁ ଓ ଭାର୍ଗବୀ ନଦୀର ମଝିରେ ଗୋଟିଏ କ୍ଷୁଦ୍ରଗ୍ରାମ 'ରେଞ୍ଚ ଶାସନ' ରେ ୧୯୧୪ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୭ତାରିଖ (ଫାଲ୍‌ଗୁନ ଶୁକ୍ଳ ଦ୍ୱାଦଶୀ, ଶନିବାର) ରେ କବି କୃଷ୍ଣବିହାରୀଙ୍କ ଜନ୍ମ । ପିତା ଚନ୍ଦ୍ରାମଣି ଦାଶ, ମାତା ତାରାମଣି । କବି ପିତାଙ୍କର ଚତୁର୍ଥ ସନ୍ତାନ । ପିତା ଚନ୍ଦ୍ରାମଣି ଦାଶ (୧୮୮୨—୧୯୩୪) ଓରଫ୍ ମାଗୁଣି ଦାଶ ଦୀର୍ଘକାୟ, ସ୍ୱୟଂ ଶିକ୍ଷିତ, ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ, ଗୁରୁ ଓ ବୈଦ୍ୟଭାବରେ ଲୋକରେ ପ୍ରସିଦ୍ଧ ଥିଲେ । ସେ ଥିଲେ ସ୍ତ୍ରୀ ଶିକ୍ଷାର ଜଣେ ପ୍ରବର୍ତ୍ତକ, ଲୋକଶିକ୍ଷକ, କବି ଓ କବିରାଜ । ଜୀବନରେ କେବେ କାହାର ଅନିଷ୍ଟଚିନ୍ତା କରିନଥିଲେ । ଶ୍ରେଷ୍ଠକଥା ତାଙ୍କ ମନରେ ପଶୁନଥିଲା । ପରକୁ ଆପଣାର କରିବା, ଶତ୍ରୁକୁ ମିତ୍ରରେ ପରିଣତ କରିବା ତାଙ୍କର ସ୍ୱଭାବଗତ ଧର୍ମଥିଲା । ପିତାଙ୍କର ସରଳ ଅମାୟିକ ଉନ୍ନତମନ କବିଙ୍କ ଚରିତ୍ରକୁ ପ୍ରଭାବିତ କରିଥିଲା । କବିଙ୍କ ଉପରେ ମାତାଙ୍କ ପ୍ରଭାବ ଥିଲା ଗଭୀର । 'ମୋ କାହାଣୀ'ର ଭାଷାରେ— ବୋଉ ଓଷାବ୍ରତ ପର୍ବପର୍ବାଣୀର ପବିତ୍ର ବାତାବରଣରେ ବଢ଼ିଥିଲେ ଦେବୀ ପ୍ରତିମା ପରି । ସେ ଥିଲେ ଶ୍ରୁତିଯୁଗର ମଣିଷ, ନିରକ୍ଷର, ମାତ୍ର ସ୍ମୃତି-ଶକ୍ତି ତୀକ୍ଷ୍ଣ, ସତେ ଯେପରିକି ଚିର ସଙ୍ଗୀତମୟୀ ସରସ୍ୱତୀ ।

ଛାତ୍ରଜୀବନ :—

ଗ୍ରାମୀଣ ବାତାବରଣରେ କବିଙ୍କ ଶୈଶବ ଓ କୈଶୋର ବିତିଥିଲା । ଶୈଶବର ବ୍ୟବହାରରେ କିଂଚିତ୍ ଅବୋଧ ଓ ଅପଟୁ, ବଳିଷ୍ଠ ଓ ବପୁବନ୍ତ ମଧ୍ୟମ ପୁତ୍ରଙ୍କୁ ପିତା ଜଣେ ଆଦର୍ଶ କୃଷକ ଭାବରେ ଗଢ଼ିବାକୁ ଚାହିଁଥିଲେ । ନିଜର ଶୈଶବ ସ୍ମୃତି ସ୍ମରଣ-କରି କବି ଲେଖିଛନ୍ତି—"ଜୀବନ ଗୋଟିଏ ନାଟକ, ମୁଁ ଚକାଭଉଁରି ଖେଳୁଥିଲି ଗୋଟିଏ ବୃତ୍ତରେ—ସେଇ ବୃତ୍ତରେ ବୋଉ, ନନା, କଷରା ବଳଦ, ବୁଣା ବିଛୁ କଟା, ସଂକୀର୍ତ୍ତନ, ମଣ୍ଡଛାମେଳା ପର୍ବପର୍ବାଣୀ, ଜୀବନର ଗତାନୁଗତିକ ଧାରାରେ ବିଧାତା ହସ୍ତକ୍ଷେପ କଲା । ନନା ଟିର୍ଣ୍ଣି ଗାଁର ମହାଦେବ କପିଳନାଥଙ୍କୁ ସ୍ୱପ୍ନରେ ଦେଖିଲେ, ଦେବଦେବ ନନାଙ୍କୁ କହିଲେ,. ପୁଅକୁ ଘରେ ବସାଇଛୁ କାହିଁକି ? ପାଠ ପଢ଼ା" । ଏଇ ସ୍ୱପ୍ନରେ ବିଶ୍ୱାସ କରି ପିତା କୃଷ୍ଣବିହାରୀଙ୍କୁ ଭୁବନେଶ୍ୱର ମାଇନର୍ ସ୍କୁଲରେ ପଢ଼ାଇବା ପାଇଁ ନେଇଗଲେ । ଏହା ୧୯୨୭ ର କଥା । ପ୍ରଧାନ ଶିକ୍ଷକ ଅନାଥବନ୍ଧୁ ମହାନ୍ତିଙ୍କ ସହିରେ ମାଇନର୍ ସ୍କୁଲରୁ ପାସ୍ କରିବାପରେ ସେ ଗୋଟିଏ ପ୍ରାଥମିକ ସ୍କୁଲର ଶିକ୍ଷକ ହେବାପାଇଁ ଯାଇଥିଲେ । ମାତ୍ର ଶିକ୍ଷକତା କରିବା ତାଙ୍କ ଭାଗ୍ୟରେ ଘଟିନଥିଲା । ନିମାପଡ଼ା ମାଇନର୍ ସ୍କୁଲରେ ନୂଆହୋଇ ଖୋଲିଥିବା ଅଷ୍ଟମ ଶ୍ରେଣୀରେ ସେ ଅଧ୍ୟୟନ କରିଥିଲେ । ଏହା ୧୯୩୧ ମସିହା । ଏଇ ହାଇସ୍କୁଲର ଛାତ୍ରଥିବା ସମୟରେ କାବ୍ୟ

କବିତା ଏପରିକି ଉପନ୍ୟାସ ଲେଖାରେ ହାତ ଦେଇଥିଲେ । ହାଇସ୍କୁଲ ଜୀବନରେ ସାହିତ୍ୟସେବା ଓ ଗୃହଶିକ୍ଷକତା ଉଭୟ ସେ କରୁଥିଲେ । ପ୍ରତିଦିନ ଛଅ ମାଇଲ ପଥ ଚାଲି ଚାଲି ସ୍କୁଲକୁ ଯାଉଥିଲେ ଓ ଫେରୁଥିଲେ ।

ଏହି ସମୟରେ ମାତ୍ର ଉଣେଇଶ ବର୍ଷ ବୟସରେ ତାଙ୍କର ପିତୃବିୟୋଗ ଘଟି-ଥିଲା । ଏହି ଅନୁଭୂତି ବର୍ଣ୍ଣନାକରି କବି ଲେଖିଛନ୍ତି, "ସେ ସମୟରେ ମୋର ଦୁଃଖକୁ ଘନତର କରିବାଲାଗି ପିତୃବିୟୋଗ ଘଟିଥିଲା । ମୁଁ କାନ୍ଦିପାରି ନଥିଲି । ନନାଙ୍କ ବର୍ଣ୍ଣ ଓ ଆକାର ମୁଁ ନେଇଥିଲି । ତାଙ୍କ କବିତ୍ୱର କିଂଚିତ୍ ଉତ୍ତରାଧିକାରୀ ହୋଇଥିଲି । ହଠାତ୍ ନାନାଙ୍କ ମୃତ୍ୟୁ ଓ ବୋଉର ବୈଧବ୍ୟରୂପ ମନରେ ଗଭୀର ରେଖାପାତ କରି-ଥିଲା । ଘୋର ବୈରାଗ୍ୟ ଆସିଲା । ସଂସାର ଛାଡ଼ି ସନ୍ନ୍ୟାସୀ ହୋଇଯିବା ଚିନ୍ତା ମନରେ ଉଦିତ ହେଲା" ।

ହାଇସ୍କୁଲ ଛାତ୍ର ଜୀବନରେ ୧୯୩୫ରେ କବି ମାୟାଧର ମାନସିଂହ କବିଙ୍କର ଶିକ୍ଷକ ଥିଲେ ଓ ତାଙ୍କଠାରୁ ପ୍ରଥମେ ରବୀନ୍ଦ୍ରକବିତାର ସ୍ୱାଦ ଲାଭ କରିଥିଲେ । ନିମାପଡ଼ାର ଅନ୍ୟାନ୍ୟ ଶିକ୍ଷକଙ୍କ ମଧ୍ୟରେ ଥିଲେ ସତ୍ୟବାଦୀର ପଣ୍ଡିତ ବାସୁଦେବ ମହାପାତ୍ର । ଏଇ ନିମାପଡ଼ା ସ୍କୁଲର ଛାତ୍ର ଥିବା ସମୟରେ ନିଜ ଜୀବନକୁ ବିପନ୍ନକରି କୁଶଭଦ୍ରାର ବନ୍ୟାରେ କବି ବନ୍ୟାର୍ତ୍ତମାନଙ୍କର ସେବା କରିଥିଲେ । ଏହି ସମୟରେ ମହାତ୍ମାଗାନ୍ଧୀ ବେରବୋଇକୁ ଆସିଥିଲେ । ନେହେରୁ, ପଟେଲ, ରାଜେନ୍ଦ୍ର ପ୍ରସାଦ ଓ ରାଜଗୋପାଳଚାରୀ ପ୍ରଭୃତିଙ୍କ ସହିତ ମହାତ୍ମା ଗାନ୍ଧୀଙ୍କୁ ଦେଖିବାର ପ୍ରଥମ ସୌଭାଗ୍ୟ କବିଙ୍କର ଘଟିଥିଲା । ୧୯୩୬ରେ କବି ରେଭେନ୍ସା କଲେଜରେ ପଢୁଥିବା ସମୟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ଏହି ସମୟରେ କବି ଉତ୍କଳୀୟ ଦେଶାତ୍ମ-ବୋଧକ କିଶୋର କବିତା ରଚନା କରିଥିଲେ । ଆଇ. ଏ ଶ୍ରେଣୀରେ ଇତିହାସ, ସଂସ୍କୃତ ଓ ତର୍କଶାସ୍ତ୍ର ତାଙ୍କର ଅଧିତବ୍ୟ ବିଷୟ ଥିଲା । ଅଧ୍ୟାପକ ବିପିନ ବିହାରୀ ରାୟ କଲେଜ ଜୀବନରେ କବିଙ୍କୁ ବିଶେଷଭାବେ ପ୍ରଭାବିତ କରିଥିଲେ । ଆଇ. ଏ ପରୀକ୍ଷା ଦେଇସାରି ଗୋଦାବରୀଶଙ୍କ ନବଗଠିତ ବାଣପୁର ଉଚ୍ଚବିଦ୍ୟାଳୟରେ ମାସିକ ପଚିଶିଟଙ୍କା ବେତନରେ ସହକାରୀ ଶିକ୍ଷକ ଭାବରେ ସେ ଯୋଗଦେଇଥିଲେ । ବାଣପୁର ହାଇସ୍କୁଲରେ ରହଣି କାଳରେ କବି ଚିଲିକାହ୍ରଦର ସୌନ୍ଦର୍ଯ୍ୟ ଦେଖିଥିଲେ । ବାଣପୁର ହାଇସ୍କୁଲର ସହକର୍ମୀଙ୍କ ମଧ୍ୟରେ ଥିଲେ ଶ୍ରୀଧର ଦାଶ ଓ ପରବର୍ତ୍ତୀ କାଳର କମ୍ୟୁନିଷ୍ଟ ନେତା ଶ୍ରୀ ବିଜୟ ଚନ୍ଦ୍ର ଦାଶ । ବାଣପୁରରେ ମାତ୍ର ଦୁଇମାସ ଶିକ୍ଷକତା କରି ସେଇ ଅର୍ଥରେ ରେଭେନ୍ସା କଲେଜରେ ବି. ଏ ଶ୍ରେଣୀରେ ନାମ ଲେଖାଇଥିଲେ । ବି. ଏ ଶ୍ରେଣୀରେ କବିଙ୍କର ସହପାଠୀ ଥିଲେ

ଦୁଇ ପରିଚିତ କବି ସଚ୍ଚି ରାଉତରାୟ ଓ ବିନୋଦ ନାୟକ । ବି. ଏ ଶ୍ରେଣୀର ଛାତ୍ର ଥିବା ସମୟରେ 'ସହକାର' ଓ 'ଜହ୍ନମାମୁଁ'ରେ ଯଥାକ୍ରମେ 'କଏଦୀ' ଓ 'ବେଙ୍ଗୁଲି ବାହାଦୁର' କୃଷ୍ଣବିହାରୀଙ୍କର ପ୍ରଥମ କବିତା ପ୍ରକାଶ ପାଇଥିଲା । ଜହ୍ନମାମୁଁର ସମ୍ପାଦକ ଶ୍ରୀ ବାଳକୃଷ୍ଣ କରଙ୍କ ସହିତ କବିଙ୍କର ଏହି ସମୟରେ ପରିଚୟ ଘଟିଥିଲା ଓ ସହକାରରେ କବି ନିୟମିତ ଲେଖୁଥିଲେ ।

ଭ୍ରମଣ ଥିଲା ତାଙ୍କର ଅତ୍ୟନ୍ତ ପ୍ରିୟ । ବି. ଏ ପରୀକ୍ଷା ଦେଇ ସେ ସାତକୋଶିଆ ଗଣ୍ଡ ଭ୍ରମଣ କରିଥିଲେ ଓ ଲେଖିଥିଲେ 'ସାତକୋଶିଆରେ ସଂଜ' । ଦଶପଲ୍ଲା ରାଜାଙ୍କୁ ଗୋଟିଏ କବିତା ଭେଟିଦେଇ କବି ସାତକୋଶିଆ ଭ୍ରମଣର ସମସ୍ତ ସୁଯୋଗ ରାଜାଙ୍କଠାରୁ ଗ୍ରହଣ କରିଥିଲେ ।

ରେଭେନ୍ସା କଲେଜରେ ବି. ଏ ଶ୍ରେଣୀର ଛାତ୍ର ଥିବା ସମୟରେ ଅଧ୍ୟାପକଙ୍କ ମଧ୍ୟରେ ପ୍ରାଣକୃଷ୍ଣ ପରିଜା, ମୋହିନୀ ମୋହନ ସେନାପତି, ବିପିନ ବିହାରୀ ରାୟ, ରତ୍ନାକର ପତି, କୃତ୍ତିବାସ ସାମନ୍ତରାୟ, ନାରାୟଣ ମୋହନ ଦେ, ଘନଶ୍ୟାମ ଦାଶ, ଆର୍ତ୍ତବଲ୍ଲଭ ମହାନ୍ତି, କାଶୀନାଥ ଦାଶ ଓ ଲକ୍ଷ୍ମୀକାନ୍ତ ଚୌଧୁରୀ ପ୍ରଭୃତିଙ୍କ ବ୍ୟକ୍ତିତ୍ୱ କବିଙ୍କୁ ପ୍ରଭାବିତ କରିଥିଲା । ବି. ଏ ଶ୍ରେଣୀରେ ସଂସ୍କୃତ ଅନର୍ସ ଓ ଇତିହାସକୁ ନିଜର ଅଧିତବ୍ୟ ବିଷୟ ଭାବରେ ବାଛି ନେଇଥିଲେ । ରେଭେନ୍ସା କଲେଜର ଛାତ୍ରଜୀବନ ବିଶେଷ ସଂଘର୍ଷମୟ ଥିଲା । ଘରୋଇ ଟିଉସନ୍ ଆୟରେ ପ୍ରାୟ କବିଙ୍କୁ ଉଚ୍ଚଶିକ୍ଷାର ବ୍ୟୟ କେବଳ ବହନ କରିବାକୁ ପଡୁଥିଲା ତାହା ନୁହେଁ, ପାରିବାରିକ ବ୍ୟୟ ଓ ବିଶେଷ ଭାବରେ ସାନଭାଇ ଉଦୟନାଥଙ୍କର ଅଧ୍ୟୟନର ବ୍ୟୟ ଆଂଶିକ ଭାବେ ବହନ କରିବାକୁ ପଡୁଥିଲା । ବି. ଏ ଶ୍ରେଣୀର ଶେଷବର୍ଷ ପୂର୍ବଛାତ୍ରାବାସର ତତ୍ତ୍ୱାବଧାରକ ଡଃ ବଳଭଦ୍ର ପ୍ରସାଦଙ୍କ ଆନୁକୂଲ୍ୟରେ ପୂର୍ବଛାତ୍ରାବାସରେ ରହିବାର ସୁଯୋଗ ପାଇଥିଲେ । ବି. ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ୧୯୩୯ରେ କବି ପ୍ରଥମେ ସରକାରୀ ଚାକିରୀ ପାଇଁ ଉଦ୍ୟମ କରିଥିଲେ । ମାତ୍ର କୃତକାର୍ଯ୍ୟ ହୋଇନଥିଲେ । ଏହି ସମୟରେ ଦୈବାତ୍ ଥରେ ପ୍ରାଣକୃଷ୍ଣ ପରିଜାଙ୍କ ସହିତ ତାଙ୍କର ସାକ୍ଷାତ୍ ହେଲା ଓ ପରିଜାସାହେବ କହିଲେ 'ତୁମରିତ ସାହିତ୍ୟ ଦିଗଟି ଭଲ ଅଛି, ଓଡ଼ିଆରେ ଏମ : ଏ ପଢ଼ । ଅନର୍ସ ଶ୍ରେଣୀ ଖୋଲିବାର ଅଛି, ଚାକିରୀ ମିଳିଯିବ । ସେତେବେଳେ ଓଡ଼ିଆରେ ଏମ୍.ଏ ପଢିବାର କୌଣସି ବ୍ୟବସ୍ଥା ନଥିଲା । ପୁରୀର ପ୍ରସିଦ୍ଧ ପଣ୍ଡିତ ସ୍ୱନାମଧନ୍ୟ ବିଦ୍ୟାବିନୋଦ ମଧୁସୂଦନ ଦାଶ କବିଙ୍କୁ ଏମାର ମଠର ମହନ୍ତଙ୍କ ନିକଟକୁ ନେଇ ଯାଇଥିଲେ । ମହନ୍ତଙ୍କ ସନ୍ତୁସାମାନ୍ୟ ଆର୍ଥିକ ଦାନରେ କଲିକତାରେ ଓଡ଼ିଆ ଏମ୍.ଏ. ଅଧ୍ୟୟନପାଇଁ

ସେ ଯାଇଥିଲେ । ଏହା ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟ । କଲିକତାରେ ରହଣିକାଳରେ ପଣ୍ଡିତ ବିନାୟକ ମିଶ୍ର ଓ ଅଧ୍ୟାପକ ମହେଶ୍ୱର ଦାସ ବିଶେଷ ସହାୟତା କରିଥିଲେ । ସ' ଓ୍ୱାଲସ୍ କମ୍ପାନୀ ଆନୁକୂଲ୍ୟରେ ପ୍ରତିଷ୍ଠିତ ବ୍ରଜବନ୍ଧୁ ନୈଶ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ପଦରେ କୁଞ୍ଜବିହାରୀ ଯୋଗ ଦେଇଥିଲେ । ସେଠାରେ ଶ୍ରମିକଙ୍କ ମେଳରେ ରହି ଓ ଯତ୍‌ସାମାନ୍ୟ ପାରିଶ୍ରମିକ ନେଇ କବି ଦେଶସେବା, ଶ୍ରମିକଙ୍କ ମଧ୍ୟରେ ଶିକ୍ଷାବିସ୍ତାର ସଙ୍ଗେ ନିଜର ଉଚ୍ଚଶିକ୍ଷାପାଇଁ ଏକାଗ୍ର ସାଧନାରେ ବ୍ରତୀ ହୋଇପାରିଥିଲେ । ମୋ କାହାଣୀର ଭାଷାରେ, "ପୂରାପୂରି ଗୋଟିଏ ବର୍ଷ ସାଧାରଣଙ୍କ ମେଳରେ ମୋର କଟିଛି । ମୁଁ ସେମାନଙ୍କ ସଙ୍ଗେ ଜଣେ ହୋଇ ବସିଛି, ଉଠିଛି, ଖାଇଛି, ଶୋଇଛି, ଧନିନାଥ ମେଳାରେ, ପଞ୍ଚାନନ ମେଳାରେ, ଯାତ୍ରା ଥିଏଟର୍‌ରେ ଏକମନ, ଏକପ୍ରାଣ ହୋଇ ଯୋଗ ଦେଇଛି । ଗଣେଶ ପୂଜା, ସରସ୍ୱତୀ ପୂଜାରେ ପଂକ୍ତି ଭୋଜନରେ ବସିଛି । ସେମାନଙ୍କୁ ବୁଝିଛି ଓ ନାନା ସଭାସମିତିରେ ବୁଝାଇବାକୁ ଚେଷ୍ଟାକରିଛି । ଯେତିକି ଶ୍ରଦ୍ଧାକରିଛି, ତାର ବହୁଗୁଣ ପାଇଛି । ଉଚ୍ଚ ସମ୍ମାନିତ ସ୍ତରକୁ ସେମାନେ ମୋତେ ଟେକି ଧରିଛନ୍ତି ।" ( ମୋ କାହାଣୀ ପୃ. ୧୨୭ ) ଏହି ସମୟରେ କବି କଲିକତାରେ ନାନା ସାଂସ୍କୃତିକ ଓ ସାଂଗଠନିକ କାର୍ଯ୍ୟରେ ଯୋଗ ଦେଇଥିଲେ । ପଣ୍ଡିତ ବିନାୟକ ମିଶ୍ରଙ୍କ ସଭାପତିତ୍ୱ ଓ କୁଞ୍ଜବିହାରୀ ଓ ଆକୁଳ ମିଶ୍ରଙ୍କ ସମ୍ପାଦକତ୍ୱରେ ପ୍ରବାସୀ ଉତ୍କଳ ସାହିତ୍ୟ ସମ୍ମିଳନୀ ୧୯୪୧ରେ ଦୁଇଦିନ ଧରି ଅନୁଷ୍ଠିତ ହୋଇଥିଲା । ବସ୍ତୁତଃ କଲିକତାରେ ପ୍ରବାସୀ ଉତ୍କଳ ସାହିତ୍ୟ ପରିଷଦ ନାମରେ ଏକ ସାହିତ୍ୟ ପରିଷଦ ନିୟମିତ ଭାବରେ କାର୍ଯ୍ୟକରୁଥିଲା । ଏହି ସାହିତ୍ୟପରିଷଦରେ କବି ସଭାପତି ଓ ସୋମନାଥ ମହାନ୍ତି ସାଧାରଣ ସମ୍ପାଦକ ଥିଲେ । ଏହି ପରିଷଦ ପକ୍ଷରୁ ଓଡ଼ିଶାର କବି ଶିଳ୍ପୀ ଓ ସାହିତ୍ୟିକମାନଙ୍କୁ ସମ୍ବର୍ଦ୍ଧନା ଦିଆ ହେଉଥିଲା । ୨୧/୧/୪୧ ରେ ଅଶ୍ୱିନୀ କୁମାରଙ୍କୁ ନାଟ୍ୟଭାରତୀ ଉପାଧି ଓ ରୂପାକଲମ ଉପହାର ଦିଆ ହୋଇଥିଲା । ଏହି ସମୟରେ କଲିକତାରେ ଓଡ଼ିଶା ଦେଶ ମିଶ୍ରଣ ପାଇଁ ଏକ ସମିତି ଗଠିତ ହୋଇଥିଲା । ଏହି ସମିତି ପକ୍ଷରୁ କବିଙ୍କ ରଚିତ 'ଛିନ୍ନମସ୍ତା' ଉଦ୍‌ବୋଧନ ଗୀତିକା ପ୍ରକାଶିତ ହୋଇଥିଲା । ଏହା ଓଡ଼ିଆ ଜାତୀୟ ଜୀବନର ଗୀତି ବୋଲି ପ୍ରଶଂସିତ ହୋଇଥିଲା ।

କଲିକତା ବିଶ୍ୱବିଦ୍ୟାଳୟରେ ଏମ୍.ଏ. ଅଧ୍ୟୟନକାଳରେ ୧୯୪୦ ଡ଼ିସେମ୍ବର ମାସରେ କବି ଉତ୍ତର ଭାରତ ଓ ଦିଲ୍ଲୀ ଭ୍ରମଣ କରିଥିଲେ । କଲିକତା ରହଣୀର ପ୍ରଥମ ବର୍ଷାଧିକ କାଳ କୁଞ୍ଜବିହାରୀ ନର୍ଥବ୍ରିଟିସ୍ ଇନ୍‌ସୁରେନ୍‌ସ୍ କମ୍ପାନୀର ଭିତର ଗୋଟିଏ ଟିଣଘରେ ରହୁଥିଲେ । କବି ନିଜ ଦିନ ଲିପିରେ ଲେଖିଛନ୍ତି—"ଟିଣଘରଟି ବିଏଁ ଓସାର ଓ ଦିନ ବିଏଁ ଲମ୍ବା । ଜଣେ ଶୋଇପାରିବେ, ଦୁଇଜଣ ବସିପାରିବେ । ଏଥିରେ ଖଣ୍ଡିଏ ଭଙ୍ଗା କାମ୍ବିସ୍ ଖଟ । ତାହାର ଉପରେ ଓଡ଼ିଶାର କେତେ ବିଶିଷ୍ଟ ଲୋକ ବସି ବସି

ଯାଇଥିଲେ ।'' ଏହିକାଳରେ ଲିଖିତ କେତେ କବିତା ଓ ପ୍ରବନ୍ଧ ବିଶିଷ୍ଟ ପତ୍ରପତ୍ରିକାରେ ପ୍ରକାଶ ପାଉଥିଲା । ସେଥିମଧ୍ୟରୁ ମାଷ୍ଟ୍ରାଧର ମାନସିଂହଙ୍କ 'ସମର ବିମୁଖ' କବିତାର ଉତ୍ତର ରୂପେ ଲିଖିତ ''ସମର ସମ୍ମୁଖ'' (୧୦/୯/୪୦) 'ନବଭାରତ'ରେ (୭ମ ବର୍ଷ ଦ୍ୱିତୀୟ ସଂଖ୍ୟା) ପ୍ରକାଶ ପାଇଥିଲା । କଲିକତା ଅଧ୍ୟୟନ କାଳରେ କବି ନିୟମିତ ଦିନ ଲିପି ଲେଖୁଥିଲେ । କଲିକତା ଅଧ୍ୟୟନର ଶେଷବର୍ଷ ସୁପରିଟେଣ୍ଡେଣ୍ଟ ମହେଶ୍ୱର ଦାସଙ୍କ ଆନୁକୂଲ୍ୟରେ କଲିକତା ବିଶ୍ୱବିଦ୍ୟାଳୟ ଅନୁମୋଦିତ ଶ୍ରୀ ଗୋପାଳ ମଲ୍ଲିକ ଲେନ୍ ମେସ୍‌ରେ ସେ କଟାଇଲେ ଓ ମନପ୍ରାଣ ଦେଇ ଅଧ୍ୟୟନବ୍ରତ ପାଳନକରିଥିଲେ । କଲିକତା ବିଶ୍ୱବିଦ୍ୟାଳୟରୁ ୧୯୪୧ ରେ ଓଡ଼ିଆରେ ପ୍ରଥମ ଶ୍ରେଣୀ ଓ ସମଗ୍ର ଭାରତୀୟ ଭାଷା ବିଭାଗରେ ସର୍ବୋଚ୍ଚ ନମ୍ବର ରଖି ଚନ୍ଦ୍ରମଣି ଦେବୀ ଓ ଶ୍ରୀ ନାଥ କୁଣ୍ଡୁ ସ୍ୱର୍ଣ୍ଣପଦକ ଓ ଦୁଇଶହ ଟଙ୍କା ପୁରସ୍କାର ପାଇଲେ । ଏହି ଅର୍ଥକୁ କୌଣସି ବ୍ୟକ୍ତିଗତ ବିଳାସରେ ବ୍ୟୟ ନ କରି ଏକସେଟ୍ ରବୀନ୍ଦ୍ର ରଚନାବଳୀ କିଣିଥିଲେ । ଫେବୃୟାରୀ ୨୮, ୧୯୪୨ରେ ଅନୁଷ୍ଠିତ ସମାବର୍ତ୍ତନ ଉତ୍ସବରେ ଯୋଗଦେଇ ସେ ଏହିସବୁ ପୁରସ୍କାର ଓ ଉପାଧି ଲାଭକରିଥିଲେ । ସେହିବର୍ଷ ସମାବର୍ତ୍ତନ ଉତ୍ସବରେ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ କଲିକତା ବିଶ୍ୱବିଦ୍ୟାଳୟରୁ ଡି.ଲିଟ୍. ଉପାଧି ପାଇଥିଲେ ।

**କର୍ମ ସଂଧାନ :—**

୧୯୪୧ ମସିହାରେ କଲିକତାରେ ଛାତ୍ରଜୀବନର ଅବସାନ ସଙ୍ଗେ ସଙ୍ଗେ କବି ଗ୍ରାମକୁ ନଫେରି ନୟାଗଡ଼ ରାଜକୁମାରଙ୍କ ଗୃହଶିକ୍ଷକ ରୂପେ ଯୋଗଦେବା ପାଇଁ ରାଂଚି ଯାତ୍ରା କରିଥିଲେ । ନେପାଳର ରାଜକନ୍ୟା ଓ ନୟାଗଡ଼ର ରାଣୀ ହେମପ୍ରଭା ଲକ୍ଷ୍ମୀ ରାଜାଙ୍କ ସହିତ ମତାନ୍ତର ଘଟିବାରୁ ନୟାଗଡ଼ ଛାଡ଼ି ରାଂଚିରେ ଅବସ୍ଥାନ କରୁଥିଲେ । ରାଂଚିରେ ପ୍ରାୟ କବି ଏକବର୍ଷ ରହିଥିଲେ । ସେ କାଳେ ରାଂଚିରେ ବିହାର ଓଡିଶାର ଆକାଉଣ୍ଟାଣ୍ଟ୍ ଜେନେରାଲ୍‌ଙ୍କ ଅଫିସ୍ ଥିଲା । ତେଣୁ ବହୁ ବିଶିଷ୍ଟ ଓଡ଼ିଆ କର୍ମଚାରୀ ରାଂଚିରେ ରହୁଥିଲେ । ରାଂଚି ରହଣି କାଳରେ କବି ବହୁ ବିଶିଷ୍ଟ ସାହିତ୍ୟ ଗ୍ରନ୍ଥ ପାଠକରିଥିଲେ । ପ୍ରାକୃତିକ ସୌନ୍ଦର୍ଯ୍ୟପୂର୍ଣ୍ଣ ସ୍ଥାନରେ ଭ୍ରମଣ କରିଥିଲେ ଓ ବହୁ ପ୍ରକୃତିକବିତା ଓ 'କର୍ମଫଳ' ନାମରେ ଏକ ଉପନ୍ୟାସ ରଚନା କରିଥିଲେ । ରାଂଚିର ଗୃହଶିକ୍ଷକତା କାଳରେ ପୁରୀର କ୍ଷେତ୍ର ମୋହନ ଶତପଥୀଙ୍କ ଜ୍ୟେଷ୍ଠକନ୍ୟା ଶ୍ରୀମତୀ କଳାମଣିଙ୍କ ସହିତ ତାଙ୍କର ବିବାହ ହୋଇଥିଲା । କଳାମଣିଙ୍କୁ କବି ଶ୍ରଦ୍ଧାରେ ପ୍ରେମଲତା ନାମ ଦେଇଥିଲେ ଓ ଶ୍ରୀମତୀ ପ୍ରେମଲତା କବିଙ୍କ ସାହିତ୍ୟସାଧନାର ଯେ କେବଳ ଆଜୀବନ ସାଥୀ ହୋଇଛନ୍ତି, ତାହାନୁହେଁ, ନିଜେ ମଧ୍ୟ ଜଣେ ସୁଲେଖିକା ରୂପେ ପ୍ରତିଷ୍ଠା ଲଭି କରିଛନ୍ତି ।

ଓଡ଼ିଶା ବାହାରେ ରହି ଓଡ଼ିଶାରୁ କୌଣସି କର୍ମଲାଭର ସୁଯୋଗ ପାଉନାହାନ୍ତି ବୋଲି କବିଙ୍କ ମନରେ ଏକ ଧାରଣା ଦୃଢ ହୋଇଥିଲା । ସେ ସମୟରେ କୃଷ୍ଣବିହାରୀ ହିଁ ଥିଲେ ଓଡ଼ିଆରେ ପ୍ରଥମଶ୍ରେଣୀ ଲାଭକରିଥିବା ଏକମାତ୍ର ବ୍ୟକ୍ତି । ତଥାପି ୧୯୪୨ ରେ ରେଭେନ୍‌ସା କଲେଜ୍‌ରେ ଏକ ଓଡ଼ିଆ ଅଧ୍ୟାପକ ପଦ ଲାଭ କରିବା ସୁଯୋଗରୁ ସେ ବଂଚିତ ହୋଇଥିଲେ । ତେଣୁ ସେ ଦୁଃଖ ଚିତ୍ତ ଓଡ଼ିଶାକୁ ଚାଲିଆସିଲେ ।

୧୯୪୨ରେ ଚାରିମାସ ପାଇଁ ବାରିପଦା ହାଇସ୍କୁଲରେ ତାଙ୍କୁ ଶିକ୍ଷକତା କରିବାକୁ ପଡ଼ିଥିଲା । ଏହି ସମୟରେ ବ୍ୟକ୍ତିଗତ ଉଦ୍ୟମରେ ସଂସ୍କୃତ ଅଧ୍ୟୟନ କରି ସଂସ୍କୃତରେ ମଧ୍ୟ ଏମ୍‌.ଏ. ଉପାଧି ସେ ଲାଭ କରିଥିଲେ । କଟକ ଟ୍ରେନିଂ କଲେଜ୍‌ର ଅଧ୍ୟକ୍ଷ ମହେଶ ପ୍ରଧାନଙ୍କ ଅନୁରୋଧରେ ସେହି ବର୍ଷ ତାଳଚେରର ପଟ୍ଟାୟତ ପ୍ରମୋଦଚନ୍ଦ୍ର ଦେବଙ୍କର ପୁତ୍ରମାନଙ୍କ ଗୃହଶିକ୍ଷକ କାର୍ଯ୍ୟ ଗ୍ରହଣ କରିଥିଲେ । ଏକ ବର୍ଷରୁ ଊର୍ଦ୍ଧ୍ୱକାଳ ସେ ତାଳଚେରରେ ରହିଥିଲେ । ତାଳଚେରର ରାଜା କିଶୋରଚନ୍ଦ୍ର ହରିଚନ୍ଦନଙ୍କ ଆନୁକୂଲ୍ୟରେ 'ପ୍ରଭାତୀ' କବିତା ଗ୍ରନ୍ଥଟି ପ୍ରକାଶିତ ହୋଇଥିଲା ।

## ଅଧ୍ୟାପକ ଜୀବନର ଆରମ୍ଭ :—

୧୯୪୪ ଜୁଲାଇରେ ବ୍ରହ୍ମପୁର ଖଲ୍ଲିକୋଟ କଲେଜ୍‌ରେ ସେ ଓଡ଼ିଆ ଅଧ୍ୟାପକଭାବେ ଯୋଗଦେଇଥିଲେ । ସେଠାରେ ପ୍ରାୟ ଦୁଇବର୍ଷ କଟିଥିଲା । ୧୯୪୪ ରେ ବ୍ରହ୍ମପୁରରେ ଅନୁଷ୍ଠିତ ଉତ୍କଳସମ୍ମିଳନୀରେ କୃଷ୍ଣବିହାରୀ ସକ୍ରିୟଭାବେ ଅଂଶ ଗ୍ରହଣ କରିଥିଲେ । ଦକ୍ଷିଣ ଭାରତର ପ୍ରବାସୀ ଓଡ଼ିଆ ଅଞ୍ଚଳରେ ଓଡ଼ିଆ ସଂସ୍କୃତି ଓ ସାହିତ୍ୟର ପ୍ରଚାର କରିଥିଲେ । ବଡ଼ଖେମୁଣ୍ଡି ରାଜା ଶ୍ରୀ ରାମଚନ୍ଦ୍ର ଅନଙ୍ଗଭୀମଦେବ, ଧରାକୋଟ ରାଜା ପଦ୍ମନାଭ ସିଂହଦେଓଙ୍କ ଅର୍ଥରେ "ପାଷାଣ ଚରଣେ ରକ୍ତ" ଓ "କଲକଲ୍ଲୋଳ" କବିତା ପୁସ୍ତକଦ୍ୱୟ ପ୍ରକାଶ କରିବା ସମ୍ଭବ ହୋଇଥିଲା ।

## ଓଡ଼ିଶା ଶିକ୍ଷାବିଭାଗରେ ଯୋଗଦାନ :—

୧୯୪୬ ଜାନୁୟାରୀରେ ସଂସ୍କୃତ ଟୋଲର ପରିଦର୍ଶକ ଭାବରେ କୃଷ୍ଣବିହାରୀ ପ୍ରଥମେ ସରକାରୀ କାର୍ଯ୍ୟରେ ଯୋଗ ଦେଇଥିଲେ । ସେହି ବର୍ଷ ପରିଦର୍ଶକ ସ୍ଥାନରେ ଅଧ୍ୟକ୍ଷ (ସୁପରିଣ୍ଟେଣ୍ଡେଣ୍ଟ) ପଦ ସୃଷ୍ଟି ହେଲା । ଏହି ପଦରେ ଯୋଗଦେଇ କୃଷ୍ଣବିହାରୀ ପ୍ରଥମେ ପଦସ୍ଥ ଅଫିସର ହୋଇଥିଲେ । ପୁରୀରେ ପ୍ରାୟ ଦେଢ଼ବର୍ଷ ରହଣିକାଳରେ ନାନା ସାଂସ୍କୃତିକ ଓ ସାହିତ୍ୟିକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ଓଡ଼ିଶାରେ ସଂସ୍କୃତଶିକ୍ଷାର ବିକାଶ ଲାଗି ପଣ୍ଡିତସମ୍ମିଳନୀ ଓ ଜଗନ୍ନାଥ ଗବେଷଣା ମନ୍ଦିର ପ୍ରତିଷ୍ଠା କରିଥିଲେ । ମହନ୍ତ ଶ୍ରୀ ଗଦାଧର ରାମାନୁଜ ଦାସ ପରିଷଦର ସଭାପତି ଓ ନବ

ଏହାର ସଂପାଦକ ଥିଲେ । ସଂସ୍କୃତିବିଭାଗର ଅଧ୍ୟକ୍ଷ ଭାବରେ ସମଗ୍ର ଓଡ଼ିଶାରେ ଭ୍ରମଣ ଓ ଲୋକସାହିତ୍ୟ ସଂଗ୍ରହ କବିଙ୍କ ଜୀବନର ପ୍ରଧାନ ଘଟଣା । ଏହି କାଳରେ କବିଙ୍କ ସଂଗୃହୀତ ଲୋକଗୀତସବୁ ଗଦାଧର ରାମାନୁଜ ଦାସଙ୍କ ଆନୁକୂଲ୍ୟରେ "ପଲ୍ଲୀପୁଷ୍ପ" ଓ "ପଲ୍ଲୀ ସ୍ୱରଣୀ" ନାମରେ ପ୍ରକାଶିତ ହୋଇଥିଲା । ପୁରୀର ସୁପ୍ରସିଦ୍ଧ ସାହିତ୍ୟିକ ଜଗବନ୍ଧୁ ସିଂହ ଓ କବି ପଦ୍ମଚରଣ ପଟ୍ଟନାୟକଙ୍କ ସାନ୍ନିଧ୍ୟ ସେ ଲାଭ କରିଥିଲେ । ପୁରୀର ତରୁଣ ସାହିତ୍ୟିକମାନଙ୍କ ଯେଉଁ "ତରୁଣ ସାହିତ୍ୟ ପରିଷଦ" ଗଠିତ ହୋଇ ମୁଖପତ୍ର 'ତରଙ୍ଗ' ପ୍ରକାଶ ପାଇଥିଲା ଓ କୁଞ୍ଜବିହାରୀ ଏହାର ଆମୁଖ ରଚନା କରିଥିଲେ କବିତାରେ ।

୧୯୪୭ ଜୁଲାଇ ମାସରେ କୁଞ୍ଜବିହାରୀ ବାଲେଶ୍ୱର ସରକାରୀ ମହାବିଦ୍ୟାଳୟର ଅଧ୍ୟାପକ ପଦରେ ଯୋଗ ଦେଇଥିଲେ ଓ ୧୯୫୦ ଜାନୁୟାରୀ ପର୍ଯ୍ୟନ୍ତ ଏହିଠାରେ ରହିଥିଲେ । ଏହି ସମୟରେ ଫକୀର ମୋହନ ସାହିତ୍ୟ ପରିଷଦ ସଂଗଠନରେ ସେ ବିଶେଷ ଭୂମିକା ଗ୍ରହଣ କରିଥିଲେ । ସେ ଥିଲେ ଏହାର ପ୍ରଥମ ସଭାପତି । ଏହି ପରିଷଦ ଆନୁକୂଲ୍ୟରେ ବାଲେଶ୍ୱରରେ ଏକ ନୂତନ ସାଂସ୍କୃତିକ ଚେତନା ଖେଳଯାଇଥିଲା । ଏହି ପରିଷଦ ଉଦ୍ୟମରେ ଓଡ଼ିଶାର ବିଭିନ୍ନ ମହାବିଦ୍ୟାଳୟକୁ ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିଙ୍କ ନାମରେ ନାମିତ କରିବାର ଚେଷ୍ଟାଯୋଗୁଁ ବାଲେଶ୍ୱର କଲେଜକୁ ଫକୀର-ମୋହନଙ୍କ ନାମରେ ନାମିତ କରାଯାଇଥିଲା । ଏହି ସମୟରେ ଗୁରୁଙ୍କ ସହ ଲଙ୍କାଯାତ୍ରା କବିଙ୍କ ଜୀବନର ଏକ ସ୍ମରଣୀୟ ଘଟଣା । ବାଲେଶ୍ୱର ରହଣି କାଳରେ ଏକ ଦିଗରେ ଦେଶର ସ୍ୱାଧୀନତା ଲାଭ ଓ ଅନ୍ୟ ଦିଗରେ ମହାତ୍ମାଗାନ୍ଧୀଙ୍କ ମୃତ୍ୟୁ ତଥା ଦେଶବିଭାଗ କବିଙ୍କ ମନରେ ଗଭୀର ପ୍ରଭାବ ପକାଇ ଥିଲା ।

## ଶାନ୍ତିନିକେତନ ପର୍ବ :—

ବାରିପଦାରେ ଶିକ୍ଷକ ଥିବା ସମୟରେ ତାଙ୍କର ସହକର୍ମୀ ଅନ୍ୟତମ ଶିକ୍ଷକ ଶ୍ରୀ ପ୍ରହ୍ଲାଦ ପ୍ରଧାନଙ୍କ ସଙ୍ଗେ କବି ଶାନ୍ତିନିକେତନ ଭ୍ରମଣରେ ଆସିଥିଲେ । ଗୁରୁଦେବ ରବୀନ୍ଦ୍ରନାଥଙ୍କ ସ୍ମୃତିଜଡ଼ିତ ଶାନ୍ତିନିକେତନ ଆଶ୍ରମ, ତାର ପ୍ରାକୃତିକ ପରିବେଶ ଓ ବିପୁଳ ଗ୍ରନ୍ଥାଗାର ତାଙ୍କୁ ମୁଗ୍ଧ କରିଥିଲା । ୧୯୪୭ ଜୁଲାଇ ମାସରେ ବିଶ୍ୱଭାରତୀରେ ଓଡ଼ିଆ ଗବେଷଣା ବିଭାଗର ପ୍ରତିଷ୍ଠା ହେଲା । ଶ୍ରୀଯୁକ୍ତ ପ୍ରହ୍ଲାଦ ପ୍ରଧାନ ହେଲେ ଏହାର ପ୍ରଥମ ସଂଗ୍ରାହକ । ଓଡ଼ିଆ ଗବେଷଣା ପାଇଁ ନିଯୁକ୍ତ ହୋଇଥିଲେ ବି ସେ ଚୀନ୍‌ଭାଷା ଶିକ୍ଷା ଓ ବୌଦ୍ଧ ସାହିତ୍ୟ ଗବେଷଣାରେ ନିଜକୁ ନିୟୋଜିତ କରିଥିଲେ ଓ ସେହି ସୂତ୍ରରେ ୧୯୪୯ରେ ସେ ଦୁଇବର୍ଷ ପାଇଁ ଚୀନ୍ ଯାଇଥିଲେ । ଏହି ପଦରେ ୧୯୫୦ ଜାନୁୟାରୀ ୨ରେ କୁଞ୍ଜବିହାରୀ ଯୋଗଦେଲେ । ଶାନ୍ତିନିକେତନରେ ସେ ଦୀର୍ଘ

ଏଗାର ବର୍ଷ ଅତିବାହିତ କରିଥିଲେ । ତାଙ୍କର ଅବସ୍ଥାନ-କାଳରେ ରବୀନ୍ଦ୍ରନାଥଙ୍କ ବିଶ୍ୱଭାରତୀ ୧୯୫୧ରେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ରୂପେ ରୂପାନ୍ତରିତ ହୋଇଥିଲା । ଏହିବର୍ଷ ଏଠାରେ ଆନ୍ତର୍ଜାତୀୟ ବିଶ୍ୱଶାନ୍ତି ପରିଷଦର ଏକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଶାନ୍ତିନିକେତନ ତଥା ବିଶ୍ୱଭାରତୀର ବିକାଶ ପାଇଁ ଭାରତର ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହରୁ ଓ ଶିକ୍ଷାମନ୍ତ୍ରୀ ମୌଲାନା ଆବୁଲ କାଲାମ୍ ଆଜାଦ୍ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ । ଶିକ୍ଷାମନ୍ତ୍ରୀ ଆଜାଦଙ୍କ ସଚିବ ହୁମାୟୁନ୍ କବୀର ବିଶ୍ୱଭାରତୀକୁ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ରୂପାନ୍ତରିତ କରିବାରେ ବିଶେଷ ଭୂମିକା ଗ୍ରହଣ କରିଥିଲେ । ବିଦ୍ୟାଭବନର ଅଧ୍ୟକ୍ଷ ଡଃ ପ୍ରବୋଧ ଚନ୍ଦ୍ର ବାଗ୍‌ଚୀଙ୍କ ଆନୁକୂଲ୍ୟରେ କଲିକତା ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ସ୍ନାତକୋତ୍ତର ଅଧ୍ୟାପନାର ଏକ ଯୁଗର ଅବସାନ କାଳରେ କୁଞ୍ଜବିହାରୀଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ଓ କଠୋର ପରିଶ୍ରମ ଫଳରେ ବିଶ୍ୱଭାରତୀ ବିଦ୍ୟାଭବନରେ ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରତିଷ୍ଠା ସମ୍ଭବ ହୋଇଥିଲା ।

ଓଡ଼ିଆବିଭାଗରେ କେବଳ ଜଣେ ଓଡ଼ିଆ ଶିକ୍ଷାସେବୀରୁ ସାମୟିକ ନିଯୁକ୍ତିରେ ଆସି ଅଧ୍ୟାପକ ରହୁଥିଲେ । କିନ୍ତୁ କୁଂଜବିହାରୀଙ୍କ ଉଦ୍ୟମରେ ଓଡ଼ିଆବିଭାଗର ଦୁଇଜଣ ଅଧ୍ୟାପକ ଜଣେ ପ୍ରାଧ୍ୟାପକ ଓ ଜଣେ ଗବେଷକ ସ୍ଥାୟୀଭାବରେ ରହିବାର ବ୍ୟବସ୍ଥା ହୋଇଥିଲା । ଏଇ ଭାବରେ ବିଶ୍ୱଭାରତୀରେ ସ୍ନାତକୋତ୍ତର ଓଡ଼ିଆବିଭାଗ ଦୃଢ଼ ଭିତ୍ତିରେ ସ୍ଥାପିତ ହୋଇଥିଲା । ଅଧ୍ୟୟନ, ଗବେଷଣା ଓ ଗବେଷଣାପରିଚାଳନା ଦିଗରେ ତାଙ୍କର ସୁଦୂରପ୍ରସାରୀ ଉଦ୍ୟମର ଫଳସ୍ୱରୂପ ବିଶ୍ୱଭାରତୀ ଓଡ଼ିଆ ଗବେଷଣା ବିଭାଗ ପକ୍ଷରୁ ଦଶଗୋଟି ପୁସ୍ତକ ପ୍ରକାଶିତ ହୋଇଥିଲା । କୁଞ୍ଜବିହାରୀ ନିଜେ ଲୋକ-ସାହିତ୍ୟ ସଂଗ୍ରହ ଓ ଗବେଷଣା ଦିଗରେ ବିଶେଷ ମନୋନିବେଶ କରିଥିଲେ । ବିଶ୍ୱ-ଭାରତୀରେ ଯୋଗଦେବାର ଦୁଇବର୍ଷ ପରେ ୧୯୫୪ରେ ସେ ଓଡ଼ିଆ ଲୋକସାହିତ୍ୟ ବିଷୟରେ ଗବେଷଣା-ନିବନ୍ଧ ଲେଖି ପିଏଚ. ଡି. ଉପାଧିରେ ଭୂଷିତ ହୋଇଥିଲେ । ସେକାଳେ ଏହି ଗବେଷଣା-ନିବନ୍ଧଟି ଥିଲା ଓଡ଼ିଆରେ ପ୍ରଥମ ପ୍ରକାଶିତ ଗବେଷଣା-ନିବନ୍ଧ । ଓଡ଼ିଆ ଲୋକସାହିତ୍ୟକୁ ବିଶ୍ୱଦରବାରରେ ପରିଚିତ କରାଇବାପାଇଁ ଇଂରାଜୀରେ ସେ ଏକ ଗ୍ରନ୍ଥ ରଚନା କରିଥିଲେ । ଏହା ସ୍ୱଦେଶ ଓ ବିଦେଶରେ ସମାଦୃତ ହୋଇଥିଲା । ଇଂରାଜୀରେ ଓଡ଼ିଆ-ଲୋକସାହିତ୍ୟକୁ ଅନୁବାଦକରି ପ୍ରଚାରକରିବାର ପ୍ରୟାସ ମଧ୍ୟ ପ୍ରଥମେ କବି ଏଇ ଗ୍ରନ୍ଥରେ କରିଥିଲେ । ଇଟାଲୀର 'East and West' ପତ୍ରିକାର ସମ୍ପାଦକ ଜ୍ୟୁସେପ୍ ଟୁଚି ଓ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟର 'Review of Religion'ର ସମ୍ପାଦକ ଜର୍ଜ ଡବ୍ଲ୍ୟୁ ବ୍ରିଗ୍ସ୍ ଏଇ ଗ୍ରନ୍ଥର ପ୍ରଶଂସା କରିଥିଲେ । ଲୋକସାହିତ୍ୟର ଗବେଷଣା ଫଳରେ ଓଡ଼ିଶା ଓ ଓଡ଼ିଶାର ସଂସ୍କୃତି ପ୍ରତି ପ୍ରାଚ୍ୟ ଓ ପାଶ୍ଚାତ୍ୟର ବହୁ ମନୀଷୀଙ୍କର ଦୃଷ୍ଟି ଆକୃଷ୍ଟ ହେଲା । ୧୯୫୮ରେ ଆଲ୍ଲାହାବାଦ୍‌ଠାରେ

ଅନୁଷ୍ଠିତ ଅଖିଳ ଭାରତୀୟ ଲୋକସଂସ୍କୃତି ସମ୍ମେଳନର ସାହିତ୍ୟବିଭାଗରେ ଓ ୧୯୬୨ରେ ଉତ୍କଳ ସ୍ୱାମୀ ସମ୍ମିଳନୀରେ ଲୋକକଳା ଓ ସଙ୍ଗୀତ ବିଭାଗରେ କୁଞ୍ଜବିହାରୀ ସଭାପତିତ୍ୱ କରିଥିଲେ । ବିଶ୍ୱଭାରତୀରେ ଅବସ୍ଥାନ କାଳରେ ସ୍ନାତକୋତ୍ତର ଶ୍ରେଣୀରେ ଓଡ଼ିଆ ଅଧ୍ୟାପନାକୁ ଦୃଢ଼ ଭିତ୍ତିରେ ପ୍ରତିଷ୍ଠାପାଇଁ ସର୍ବତୋଭାବେ ସେ ପ୍ରୟାସ କରୁଥିଲେ । ତାଙ୍କଦ୍ୱାରା ପରିକଳ୍ପିତ ସ୍ନାତକୋତ୍ତର ପାଠ୍ୟକ୍ରମରେ ମୌଳିକ ଗବେଷଣାକୁ ବିଶେଷ ପ୍ରାଧାନ୍ୟ ଦିଆଯାଉଥିଲା । ସେ ନିଜେ ଓ ତାଙ୍କ ସହକର୍ମୀମାନେ ବହୁ ଶ୍ରମ-ସହକାରେ ପାଠ ପ୍ରସ୍ତୁତକରି ଶ୍ରେଣୀରେ ଅଧ୍ୟାପନା କରୁଥିଲେ । ଏହିସବୁ ଅଧ୍ୟୟନ ଭିତ୍ତିରେ କବି ତଥା ତାଙ୍କ ସହକର୍ମୀମାନେ ଉଚ୍ଚକୋଟୀର ପ୍ରବନ୍ଧମାନ ରଚନା କରୁଥିଲେ । ବିଶ୍ୱଭାରତୀର ଆନ୍ତର୍ଜାତିକ ପୀଠରେ ଓଡ଼ିଆସାହିତ୍ୟ ଓ ସଂସ୍କୃତିର ପ୍ରସାର ତଥା ଗଭୀର ସାହିତ୍ୟପ୍ରୀତି ଜାଗ୍ରତ କରିବାପାଇଁ ତାଙ୍କରି ଉଦ୍ୟମରେ ବିଶ୍ୱ-ଭାରତୀ ଓଡ଼ିଆ ସାହିତ୍ୟ ପରିଷଦ ୧୯୫୯ରେ ଗଠିତ ହୋଇଥିଲା । ଏହି ପରିଷଦରେ ପଠିତ ଓ ଆଲୋଚିତ ରଚନାଗୁଡ଼ିକର ସଂକଳନ 'ଆଧୁନିକ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା' ଓଡ଼ିଶାର ସୁଧୀ ସମାଜରେ ବିଶେଷ ଆଦୃତ ହୋଇଅଛି । ବିଶ୍ୱଭାରତୀର ଅବସ୍ଥାନ କାଳରେ କୁଞ୍ଜବିହାରୀ କେବଳ ଓଡ଼ିଆବିଭାଗରେ ନୁହେଁ, ସଂସ୍କୃତ ଓ ଦର୍ଶନ ବିଭାଗରେ ମଧ୍ୟ ଅଧ୍ୟାପନା କରୁଥିଲେ । ସେତେବେଳେ ବିଶ୍ୱଭାରତୀର ବିଶିଷ୍ଟ ଅଧ୍ୟାପକଙ୍କ ମଧ୍ୟରେ କବି ନିଜର ସ୍ୱତନ୍ତ୍ର ଆସନ ପ୍ରତିଷ୍ଠା କରିଥିଲେ । ଲୋକସାହିତ୍ୟ ସଂଗ୍ରହ ଉଦ୍ଦେଶ୍ୟରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଭ୍ରମଣ ବାର୍ଷିକ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା । ଓଡ଼ିଆ ଲୋକସାହିତ୍ୟ ଓ ପ୍ରାଚୀନ ପାଣ୍ଡୁଲିପି ସଂଗ୍ରହ ଓ ସଂରକ୍ଷଣ ପାଇଁ ବିଶେଷ ଉଦ୍ୟମ ବିଶ୍ୱଭାରତୀରେ ତାଙ୍କ ଦ୍ୱାରା ଆରମ୍ଭ ହୋଇଥିଲା । ଭାରତର ବିଭିନ୍ନ ଦର୍ଶନୀୟ ସ୍ଥାନକୁ ଅଧ୍ୟାପକ ଓ ଛାତ୍ରମାନେ ସାମୂହିକ ଭ୍ରମଣରେ ଯାଉଥିଲେ । ବହୁ ସମୟରେ ଏହି ଦାୟିତ୍ୱ କବିଙ୍କ ଉପରେ ପଡ଼ୁଥିଲା । ଓଡ଼ିଆ ଭ୍ରମଣ ସାହିତ୍ୟକୁ ସମୃଦ୍ଧ କରିବାପାଇଁ ସେ ବିଶେଷ ପ୍ରୟାସୀ ହୋଇଥିଲେ । ବିଶ୍ୱଭାରତୀ ଅବସ୍ଥାନ କାଳରେ କବି "ଲଙ୍କାଯାତ୍ରୀ", "ମୋ ସ୍ୱପ୍ନର କାଶ୍ମୀର", 'ପଥ ଓ ପଥିକ' ଆଦି ଭ୍ରମଣକାହାଣୀ ରଚନା କରିଥିଲେ । ସାହିତ୍ୟର ଅନ୍ୟାନ୍ୟ ବିଭାଗରେ ମଧ୍ୟ ନବ ନବ ସର୍ଜନା ପାଇଁ ସେ ନାନା ପରୀକ୍ଷା କରିଥିଲେ । ରମ୍ୟରଚନା, ନାନା ସ୍ୱାଦର କାବ୍ୟ କବିତା ରଚନାରେ ବିଶେଷ ସାଫଲ୍ୟର ଅଧିକାରୀ ହୋଇଥିଲେ ।

ବିଶ୍ୱଭାରତୀରେ ବାସକାଳରେ ହିନ୍ଦୀସାହିତ୍ୟିକ ହଜାରୀପ୍ରସାଦ ଦ୍ୱିବେଦୀ ଓ ସବୁଜ ଗୋଷ୍ଠୀର ଅନ୍ୟତମ ପ୍ରଥିତଯଶ ଓ ବରିଷ୍ଠ ବଙ୍ଗଳା ସାହିତ୍ୟିକ ଅନ୍ନଦାଶଙ୍କର ରାୟ ଆଦିଙ୍କ ସାନ୍ନିଧ୍ୟ ଓ ସାହଚର୍ଯ୍ୟରେ କୁଞ୍ଜବିହାରୀ ଆସିଥିଲେ । ଶିଳ୍ପୀ ନନ୍ଦଲାଲ ବସୁ,

ପ୍ରବୀଣ ପ୍ରାଚ୍ୟ-ବିଦ୍ୟାବିତ୍ ପଣ୍ଡିତ କ୍ଷିତିମୋହନ ସେନ୍‌ଶାସ୍ତ୍ରୀ ଓ ଡ଼ଃ. ପ୍ରବୋଧ ଚନ୍ଦ୍ର ବାଗ୍‌ଚୀଙ୍କ ସହିତ ତାଙ୍କର ବିଶେଷ ଘନିଷ୍ଠତା ଥିଲା । କୁଞ୍ଜବିହାରୀଙ୍କ "କଥାଟିଏ କହୁଁ" କ୍ଲେକଗଲ୍ପ ସଙ୍କଳନପାଇଁ ଶିଳ୍ପୀଗୁରୁ ନନ୍ଦଲାଲ ସ୍ୱତନ୍ତ୍ର ଭାବରେ ଏକ ଛବି ଆଙ୍କିଥିଲେ । ନନ୍ଦଲାଲ ଓ ପ୍ରବୋଧ ଚନ୍ଦ୍ର ବାଗ୍‌ଚୀ ମାସାଧିକ କାଳ କବିଙ୍କ ଉଦ୍ୟମରେ ପୁରୀରେ ରହି ଓଡ଼ିଶାର କଳା ଓ ସଂସ୍କୃତି ଉପରେ ବିଶେଷ ଅନୁଧ୍ୟାନ କରିଥିଲେ ।

ବୌଦ୍ଧିକତା ସଙ୍ଗେ ହୃଦୟବତ୍ତା, ବିଦ୍ୱତ୍ତା ସଙ୍ଗେ ରସଦୃଷ୍ଟି ବିଶ୍ୱଭାରତୀ ରହଣି କାଳରେ ହିଁ, କବିଙ୍କ ଜୀବନରେ ପୁଷ୍ଟିତା ଲାଭ କରିଥିଲା । ବିଶ୍ୱଭାରତୀର ଦୀର୍ଘ ପ୍ରବାସ ଜୀବନରେ ସାରାଭାରତବର୍ଷ ସହିତ କବିଙ୍କର ଯୋଗ ନିବିଡ଼ ହୋଇଥିଲା । ସେ କାଶ୍ମୀରରୁ କୁମାରୀକା ପର୍ଯ୍ୟନ୍ତ ପଶ୍ଚିମରୁ ପୂର୍ବ ଉପକୂଳ ପର୍ଯ୍ୟନ୍ତ ଏକ ବିଦଗ୍ଧ ମନ ନେଇ ଭ୍ରମଣ କରିଥିଲେ । ମାତ୍ର ତାଙ୍କର ଭାବାତୁର ଦରଦୀ ହୃଦୟ ଏଇ ଦୂର ପ୍ରବାସରୁ ନିଜର ମାତୃଭୂମିର ଅସଲ ରୂପଟିକୁ ଆବିଷ୍କାର କରିପାରିଥିଲା । ସେ ତାଙ୍କର ଗ୍ରାମ ଗବେଷକମାନଙ୍କୁ ଉପଦେଶ ଦେଇ ନାନା ଚିଠି ଲେଖୁଥିଲେ । ଏହିଭଳି ୧୯୫୦ରେ ଗୋଟିଏ ଚିଠିରେ ଲେଖିଥିଲେ "ଗାଁରେ ଅସଲ ସଂସ୍କୃତି ଅଛି, ତାକୁ ଭଲକରି ବୁଝ ।" କୌଣସି ଦୀର୍ଘ ଛୁଟି ପାଇଲେ କବି ନିଜର ପ୍ରିୟଗ୍ରାମକୁ ଫେରିଯାଉଥିଲେ । ଆଧୁନିକ ଯୁଗର ଜଣେ ବୁଦ୍ଧିଜୀବୀଭାବରେ ନୁହେଁ, ଜଣେ ପଲ୍ଲୀଦରଦୀ ମାନବ-ପ୍ରେମୀ ସଂସ୍କାରକ ଓ ଜନସେବକ ଭୂମିକାରେ ତାଙ୍କୁ ଗ୍ରାମରେ ଦେଖିବାକୁ ମିଳୁଥିଲା । ୧୯୫୧ର ଗୋଟିଏ ଚିଠିରୁ ଏହାର ଆଭାସ ମିଳେ । "ପ୍ରତିଦିନ ସକାଳେ କବିତା-ଲେଖା ବଦଳରେ ଧାନକିଣି ଯାଉଛି, କେଙ୍କାବିଲରେ ଗୋଡ଼ରୁ ଫଡାଏ ଉଡ଼ିଗଲାଣି, ଏଣେ ନ୍ୟାୟନିଶାପ ତ ଚାଲିଛି । ଏବେ ତିରିଶ ଖଣ୍ଡ ବ୍ରାହ୍ମଣ ମୌଜା ମୁକ୍ତିପତ୍ର କରି ଡ଼ାକିଥିଲେ...... । ମୁଁ ଯାଇ ଲଙ୍ଗଳ ଉତ୍ସବ କଲି । ଏ ଅଞ୍ଚଳରେ ଖୁବ୍ ଚହଲ ପଡ଼ିଛି, ବ୍ରାହ୍ମଣମାନେ ହଳ ବୁଲଉଛନ୍ତି । ... ... ...'ଗାଉଁଲି ଗୀତ ସଂଗ୍ରହକୁ ଏ ଗ୍ରାମଜୀବନ । ଦିନେ ଏଇ ନ୍ୟାୟ କରୁ କରୁ ରାତିପାଇଲା, ଉପାସରେ ରାତିଟି କଟାଇଲି ।"

ଶାନ୍ତିନିକେତନ ପ୍ରବାସ କାଳରେ କବିଙ୍କ ଜୀବନରେ ନାନା ବ୍ୟକ୍ତିଗତ ଦୁଃଖ ଓ ବିଚ୍ଛେଦ ଘଟିଥିଲା । କବିଙ୍କର ନାନାସ୍ଥାନରେ ଭ୍ରମଣସମୟରେ କବିପତ୍ନୀ ପ୍ରେମଲତା ଶିଶୁସନ୍ତାନମାନଙ୍କୁ ନେଇ ଗ୍ରାମରେ ରହୁଥିଲେ । ବୃଦ୍ଧା ଜନନୀ ଥିଲେ ଘରର ଏକମାତ୍ର ଅଭିଭାବିକା । କବିଙ୍କ ଅନୁପସ୍ଥିତି କାଳରେ ଏକମାତ୍ର ଶିଶୁକନ୍ୟାର ଆକସ୍ମିକ ଭାବରେ ମୃତ୍ୟୁ ଘଟିଥିଲା । ୧୯୫୫ ସେପ୍‌ଟେମ୍ବର ୮ ତାରିଖ ଘୋର ବନ୍ୟା ଦୁର୍ବିପାକକାଳରେ କବିଙ୍କ ଅନୁପସ୍ଥିତିରେ ପ୍ରାଣସମା ଜନନୀ ମଧ୍ୟ ଇହଲୀଳା

ସମ୍ବରଣ କରିଥିଲେ । କିନ୍ତୁ କୌଣସି ବ୍ୟକ୍ତିଗତ ଦୁଃଖ ବିଚ୍ଛେଦ କବିଙ୍କୁ ସାଧନା ପଥରୁ ବିଚଳିତ କରିପାରି ନ ଥିଲା ।

କବି ଥିଲେ ସ୍ୱାଧୀନଚେତା ଏକ ମହାନ୍ ଉଦାର ବ୍ୟକ୍ତିତ୍ୱର ଅଧିକାରୀ । ସେ କେବେ ନିଜକୁ ଜଣେ ସାଧାରଣ ସରକାରୀ କର୍ମଚାରୀ ବୋଲି ଭାବୁ ନଥିଲେ । କୌଣସି ଉପରିସ୍ଥଙ୍କର ଅନ୍ୟାୟ ଓ ଅନୀତିକୁ ସ୍ପଷ୍ଟଭାଷାରେ ବିରୋଧ କରୁଥିଲେ । ଏଥିପାଇଁ ସେ ସର୍ବଦା ଉଦାରମନା ବିଦଗ୍ଧଙ୍କ ମହଲରେ ଶ୍ରଦ୍ଧା ଓ ସମ୍ମାନ ଲଭି-କରୁଥିଲେ । ମମତାର ଡୋରୀରେ ବାନ୍ଧି ଛାତ୍ର ଓ ସହକର୍ମୀମାନଙ୍କୁ ନିଜ ଆଦର୍ଶରେ ଅନୁପ୍ରାଣିତ କରୁଥିଲେ । କୌଣସି ବାଧା ଓ ବିପଦ ମୁଖରେ ସେ ବିଚଳିତ ହେଉ-ନଥିଲେ । ସେ ଗୋଟିଏ ଚିଠିରେ ଲେଖିଥିଲେ "ଯେଉଁ ମସ୍ତିଷ୍କ ଅଗ୍ରଗାମୀ କମାଣ ମୁହଁରେ ଗଢାକରେ, ମୁଁ ତାର ସାଥୀ ।" ବିଶ୍ୱଭାରତୀ କର୍ମଜୀବନର ଅବସାନ ଅତି ଆକସ୍ମିକ ଭାବରେ ଘଟିଥିଲା । ଏହା ମୂଳରେ ଥିଲା ତତ୍‌କାଳୀନ କୁଳପତିଙ୍କ ସହିତ ଅତି ସାମାନ୍ୟ ମତଭେଦ । ଏ ସବୁର ନିର୍ଭୀକ ଅନାଡ଼ମ୍ବର ବର୍ଣ୍ଣନା ତାଙ୍କର ଆତ୍ମଜୀବନୀରେ ମିଳେ । ବିଶ୍ୱଭାରତୀରୁ ଓଡ଼ିଶାର କର୍ମକ୍ଷେତ୍ରକୁ ଫେରି ଯାଇଥିଲେ ଏକ ବେଦନା ବିକ୍ଷତ ହୃଦୟରେ । ସତେ ଯେପରିକି ମମତାସ୍ନିଗ୍ଧ ଏକ ପାରିବାରିକ ପରିବେଶରୁ ନିଜର ଏକାନ୍ତ ଅନିଚ୍ଛାସତ୍ତ୍ୱେ ତାଙ୍କୁ ବିଦାୟ ନେବାକୁ ପଡ଼ିଥିଲା । ବିଶ୍ୱଭାର-ତୀର ଓଡ଼ିଆ ବିଭାଗ କବିଙ୍କୁ ହରାଇ ବସ୍ତୁତଃବରେ ନିଷ୍ପ୍ରଭ ଓ ଦରିଦ୍ର ହୋଇଯାଇଥିଲା । ମାତ୍ର ବିଶ୍ୱଭାରତୀରେ ଛାତ୍ର ଅଧ୍ୟାପକ ସମସ୍ତଙ୍କ ପ୍ରତି ତାଙ୍କର ମମତା ଓ ସ୍ନେହଦୃଷ୍ଟି ଅତୁଟ ଥିଲା । ବିଶ୍ୱଭାରତୀରୁ ବିଦାୟ କାଳରେ ସେ ଯେଉଁ ସହକର୍ମୀଙ୍କୁ ବିଭାଗର ଦାୟିତ୍ୱ ଦେଇଯାଇଥିଲେ ରେଭେନ୍‌ସା କଲେଜରେ ଯୋଗଦେଇ ତାଙ୍କୁ ଲେଖିଥିବା ପ୍ରଥମ ଚିଠିଟି ଏହାର ସାକ୍ଷ୍ୟ ବହନକରେ :—

କଟକ, ୯।୩।୬୧

"ଆଜି ଯୋଗ ଦେଲି । କ୍ଳାସ କାଲି ନେବି । ... ... ... ... । ଜୀବନରେ କଣ ହରାଇଛି, କଣ ପାଇଛି, ଏ ପର୍ଯ୍ୟନ୍ତ ତାର ହିସାବକିତାପ କରିନାହିଁ । କିନ୍ତୁ ଏ ପତ୍ର ଲେଖିଲାବେଳେ କାହିଁକି ଏତେ ଅଶ୍ରୁ ଆଖିରେ ଉଚ୍ଛୁଳୁଛି, କାହିଁକି ? ତୁମେ (ସବୁ) ମୋର କଣ, କେଉଁ ଅନ୍ତରର ଅନ୍ତରଙ୍ଗ, ଘରୋଇର ବାହାରେ, ଅଥଚ ବାହାରେ ଏକାନ୍ତ ଘରୋଇ— ସ୍ନେହର ମିତ୍ର-ଦୋସର- ଆଉ କଣ — କଣ ?"

କବିତୀର୍ଥ ଶାନ୍ତିନିକେତନରେ କବି ନିଜ ଜୀବନକୁ ଏକ ମନୋଜ୍ଞ ଭାବବିଭୋର ଛନ୍ଦୋମୟ କବିତାରେ ପରିଣତ କରିଥିଲେ । ଅତି ତରୁଣ ବୟସରେ ଜଣେ ସାଧକର

ମନ ଯେପରି ସେ ଶାନ୍ତିନିକେତନ ଆଶ୍ରମକୁ ଅପସାର କରି ନେଇଥିଲେ । ଆଶ୍ରମପ୍ରକୃତିହିଁ ଥିଲା ତାଙ୍କ ପ୍ରାଣ ଶାନ୍ତି ଓ ମନର ସୁଖ ସନ୍ତୋଷର ବିଧାୟକ । ବୀରଭୂମ ଲାଲ୍ ଖୁଆଇ ବିସ୍ତୀର୍ଣ୍ଣ ରୁକ୍ଷ ଗୈରିକ ମାଟି—ଏଠି ଶୀତ ଓ ଗ୍ରୀଷ୍ମ ପ୍ରବଳ । ମାତ୍ର ରତନ ପଲ୍ଲୀର ତିନି କୋଠରୀର ଛୋଟ ଘରେ କୌଣସି କାଳେ ବି ବିଜୁଳି ପଙ୍ଖାଟିଏ ବ୍ୟବହାର କରୁ ନ ଥିଲେ । ଘରେ ଚିତ୍ତ ବିନୋଦନ ପାଇଁ ରେଡ଼ିଓଟିଏ ପର୍ଯ୍ୟନ୍ତ ନ ଥିଲା । କଳ ପାଣି ନ ଥିଲା । ଇନ୍ଦାର ପାଣିରେ ସ୍ନାନ ଓ ସେଇଥିରେ ଘର ପଛପଟେ ଶୋଭା ପାଉଥିଲା ଅଗ୍ଏ ସବୁଜ ପନି ପରିବା କ୍ଷେତ । କବି ନିଜେ ନିୟମିତ ବଗିଚାରେ କାମ କରୁଥିଲେ । ଅବଶ୍ୟ ୧୯୫୫ ରେ କାଶ୍ମୀର ପହଲ ଗାଓଁ ପାର୍ବତ୍ୟ ପଥରେ ଘୋଡ଼ାରୁ ପଡ଼ି ଡାହାଣ ହାତଟି ଭାଙ୍ଗି ଯିବା ପରେ କୋଦାଳ ଧରିବା ଛାଡ଼ି ଥିଲେ । ସମୟ ଥିଲା କବିଙ୍କର ଏକାନ୍ତ ନିୟନ୍ତ୍ରଣାଧୀନ । ତୁଚ୍ଛ ସାମାଜିକତା ତାଙ୍କୁ ନିଜ କାମରୁ କଦାପି ବିଚ୍ୟୁତ କରି ପାରୁ ନ ଥିଲା । କବିତା ଲେଖି କଦାପି କର୍ତ୍ତବ୍ୟରେ ଆଦୌ ହେଳା କରୁ ନ ଥିଲେ । ସକାଳ ୪ଟାରୁ ଶଯ୍ୟା ତ୍ୟାଗ କରି ନିତ୍ୟକର୍ମ ଓ କବିତାଲେଖା ପର୍ବ ଶେଷରେ ଶାନ୍ତିନିକେତନ ରଙ୍ଗା ପଥରେ ଅରୁଣ ଆଭା ତାଙ୍କର ସଦାପ୍ରସନ୍ନ ମୁଖ-ମଣ୍ଡଳକୁ ସ୍ପର୍ଶ କରୁଥିଲା । ପୁଣି ଅପରାହ୍ଣରେ ମୁକ୍ତ ପ୍ରାଙ୍ଗଣରେ ଅସ୍ତସୂର୍ଯ୍ୟଙ୍କୁ ବିଦାୟ ଦେଇ ଗୃହକୁ ଫେରି ସାଧନାରତ ହେଉଥିଲେ । ଆଶ୍ରମର ପ୍ରତ୍ୟେକ ବୃକ୍ଷ, ପୁଷ୍ପ, ପକ୍ଷୀ ସବୁ କିଛି କବିଙ୍କର ଥିଲା ଏକାନ୍ତ ପ୍ରିୟ । ତାଙ୍କ କବିତାକୁ ଏସବୁ ରସ ସୌରଭରେ ଦୀପ୍ତ କରୁଥିଲା ।

ପ୍ରବୀଣ ଓ ନବୀନ, ତରୁଣ ଓ ଶିଶୁ ସମସ୍ତଙ୍କ ହୃଦୟରେ କବି ନିଜକୁ ଏକାତ୍ମ କରିଥିଲେ । ବିଦାୟ ପୂର୍ବରୁ ପ୍ରାୟ ଗୋଟିଏ ସପ୍ତାହ ଶାନ୍ତିନିକେତନ ଉଦ୍‌ବେଳ ହୋଇ ଉଠିଥିଲା । ପାଠଭବନ, ବିଦ୍ୟାଭବନ, ଓଡ଼ିଆ ବିଭାଗ, ଚୀନାଭବନ ସର୍ବତ୍ର ଭବଗମ୍ଭୀର ବିଦାୟ ସଭାର ଆୟୋଜନ । କୁଳପତି ସୁଧୀରଞ୍ଜନ କହିଲେ, ଆଶ୍ରମ ଦରିଦ୍ରତର ହେଲା । ଅନ୍ନଦାଶଙ୍କର କହିଲେ— ଯାହାର ଯେଉଁଠି ଦେଶ, କବିଙ୍କ ଦେଶ ସ୍ୱଦେଶବାସୀଙ୍କ ଅନ୍ତରରେ-ଏହା ବିଦାୟ ନୁହେଁ ଘର ବାହୁଡ଼ାର ଏକ ଶୁଭ ଅନୁକୂଳ । କବି ପ୍ରିୟ ଛାତ୍ର ସହକର୍ମୀଙ୍କଠାରୁ କେବଳ ନୁହେ— ଆଶ୍ରମ ବୃଦ୍ଧ ସପ୍ତପର୍ଣ୍ଣୀର ଶେଷ ପତ୍ରର ସବୁଜିମାକୁ ବରିଣି କରିନେଲେ କାବ୍ୟଲୋକର ଚିରନ୍ତନ ସୌନ୍ଦର୍ଯ୍ୟ ଭୂମିରେ-ନମୋନମଃ ମହର୍ଷିର ବୋଧି ··· ମହାଦ୍ରୁମ···

ଡକ୍ଟର ନରେନ୍ଦ୍ର ନାଥ ମିଶ୍ର
ଶାନ୍ତିନିକେତନ

# କବି ଜୀବନୀ (ଉତ୍ତରାର୍ଦ୍ଧ)

ଡକ୍ଟର୍ ନିତ୍ୟାନନ୍ଦ ଶତପଥୀ

ମାର୍ଚ୍ଚ ୯ ତାରିଖ ୧୯୬୧ ମସିହାରେ ଡକ୍ଟର୍ କୁଞ୍ଜବିହାରୀ ଦାଶ ରେଭେନ୍ସା କଲେଜରେ ଓଡ଼ିଆ ବିଭାଗରେ ଯେଉଁଦିନ ଯୋଗ ଦେଲେ ଏଇ ବିପୁଳ ବପୁମନ୍ତ-ଉତ୍ତୁଙ୍ଗ ବ୍ୟକ୍ତିତ୍ୱଙ୍କୁ ଦେଖି ଆମେ ଛାତ୍ରମାନେ ବିସ୍ମିତ ଓ ଉଲ୍ଲସିତ ହୋଇଥିଲୁ । ସ୍ୱାଭାବିକଭାବେ ଓଡ଼ିଆ ବିଭାଗରେ ସ୍ୱାଗତ ଉତ୍ସବ ହୋଇଥିଲା ଓ ପାଠଚକ୍ର ସମ୍ପାଦକ ଭାବେ ମୋତେ ଏଇ ଲେଖକଙ୍କୁ ସ୍ୱାଗତ ସମ୍ବର୍ଦ୍ଧନାର ଆୟୋଜନ କରିବାକୁ ହୋଇଥିଲା । ସେତେବେଳକୁ ଓଡ଼ିଆ ସାହିତ୍ୟ ସମାଜ ମୁମୂର୍ଷୁ ପ୍ରାୟ । କିନ୍ତୁ ଏକଦା ଥିଲା ତା'ର ଉଜ୍ଜ୍ୱଳ ଅତୀତ । କେବେ 'ରଶ୍ମି' ନାମରେ ଏକ ପତ୍ରିକା ଏଇ ସାହିତ୍ୟ ସମାଜ ତରଫରୁ ପ୍ରକାଶ ପାଉଥିଲା, ଯାହା ପରବର୍ତ୍ତୀ ସମୟରେ ନିଖିଳ ଉତ୍କଳ ଛାତ୍ର ୟୁନିୟନର ମୁଖପତ୍ରର ନାମ ବହନ କରିଥିଲା । କବି କୁଞ୍ଜବିହାରୀ ସ୍ୱାଗତ ସଂବର୍ଦ୍ଧନାର ଉତ୍ତର ଦେଇ ଓଡ଼ିଆ ସାହିତ୍ୟ ସମାଜକୁ ଓ ଓଡ଼ିଆ ପାଠଚକ୍ରକୁ ସକ୍ରିୟ କରିବାକୁ ଯେଉଁ ଆହ୍ୱାନ ଦେଇ ଥିଲେ, ତାହା ସେତେବେଳେ ଆମପାଇଁ ପ୍ରେରଣାର ଉତ୍ସଥିଲା । ସ୍ୱାଭାବିକ ଭାବେ ବିଭାଗମୁଖ୍ୟ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ଏସବୁ କାର୍ଯ୍ୟପାଇଁ ଉତ୍ସାହିତ କରିଥିଲେ । ଓଡ଼ିଆ ବିଭାଗରେ ସତେଯେପରି ତାଙ୍କ ପାଇଁ ଜଣେ ପରମ ବନ୍ଧୁ ସହକର୍ମୀ ଆସି ପହଂଚିଲେ । ଏ ଦୁଇ ଉତ୍ତୁଙ୍ଗ ବ୍ୟକ୍ତିତ୍ୱଙ୍କ ସଂଯୋଗରେ ଛାତ୍ର ଛାତ୍ରୀଙ୍କ ପାଇଁ ବିଭାଗଟି ପ୍ରକୃତରେ କର୍ମମୁଖର ହୋଇ ଉଠୁଥିଲା ।

ଏମ୍. ଏ. ଦ୍ୱିତୀୟ ବର୍ଷ ଛାତ୍ର ଛାତ୍ରୀଙ୍କୁ କବି କୁଞ୍ଜବିହାରୀ ଆଧୁନିକ ଓଡ଼ିଆ ସାହିତ୍ୟ ବିଶେଷପତ୍ର ପଢ଼ାଉଥିଲେ । କ୍ଲାସ୍‌କୁ ସେ ପଶି ଆସିବା ମାତ୍ରେ ଆମେ ବିମୁଗ୍ଧ ହୋଇ ତାଙ୍କୁ ଚାହିଁ ରହୁଥିଲୁ । ସେ ବରାବର ପ୍ରସ୍ତୁତ ହୋଇ ଆସୁଥିଲେ ଓ ଟିପାଟିଏ ଆଣୁଥିଲେ । ମନେ ହେଉଥିଲା ସେ ଯେପରି କ୍ଲାସରେ କବିତା ପାଠ କରୁଛନ୍ତି । ଭାଷାର କାବ୍ୟିକ ବିଭବରେ ଆମେ ମୁଗ୍ଧ ହେଉଥିଲୁ । ତାଙ୍କ ବକ୍ତବ୍ୟରେ ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ଏକ ପ୍ରଚଣ୍ଡ ସ୍ୱାଭିମାନ ପ୍ରକାଶ ପାଉଥିଲା । ସ୍ୱାଭାବିକ ଭାବେ ଆମେ ତାଙ୍କ ପ୍ରତି ଗଭୀର ଅନୁରକ୍ତି ପ୍ରକାଶ କରୁଥିଲୁ ।

୧୯୬୨ ଜାନୁୟାରୀ ତା୧୪ରିଖରେ ଆମେମାନେ ଯାଇଥିଲୁ ଶାନ୍ତିକାନନଠାରେ ଫକୀର ମୋହନ ଜୟନ୍ତୀ ଉତ୍ସବରେ ଯୋଗ ଦେବାକୁ । ମନେ ହେଉଛି ଡକ୍ଟର କୁଞ୍ଜବିହାରୀ ମଧ୍ୟ ଅତିଥିବକ୍ତା ଭାବେ ଯୋଗ ଦେଇଥିଲେ । ସେଇଠି ଫକୀରମୋହନଙ୍କ ମୂର୍ତ୍ତିମଣ୍ଡପରେ ପୁଷ୍ପ ପାତ ହୋଇଥିବାର ଦେଖି ଆମ ମନରେ ଗ୍ଲାନି ଆସିଥିଲା ତାହାହିଁ

ଥିଲି ପୂଜ୍ୟପୂଜା ସଂସଦର ଜନ୍ମଜାତକ । ଡକ୍ଟର ଦାଶଙ୍କୁ ଉପସଭାପତି ଦାୟିତ୍ୱ ତୁଲାଇବାକୁ ହୋଇଥିଲା । ଓଡ଼ିଶାର ତତ୍କାଳୀନ ସାଂସ୍କୃତିକ ବ୍ୟାପାର ବିଭାଗ ମନ୍ତ୍ରୀ ସନ୍ତୋଷ କୁମାର ସାହୁଙ୍କୁ ଡକ୍ଟର ଦାଶ ଓ ମୁଁ ସଭାପତି ଦାୟିତ୍ୱ ତୁଲେଇବାକୁ ଅନୁରୋଧ କରିଥିଲୁ ଓ ସେ କିଛିଦିନ ତାହା ତୁଲାଇଥିଲେ । ତା'ପରେ ଶ୍ରୀଯୁକ୍ତ ସାହୁ ଏ ଦାୟିତ୍ୱରୁ ଅବ୍ୟାହତି ନେବାପରେ ପ୍ରାୟ ମାର୍ଚ୍ଚ, ୧୯୬୭ରୁ ଡକ୍ଟର ଦାଶହିଁ ସ୍ଥାୟୀ ସଭାପତି ନିର୍ବାଚିତ ହେଲେ । ତାଙ୍କରି ନେତୃତ୍ୱରେ ଓଡ଼ିଶାର ବିଶିଷ୍ଟ ମନୀଷୀମାନଙ୍କ ଜନ୍ମପୀଠକୁ ଯାଇ ଆମେ ସଭା ସମିତି ମାଧ୍ୟମରେ ଏକ ସାଂସ୍କୃତିକ ଜାଗରଣ ସୃଷ୍ଟି କରୁଥିଲୁ । ଏ ଯାତ୍ରା ଥିଲା ବିଶେଷତଃ ମୋପାଇଁ ବଡ଼ ଆମୋଦପ୍ରଦ ଓ ଉତ୍ତେଜନାପୂର୍ଣ୍ଣ; କାରଣ ବାଟଯାକ ଡକଟର ଦାଶ ନାନା କଥା କହି ଆମ ପଥକ୍ଲାନ୍ତିକୁ ଭୁଲାଇ ରଖୁଥିଲେ । ନାନା ଗପ ଯୋଡ଼ି ଓ ଶାନ୍ତିନିକେତନର ଅଭିଜ୍ଞତା ବର୍ଣ୍ଣନା କରି ଯାତ୍ରାକୁ ବେଶ ରସସିକ୍ତ କରୁଥିଲେ ।

୧୯୭୨ ମସିହା ଜୁନ ମାସରେ ଆମର ଏମ. ଏ. ପରୀକ୍ଷା ସରିବା ପରେ ପରେ ସେ ମୋତେ ଏକ ଜାତୀୟ କାର୍ଯ୍ୟରେ ନିଯୁକ୍ତ କରି ଦେଲେ । ମୋତେ ଦିନେ ଡାକି କହିଲେ "ସତ୍ୟବାଦୀର ସୂର୍ଯ୍ୟମାନେ ଗୋଟିକପରେ ଗୋଟିଏ ଅସ୍ତମିତ ହୋଇ ଯାଉଛନ୍ତି । ତାଙ୍କ ଜୀବନୀ ଲେଖା ହେବ ନାହିଁ ? ତୁମେ ନୀଳକଣ୍ଠଙ୍କ ପାଖରେ ଦୈନିକ ଦୁଇଘଣ୍ଟା ବସି ସେ ଯାହା ଡାକିବେ ତାହା ଲେଖି ରଖିବ । ତାଙ୍କ ଆତ୍ମଜୀବନୀ ଓଡିଶାର ଇତିହାସ । ଯେତେ କଷ୍ଟ ହେଲେବି ଏ କାମ କରିଦିଅ ।" ଏହା ସହିତ ସେ ମୋର କଟକରେ ରହିବା ପାଇଁ କିଛି ବ୍ୟବସ୍ଥା ମଧ୍ୟ କରି ଦେଲେ । ମାସକୁ ମୁଁ ୫୮୦-୦୦ ପାଉଥିଲି । ଏଇ ବ୍ୟବସ୍ଥାଟି ପ୍ରାୟ ୧୦ ମାସ ପର୍ଯ୍ୟନ୍ତ ରହିଲା ଓ ନୀଳକଣ୍ଠଙ୍କ ଆତ୍ମଜୀବନୀ ଲେଖା ସରିଲା । ୧୯୭୨ ଜୁନ ୨୪ ତାରିଖରେ ଏମ୍‌.ଏ. ପରୀକ୍ଷାର ମାତ୍ର ଦୁଇଦିନପରେ ମୋର ବିଭାଘର ହେଲା । ଏହି ଉପଲକ୍ଷେ ମୋର ଏବଂ କବି ପ୍ରତିଭା ଶତପଥୀଙ୍କ ରଚିତ କବିତା କେତୋଟିର ଯେଉଁ ସଙ୍କଳନ 'ଆମ କବିତା' ଶିରୋ-ନାମାରେ ପ୍ରକାଶ ପାଇଥିଲା ତହିଁର ମୁଖବନ୍ଧରେ ଡକ୍ଟର ଦାଶ ଲେଖିଥିଲେ—"ଗୋଟିଏ ବୃକ୍ଷ, ଗୋଟିଏ ଲତା, କହୁଛନ୍ତି ଦୁଇଟି ଲେଖନୀରେ ଗୋଟିଏ ମନର କଥା । ଗୋଟିଏ ମଧୁଚକ୍ର ଗଢିଛନ୍ତି ଦୁଇଟି ମହୁମାଛି, ବନ୍ଧୁ ବନ ବା ମନ ଫୁଲର ସ୍ତରେ ସ୍ତରେ ବୁଲି । ତଥାପି ତା ମଧ୍ୟରେ ଦୁଇଟି ଆକାଶର ସନ୍ଧାନ ମିଳେ— ଜ୍ୟୋତ୍ସ୍ନା ବା ଉଷାର, ଦୁଇଟି ଋତୁର ଆଭାସ ମିଳେ— ଶରତ ବା ବସନ୍ତର । ଫୁଟି ଦିଶେ ଦୁଇଟି ମଞ୍ଜରୀ; ବର୍ଣ୍ଣ, ରସ ଓ ସୁରଭିରେ ଉଭୟର ସ୍ୱାତନ୍ତ୍ର୍ୟ ବାରିହୁଏ । ଅଧିକନ୍ତୁ ଫୁଟି ଦିଶେ ଉଭୟର ବୃନ୍ତ, ଏହା ଗୋଟିଏ ଏକ, ଅଦ୍ୱୈତ ପ୍ରୀତିର । ଜୀବନ ଆଉ

କାବ୍ୟ ମିଳିତ ହୋଇଛନ୍ତି ଗୋଟିଏ ବିନ୍ଦୁରେ— କବି ଜୀବନରୁ ସାଂସାରିକ ଜୀବନ । ସ୍ୱପ୍ନର ବାସ୍ତବ ଦିଗକୁ ଗତି । ବାସ୍ତବର ଖର ରଶ୍ମିରେ ସ୍ୱପ୍ନ ମଳିନ ହେବ ନାହିଁ— ବିଶ୍ୱାସ । ''

ଏ ଭାଷାର ପ୍ରତିଶବ୍ଦ ଓ ପଙ୍‌କ୍ତିରେ କବିତା ତରଙ୍ଗାୟିତ ହୁଏ । ପ୍ରାଣ ଓ ମନ ଭାବର ବନ୍ୟାରେ ଉଦ୍‌ବେଳିତ ହୁଏ । ଏହା କବି କୁଞ୍ଜବିହାରୀଙ୍କ ଗଦ୍ୟଶୈଳୀର ନମୁନା, ଯାହା କବିତାର ଅନ୍ତର୍ନିହିତ ଧର୍ମରେ ଉଜ୍ଜ୍ୱଳ ଓ ଉତପ୍ଳୁତ ।

ନଭେମ୍ବର ତା ୧୪ ରିଖ ୧୯୬୨ରେ ମୁଁ ରେଭେନ୍‌ସା ନୈଶ ମହାବିଦ୍ୟାଳୟରେ ଓଡ଼ିଆ ବିଭାଗ ମୁଖ୍ୟ ଭାବେ ଯୋଗ ଦେଲି । ରେଭେନ୍‌ସା କଲେଜ ହତାରେ ଡ଼କ୍‌ଟର ଦାଶ ଖୁବ୍ ଏକ ବଡ଼ ଘରେ ରହୁଥିଲେ । ବରାବର ତାଙ୍କ ସହିତ ଦେଖା ସାକ୍ଷାତ ଆଳାପ ଆଲୋଚନାର ସୁଯୋଗ ମିଳୁଥାଏ । ବହୁ ସାଂସ୍କୃତିକ ସଭାସମିତିକୁ ସାଙ୍ଗ ହୋଇ ଯାତ୍ରା କରୁ । ତାଙ୍କ ବକ୍ତବ୍ୟରେ କେବଳ ଓଡ଼ିଆ ଜାତି ଓ ଭାଷା ପାଇଁ ସ୍ପର୍ଦ୍ଧା ନ ଥାଏ, ଥାଏ ବେଶ୍ ରସିକତା ଓ କାବ୍ୟିକ ଛଟା । ସେ ବିଷୟର ଗାମ୍ଭୀରତାକୁ ପ୍ରବେଶ ନକରି ମଧ୍ୟ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରି ରଖନ୍ତି । ଆମମାନଙ୍କ ପରି ସାନ ସାନମାନଙ୍କୁ ସବୁବେଳେ ଅସୀମ ଉତ୍ସାହ ଦେଉଥାନ୍ତି ।

ତାଙ୍କର କବିତାଗୁଡ଼ିକ ଦାସବ୍ରଦର୍ସ ପ୍ରକାଶନ ସଂସ୍ଥା ଦ୍ୱାରା ଗୋଟିକ ପରେ ଗୋଟିଏ ୩ଟି ଭାଗ ଯଥାକ୍ରମେ ୧୯୫୭, ୧୯୬୦ ଓ ୧୯୬୩ରେ ପ୍ରକାଶ ପାଇଲି । ଏଗୁଡ଼ିକ ତାଙ୍କ ସାହିତ୍ୟ ସାଧନାର ଅଂଶମାତ୍ର ଥିଲି । ବେଶ୍ ସଚେତନ କବିତା; ବେଳେବେଳେ ରୋମାଣ୍ଟିକ୍, ବେଳେବେଳେ ଚମତ୍କାର ବାସ୍ତବଧର୍ମୀ । ସେ ବେଳେ-ବେଳେ ତାଙ୍କ ନିଜ ଲେଖା କବିତା ଆବୃତ୍ତି କରି ଆମକୁ ଶୁଣାନ୍ତି । ଶାନ୍ତିନିକେତନରେ ଦୀର୍ଘକାଳ ରହିବା ଫଳରେ ଆବୃତ୍ତି ପରି ଏକ କଳା ହାସଲ କରିଥାନ୍ତି । ଓଡ଼ିଶାର କଲେଜମାନଙ୍କରେ ଆଜି ମଧ୍ୟ ଆବୃତ୍ତି କଅଣ ଠିକ୍ ଭାବେ ଅଧିଗତ ହୋଇପାରିଛି ବୋଲି ମନେ ହେଉନାହିଁ । ମୋର ମନେ ହେଉଛି ଉତ୍କଳ ସାହିତ୍ୟ ସମାଜ ଯେଉଁ ବାର୍ଷିକ ଆବୃତ୍ତି ପ୍ରତିଯୋଗିତା କରନ୍ତି ମୁଁ ଥରେ ଏମ୍ . ଏ . ଶ୍ରେଣୀର ଛାତ୍ରଭାବେ ପ୍ରଥମ ପୁରସ୍କାର ପାଇଥିଲି । ଡକ୍‌ଟର ଦାଶ ତାହା ଜାଣି ବେଶ ଆହ୍ଲାଦିତ ହୋଇଥିଲେ ଓ ବେଳେବେଳେ ମୋତେ ଆବୃତ୍ତି କରିବାକୁ ବି କହୁଥିଲେ ।

ଡକ୍‌ଟର ଦାଶ ଓଡ଼ିଶାକୁ ଫେରି ଆସିବା ପରେ ଲୋକ ସାହିତ୍ୟ ଅଧ୍ୟୟନ ପାଇଁ ସ୍ନାତକୋତ୍ତର ଶ୍ରେଣୀରେ ପାଠ୍ୟକ୍ରମ ଖଞ୍ଜିଦେଲେ । କଥା କଥାକେ ଲୋକଗଳ୍ପ,

ଲୋକ ଗୀତ, ଓ ଢଗଢ଼ମାଳୀର ଉଦାହରଣ । ରେଭେନ୍‌ସା କଲେଜ ଏମ୍. ଏ. ଶ୍ରେଣୀରେ ଏହି ବିଶେଷପତ୍ରକୁ ପାଠ୍ୟକ୍ରମ ଭାବେ ନେବାପାଇଁ ସେତେବେଳେ କେତେକ ଉତ୍ସାହୀ ଛାତ୍ର ଆଗଭର ହୋଇ ଆସୁଥିଲେ । କିନ୍ତୁ ସେ ୧୯୬୯ରେ ଅବସର ଗ୍ରହଣ କଲାପରେ ଆଉ କୌଣସି ଅଧ୍ୟାପକ ଅନୁରୂପ ଉତ୍ସାହ ଓ ଆକର୍ଷଣରେ ଏହାକୁ ପଢ଼ାଇବା ପାଇଁ ପ୍ରସ୍ତୁତ ନହେବାରୁ ରେଭେନ୍‌ସା କଲେଜରୁ କ୍ରମେ ଏ ବିଶେଷପତ୍ର ଉଠିଗଲା ।

୧୯୬୬ ମସିହା ଜୁନ୍ ମାସରେ ଆମେରିକାର ଇଣ୍ଡିଆନା ବିଶ୍ୱବିଦ୍ୟାଳୟ ଆମନ୍ତ୍ରଣରେ 'ଏସିଆ ଲୋକ ସଂସ୍କୃତି ସମ୍ମେଳନ'ରେ ସେ ଭାରତର ପ୍ରତିନିଧିତ୍ୱ କରିବାକୁ ଯାତ୍ରା କଲାବେଳେ ଆମେମାନେ ଖୁବ୍ ଗର୍ବ କରିଥିଲୁ । କିନ୍ତୁ ଏ ଯାତ୍ରା ଥିଲା ଖୁବ୍ ନୀରବ ଓ ନିଶବ୍ଦ । ଖବର କାଗଜରେ ଧାଡ଼ିଏ ହେଲେବି ଏ ବିଷୟରେ ସମ୍ବାଦ ପ୍ରକାଶ ପାଇଥିବା ମୋର ମନେହେଉ ନାହିଁ । କିନ୍ତୁ ଏହି ଯାତ୍ରାର ଫଳଶ୍ରୁତି 'ଆମେରିକାରୁ ୟୁରୋପ ଆଫ୍ରିକା' ଦୀର୍ଘକାୟ ପୁସ୍ତକଟି ଯେତେବେଳେ ୧୯୬୮ରେ ପ୍ରକାଶ ପାଇଲା ସମସ୍ତେ ବିସ୍ମିତ ହୋଇଗଲେ । କାରଣ ଓଡ଼ିଆ ସାହିତ୍ୟରେ ଏହା-ଥିଲା ସବୁଠାରୁ ବିପୁଳତମ ଭ୍ରମଣ କାହାଣୀ; ବହୁ ବିରଳ ଅନୁଭୂତି ଓ ଭାବପ୍ରକାଶ କରିବାର ନିପୁଣ ରସିକତା ପୁସ୍ତକଟିକୁ ଖୁବ୍ ସୁଖପାଠ୍ୟ କରିଥିଲା ।

ଏହି ସମୟ ଥିଲା ଡକ୍‌ଟର ଦାଶଙ୍କ ପ୍ରତିଭାର ବିକଚବିକାଶର ସମୟ । ୧୯୬୭ରୁ ୧୯୭୭ ପର୍ଯ୍ୟନ୍ତ ସେ ଦଶବର୍ଷ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ସଭ୍ୟ ମନୋନୀତ ହୋଇଥିଲେ । ଫଳରେ ତାଙ୍କ ନିଜ ପୁସ୍ତକ 'ଭ୍ରମଣ କାହାଣୀ'ଟି କେନ୍ଦ୍ର ସାହିତ୍ୟ ପୁରସ୍କାରରୁ ବଞ୍ଚିତ ହେଲା । ତଥାପି ୧୯୭୨ ଫେବୃୟାରୀ ମାସରେ ଏହା ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଥିଲା । ୧୯୬୭ରେ ରେଭେନ୍‌ସା କଲେଜ ଓଡ଼ିଆ ବିଭାଗ ମୁଖ୍ୟ ଡ଼କ୍‌ଟର କୁଞ୍ଜବିହାରୀ ତ୍ରିପାଠୀ ଅବସର ଗ୍ରହଣ କଲେ । ପ୍ରଫେସର ସ୍ଥାନ ପ୍ରାୟ ଦୁଇବର୍ଷ କାଳ ଖାଲିପଡ଼ିଲେ ବି ଡକ୍‌ଟର ଦାଶଙ୍କୁ କେବଳ ବିଭାଗ ମୁଖ୍ୟ ଭାବେ ରଖାଗଲା । କିନ୍ତୁ ପ୍ରଫେସର କରାଗଲା ନାହିଁ । ସ୍ୱର୍ଗତ ଗୋଲୋକ ବିହାରୀ ଧଳ ମଧ୍ୟ ଏହି ପ୍ରଫେସର ପଦବୀ ପାଇଁ ଅନ୍ୟତମ ଦାବୀଦାର ଥିଲେ । ସେ ଶୁଦ୍ଧ ସଂସ୍କୃତ ସାହିତ୍ୟର ଛାତ୍ର ଓ ଅଧ୍ୟାପକ ଥିଲେବି ଓଡ଼ିଆ ଓ ସଂସ୍କୃତ ଏକ ବିଭାଗାଧୀନ ଥିଲାବେଳେ ସେ ନିଯୁକ୍ତି ପାଇଥିଲେ । ସେତେବେଳେ ଗୋଟିଏ ମାତ୍ର ପ୍ରଫେସର ପୋଷ୍ଟ ଥିଲା । ଡକ୍‌ଟର ଦାଶଙ୍କୁ ପ୍ରଫେସର ନ କରାଯିବାରୁ ରେଭେନ୍‌ସା କଲେଜ ଓଡ଼ିଆ ବିଭାଗ ଛାତ୍ରମାନେ ବିକ୍ଷୁବ୍ଧ ହୋଇ ଉଠିଲେ । ଧର୍ମଘଟ କଲେ ଓ କର୍ତ୍ତୃପକ୍ଷଙ୍କୁ ଭେଟି ସମସ୍ୟାଟି ବୁଝାଇଲେ । ପରେ ଅବସର

ନେବାର ମାସେ ବର୍ଷକ ପୂର୍ବରୁ ଜାନୁୟାରୀ ତା ୨ ରିଖ ୧୯୬୯ ମସିହାରେ ସେ ପ୍ରଫେସର ପଦ ଅଳଂକୃତ କଲେ । ସେତେବେଳେ ରେଭେନ୍ସା କଲେଜ ରାଜ୍ୟରେ ଏକମାତ୍ର ଓଡ଼ିଆ ଭାଷାସାହିତ୍ୟ ସ୍ନାତକୋତ୍ତର ଶିକ୍ଷାକେନ୍ଦ୍ର । ତେଣୁ ଓଡ଼ିଆ ବିଭାଗର ପ୍ରଫେସର ପଦଟି ଥିଲା ସ୍ୱାଭାବିକ ଖୁବ୍ ଗୌରବପୂର୍ଣ୍ଣ । ଯାହା ସହଜ ଓ ସ୍ୱାଭାବିକ ଭାବରେ ତାଙ୍କୁ ମିଳିଆନ୍ତା ତାହା ହୋଇଥିଲା ଖୁବ୍ ବେଦନାଦାୟକ ଓ କଷ୍ଟଲବ୍ଧ; କିନ୍ତୁ ସେଥିପାଇଁ ଡ଼କ୍ଟର ଦାଶ ଦିନେ ହେଲେ ବ୍ୟଥିତ ବା ବିଚଳିତ ହୋଇଥିବାପରି ମୋର ମନେ ହେଉନି । ପରିସ୍ଥିତିକୁ ସହଜ ଓ ନିର୍ବିଚଳ ଭାବେ ଗ୍ରହଣ କରିବା ତାଙ୍କ ବ୍ୟକ୍ତିତ୍ୱର ଏକ ମହାନ୍ ଦିଗବୋଲି କହିବାକୁ ହେବ । ମୁଁ ତାଙ୍କ ଘରେ ପାରିବାରିକ ଆସରରେ ବସିଥିଲାବେଳେ ଏକଥା ବେଳେ-ବେଳେ ପଡ଼େ । ଶ୍ରୀମତୀ ଦାଶ ସ୍ୱାଭାବିକ କ୍ଷୁବ୍ଧ ସ୍ୱରରେ ଗୋଲୋକ ବିହାରୀ ଧଳଙ୍କୁ ଏଥିପାଇଁ ଦାୟୀ କଲାବେଳେ ଡ଼କ୍ଟର ଦାଶ ବରାବର ତାଙ୍କୁ ପ୍ରତିହତ କରନ୍ତି । କହନ୍ତି "ତାଙ୍କୁ ସମାଲୋଚନା କରିବାର ଆମର କି ଗୁଣ ବା ସ୍ପର୍ଦ୍ଧା ଅଛି ? ଯେତେହେଲେ ତାଙ୍କପରି କେତେଜଣ ଲେଖକ ଆମ ଓଡ଼ିଶାରେ ଅଛନ୍ତି ? ଆଉ ଦିନେ ତାଙ୍କ ବିଷୟରେ କିଛି ସେପରି ନକୁହ ।" ଶ୍ରୀମତୀ ଦାଶ ନୀରବ ରହନ୍ତି । କିନ୍ତୁ ଭିତରେ ଭିତରେ କୁହୁଳିବାର ଭାବନା ସ୍ପଷ୍ଟ ଜଣାପଡ଼ିଯାଏ । ଡ଼କ୍ଟର ଦାଶଙ୍କ ଆତ୍ମଜୀବନୀ 'ମୋ କାହାଣୀ'ରେ ଏ ପ୍ରସଙ୍ଗର ଅନାସକ୍ତ ବର୍ଣ୍ଣନା ରହିଛି ।

ଡକ୍ଟର ଦାଶଙ୍କ ଦୁର୍ଭାଗ୍ୟକୁ ସେତେବେଳେ ଜନ କଂଗ୍ରେସ୍-ସ୍ୱତନ୍ତ୍ର ଦଳ ମିଳିତ ମନ୍ତ୍ରୀମଣ୍ଡଳ ଅବସର ପ୍ରାପ୍ତିର ବୟସ ସୀମା ୫୮ରୁ ୫୫କୁ ଖସାଇ ଦେଲେ । ତଦନୁସାରେ ରାଜ୍ୟର ଶିକ୍ଷା ଓ ସ୍ୱାସ୍ଥ୍ୟ ବିଭାଗରୁ ବହୁ ବିଜ୍ଞ ଓ ଅଭିଜ୍ଞ ବ୍ୟକ୍ତି ବାଧ୍ୟତଃ ଅବସର ନେଲେ । କିନ୍ତୁ କେତେବର୍ଷପରେ ପରବର୍ତ୍ତୀ କଂଗ୍ରେସ ମନ୍ତ୍ରୀମଣ୍ଡଳ ବେଳେ ଏପରି ଏକ ନୀତିର ଅମୂଳକତା ଉପଲବ୍ଧି କରିଯାଇ ପୁରାତନ ବ୍ୟବସ୍ଥା (ଅର୍ଥାତ ୫୮ ବର୍ଷରେ ଅବସର ପ୍ରାପ୍ତି ) ପୁନଃପ୍ରବର୍ତ୍ତିତ ହେଲା । କିନ୍ତୁ ଡକ୍ଟର କୁଞ୍ଜବିହାରୀ-ଦାଶ ୫୫ ବର୍ଷରେ ସଂପୂର୍ଣ୍ଣ ସ୍ୱାସ୍ଥ୍ୟ, ବିପୁଳ କର୍ମତତ୍ପରତା, ପ୍ରଭୂତ ସାଂଗଠନିକ ଶକ୍ତି ସତ୍ତ୍ୱେ ରେଭେନ୍ସା କଲେଜ ପ୍ରଫେସର ପଦରୁ ଅବସର ଗ୍ରହଣ କରିଥିଲେ ।

୧୯୬୯ ମସିହା ଜୁଲାଇ ମାସରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗ ଖୋଲିଲା । ୧୯୭୦ ମସିହାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ ୫ ବର୍ଷପାଇଁ ୟୁ.ଜି.ସି. ପ୍ରଫେସର ଭାବେ ନିଯୁକ୍ତ ହେଲେ । ଏହା ଅବସରପ୍ରାପ୍ତ ପ୍ରବୀଣ ଅଧ୍ୟାପକଙ୍କ ଜ୍ଞାନ ଓ ଅଭିଜ୍ଞତାର ବିନିଯୋଗ ପାଇଁ ଏକ ବିଶେଷ କାର୍ଯ୍ୟକ୍ରମ ଥିଲା । ମାସିକ ପରିତୋଷିକ ମାତ୍ର ପାଞ୍ଚଶହ ଟଙ୍କା ଓ ବାର୍ଷିକ ଆଉ ଏକହଜାର ଟଙ୍କା ହାତଖର୍ଚ୍ଚ । ସ୍ୱଳ୍ପ ପେନ୍ସନ

ସହିତ ଏହା ମିଶିଗଲା । ଡ଼କ୍ଟର ଦାଶ ବାଣୀବିହାର ଠାରେ ନବପ୍ରତିଷ୍ଠିତ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ଯୋଗଦେଲେ ଓ ମାତ୍ର କେତେ ମାସ ବ୍ୟବଧାନପରେ ପୁଥିଗ୍ରନ୍ଥଗ୍ରାହୀଙ୍କ ସମ୍ପର୍କରେ ପ୍ରାଣିତ ହୋଇ ଉଠିଲେ । ଏଠାରେ ମଧ୍ୟ ତାଙ୍କ ଆଗମନରେ ଲୋକସାହିତ୍ୟ ବିଶେଷପତ୍ର ପାଇଁ ଗ୍ରାହମାନେ ଆଗ୍ରହୀ ହେଲେ ।

ବାଣୀବିହାର ଓଡ଼ିଆ ବିଭାଗରେ ଅଧ୍ୟାପନା କରୁଥିଲାବେଳେ ଏଠାରେ ବିଭାଗୀୟ ପ୍ରଫେସର ପଦ ପାଇଁ ୧୯୭୦ ରେ ଯେଉଁ ପ୍ରତିଯୋଗିତା ବା ସିଲେକ୍ସନ ହେଲା-ତହିଁରେ ତାଙ୍କପରି ବୟସ୍କ ତଥା ବ୍ୟକ୍ତିତ୍ୱ ସଂପନ୍ନ ଜ୍ଞାନୀ ବ୍ୟକ୍ତି ବିବେଚିତ ହୋଇ ନପାରିବା ଓଡ଼ିଶାର ଚିନ୍ତାଶୀଳମାନଙ୍କ ମହଲରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ପରେ ପରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରଫେସର ପୋଷ୍ଟ ପାଇଁ ସେ ଆବେଦନ କରିଥିଲେ ମଧ୍ୟ ତାଙ୍କର ଜଣେ ଶତ୍ରୁ ବିଚାରକ ଆସନରେ ସାକ୍ଷାତ୍କାରକୁ ଆସୁଥିବା ଖବର ପାଇ ସେଠାକୁ ମଧ୍ୟ ଗଲେନାହିଁ । କିନ୍ତୁ ଏହାଦ୍ୱାରା କିଛି ଆର୍ଥିକ ଆୟର ସୁଯୋଗରୁ ସେ ବଞ୍ଚିତ ହୋଇଥିଲେବି ପରୋକ୍ଷରେ ଏସବୁ ତାଙ୍କ ପ୍ରତି ଭଗବାନଙ୍କର ଆଶୀର୍ବାଦ ଥିଲା । ଏହି ସମୟରେ ସେ କିଛି ଆର୍ଥିକ ଅସ୍ୱଚ୍ଛଳତା ଭିତର ଦେଇ ଗତିକରୁଥିଲେ; କିନ୍ତୁ ଖୁବ୍ ନିଷ୍ଠା ଓ ଦୃଢ଼ତାର ସହିତ ସେ ଲେଖନୀକୁ ଧରି ବସିଲେ । ଅନବରତ ଲେଖି ଚାଲିଲେ । ପ୍ରକାଶ ପାଇଲା ଭ୍ରମଣ କାହାଣୀ 'ଦୁଇ ଦିଗନ୍ତର ଆକାଶ' (୧୯୭୨)। ୧୯୭୦ ରେ ସିମଲାର ଇଣ୍ଡିଆନ୍ ଇନ୍ଷ୍ଟିଚ୍ୟୁଟ୍ ଅଫ୍ ଆଡ଼ଭାନ୍ସ୍ ଷ୍ଟଡ଼ିଜ୍ ସେଣ୍ଟରରେ ଆଧୁନିକ ଭାରତୀୟ ସାହିତ୍ୟ ସଂପର୍କୀୟ ସେମିନାରରେ ଯୋଗ ଦେବାକୁ ଯାଇ ସେ ଯେଉଁ ବିରଳ ଅଭିଜ୍ଞତା ହାସଲ କରିଥିଲେ ସେହି ଅଭିଜ୍ଞତାର ଉପଯୋଗ କରିଥିଲେ ଏହି ପୁସ୍ତକଟିରେ । ସମ୍ଭବତଃ ମନେକରିବାକୁ ହେବଯେ ଭ୍ରମଣ କାହାଣୀ ରଚୟିତା ଭାବେ ଡକ୍ଟର କୃଷ୍ଣବିହାରୀ ଅଦ୍ୟାବଧି ମଧ୍ୟ ଓଡ଼ିଆ ସାହିତ୍ୟରେ ଅନତିକ୍ରମଣୀୟ ଆସନରେ ଅଧିଷ୍ଠିତ । ସଂଖ୍ୟା ଓ ଗୁଣାତ୍ମକ ମୂଲ୍ୟବୋଧ ଦୃଷ୍ଟିରୁ ଏ ଦିଗରେ ସେ ତଥାପି ଅପ୍ରତିଦ୍ୱନ୍ଦ୍ୱୀ ନିଶ୍ଚୟ । ପୁନଶ୍ଚ ୟୁ. ଜି. ସି. ପ୍ରଫେସର ଭାବେ ସେ ଯେଉଁ scheme ଦେଇଥିଲେ ତଦନୁସାରେ ନିଜ ଦାୟିତ୍ୱର ସଦୁପଯୋଗ କରିବସିଲେ । ଗୋଟିକପରେ ଗୋଟିଏ 'ଲୋକବାଣୀ ସଂଚୟନ' ପ୍ରକାଶ ପାଇଲା ଓ ଏହା ପୁସ୍ତକ ବ୍ୟବସାୟ କ୍ଷେତ୍ରରେ ବେଶ୍ ଆକର୍ଷଣ ବି ସୃଷ୍ଟି କଲା । ମୁଁ ଜାଣିବାରେ ବହୁ ୟୁ. ଜି. ସି. ଅଧ୍ୟାପକ ସ୍ନାତକୋତ୍ତର ଛାତ୍ରଙ୍କୁ ପଢ଼ାଇବା ସହିତ କିଛି ମୂଲ୍ୟବାନ ଗ୍ରନ୍ଥ ରଚନା ପାଇଁ ଅଙ୍ଗୀକାରବଦ୍ଧ ହୋଇଥାନ୍ତି । କିନ୍ତୁ ପରେ ପରେ ତାହାର ଖିଲାପ ହୁଏ । ୟୁ. ଜି. ସି. ମଧ୍ୟ ଏଥିପାଇଁ ଅବସର ପ୍ରାପ୍ତ ଅଧ୍ୟାପକମାନଙ୍କ ଉପରେ ଏତେ ଚାପ ଦିଏ ନାହିଁ । କିନ୍ତୁ ଡକ୍ଟର ଦାଶ କେବେ କର୍ତ୍ତବ୍ୟଚ୍ୟୁତ ଓ ବାକ୍ୟଭ୍ରଷ୍ଟ ହୋଇଥିବା ମୁଁ ଜାଣେ

ନାହିଁ ? ଆଜି ପର୍ଯ୍ୟନ୍ତ ସେ ଯେ ପ୍ରବନ୍ଧମାନ କିଛି କିଛି ଲେଖୁଛନ୍ତି ଓ ତା ସହିତ ଓଡ଼ିଶାର ସାଂସ୍କୃତିକ ବିପ୍ଳବରେ ନିଜକୁ ସକ୍ରିୟଭାବେ ସାମିଲ୍ କରି ରଖିପାରିଛନ୍ତି ଏହା ଆମ୍ଭମାନଙ୍କ ପାଇଁ ବିପୁଳ ଆଶ୍ୱାସନାର ବିଷୟ ନୁହେଁକି ? ଡକ୍ଟର ଦାଶ ଚୁକ୍ତିବଦ୍ଧ ଥିଲେ ମାନସିକ ଭାବରେ ଓ ସେହି ଦାୟିର ପୂରଣ ପାଇଁ ସର୍ବମୋଟ ୭ଟି ଲୋକବାଣୀ ସଂଚୟନ ମଧ୍ୟ ଏ ଯାବତ୍ ପ୍ରକାଶ କରି ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ସଂଗୃହୀତ ରଗଡ଼ମାଳୀର ଏ ଅପୂର୍ବ ରତ୍ନମାଳାକୁ ଚିରସ୍ଥାୟୀ କରି ପାରିଲେ । ନଚେତ୍ କ୍ରମେ କ୍ରମେ ଲୋକ ମୁଖରୁ ଓ ସ୍ମୃତିରୁ ଏସବୁ ନଷ୍ଟ ଯାଇଥାନ୍ତା । ତଥାପି ତାଙ୍କର ଅତୃପ୍ତି ଯେ ସେ ଅସୁସ୍ଥତା ହେତୁ ଅଧିକ ସଂଗ୍ରହ କରି ପାରି ନାହାନ୍ତି । ପଲ୍ଲୀଗୀତ ସଂଚୟନ (ଷଷ୍ଠ ଭାଗ—୧୯୭୪) 'ମୋ କାହାଣୀ' (ଆତ୍ମଜୀବନ ଚରିତ-୧୯୭୬), 'ଜୀବନୀ ଓ ଜୀବନ' (୧୯୭୬) 'ଜୀବନାୟନ' (୧୯୭୮) 'ସାହିତ୍ୟ ଏକ ଆଲୋକ ଓ ଆଲୋଚନ' (୧୯୭୮) 'ଲୋକଗଳ୍ପ ସଂଚୟନ' ୨ୟ ସଂସ୍କରଣ (୧୯୭୭) ଏସବୁ ପୁସ୍ତକ ତାଙ୍କ ଆର୍ଥିକ ସ୍ଥିତିକୁ ବେଶ୍ ସୁଦୃଢ଼ କରିଦେଲା ।

ଏହି ସମୟରେ ହିଁ ସେ (୧୯୭୨ ଜାନୁୟାରୀ ୨୩ ତାରିଖ) ଉତ୍କଳ ସାହିତ୍ୟ ସମାଜର ସଭାପତି ଭାବରେ ନିର୍ବାଚିତ ହେଲେ ଓ ସମଗ୍ର ଓଡ଼ିଶାର ସହର, ଜନପଦ ଓ ଶିକ୍ଷାଯତନମାନଙ୍କରୁ ତାଙ୍କୁ ବିଭିନ୍ନ ସଭାସମିତି ଓ ସାଂସ୍କୃତିକ ଉତ୍ସବରେ ପୌରୋହିତ୍ୟ କରିବାପାଇଁ ସର୍ବତ୍ର ଆମନ୍ତ୍ରଣ ଆସିଲା । ଏଥିରେ ସେ ଏତେ ବ୍ୟସ୍ତ ରହିଲେ ଯେ ଜୀବନର ସବୁ ନୈରାଶ୍ୟ, ଅପ୍ରାପ୍ତି ଓ ଅଚରିତାର୍ଥତାଜନିତ ଗ୍ଲାନିକୁ ଏକାବେଳକେ ଭୁଲିଗଲେ । ଯେତେବେଳେ ଦେଖିବ ନିଜ ଛୋଟ ଟେବୁଲଟି ଉପରେ ଗୁଡ଼ିଏ ବହିର ଥାକ ପାଖରେ କାଗଜ କଲମ ଧରି କିଛି ପାଣ୍ଡୁଲିପି ପ୍ରସ୍ତୁତିରେ ସେ ଅଭିନିବିଷ୍ଟ । କିମ୍ବା ପ୍ରେସ୍ ଦେଇ ଯାଇଥିବା ନିଜ ବହିର Proof ସଂଶୋଧନ କରିବାରେ ଧ୍ୟାନମଗ୍ନ । ଏହା ସାଙ୍ଗକୁ ନିଜ ସ୍ୱର୍ଗତ ପିତାଙ୍କ ନାମରେ ସେ ଓ ତାଙ୍କ ସାନଭାଇ ଡାକ୍ତର ଉଦୟନାଥ ପ୍ରତିଷ୍ଠା କରିଥିବା ହାଇସ୍କୁଲଟିର (ଚନ୍ଦ୍ରାମଣି ବିଦ୍ୟାପୀଠ) ସଂପ୍ରସାରଣ, ଦ୍ୱିତଳ ପ୍ରାସାଦ, ନିର୍ମାଣ ଏସବୁ କାମ ମଧ୍ୟ ତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଚାଲିଥାଏ । ୧୯୭୦ରୁ ୭୮ ଏହି ଆଠଟି ବର୍ଷ ତାଙ୍କ ଜୀବନର କର୍ମ ପ୍ରବାହରେ ସବୁଠାରୁ କ୍ଷିପ୍ର, ଗଠନ ମୂଳକ, ପ୍ରଭୂତ ଯଶଦାୟକ ସମୟ ଥିଲା । ଏହି ସମୟରେ ହିଁ ସେ ନିଜ ଆତ୍ମ-କାହାଣୀ ଲେଖି ବସିଲେ ଏବଂ ଏହା ୧୯୭୬ରେ ପ୍ରକାଶ ପାଇଲାପରେ ଓଡ଼ିଶାର ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ବେଶ୍ ଚହଳ ପକାଇ ଦେଲା । ଲେଖିବାର ଶୈଳୀ, କାହାଣୀ ମୁଖୀ ଆବେଦନଶୀଳତା ଓ ସଙ୍କୋଚପର ସତ୍ୟପ୍ରକାଶର ଅକୁତୋଭ ପ୍ରାଣବେଗ ଏହି ଆତ୍ମଜୀବନୀକୁ ଯେ ଏକ ଗୌରବପୂର୍ଣ୍ଣ ଆସନ ଦେଇଛି କେନ୍ଦ୍ରସାହିତ୍ୟ ଏକାଡ଼େମୀ ପୁରସ୍କାର (୭୯)

ଏହାର ଶ୍ରେଷ୍ଠ ପ୍ରାମାଣିକତା । ପୁଣି ସେ ଓଡ଼ିଶାର ସାହିତ୍ୟିକ ଓ ଜନସାଧାରଣଙ୍କୁ ବିସ୍ମିତ କରଦେଇ ଏହି ପୁରସ୍କାରଲବ୍ଧ ଅର୍ଥକୁ (ପାଞ୍ଚ ହଜାର ଟଙ୍କା) ଉତ୍କଳ ସାହିତ୍ୟ ସମାଜକୁ ଦାନ କରିଦେଲେ । ଏହା ମଧ୍ୟ ତାଙ୍କ ଚରିତ୍ରର ଏକ ବିରଳଦିଗ । ଅର୍ଥ ବା କୌଣସି ଅଧିକାରର ବ୍ୟାଜ ତାଙ୍କୁ ଆଚ୍ଛନ୍ନ କରି ରଖିଥିବା ମୋର ମନେ ହେଉ ନାହିଁ । ବରଂ ସେ ଏହାର ଆକର୍ଷଣକୁ ଅତିକ୍ରମ କରିଯାଇ ନିଜର ମହାନତାକୁ ପ୍ରମାଣିତ କରିଛନ୍ତି । କେନ୍ଦ୍ରସାହିତ୍ୟ ଏକାଡ଼େମୀ ଲବ୍ଧ ଅର୍ଥକୁ ସାହିତ୍ୟର ଉନ୍ନତିପାଇଁ ଏପରି ଦାନ କରିବାରେ ସେ ଓଡ଼ିଶାର ଦ୍ୱିତୀୟ ବ୍ୟକ୍ତି । ପ୍ରଥମ ହେଉଛନ୍ତି ସ୍ୱର୍ଗତ ସବୁଜକବି ବୈକୁଣ୍ଠନାଥ ପଟ୍ଟନାୟକ । ମୋର ମନେହୁଏ ଡକ୍ଟର ଦାଶ 'ଜ୍ଞାନପୀଠ' ପୁରସ୍କାର ପାଇଥିଲେ ବି ସମସ୍ତ ଅର୍ଥକୁ ଏହିପରି ଏକ ସାଧୁ ଉଦ୍ଦେଶ୍ୟରେ ଦାନ କରି ଦେଇଥା'ନ୍ତେ । ଭ୍ରମଣ କାହାଣୀପାଇଁ ସେ ଯେ ଜ୍ଞାନପୀଠ ପୁରସ୍କାର ପାଇବାର ହକଦାର ଏକଥା ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ଲେଖକ ପୁସ୍ତକ ପାଠକଲା ପରେ ମୋର ସ୍ପଷ୍ଟ ଧାରଣା ହେଉଛି ।

ଏକାଡ଼େମୀ ପୁରସ୍କାର ପାଇଁ କେତେଆଡ଼େ କେତେ ସଭା ସମ୍ବର୍ଦ୍ଧନା ହେଲା, ପୁଣି ତା ସହିତ ତାଙ୍କ ଦାମୀପଣିଆର ମହତ୍ତ୍ୱବି ମିଶିଗଲା । ଉତ୍କଳ ସାହିତ୍ୟ ସମାଜର ସଭାପତି ପଦରୁ ସେ ୧୯୭୭ ନଭେମ୍ବର ମାସରେ ଇସ୍ତଫା ଦେଇ ସାରିଥା'ନ୍ତି । ଉତ୍କଳ ସାହିତ୍ୟ ସମାଜ ତାଙ୍କ ପୁରସ୍କାର ପ୍ରାପ୍ତିରେ ଆର୍ଥିକ ଦିଗରୁ ଲାଭବାନ ହୋଇଥିଲା । ବିପୁଳ ସମ୍ବର୍ଦ୍ଧନା ସଭାର ଆୟୋଜନ ହେଲା । ଡକ୍ଟର ଦାଶ ଏ ସଭାରେ ଯେଉଁ ଉତ୍ତର ଦେଇଥିଲେ ଆଜିବି ମୋ ସ୍ମୃତିକୁ ଅଭିଭୂତ କରି ରଖିଛି । ସେ କହିଲେ ("କାଓ, ମୁଁ କଣ ଇସ୍କୁଲର ପିଲା ହୋଇଛି ପୁରସ୍କାରରେ ଫୁଲି ଉଠିବି ? ତିରସ୍କାରରେ ଝାଉଁଳି ପଡ଼ିବି ? ଛୁଟୁକୁରିଆ ଗୃହକର୍ତ୍ତାଟାଏ ହେଇଚି ଯେ ବକସିସ୍‌କୁ ଗୃହି ରହିବି ? ମୋ ପରି ବୁଢ଼ା ପୁରସ୍କାର ପାଇଁ ଟାକି ବସିଲେ ଲୋକେ ହସିବେ ନାହିଁ ? ଲଡୁରେ ସିନା ପିଲଙ୍କ ଆଦର") ଅଦ୍ଭୁତ ଏ କଥା । ଏଇଠି ସମଗ୍ର ପୁରସ୍କାରଲବ୍ଧ ଅର୍ଥକୁ ସେ ଉତ୍କଳ ସାହିତ୍ୟ ସମାଜ ହାତରେ ଟେକିଦେଲେ ବାର୍ଷିକ ଉପନ୍ୟାସ-ପାଣ୍ଡୁଲିପି ପ୍ରତିଯୋଗିତା ପାଇଁ । ଏହା ପୂର୍ବରୁ ମଧ୍ୟତାଙ୍କ ସ୍ୱର୍ଗତା ଜନନୀ ତାରାମଣି ଦେବୀଙ୍କ ସ୍ମୃତିରକ୍ଷା ପାଇଁ ଉତ୍କଳ ସାହିତ୍ୟ ସମାଜ ହାତରେ ତିନିହଜାର ଟଙ୍କା ଦେଇଥିଲେ—ତାରାମଣି କବିତା ଆବୃତ୍ତି ପ୍ରତିଯୋଗିତା ଯାହାର ଫଳଶ୍ରୁତି ।

ଆଗରୁ କୁହାଯାଇଛି ୧୯୭୭ ନଭେମ୍ବରରେ ସେ ଉତ୍କଳ ସାହିତ୍ୟ ସମାଜ ସଭାପତି ପଦରୁ ଇସ୍ତଫା ଦେଇଥିଲେ, କାରଣ ଏହି ସମୟରୁ ୧୯୭୮ ଅକ୍ଟୋବର ମାସ ଯାଏ ବର୍ଷକପାଇଁ ଶାନ୍ତିନିକେତନରେ ମାସିକ ଟ୨୦୦୦-୦୦ ପାରିତୋଷିକ

ଓ ବାସସ୍ଥାନର ସ୍ୱଚ୍ଛଳତା ସହିତ ସେ ଏକ ସମ୍ମାନଜନକ 'ପରିଦର୍ଶୀ ଅଧ୍ୟାପକ' (visiting professor)ଭାବେ ନିଯୁକ୍ତି ପାଇଥାନ୍ତି । ସେଠାରେ ପୁରାତନ ବନ୍ଧୁମାନଙ୍କ ଗହଣରେ ବର୍ଷେ କଟେଇବାକୁ ମନ ତାଙ୍କର ନାଚି ଉଠୁଥାଏ । ଶାନ୍ତିନିକେତନ ଥିଲା ଯୌବନର କର୍ମକ୍ଷେତ୍ର, ତାର ଆକର୍ଷଣ ଏକାନ୍ତ ଦୁର୍ବାର । ସେଥିପାଇଁ ସମସ୍ତଙ୍କ ଅନିଚ୍ଛାସତ୍ତ୍ୱେ ସେ ଉତ୍କଳ ସାହିତ୍ୟ ସମାଜ ଓ ପୂର୍ଣ୍ଣ୍ୟପୂଜା ସଂସଦ ସଭାପତି ପଦରୁ ପ୍ରବଳ ମତ୍ତ ମାନସିକତାରେ ଇସ୍ତଫା ଦେଇ ଦେଲେ । ପୁନଶ୍ଚ ଇସ୍ତଫା ଗ୍ରହଣ ପାଇଁ ମଧ୍ୟ ସମସ୍ତଙ୍କ ଉପରେ ଚାପ ଦେଉଥାନ୍ତି । ଉତ୍କଳ ସାହିତ୍ୟ ସମାଜର ସଭାପତି ପଦରୁ ଜାନୁୟାରୀ ୧୯୮୮ରେ ତାଙ୍କୁ ଅବ୍ୟାହତି ଦିଆଗଲା; କିନ୍ତୁ ପୂନ୍ୟ ପୂଜା ସଂସଦର ସେ ସ୍ଥାୟୀ ସଭାପତି ହୋଇଥିବାରୁ ଇସ୍ତଫା ଗୃହୀତ ନ ହେଲେ ବି ତାଙ୍କ ସ୍ଥାନରେ ଡକ୍‌ଟର ଶ୍ରୀନିବାସ ମିଶ୍ର (ସଂପ୍ରତି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ପ୍ରଫେସର ଓ ବିଭାଗ ମୁଖ୍ୟ) ଙ୍କୁ କାର୍ଯ୍ୟକାରୀ ସଭାପତି ମନୋନୀତ କରାଗଲା ।

ଉତ୍କଳ ସାହିତ୍ୟ ସମାଜର ସଭାପତିଭାବେ ଡକ୍‌ଟର ଦାଶ ଯେଉଁ ପାଞ୍ଚ ବର୍ଷ କାର୍ଯ୍ୟନିର୍ବାହ କରିଛନ୍ତି ସମସ୍ତେ ଜାଣନ୍ତି ସାହିତ୍ୟ ସମାଜ ନୂତନ ପ୍ରାଣିତ ଆବେଗରେ ମାତି ଉଠିଥିଲା । କେତେ ବିଶିଷ୍ଟ ବ୍ୟକ୍ତିଙ୍କ ପ୍ରତିକୃତି ସ୍ଥାପନ, ମୃତ୍ୟୁଦିବସ ଆୟୋଜନ, ପ୍ରବନ୍ଧ ପାଠ ଓ ପ୍ରକାଶ ପ୍ରତିଯୋଗିତା ଓ ପୁରସ୍କାର ପ୍ରଦାନ ଉତ୍ସବ,ସାହିତ୍ୟ-ଯାତ୍ରା,ପାଣ୍ଠି ସଂଗ୍ରହ, ନିୟମାନୁବର୍ତ୍ତୀଭାବେ କାର୍ଯ୍ୟନିର୍ବାହିକା ସମିତି ବୈଠକ, ସାଂଗଠନିକ ଉଦ୍ୟମ ଓ ଯଥାର୍ଥ ବ୍ୟୟ ବ୍ୟତିରେକେ ଅପବ୍ୟୟ ପାଇଁ ତାଙ୍କର ବାରମ୍ବାର ପ୍ରତିରୋଧ ଉତ୍କଳ ସାହିତ୍ୟ ସମାଜକୁ ଏକ ସକ୍ରିୟ ଚଳମାନ ସାଂସ୍କୃତିକ ଅନୁଷ୍ଠାନରେ ପରିଣତ କରିଥିଲା । କହିବା ବାହୁଲ୍ୟ ଯେ କର୍ମକର୍ତ୍ତାମାନଙ୍କ ଅବହେଳା ବା ଦୋଷତ୍ରୁଟିକୁ ସେ କେବେ ବରଦାସ୍ତ କରିନାହାନ୍ତି । ସାହିତ୍ୟ ସମାଜର ବୃହତ୍ତର ହିତଦୃଷ୍ଟିରୁ ଅତି ସ୍ପଷ୍ଟ ଭାଷାରେ ସେ ଯଥେଚ୍ଛାଚାରକୁ ପ୍ରତ୍ୟାଖ୍ୟାନ କରି ଦେଉଥିଲେ । ସେଠି ସାହିତ୍ୟ ସେବା ଓ ଆନୁଷ୍ଠାନିକ ଯୌଥ ଦାୟିତ୍ୱ ତାଙ୍କ ପାଇଁ ବଡ଼କଥା— କୌଣସି ବ୍ୟକ୍ତିଗତ ସମ୍ପର୍କ ବା ମୋହମତି ନୁହେଁ । ତାଙ୍କର ଉଦ୍ୟମରେ ହିଁ କବି ବୈକୁଣ୍ଠନାଥ ତାଙ୍କର ସମସ୍ତ ପୁସ୍ତକରସତ୍ୱ ଉତ୍କଳ ସାହିତ୍ୟ ସମାଜ ଅଧୀନରେ ଦୁଃସ୍ଥ ସାହିତ୍ୟିକ ପାଣ୍ଠିକୁ ଦାନ କରିଥିଲେ । ତାଙ୍କ ସଂପାଦନାରେ ବୈକୁଣ୍ଠନାଥ ଗ୍ରନ୍ଥାବଳୀ (୧ମ ଭାଗ) ପ୍ରକାଶ ପାଇଲା ଓ ୨ୟ ଭାଗ ପାଇଁ ସମସ୍ତ ଆୟୋଜନ ହୋଇଥିଲା ।

ହଁ କହିବାକୁ ଭୁଲି ଯାଉଛି । ଏଇ ସାତଆଠୋଟି ବର୍ଷ ଡକ୍‌ଟର ଦାଶଙ୍କ ଅକ୍ଳାନ୍ତ ପରିଶ୍ରମ କରିବାର ଯେ ଦେଖିଛନ୍ତି ସେ ବିଶ୍ୱାସ କରିପାରିବେ ନାହିଁ ଯେ ସେ

ଜଣେ ଚିର କର୍ମଚଞ୍ଚଳ ଯୁବକ ନା ଷାଠିଏ ବୟସର ବୟସ୍କ ବ୍ୟକ୍ତି । ସେ ଆଜି ମଧ୍ୟ ସତୁରି ବୟସରେ ବୃଦ୍ଧ ନୁହନ୍ତି, ଯଦିଓ ଏବେ ତାଙ୍କ ମୁଣ୍ଡ ବାଲଗୁଡ଼ା ଵିବାକ୍ ଧଳା ହୋଇ ଉଠିଛି । ସେ ତାକୁ ଆଉ ଆଉ ରସିକ ବ୍ୟକ୍ତିମାନଙ୍କ ପରି କଳାରଙ୍ଗ ଲଗେଇ ଚିକ୍କଣ କରିବାର ଆବଶ୍ୟକତା କେବେ ହେଲେ ଉପଲବ୍ଧି କରି ନାହାନ୍ତି । 'ଯଶ, ସମ୍ମାନ, ବନ୍ଧୁତା ଓ ପ୍ରଚୁର ଅର୍ଥାଗମ ତାଙ୍କ ମନ ଓ ହୃଦୟର ନଦୀକୁ ସବୁବେଳେ ଉଚ୍ଛୁଳାଇଛି । ବଡ଼ପୁଅ କୁନାର ସର୍ବଭାରତୀୟ ପ୍ରଶାସନିକ ଚାକିରି (I.A.S.) ଓ ତାଙ୍କୁ କର୍ମତତ୍ପର ରଖିବାକୁ ଏତେ ଆସର, ଅନୁଷ୍ଠାନ, ଶିକ୍ଷାୟତନ, ସାହିତ୍ୟସମାଜ, ସଂସଦ ଓ ଶେଷକୁ ବୃଦ୍ଧ ପ୍ରବୋଧଚନ୍ଦ୍ର ସେନ୍ ( ଇତିହାସ ପ୍ରଫେସର୍ ଓ ପରେ ରବୀନ୍ଦ୍ର କାବ୍ୟ ଛନ୍ଦ ଉପରେ ଗବେଷକ ଅଶୀତି ବର୍ଷୀୟ ବୃଦ୍ଧ ), ଅମୀୟ ଚକ୍ରବର୍ତ୍ତୀ, ଡକ୍ଟର ଜିତେନ୍ଦ୍ର ନାଥ ମହାନ୍ତି, ଡ଼କ୍ଟର ଦିନେଶଚନ୍ଦ୍ର ସରକାର, ଶଙ୍ଖ ଚୌଧୁରୀ, ଶ୍ରୀ ଶଙ୍ଖଘୋଷ, ବୈଦ୍ୟନାଥ ସରସ୍ୱତୀ, ହୀରେନ ଦତ୍ତ, ବିମଳ ଦତ୍ତ ପ୍ରଭୃତି ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଗହଣରେ ପୁନଶ୍ଚ ବର୍ଷଟିଏ ସସ୍ତ୍ରୀକ ଅବସ୍ଥାନ କେବଳ ବିଶ୍ୱଭାରତୀର ପୁରାତନ ସ୍ମୃତିକୁ ଉଜ୍ଜୀବିତ କରୁ ନଥିଲା ତାଙ୍କ କର୍ମକ୍ଲାନ୍ତ ଦେହ ଓ ମନପାଇଁ ଥିଲା ଯଥାର୍ଥରେ ମହୌଷଧି । ସେ ଯେତେ ନିଭୃତରେ ରହିବାକୁ ଚାହିଁଲେବି ଯଶ ଓ ସମ୍ମାନ ତାଙ୍କ ପଛେ ପଛେ ଅନୁଧାବନ କରୁଥିଲା । ୧୯୭୮ ସେପ୍‌ଟେମ୍ବର ୨୩ ତାରିଖରେ କଲିକତା Academy of Folklore ତରଫରୁ 'ଲୋକରତ୍ନ' ଉପାଧି ତହିଁରେ ମିଳିଲା । ଓଡ଼ିଶାର ଲୋକ-ସାହିତ୍ୟ କ୍ଷେତ୍ରକୁ ଜୀବନବ୍ୟାପୀ କର୍ଷଣ କରିଥିବା ଏଇ ଅନଘ କୃଷକଙ୍କୁ ଓଡ଼ିଶା କେତେ ଚହ୍ନିଲି ବା ଏ ଯାବତ୍ ଚହ୍ନିଛି ମୁଁ କହି ପାରିବି ନାହିଁ, କିନ୍ତୁ କଲିକତା ଓ ସମଗ୍ର ଭାରତ ତାଙ୍କୁ ଯେ ଏପରି ଏକ ସମ୍ମାନରେ ଅଭିଷିକ୍ତ କଲା ଏହା ତଥାପି ଆମ ଲୋକଙ୍କ ପରଲକୁ ଘୂଞ୍ଚେଇ ପାରିଛି ବୋଲି ମନେ ହୁଏ ନାହିଁ । ଏ ପ୍ରଦେଶରେ ପ୍ରତିଭାବାନ୍ ଲୋକର ଆଦର ନଥାଏ, ବରଂ ତାର ଦୋଷ ଓ ତ୍ରୁଟି କେଉଁଠି ତାକୁ ଦେଖେଇବାରେ ସମସ୍ତେ ଖୁବ୍ ବାବଦୁକ ହୋଇ ଉଠନ୍ତି । ପ୍ରତିଭାପୂଜା ଅପେକ୍ଷା ପ୍ରତିମା-ପୂଜା ଓ ଆତ୍ମ ବିଜ୍ଞାପନ ଏଠି ବେଶୀହୁଏ । ଡକ୍ଟର ଦାଶଙ୍କ ଲୋକସାହିତ୍ୟ କ୍ଷେତ୍ରକୁ ବିପୁଳ ଅବଦାନ ପାଇଁ 'ଲୋକରତ୍ନ' ଉପାଧି ପାଇବାର ଅବ୍ୟବହିତ ପରେ କଟକ ସହରର ଐତିହାସିକ ବାରବାଟୀ ଦୁର୍ଗ ସନ୍ନିକଟସ୍ଥ ଷ୍ଟାଡ଼ିୟମ୍ ମଞ୍ଚରେ ତିନିଦିନ ଧରି ଯେଉଁ ଆନ୍ତର୍ଜାତିକ ଲୋକସଂସ୍କୃତି ସେମିନାର (୧୯-୧୨-୭୮) ହୋଇଥିଲା ତହିଁରେ ଡକ୍ଟର ଦାଶଙ୍କୁ ବିଶେଷ କିଛି ଭୂମିକା ଦିଆଯାଇ ନଥିଲା ବା ତାଙ୍କୁ ଦେଶବିଦେଶରୁ ଆଗତ ପ୍ରତିନିଧିମାନଙ୍କ ମଧ୍ୟରେ ଚିହ୍ନାଇିତ କରିବାକୁ ଏପରିକି ସାମାନ୍ୟଭାବେ ଚହ୍ନେଇବାର କୌଣସି ଉଦ୍ୟମ ହୋଇ ନଥିଲା । ଉଦ୍ୟୋକ୍ତାମାନେ ବୋଧହୁଏ ଆନ୍ତର୍ଜାତିକ ଭାବଚକ୍ରରେ ଏତେ ଅଣାୟତ୍ତ ହୋଇ ଯାଇଥିଲେଯେ ନିଜ ରାଜ୍ୟର ଗୌରବକୁ

ପ୍ରକ୍ଷିପ୍ତ କରିବାର ସାମାନ୍ୟତମ ଶ୍ରଦ୍ଧା ବା ମାନସିକତା ମଧ୍ୟ ତାଙ୍କର ନଥିଲା । ଆମେ-ମାନେ ଶୁଣୁଥିଲୁ ଏଇ ସେମିନାର୍‌ଟି ଯଦି କଲିକତାରେ ହୋଇଥାନ୍ତା— ଆଃ, ସମଗ୍ର ବେଙ୍ଗଲର ଲୋକ ସଂସ୍କୃତି ଓ ଏହାର ଚିହ୍ନିବା ଗ୍ରାହକମାନଙ୍କୁ ପୃଥିବୀକୁ ଚହ୍ଲାଇବାରେ ସେଉଁ ବିପୁଳ ପ୍ରଚାରମୂଳକ ଉଦ୍ୟମ ହୋଇଥା'ନ୍ତା ତାହାର ତୁଳନା ନଥାନ୍ତା । ଆମେ ନିଜକୁ ବିକ୍ଷାପିତ କରି ପାରୁ ନଥିବାରୁ ଜାତୀୟ ଓ ଆନ୍ତର୍ଜାତୀୟ କ୍ଷେତ୍ରରେ ଆମେ ସଂକୁଚିତ ଓ ମ୍ରିୟମାଣ ଓଡ଼ିଆଜାତି ଭାଗ୍ୟ ଓ ଭବିତବ୍ୟକୁ ଆଦରି ପଡ଼ି ରହିଛୁ । ଆମର ଜାତୀୟ ନେତା ନାହାନ୍ତି, ଜାତୀୟ ବିଭବ ନାହିଁ, ଜାତୀୟ ସ୍ପର୍ଦ୍ଧା ଓ ସ୍ୱାଭିମାନ ନାହିଁ, ଜାତୀୟ ଆକୁତି ଓ ପ୍ରୟୋଜନ ନାହିଁ । ଆମେ କେବଳ ଓଡ଼ିଆ; ଅସୂୟା, ଈର୍ଷା ଓ ପରଶ୍ରୀକାତର ଜାତି । ପ୍ରାଣ ଓ ମନରେ ଶ୍ରେଷ୍ଠ, ଚିରରୁଦ୍ଧ ଅନ୍ଧକାର ଗୁହାର ଅଧିବାସୀ ।

ସରସ୍ୱତୀଙ୍କ ସେବାରେ ଲକ୍ଷ୍ମୀ ଆପେ ଆପେ ବଶ ହୁଅନ୍ତି । ସୃଜନର ଆନ୍ତରିକତା ଓ ସତ୍ୟନିଷ୍ଠା ସପତ୍ନୀ ଲକ୍ଷ୍ମୀଙ୍କୁ ବି ଅଭିଭୂତ କରେ— ଏପରି ଦୃଷ୍ଟାନ୍ତ ଡକ୍‌ଟରଙ୍କ ଦାଶ । ୧୯୭୯ରେ ତାଙ୍କ 'ହଂସକାନ୍ଦର ଗଳ୍ପ' ଓ ୧୯୭୯ରେ ତାଙ୍କ ଶେଷକବିତା ସଂକଳନ 'ଅପରାହ୍ଣର କେତୋଟି ସ୍ୱର', Folklore of Orissa, ୧୯୮୦ରେ ଉପନ୍ୟାସ 'ମାଶାଣୀ ତୁଳସୀ', ୧୯୮୧ରେ 'ମଣିମା ଶୁଣିମା ହେଉ' ଓ ୧୯୮୩ରେ 'କି କଥା କଲିକତା' ଉପନ୍ୟାସ ପ୍ରକାଶ ପାଏ । Folklore of Orissa ତାଙ୍କ ଜୀବନବ୍ୟାପୀ ସାଧନାର ଅଭିଳାଷ ଥିବାରୁ ତାହା ଆମକୁ ଆଶ୍ଚର୍ଯ୍ୟାନ୍ୱିତ କରିନାହିଁ । କିନ୍ତୁ ଅନ୍ୟ ତିନୋଟି ପୁସ୍ତକ ବିଶେଷତଃ ଗଳ୍ପ ଓ ଉପନ୍ୟାସ କ୍ଷେତ୍ରକୁ ତାଙ୍କର ଅଭିଯାତ୍ରା ଯଥାର୍ଥରେ ରହସ୍ୟାତ୍ମକ । ସେ କେତେଦୂର ଏଇ କଥା ସାହିତ୍ୟଗୁଡ଼ିକରେ ସଫଳ ହୋଇଛନ୍ତି ସେକଥା ସମାଲୋଚକେ ବିଚାର କରିବେ । କିନ୍ତୁ ଜୀବନର ସାୟାହ୍ନରେ ସେ ଯେ ଫକୀରମୋହନଙ୍କ ପରି ଗଳ୍ପ ଓ ଉପନ୍ୟାସକୁ ଆଦରି ବସିଲେ ଏହାହିଁ ତାଙ୍କ ସ୍ରଷ୍ଟାମାନସର ବୈଚିତ୍ର୍ୟ । ସାହିତ୍ୟର ସବୁ ବିଭାଗରେ କିଛି ଚିହ୍ନ ଛାଡ଼ିଯିବା ବୋଧ-ହୁଏ ତାଙ୍କର ଏକାନ୍ତ ଅଭିଳାଷ । କିନ୍ତୁ 'ଅପରାହ୍ଣର କେତୋଟି ସ୍ୱର' ? ଏକ କରୁଣ ଓ ହାରିହୃତପୂର୍ଣ୍ଣ ମିଳନାନ୍ତକନାଟକର ଏହା କଣ ଶେଷ ଦୃଶ୍ୟ ? ଜୀବନସାରା କବିତା ଲେଖି ଲେଖି ଅଙ୍କ ପଡ଼ି ନଥିବା ଏ କବି ଗଦ୍ୟର ଧୂସର ସରଣୀରେ ବୁଲି ବୁଲି ପୁଣି ଯେ କବିତାକୁ ସ୍ମରଣ କରିଛନ୍ତି ଏହା ତାଙ୍କ କବିପ୍ରାଣର ବ୍ୟାକୁଳତା ନିଶ୍ଚୟ । ଅବଶ୍ୟ 'ଅପରାହ୍ଣର କେତୋଟି ସ୍ୱର'ରେ ତାଙ୍କ ପ୍ରାକ୍ତନ କାବ୍ୟପ୍ରତିଭାକୁ ଖୋଜିଲେ ମିଳେ ନାହିଁ, ବୋଧହୁଏ ଏସବୁ ତାଙ୍କ କ୍ଷୟିଷ୍ଣୁମାଣ ସମୟର ସୃଷ୍ଟି । ତେଣୁ 'ଫସିଲ୍ ଓ ଫସଲ', 'ଚତାଚନ୍ଦ' ବା 'କୁହୁଲିପି'ର ମାର୍ମିକ ଓ କାବ୍ୟିକ ଉଚ୍ଚତା ଏଥିରେ ନାହିଁ । ତଥାପି ସ୍ୱକପ୍ରକାଶରେ ତାଙ୍କର କୌଣସି ଆବିଳ ନାହିଁ । ଯାହା ଅନୁଭବ କରିଛନ୍ତି ତାର

ଅନାଘ୍ରାତ ସୌରଭକୁ ଅକପଟ ଆନ୍ତରିକତାରେ ପରିବେଷଣ କରିବା ତାଙ୍କର ଅଭିଳାଷ । ସେଇ ଅଭିଳାଷର ପରିପୋଷକତା କରେ ତାଙ୍କ ବ୍ୟକ୍ତି ଜୀବନର ବିପୁଳ ଅନୁଭୂତି, ଦର୍ଶନ, ଅନୀଷା ଓ ମନୀଷା । ସେ ଯେ ଜୀବନର ସାୟାହ୍ନରେ ଉପନ୍ୟାସ ଲେଖିବେ ଏକଥା କିଏ କେହି କେବେ କଳ୍ପନା କରିଥିଲା ? ଏଗୁଡ଼ିକୁ ପ୍ରକାଶ କରି ସେ ସମସ୍ତଙ୍କୁ ବିସ୍ମିତ କରିଦେଲେ । କିନ୍ତୁ ଯେଉଁମାନେ ଏକଦା ତାଙ୍କ ନିରବଚ୍ଛିନ୍ନ ଆତ୍ମୀୟତା ଓ ନିରଳସ ବନ୍ଧୁତାରୁ ବହୁ ଲାଭ ଉଠାଇଥିଲେ ସେଇମାନଙ୍କ ମଧ୍ୟରୁ କେତେଜଣ ତାଙ୍କ ପ୍ରତିଷ୍ଠାରେ ଏତେ ମ୍ରିୟମାଣ ଯେ ନାନା ଛଦ୍ମନାମରେ ପତ୍ରପତ୍ରିକାରେ କବିତା ରଚନା କରି ଏହି ଅଚଳ ମହାମେରୁକୁ ଆଘାତ କରିବାକୁ ଚେଷ୍ଟା କରିଛନ୍ତି । କିନ୍ତୁ ସେ ସବୁ ପାହାଡ଼କୁ ଟେକାପରି ଚୂରି ହୋଇ ଯାଇଛି, ଡକ୍ଟର କୁଞ୍ଜବିହାରୀଙ୍କର କୌଣସି ପ୍ରତିକ୍ରିୟା ନାହିଁ । ସେ ବନ୍ଧୁଦ୍ରୋହୀ ହେବାକୁ ପସନ୍ଦ କରନ୍ତି ନାହିଁ । ତେଣୁ ନୀରବତାହିଁ କାମ୍ୟ ମନେ ହୋଇଛି ।

ଆଗରୁ ସୂଚନା ଦେଇଛି ଯେ ଡକ୍ଟର ଦାଶ ତାଙ୍କ ବ୍ୟକ୍ତିତ୍ୱ ଓ କର୍ମ ପ୍ରବାହକୁ ନାନା ଦିଗକୁ ବିସ୍ତୃତ ଦେଇଛନ୍ତି । ସେହିପରି ଗୋଟିଏ ବଡ଼ କାମ ହେଲା ଶାରଳା ପୁରସ୍କାର (୧୯୭୯) ଉପଦେଷ୍ଟା ବୋର୍ଡର କାର୍ଯ୍ୟକାରୀ ସଭାପତି ପଦ ମଣ୍ଡନ କରିବା । ସେ ଦୀର୍ଘଦିନ ଧରି ଜ୍ଞାନପୀଠ ସଂସ୍ଥା ତରଫରୁ ଓଡ଼ିଆ ସାହିତ୍ୟ ପରାମର୍ଶଦାତା ବୋର୍ଡର ସଭ୍ୟ ଥିଲେ । ପୁନଶ୍ଚ ଦୀର୍ଘକାଳ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ସାଧାରଣ ପରିଷଦର ସଭ୍ୟ ମଧ୍ୟ ଥିଲେ । ୧୯୭୯ରେ ଶିଳ୍ପପତି ବଂଶୀଧର ପଣ୍ଡା ଓ ତାଙ୍କ ସହଧର୍ମିଣୀ ସାହିତ୍ୟ-ସଂସ୍କୃତି ଅନୁରାଗୀ ଶ୍ରୀମତୀ ଇଲା ପଣ୍ଡାଙ୍କ ଉଦ୍ୟମ ଓ ଅନୁଦାନରେ ଓଡ଼ିଆ ସାହିତ୍ୟର ଉତ୍କୃଷ୍ଟ ସୃଷ୍ଟି ପାଇଁ ବାର୍ଷିକ ଦଶହଜାର ଟଙ୍କାର ଏକ ପୁରସ୍କାର ପ୍ରଦାନ ବ୍ୟବସ୍ଥା ହେଲା । ଏଥିପାଇଁ ଗଠିତ ପରାମର୍ଶଦାତା ବୋର୍ଡରେ ସେ ପ୍ରାରମ୍ଭରୁ ଏ ଯାବତ୍ କାର୍ଯ୍ୟକାରୀ ସଭାପତି ଦାୟିତ୍ୱ ତୁଲାଇ ଆସୁଛନ୍ତି । ଏ ଦାୟିତ୍ୱରେ ଆଜି ସେ ଯେଉଁ କଠୋର ନିରପେକ୍ଷତା ପ୍ରଦର୍ଶନ କରିଛନ୍ତି ତାହା ଏକାନ୍ତ ଅନୁକରଣୀୟ । କିନ୍ତୁ ଯେପରି ମନେହୁଏ ଆଧୁନିକ ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ କବି ହୋଇ ବି ସାମ୍ପ୍ରତିକ କବିତା ପ୍ରତି ସେ ଯଥେଷ୍ଟ ଧ୍ୟାନନିଷ୍ଠ ଓ ସହାନୁଭୂତିଶୀଳ ନୁହନ୍ତି । ବାରମ୍ବାର କହନ୍ତି ଯେ " ଏ ସବୁ କି କବିତା ଲେଖା ଯାଉଛି ? ନା ଭାବ ନା ଅଭିବ୍ୟକ୍ତି ? ମୁଁ ଆଦୌ ବୁଝିପାରୁନି ।" ମୋର ଏଥିପାଇଁ ତାଙ୍କ ସହିତ ଯୁକ୍ତି ହୁଏ ଓ ମୁଁ ସିଧା ସଳଖ ଅଭିଯୋଗ କରେ ଯେ "ଆପଣ ଆଜିର କବିତାକୁ ଯଥେଷ୍ଟ ଉଦାରତା ଓ ସହାନୁଭୂତି-ଶୀଳତା ସହିତ ପଢ଼ୁ ନାହାନ୍ତି । ସବୁ ଯୁଗରେ ସବୁ କବିତା ସହଜବୋଧ୍ୟ ନଥିଲା । ଏବେ ବି ହେଉନାହିଁ । କିନ୍ତୁ ସାମ୍ପ୍ରତିକ କବିତାରେ ଯେଉଁ ଭାବବିଭବ ଓ ପ୍ରାଣସଞ୍ଚ

ରହିଛି ତାହା ପ୍ରାଚୀନ ବର୍ଣ୍ଣନାତ୍ମକ କବିତାରେ ତତ୍ପରମ ନଥିଲି ।" ଏ ଯୁକ୍ତି ଅଛିଣ୍ଡା । ତେଣୁ ଆମେ ସମାଧାନରେ ପହଂଚ ପାରୁନାହିଁ ।

୧୯୮୦ ଫେବୃୟାରି ତା୨୮ରିଖରେ କେନ୍ଦ୍ର ସାହିତ୍ୟ ଏକାଡେମୀର ରଜତ ଜୟନ୍ତୀ ଉତ୍ସବରେ ସେ ନିମନ୍ତ୍ରିତ ଅତିଥିଭାବେ ଓଡ଼ିଶାରୁ ଯୋଗ ଦେଇଥିଲେ ଓ ୧୯୮୨ଡ଼ିସେମ୍ବର ଭୁବନେଶ୍ୱରଠାରେ ଓଡ଼ିଶା ସାହିତ୍ୟ ଏକାଡେମୀର ରଜତ ଜୟନ୍ତୀ ମଣ୍ଡପରୁ ମାନପତ୍ର ଓ ଉପାୟନ ପାଇଲେ । ଏତଦ୍‌ବ୍ୟତୀତ ଓଡିଆ ସାହିତ୍ୟ ଏକାଡେମୀ ତାଙ୍କ ମୂଲ୍ୟବାନ ଅଭିଜ୍ଞତାର କିଛି ଉପଯୋଗ କରିଛନ୍ତି ବୋଲି ମନେ ହୁଏନାହିଁ । ସେପରିକି ସେ ଏକଦା 'Orissa Sanskrit Learning Culture'ସଂସ୍ଥାର ସୁପରିଣ୍ଟେଣ୍ଡେଣ୍ଟ ଭାବେ କାର୍ଯ୍ୟ ତୁଳାଇଥିଲେ ବି ନବଗଠିତ ଜଗନ୍ନାଥ ବିଶ୍ୱବିଦ୍ୟାଳୟ ପାଇଁ ତାଙ୍କ ଅଭିଜ୍ଞତାକୁ ମଧ୍ୟ ବିନିଯୋଗ କରାଯାଇନାହିଁ— ଏହା ଆମ ଶିକ୍ଷାନୀତିର ପ୍ରମାଦ ଛଡ଼ା ଆଉ କଣ ହୋଇପାରେ ? ମୁଁ କେବଳ ନୁହେଁ, ଓଡ଼ିଶାର ସବୁ ସଚେତନ ଲୋକେ ଜାଣନ୍ତି ଯେ ଯଦି କୌଣସି ପ୍ରଶାସକଙ୍କୁ କୌଣସି ଏକ ବିଭାଗର ପ୍ରଶାସନିକ ପରିଚାଳନା ରେ ଅଧିକ ଜ୍ଞାନ ଓ ଅଭିଜ୍ଞତା ଆହରଣ ପାଇଁ ବିଦେଶକୁ ପଠାଯାଏ, ତେବେ ବିଦେଶରୁ ଫେରି ସେ ଆଉ ସେଇ ବିଭାଗରେ ତାଙ୍କ ବୁଦ୍ଧିର ଉପଯୋଗ କରିପାରନ୍ତି ନାହିଁ । ଅନ୍ୟତ୍ର ଅବସ୍ଥାପିତ ହୁଅନ୍ତି । ଉପଯୁକ୍ତ ଲୋକଙ୍କୁ ବାଛି ବାଛି ଯଥାର୍ଥ ଦାୟିତ୍ୱ ନ୍ୟସ୍ତ କରିବାରେ ଆମ ସରକାରଙ୍କ କାର୍ପଣ୍ୟ ବା ଉଦାସୀନତା ଆମ ପ୍ରଶାସନିକ ବିପର୍ଯ୍ୟୟର କାରଣ ହେଉଥିଲେ ବି ସେଥିପାଇଁ ସରକାର ଦୃଷ୍ଟିପାତ କରନ୍ତି ନାହିଁ । ତେଣୁ ତୋଷାମଦହିଁ ପଦପଦବୀ ହାସଲର ଏକମାତ୍ର ପରିମାପକ ହୋଇଯାଏ । ଡକ୍ଟର ଦାଶ ଜୀବନରେ କାହାର ସ୍ତାବକତା କରିଛନ୍ତି ବୋଲି ମୋର ମନେ ହେଉନାହିଁ । ସେ ବରାବର କହନ୍ତି ଯେ— 'ଦୁନିଆଁରେ କେବଳ ଗୋଟିଏ ଲୋକକୁ ଡରିବା କଥା । ସେ ହେଉଛି ଉପରବାଲା-ସବୁ ଯେ କରି କରାଉଛି । ତା' ଛଡ଼ା ଆଉ କାହାକୁ ମୋର ଡ଼ରିବାର ବା ଖାତିର କରିବାର ନାହିଁ ।" ଏହା ଅର୍ଥ ନୁହେଁ ଯେ ସେ ବେପରୁଆ, ବେସାଲିସ୍ ଉଦ୍ଧତ ଓ ଦାୟିତ୍ୱହୀନ । ମୁଁ ରେଭେନ୍‌ସା କଲେଜରେ ନିଜେ ଦେଖିଛି ଓ ସହକର୍ମୀଙ୍କଠାରୁ ଶୁଣିଛି ଦାୟିତ୍ୱ ନିର୍ବାହରେ ସେ କେତେ କର୍ମ କଠୋର । ଯଦି କୌଣସି ଅଧ୍ୟାପକ କ୍ଲାସ୍‌କୁ ଡେ଼ରିରେ ଆସନ୍ତି ସେ ସଙ୍ଗେ ସଙ୍ଗେ ତାଙ୍କୁ ହସି ହସି ଏତେ ଚମତ୍କାର ଚେତାବନୀ ଦିଅନ୍ତି ଯେ ତାହା ମର୍ମସ୍ଥଳ ବିଦ୍ଧକରେ । ମୋତେ ବାରମ୍ବାର ତାଗିଦକରି ନଥିଲେ ମୁଁ କିପରି ଆଧୁନିକ ଓଡ଼ିଆ କବିତାର ଚାଳିଶ ବର୍ଷ (୧୯୨୦—୬୦) ଉପରେ ଏତେ ବଡ଼ କାମଟିଏ କରିପାରିଥାନ୍ତି ? ପହଞ୍ଚିଲି ମାତ୍ରେ ତାଙ୍କର ଜିଜ୍ଞାସା "କାମ ଟିକଉଁଯାଏ ଗଲା ? ଡେ଼ରି କାହିଁକି ହେଉଛି । ଅନ୍ୟକାମ ବନ୍ଦକରି କାୟମନୋବାକ୍ୟରେ

ଲାଗିପଡ଼େ " ଇତ୍ୟାଦି............ଇତ୍ୟାଦି............। ଏଥିରୁ ମୁକୁଳିବାର ଉପାୟ ନାହିଁ ।

ଶୋଇବା ଖାଇବା ସଭାସମିତିରେ ଯୋଗ ଦେବାରେ ତାଙ୍କର ଅଦ୍ଭୁତ ନିୟମାନୁବର୍ତ୍ତିତା । ଅପେକ୍ଷା କରି କରି ଉଦ୍ୟୋକ୍ତାମାନଙ୍କ ଗାଡ଼ି ଯଦି ନ ଆସେ ତେବେ ସେ ପୋଷାକପତ୍ର ଖୋଲି ଲୁଙ୍ଗି ପିନ୍ଧି ବସିଯାଆନ୍ତି । ନିର୍ଦ୍ଦିଷ୍ଟ ସମୟ ଅତୀତ ହେବାପରେ ଗାଡ଼ିଆସିଲେ ଫେରେଇ ଦିଅନ୍ତି । ବିଳମ୍ବରେ ସଭାସ୍ଥଳକୁ ଯାଇ ଦର୍ଶକ ଓ ଶ୍ରୋତାଙ୍କ ଅଶ୍ରଦ୍ଧାଭାଜନ ହେବା ତାଙ୍କର ଧର୍ମ ନୁହେଁ । ପୁନଶ୍ଚ ଯାହାକୁ ପ୍ରଥମେ ଜବାବ୍ ଦେଇଥିବେ ତାକୁ ପୂରଣ ନ କଲା ପର୍ଯ୍ୟନ୍ତ ସେଇଦିନ ପାଇଁ ଗ୍ରହଣ କରନ୍ତି ନାହିଁ । ସେ ମାର୍କଣ୍ଡେଶ୍ୱର ଭଣ୍ଡାରୀ ପରି ଅପେକ୍ଷାରେ ବସାଇ ରଖିବା ଲୋକ ନୁହନ୍ତି । ଦ୍ୱିତୀୟ ଆମନ୍ତ୍ରଣଟି ଯେତେ ଆକର୍ଷଣୀୟ ହେଲେ ମଧ୍ୟ ପ୍ରଥମଟି ପାଇଁ ତାହା ବାଦ୍ ପଡ଼େ । ଶ୍ରେଷ୍ଠ ଅନୁଷ୍ଠାନ ବୋଲି ତାକୁ ଅବହେଳା କରି ବଡ଼ ଅନୁଷ୍ଠାନର ଆଟୋପ ଓ ଆଭିଜାତ୍ୟରେ ପ୍ରଲୁବ୍‌ଧ ହେବା ଲୋକ ସେ ନୁହନ୍ତି । ସବୁବେଳେ ମଜାମଜା ଅଳ୍ପ କଥା । ଯେ ଜାଣି ନଥିବ ହଠାତ୍ ଅପ୍ରତିଭ ହୋଇ ପଡ଼ିବ ।

ମୁଣ୍ଡଉପରକୁ ଟେକି ହାତୀ ପରି ରାଜକୀୟ ଠାଣିରେ ସେ ଚାଲନ୍ତି । ଯେତେବେଳେ ତାଙ୍କ ଘରକୁ ଯାଏ ମୁଁ ଦେଖେ ସତେ ଯେପରି ପିଞ୍ଜରାବଦ୍ଧ ସିଂହଟିଏ କୋଠରୀମଧ୍ୟରେ ଅସ୍ଥିର ଭାବେ ପାଦଚାଳୁଛନ୍ତି । ମୁଁ ବା ଅନ୍ୟମାନେ ଚେୟାର୍‌ରେ ବସିଥାଉ । ସେ ସେହିପରି କ୍ଷିପ୍ର ପଦପାତରେ ଚାଲୁ ଚାଲୁ କଥାବାର୍ତ୍ତା କରନ୍ତି । ଏହା ତାଙ୍କ ପାଇଁ ଏକପ୍ରକାର ବ୍ୟାୟାମର ବ୍ୟବସ୍ଥା । ଏତେ ବଡ଼ ଚଉଖୁଣ୍ଟିଆ ଶାଳପ୍ରାଂଶୁ ମଣିଷକୁ ପୁଣି ଶ୍ୱାସ ଏପରି କବଳିତ କରି ବସେ ଯେ ସେତେବେଳେ କଥାବାର୍ତ୍ତା କରିବାର ଜୋ' ନଥାଏ । ଘାଙ୍ଗେ ଘାଙ୍ଗେ ଔଷଧ ସେବନ ବା ଇଂଜେକ୍‌ସନ୍‌ର ବ୍ୟବସ୍ଥା ହୁଏ । ଶ୍ୱାସ ପାଇଁ ଥରେ କଟକର ଶ୍ରୀରାମଚନ୍ଦ୍ର ଭଂଜ ମେଡିକାଲ୍ କଲେଜରେ ଗଳାନଳୀରେ ଅପରେସନ୍ ହୋଇଥିଲେ । ଡାକ୍ତର ବ୍ରଜକିଶୋର ଦାଶ ('ସର୍ଜନ')ଙ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ । ସେହିପରି ଡ଼ାକ୍ତର ରଘୁ ସାହୁଙ୍କ ଉପରେ ମଧ୍ୟ । କିନ୍ତୁ ବେଶୀ ନିର୍ଭର କରନ୍ତି ପ୍ରଫେସର ଡାକ୍ତର ବଂଶୀଧର ଦାଶ ଓ ଯୁବଡାକ୍ତର ରବି ଆଚାର୍ଯ୍ୟଙ୍କ ଉପରେ । ସେମାନେ ପଡ଼ୋଶୀ । ଭଲରେ ମନ୍ଦରେ ହାଜର ହୋଇ ସେବାରେ ଲାଗିଯାଆନ୍ତି । ଡକ୍ଟର ଦାଶଙ୍କୁ ଶ୍ୱାସକଥା ପଚାରିଲେ ସେ କହିବେ—"ଅପରେସନ୍ ପରେ ପ୍ରାୟ ଭଲ ହୋଇଯାଇଛି । ଆଉ ସେତେ ପ୍ରକୋପ ନାହିଁ" । କିନ୍ତୁ ଶ୍ୱାସ ଭଲ ହୁଏନାହିଁ । ତେଣୁ ଭୁବନେଶ୍ୱର ଭେଙ୍କଟେଶ୍ୱରନାଥ କଲେଜର ଅଧ୍ୟାପକ

ଡକ୍ଟର ବିଭୂତି ଭୂଷଣ ରଥଙ୍କ ପାଖକୁ ଔଷଧ ପାଇଁ ଟଙ୍କା ପଠାଇ ଚାହିଁ ରହିଥାନ୍ତି । ଅଧ୍ୟାପକ ଅଭିନ୍ନ ସାହୁ ଔଷଧ ଆଣି ଯୋଗାଇଦେବେ । ଔଷଧ ପୁଣି କାଶ୍ମୀରରୁ ଆସିବ । ଶତାଧିକ ଶ୍ୱାସରୋଗୀଙ୍କୁ ମହାପ୍ରସାଦ ସହ ବଣ୍ଟାଯିବ । ଡାକରେ ଆସିବାରେ ବିଳମ୍ବ ହେବା ସ୍ୱାଭାବିକ । ସେଦିନଗୁଡ଼ିକରେ ଡକ୍ଟର ଦାଶ ମ୍ରିୟମାଣ ହୋଇ ଅପେକ୍ଷାରେ ରହିବେ ।

କିନ୍ତୁ ଏଥିରେ ମଧ୍ୟ କର୍ମପ୍ରବାହରେ ବିରତି ନାହିଁ । ଗ୍ରାମରେ ଘନଶ୍ୟାମ ଆରୋଗ୍ୟ ନିକେତନ ମୃତ ବଡ଼ଭାଇଙ୍କ ନାମରେ ଏକ ଦାତବ୍ୟଚିକିତ୍ସାଳୟ ପ୍ରାୟ ଛ' ଲକ୍ଷରୁ ଅଧିକ ଟଙ୍କାରେ ନିର୍ମିତ ହୁଏ । ଦୁଇବର୍ଷଧରି କଟକ ସହରରୁ କାଠ, ସିମେଣ୍ଟ୍, ଲୁହାଛଡ଼, ମିସ୍ତ୍ରୀ ସମସ୍ତେ ଟ୍ରକ୍‌ରେ ବୁହାହୋଇ ଯିବେ । କଟକର ସରକାରୀ କାଠଗୋଲାରେ ଘଣ୍ଟା ଘଣ୍ଟା ଧରି କାଠ କିଣା ଓ କାଠଚିରିବାରେ ସେ ସମୟ ଦେବେ । ଶାରଳା ପୁରସ୍କାର କାର୍ଯ୍ୟନିର୍ବାହିକା ବୈଠକରେ ଯୋଗ ଦେବାକୁ ଆସି ନିଷ୍ଠାପ୍ର ସମାଜସେବୀ ଶଶିଭୂଷଣ ମିଶ୍ର କମ୍ପା ମୁଖ୍ୟମନ୍ତ୍ରୀଙ୍କ ସେକ୍ରେଟାରୀଙ୍କୁ ଭେଟି ଗୋଟିଏ ଓ୍ୱାଗନ୍ ସିମେଣ୍ଟପାଇଁ ଅନୁରୋଧ କରିବେ । ଲୁହାଛଡ଼ ପାଇଁ ମଧ୍ୟ । ଏ କାମରେ ବିଷାଦ ଓ ଆହ୍ଲାଦ ଆପତତଃ ଗୋଳା ଗୋଳି ଓ ମିଶା ମିଶି । ମନ୍ତ୍ରୀ ବା ଶାସକମାନଙ୍କ ଦ୍ୱାରକୁ ଗ୍ରାମର କାର୍ଯ୍ୟ କାର୍ଯ୍ୟପାଇଁ ଦୌଡ଼ିବାରେ ଅବସାଦ. କେବେ ସଫଳତାର ଆନନ୍ଦରେ ନିଭିଯାଏ ତ କେବେ ପ୍ରତୀକ୍ଷାର ବିରକ୍ତିରେ ବଢ଼ିଯାଏ । ତଥାପି ସେ ଆଶାହୀନ ହୁଅନ୍ତି ନାହିଁ । ଶେଷକୁ ଏଇଥିପାଇଁ ସେ ହଠାତ୍ ଶକ୍ତ ବେମାର ହୋଇ ସଂଜ୍ଞାହୀନ ଅବସ୍ଥାରେ କଟକ ମେଡ଼ିକାଲ୍‌ରେ ଭର୍ତ୍ତି ହୁଅନ୍ତି । କିଏ କହିଲା ସେରେବ୍ରାଲ୍ ଥମ୍ବୋସିସ୍ ତ କିଏ କହିଲା ଅତିରିକ୍ତ ଶ୍ରମ ଓ ଗ୍ରୀଷ୍ମତାପ ହେତୁ କନଭଲସନ୍ । ସେ କେତେଦିନ କଟକ ସହରର ସବୁ ଜଣାଶୁଣା ଲୋକଙ୍କ ଭିଡ଼ ବଡ଼ ଡାକ୍ତରଖାନାରେ ଲାଗିରହିଲା । ସେ ଚିକିତ୍ସାପରେ ସଂଜ୍ଞାପାଇଲେ ଓ କଥାବାର୍ତ୍ତା କରିବାକୁ ସକ୍ଷମ ହେବାମାତ୍ରେ ଡାକ୍ତରମାନଙ୍କ ବାରଣ ସତ୍ତ୍ୱେ ସମସ୍ତଙ୍କ ସହିତ କଥାବାର୍ତ୍ତା ପାଇଁ ଅଧୀର ହୋଇ ପଡ଼ିବେ । ନିଜଗ୍ରାମ ରେଣ୍ଟ ଶାସନର ଯେଉଁ ଆରୋଗ୍ୟ ନିକେତନ ପାଇଁ ଅତିରିକ୍ତ ଶ୍ରମ ହେତୁ ଏପରି ଅନାମିତ ବେମାରିରେ ସେଦିନ ସେ ବିଛଣାରେ ଅସହାୟ ଶିଶୁଟି ପରି ଲଙ୍ଗଳାଫୁଙ୍ଗୁଳା ହୋଇ ପଡ଼ିଥିବାର ମୁଁ ଦେଖିଥିଲି, ଡାକ୍ତରଖାନାରେ ଭେଟିଥିଲି ଓ ୪ର୍ଥ ଶାରଳା ପୁରସ୍କାର ସଭାମଂଚରେ (ତା ୧୪ଜୁନ୍ ୧୯୮୩) ତାଙ୍କର ପ୍ରଥମ ଅନୁପସ୍ଥିତି ଆମ ସମସ୍ତଙ୍କୁ ବ୍ୟଥିତ କରିଥିଲା ଶେଷକୁ ସେଇ ଆରୋଗ୍ୟ ନିକେତନର ଉଦ୍‌ଘାଟନ ଉତ୍ସବ ହେଲା ଗତ ଡିସେମ୍ବର ତା ୧୭ରିଖ ୧୯୮୩ ମହିମାରେ । ଆମେରିକାବାସୀ ସାନଭାଇ ଉଦୟନାଥଙ୍କ ଦାନରେ ନିର୍ମିତ ଏଇ ସୌଧରେ ସେଦିନ ଏହି ଅନୁଜ ଦଂପତ୍ତିଙ୍କ

ସମେତ କଟକ ସହରରୁ ଆଗତ ବିଶିଷ୍ଟ ଧନ୍ୱନ୍ତରୀମାନେ ଯୋଗଦେଇଥିଲେ । ସହସ୍ରାଧିକ ଜନତା ଓ ଶତାଧିକ ରୋଗୀଙ୍କ ସମାଗମ । ସକାଳଠାରୁ ରୋଗୀଦେଖା ଓ ଔଷଧ ବିତରଣ ଚାଲିଲା । ଅପରାହ୍ଣରେ ବିରାଟ ଜନସଭାର ଆୟୋଜନ-ଆରୋଗ୍ୟ ନିକେତନର ମୁକ୍ତ ପ୍ରାଙ୍ଗଣରେ ସୁସଜ୍ଜିତ ଚନ୍ଦ୍ରାତପ ତଳେ । ସମାଜସେବୀ ନିର୍ଭୀକ ସମ୍ବାଦିକ 'ସମାଜ'-ର ସମ୍ପାଦକ ଡ଼କ୍‌ଟର ରାଧାନାଥ ରଥ ମୁଖ୍ୟ ଅତିଥିଭାବେ ଯୋଗ ଦେଇଥିଲେ । ମୋତେ ବିବରଣୀ ପାଠ କରିବାକୁ ହୋଇଥିଲା । —ତାହାଥିଲା ଡ଼କ୍‌ଟର ଦାଶଙ୍କ ନିର୍ଦ୍ଦେଶ । ତାଙ୍କର କିନ୍ତୁ ଦୁଃଖ ରହିଗଲା ଓଡ଼ିଶାର ଏହି ଅନ୍ୟତମ ଜାତୀୟ କାର୍ଯ୍ୟଟିର ଉଦ୍‌ଘାଟନ-ଉତ୍ସବରେ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କୁ ବାରମ୍ବାର ଅନୁରୋଧ କରିବା ସେ ଯୋଗ ଦେଲେ ନାହିଁ । ଆଜିକାଲି ଓଡ଼ିଶାରେ ରାଜନୈତିକ ମତଲବ୍ ସବୁକଥାକୁ ନିୟନ୍ତ୍ରଣ କରୁଛି । ଭୋଟ୍ ନାହିଁତ ଭେଟ ନାହିଁ । ନିର୍ବାଚନ ଅଭିମୁଖୀ ରାଜନୈତିକ ତତ୍ପରତାର ମାନଦଣ୍ଡରେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଅବଦାନ, ଉଦ୍ୟମ, ବିଚାରଧାରା ଓ ପରାମର୍ଶ ଚିହ୍ନଟ ହୋଇପାରେ ନାହିଁ । କିନ୍ତୁ ମହାକାଳ କଣ ତା ପଞ୍ଜୀରୁ ଏସବୁ ମହତକାମକୁ ପୋଛିନେଇ ପାରେ ଏହାହିଁ ଡ଼କ୍‌ଟର ଦାଶ ଓ ସ୍ୱାଧୀନ ମନୋଭାବାପନ୍ନ ଜନସାଧାରଣଙ୍କ ଏକମାତ୍ର ବିଶ୍ୱାସ ଓ ଭରସା ।

ସେଦିନ ଜଣେ ଗବେଷକ ତାଙ୍କ ଘରେ ମୁହଁ ଶୁଖାଇ ବସିଥାନ୍ତି । ଡ଼କ୍ଟର ଦାଶ ତାଙ୍କ ଗବେଷଣା-ନିବନ୍ଧଟିକୁ ନିମ୍ନମାନର ବୋଲି ଉଲ୍ଲେଖ କରି ଡିଗ୍ରୀପାଇଁ ସୁପାରିଶ କରି ନଥାନ୍ତି । ଆହୁରି ଶ୍ରମ ଓ ସାଧନା ପାଇଁ ତାଙ୍କୁ ଉତ୍ସାହିତ କରୁଥାନ୍ତି । ବୋଧହୁଏ ଶାନ୍ତିନିକେତନର କେହି ପ୍ରିୟ ଛାତ୍ର ହେବେ । ସେ ମୁଣ୍ଡଟିକୁ ତଳକୁ ପୋତି ବସିଥାନ୍ତି । ଡ଼କ୍‌ଟର ଦାଶ କହୁଥାନ୍ତି—"ମୁଁ ପିଏଚ୍. ଡ଼ି. ପାଇଁ ସୁପାରିଶ କରି ତୁମର ସର୍ବନାଶ କରି ପାରିବି ନାହିଁ । ଗୋଟି ଗୋଟି ଭୁଲ । ଗୋଟି ଗୋଟି ଭ୍ରମାତ୍ମକ ଓ ଭ୍ରାନ୍ତ । ପରିଶ୍ରମ ନକରି ତରବରିଆ ଭାବେ ଲେଖିଦେଇଛ । ଏହା ଆଦୌ ଛପା ହୋଇ ପାରିବ ନାହିଁ । ଲୋକଲୋଚନକୁ ଆସିବ ନାହିଁ । କଣ ତେବେ ଏହାର ମୂଲ୍ୟ ? ପରିଶ୍ରମ କରି ଥେସିସ୍‌ଟିଏ କର, ଯାହା ସହସା ଛାତ୍ରଛାତ୍ରୀ ଅଧ୍ୟାପକମାନଙ୍କ ଉପକାରରେ ଆସିପାରିବ । ପ୍ରକାଶକ ଛାପିବାକୁ ବ୍ୟାକୁଳ ହେବେ । ପାଠକ ପଢ଼ି ତାରିଫ୍ କରିବେ । ଛ'ମାସ ସମୟ କିଛି ବଡ଼ କଥା ନୁହେଁ । ଭଲ କରି ଲେଖ । ତୁମ ଶ୍ରମ ସାର୍ଥକ ହେବ ।" ଜାଣେନା ଏ ଋଷିସୁଲଭ ବିପୁଳ ବାର୍ତ୍ତାକୁ ଛାତ୍ର ଜଣକ କିପରି ଗ୍ରହଣ କଲେ ? ତେବେ ସାଧୁସଂକଳ୍ପରେ ବିଶ୍ୱାସର ସହିତ ଅନୁବ୍ରତୀ ହେବା ଛାତ୍ରଙ୍କ ସଂଖ୍ୟା ଆଜି କମି କମି ଯାଉଛି । ଅଧ୍ୟାପକମାନେ ମଧ୍ୟ ସାହିତ୍ୟର ଓ ଅଧ୍ୟାପନାର ମାନ ରକ୍ଷା କରୁନାହାନ୍ତି ବୋଲି ଡ଼କ୍‌ଟର ଦାଶଙ୍କ କ୍ଷୋଭ । ପିଏଚ୍. ଡ଼ି. କରେଇ ଦେବାରେ ଅଧ୍ୟାପକମାନଙ୍କ ବ୍ୟାକୁଳତା ଦେଖି ଛାତ୍ରମାନେ ମଧ୍ୟ

ସ୍ୱାଭାବିକ ଭାବେ ସହଜିଆ ମାର୍ଗ ଅବଲମ୍ବନ କରୁଛନ୍ତି । ଯେ କୌଣସି ପ୍ରକାରେ ଡିଗ୍ରୀଟାଏ ପାଇଯିବା ରହିଛି ଏକମାତ୍ର ଅଭିଳାଷ । କିନ୍ତୁ ସେ ଡିଗ୍ରୀ ଯେ ଦିନେ ତାଙ୍କ ଉପରେ ସବାର ହୋଇ ତାଙ୍କୁ ଚାପି ଦେବ ଓ ଭାରବାହୀ ପରି ତାର ଓଜନକୁ ପିଠିରେ ଲଦି ଜୀବନଟା ସାରା ବାଟ ଚାଲିବାକୁ ହେବ ଏକଥା ଡ଼କ୍ଟର ଦାଶ ବୁଝିଲେ ବି ଅନ୍ୟମାନେ କେତେ ବା ବୁଝୁଛନ୍ତି ? ତଥାପି ଆଦର୍ଶ ଓ ବିଶ୍ୱାସକୁ ଧ୍ରୁବତାରା କରି ବଂଚିବାର ଓ ଚାଲିବାର ଲୋକ ଏ ଦେଶରେ ଯେ ପର୍ଯ୍ୟନ୍ତ ଅଛନ୍ତି, ସେ ପର୍ଯ୍ୟନ୍ତ ଡକ୍ଟର ଦାଶଙ୍କର ବଂଚିରହିବାର ସାର୍ଥକତା ନିଶ୍ଚିତ ଅଛି ।

ଆଜି ତାଙ୍କର ସତୁରୀବର୍ଷ ପୂର୍ତ୍ତି ଘଟୁଛି । ଜନ୍ମତିଥିରେ ଗତ ଚାରିବର୍ଷ ହେବ ତାଙ୍କ ନିଜଘର ଗ୍ରାମ ଉପରେ ଉତ୍ସବ ଆୟୋଜନ ହେଉଛି ଓ ଏହି ଅବକାଶରେ ଓଡ଼ିଆ ସାହିତ୍ୟ ସେବାରେ ଆଜୀବନ ଅଭିନିବିଷ୍ଟ ବିଜ୍ଞାପନହୀନ କୌଣସି ସାହିତ୍ୟିକଙ୍କୁ ସମ୍ବର୍ଦ୍ଧନା ମଧ୍ୟ ଦିଆଯାଉଛି । ତଦନୁସାରେ ଅଦ୍ୟାବଧି ତାଙ୍କ ଜନ୍ମତିଥିରେ ମନମୋହିନୀ ଦେବୀ, ଫତୁରାନନ୍ଦ, କୃଷ୍ଣଚନ୍ଦ୍ର କର ଓ ଚଳିତ ବର୍ଷ କବି ବାଞ୍ଛାନିଧି ଦାଶଙ୍କୁ ସମ୍ବର୍ଦ୍ଧିତ କରାଯାଇଛି । ସେମାନଙ୍କ ବିଷୟରେ ଏକ ଏକ ଦୀର୍ଘ ପ୍ରବନ୍ଧ ପ୍ରସ୍ତୁତ କରି ଡ଼କ୍ଟର ଦାଶ ଗବେଷକ ଗ୍ରନ୍ଥକିଏର ମନ ଓ ଉତ୍ତେଜନା ନେଇ ପାଠ କରିଛନ୍ତି । ଏ ଉଦ୍ୟମ ଓଡ଼ିଶାରେ ଏକାନ୍ତ ଅଭିନବ । କଟକ ସହର ଓ ଭୁବନେଶ୍ୱରର ବହୁ ସୁଧୀ ସାହିତ୍ୟପ୍ରେମୀଙ୍କ ଗହଣରେ ବିମଳ ଚନ୍ଦ୍ରାଲୋକରେ ଏ ସଭା ସମାହିତ ହେଉଛି । ୧୯୧୪ରୁ ୧୯୮୪—ଦୀର୍ଘ ସତୁରୀଟି ଗ୍ରୀଷ୍ମ, ବର୍ଷା, ଶରତ ଓ ବସନ୍ତର ଦନ୍ତାଘାତରେ ସେ ସାମାନ୍ୟ ଶାରୀରିକ ଦୁର୍ବଳ ହୋଇ ପଡ଼ିଥିଲେବି ମାନସିକ ଦୁର୍ବଳତା ଆସିନାହିଁ । ଶୁକ୍ଳକେଶ ହେଲେବି ସେ ବୃଦ୍ଧ ନୁହନ୍ତି । ମନରେ ତଥାପି ଚିର ତାରୁଣ୍ୟର ଝଙ୍କାର, ଚିର ଉତ୍ସାହର ଦୀପ୍ତି ସ୍ୱାଭିମାନୀ ସଂସ୍କୃତିମନ୍ତ ପୁରୁଷ ବିରାଜୁଛନ୍ତି । ସ୍ମୃତି ରହିଚି ତାଜା ଓ ବେଶ୍ ସଜଡ଼ା । ତାଙ୍କ ସହିତ କଥା କହିଲେ, ବସିଲେ, ଉଠିଲେ ମନରେ ଅସୀମଦମ୍ଭ ଆସୁଚି । ମନ ହେଉଚି ଯେପରି ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର କଣ୍ଠେ ଉଦାର ପ୍ରାଣବାନ୍ ଜାଗ୍ରତ ପ୍ରହରୀ ବସିଛନ୍ତି । ସଭା ସମିତିରେ ବସିଗଲେ ବାରିହୋଇ ପଡ଼ୁଛନ୍ତି । ଗ୍ରନ୍ଥଗ୍ରନ୍ଥୀମାନଙ୍କୁ କର୍ମଚଂଚଳ କରୁଛନ୍ତି । କର୍ମବୀର ଡ଼ାକରାରେ ସମସ୍ତଙ୍କୁ ସଜାଗ କରୁଛନ୍ତି । ସେ ସେମିତି ବସି ରହିଆ'ନ୍ତୁ ଓ ଏ ଜାତିକୁ ବଂଚିବାପାଇଁ ତାଙ୍କ ଲେଖନୀ ସଳଳଚଂଚଳ ଥାଉ ।



**ଡକ୍ଟର ନିତ୍ୟାନନ୍ଦ ଶତପଥୀ**

ବାଣୀବିହାର ।

## ॥ ଲୋକସାହିତ୍ୟ-ମାଳାର ମଧ୍ୟମଣି ॥

### ପ୍ରଫେସର କୃଷ୍ଣଦେବ ଉପାଧ୍ୟାୟ

ପ୍ରଥମ ଦର୍ଶନ :

ମୁଁ ୧୯୫୮ ମସିହାରେ ପ୍ରୟାଗରେ ଅଖିଳଭାରତୀୟ ଲୋକସଂସ୍କୃତି ସମ୍ମିଳନୀ ଆୟୋଜନ କରିଥିଲି । ଏଥିରେ ଦେଶର ପ୍ରତ୍ୟେକ ପ୍ରାନ୍ତରୁ ବିଦ୍ୱାନ୍‌ମାନେ ଆମନ୍ତ୍ରିତ ହୋଇ ଯୋଗ ଦେଇଥିଲେ । ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ନାମ ସହିତ ମୁଁ ଆଗରୁ ପରିଚିତ ଥିଲି । ବହୁ ବର୍ଷ ଧରି ତାଙ୍କ ବିଦ୍‌ବତ୍ତା ଓ କୃତିତ୍ୱ ସମ୍ପର୍କରେ ଅବହିତ ଥିଲି। ହେଲେ ତାଙ୍କୁ ଦେଖି ନଥିଲି । ଏହି ଲୋକସଂସ୍କୃତି ସମ୍ମିଳନୀରେ ଯୋଗଦେବାକୁ ତାଙ୍କୁ ଅତି ଆଗ୍ରହର ସହିତ ନିମନ୍ତ୍ରିତ କରିଥିଲି ଓ ସେ ମଧ୍ୟ ଅତି ଉଦାରତାର ସହିତ ସ୍ୱୀକୃତି ପଠାଇଥିଲେ । ସେ ତାରବାର୍ତ୍ତାରେ ଜଣାଇଥିଲେ ଯେ ସେ ପଞ୍ଜାବ ମେଲ୍‌ରେ ଆସି ପ୍ରୟାଗରେ ପହଞ୍ଚିବେ । ସମ୍ମିଳନୀର ସଂଗଠକ ଭାବେ ନିଜେ ମୋତେ ଷ୍ଟେସନ ଯିବା ଓ ତାଙ୍କୁ ପାଛୋଟି ଆଣିବା ଅତ୍ୟନ୍ତ ଜରୁରୀ ଥିଲା । ପ୍ଲାଟଫର୍ମରେ ଠିଆହୋଇ ଭାବୁଥିଲି—ଯେଉଁ ମଣିଷଙ୍କୁ କେବେ ଦେଖିନାହିଁ,ତାଙ୍କୁ ଏ ଜନସମୁଦ୍ରରେ କିପରି ପାଇବି ? ଗାଡ଼ି ଆସିବା ସମୟ ଯେତିକି ପାଖେଇ ଆସୁଥିଲା, ମୋର ଉଦ୍‌ବେଗ ସେତିକି ବଢିଯାଉଥିଲା । ମନେ ମନେ ଭାବୁ ଥିଲି— ମୁଁ ଯଦି ତାଙ୍କୁ ନଚିହ୍ନି ପାରିବି ?

ଏହି ସମୟରେ ଗାଡ଼ି ଆସିଗଲା । ଦେଖିଲି ଜଣେ ଭବ୍ୟ ଓ ଦିବ୍ୟ ସଜ୍ଜନପୁରୁଷ ପ୍ରଥମ ଶ୍ରେଣୀ ଡ଼ବାରୁ ଓହ୍ଲେଇଗଲେ । ମୁଁ ତାଙ୍କ ପାଖକୁ ଯାଇ ସଙ୍କୋଚର ସହିତ ପଚାରିଲି— "ଆପଣ କଣ ଶାନ୍ତିନିକେତନରୁ ଆସିଛନ୍ତି ? ଆପଣଙ୍କ ନାମ ଡ଼କ୍ଟର କେ. ବି. ଦାଶ ? " ସେ ସ୍ୱୀକାରାତ୍ମକ ଉତ୍ତର ଦେଲେ ଓ; ମୋ ନାମ ପଚାରିଲେ । ମୁଁ ପୂରାପୂରି ଘାବୁରେଇ ଯାଇଥିଲି । ସ୍ୱାଭାବିକ ନିଜ ନାମ ଡ଼କ୍ଟର କେ. ଡି. ଉପାଧ୍ୟାୟ ବୋଲି କହିଦେଲି । ଡ଼କ୍ଟର ଦାଶ ବୋଧହୁଏ ନିଜ ନାମ ପାଖରେ ଡ଼କ୍ଟର ଶବ୍ଦଟା ଉଚ୍ଚାରଣ କରିବାର ଅଯଥାର୍ଥତା ବୁଝିପାରିଲେ । କହିଲେ, ଓ ଆପଣ ତେବେ ଡକ୍ଟର କେ. ଡ଼ି: ଉପାଧ୍ୟାୟ । ତା'ପରେ ମୋ ପିଠି ଆପୁଡ଼ାଇ କହିଲେ— ଯାହା ହେଉ ଭଲ ହେଲା । ଆପଣଙ୍କ ସହିତ ଏଠି ଦେଖା ହୋଇଗଲା । ନଚେତ୍ ମୋତେ ଆପଣଙ୍କୁ ଖୋଜିବାକୁ ହୋଇଥାନ୍ତା । ସାମାନ୍ୟ କୁଶଳ ସମ୍ଭାଷଣ ପରେ ମୁଁ ତାଙ୍କୁ ପ୍ରୟାଗର ପ୍ରସିଦ୍ଧ ରୟାଲ ଲଜ୍‌କୁ ନେଇ ତାଙ୍କ ରହିବାର ବ୍ୟବସ୍ଥା କରି ଦେଲି ।

ଏହି ପ୍ରଥମ ସାକ୍ଷାତରେ ହିଁ ଡ଼କ୍ଟର ଦାଶ ମୋତେ ଆପଣାର ଜଣେ ଲୋକ ଭଳି ଲାଗିଲେ । ତାଙ୍କର ଅକପଟ ସ୍ନେହ ଓ ସମ୍ଭାଷଣର ମଧୁରତା ମୋତେ ସମ୍ମୋହିତ କରି ଥିଲା । ପରେ ଏହି ସାକ୍ଷାତ ଏକ ଗଭୀର ବନ୍ଧୁତାରେ ପରିଣତ ହୋଇଗଲା ।

ଡକ୍ଟର ଦାଶ ଏହି ସମ୍ମିଳନୀରେ ଗୋଟିଏ ପାଠଚକ୍ରର ସଭାପତି ଥିଲେ । ସେ ସଭାପତି ଆସନରୁ ଅତ୍ୟନ୍ତ ବିଦ୍‌ବତ୍ତାପୂର୍ଣ୍ଣ ସାରଗର୍ଭକ ଭାଷଣ ପ୍ରଦାନ କରିଥିଲେ । ତାଙ୍କ ସଭାପରିଚାଳନା ଭଙ୍ଗୀକୁ ମଧ୍ୟ ସମସ୍ତେ ତାରିଫ୍ କରିଥିଲେ । ତିନିଦିନ ଧରି ସମ୍ମିଳନୀର କାର୍ଯ୍ୟକ୍ରମ ଲାଗି ରହିଥିଲା ଓ ଡ଼କ୍ଟର ଦାଶ ଏଥିରେ ସକ୍ରିୟ ଭାଗ ନେଇଥିଲେ । ରାତିରେ ଆୟୋଜିତ ସାଂସ୍କୃତିକ କାର୍ଯ୍ୟକ୍ରମରେ ମଧ୍ୟ ସେ ବରାବର ଯୋଗ ଦେଉ ଥିଲେ । ଏହି ତିନୋଟି ଦିନ ଏତେ ବିଦ୍ୱାନ୍‌ଙ୍କ ସଂପର୍କରେ ଆସିବା ମୋ ପାଇଁ ସୌଭାଗ୍ୟର ବିଷୟ ଥିଲା । ଏହି ଦିନମାନଙ୍କରେ ତାଙ୍କର ବିଦ୍‌ବତ୍ତା ଛଡ଼ା ତାଙ୍କ ନମ୍ରତା, ସଜ୍ଜନତା ଓ ଉଦାରତା ମିଶି ମୋତେ ଆକୃଷ୍ଟ କରିଥିଲା ।

୧୯୫୯ରେ ଏ ସମ୍ମିଳନୀର ୬ଷ୍ଠ ଅଧିବେଶନ ବମ୍ବେରେ ଅନୁଷ୍ଠିତ ହେଲା । ମୋର ନିମନ୍ତ୍ରଣ ରକ୍ଷା କରି ଡକ୍ଟର ଦାଶ ସେଠାରେ ମଧ୍ୟ ଯୋଗ ଦେଇଥିଲେ । ଏଥର ତାଙ୍କ ସହିତ ତାଙ୍କର ଜଣେ ପ୍ରିୟ ଶିଷ୍ୟ ମଧ୍ୟ ଆସିଥିଲେ । ତାଙ୍କ ନାମ ଭବଗ୍ରାହୀ ମିଶ୍ର । ପରେ ଲୋକସାହିତ୍ୟରେ ଗବେଷଣା ପାଇଁ ସେ ଆମେରିକା ଯାଇଥିଲେ ଓ ଇଣ୍ଡିଆନା ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡ଼ି. ଉପାଧି ପାଇଲେ । ଡ଼କ୍ଟର ଦାଶ ଏ ସମ୍ମିଳନୀରେ ମଧ୍ୟ ସକ୍ରିୟଭାଗ ନେଇଥିଲେ ଓ ତାଙ୍କ ଉପସ୍ଥିତିରେ ସମ୍ମିଳନୀର ଶୋଭା ବର୍ଦ୍ଧନ କରିଥିଲେ ।

ସମ୍ମିଳନୀ ସରିଲାପରେ ଆମେ ବମ୍ବେର ଦର୍ଶନୀୟସ୍ଥାନ ପରିଭ୍ରମଣରେ ଯାଇଥିଲୁ । ଏଲିଫାଣ୍ଟା ଆଦି ପ୍ରାଚୀନ ଗୁମ୍ଫା ଦେଖି ଭାରତୀୟ ପ୍ରାଚୀନ ସଂସ୍କୃତିର ଗୌରବ ବିଷୟରେ ସେ ଆବେଗପ୍ରବଣ ଭାବରେ କେତେ କଥା କହିଥିଲେ ।

୧୯୬୧ ରେ ମଧ୍ୟପ୍ରଦେଶ ଉଜ୍ଜୟିନୀରେ କାଳିଦାସ ଜୟନ୍ତୀ ଉପଲକ୍ଷ୍ୟେ ସଂସ୍କୃତି ସମ୍ମିଳନୀରେ ସେ ମଧ୍ୟ ଯୋଗ ଦେଇଥିଲେ ଓ ସଂସ୍କୃତ ସାହିତ୍ୟ ବିଷୟରେ ନିଜ ପାଣ୍ଡିତ୍ୟର ପରିଚୟ ଦେଇଥିଲେ । ଉଜ୍ଜୟିନୀର ପଦ ପ୍ରକ୍ଷାଳନ କରୁଥିବା ସିପ୍ରାନଦୀ ସଂପର୍କରେ ଏକ ସୁନ୍ଦର ଓ ମଧୁର କବିତା ଆବୃତ୍ତି କରି ମୋତେ ଶୁଣାଇ ଥିଲେ । ତହିଁରୁ ଲୋକସାହିତ୍ୟ ସହ କାନ୍ତ ପଦାବଳୀର ମିଶ୍ରଣରେ ସଂଗଠିତ ତାଙ୍କ କାବ୍ୟବ୍ୟକ୍ତିତ୍ୱ ସଂପର୍କରେ ମୁଁ ପରିଚିତ ହୋଇଥିଲି ।

୧୯୭୭ ମସିହାରେ ସେ ଆମେରିକାର ଇଣ୍ଡିଆନା ବିଶ୍ୱବିଦ୍ୟାଳୟରେ ଆୟୋଜିତ Asian Folklore Congress ରେ ଯୋଗ ଦେବାପାଇଁ ଆମେରିକା ଯାଇଥିଲେ । ମୁଁ ସେତେବେଳେ ଜର୍ମାନ୍‌ରେ ଗେଟିଙ୍ଗ୍‌ଟନ ବିଶ୍ୱବିଦ୍ୟାଳୟରେ ପରିଦର୍ଶୀ ଅଧ୍ୟାପକ ଥିଲି । ମୁଁ ମଧ୍ୟ ସେଠାରେ ମୋର ଜ୍ୟେଷ୍ଠପୁତ୍ର ହରିଶଙ୍କରଙ୍କୁ ଦେଖିବାକୁ ଇଣ୍ଡିଆନା ୟୁନିଭରସିଟିକୁ ଯାଇଥିଲି । ମୁଁ ଯେତେବେଳେ ପହଞ୍ଚିଲି, ସେତେବେଳକୁ ସମ୍ମିଳନୀ ହୋଇଯାଇଥିଲା ଓ ଡକ୍ଟର ଦାଶ ତାଙ୍କ ଅନୁଜଙ୍କ ସହିତ ସେଣ୍ଟଲୁଇକୁ ଚାଲିଯାଇଥିଲେ । କିନ୍ତୁ ତାଙ୍କୁ ଦେଖା କରିବାର ଆକର୍ଷଣ ମୋ ପାଇଁ ଏତେ ତୀବ୍ର ଥିଲା ଯେ ମୁଁ ଟେଲିଫୋନ୍ ଯୋଗେ ତାଙ୍କ ସହିତ କଥାବାର୍ତ୍ତା କରିଥିଲି ଏବଂ ସେଣ୍ଟ୍‌ଲୁଇରେ ମଧ୍ୟ ପହଞ୍ଚିଲି । ବସ୍‌ରୁ ଓହ୍ଲାଇବାମାତ୍ରେ ଦେଖିଲି, ଡକ୍‌ଟର ଦାଶ, ତାଙ୍କ ଭାଇ ଓ ଭ୍ରାତୃପତ୍ନୀଙ୍କ ସହିତ ମୋତେ ପାଛୋଟି ନେବାକୁ ବସ୍‌ଷ୍ଟାଣ୍ଡକୁ ଆସିଛନ୍ତି । ମୋତେ ଦେଖିବାମାତ୍ରେ ସେ କୁଣ୍ଢାଇ ପକାଇଲେ ଓ ଅତି ଆନନ୍ଦରେ ତାଙ୍କ ଭାଇଙ୍କ ଘରକୁ ନେଇଗଲେ ।

ଏହି ସ୍ଥାନଟି ସହରଠାରୁ ଦଶ ବାର ମାଇଲ୍ ଦୂରରେ ଅବସ୍ଥିତ ହେଲେବି ଥିଲା ଏକାନ୍ତ ରମଣୀୟ । ତାଙ୍କ ଭାଇ ସେଠାରେ ବିଶିଷ୍ଟ ଅସ୍ଥିଶଲ୍ୟ ଡାକ୍ତର । ତାଙ୍କ ଘରର ପ୍ରଥମ ମହଲାଟି ଥିଲା ମାଟିତଳେ । ସେଇଠାରେ ଗୋଟିଏ ଶୀତତାପ ନିୟନ୍ତ୍ରିତ ଦିବ୍ୟ ପରିବେଶରେ ମୋତେ ରହିବାକୁ ହେଲା । ଡକ୍‌ଟର ଦାଶଙ୍କ ଆନୁଜ ଧିଲେ ସଜ୍ଜନ ଓ ଅତିଥିପରାୟଣ । ଭୋଜନପରେ ବିଳମ୍ବିତ ରାତି ପର୍ଯ୍ୟନ୍ତ ଡକ୍‌ଟର ଦାଶଙ୍କ ସହିତ ଆଳାପ ହୋଇଥିଲା । ସେତେବେଳେ ତାଙ୍କ ଭାଇ ଆମେରିକାରେ ସୁନ୍ଦର ସ୍ଥାନଗୁଡ଼ିକୁ ଦେଖାଇବା ପାଇଁ ତାଙ୍କୁ ନିଜ କାର୍‌ରେ ନେଉଥିଲେ । ମୋତେ ମଧ୍ୟ ଆମନ୍ତ୍ରଣ କଲେ । କିନ୍ତୁ ମୋର ତୁରନ୍ତ ୟୁରୋପ ଫେରିବାର ବାଧ୍ୟବାଧକତା ଥିବାରୁ ମୁଁ ଶୀଘ୍ର ଫେରି ଆସିଲି ।

୧୯୭୮ ମସିହାରେ କଟକର ବାରବାଟୀ ଷ୍ଟାଡ଼ିୟମ୍‌ରେ ଏକ ଆନ୍ତର୍ଜାତିକ ଲୋକସାହିତ୍ୟ ସମ୍ମିଳନୀ ଆୟୋଜିତ ହୋଇଥିଲା । ମୋରି କିନ୍ତୁ ମୁଖ୍ୟ ଆକର୍ଷଣ ଥିଲେ ଡକ୍‌ଟର ଦାଶ । ତେଣୁ ମୁଁ ପ୍ରବଳ ଆବେଗରେ କଟକରେ ପହଞ୍ଚିଥିଲି । ଏଠାରେ ଡକ୍‌ଟର ଦାଶଙ୍କ ସହିତ ସାକ୍ଷାତ ମୋତେ ବେଶ୍ ଆନନ୍ଦ ଦେଇଥିଲା । ଡକ୍‌ଟର ଦାଶ ତାଙ୍କ ଘରେ ମୋତେ ଭୋଜନପାଇଁ ଆମନ୍ତ୍ରଣ କରିଥିଲେ । ମୋ ସହିତ ମୋ ପୁଅ ହରିଶଙ୍କର ମଧ୍ୟ ଥିଲେ । ତାଙ୍କ ଘରେ ଆମକୁ ଯେଉଁ ସ୍ୱାଦିଷ୍ଟ ଭୋଜନ ମିଳିଥିଲା, ତାହା କେବେ ଭୁଲିବାର ନୁହେଁ । ଡ଼କ୍ଟର ଦାଶଙ୍କ ଘରର ଉତ୍ତରଦିଗରେ ଏକ ସୁନ୍ଦର ପୋଖରୀ ଥିଲା । ସେ ପୋଖରୀ ପାଇଁ ତାଙ୍କ ଘରର ସୌନ୍ଦର୍ଯ୍ୟ ବଢି ଯାଉଥିଲା । ମୁଁ ଭାବୁଥିଲି— ହୁଏତ ଏ ସୁନ୍ଦର ପୋଖରୀଟିରୁ କେବେ ପାଣି ଶୁଖି ଯାଇପାରେ, କିନ୍ତୁ ଡକ୍‌ଟର ଦାଶଙ୍କ ହୃଦୟରୁ ସ୍ନେହର ଝରଣା ଶୁଖିବାର ନୁହେଁ ।

**ଅଗାଧ ବିଦ୍ୱତ୍ତା :**

ଡକ୍ଟର ଦାଶ ଯେ ଲୋକସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ହାସଲ କରିଛନ୍ତି, ଏକଥା କହିବା ପୁନରୁକ୍ତି ମାତ୍ର । କୌଣସି ବିଦ୍ୱାନର ବିଦ୍ୱତ୍ତାର ମୂଲ୍ୟାଙ୍କନ କେବଳ ସୁଧୀଜନହିଁ କରିପାରନ୍ତି । କୁହାଯାଇଛି—

“ବିଦ୍ୱାନେବ ହି ଜାନାତି
ବିଦ୍ୱଜ୍ଜନ – ପରିଶ୍ରମମ୍

ମୁଁ ବିଦ୍ୱାନ୍ ନୁହେଁ, କିମ୍ବା ଲୋକସାହିତ୍ୟରେ ପରମ ପଣ୍ଡିତ ମଧ୍ୟ ନୁହେଁ, ଏଥିପାଇଁ ମୋର ଦାବୀ ମଧ୍ୟ ନାହିଁ । ହେଲେ ଏତିକି ନିଃସନ୍ଦେହରେ କହିପାରେ ଯେ ଆଜି ଆମ ଦେଶରେ ତାଙ୍କ ପରି ବହୁମୁଖୀ ପ୍ରତିଭାବାନ୍ ଲୋକସାହିତ୍ୟ ଗବେଷକ ଆଉଜଣେ କେହି ନାହିଁ । ଲୋକସାହିତ୍ୟ ତଥା ସଂସ୍କୃତି କ୍ଷେତ୍ରରେ ତାଙ୍କର ଅସୀମ ଅବଦାନ ରହିଛି । ସେ ନିଜ ମାତୃଭାଷା ଓଡ଼ିଆରେ ଲୋକଗୀତ ଓ ଲୋକକାହାଣୀର ଯେ ବିରାଟ ସଂକଳନ କରିପାରିଲେ, ଏହା ଆମ୍ଭମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ । ଏହାଛଡ଼ା ଇଂରେଜୀରେ ମଧ୍ୟ ତାଙ୍କର କେତୋଟି ଗ୍ରନ୍ଥ ପ୍ରକାଶ ପାଇଛି । ସେଥିମଧ୍ୟରୁ “A Study of Orissan Folklore”ଗୋଟିଏ ବହୁଜନାଦୃତ ଗ୍ରନ୍ଥ । ଏହି ଗ୍ରନ୍ଥରେ ଡକ୍ଟର ଦାଶ ଲୋକଗୀତର ଯେଉଁ ପରିଭାଷା ଦେଇଛନ୍ତି, ତାହା ଆଜି ସର୍ବମାନ୍ୟ ଓ ବହୁ ଗବେଷକ ଏସବୁକୁ ପ୍ରାମାଣିକ ଭାବେ ଉଲ୍ଲେଖ କରିଆନ୍ତି ।

କବୀନ୍ଦ୍ର ରବୀନ୍ଦ୍ରନାଥଙ୍କ ବିଶ୍ୱଭାରତୀ ଓଡ଼ିଆ ବିଭାଗର ଅଧ୍ୟକ୍ଷଭାବରେ ସେ ଲୋକ-ସାହିତ୍ୟର ଯେଉଁ ଅମୂଲ୍ୟରତ୍ନ ସଂଗ୍ରହ କରିଥିଲେ, ତାହା ଅନନ୍ୟସାଧାରଣ । ସେ ନିଜର ସମଗ୍ର ଜୀବନ ଏଥିପାଇଁ ଉତ୍ସର୍ଗ କରି ଦେଇଛନ୍ତି ଓ ଆଜି ମଧ୍ୟ ଏପରି ସଂଗ୍ରହରୁ ନିବୃତ୍ତ ହୋଇ ନାହାନ୍ତି । ଆମଦେଶର ଲୋକସାହିତ୍ୟବିତ୍ ମାଳାରେ ସେ ମଧ୍ୟମଣି ପରି ଆଜି ଶୋଭା ପାଉଛନ୍ତି ।

ଡକ୍ଟର ଦାଶ ଏକ ସରସ କବି ହୃଦୟର ଅଧିକାରୀ ହେଲେବି ବର୍ତ୍ତମାନ ଗଳ୍ପ ଉପନ୍ୟାସ ଲେଖା ଆରମ୍ଭ କରିଛନ୍ତି । ଏଥିରୁ ତାଙ୍କର ଭାବାତ୍ମକ ଓ ଯୌକ୍ତିକ ପ୍ରତିଭାର ସମ୍ମିଶ୍ରଣ ଲକ୍ଷ୍ୟ କରାଯାଇପାରେ ।

**ବିନମ୍ରତାର ସାକ୍ଷାତ ମୂର୍ତ୍ତି :** ଡକ୍ଟର ଦାଶ ବିନମ୍ରତାର ସାକ୍ଷାତ ପ୍ରତିମୂର୍ତ୍ତି । ଶାସ୍ତ୍ରକାରମାନେ କହିଛନ୍ତି “ବିଦ୍ୟା ଦଦାତି ବିନୟମ୍” । ଡକ୍ଟର ଦାଶଙ୍କ ସମ୍ପର୍କରେ

ଏହି ସୂକ୍ତି ଏକ ଲୋକୋକ୍ତି ନୁହେଁ, ବରଂ ସ୍ୱଭାବୋକ୍ତି ହୋଇଯାଇଛି । ଏତେବଡ଼ ବିଦ୍ୱାନ୍ ହେଲେ ମଧ୍ୟ ତାଙ୍କର କୌଣସି ଗର୍ବ ନାହିଁ, ଅହଂକାରଠାରୁ ସେ ଦୂରରେ । ନିଜସ୍ୱ ପାଣ୍ଡିତ୍ୟ ପାଇଁ ତାଙ୍କର ଆଟୋପ ନାହିଁ । ହିନ୍ଦୀରେ ଗୋଟିଏ ପ୍ରବାଦ ଅଛି "ଅଧଜଲ ଗଗରୀ ଛଲକତ୍ ଯାଏ" । କିନ୍ତୁ ଡକ୍ଟର ଦାଶ ନିଜ ପ୍ରୌଢ଼ତ୍ୱର ପ୍ରଦର୍ଶନ କରି ନାହାନ୍ତି । ନିଜ ବୟସଠାରୁ ସାନ ଲୋକମାନଙ୍କୁ ଉତ୍ସାହ ଓ ପ୍ରେରଣା ଦେବା ତାଙ୍କ ସ୍ୱଭାବଗତ ଧର୍ମ । ଡକ୍ଟର ଭବଗ୍ରାହୀ ମିଶ୍ର ଯେ ତାଙ୍କ ପ୍ରେରଣାର ପରିଣତି, ଏକଥା ସମସ୍ତେ ଜାଣନ୍ତି । ତାଙ୍କର ଶିଷ୍ୟମାନଙ୍କ ସହିତ ସେ ବନ୍ଧୁପରି ବ୍ୟବହାର କରନ୍ତି । ଗୁରୁଗିରିର ସେ ଘୋର ବିରୋଧୀ । ଏହାହିଁ ତାଙ୍କ ଆଭିର-ସଂହିତାର ପ୍ରଧାନ ସିଦ୍ଧାନ୍ତ । ବିଦ୍ୱାନ୍ ହୋଇ ମଧ୍ୟ ବିନମ୍ର ହେବା, ମହାନ୍ ହୋଇ ମଧ୍ୟ ନମ୍ରତା ପ୍ରକାଶ କରିବା ଏବଂ ବୈଭବସଂପନ୍ନ ହୋଇ ମଧ୍ୟ ଆଟୋପ ପ୍ରକାଶ ନ କରିବା— ଏସବୁ ପରସ୍ପରବିରୋଧୀ ଗୁଣଗୁଡ଼ିକ ଡକ୍ଟର ଦାଶଙ୍କଠାରେ ଦେଖିବାକୁ ମିଳେ ।

ତାଙ୍କ ସ୍ୱଭାବ ଅତ୍ୟନ୍ତ ସରଳ । ଆଡ଼ମ୍ବର ତାଙ୍କୁ କେବେ ସ୍ପର୍ଶ କରିନାହିଁ । ସେ ଔପଚାରିକତାର ଘୋର ବିରୋଧୀ । ସାଧାରଣଲୋକଙ୍କ ସହିତ ମଧ୍ୟ ସେ ସମାନ ପ୍ରବଣତାରେ ମିଳିଯାଆନ୍ତି । ଏହିଗୁଣ ଯୋଗୁ ବୋଧହୁଏ ମୋ ପରି ଜଣେ ଅକିଞ୍ଚନ ଲୋକସାହିତ୍ୟ ଅନୁସନ୍ଧାନକାରୀ ତାଙ୍କ ଅକୁଣ୍ଠ କୃପା ଓ ଅଖଣ୍ଡ ସ୍ନେହଭାଜନ ହୋଇ-ପାରିଛି । କିଛିଦିନ ତଳେ ସେ ମୋତେ ଯେଉଁ ଚିଠି ଲେଖିଥିଲେ, ତହିଁରୁ ତାଙ୍କ ହୃଦୟର ସହଜସ୍ନେହ ସ୍ୱତଃ ବିଗଳିତ ହୋଇ ପଡ଼ୁଛି ।

Cuttack
28 - 1 - 84

Dear Dr. Upadhyay,

Please accept my namaskar, I thought you were lost to me. My joy knew no bounds when I received your letter. I joyfully noted your address...... ............ How are you now ? How is Hari ? Where is he ? How is your great elder brother ? I hope you are living in your own house. What are you doing now ? What have you done for the last five years ?

ଚିଠିର ଏଇ କେତୋଟି ଅଂଶ ପଢ଼ିଲେ ଜଣାଯିବ, ଡ଼କ୍ଟର ଦାଶଙ୍କର ମୋ ପ୍ରତି ଓ ମୋ ପରିବାର ପ୍ରତି କେତେ ମମତା। ଏହା ମୋର ସୌଭାଗ୍ୟ ଯେ ଲୋକ-ସାହିତ୍ୟର ଏତେବଡ ପଣ୍ଡିତ ଓ ଜ୍ଞାନୀ ବ୍ୟକ୍ତି ମୋ ଖବର ରଖୁଚନ୍ତି।

**ଜୀବନ ମୁକ୍ତ—** ସତେ ଡ଼କ୍ଟର ଦାଶ ଜଣେ ଜୀବନ-ମୁକ୍ତ ମଣିଷ। ତାଙ୍କ ସଫଳ ଜୀବନଯାତ୍ରାରେ ସେ ଉଭୟ ଧନ ଓ ଯଶ ଲାଭ କରିଛନ୍ତି। ଏ ସଂପର୍କରେ ନିଃସନ୍ଦେହରେ କୁହାଯାଇପାରେ— "ଅଧୀତମଧ୍ୟାପିତ ମର୍ଜିତମ୍ ଯଶଃ ନ ଚିନ୍ତନୀୟମ୍ କିମପିହ ଭୂତ ହେ।" ବାସ୍ତବରେ ଡକ୍ଟର ଦାଶ ନିଜ ଜୀବନରେ ଅଧ୍ୟୟନ କରି ପାଣ୍ଡିତ୍ୟ ଲାଭ କଲେ ଓ ଅଧୀତ ବିଦ୍ୟାକୁ ଛାତ୍ରମାନଙ୍କୁ ଦାନକରି ସେମାନଙ୍କୁ ଯୋଗ୍ୟ ମଣିଷ କରି ଗଢ଼ିଲେ। ତାଙ୍କର ତେଣୁ ଆଉ କି ଚିନ୍ତା ? ସେ ଜୀବନମୁକ୍ତ।

ପ୍ରାୟ ଏପରି ହୁଏ ସଂସାରରେ ମହାନ୍ ବ୍ୟକ୍ତିମାନେ ପାରିବାରିକ ସୁଖ ପାଇ ନଥାନ୍ତି। କିନ୍ତୁ ଭଗବାନ୍ ଡକ୍ଟର ଦାଶଙ୍କୁ ସବୁ ସୁଖରେ ପରିପୂର୍ଣ୍ଣ କରିଦେଇଛନ୍ତି। ତାଙ୍କ ପତ୍ନୀ ପ୍ରେମଲତା ଦେବୀ ଅତ୍ୟନ୍ତ ପତିପରାୟଣା ଓ କର୍ତ୍ତବ୍ୟନିଷ୍ଠ। ତିନିପୁଅ ମଧ୍ୟରୁ ବଡ଼ପୁଅ ଆନ୍ଧ୍ର ପ୍ରଦେଶରେ କୌଣସି ଜିଲ୍ଲାର କଲେକ୍ଟର, ଦ୍ୱିତୀୟପୁତ୍ର ଶିକ୍ଷାବିଭାଗରେ ଅଧ୍ୟାପକ ଓ ସାନପୁଅ ପୂଜ୍ୟ ପିତାଙ୍କ ପଦାଙ୍କ ଅନୁସରଣରେ ପ୍ରୟାସୀ। ମୁଁ ୧୯୭୮ ରେ କଟକରେ ଏ ସୁଖୀ ପରିବାର ସଂପର୍କରେ ଆସିଥିଲି। କୁହାଯାଇଛି—

"ଯଦି ରାମା, ଯଦି ଚ ରମା, ଯଦି ତନୟଃ ବିନୟ ଗୁଣୋପେତଃ
ତନୟାତ୍ ତନୟୋତ୍ପତ୍ତି ସୁରବରନଗରେ କିମାଧିକ୍ୟମ୍"

ଶେଷରେ ଭଗବାନଙ୍କଠାରେ ମୋର ଏକାନ୍ତ ପ୍ରାର୍ଥନା, ଲୋକସାହିତ୍ୟର ଏହି ସୁଯୋଗ୍ୟ ସାଧକ ବିଦ୍ୱାନ୍ ବିରଳ ମନୀଷୀଙ୍କୁ ଶତାୟୁ କରନ୍ତୁ। "ଜୀବେମ ଶରଦଃଶତମ୍" ଏହି ପ୍ରାଚୀନ ବୈଦିକ ପ୍ରାର୍ଥନା ଚରିତାର୍ଥ ହେଉ। ● ●

Translation from Hindi by
Dr Sankarlal Purohit.

* ବାରାଣସୀ, ଉତ୍ତର ପ୍ରଦେଶ

# ॥ ପିତା ପରମ ॥

ଶ୍ରୀ ପ୍ରିୟଦର୍ଶୀ ଦାଶ, ଆଇ.ଏ.ଏସ୍

ମୋ ବାପାଙ୍କୁ ସତୁରି ବର୍ଷ ପୂରିଲା, ତାଙ୍କର ହୃଷ୍ଟାଙ୍ଗ ବ୍ୟକ୍ତିତ୍ୱ ଦେଖିଲେ ବିଶ୍ୱାସ ହୁଏନା ଯେ, ସେ ଯେଉଁ ବୟସରେ ପଦାର୍ପଣ କରିଛନ୍ତି, ସମସ୍ତେ ସେତେବେଳେ ଲୋଡ଼ନ୍ତି ଆରାମ ଓ ବିଶ୍ରାମ । କେବେ ତ ତାଙ୍କୁ ଖାଲି ବସିବାର ଦେଖିନାହିଁ । ସର୍ବଦା କର୍ମତତ୍ପର ଓ ନିରଳସ ତାଙ୍କର ଜୀବନ । ଦୈନନ୍ଦିନ କାର୍ଯ୍ୟକ୍ରମ ତାଙ୍କର ରୁଟିନ୍ ବନ୍ଧା ଓ ଘଣ୍ଟା କଣ୍ଟା ପରି ନିୟମିତ ।

ସେ ପ୍ରକୃତରେ କର୍ମଯୋଗୀ । ଅନେଶତ ଭାଗ ସ୍ୱେଦ ଓ ଏକ ଭାଗ ଐଶ୍ୱରିକ ପ୍ରେରଣା ହିଁ ପ୍ରତିଭା—ଏହି ଆପ୍ତ ବାକ୍ୟର ସେ କେବଳ ପ୍ରଚାରକ ନୁହନ୍ତି, ତାର ମୂର୍ତ୍ତିମନ୍ତ ଅବତାର । କଠୋର ଶ୍ରମ, ନିରବଚ୍ଛିନ୍ନ ସାଧନା, ଅନନ୍ୟସାଧାରଣ ମାନସିକ ଦୃଢ଼ତା ଓ ଅସାମାନ୍ୟ ଏକାଗ୍ରତା ତାଙ୍କ ବ୍ୟକ୍ତିତ୍ୱକୁ ଦେଇଛି ଏକ ମହନୀୟ ଦ୍ୟୁତି । ସଦା ପ୍ରଫୁଲ୍ଲମନା, ସତତ ସାଧନାନିଷ୍ଠ, ହାସ୍ୟୋଚ୍ଛଳ, ବାକ୍‌ପଟୁ, ରସଜ୍ଞ, ରସଗ୍ରାହୀ ଓ ବିଦଗ୍ଧ ପ୍ରକୃତିପ୍ରେମୀ ମୋର ପିତା ଏକ ଅସାଧାରଣ ବ୍ୟକ୍ତି । ଅଦ୍ଭୁତ ସହିଷ୍ଣୁତା ତାଙ୍କର; ଉଦାର ଗମ୍ଭୀର ଓ ପ୍ରଶାନ୍ତଚେତା ସେ । ବିଶାଳ ଭୁଜଦ୍ୱୟ ତାଙ୍କର ସ୍ୱୟଂ ଜଗନ୍ନାଥଙ୍କର ଭୁଜ ପରି ସଦା ଆଶ୍ରୟ, ଅଭୟ ଓ ସାହସ ପ୍ରଦାୟକ ।

କେବଳ ଓଡ଼ିଆସାହିତ୍ୟକୁ ନୁହେଁ— ଅଗଣିତ ବ୍ୟକ୍ତିଙ୍କୁ ଦିଗ୍‌ଦର୍ଶନ ଦେଇଛନ୍ତି ସେ । ସେ କେବଳ ଉତ୍ସାହୀ ନୁହନ୍ତି-ଉତ୍ସାହପ୍ରଦ ମଧ୍ୟ, କେବଳ କର୍ମୀ ନୁହନ୍ତି, ବହୁ ମହତ୍ କର୍ମର କାରକ । ତାଙ୍କର ଅନୁଗାମୀ ଅନେକେ ତାଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଲେଖାଲେଖିକୁ ଆସିଛନ୍ତି । ଅନ୍ୟର ଦୁଃଖରେ ଦୁଃଖୀ, ଅନ୍ୟର ଆନନ୍ଦରେ ଉତ୍ଫୁଲ୍ଲ- ସର୍ବଦା ଅନ୍ୟର ଉନ୍ନତିକାମୀ ସେ । ଈର୍ଷା, ପରଶ୍ରୀକାତରତା ଓ ନୀଚତା ତାଙ୍କର ହୃଦୟର ପରିଧିକୁ ସ୍ପର୍ଶ କରିନାହିଁ । ସର୍ବଜନସମାଦୃତ ପିତା ମୋର ଏପରି ଏକ ବ୍ୟକ୍ତିତ୍ୱର ଅଧିକାରୀ, ଯାହା ସମ୍ପର୍କରେ କୌଣସି ବିବାଦ ନାହିଁ । ରାଜନୀତିର ସେ ଧାର୍ ଧାରନ୍ତି ନାହିଁ । ଚକ୍ରାନ୍ତର ଚକ୍ରବ୍ୟୂହରେ ସେ ବହୁବାର ଅଜାଣତରେ ପ୍ରବେଶ କରି ସପ୍ତରଥୀଙ୍କ ଦ୍ୱାରା କ୍ଷତାକ୍ତ ହୋଇଛନ୍ତି ସିନା, କେବେ ନିଜେ ଏକ ଚକ୍ରବ୍ୟୂହ ସୃଜିବାର ଧାରଣା ବି ମନକୁ ଆଣିନାହାନ୍ତି ।

ପିଲାଦିନର କଥା ଏବେ ମନେପଡ଼େ, ସେତେବେଳେ ଶାନ୍ତିନିକେତନରେ ସେ ଓଡ଼ିଆବିଭାଗର ମୁଖ୍ୟ ଅଧ୍ୟାପକ । ପିଲାଦିନୁ ମୋ ହୃଦୟରେ କବିତ୍ୱଭାବ ଜାଗରୂକ କରିବା ପାଇଁ, ପ୍ରକୃତିର ରସାସ୍ୱାଦନ କରି ଶିଖାଇବା ପାଇଁ ସେ ସର୍ବଦା ଯତ୍ନଶୀଳ ଥିଲେ । ପ୍ରସ୍ଫୁଟିତ ପୁଷ୍ପର ଶୋଭା, ପକ୍ଷୀର କାକଳି, ଉଷା-ଗୋଧୂଳିର ବର୍ଣ୍ଣାଢ୍ୟ ଦିଗନ୍ତ, ସୀମାହୀନ ସୁନୀଳ ଆକାଶ, ସବୁଥିକୁ ସେ ମୋର ଦୃଷ୍ଟି ଆକର୍ଷଣ କରୁଥିଲେ ଓ ସେଥିରେ ଅନ୍ତର୍ନିହିତ ସୌନ୍ଦର୍ଯ୍ୟକୁ ଉପଭୋଗ କରିବା ପାଇଁ ପ୍ରେରଣା ଦେଉଥିଲେ । ବେଳେ ବେଳେ ତାଙ୍କର ନୀରବ ଅଭିବ୍ୟକ୍ତି ହିଁ ପ୍ରକୃତିର ସୌନ୍ଦର୍ଯ୍ୟ ପ୍ରତି ମୋତେ ଆକୃଷ୍ଟ କରୁଥିଲା । ଶାନ୍ତିନିକେତନର ରୁକ୍ଷ ପ୍ରକୃତିରୁ ସେ ଆହରଣ କରୁଥିଲେ ଏକ ବିମଳ ଆନନ୍ଦ, ଦେଖୁଥିଲେ ଏକ ଅପୂର୍ବଶ୍ରୀ—ଯାହାକି ସମସ୍ତଙ୍କ ଆଖିକୁ ଦେଖାଯାଏ ନାହିଁ । ସେ ଆନନ୍ଦ ଉପଭୋଗରେ ମୋତେ ଅଂଶୀଦାର କରିଥିଲେ । ବିଶ୍ୱବିଦ୍ୟାଳୟ ପାଠା-ଗାରରୁ ଆଣିଦେଉଥିଲେ ଅନେକ ସୁନିର୍ବାଚିତ ପୁସ୍ତକ । ସେ ସବୁ ପଢ଼ି ମୋର ହୃଦୟରେ ଗଭୀର ସାହିତ୍ୟପ୍ରୀତି ଜାତ ହୋଇଥିଲା । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଦ୍ୱାରା ସେ ଗଭୀର ଭାବେ ଅନୁପ୍ରାଣିତ ହୋଇଥିଲେ । ପ୍ରକୃତିର ନୀରବ ଓ ଗମ୍ଭୀର ବ୍ୟକ୍ତିତ୍ୱକୁ ସେ ନିଜେ ଆଦର କରୁଥିଲେ ଓ ଅନ୍ୟମାନଙ୍କୁ ମଧ୍ୟ ଆଦର କରିବାକୁ ଶିଖାଉଥିଲେ । ସେଠାରେ ସେ ଗଢ଼ିଥିଲେ ପ୍ରକୃତି ଓ ସାହିତ୍ୟପ୍ରେମୀମାନଙ୍କର ଏକ ମଧୁଚକ୍ର ଓ ତହିଁରେ ଏକ ନଗଣ୍ୟ ମଧୁମକ୍ଷିକା ହେବାର ସୌଭାଗ୍ୟ ମୁଁ ଲାଭ କରିଥିଲି ।

ଶାନ୍ତିନିକେତନରେ ଓଡ଼ିଆ ବା ଇଂରାଜୀ ମାଧ୍ୟମରେ ପଢ଼ିବାର ସୁବିଧା ନଥିବାରୁ ସେ ମୋତେ ନିମାପଡ଼ାରେ ଛାଡ଼ିଥିଲେ, ଦୁଇବର୍ଷ ପାଇଁ, ଯଦିଓ ସେଇ ଦୁଇବର୍ଷ ତାଙ୍କ ସାନ୍ନିଧ୍ୟରୁ ମୁଁ ବଞ୍ଚିତ ହୋଇଥିଲି, ପତ୍ରମାଧ୍ୟମରେ ମୋର କିଶୋର ହୃଦୟରେ ସେହି ସାହିତ୍ୟପ୍ରୀତିକୁ ସର୍ବଦା ଉଜ୍ଜୀବିତ ରଖିବା ପାଇଁ ସେ ପ୍ରୟାସୀ ଥିଲେ । ଯେତେବେଳେ ଶାନ୍ତିନିକେତନରୁ ତାଙ୍କର କଟକ ବଦଳି ହେଲା, ପୁଣି ତାଙ୍କର ସଂସ୍ପର୍ଶରେ ଆସିବା ସୁଯୋଗ ମୋତେ ମିଳିଲା । ପ୍ରାତଃ ଓ ସାନ୍ଧ୍ୟ ଭ୍ରମଣ କାଳରେ ମୁଁ ତାଙ୍କର ଥିଲି ନିରନ୍ତର ସଙ୍ଗୀ ଓ ଅନୁଚର । ଖେଳ ଓ ସଙ୍ଗୀମେଳରେ ମିଶିବା ପାଇଁ ସେ ମୋତେ କେବେ ଉତ୍ସାହିତ କରିନାହାନ୍ତି । ଖେଳ ପଡ଼ିଆର ଖେଳୁଆଡ଼ ନ ହୋଇ ଜୀବନ ସହିତ ଲଢ଼ିଶିଖେ— ଏହା ଥିଲା ତାଙ୍କର ଉଦ୍ଦେଶ୍ୟ । ଆତ୍ମନିର୍ଭରଶୀଳ ହୋଇ ନିଜ କାମ ନିଜେ କିପରି ନିଃସଙ୍କୋଚ ଭାବେ କରି ଶିଖେ, ତାହା ସେ ସବୁବେଳେ ଚାହୁଁଥିଲେ । ସେଥିରେ ସେ ଥିଲେ ଏକାନ୍ତ ନିର୍ମମ । ଏବେ ବି ମନେପଡ଼େ, ଥରେ ଆମର ରେଡ଼ିଓ ଖରାପ ହୋଇଗଲା ଓ କଟକରେ ଏକ ଆଭିଜାତ୍ୟପୂର୍ଣ୍ଣ ଦୋକାନରେ ସେଇଟି ମରାମତି ପାଇଁ ଦିଆଗଲା । ସେ ଦୋକାନୀର ପୁଅ ଥିଲା ମୋର ସହପାଠୀ । ସବୁବେଳେ ବାପା ସାନ୍ଧ୍ୟ

ଭ୍ରମଣରେ ଗଲାବେଳେ ରେଲୱେ ମରାମତି କାମ ତଦାରଖ କରୁଥିଲେ । କିନ୍ତୁ ସେ ଦୋକାନକୁ ଯିବା ଆଗରୁ ପରିବା ଦୋକାନକୁ ଯାଇ ପରିବା କିଣି ବ୍ୟାଗ୍‌ଟି ମୋ ହାତରେ ଧରାଇ ଦେଉଥିଲେ । ସେ ପରିବା ବ୍ୟାଗ୍ ଧରି ସେ ଦୋକାନକୁ ଯିବା ବେଳେ ମୁଁ ଲାଜରେ ସଢ଼ି ଯାଉଥିଲି । ଏକଦା ମୃଦୁ ପ୍ରତିବାଦ କରନ୍ତେ ସେ କହିଲେ, ବ୍ୟାଗ୍ ଧରି ଗଲେ ଲାଜ ମାଡ଼ୁଛି, ନାହିଁ ? ନିଃସଙ୍କୋଚ ଭାବେ ନିଜ କାମ ନିଜେ କରି ଶିଖ । ଅନ୍ୟ କିଏ କଣ ଭାବୁଛି ସେଥିରେ ଆମର କିଛି ଯାଏ ଆସେ ନାହିଁ । ସେମିତି ହେଲେ ସାରା ଜୀବନ ସୁଖୀ ହେବ । ସେ ଉପଦେଶ ମୁଁ ଅକ୍ଷରେ ଅକ୍ଷରେ ପାଳନ କରି ଆସିଛି । ଚାକିରିରେ ଉଚ୍ଚ ପଦବୀ ଅଧିକାର କଲା ପରେ ବି ସମସ୍ତଙ୍କ ସଙ୍ଗେ ମୁଁ ସହଜଭାବେ ମିଶି ପାରିବାର ଓ ଦରକାର ବେଳେ ଯେ କୌଣସି କାମ କରିବା ପାଇଁ ପ୍ରସ୍ତୁତ ହୋଇ ପାରିବାର ମୂଳରେ ଅଛି ବାପାଙ୍କଠାରୁ ମିଳିଥିବା ଶିକ୍ଷା ।

କଲେଜକୁ ଆସିବା ପରେ ସଙ୍ଗୀମେଳରେ ପଡ଼ି ମୋର ପଢ଼ାରେ ବହୁ ବ୍ୟାଘାତ ଘଟିଲା । ସେଥିପାଇଁ ସେ କେବେ ମୋତେ କ୍ଷମା ଦେଇ ନାହାନ୍ତି । ଶାସନ କରିବାରେ ସେ ଥିଲେ ବଜ୍ରଠାରୁ କଠୋର । ସର୍ବଦା ମୋର ଭାବପ୍ରବଣ ହୃଦୟ ତାଙ୍କ ଶାଣିତ ବାକ୍ୟବାଣରେ ବିଦୀର୍ଣ୍ଣ ହେଉଥିଲା । ସେ କେତେବର୍ଷ ସେ ଥିଲେ ମୋ ପାଇଁ ମୂର୍ତ୍ତିମନ୍ତ ଯମ । ତାଙ୍କୁ ଦେଖିଲେ ହୃଦୟ ମୋର ଶଙ୍କାରେ ଆନ୍ଦୋଳିତ ହେଉଥିଲା । ଆଜିଯାଏ ବି ସେ ଭୟ ମୋର ଯାଇନାହିଁ; ତାଙ୍କ ଦୃଷ୍ଟିରେ ଆଜିଯାଏ ବି ମୁଁ କୈଶୋରାବସ୍ଥାରୁ ଯୌବନକୁ ଉତ୍ତୀର୍ଣ୍ଣ ହୋଇନାହିଁ । କିନ୍ତୁ ଚାକିରି କରି ସ୍ୱାଧୀନ ହେଲାପରେ ବାପାଙ୍କର ସେ ଗାଳିକୁ ମୁଁ ସବୁଠାରୁ ବେଶୀ ହରାଇଛି । ନିଃସଙ୍ଗ ମୁହୂର୍ତ୍ତରେ ବହୁବାର ତାଙ୍କର ସେ କୋପପ୍ରଜ୍ୱଳିତ ମୂର୍ତ୍ତିକୁ ମନେ ପକାଇ ସନ୍ତାପି ହୋଇଛି । ଏବେ ବୟସଭାରରେ ଶାନ୍ତ ଓ ଶୁକ୍ଳକେଶ ପିତାଙ୍କୁ ମୋର ଦେଖିଲେ ହୃଦୟରେ କାରୁଣ୍ୟ ଭରି ଆସେ — କିଛି ଗୋଟିଏ ହଜିଯାଇଥିବାର ଅନୁଭୂତି ଆସେ ।

ତାଙ୍କ ବ୍ୟକ୍ତିତ୍ୱରେ ଅନେକ ପରସ୍ପରବିରୋଧୀ ଗୁଣ ମୁଁ ଲକ୍ଷ୍ୟ କରିଛି, ଯଦି ଓ ତାଙ୍କୁ ଏକ ବିଭଗ୍ନ ବ୍ୟକ୍ତିତ୍ୱ ବୋଲି କହିହେବ ନାହିଁ । ବରଂ ସେହି ଗୁଣଗୁଡ଼ିକର ସୁମଧୁର ସମନ୍ୱୟ ଘଟିଛି ତାଙ୍କଠାରେ । ସେ ଦୃଢ଼ ଈଶ୍ୱରବିଶ୍ୱାସୀ, କିନ୍ତୁ ପ୍ରାୟ କେବେ ତାଙ୍କୁ ମନ୍ଦିର ଯିବାର ଦେଖିନାହିଁ; ସାଧାରଣତଃ ସେ ରସିକ ଓ ରସବନ୍ତ, କିନ୍ତୁ ଦୃଷ୍ଟିଭଙ୍ଗୀରେ ରକ୍ଷଣଶୀଳ; ବ୍ୟୟକାତର, କିନ୍ତୁ ସମୟ ଆସିଲେ ଅତ୍ୟନ୍ତ ମୁକ୍ତହସ୍ତ ଓ ସଞ୍ଚୟୀ ଏବଂ ଅଧିକ ଉପାର୍ଜନକୁଣ୍ଠିତ, ଅତିଥିପରାୟଣ କିନ୍ତୁ ଅତିଥିମାନେ ତାଙ୍କ ଶୃଙ୍ଖଳା ମାନିବାକୁ ବାଧ୍ୟ, ଥରେ ଆମର ଜଣେ ଏକାନ୍ତ ଆତ୍ମୀୟ ତାଙ୍କୁ ନ କହି ସେକେଣ୍ଡ ସୋ ସିନେମା ଯାଇଥିଲେ । ଘରର ନିୟମ ଅନୁସାରେ ରାତି ଦଶଟା ପରେ

ବାହାରେ ରହିବା ନିଷିଦ୍ଧ । ସେ ଫେରିଲା ବେଳକୁ ଗେଟ୍ ତାଲା ବନ୍ଦ । ସେ ରାତି ଅନ୍ୟତ୍ର କଟାଇବାକୁ ବାଧ୍ୟ ହୋଇଥିଲେ । ଏ ପ୍ରକାରେ କିଛିଟା ମନୋମାଳିନ୍ୟ ମଧ୍ୟ ହୋଇଥିଲା, କିନ୍ତୁ ବାପା ସେଥିପାଇଁ ଭ୍ରୁକ୍ଷେପ ବି କରି ନଥିଲେ । ସେ ଯେତେବେଳେ ଯାହା ଠିକ୍ ଭାବିଛନ୍ତି, ତାହାହିଁ କରିଛନ୍ତି । ନିଜର ନୀତି ନିୟମ,ଆଇନ୍‌ଶୃଙ୍ଖଳା ଓ ଆତ୍ମ-ଗୌରବ ଜାହିର୍ କରିବା ବେଳେ କୌଣସି ଅନ୍ତରାୟକୁ ସେ ବରଦାସ୍ତ କରିନାହାନ୍ତି । ସେଥିପାଇଁ ଏ ମତଲବୀ ଦୁନିଆଁରେ ସେ ବହୁତ କ୍ଷତି ସହିଛନ୍ତି,କିନ୍ତୁ ଅନ୍ୟାୟ ଓ ଅନୀତି ସହିତ ସାଲିସ୍ କରି କାହା ଆଗରେ ମୁଣ୍ଡ ନୁଆଇଁ ଦେଇ ନାହାନ୍ତି ।

ବାପା ମୋର ଏକାନ୍ତ ବିଷୟବୁଦ୍ଧିହୀନ । ଧନ ଅର୍ଜନ ଓ ସଞ୍ଚୟର ନିଶା ତାଙ୍କୁ କେବେ ଘାରି ନାହିଁ । ନିର୍ମଳ ସାହିତ୍ୟସାଧନା, ନିଷ୍କାମ କର୍ମ ଓ ସାଂସାରିକ ବନ୍ଧନ ମୁକ୍ତ ଜୀବନ ଯାପନରେ ସେ ଅଭ୍ୟସ୍ତ । ଏତେ ବର୍ଷ ଚାକିରିରେ ଖଣ୍ଡିଏ ଘର କରିଛନ୍ତି,ଯାହା ପ୍ରକାରେ ବହୁ ଝିଙ୍କଟ, ଅଶାନ୍ତି ଓ ମନସ୍ତାପ ମଧ୍ୟରେ ତାଙ୍କୁ ଗତି କରିବାକୁ ହୋଇଛି । ବ୍ୟାଙ୍କ୍‌ରେ ଗୁଡ଼ାଏ ସଞ୍ଚୟ କରି ଜମାଇଛନ୍ତି, ତାହା ବି ନୁହେଁ, ଘର କରିବା ପାଇଁ ତାଙ୍କର ଜଣେ ପ୍ରିୟତମ ଗୁରୁଦେବ ତାଙ୍କୁ ଖଣ୍ଡିଏ ଜାଗା ବିକ୍ରୀ କରିଥିଲେ—ପୋଖରୀ ହୁଡ଼ା, ଅପ୍ରଶସ୍ତ-ଏବଂ ତହିଁରେ ତାଙ୍କ ବଂଶଧରଙ୍କ ସହିତ ବିବାଦର ମଞ୍ଜି ବି ପୋତା ହୋଇଥିଲା । ମୁଁ ଯେତେଦୂର ଜାଣେ, ଜାଗା କବଜା ହେବା ପର୍ଯ୍ୟନ୍ତ ବାପା ତାର ସ୍ୱରୂପ ଦେଖି ନଥିଲେ । କାରଣ ଗୁରୁଦେବଙ୍କ ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ ଥିଲା । ସେମିତି ଆଉ ଖଣ୍ଡିଏ ଜାଗା ଭୁବନେଶ୍ୱର ମନ୍ଦିରରୁ କିଣିଥିଲେ । ଦିନେ ସରକାରୀ ଯୋଜନାରେ ସେ ଜମି ଅଧିକୃତ ହୋଇଗଲା । କ୍ଷତିପୂରଣ ରୂପେ ଯାହା ମିଳିଲା ତାହା କ୍ଷେତ୍ରଫଳରେ ପୁରୁଣା ଜାଗାର ଅଧା ମାତ୍ର । କିନ୍ତୁ ସେଥିପାଇଁ ସେ କେବେ ପଶ୍ଚାତ୍ତାପ କରିନାହାନ୍ତି । ଦାତା ଭଗବାନ୍ ଯାହା ଦେଇଛନ୍ତି, ସେ ତାହା ମୁଣ୍ଡପାତି ଗ୍ରହଣ କରି ନେଇଛନ୍ତି । ଉଚ୍ଚ ଭାବନା ଓ ଉନ୍ନତ କଳ୍ପନାରେ ସେ ବ୍ରତୀ ହୋଇଛନ୍ତି । କୋର୍ଟ-କଚେରୀ ଭାବନା ତାଙ୍କ ମନକୁ କେବେହେଲେ ସ୍ପର୍ଶ କରିନାହିଁ ।

କେବଳ ସମ୍ପତ୍ତି ବିଷୟରେ ନୁହେଁ-ଚାକିରି ଜୀବନରେ ବି ସେ ଥିଲେ ନିତାନ୍ତ ଅଦୂରଦର୍ଶୀ । ପଦବୀ ଓ କ୍ଷମତାର ଲାଳସା ତାଙ୍କୁ କେବେ ଗ୍ରାସ କରି ନାହିଁ । କାଉଁରିଆ କାଠିପରି ସେ କଳେ ଭାଙ୍ଗି ପଡ଼ିଛନ୍ତି ସିନା, ନଇଁ ନାହାନ୍ତି କେବେ । ଆତ୍ମସମ୍ମାନରେ ଜଳାଞ୍ଜଳି ଦେଇ ନିଜ ଭବିଷ୍ୟତ ଗଢ଼ିବାର ସ୍ୱପ୍ନ କେବେ ଦେଖି ନାହାନ୍ତି । ତାଙ୍କଠାରୁ କନିଷ୍ଠ ବ୍ୟକ୍ତିମାନେ ତାଙ୍କ ଉପରେ ହାକିମ ହୋଇଛନ୍ତି, କିନ୍ତୁ ତୋଷାମୋଦ କରି ପଦବୀ ହାସଲ କରିବାର ଅପଚେଷ୍ଟାରେ ସେ କେବେହେଲେ ମନ ଦେଇନାହାନ୍ତି । ସଂକୀର୍ଣ୍ଣ ଜାତିଆଣ ଭାବଗ୍ରସ୍ତ, ଈର୍ଷାଳୁ ହାକିମମାନଙ୍କର ଚକ୍ରାନ୍ତରେ ଦୁଇ ଦୁଇ ଥର

ବିଶ୍ୱବିଦ୍ୟାଳୟର ମୁଖ୍ୟ ଅଧ୍ୟାପକ ହେବାର ସୁଯୋଗ ହରାଇଛନ୍ତି । ତାଙ୍କଠାରୁ ଅଳ୍ପ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତିମାନେ ଆଗକୁ ମାଡ଼ିଗଲା ବେଳେ ସେ ଆତ୍ମାଭିମାନକୁ ରକ୍ଷା କରିବା ପାଇଁ ରାସ୍ତାରୁ ହଟି ଯାଇଛନ୍ତି । ଗମ୍ଭୀର ମାନସିକ ଯାତନାରେ ତାଙ୍କର ସ୍ୱାସ୍ଥ୍ୟ-ଭଙ୍ଗ ହୋଇଛି, ଚାକିରି ନଥିଲେ ପିଲାମାନେ କିପରି ମଣିଷ ହେବେ, ସେ ଚିନ୍ତାରେ ତାଙ୍କୁ ଚାରିଦିଗ ଅନ୍ଧାର ଦିଶିଛି, କିନ୍ତୁ ଥରେ ହେଲେ କର୍ତ୍ତାମାନଙ୍କୁ ଖୋସାମତ୍ କରି ସୁଯୋଗ ଆଦାୟ କରିବାର ସହଜିଆ ପନ୍ଥା ସେ ବାଛି ନାହାନ୍ତି । ଥରେ ଗୋଟିଏ ନିଯୁକ୍ତିପାଇଁ ସାକ୍ଷାତ୍କାରରେ ତାଙ୍କର ଜଣେ ଛାତ୍ରଙ୍କୁ ପରୀକ୍ଷକ ଭାବେ ରଖାଯାଇଥିଲା । ସେ ଅନ୍ୟାୟର ପ୍ରତିବାଦରେ ସେ ସାକ୍ଷାତ୍କାରକୁ ବର୍ଜନ କରିଥିଲେ । ପରେ ଜଣେ କର୍ତ୍ତା ମନ୍ତବ୍ୟ କରିଥିଲେ—ସେ ଯଦି ଥରେ ଖାଲି ଆସି ଯାଇଥାନ୍ତେ, ତେବେ ନିଯୁକ୍ତିଟି ତାଙ୍କୁ ନିଶ୍ଚୟ ମିଳିଥାଆନ୍ତା । କିନ୍ତୁ ପିତା ମୋର ଆତ୍ମଗୌରବକୁ ଅଗ୍ରସ୍ଥାନ ଦେଇଛନ୍ତି । ଶଠତା ଓ ଧୂର୍ତ୍ତତାରେ ଧୁରୀଣ ରାଜନୀତିଜ୍ଞମାନଙ୍କର ହାତର ଖେଳନା ହେବା ପାଇଁ କେବେ ପସନ୍ଦ କରିନାହାନ୍ତି ।

ଦାରୁଣ ଶ୍ୱାସବ୍ୟାଧିରେ ସେ ଆକ୍ରାନ୍ତ ହୋଇ ପଡ଼ିଲେ । ପିଲାମାନଙ୍କର ଭବିଷ୍ୟତ ଓ ଘରର ଅସ୍ୱଚ୍ଛଳ ଆର୍ଥିକ ପରିସ୍ଥିତିର ଚିନ୍ତାରେ ଘାରି ହେଉଥିଲେ ସେ । ଏକ ଆସନରେ ବସି ବସି ବହୁ ରାତି ସେ ବିନିଦ୍ର ଭାବେ କଟାଇଛନ୍ତି ! ତାଙ୍କର ସେ କରୁଣ ମୁଖ, ବ୍ୟଥାବ୍ୟଞ୍ଜକ ନେତ୍ରଦ୍ୱୟ ଓ ସେ ଅସହ୍ୟ ଯନ୍ତ୍ରଣାକ୍ଲିଷ୍ଟ ଶରୀର ଦେଖି ତରୁଣ ହୃଦୟ ମୋର ହାହାକାର କରି ଉଠୁଥିଲା । ନିର୍ଜନରେ ମୋ ପ୍ରକୋଷ୍ଠରେ ପିତାଙ୍କର ଆରୋଗ୍ୟ କାମନା କରି ମୁଁ ଅଶ୍ରୁପାତ କରୁଥିଲି । ଦିନକୁ ଷାଠିଏ ସତୁରି ଟଙ୍କା ପ୍ରାୟ ଔଷଧ ପାଇଁ ଖର୍ଚ୍ଚ ହେଉଥିଲା । ସେ ଘୋର ଅଭାବ ସମୟରେ ବାପା ଯେତେବେଳେ ମୋ ହାତରେ ଟଙ୍କା ଧରାଉଥିଲେ, ଔଷଧ କିଣିବା ପାଇଁ, ହୃଦୟ ମୋର ସେତେବେଳେ କାରୁଣ୍ୟରେ ଆର୍ଦ୍ର ହୋଇ ଉଠୁଥିଲା, ନିଷ୍ଠୁର ଭଗବାନ୍‌ଙ୍କ ଉପରେ ମୁଁ ଶତ ଶତ ଅଭିସମ୍ପାତ ବର୍ଷଣ କରୁଥିଲି । ଚାକିରିରୁ ଅବସର ନେବାର କିଛି ଦିନ ପୂର୍ବରୁ ବି ସେ ରୋଗରେ ଶଯ୍ୟାଶାୟୀ ହୋଇଥିଲେ । ସେତେବେଳ ଯାଏ ମଧ୍ୟ ତାଙ୍କୁ ଜଣା ନଥିଲା ଯେ ଔଷଧ ପାଇଁ ଖର୍ଚ୍ଚର ଅର୍ଥ ଭରଣା ସରକାରରୁ ମିଳେ ବୋଲି । ତାଙ୍କ ସାଂସାରିକ ବୁଦ୍ଧିହୀନତାର ଏ ଆଉ ଏକ ନିଦର୍ଶନ ।

ବେଶପୋଷାକ ପ୍ରତି ସେ କେବେହେଲେ ସଚେତନ ନଥିଲେ । ଦୁଇ ତିନୋଟି ଶାର୍ଟ ପ୍ୟାଣ୍ଟ୍ ଓ ହଳେ ବିଶାଳ ଜୋତାରେ ସେ କାମ ଚଳାଇ ଆସିଛନ୍ତି । ଫେସନ୍-ଫାସନ୍ ଠାରୁ ସେ ବହୁଦୂରରେ । ତାଙ୍କ ସାଥୀ-ସହଚରମାନେ ସେଥିପାଇଁ ଅନେକ ସମୟରେ ବିଦ୍ରୂପ କରିଛନ୍ତି । ବୋଉ ମଧ୍ୟ ମଝିରେ ମଝିରେ କଟୂ ମନ୍ତବ୍ୟ କରିବାକୁ

ଛାଡ଼ନ୍ତିନାହିଁ । ବାହାରର ଅତିଥି ଯେ କେହି ଆସିଲେ ବି ମୁକ୍ତଦେହ ଗଳାଲୁଙ୍ଗି ପରିହିତ ବାପା ନିଃସଙ୍କୋଚରେ ତାଙ୍କ ସହ ଆଳାପ କରିଥାଆନ୍ତି । ମୋତେ ମଧ୍ୟ ପୋଷାକ-ପତ୍ରରେ ମନ ଦେବାପାଇଁ ସେ କେବେହେଲେ ପ୍ରଶ୍ରୟ ଦେଇ ନାହାନ୍ତି । ସରଳ ଓ ନିରାଡ଼ମ୍ବର ଜୀବନ ଯାପନ କରି କଠୋର ଜୀବନସଂଗ୍ରାମ ମଧ୍ୟରେ ଜୀବନରୁ ମଧୁର ରସ ଆସ୍ୱାଦନ କରି ଶିଖିଛନ୍ତି ସେ । ସରଳ ଜୀବନ ଯାପନ ଓ ଉନ୍ନତ ଚିନ୍ତାଧାରା ତାଙ୍କର ପ୍ରକୃତି । ସତ୍ୟନିଷ୍ଠ ଓ ସତ୍ୟସନ୍ଧ ପିତା ମୋର ବିଷୟବାସନାକୁ ସର୍ବଦା ବିଷବତ୍ ପରିତ୍ୟାଗ କରିଛନ୍ତି ।

ମୁଁ କିପରି ଜଣେ ବଡ଼ ମଣିଷ ହୁଏ— ଏହା ଥିଲା ତାଙ୍କର ଲକ୍ଷ୍ୟ । ଆତ୍ମ-ନିର୍ଭରଶୀଳତା ଓ କବିତ୍ୱ ଶକ୍ତିର ଏକ ବିଚିତ୍ର ସମନ୍ୱୟ ଘଟିଛି ତାଙ୍କଠାରେ । ସେହି ଆଦର୍ଶରେ ସବୁବେଳେ ସେ ମୋତେ ଅନୁପ୍ରାଣିତ କରିବା ପାଇଁ ଚେଷ୍ଟା କରିଛନ୍ତି । ମୋର ସମସ୍ତ କାର୍ଯ୍ୟକଳାପ ଉପରେ ତାଙ୍କର କଠୋର ଚକ୍ଷୁ ଘୂରିବୁଲୁଥିଲା । ବେଳେ ବେଳେ ତାଙ୍କ ପିତୃ ସୁଲଭ ଅତ୍ୟାଚାରରେ ମୁଁ ଅତିଷ୍ଠ ହୋଇ ଭାବୁଥିଲି— ବୋଧହୁଏ ତାଙ୍କ ହୃଦୟରେ ଦୟାମାୟାର ସ୍ଥାନ ନାହିଁ । ତାଙ୍କ କର୍କଶ ବାକ୍ୟରେ ମୋର ହୃଦୟ ଜର୍ଜରିତ ହେଉଥିଲା । ମୋର କୌଣସି ତ୍ରୁଟି ବିଚ୍ୟୁତିକୁ ସେ କ୍ଷମା ଦେଇନାହାନ୍ତି । ବେଳେ ବେଳେ ମୁଁ ଭାବୁଥିଲି— ଏ ରୁକ୍ଷ ପାଷାଣହୃଦୟ ବ୍ୟକ୍ତି ଏପରି ରସମୟ, ଲାଳିତ୍ୟ ଓ ଲାବଣ୍ୟମୟ ସାହିତ୍ୟ କିପରି ସୃଷ୍ଟି କରୁଛି ? ଯେତେବେଳେ ମୋତେ ନିଯୁକ୍ତି ମିଳିଲା ଓ ମୁଁ ପ୍ରବାସ ଯିବା ପାଇଁ ପ୍ରସ୍ତୁତିରେ ବ୍ୟସ୍ତଥିଲି, ସେତେବେଳେ ତାଙ୍କ ମୁଖ ଉଦାସ ଓ ବିବର୍ଣ୍ଣ । ବୋଧହୁଏ ମୋ ଘର ଛାଡ଼ିବାର ଦୁଃଖକୁ ସେ ସହ୍ୟ କରିପାରୁ-ନଥିଲେ, ଯଦିଓ ତାହା ସେ ବାହାରେ ପ୍ରକାଶ କରୁ ନଥିଲେ । ସେତେବେଳେ ବୁଝିଥିଲି, ସେ କଠୋରତା କେବଳ ବାହାରର ଆବରଣ ମାତ୍ର, କିନ୍ତୁ ଭିତରେ ସ୍ନେହ, ଶ୍ରଦ୍ଧା ଓ ବାତ୍ସଲ୍ୟର ଅମୃତ ପୂରିରହିଥିଲା ।

ତାଙ୍କର ଆଦର୍ଶରେ ମୁଁ ଜଣେ ଲେଖକ ହୁଏ ଏ ଉଚ୍ଚାକାଂକ୍ଷା ସେ ସର୍ବଦା ପୋଷଣକରି ଆସିଛନ୍ତି । ଏ ପର୍ଯ୍ୟନ୍ତ ମୁଁ ସେ ଉଚ୍ଚାକାଂକ୍ଷାର ସମକକ୍ଷ ହୋଇପାରିନାହିଁ । ପିଲାଟି ଦିନରୁ କବିତା ଓ ପ୍ରବନ୍ଧ ଆଦି ଲେଖିବା ପାଇଁ ସେ ସବୁବେଳେ ପ୍ରେରଣା ଦେଇ ଆସିଛନ୍ତି । ତାଙ୍କରି ଉତ୍ସାହରେ କିଛିଟା ଲେଖାଲେଖି ମୁଁ କରୁଥିଲି । ସାଙ୍ଗସାଥୀ ଓ ଶୁଭେଚ୍ଛୁମାନେ ମୋ ରଚନାରେ ଏକ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦେଖି ପାରୁଛନ୍ତି ବୋଲି ଚାଟୁବାଣୀରେ ମୋତେ ବହୁବାର ସିକ୍ତ କରିଛନ୍ତି । କିନ୍ତୁ ଚାକିରି ଜଞ୍ଜାଳ, ଓ ଘୋର ଅଦୂରଦର୍ଶିତାର ବଶବର୍ତ୍ତୀ ହୋଇ ସାହିତ୍ୟକୁ ମୁଁ ଭୁଲିଛି, ସେଥି ସକାଶେ

ତାଙ୍କର ମନୋବ୍ୟଥାର ସୀମା ନାହିଁ । ଆଜି ପର୍ଯ୍ୟନ୍ତ ବି ଜଣେ ଦୁଇଜଣ ଉଚ୍ଚପଦସ୍ଥ ଅଫିସର-ଲେଖକଙ୍କର ଦୃଷ୍ଟାନ୍ତ ଦେଇ ମୋତେ ଲେଖିବା ପାଇଁ ପ୍ରବର୍ତ୍ତାଉଛନ୍ତି । ପିତାଙ୍କର ଉଦ୍ୟମ ଓ ମୋର ଅକ୍ଷମତା ମୋର ବିବେକକୁ ବାରମ୍ବାର କଣ୍ଟକବିଦ୍ଧ କରୁଛି ।

ଅବସର ଗ୍ରହଣ କରିବା ପରେ ସେ ଅଚଳ ଟଙ୍କାରେ ପରିଣତ ହୋଇନାହାନ୍ତି, ଯାହାକି ବହୁ ସରକାରୀ ଚାକିରିଆଙ୍କ କ୍ଷେତ୍ରରେ ଘଟିଥାଏ । ସରକାରୀ କୃପାରୁ ସେ କେବେ ସମ୍ମାନ ଆଦାୟ କରିବାକୁ ଚେଷ୍ଟା କରି ନାହାନ୍ତି । ତେଣୁ ଅବସର ଗ୍ରହଣ ପରେ ସେ ଏକ ଜୀବନ୍ତ ମୁଦ୍ରାରରେ ପରିଣତ ହୋଇନାହାନ୍ତି । ସେ ଚାକିରି କରିଥିଲେ ପେଟ ପୋଷିବା ପାଇଁ; ହାକିମଙ୍କୁ ପୋଷିବା ବା ଗ୍ରୁପଙ୍କୁ ଶାସିବା ପାଇଁ ନୁହେଁ । ବିଭାଗୀୟ ମୁଖ୍ୟ ହେବାର ସୌଭାଗ୍ୟ ସେ ମୋଟେ ଏକବର୍ଷ ପାଇଁ ଲାଭ କରିଛନ୍ତି । ସେଥିପାଇଁ ସେ ଭାଗ୍ୟକୁ କେବେ ନିନ୍ଦି ନାହାନ୍ତି । ଅନ୍ୟ ବହୁ ମୁଖ୍ୟ ଅଧ୍ୟାପକଙ୍କ ପରି ନିଜ ପଦବୀର ଅସତ୍ ବ୍ୟବହାର କରି ଅନ୍ୟାୟ ଭାବରେ ସେ ଗ୍ରୁପମାନଙ୍କୁ କଷଣ ଦେଇନାହାନ୍ତି । ତେଣୁ ସେ ଗ୍ରୁପମାନଙ୍କଠାରୁ ପାଇଛନ୍ତି ଅନାବିଲ ଗୁରୁଭକ୍ତି ଓ ଅକୁଣ୍ଠ ସମ୍ମାନ, ଅବସର ଗ୍ରହଣପରେ ବି । ନିଜ ଲେଖନୀ ବଳରେ ସେ ଗଢିଛନ୍ତି ଏକ ଦୁର୍ଜୟ, ସାମ୍ରାଜ୍ୟ, ଯାହାର ବିଳୟ ନାହିଁ । ସାହିତ୍ୟସଭା, ସାମାଜିକ କାର୍ଯ୍ୟକ୍ରମ ଓ ନାନାବିଧ କର୍ମରେ ମଗ୍ନ ରହି ତାଙ୍କର ସମୟ କଟୁଛି । ଅବସର ଗ୍ରହଣ ପରେ ବୋଧହୁଏ ସେ ଅଧିକ କାର୍ଯ୍ୟବ୍ୟସ୍ତ ହୋଇଛନ୍ତି । ତାଙ୍କ ସମସାମୟିକ ପ୍ରବଳ ପ୍ରତାପୀ ହାକିମମାନେ ବିସ୍ମୃତିଗର୍ଭରେ ବିଲୁପ୍ତ ହୋଇଥିବା ବେଳେ, ସେ ନିଜର ପ୍ରତିଷ୍ଠା ଅକ୍ଷୁଣ୍ଣ ରଖି ପାରିଛନ୍ତି, କଠୋର ସାଧନା ଲବ୍ଧ ଓ ନିରବଚ୍ଛିନ୍ନ ବିଦ୍ୟାବିନୋଦୀ ପିତା ମୋର କାଳକୁ ଜୟ କରିଛନ୍ତି ।

ଏହି ମହାନ୍ ବ୍ୟକ୍ତିଙ୍କର ଜ୍ୟେଷ୍ଠ ପୁତ୍ର ଭାବେ ମୁଁ ଗଭୀର ଆତ୍ମପ୍ରସାଦ ଲାଭ କରିଛି । ବହୁ ଲୋକେ ମୋତେ ତାଙ୍କ ପୁତ୍ର ହିସାବରେ ସ୍ନେହ, ଶ୍ରଦ୍ଧା ଓ ସମ୍ମାନ ଦେଇଛନ୍ତି, ତାଙ୍କ ପ୍ରତି କର୍ତ୍ତବ୍ୟରେ ମୁଁ କେତେଦୂର ସଫଳ ହୋଇଛି ଜାଣେ ନାହିଁ, ଚାକିରି ଜଞ୍ଜାଳ ବ୍ୟସ୍ତ ମୁଁ ତାଙ୍କର ରୋଗଗ୍ରସ୍ତ ଅବସ୍ଥାରେ ସେବା ଶୁଶ୍ରୂଷା କରିବାର ସୌଭାଗ୍ୟ ଲାଭ କରିପାରି ନାହିଁ । ରୋଗଶଯ୍ୟାଶାୟୀ ପିତା ବୋଧହୁଏ ମୋତେ ମନେ ମନେ ଖୋଜୁ-ଥିବେ । କିନ୍ତୁ ସୁଦୂରରୁ ମଙ୍ଗଳ ପ୍ରାର୍ଥନା କରିବା ଛଡ଼ା ସେତେବେଳେ ତାଙ୍କ ପାଦତଳେ ବସିବାର ସୁଯୋଗ ମୁଁ ଲାଭ କରିନାହିଁ । ଅନନ୍ତ କ୍ଷମାଶୀଳ ସେ-ସେ ହୁଏତ ମୋର ଏ ତ୍ରୁଟିକୁ କ୍ଷମା କରିଛନ୍ତି, କିନ୍ତୁ ମୁଁ ସର୍ବଦା ଆତ୍ମଗ୍ଲାନିରେ ଦଗ୍ଧ ହୋଉଛି । ଶୁକ୍ଳକେଶ

ପିତାଙ୍କୁ ମୁଁ ଏବେ ଦେଖିଲେ ହୃଦୟ ଅଶ୍ରୁରେ ଛଳ ଛଳ ହୁଏ, ଅନାହାର ଓ ଅର୍ଦ୍ଧାହାରରେ ଯାହା ଜୀବନର ଶ୍ରେଷ୍ଠ ଭାଗ ବିତିଛି, ସେ ଜୀବନରେ କିଛି ପାଇନାହାନ୍ତି ବୋଲି ଖେଦ କରିନାହାନ୍ତି । କିନ୍ତୁ ସୁଗମ୍ଭୀର ଓ ସୁବିଶାଳ ମୂର୍ତ୍ତି ମୋ ପିତାଙ୍କୁ ଦେଖିଲେ ହୃଦୟରେ ମୋର ବିଷାଦ ଭରିଯାଏ, ଭଗବାନ୍ ତାଙ୍କୁ ନିରାମୟ କରନ୍ତୁ, ଏତିକି ମୋର ପ୍ରାର୍ଥନା । ମୋର ହୃଦୟର ପ୍ରତି ଅଶ୍ରୁବିନ୍ଦୁରେ ତାଙ୍କ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ଚିରନ୍ତନ ପାଇଁ ପ୍ରତିଫଳିତ ହେଉଥିବ ବୋଲି ମୋର ଆଶା । 

* Commissioner, Municipal Corporation, Bijoywada.

# ॥ କଲିକତା ପ୍ରବାସୀ ଓଡ଼ିଆ, ମୋ 'ସାର୍' ॥

**ଦିଗମ୍ବର ଦାସ**

୧୯୩୯ ମସିହାରେ ପଣ୍ଡିତ ବିନାୟକ ମିଶ୍ରଙ୍କ ଘରେ 'ସାର୍'ଙ୍କ ସହିତ ମୋର ହୁଏ ପ୍ରଥମ ପରିଚୟ । ଏହି ସମୟରେ ଜଣେ ଶିକ୍ଷକ ଏମ.ଏ. ପଢ଼ୁଆ ଛାତ୍ର ପାଖରେ ପାଇଲେ ଏକା ମୁଁ କାହିଁକି, ପ୍ରବାସରେ ପ୍ରତ୍ୟେକ ଓଡ଼ିଆ ଶ୍ରମିକଙ୍କ ପ୍ରାଣରେ ଗର୍ବ ଓ ଗୌରବର ଢେଉ ଖେଳି ଯାଉଥିଲା ।

ବିନାୟକବାବୁଙ୍କ ସହିତ କିଛି ସମୟ କଥାବାର୍ତ୍ତା ହେବାପରେ 'ସାର୍'ଙ୍କୁ ସାଙ୍ଗରେ ଧରି ୭ନମ୍ବର ଗ୍ୟାରିଷ୍ଟୋନ ପ୍ଲେସ୍ ବ୍ରଜବନ୍ଧୁ ନୈଶ ବିଦ୍ୟାଳୟକୁ ଆସିଲି । ସ୍କୁଲର ସମ୍ପାଦକ କ୍ଷେତ୍ରମୋହନଙ୍କ ସହିତ 'ସାର୍'ଙ୍କର କଥାବାର୍ତ୍ତା ହେଲା । ବ୍ରଜବନ୍ଧୁ ନୈଶ ବିଦ୍ୟାଳୟରେ 'ସାର୍' ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟଭାର ଗ୍ରହଣ କଲେ । ବିଭିନ୍ନ ସ୍ଥାନରେ ଚାକିରି କରୁଥିବା ପ୍ରବାସୀ ଓଡ଼ିଆ ଶ୍ରମିକମାନେ ସନ୍ଧ୍ୟା ୭ଟାରୁ ରାତି ଦଶଟା ପର୍ଯ୍ୟନ୍ତ ବିଦ୍ୟାଅଧ୍ୟୟନ କରନ୍ତି । ଛାତ୍ର ସଂଖ୍ୟା ସେତେବେଳେ ପଚିଶ ହେବ । ତିନି ଜଣ ଶିକ୍ଷକ; ଜୟକୃଷ୍ଣବାବୁ ଓ ଧ୍ରୁବ ଚରଣ ବାବୁ—'ସାର୍' ଥିଲେ ପ୍ରଧାନ ଶିକ୍ଷକ । ମାସିକ ଦରମା ଦଶ ଟଙ୍କା ।

କ୍ଲାଇଭ୍ ଷ୍ଟ୍ରିଟ୍ କମର୍ସିୟାଲ୍ ବିଲ୍ଡିଂର ଛାତ ଉପରେ ଗୋକୁଳ ସ୍ୱାମୀ ରହୁଥିଲେ । ସେ ମଧ୍ୟ ଜଣେ ବ୍ରଜବନ୍ଧୁ ନୈଶ ବିଦ୍ୟାଳୟ କାର୍ଯ୍ୟନିର୍ବାହକ ସମିତିର ସଭ୍ୟ । ସ୍କୁଲରୁ 'ସାର୍'ଙ୍କୁ ସାଙ୍ଗରେ ଧରି ରାତି ଦଶଟାରେ ଗୋକୁଳବାବୁଙ୍କ ବସାରେ ପହଞ୍ଚିଲି । ସେ ବସାଘରଟି ପାଞ୍ଚହାତ ଲମ୍ବ ଓ ଚାରି ହାତ ଓସାର । ସେଇ ବସାରେ ପାଞ୍ଚଜଣ ପ୍ରବାସୀ ଓଡ଼ିଆ ଶ୍ରମିକ ରହନ୍ତି । ଆଠଦଶଖଣ୍ଡି ଟିଣ ସୁଟ୍କେସ, ବିଛଣା, ଚୂଲିହାଣ୍ଡି ସବୁଆଏ । 'ସାର୍'ଙ୍କୁ ସେଠାରେ ଛାଡ଼ି ରାତି ଏଗାରଟାରେ ମୋ ନିଜ ବସାକୁ ଫେରି ଆସିଲି ।

ଦିନେ ଦୁଇଦିନ ରହିବାପରେ 'ସାର୍'ଙ୍କର ଭୀଷଣ ଅସୁବିଧା ହେଉଛି ବୋଲି ଅନୁମାନ କରି ଜନ୍‌ଡିକେନ୍‌ଶନ୍ କମ୍ପାନୀର ମୁରଲୀ ବାବୁଙ୍କ ପାଖକୁ ଯାଇ ସବୁକଥା ଜଣାଇଲି । ମୁରଲୀ ବାବୁଙ୍କ ବସାରେ 'ସାର୍'ଙ୍କର ରହିବା ସ୍ଥିର ହେଲା ।

କ୍ଲାଇଭ୍ ଷ୍ଟ୍ରିଟରୁ କଲେଜ୍ ଷ୍ଟ୍ରିଟ୍ ବିଶ୍ୱବିଦ୍ୟାଳୟ ପ୍ରାୟ ଦୁଇ ମାଇଲ ବାଟ । ଟ୍ରାମରେ ଗଲେ ମାତ୍ର ଦୁଇ ପଇସା ଟିକେଟ ଲାଗେ, ତଥାପି 'ସାର୍' ଚାଲି ଚାଲି ଯାଆନ୍ତି । ଦିନରେ ନିଜେ ଅଧ୍ୟୟନ କରି, ସନ୍ଧ୍ୟା ଛ'ଟାରୁ ରାତି ଦଶଟା ପର୍ଯ୍ୟନ୍ତ ପ୍ରବାସୀ ଓଡ଼ିଆ ଶ୍ରମିକମାନଙ୍କୁ ପଢ଼ାନ୍ତି ।

ମୁରଲୀବାବୁ କାମ କରୁଥିବା ଇଂରେଜ ସାହେବଙ୍କ ଟେବୁଲରୁ ଗୋଟିଏ ଦାମୀ ଫାଉଣ୍ଟେନ୍ ପେନ୍ ଚୋରି ହୋଇଗଲା । କିଏ ନେଲା— କିଏ ନେଲା ବୋଲି ଅଫିସ୍ ସାରା ଚହଳ ପଡ଼ିଗଲା । ଶେଷକୁ ଓଡ଼ିଆ ବେହେରାମାନଙ୍କ ଉପରେ ସମସ୍ତଙ୍କର ସନ୍ଦେହ । ଅଫିସ୍‌ର ବଡ଼ବାବୁ ବଙ୍ଗାଳି । କଥା—କଥାକେ—'ବେଟା ଉଡ଼େଦେର ଗୁଷ୍ଠି, ଅନ୍ୟ କେଉ କାଲମଟା ନିତେ ପାରେ ନା' । ବଙ୍ଗାଳି ବଡ଼ବାବୁ ! ଗୋରା ସାହେବଙ୍କୁ ଯାହା ବୁଝାଇଲେ, କାର୍ଯ୍ୟରେ ତାହାହିଁ ହେଲା । ଗୁଣିଆ ଡକାଗଲା । ଅଫିସ୍‌ର ଓଡ଼ିଆ କର୍ମଚାରୀମାନେ ଧାଡ଼ି ବାନ୍ଧି ବସି ଗଲେ । ଗୁଣିଆ ସେମାନଙ୍କ ହାତରେ ମୁଠିଏ ଲେଖାଏଁ ଅରୁଆ ଚାଉଳ ଦେଲା । ମନ୍ତୁରା ଅରୁଆ ଚାଉଳକୁ ସମସ୍ତେ ପାକୁଳି କଲେ । ସମସ୍ତଙ୍କ ପାଟିର ଚାଉଳ ଲାଳଯୁକ୍ତ ହେଲା, କିନ୍ତୁ ମୁରଲୀବାବୁଙ୍କର ହେଲା ନାହିଁ । ତେଣୁ ସେ ଚୋର ବୋଲି ସାବ୍ୟସ୍ତ ହେଲେ । ଏହି ମିଥ୍ୟା ଅଭିଯୋଗରେ ବିରକ୍ତ ହୋଇ ସୁଜନ ମୁରଲୀବାବୁ ଚାକିରି ଛାଡ଼ି ଚାଲିଗଲେ । ମୁଁ ମଧ୍ୟ ରାଗି 'ସାର୍'ଙ୍କୁ ମୋ ନିଜ ବସାକୁ ନେଇ ଆସିଲି ।

ଦଶ ଟଙ୍କା ଦରମାରେ 'ସାର୍' ଯେ ଗୋଟିଏ ମାସ କିପରି ଚଳନ୍ତି ଏହାହିଁ ଚିନ୍ତା କରି ମୁଁ ଦୁଃଖିତ ହେଉଥିଲି । ତଥାପି ମୁହଁ ଫିଟାଇ 'ସାର୍'ଙ୍କୁ ଏକଥା କେବେ କହି ନାହିଁ । ସବୁବେଳେ ଧୀର-ଶାନ୍ତଭାବ-ହସ ହସ ମୁହଁ ଦେଖିଲେ ମୁଁ ସବୁ କଥା ଭୁଲିଯାଏ ।

ଭୋର ଚାରିଟାରୁ 'ସାର୍' ଶଯ୍ୟା ତ୍ୟାଗ କରି କବିତା ଲେଖନ୍ତି । ପାଞ୍ଚ ମହଲା କୋଠାଘର ଛାତ ଉପରେ ଏକ କ୍ଷୁଦ୍ର କୁଟୀର ଥିଲା 'ସାର୍'ଙ୍କର ସାଧନାର ପୀଠ । ସକାଳ ବେଳା 'ସାର୍' ପଞ୍ଜାବୀ ହୋଟେଲରେ ଖାଆନ୍ତି— ଭାତ, ଗୋଟା ମୁଗ ଡ଼ାଲି, ଶାଗଆଳୁ ତରକାରୀ । ମିଲ୍ ପିଛା ଚାରି ପଇସା ମାତ୍ର । ବିଶ୍ୱବିଦ୍ୟାଳୟରୁ 'ସାର୍' ଚାରିଟାରେ ବସାକୁ ଫେରିଆସନ୍ତି । ମୁଁ ଅଫିସ୍ କାମରୁ ପାଞ୍ଚଟାରେ ଫେରି ଆସେ । ବହୁଦିନ ଧରି 'ସାର୍'ଙ୍କ ପଛେ ପଛେ ବ୍ରଜବନ୍ଧୁ ନୈଶ ବିଦ୍ୟାଳୟକୁ ଯାଏ ।

ଫୁଟ୍‌ପାଥ୍ କଡ଼ରେ ନାନା ପ୍ରକାର ଫଳ— ଲେମ୍ବୁ, କଦଳୀ, ଶେଓ, ଅଙ୍ଗୁର, ସପୁରୀ ଏଇମିତି ଆଉ କେତେ କଣ ବିକ୍ରୟ ହେଉଥାଏ । ହତାଶ ଦୃଷ୍ଟିରେ ସେ ସବୁ

ପଦାର୍ଥକୁ ଚାହିଁ ମନେ ମନେ ଭାବେ 'ସାର୍'ଙ୍କୁ ଯଦି ଏସବୁ ଫଳ ଖୁଆଇ ପାରନ୍ତି— ! କିନ୍ତୁ ତାହା ହୋଇପାରେ ନାହିଁ । ମନକଥା ମନ ଭିତରେ ମଉଳି ଯାଏ । କାରଣ ପାଖରେ ପଇସା ନଥାଏ । କିଛି ବାଟ ଆଗକୁ ଗଲେ, କୁଡ଼ କୁଡ଼ ବ୍ରିଟାନିଆ ବିସ୍‌କୁଟ୍ ଫୁଟପାଥ୍ ଉପରେ ଗଦା ହୋଇଛି । ସେରକୁ ମାତ୍ର ଚାରିଅଣା । ବଢ଼ିଆ କ୍ରିନକ୍ସ । ଖାଇବାକୁ ସୁସ୍ୱାଦୁ । ପକେଟ ଅଣ୍ଡାଳେ । ଦୁଇ ଅଣା ପଇସା ନେଇ ଅଧ ସେର କିଣି କାଗଜ ଠୁଙ୍ଗାରେ ଭରି 'ସାର୍'ଙ୍କ ପଛେ ପଛେ ଚାଲେ । ବଡ଼ ପୋଷ୍ଟ ଅଫିସ୍ ଶଙ୍ଖ ପାହାଚ ଉପରେ ବସି 'ସାର୍' ଆଉ ମୁଁ ବିସ୍‌କୁଟ୍ ଖାଇବା ଆରମ୍ଭ କରୁ । ଏସବୁ ନକିଣିବା ପାଇଁ ସାର୍ ମୋତେ ବହୁଥର ମନା କରନ୍ତି ଓ ବିରକ୍ତି ମଧ୍ୟ ହୁଅନ୍ତି, କିନ୍ତୁ 'ସାର୍'ଙ୍କୁ କିଛି ନଖୁଆଇଲେ ମୋ ମନରେ ଯେ କେତେ କଷ୍ଟ ହୁଏ ସେକଥା କିଣ 'ସାର୍' ବୁଝନ୍ତି ?

ଦିନକର ଘଟଣା ଏଯାଏ ବି ଭୁଲି ନାହିଁ । 'ସାର୍'ଙ୍କ ସାଙ୍ଗରେ ରାତି ଦଶଟାରେ ବସାକୁ ଫେରିଲି । ଭାବଗ୍ରାହୀ ପତି 'ସାର୍'ଙ୍କ ଅପେକ୍ଷାରେ ବସିଛନ୍ତି । ତାଙ୍କୁ ଦେଖି ମୋ ହାଲକ ଶୁଖିଗଲା । ଭାତ ମୋଟେ ଜଣକ ପାଇଁ ଅଛି । ଆମେ ହେଲୁଣି ତିନିଜଣ । ଏତେ ରାତିରେ ସେ ଆଉ ଯିବେ କୁଆଡ଼େ ? ମହାତ୍ମା ଗାନ୍ଧୀଙ୍କ ପରମ ଭକ୍ତ ଭାବଗ୍ରାହୀବାବୁ । ସୁବକ୍ତା । ପ୍ରବାସୀ ଓଡ଼ିଆମାନଙ୍କ ସଙ୍ଗଠନ ବିଷୟରେ 'ସାର୍'ଙ୍କ ସହିତ ହିଜ୍ ମାଷ୍ଟର୍ସ ଭଏସ୍ ରେକର୍ଡ ବାଜିଲା ପରି ଗପି ଚାଲିଛନ୍ତି । ମୁଁ ବଡ଼ ବିମୁଖରେ ତାଙ୍କ ମୁହଁକୁ ଚାହିଁ ରହିଛି । 'ସାର୍' କଥା ଶୁଣୁଣୁ ମୁରୁକି-ମୁରୁକି ହସୁଥିବାର ଲକ୍ଷ୍ୟ କରି ମୁଁ ବି ହସିଦିଏଁ । ସେତେବେଳକୁ ରାତି ଏଗାର କି ବା'ର ହୋଇଯାଇଥାଏ । ଜଣକ ଭାତକୁ ତିନିଭାଗ କରି ଖାଇବୁଁ । ପେଟ ଅଧା ବି ପୂରେ-ନାହିଁ । ପାଣି ଦୁଇ ଗ୍ଲାସ୍ ପିଇ ରହିଯାଉଁ । ତଥାପି ଏଥିରେ ଥିଲା ଆମ ସମସ୍ତଙ୍କର ଅପାର ଆନନ୍ଦ ।

'ସାର୍'ଙ୍କ ବିଛଣାର ଗୋଟିଏ ପାଖକୁ ଭାବଗ୍ରାହୀ ବାବୁ ଗୁଣ୍ଡି ହୋଇ ଶୋଇ-ଯା'ନ୍ତି । ସବୁ ସମୟରେ ବିଡ଼ିଧୂଆଁ— କାରଖାନାର ଚିମିଣୀ ଧୂଆଁ ପରି ତାଙ୍କ ଅଧର ଫାଙ୍କରୁ ବାହାରୁ ଥାଏ । ଧୂଆଁ ଗନ୍ଧରେ 'ସାର୍' ଯେ କିପରି ଶୁଅନ୍ତି ସେହିକଥା ଭାବି ଭାବି ମୁଁ ବିଛଣା ଧରେ ।

ରାତିପାହି ସକାଳ ହୁଏ । ନିଜ ନିଜ କାମରେ ସମସ୍ତେ ଚାଲିଯାନ୍ତି । ରାତି ଦଶଟାରେ ପୁଣି ସେହି ନର୍ଥ ବ୍ରିଟିଶ୍ ପାଞ୍ଚ ମହଲା କୋଠାଘର ଛାତ ଉପରେ ହୁଏ ସମସ୍ତଙ୍କର ମିଳନ । ବିଚ୍ଛିନ୍ନ ଉତ୍କଳର ଏକତ୍ରୀକରଣ ପାଇଁ ଚାଲେ ଆଲୋଚନା । କଟକରୁ

‘ବାହ୍ନନୀ’ ନାମରେ ଏକ ପତ୍ରିକା ପ୍ରକାଶ ପାଉଥିଲା । ଉତ୍କଳର ବିଚ୍ଛିନ୍ନ ଅଞ୍ଚଳ କିପରି ଅଖଣ୍ଡ ଉତ୍କଳ ହେବ । ସମସ୍ତ ଉତ୍କଳୀୟ ଏକତାବଦ୍ଧ ହୋଇ ଦେଶ ମିଶ୍ରଣ ପାଇଁ ଆମରଣ ସଂଗ୍ରାମ ଚଳାଇବା ପାଇଁ ‘ସାର୍’ ‘ଛିନ୍ନମସ୍ତା’ ନାମକ ଏକ ପୁସ୍ତକ ପ୍ରକାଶ କରିଥିଲେ । ଉକ୍ତ ପୁସ୍ତକର ବିକ୍ରୟ ଟଙ୍କା ବିଚ୍ଛିନ୍ନାଞ୍ଚଳ ପାଇଁ ଖର୍ଚ୍ଚ ହେଉଥିଲା ।

ଉତ୍ତମ ପଢ଼ାପଢ଼ି ହେତୁ ବ୍ରଜବନ୍ଧୁ ନୈଶ ବିଦ୍ୟାଳୟରେ ଛାତ୍ର ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବାରେ ଲାଗିଲା । ପ୍ରତି ଶନିବାର ଦିନ ସାହିତ୍ୟସଭା ଆରମ୍ଭ ହୁଏ । ଛାତ୍ରମାନେ ଗଳ୍ପ, କବିତା, ପ୍ରବନ୍ଧମାନ ପଢ଼ି ଶୁଣାନ୍ତି । ବିଚାରକ ମଣ୍ଡଳୀରେ ‘ସାର୍’ ଥିଲେ ପ୍ରଧାନ । ସେହି ସମୟରେ କଲିକତାରୁ କୌଣସି ଉପନ୍ୟାସ ପ୍ରକାଶ ପାଉନଥିଲା । ‘ସାର୍’ଙ୍କ ଯତ୍ନରେ, କଣ୍ଠେଶ୍ୱର ଚରଣ, ଗୋପୀନାଥ ଓ ମୁଁ ଉପନ୍ୟାସଲେଖା ଆରମ୍ଭ କଲୁ । ବୀଣାକର କବିତାଲେଖା ଆରମ୍ଭ କଲେ । ଶୁକଦେବ ସାହୁ ମଧ୍ୟ ଆମମାନଙ୍କ ସାଙ୍ଗରେ ଉପନ୍ୟାସ ଲେଖା ଆରମ୍ଭ କରିଥିଲେ । ପ୍ରବାସୀ ଉତ୍କଳ ସାହିତ୍ୟ ପରିଷଦ ନାମରେ ଏକ ସମିତି ଗଢ଼ାଯାଇ କଲିକତା ଓ ତା'ର ଉପକଣ୍ଠରେ ଥିବା ପାଠାଗାରମାନଙ୍କରେ ସାହିତ୍ୟ ସଭା ବସେ । ସେ ଅନୁଷ୍ଠାନର ‘ସାର୍’ ଥିଲେ ସଭାପତି ।

ମୁଁ ସାହିତ୍ୟର ବିଭବକୁ ପୂର୍ଣ୍ଣମାତ୍ରାରେ ଉପଭୋଗ କରୁଥିଲେ ହେଁ, ସାହିତ୍ୟ ସୃଷ୍ଟି ଦିଗରେ ମୋର କୌଣସି ଆଦର୍ଶ ନଥିଲା । ମୋ ଜୀବନ ଏକ କଣ୍ଢାବୁଦା ପାଲଟି ଯାଇଥିଲା । ଶ୍ରେଷ୍ଠ କାବ୍ୟ ବିଦ୍ଧାଣୀ ମୋ ‘ସାର୍’ଙ୍କ ଯତ୍ନରେ ମୋ ଜୀବନ-ଧାରା ବଦଳି ଗଲା । ଏକ ନୂତନ ଆଭିମୁଖ୍ୟ ନେଇ ପ୍ରାଣ-ପ୍ରବାହ ଓ କଳାଭିରୁଚିରେ ବାଟ ଖୋଲିଲା । ଜୀବନର ଊରମା ଜମିର କଣ୍ଢାବୁଦା ସଫା ହୋଇଗଲା । ସାହିତ୍ୟ-ରସସମ୍ପଦ ସୃଷ୍ଟି କରିବାରେ ମୋତେ ‘ସାର୍’ ଦୀକ୍ଷା ଦେଲେ ।

ସୃଷ୍ଟିର ପରିବେକ୍ଷଣ ଓ ତାର ସ୍ଥାୟୀକରଣ ହେଲା ‘ସାର୍’ଙ୍କ ଜୀବନର ଶ୍ରେଷ୍ଠ ଲକ୍ଷ୍ୟ । ସାହିତ୍ୟ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ‘ସାର୍’ ଜଣେ ବକ୍ତା ଭାବରେ ପ୍ରତିଷ୍ଠିତ ହେଲେ । କଲିକତା ଓ ତାର ଉପକଣ୍ଠମାନଙ୍କରେ ପ୍ରତ୍ୟେକ ଅନୁଷ୍ଠାନକୁ ‘ସାର୍’ ଯାଇଛନ୍ତି । ସଭାରୁ ଫେରିଲାବେଳେ ଫୁଲମାଳ ସବୁ ଆଣି ଯତ୍ନରେ ବସାଘର କାନ୍ଥରେ ସଜାଇ ଦିଅନ୍ତି । ଏକ ସପ୍ତାହ ପରେ ପୁଣି ନୂଆଫୁଲ ଆସେ । ମଉଳା ଫୁଲ ସ୍ଥାନରେ ପୁଣି ନୂଆଫୁଲ ହସିଉଠେ ।

ନିର୍ଭୀକ, ସ୍ୱାଧୀନଚେତା ‘ସାର୍’ କଲିକତା ଓଡ଼ିଆ ଶ୍ରମିକମାନଙ୍କ ପ୍ରାଣକୁ ସ୍ନେହ-ଶୀତଳ ପାଶରେ ବାନ୍ଧି ଓଡ଼ିଆ ସଂଗଠନର ମୁଖ୍ୟ ପଥପ୍ରଦର୍ଶକ ଭାବେ ଠିଆ

ହୋଇଥିଲେ । ଅଂନ୍ଳେ ଓଡ଼ିଆ ପ୍ରେସ୍‌ର ପ୍ରତିଷ୍ଠାତା ଶ୍ରୀ ଆକୁଳ ମିଶ୍ର ଶ୍ରମିକମାନଙ୍କ ନେତା, ତାଙ୍କ ସାଙ୍ଗରେ ଭିକାରି ଚରଣ ଧଳ, ଅଗଣି ମହାନ୍ତି, ସୋମନାଥ ବାରିକ ପ୍ରଭୃତି ନେତାମାନେ ପ୍ରତି ରବିବାର ଦିନ 'ସାର୍'ଙ୍କ ପାଖକୁ ଆସି ଶ୍ରମିକ ସଂଗଠନ ବିଷୟରେ କାର୍ଯ୍ୟପନ୍ଥା ସ୍ଥିର କରନ୍ତି । ବିଚ୍ଛିନ୍ନ ଉତ୍କଳ ଓ କଲିକତା ପ୍ରବାସୀ ଆନ୍ଦୋଳନରେ 'ସାର୍'ଙ୍କର ପ୍ରାଣ ମିଶି ଯାଇଥିଲା । ସାର୍ ଜଣେ କଲିକତାପ୍ରବାସୀ ଓଡ଼ିଆ ବୋଲି ନିଜକୁ କହୁଥିଲେ ।

ଉତ୍କଳର ବନ୍ୟାବିପନ୍ନ ଅଧିବାସୀମାନଙ୍କର ହୃଦୟସ୍ପର୍ଶୀ ବିଦାରକ କରୁଣ କାହାଣୀ "ସମାଜ" ପତ୍ରିକାରେ ପ୍ରକାଶ ପାଇଲା । ସେହି ବନ୍ୟାଗ୍ରସ୍ତ ଆଶ୍ରୟହୀନ ନର-ନାରୀଗଣ କିପରି ପ୍ରବାସୀ ଓଡ଼ିଆମାନଙ୍କଠାରୁ ସାହାଯ୍ୟ ପାଇବେ, ସେ କଥା ଭାବି ବ୍ରଜବନ୍ଧୁ ନୈଶବିଦ୍ୟାଳୟର ଛାତ୍ରମାନଙ୍କୁ ଧରି 'ସାର୍' କଲିକତା ମହାନଗରୀର ରାସ୍ତା ଉପରକୁ ବାହାରି ପଡ଼ିଲେ । ବନ୍ୟା ପ୍ରପୀଡ଼ିତମାନଙ୍କୁ ସାହାଯ୍ୟ ଦେବା ପାଇଁ ପ୍ରତିଟି ବ୍ୟବସାୟ ପ୍ରତିଷ୍ଠାନ ପାଖରେ ହାତ ପତେଇ ଭିକ୍ଷା ମାଗି, ସେ ସବୁ ଟଙ୍କା 'ସମାଜ' ଅଫିସ୍‌କୁ ଶ୍ରୀ ଲିଙ୍ଗରାଜ ମିଶ୍ରଙ୍କ ନାମରେ ପଠାଇ ଦିଆଯାଉଥିଲା । ଚାନ୍ଦା ସଂଗ୍ରହ ବେଳେ 'ସାର୍' ନିଜର ଦୁଃଖ ଭୁଲି ଯାଉଥିଲେ । ମିଷ୍ଟଭାଷୀ ଦ୍ୱାରା ପରକୁ ଅତି ଆପଣାର କରି ନିଅନ୍ତି । 'ସାର୍'ଙ୍କର ବୈଚିତ୍ର୍ୟପୂର୍ଣ୍ଣ ଜୀବନର ବହୁମୁଖୀ ପ୍ରତିଭା ଓଡ଼ିଆ ପ୍ରବାସୀ ଶ୍ରମିକ ଛାତ୍ରମାନଙ୍କର ଅନ୍ଧକାରମୟ ଜୀବନକୁ ଆଲୋକିତ କରି ପାରିଛି । କୁମ୍ଭକାର ମାଟିପାତ୍ର ପ୍ରସ୍ତୁତ କଲାଭଳି 'ସାର୍'ଙ୍କ କର ସ୍ପର୍ଶରେ ବହୁ ଓଡ଼ିଆ ପ୍ରବାସୀ ଶ୍ରମିକଛାତ୍ର ସେମାନଙ୍କର ଯୋଗ୍ୟତା ବଳରେ ପ୍ରଶଂସା ଅର୍ଜନ କରିବା ସଙ୍ଗେ ସଙ୍ଗେ ନବ ଶୈକ୍ଷିକ ଆଦର୍ଶରେ ନିଜକୁ ଗଢ଼ି ପାରିଛନ୍ତି ।

ଦୁଃଖ-ଝଡ଼-ଝଂଜା ଆସିଲେ ବି 'ସାର୍' କେବେ ବିଚଳିତ ହେବାର୍ ମୁଁ ଦେଖିନାହିଁ । ଅଟଳ ମହାମେରୁ ପରି ଧୀର ସ୍ଥିର ଭାବରେ ସାଧନା ପଥରେ ଆଗେଇ ଚାଲିବା ଶ୍ରେଷ୍ଠ ଧର୍ମ ବୋଲି ସେ ଜାଣନ୍ତି । ବିପଦ ସଂକୁଳ ପଥରେ ଆଗେଇ ଚାଲିବାରେ 'ସାର୍'ଙ୍କର ଥିଲା ଅପାର ଆନନ୍ଦ । ଆଜି ମୋ 'ସାର୍'ଙ୍କର ସପ୍ତତିତମ ଜନ୍ମଜୟନ୍ତୀ ଉତ୍ସବ ଉପଲକ୍ଷ୍ୟେ ମୁଁ ମୋର ଭକ୍ତି-ପୂତ ପ୍ରଣତି ଜଣାଇଲି । 

* ଖଡ଼ିଅଣ୍ଡା, ପଣ୍ଡାମୁଣ୍ଡାଇ, କଟକ ।

# ॥ ପ୍ରଧାନ ଘଟଣା-ପଞ୍ଜୀ ॥

୧୯୧୪—ମାର୍ଚ୍ଚ ୭—ଜନ୍ମ, ରେଞ୍ଚଶାସନ, ଜିଲ୍ଲା-ପୁରୀ

୧୯୨୭—ମାଇନର୍ ପଢ଼ା-ଭୁବନେଶ୍ୱର

୧୯୩୨—ଅକ୍ଟୋବର୍ ୧୦. ପ୍ରଥମ କବିତା ଗ୍ରନ୍ଥ ଲାବଣ୍ୟ କୁସୁମ (ଅପ୍ରକାଶିତ)

୧୯୩୪—ପିତୃ ବିୟୋଗ,ନିମାପଡ଼ା ହାଇସ୍କୁଲ୍‌ରେ ଶିକ୍ଷକ,ମାୟାଧର ମାନସିଂହଙ୍କ ଠାରୁ ରବୀନ୍ଦ୍ର କବିତା ସ୍ୱାଦ ଗ୍ରହଣ ।

୧୯୩୫—ନିମାପଡ଼ା ଉଚ୍ଚଇଂରାଜୀ ବିଦ୍ୟାଳୟରୁ ପାଟଣା ବିଶ୍ୱବିଦ୍ୟାଳୟ, ଅଧୀନରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ।

୧୯୩୭—ଆଇ: ଏ: ପାଶ୍ ଓ ବାଣପୁର ହାଇସ୍କୁଲରେ ସାମୟିକ ଶିକ୍ଷକତା ।

୧୯୩୯—ରେଭେନ୍‌ସା କଲେଜରୁ ବି: ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ; ସରକାରୀ ବୃତ୍ତିକାରୀ ଲାଭରେ ବ୍ୟର୍ଥତା-ଏମ୍.ଏ. ପଢ଼ିବା ପାଇଁ କଲିକତା ଯାତ୍ରା ।

୧୯୪୧—କଲିକତା ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ଏମ୍. ଏ. ପରୀକ୍ଷାରେ ସମସ୍ତ ଭାରତୀୟ ଭାଷା ବିଭାଗରେ ସର୍ବୋଚ୍ଚ ନମ୍ବର ରଖି ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ । ନୟାଗଡ଼ ରାଜକୁମାରଙ୍କ ଗୃହଶିକ୍ଷକ ରୂପେ ଶାନ୍ତି ଯାତ୍ରା—'କର୍ମଫଳ' ଉପନ୍ୟାସ ରଚନା । ପୁରୀର କ୍ଷେତ୍ରମୋହନ ଶତପଥୀଙ୍କ ଜ୍ୟେଷ୍ଠାକନ୍ୟା ପ୍ରେମଲତାଙ୍କ (ନିଶାମଣି) ସହ ବିବାହ ।

୧୯୪୨—ଫେବ୍ରୁୟାରୀ ୨୮- କଲିକତା ବିଶ୍ୱବିଦ୍ୟାଳୟର ସର୍ବଶ୍ରେଷ୍ଠ କୃତୀ ଛାତ୍ର ଭାବରେ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣ ପଦକ, ଚନ୍ଦ୍ରନାଥ କୁଣ୍ଡୁ ଶ୍ରୀନାଥ କୁଣ୍ଡୁ ସ୍ୱର୍ଣ୍ଣପଦକ ଓ ଦୁର୍ଗାମଣି ଦେବୀ ସ୍ୱର୍ଣ୍ଣ ପଦକ ଓ ଦୁଇ ଶତ ଟଙ୍କା ଲାଭ । ବାରିପଦାରେ ଛଅମାସ ଲାଗି ଶିକ୍ଷକତା ।

୧୯୪୩—ତାଳଚେରର ପଣ୍ଡିତ ପ୍ରମୋଦଚନ୍ଦ୍ର ଦେବଙ୍କ ପୁତ୍ରଦ୍ୱୟଙ୍କ ଗୃହଶିକ୍ଷକତା ।

୧୯୪୪—ଜୁଲାଇ - ଖଲ୍ଲିକୋଟ କଲେଜରେ ଓଡ଼ିଆ ଅଧ୍ୟାପକ ।

୧୯୪୫—ଘରୋଇ ଛାତ୍ର ଭାବରେ କଲିକତା ବିଶ୍ୱବିଦ୍ୟାଳୟରୁ ସଂସ୍କୃତରେ ଏମ୍. ଏ. ପାଶ୍ । ଉତ୍କଳ ସମ୍ମିଳନୀ ବ୍ରହ୍ମପୁର ଅଧିବେଶନରେ ସକ୍ରିୟ ଅଂଶଗ୍ରହଣ । ଜ୍ୟେଷ୍ଠଭ୍ରାତା ଘନଶ୍ୟାମ ଦାଶଙ୍କ ବିୟୋଗ ।

୧୯୪୬—ଜାନୁୟାରୀ - ସଂସ୍କୃତ ବିଭାଗ ଇନ୍‌ସ୍‌ପେକ୍ଟର୍; ଏପ୍ରିଲ୍-ସଂସ୍କୃତ ବିଭାଗର ସୁପରିଣ୍ଟେଣ୍ଡେଣ୍ଟ୍ । ଜଗନ୍ନାଥ ଗବେଷଣା ମଣ୍ଡଳର ପ୍ରତିଷ୍ଠା—ସମଗ୍ର ଓଡ଼ିଶାରେ ଭ୍ରମଣ ଓ ଲୋକସାହିତ୍ୟ ସଂଗ୍ରହ ।

୧୯୪୭—ଜୁଲାଇ-ବାଲେଶ୍ୱର ସରକାରୀ କଲେଜରେ ଓଡ଼ିଆ ଅଧ୍ୟାପକ ।

୧୯୪୮—ଫକୀରମୋହନ ସାହିତ୍ୟ ପରିଷଦର ପ୍ରତିଷ୍ଠାତା ସଭାପତି । ସାହିତ୍ୟ ସମ୍ମିଳନୀ

୧୯୪୯—୧ମ ଓ ଦ୍ୱିତୀୟର ଆୟୋଜନ, ପରିଭ୍ରମଣ ଉଦ୍ଦେଶ୍ୟରେ ଲଙ୍କାଯାତ୍ରା ।

୧୯୫୦—'ଲଙ୍କାଯାତ୍ରୀ' ପ୍ରକାଶ । ଜାନୁୟାରୀ ୪ - ବିଶ୍ୱଭାରତୀରେ Professor of Indology and Post-graduate Researchରେ ଯୋଗଦାନ ।

୧୯୫୧—ବିଶ୍ୱଭାରତୀ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ସ୍ନାତକୋତ୍ତର ବିଭାଗର ମୁଖ୍ୟ ଓ ପ୍ରତିଷ୍ଠାତା ।

୧୯୫୪—ଡିସେମ୍ବର ୨୩, ବିଶ୍ୱଭାରତୀର ଆଚାର୍ଯ୍ୟ ଜବାହାରଲାଲ ନେହେ[illegible]ଠାରୁ ସପ୍ତପର୍ଣ୍ଣୀ ଓ ପି. ଏଚ୍. ଡି ନିଦର୍ଶନ ପତ୍ର ଲାଭ ।

୧୯୫୫—ମାତୃ ବିୟୋଗ ।

୧୯୫୮—ଆହ୍ଲାବାଦ୍ ନିଖିଳ ଭାରତ ଲୋକ-ସାହିତ୍ୟ ସମ୍ମିଳନୀରେ ଯୋଗଦାନ ଓ ସାହିତ୍ୟ ଶାଖାରେ ସଭାପତିତ୍ୱ ।

୧୯୬୧—ମାର୍ଚ୍ଚ - ରେଭେନ୍‌ସା ମହାବିଦ୍ୟାଳୟରେ ଓଡ଼ିଆ ବିଭାଗରେ ଯୋଗଦାନ ।

୧୯୬୨—ପ୍ରିୟଗୁରୁ ନିତ୍ୟାନନ୍ଦ ଶତପଥୀଙ୍କ ସହିତ ପୂଜ୍ୟପୂଜା ସଂସଦ୍ ପ୍ରତିଷ୍ଠା ତାହାର ପ୍ରଥମ ଉପସଭାପତି । ପରେ ୧୯୬୭ରୁ ସ୍ଥାୟୀ ସଭାପତି ।

୧୯୬୬—ଜୁନ୍ ୨୧ - ଆମେରିକାର ଇଣ୍ଡିଆନା ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ଏସିଆ ଲୋକସଂସ୍କୃତି ସମ୍ମେଳନରେ ଭାରତର ପ୍ରତିନିଧିତ୍ୱ ଓ ଆମେରିକା, ୟୁରୋପ ଆଫ୍ରିକା ଭ୍ରମଣ ।

୧୯୬୭—ଚନ୍ଦ୍ରାମଣି ବିଦ୍ୟାପୀଠ ପ୍ରତିଷ୍ଠା, ୧୯୬୭ରୁ ୧୯୭୭ ଦଶବର୍ଷ କେନ୍ଦ୍ର ସାହିତ୍ୟ ଏକାଡେମୀ ସାଧାରଣ ସମିତିର ସଭ୍ୟ ।

୧୯୬୯—ଜାନୁୟାରୀ ୨ ତାରିଖ - ରେଭେନ୍ସା ମହାବିଦ୍ୟାଳୟର ବିଭାଗର ମୁଖ୍ୟ ଓ ପ୍ରଫେସର୍ ପଦ ମଣ୍ଡନ ।

ଜୁଲାଇ ୨ - 'ଉଦୟଶ୍ରୀ' କଟକ ନୂତନଗୃହପ୍ରବେଶ । ନଭେମ୍ବର ୨୧ ସରକାରୀ କାର୍ଯ୍ୟରୁ ଅବସରଗ୍ରହଣ ।

୧୯୭୦—ଜାନୁୟାରୀ ୧୮-ଉତ୍କଳ ବିଶ୍ୱବିଦ୍ୟାଳୟରେ ପାଞ୍ଚବର୍ଷ ଲାଗି ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ୍ ପ୍ରଫେସର୍; ସିମିଲାର ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଆଡ୍‌ଭାନ୍‌ସଡ୍ ଷ୍ଟଡ଼ିଜ୍‌ରେ ଆଧୁନିକ ଭାରତୀୟ ସାହିତ୍ୟ ସେମିନାରରେ ଯୋଗଦାନ ।

୧୯୭୧—ଜୁନ ୧୮-ଚନ୍ଦ୍ରାମଣି ବିଦ୍ୟାପୀଠର ନୂତନ ଦ୍ୱିତଳ ପ୍ରାସାଦ ଉଦ୍‌ଘାଟନ ।

୧୯୭୨—ଜାନୁୟାରୀ ୨୩-ଉତ୍କଳ ସାହିତ୍ୟ ସମାଜ ସଭାପତି । ଫେବ୍ରୁୟାରୀ ୨୦-ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ "ଆମେରିକାରୁ ଇଉରୋପ ଆଫ୍ରିକା" ଭ୍ରମଣ-କାହାଣୀ ପାଇଁ ପୁରସ୍କାର ଲାଭ ।

୧୯୭୭—ନଭେମ୍ବର ୨୦ - ବର୍ଷକ ପାଇଁ ବିଶ୍ୱଭାରତୀରେ ପରିଦର୍ଶୀ ଅଧ୍ୟାପକ ।

୧୯୭୮—ଜାନୁୟାରୀ ୧୪ - ଉତ୍କଳ ସାହିତ୍ୟ ସମାଜ ସଭାପତି ପଦରୁ ବିଦାୟ । ୨୩ ସେପ୍‌ଟେମ୍ବର, ୧୯୭୮,-କଲିକତା ଏକାଡ଼େମୀ ଅଫ୍ ଫୋକଲୋର୍ ପକ୍ଷରୁ 'ଲୋକରତ୍ନ' ଉପାଧି ଲାଭ ।

୧୯୭୯—ଆତ୍ମଜୀବନଚରିତ 'ଜୀବନ କାହାଣୀ' ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ । ଏହି ଅର୍ଥ ଉପନ୍ୟାସ ପ୍ରତିଯୋଗିତା ଲାଗି ଉତ୍କଳ ସାହିତ୍ୟ ସମାଜକୁ ଦାନ ।